# କୌଟଲ୍ୟ-ଅର୍ଥଶାସ୍ତ୍ରମ୍

## ( ପୂର୍ବାର୍ଦ୍ଧମ୍ )

ମୂଳସୂତ୍ର, ଓଡ଼ିଆ ଅନୁବାଦ, ସଂସ୍କୃତ, ଇଂରାଜୀ ଏବଂ
ଓଡ଼ିଆ ଟିପ୍ପଣୀ ସହିତ

ଅନୁବାଦକ:

**ପଣ୍ଡିତ ଶ୍ରୀ ଅନନ୍ତରାମ କର ଶର୍ମା**

ସଂଶୋଧକ:

**ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ,**
ସାହିତ୍ୟାଚାର୍ଯ୍ୟ, କାବ୍ୟତୀର୍ଥ, କବିରତ୍ନ, ସାଂଖ୍ୟବିଶାରଦ,
ବେଦାନ୍ତକେଶରୀ, ଶାସ୍ତ୍ରଭାଷା କୋବିଦ

ପ୍ରକାଶକ:

**ଓଡ଼ିଶା ସାହିତ୍ୟ ଏକାଡେମୀ**
ଭୁବନେଶ୍ୱର-୧

ମୂଲ୍ୟ—ଟ ୧୬୯

# ଅଗ୍ରଲେଖ

'କୌଟିଲ୍ୟ ଅର୍ଥଶାସ୍ତ୍ର' ଭାରତୀୟ ସାହିତ୍ୟର ଏକ ବିଶିଷ୍ଟ ଅବଦାନ । ଏଥିରେ ମହାମତି ଚାଣକ୍ୟଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ପ୍ରତିଭା ପ୍ରତିଫଳିତ । ଏ ଗ୍ରନ୍ଥର ଅନୁବାଦଦ୍ୱାରା ଯେକୌଣସି ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସଂପାଦନ ସୁନିଶ୍ଚିତ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଏକ ସମୃଦ୍ଧ ସାହିତ୍ୟରୂପେ ସ୍ୱୀକୃତ ଓ ସମ୍ମାନିତ । ଆଧୁନିକ ଓଡ଼ିଆ ସାହିତ୍ୟ ମଧ୍ୟ ଉନ୍ନତିପଥରେ ଗତିକରୁଅଛି, ଯଦିଓ ଏହା ସତ୍ୟ ଯେ, ଭାରତର ଉନ୍ନତ ଭାଷାମାନଙ୍କ ସଙ୍ଗେ ସମାନ ହେବାକୁ ହେଲେ ଆମକୁ ଅଧିକ ଶ୍ରମ ଓ ସାଧନାଦ୍ୱାରା ଓଡ଼ିଆଭାଷାକୁ ସମୃଦ୍ଧିଶାଳୀ କରିବାକୁ ହେବ । ବର୍ତ୍ତମାନ ଯୁଗରେ, ସୃଷ୍ଟିମୂଳକ ସାହିତ୍ୟ ବ୍ୟତୀତ, ଅନୁବାଦଦ୍ୱାରା ମଧ୍ୟ ଭାଷାକୁ ପରିପୁଷ୍ଟ କରାଇବାର ପନ୍ଥା ଅନୁସୃତ ହେଉଅଛି । କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଭାରତର ବିଭିନ୍ନ ରାଜ୍ୟର ଏକାଡେମୀଗୁଡ଼ିକ ଏହି ପନ୍ଥା ଅବଲମ୍ବନ କରୁଛନ୍ତି । ସୁତରାଂ, ଏହି 'କୌଟିଲ୍ୟ ଅର୍ଥଶାସ୍ତ୍ର'ର ଅନୁବାଦର ପ୍ରକାଶଦ୍ୱାରା ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକ ନୂତନ ରତ୍ନ ସଂଚିତ ହେଲା ବୋଲି କୁହାଯାଇପାରେ । ଅନୁବାଦକ ଶ୍ରୀ ଅନନ୍ତରାମ କର ଓ ସଂଶୋଧକ ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ ଏଥିଲାଗି ଧନ୍ୟବାଦାର୍ହ ।

ଭୁବନେଶ୍ୱର
୩୧-୩-୧୯୬୩

**ସନ୍ତୋଷକୁମାର ସାହୁ**
ସଭାପତି,
**ଓଡ଼ିଶା ସାହିତ୍ୟ ଏକାଡେମୀ**

# ଦୁଇପଦ

'କୌଟଲ୍ୟ ଅର୍ଥଶାସ୍ତ୍ର' ସ୍ୱକୀୟ ଦୀପ୍ତି, ଗୌରବ, ଗାମ୍ଭୀର୍ଯ୍ୟ ଓ ମହନୀୟତା ବଳରେ ଅଜି ବିଶ୍ୱବିଖ୍ୟାତ । ଏହାର ଅନୁବାଦ ଓଡ଼ିଶା ସାହିତ୍ୟ ଏକାଡେମୀର ହସ୍ତଗତ ହେବା ପରେ ଏହା ଯଥାବିଧି ପ୍ରକାଶ ନିମନ୍ତେ ମନୋନୀତ ହେଲା । ଅନୁବାଦକ ମହାଶୟ ଏକାଧିକ ଅନୁବାଦ ଓ ଟୀକାର ସାହାଯ୍ୟ ନେଇ ଥିଲେହେଁ ଏଭଳି ଏକ ଭାବଗମ୍ଭୀର ଗ୍ରନ୍ଥର ସମ୍ପୂର୍ଣ୍ଣ ନିର୍ଦ୍ଦୋଷତା ସମ୍ପର୍କରେ ଦୃଢ଼ମତ ବ୍ୟକ୍ତ କରିବା ସମ୍ଭବ ନୁହେ । ତଥାପି ଏହା ଯେ ଏକ ଶଂସନୀୟ ଉଦ୍ୟମ ଓ ଏହାର ପ୍ରସ୍ତୁତି ମୂଳରେ ଯେ ବହୁ ଶ୍ରମ ଓ ସାଧନା ନିହିତ, ଏ ବିଷୟରେ ମତଦ୍ୱୈଧ ଥାଇ ନପାରେ । ପଣ୍ଡିତ ଅନନ୍ତରାମ କର ଓ ପଣ୍ଡିତପ୍ରବର ବନମାଳୀ ସାହିତ୍ୟଭୂଷଣ ଓଡ଼ିଆ ସାହିତ୍ୟର ବୈଭବ ବୃଦ୍ଧିଲାଗି ଏ ଯେଉଁ ପ୍ରଚେଷ୍ଟା କରି ଅଛନ୍ତି, ତାହା ସର୍ବଥା ସ୍ମରଣୀୟ ହୋଇ ରହିବ ।

ଗୌରୀକୁମାର ବ୍ରହ୍ମା
ସେକ୍ରେଟାରୀ

# ବକ୍ତବ୍ୟ

କୌଟିଲ୍ୟ ଅର୍ଥଶାସ୍ତ୍ରର ଏହି ପୂର୍ବାର୍ଦ୍ଧରେ 'ବିନୟାଧିକାରିକ', 'ଅଧ୍ୟକ୍ଷ ପ୍ରଚାର' ଓ 'ଧର୍ମସ୍ଥୀୟ' ନାମକ ତିନିଗୋଟି ଅଧିକରଣ ପ୍ରକାଶିତ ହେଲା । ଉତ୍ତରାର୍ଦ୍ଧରେ 'କଣ୍ଟକଶୋଧନ', 'ଯୋଗବୃତ୍ତ', 'ମଣ୍ଡଳଯୋନି', 'ଷାଡ଼୍‌ଗୁଣ୍ୟ', 'ବ୍ୟସନାଧିକାରିକ', 'ଅଭିଯାସ୍ୟତ୍‌କର୍ମ', 'ସାଂଗ୍ରାମିକ', 'ସଂଘବୃତ୍ତ', 'ଆବଳୀୟସ', 'ଦୁର୍ଗଲମ୍ଭୋପାୟ', 'ଔପନିଷଦିକ' ଏବଂ 'ତନ୍ତ୍ରଯୁକ୍ତି' ନାମକ ବାରଗୋଟି ଅଧିକରଣ ପ୍ରକାଶିତ ହେବ । ଏହି ତଥ୍ୟବହୁଳ ଅଧିକରଣ-ମାନଙ୍କରେ ରାଜ୍ୟକଣ୍ଟକମାନଙ୍କ ପରିଚୟ ଓ ଶୋଧନ, ଦୈବୀ-ମାନୁଷୀ ବିପତ୍ତିର ପ୍ରତିକାର, ସରକାରୀ କର୍ମଚାରିମାନଙ୍କ ଦୁଷ୍କର୍ମ ଅନୁସନ୍ଧାନ ଓ ପ୍ରତିକାର, ରାଜମଣ୍ଡଳ ନିରୂପଣ, ବୈଦେଶିକ ନୀତି ନିୟନ୍ତ୍ରଣ ପାଇଁ ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ ଓ ସଂଶ୍ରୟ ନାମକ ଉପାୟ-ମାନଙ୍କ ପ୍ରୟୋଗ, ଶାସନକ୍ଷେତ୍ରରେ ଦେଖାଦେବା ବିଭିନ୍ନ ବିପତ୍ତି ଓ ତାର ପ୍ରତିକାର, ଯୁଦ୍ଧକ୍ଷେତ୍ର ଓ ଯୋଦ୍ଧାମାନଙ୍କଦ୍ୱାରା (ଚତୁରଙ୍ଗ ବଳଦ୍ୱାରା) ଶତ୍ରୁପ୍ରତି ପ୍ରଯୁକ୍ତ ହେବା ବିବିଧ ଯୁଦ୍ଧକୌଶଳ, ଅଧାର୍ମିକ ଶତ୍ରୁପ୍ରତି ପ୍ରଯୁକ୍ତ ହେବା ଉଗ୍ର ପ୍ରତିକ୍ରିୟାଶୀଳ ଔଷଧ ଓ ମନ୍ତ୍ରର ବିବରଣୀ, ବିପ୍ଳବକାଳୀନ ପରିସ୍ଥିତିରେ ରାଜ୍ୟଲୋକଙ୍କ କର୍ତ୍ତବ୍ୟ ନିରୂପଣ, ପଞ୍ଚାୟତିରାଜ ପ୍ରତିଷ୍ଠା, ନେତାମାନଙ୍କ ମନ୍ତ୍ରଯୁଦ୍ଧ (ମନ୍ତ୍ରଣା ବଳରେ ଅର୍ଥାତ୍ ଯୁକ୍ତିତର୍କ ବଳରେ କରାଯିବା ଯୁଦ୍ଧ), ଆକାଶଯୁଦ୍ଧ, ପାତାଳଯୁଦ୍ଧ, କୂଟଯୁଦ୍ଧ, ଗରିଲାଯୁଦ୍ଧ, ନାନାବିଧ ବ୍ୟୂହରଚନା କୌଶଳ, ସାର୍ବଭୌମ ସ୍ୱାଧୀନରାଷ୍ଟ୍ରର ସ୍ୱାଧୀନତା ରକ୍ଷାର ଫଳପ୍ରଦ ଉପାୟ ଓ ସର୍ବୋପରି ଦେଶରେ ଦକ୍ଷ, ଧୀମାନ୍ ଓ ବଳବାନ୍ ସ୍ୱାଧୀନ ନାଗରିକ ସୃଷ୍ଟି କରିବାର ତତ୍ତ୍ୱପୂର୍ଣ୍ଣ ବିଚାର-ସମୂହ ଏଥିରେ ଲିପିବଦ୍ଧ ହେବ । ଦେଶ, ସମାଜ, ରାଜନୀତି ଓ ଅର୍ଥନୀତି

ବିଷୟରେ ଏଥିରେ ଯେଉଁ ବ୍ୟବସ୍ଥା ରହିଛି ତାହା ସମସ୍ତଙ୍କର ପ୍ରଣିଧାନଯୋଗ୍ୟ । ବିଶେଷତଃ ଏହି ଗ୍ରନ୍ଥରେ ଜଣେ ଅତି ଉଚ୍ଚକୋଟିର ପଣ୍ଡିତ ତଥା ରାଜନୀତିଜ୍ଞଙ୍କ ଦ୍ୱାରା ବହୁ ଜ୍ଞାନଗବେଷଣାପୂର୍ଣ୍ଣ ତଥ୍ୟ ସନ୍ନିବେଶିତ ହୋଇଥିବା ଯୋଗୁଁ କେବଳ ଏହି ଗୋଟିଏ ଗ୍ରନ୍ଥ ପାଠ କରିବା ଫଳରେ ଗୋଟାଏ ବିରାଟ ଗ୍ରନ୍ଥାଗାରର ସମସ୍ତ ଗ୍ରନ୍ଥ ଅଧ୍ୟୟନ କରିବା ଭଳି ଜ୍ଞାନଲାଭ ହେବ । ଅର୍ଥଶାସ୍ତ୍ରପ୍ରେମୀ ବନ୍ଧୁବର୍ଗଙ୍କ ନିକଟରେ ଏହି 'ଉତ୍ତରାର୍ଦ୍ଧ'ଟି ଓଡ଼ିଶା ସାହିତ୍ୟ ଏକାଡ଼େମୀ କର୍ତ୍ତୃପକ୍ଷଙ୍କ ସୌଜନ୍ୟ ଯୋଗୁଁ ଅଚିରେ ପ୍ରବେଶ କରିବ । ଇତି ।

ବିନୀତ
ଅନୁବାଦକ



ଶ୍ରୀ ଶୁଭମସ୍ତୁ

# ଉପୋଦ୍‌ଘାତ

## —ପ୍ରାରମ୍ଭିକ—

ତା ୧୬-୧୧-୫୮
ଅସିକା

ପ୍ରାୟ ମାସକରୁ କଂଶତ୍ ଅଧିକକାଳ ତଳେ ଓଡ଼ିଶାର ଗଂଜାମଜିଲ୍ଲା ଜଗନ୍ନାଥପ୍ରସାଦ ନିକଟସ୍ଥ ଜଗନ୍ନାଥପୁର ଶାସନ ନିବାସୀ କବିରାଜ ଶ୍ରୀ ଅନଂତରାମ କର ମତେ ଲେଖିଲେ—ସେ କୌଟିଲ୍ୟଂକ ଅର୍ଥଶାସ୍ତ୍ରର ଓଡ଼ିଆ ଅନୁବାଦ କରିଛଂତି, ମୁଁ ତାର ଗୋଟିଏ ମୁଖବଂଧ ଲେଖିଦେଲେ ସେ ତାହା ପ୍ରକାଶ କରିବାର ପ୍ରଯତ୍ନକରିବେ । ଅର୍ଥଶାସ୍ତ୍ର ଭିତରେ ମୁଁ ଏ ଶତାବ୍ଦୀର ପ୍ରଥମ ଦଶକଭିତରେ ମାନ୍ୟକ ଶ୍ୟାମଶାସ୍ତ୍ରୀଂକର ଇଂରେଜୀ ଅନୁବାଦଟିରେ ଆଖିପକାଇ ଯାଇଥିଲି । ତା ପରେ ଦକ୍ଷିଣର ଗଣପତିଶାସ୍ତ୍ରୀ ଏହାର ଅନ୍ୟ ପୁସ୍ତକ ସଂସ୍କୃତ ସଂସ୍କରଣ ବାହାର କରିଥିବାର ଓ ଲାହୋରରୁ ତଥା ଜର୍ମାନୀରୁ ମଧ୍ୟ ଅନ୍ୟାନ୍ୟ ସଂସ୍କରଣ ବାହାରିଥିବାର ଜାଣିଥିଲି । ବିଶେଷତଃ ଏ ଦେଶରେ ଇଂରେଜୀ ଶାସନ ଥିବାବେଳେ ହିଂଦୁ କୋଡ୍‌ର ଗୋଟିଏ ସଂସ୍କରଣ ଆଇନରେ ପରିଣତ କରିବାପାଇଁ ସେକାଳର କେଂଦ୍ର ଆଇନମଂତ୍ରୀ ଶ୍ରୀ ସୁଲତାନ୍ ବହୁ ପ୍ରଯତ୍ନ କରିଥିଲେ । ମୁଁ କେଂଦ୍ର ବିଧାନସଭାରେ ଥାଇ ସେତେବେଳେ ସେହି ବିଲ୍ ପର୍ଯ୍ୟାଲୋଚନା କରିବାପାଇଁ ଯେଉଁ କମିଟି ବସିଥିଲା, ସେଥିରେ ସଭ୍ୟ ଥିଲି ଓ ତା ପରେ ମଧ୍ୟ ସ୍ୱାଧୀନ ଭାରତରେ ହିଂଦୁ କୋଡ୍‌ଟି ଆଇନରେ ପରିଣତ ହେବାପୂର୍ବରୁ ଦିଲ୍ଲୀରେ କରପାତ୍ରୀଜୀଂକ ନେତୃତ୍ୱରେ ଯେଉଁ ଆଂଦୋଳନ ହୋଇଥିଲା ସେଥିକୁ ମଧ୍ୟ ମୁଁ ଡକାହୋଇ ଯାଇଥିଲି । ଏହିସବୁ ସୂତ୍ରରେ ଅର୍ଥଶାସ୍ତ୍ରର ବହୁ ଆଲୋଚନା ମଧ୍ୟ ମତେ କରିବାକୁ ହୋଇଥିଲା । ତଥାପି ଶ୍ରୀ ଅନଂତରାମ କରଂକୁ ମୁଁ ଲେଖିଲି ଅସିକା ବା ଭଂଜନଗର ଭଳି ସ୍ଥାନରେ ଏବିଷୟରେ ଗୋଟିଏ ଆଲୋଚନା ସଭା କଲେ ମୁଁ ଯିବି ଓ ଆପଣଂକ ଅନୁବାଦ

ଉପରେ ମୁଖବଂଧ ଲେଖିବାକୁ ଚେଷ୍ଟା କରିବି । ଏହି ୧୯୫୮ ମସିହା ନଭେଂବର ତା ୧୫।୧୬ ରାତ୍ରରେ ସେ ଏହି ଆଲୋଚନା ସଭା କରିବାର ସ୍ଥିରକଲେ । ମୁଁ ଆସିବାକୁ ଆସିଲି; କିଂତୁ ଦେଖିଲି, ଯଥାର୍ଥତଃ କୌଟିଲ୍ୟଂକ ଅର୍ଥଶାସ୍ତ୍ର ସଂବଂଧୀୟ ବିଷୟମାନଂକର ଆଲୋଚନା କରିବାକୁ ଏଠାରେ ପରିସ୍ଥିତି ପ୍ରାୟ ତିଆରି ହୋଇନାହିଁ । ଶ୍ରୀ ଅନଂତରାମକରଂକ ସଙ୍ଗେ, ଜଗନ୍ନାଥପ୍ରସାଦ ଉଚ୍ଚ ଇଂରେଜୀ ବିଦ୍ୟାଳୟର ପ୍ରଧାନ ସଂସ୍କୃତଶିକ୍ଷକ ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ, ସାହିତ୍ୟାଗ୍ରଣୀ, କାବ୍ୟତୀର୍ଥ, କବିରତ୍ନ, ସାଂଖ୍ୟବିଶାରଦ, ବେଦାଂତକେଶରୀ, ରାଷ୍ଟ୍ରଭାଷାକୋବିଦ ଆସି ମୋସଂଗେ ଆସିବାଠାରେ ଆଳାପ କରିଥିଲେ । ଦେଖିଲି, ଏହି ପଣ୍ଡିତ ମହାଶୟ ବରଂ ଶ୍ରୀ ଅନଂତରାମ କରଂକଠାରୁ ଏ ଅନୁବାଦଟି ବିଷୟରେ ବେଶି ଉତ୍ସାହୀ ଓ ତତ୍ପର । ପଣ୍ଡିତ ମହାଶୟଂକର ମଧ୍ୟ ସାଧାରଣ ସଂସ୍କୃତଦର୍ଶନ ଜ୍ଞାନ ଖୁବ୍ ଅଛି ଜାଣି ସୁଖୀହେଲି । ସେ ଏହି ଅନୁବାଦଟି ସଂଶୋଧନ କରିବାରେ ଲାଗିଛଂତି । ଶ୍ରୀ ଅନଂତରାମକରଂକ ଘୋର ଆଗ୍ରହ ଓ ଅନୁବାଦରେ ଅତଂଦ୍ରିତ ପରିଶ୍ରମ, ସେଥିସଂଗେ ସାହିତ୍ୟଭୂଷଣଂକ ଉତ୍ସାହ ଓ ଘୋର କର୍ମ୍ମଠତା ଦେଖି ମୁଁ ଏକପ୍ରକାର ବିସ୍ମିତ ହେଲି । ଅନୁବାଦଟି ପଢ଼ି ଦୁହେଁଯାକ ମତେ ଅନେକସ୍ଥଳରେ ବୁଝାଇଲେ ଓ ଗ୍ରଂଥବିଷୟରେ ଅନ୍ୟାନ୍ୟ କେତେକ କଥା ଆଲୋଚନା କରି ମୁଖବଂଧ ଲେଖିବାକୁ ମତେ ଅନୁରୋଧ କଲେ । ଏପରି କି ଏହି ଆସିବାରେ ଦିନେ ରହି ମୁଖବଂଧଟି ଲେଖି ଦେଇ ଯିବାକୁ ମତେ କହିଲେ । ମୁଁ ନିମ୍ନଲିଖିତ ମୁଖବଂଧଟି ଲେଖୁଛି ।

---

## —ଗ୍ରନ୍ଥପ୍ରବେଶ—

ଭାରତର ପ୍ରାଚୀନ ସଂସ୍କୃତସାହିତ୍ୟରେ ଯେଉଁ ସବୁ ଅତି ଉପାଦେୟ ମହାଗ୍ରଂଥମାନ ମିଳୁଛି ତାଭିତରେ କୌଟିଲ୍ୟଂକ ଅର୍ଥଶାସ୍ତ୍ର ଗୋଟିଏ ଅତି ପ୍ରସିଦ୍ଧ ଗ୍ରଂଥ । ଏଦେଶର ଅନେକ ବିଦ୍ୟା ପୂର୍ବେ ବେବିଲୋନ୍ ବାଟେ ଓ ପରେ ଆରବ ବାଟେ ୟୁରୋପକୁ ଯାଇଛି । ଉଦାହରଣ ସ୍ୱରୂପ, ଅତି ପ୍ରାଚୀନ କାଳରେ ସଂଯମ ଓ ଆତ୍ମସାଧନାମୂଳକ ତଥା ଅନାସକ୍ତ ସମାଜ-ସେବାନିଷ୍ଠ ଜୈନଧର୍ମ୍ମ ଭାରତଠାରୁ ଗ୍ରୀସ୍‌ପର୍ଯ୍ୟଂତ ବ୍ୟାପିଥିଲା । ଗ୍ରୀସ୍‌ର ଅରଫିଉସ୍ (Orpheus), ପାଇଥାଗୋରସ୍ (Pythagoras) ଓ

ତାଂକ ଶିଷ୍ୟମାନଂକର ତଥା ତହିଁରେ ପ୍ରଭାବିତ ସକ୍ରେଟିସ୍, ପ୍ଲେଟୋ, ଆରିଷ୍ଟୋଟଲ୍, ଷ୍ଟୋଇକ୍ସ ପ୍ରଭୃତିଂକର ଦର୍ଶନରୁ ଯାହା ପ୍ରମାଣ ମିଳେ ତହିଁରୁ ଜଣାଯାଏ ସେସବୁରେ ଜୈନଧର୍ମର ପ୍ରଭାବ ଓ ପ୍ରକ୍ରିୟାମାନ ସ୍ପଷ୍ଟ । ଅର୍ଫିକ ଓ ପାଇଥାଗୋରିଅନ୍ କାଳରୁ ମଧ୍ୟ ସେମାନେ ଥିଲେ ନିରାମିଷଭୋଜୀ ।

ଏହାଛଡ଼ା ନାନାଭାବରେ ଉପାଖ୍ୟାନଠାରୁ ଆୟୁର୍ବେଦପର୍ଯ୍ୟଂତ, ଗଣିତର ଦଶମିକ ସଂଖ୍ୟାପ୍ରୟୋଗଠାରୁ ଜ୍ୟୋତିଷାଦିର ସାଧାରଣ ଅବିଷ୍କୃତ ତତ୍ତ୍ୱ ପର୍ଯ୍ୟଂତ ସବୁ ମଧ୍ୟଯୁଗରେ ଆରବବାଟେ ୟୁରୋପକୁ ଯାଇଥିଲା । ହେଲେହେଁ କୌଟିଲ୍ୟ ବା କୌଟିଲ୍ୟଂକ ଅର୍ଥଶାସ୍ତ୍ର ସେପରି ୟୁରୋପଆଡ଼େ ପ୍ରଚଳିତ ହେବାର ପ୍ରମାଣ ମିଳନାହିଁ । ଅବଶ୍ୟ ରୋମ, ଗ୍ରୀସ୍, ପାରସ୍ୟ ତଥା ଭାରତର ଭାଷା ମୂଳତଃ ଏକ ଥିଲେ ମଧ୍ୟ, ପୁଣି ବିକାଶତଃ ବହୁପରିମାଣେ ଏକାପ୍ରକାରର ହୋଇଥିଲେ ମଧ୍ୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟଂତ ପାଣିନିଂକ ବ୍ୟାକରଣ ୟୁରୋପରେ ପ୍ରଚଳିତ ହୋଇଥିବାର କୌଣସି ପ୍ରମାଣ ମିଳନାହିଁ । ଅଥଚ ଭାରତରେ ପାଣିନିଂକ ପୂର୍ବରୁ ବହୁବ୍ୟାକରଣକାର ଥିବା ପ୍ରମାଣ ସ୍ପଷ୍ଟ । ଏହାଛଡ଼ା ବୈଦିକକାଳରୁ ପ୍ରାତିଶାଖ୍ୟମାନଂକରେ ମଧ୍ୟ ବ୍ୟାକରଣ ସଂବଂଧୀୟ ନାନା ଆଲୋଚନା ପ୍ରକାଶ ପାଇଥିଲା । କିଂତୁ ପାଣିନି ପ୍ରଭୃତିଂକ ବ୍ୟାକରଣ ପ୍ରଚଳିତ ନ ହେବାର କାରଣ ଅନ୍ୟପ୍ରକାର । ସେମାନେ ବିଶେଷତଃ ୟୁରୋପୀୟମାନେ ପ୍ରାଚୀନ ଫିନିସିୟା ପ୍ରଭୃତିବାଟେ ଗ୍ରୀସଦ୍ୱାରା ଭୀଷଣଭାବରେ ପ୍ରଭାବିତ ହୋଇଥିଲେ । ତାଂକର ଲିପିମାଳା ଏହାର ଏକ ପ୍ରକୃଷ୍ଟ ନିଦର୍ଶନ । ସଂକେତଲିପିଭଳି ଲେଖାଲିପି ତାଂକଭିତରେ ପ୍ରକାଶ ପାଇଥିଲା । ମାତ୍ର ଭାରତୀୟମାନେ ସଂସ୍କୃତରେ ମୂଳତଃ ସେ ଲିପିକୁ ଅତିକୃତ୍ରିମ ବୋଲି ଅନାଦର କରୁଥିଲେ । ତେଣୁ ପାଣିନିଂକ ଭଳି ବ୍ୟାକରଣଚର୍ଚ୍ଚା ଅନ୍ୟଆଡ଼େ ପଶିବାଭଳି ପରିସ୍ଥିତି ନଥିଲା । ଏବର ଭାଷାବିଜ୍ଞାନ ଜର୍ମାନରୁ ବାହାରିଛି ଏବଂ ମୂଳତଃ ପାଣିନିଂକ ସ୍ୱରଗତ ବିଚାରରୁ ତାହା ପ୍ରକାଶ ପାଇଛି । ସେକାଳେ ତାହା ୟୁରୋପରେ ବିଚାରରେ ଆସିନାହିଁ । ମାତ୍ର ବ୍ୟାକରଣ ଓ ସ୍ୱରବିଜ୍ଞାନ କଥା ସ୍ୱତଂତ୍ର ହେଲେହେଁ ଏବେ ଜଣାପଡ଼ୁଛି, ଏ ପାଣିନିଂକ ଆଦିସ୍ଥାନ ଯେଉଁଆଡ଼େ, କୌଟିଲ୍ୟଂକ ଆଦିସ୍ଥାନ ସେଇଆଡ଼େ । ଏହା ଖୁବ୍ ସଂଭବ, ସେକାଳ

ଭାରତରେ ହେଲେ ମଧ୍ୟ ସିଂଧୁନଦୀର ପଶ୍ଚିମପାରରେ, କାବୁଲନଦୀ ଯେଉଁଠାରେ ସିଂଧୁ ନଦୀରେ ମିଶିଛି, ଏହା ସେଇଠାରୁ ଅଂତତଃ ଦଶମାଇଲ ପଶ୍ଚିମ-ଉତ୍ତରକୁ । ଏହି ଅଂଚଳରେ କୌଟିଲ୍ୟଂକ ଜନ୍ମସ୍ଥାନ ହେଉଛି ଚଣକ । ତେଣୁ କୌଟିଲ୍ୟଂକ ନାମ 'ଚାଣକ୍ୟ' । ସେ କୁଟଲଗୋତ୍ରରେ ଜନ୍ମ ହୋଇଥିଲେ—ତେଣୁ ତାଂକ ନାମ 'କୌଟଲ୍ୟ'; 'କୌଟିଲ୍ୟ' ବୋଲି ଲୋକେ ଭୁଲରେ ଲେଖଂତି ଓ କହଂତି । ଏହାଛଡ଼ା ତାଂକ ପିତାମାତା ଶ୍ରଦ୍ଧାନାମ ଦେଇଥିଲେ ବିଷ୍ଣୁଗୁପ୍ତ (ବିଷ୍ଣୁରକ୍ଷିତ) ।

ଅର୍ଥଶାସ୍ତ୍ରର ପ୍ରସିଦ୍ଧି ଏବେ ଏକା ପ୍ରକାଶ ପାଉଛି, ଏପରି ନୁହେ । ଯେତେବେଳେ ଲେଖାଯାଇଥିଲା ସେତେବେଳେ ପାଣିନିଂକ ବ୍ୟାକରଣପରି ଏହା ଭାରତରେ ସୁଧୀଗଣସମ୍ମତ ଓ ଅତି ପ୍ରଶଂସିତ ଶାସ୍ତ୍ର ଥିଲା । ପାଣିନି କୌଟିଲ୍ୟଂକ ଅଳ୍ପକାଳ ପୂର୍ବର ବ୍ୟକ୍ତି ଥିଲେ । ଜଣାଯାଏ କୌଣସି ନଂଦମହାରାଜାଂକ ସମୟରେ ଥିଲେ ପାଣିନି । ଶେଷନଂଦଂକୁ ଉଚ୍ଛେଦ କରି ଚାଣକ୍ୟ ମୌର୍ଯ୍ୟ ଚଂଦ୍ରଗୁପ୍ତଂକୁ ସମ୍ରାଟ କରାଇଥିଲେ । ଅତଏବ ଚାଣକ୍ୟ ପାଣିନିଂକ ଅଳ୍ପକାଳ ପରର ଲୋକ; ବରଂ କେତେକାଂଶରେ ସମସାମୟିକ ହୋଇପାରଂତି ।

ଏକା ପାଣିନିଂକ କାଳରୁ କାହିଁକି ତାର କେତେକ ଶତାବ୍ଦୀପୂର୍ବରୁ ଓ କେତେକ ଶତାବ୍ଦୀପରେ ମଧ୍ୟ ମଗଧର ରାଜଧାନୀ ପାଟଳୀପୁତ୍ର ଭାରତର ପ୍ରଧାନ ବିଦ୍ୟାର କେଂଦ୍ର ଥିଲା । ଏହିଠାରେ ବଡ଼ ବଡ଼ ପଂଡ଼ିତ ରୁଂଡ଼ ହୋଇଥିଲେ । ତାଂକର 'ଶାସ୍ତ୍ରକାରପରୀକ୍ଷା' ବୋଲି ଗୋଟିଏ ପ୍ରତିଷ୍ଠିତ ସଭା ଥିଲା । ଭାରତର ବଡ଼ ବଡ଼ ଶାସ୍ତ୍ରକାରମାନେ ନିଜ ନିଜ ଶାସ୍ତ୍ର ସଂବଂଧରେ ମତ ନେବାପାଇଁ ସେଇ ସଭାକୁ ପୁସ୍ତକ ପଠାଇବା ସକାଶେ ମଗଧର ମହାରାଜାଂକ ପାଖକୁ ପୁସ୍ତକ ପଠାଇ ଦେଉଥିଲେ କିଂବା ନିଜେ ପୁସ୍ତକ ଘେନି ସଭାକୁ ଆସୁଥିଲେ । ଏହି ସୂତ୍ରରେ ପାଣିନିଂକର ପାଟଳୀ-ପୁତ୍ର ସଂଗେ ବିଶେଷ ପରିଚୟ ଓ ପ୍ରତିଷ୍ଠା ହୋଇଥିବାର ସୂଚନା ମିଳେ । ଏଇଥିପାଇଁ କୌଟିଲ୍ୟ ପାଟଳୀପୁତ୍ରରେ ଅତି ପ୍ରଖ୍ୟାତ ହୋଇଥିଲେ ବୋଲି ସିଂହଳମହାବଂଶର "ଅତ୍ଥପକାଶିନୀ" (ଅର୍ଥପ୍ରକାଶିନୀ) ବୋଲି ଯେଉଁ ଟୀକା ଅଛି ସେଥିରେ ଉଲ୍ଲେଖ ଅଛି *। ମନେ ହେଉଛି ଏହି ସୂତ୍ରରେ

* **India as known to Panini—*Page 20.***

ପାଟଳୀପୁତ୍ରରେ ଶେଷ ନନ୍ଦରାଜା ଏହାଙ୍କପ୍ରତି କୌଣସି ଘଟଣାରେ ଅବହେଳା ପ୍ରକାଶ କରିଥିଲେ ଓ ଫଳରେ ଗୃଣକ୍ୟ ଭାରତର ଉତ୍ତର-ପଶ୍ଚିମ କୋଣରୁ ଅଲେକ୍‌ଜାଣ୍ଡରଙ୍କ ସେନାବାସରୁ ଫେରିଥିବା ଚନ୍ଦ୍ରଗୁପ୍ତଙ୍କୁ ଧରି ନନ୍ଦବଂଶର ଉଚ୍ଛେଦ ସାଧନ ପୂର୍ବକ ଚନ୍ଦ୍ରଗୁପ୍ତଙ୍କୁ ମଗଧର ତଥା ଭାରତର ସାମ୍ରାଜ୍ୟରେ ସମ୍ରାଟରୂପେ ପ୍ରତିଷ୍ଠିତ କରିଥିଲେ । ଖୁବ୍ ସମ୍ଭବତଃ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଏବେ ଯେଉଁପରି ଆକାରରେ ଅଛି, ଲେଖାହେଲାବେଳେ ସେପରି ନଥିଲା । ସାମ୍ରାଜ୍ୟର ପ୍ରତିଷ୍ଠାପରେ କ୍ରମେ ଏହାର ବହୁ ଉନ୍ନତି ଓ ପ୍ରକରଣବିଶେଷମାନଙ୍କର ବହୁ ପରିବର୍ତ୍ତନ ହୋଇଥିବ । ଏଣୁ ଯଥାର୍ଥରେ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟକାଳ ଆରମ୍ଭରୁ କୌଟିଲ୍ୟ ଚନ୍ଦ୍ରଗୁପ୍ତଙ୍କ ସଂସ୍ରବ ଛାଡ଼ି ସନ୍ନ୍ୟାସ ଗ୍ରହଣ କରିବା ପର୍ଯ୍ୟନ୍ତ ଏହି ଅର୍ଥଶାସ୍ତ୍ରର କାଳ ବୋଲି ଧରିବାକୁ ହେବ । ପଣ୍ଡିତମାନେ ଖ୍ରୀଷ୍ଟପୂର୍ବ ୩୨୧ରେ ଚନ୍ଦ୍ରଗୁପ୍ତ ରାଜତ୍ୱ ଆରମ୍ଭ କଲେ ବୋଲି ଠିକ୍ କରନ୍ତି । ଅର୍ଥଶାସ୍ତ୍ରର କାଳକୁ ଏହିଠାରୁ ୨୦ ବର୍ଷ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୩୦୦ ଶତାବ୍ଦୀ ବୋଲି କହନ୍ତି ।

ଏଠାରେ ଗୋଟିଏ କଥା ମନେହୁଏ, ପଶ୍ଚିମ ଆଡ଼କୁ ଏ ଅର୍ଥଶାସ୍ତ୍ରର ବିଶେଷ ପ୍ରଚାର ନ ହେବାର କାରଣ ହେଉଛି ଅର୍ଥଶାସ୍ତ୍ରରେ ଆଲୋଚିତ ହେବାଭଳି ବସ୍ତୁମାନ ଭାରତରୁ ପଶ୍ଚିମ ଆଡ଼କୁ ଯିବାର କୌଣସି ବିଶେଷ କାରଣ ନଥିଲା । କାହିଁକିନା ଭାରତୀୟମାନଙ୍କର ଅର୍ଥାତ୍ ବୈଦିକ ଭାରତୀୟମାନଙ୍କର ଏହି ରାଜ୍ୟ ସାମ୍ରାଜ୍ୟ ଗୂଳନାଦି ହେଉଛି ପାରସ୍ୟ ଓ ଗ୍ରୀସ୍‌ଆଡ଼ୁ ମୁଖ୍ୟତଃ ଆଦେୟ ବସ୍ତୁ । ବୈଦିକ ଭାରତରୁ ଏକପ୍ରକାର ସାମ୍ରାଜ୍ୟ ବିକାଶ ପାଇଥିଲା । ସେଥିରେ ରାଜପୁତ୍ରମାନେ ରାଜାହେବାମାତ୍ରେ ଦିଗ୍‌ବିଜୟରେ ବାହାରି ନିଜର ଶ୍ରେଷ୍ଠତ୍ୱ ପ୍ରକାଶ କରୁଥିଲେ । ସେହି କ୍ରିୟାରେ ଯେ ବହୁରାଜ୍ୟରେ ବିକ୍ରମ ଦେଖାଇ କୃତକାର୍ଯ୍ୟ ହେଉଥିଲେ ତାଙ୍କୁ ଚକ୍ରବର୍ତ୍ତୀ ବା ମଣ୍ଡଳେଶ୍ୱର କୁହାଯାଉଥିଲା । ମହାଭାରତରେ ଥିବା ଉପାଖ୍ୟାନରୁ ଏହି ରୀତି ବହୁକାଳପୂର୍ବେ ଭାରତରେ ଚଳୁଥିବାର ଅନୁମାନ ହୁଏ । ଐତିହାସିକ କାଳରେ ମଧ୍ୟ, ମାଗଧ ଗୁପ୍ତବଂଶର ସମୁଦ୍ରଗୁପ୍ତ ଏହିପରି ଏକ ଦିଗ୍‌ବିଜୟ କରି ଚକ୍ରବର୍ତ୍ତୀ ବା ମଣ୍ଡଳେଶ୍ୱର ହୋଇଥିବାର ଲେଖ ପ୍ରମାଣ ଅଛି । ଅବଶ୍ୟ ସମୁଦ୍ରଗୁପ୍ତଙ୍କ ବେଳକୁ ଏହି ଦିଗ୍‌ବିଜୟରେ

ଅର୍ଥଶାସ୍ତ୍ରର ପ୍ରଭାବ କେତେ ଥିଲା କହିହେବ ନାହିଁ । କୁଣିକ ବା ଅଜାତଶତ୍ରୁଙ୍କ କାଳରୁ ରାଜକୁଳରେ ପିତୃହତ୍ୟାର ନିଦର୍ଶନ ଅଛି । ଅଶୋକ ମଧ୍ୟ ବହୁ ଭ୍ରାତୃହତ୍ୟା କରି ନିଜେ ସମ୍ରାଟ ହୋଇଥିଲେ ବୋଲି ସୂଚନା ମିଳେ । ତେଣୁ କ୍ରମେ ଅନ୍ତତଃ ସମୁଦ୍ରଗୁପ୍ତଙ୍କ ବେଳକୁ ବହୁ-ପରିମାଣରେ ସାମ୍ରାଜ୍ୟ ଗଠନ ଓ ସଂରକ୍ଷଣରେ ଅର୍ଥଶାସ୍ତ୍ରର ପ୍ରଣାଳୀ ଓ ପ୍ରକ୍ରିୟାସବୁ ହୁଏତ ପଶିଯାଇଥିବ । ହେଲେହେଁ ବୈଦିକ ଆର୍ଯ୍ୟମାନଙ୍କ ଭିତରେ ଫୁଟିଥିବା ଏହି ଚକ୍ରବର୍ତ୍ତିତ୍ୱ ଠିକ୍ ଅର୍ଥଶାସ୍ତ୍ରର ସାମ୍ରାଜ୍ୟବିସ୍ତାର ଓ ରକ୍ଷଣପରି ନୁହେଁ । ଏଥିରେ ରାଜାମାନଙ୍କୁ ପରାସ୍ତକରି ନାମକୁ ମାତ୍ର ଅଧୀନ କରି ନିଜର ସ୍ୱାତନ୍ତ୍ର୍ୟରେ ଛାଡ଼ି ଦିଆଯାଏ ଓ ପରେ ଏହି ରାଜାମାନଙ୍କୁ ଧରି ନିଜ ପ୍ରୌଢ଼ିର ସଂକେତସ୍ୱରୂପ ଦିଗ୍ବିଜୟୀ ଚକ୍ରବର୍ତ୍ତୀ ସମ୍ରାଟମାନେ ରାଜସୂୟ ଯଜ୍ଞ କରନ୍ତି ।

କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ପ୍ରଣାଳୀ ଓ ପ୍ରକ୍ରିୟା ଏଥିରୁ ଭିନ୍ନ । ଏପରି ଚକ୍ରବର୍ତ୍ତିତ୍ୱ କଳ୍ପଣା ପର୍ଯ୍ୟନ୍ତ ଅର୍ଥଶାସ୍ତ୍ରରେ ନାହିଁ କହିଲେ ଚଳେ । ତେଣୁ ଭାରତର ଉତ୍ତର-ପଶ୍ଚିମ ସୀମାନ୍ତରେ ପ୍ରେରଣା ପାଇଥିବା ଏହି ଅର୍ଥଶାସ୍ତ୍ର ଭିତରେ ପ୍ରାଚୀନ ପାରସ୍ୟ, ଗ୍ରୀସ୍ ତଥା ବାବିଲୋନ୍ ପ୍ରଭୃତିର ସାମ୍ରାଜ୍ୟଭାବ ପ୍ରଭାବ ବିସ୍ତାର କରିଥିଲା ବୋଲି ମନେହୁଏ । ଅବଶ୍ୟ ପାଣିନିଙ୍କ ଭଳି ପ୍ରସିଦ୍ଧ ଓ ପ୍ରତିଷ୍ଠିତ ପଣ୍ଡିତମାନଙ୍କ ପରି କୌଟିଲ୍ୟ ମଧ୍ୟ ତକ୍ଷଶିଳା ବିଦ୍ୟାକେନ୍ଦ୍ରରେ ତାଲିମ ହୋଇଥିଲେ । କିନ୍ତୁ ଉତ୍ତର-ପଶ୍ଚିମ ଭାରତର ତକ୍ଷଶିଳାଭଳି ବିଦ୍ୟାପୀଠରେ ପାରସ୍ୟ, ଗ୍ରୀସ୍ ତଥା ବାବିଲୋନ୍ ପ୍ରଭୃତିର ପ୍ରଭାବ ପଡ଼ିଥିବାରେ ଅସଂଗତ କିଛି ନାହିଁ । ପୁଣି ଏହି ଉତ୍ତର-ପଶ୍ଚିମ ଭାରତ ବହୁଶତାବ୍ଦୀ ପୂର୍ବରୁ ପାରସ୍ୟ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଥିଲା ଓ ଆଲେକଜାଣ୍ଡର ମଧ୍ୟ ଏହାକୁ ନିଜ ସାମ୍ରାଜ୍ୟଭୁକ୍ତ କରିଥିଲେ । ପୁଣି ସେଲ୍ୟୁକସ୍ ସମ୍ରାଟ ଚନ୍ଦ୍ରଗୁପ୍ତଙ୍କୁ ସନ୍ଧିରେ ଏହା ଛାଡ଼ିଦେବା ପୂର୍ବରୁ ଏହା ସେଲ୍ୟୁକସଙ୍କ ଗ୍ରୀକ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା ।

ସେତିକି ନୁହେଁ, ବହୁକାଳପର୍ଯ୍ୟନ୍ତ ଏହି ପଶ୍ଚିମ ପ୍ରଭାବର ପରଂପରା ଭାରତ ସାହିତ୍ୟକୁ ନାନାଭାବରେ ପ୍ରଭାବିତ କରିଥିବା ପ୍ରମାଣ ସ୍ପଷ୍ଟ । ପ୍ରାଚ୍ୟ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନେ ଅବଶ୍ୟ ଏଦିଗରେ ବିଶେଷ ଆଲୋଚନା ଚଳାଇ ନାହାନ୍ତି । ତଥାପି ଭାରତର ବାତ୍ସ୍ୟାୟନ କାମସୂତ୍ରାଦିରେ

ଗ୍ରୀସ୍‌ର ପ୍ରଭାବ ସ୍ପଷ୍ଟ ଦେଖାଯାଏ । ରୋମାନ୍ କବି ଓଭିଡ୍ (Ovid) ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଅମୋରିସ୍ (Amoris) ବୋଲି କାମବିଦ୍ୟା ସଂବଂଧୀୟ ଯେଉଁ ଗ୍ରନ୍ଥ ଲେଖିଥିଲେ ତହିଁରୁ ଆମ ଭାରତୀୟ ବାତ୍ସ୍ୟାୟନ ଧାରା ପ୍ରକାଶ ପାଇଥିବାର ସ୍ପଷ୍ଟ ପ୍ରତୀତ ହୁଏ ।

ଏହାଛଡ଼ା ଆମ କାବ୍ୟକଳା । ଏଠାରେ ମନେ ରଖିବାର ଅଛି, ସେକାଳରେ କେବଳ ମୌର୍ଯ୍ୟ ସାମ୍ରାଜ୍ୟ କାଳଟି ମଧ୍ୟରେ ଛାଡ଼ିଦେଲେ ପ୍ରାୟ ୩୦୦ ବର୍ଷକାଳ ମଥୁରାଠାରୁ ଗୁଜରାଟ ସମେତ ସମସ୍ତ ଉତ୍ତର-ପଶ୍ଚିମ ଭାରତଟି ଗ୍ରୀକ୍‌ବୀର ତଥା ଗ୍ରୀକ୍ କ୍ଷତ୍ରପ (Satrap) ମାନଂକ ଅଧୀନରେ ଓ ପ୍ରଭାବରେ ଥିଲା । ଏକାଦଶ ଶତାବ୍ଦୀର ଗୋଟିଏ ପଥରରେ ଗଢ଼ା-ହୋଇଥିବା ମଧ୍ୟପ୍ରଦେଶରୁ ବାହାରିଥିବା ଥିଏଟର ବା ନାଟକାଭିନୟର ଖୋଦିତ ଚିତ୍ର ମିଳିଛି ('ନବଭାରତ' ନବପ୍ରସ୍ଥ ପୂର୍ଣ୍ଣଚଂଦ୍ରରଥଂକ ପ୍ରବଂଧ ଦ୍ରଷ୍ଟବ୍ୟ) । ଏଥିରୁ ସ୍ପଷ୍ଟ ଅନୁମାନ ହେଉଛି, ଖ୍ରୀଷ୍ଟର ଅବ୍ୟବହିତପୂର୍ବ ଓ ପର ଶତାବ୍ଦୀମାନଂକରେ ଏହି ଭାରତସ୍ଥ ଗ୍ରୀକ୍‌ମାନଂକ ଦରବାରରେ ଗ୍ରୀକ୍ ନାଟକର ଅଭିନୟ ହେଉଥିଲା । ସ୍ପଷ୍ଟତଃ ଏହି ଗ୍ରୀକ୍ ନାଟକମାନଂକର ମୂଳ ହେଉଛି ଗ୍ରୀସ୍‌ର ଡାୟୋନିସିୟା (Dionysia) ଅର୍ଥାତ୍ କାମଦେବ ତଥା ମଦ୍ୟଦେବଂକ ପର୍ବ । ସେ ପର୍ବଦିନମାନଂକ ରାତିରେ ଅଭିନୟ କରିବାପାଇଁ ଅଧମ ନାଟକ ସବୁ ଲେଖା ହୋଇଥିଲା ! ଏହିଥିରୁ ବାହାରି-ଥିବା ୟୁରିପାଇଡ଼ିସ୍ ପ୍ରଭୃତି କବିଂକ ନାଟକ ସବୁ ଗ୍ରୀସ୍‌ରେ ବହୁ ପ୍ରାଚୀନ ଓ ବହୁ ଅଦ୍ଭୁତ । ଏହା ଖ୍ରୀଷ୍ଟପୂର୍ବ ପଂଚମ ଓ ଷଷ୍ଠ ଶତାବ୍ଦୀରୁ ଗ୍ରୀସ୍ ଓ ଗ୍ରୀକ୍‌ମାନଂକ ଭିତରେ ଚଳି ଆସିଥିଲା । ଭାରତୀୟ ଭାସ ଓ କାଳିଦାସ ପ୍ରଭୃତି କବି ମଧ୍ୟ ଏହି ଗ୍ରୀକ୍‌ପ୍ରଭାବର ସାକ୍ଷାତ୍ ଫଳ ।

ବାତ୍ସ୍ୟାୟନ କାମସୂତ୍ର ଓ ସେହି ସଂବଂଧୀୟ ଗ୍ରଂଥସବୁ ପଶ୍ଚିମଆଡ଼କୁ ପ୍ରସରି ନାହିଁ । ସେହିପରି ମଧ୍ୟ ଭାସ ଓ କାଳିଦାସ ପ୍ରଭୃତି କବିଂକ ସଂସ୍କୃତ କାବ୍ୟମାନ । ବହୁକାଳ ପରେ ସେକ୍‌ସପିଅର ମଧ୍ୟ ଗ୍ରୀକ୍ ଉପାଖ୍ୟାନ ସବୁ ଧରି ଇଂରେଜିରେ ନାଟକମାନ ଲେଖିଛଂତି । କିଂତୁ ଭାରତର ପ୍ରଭାବ ସେତେବେଳେ ମଧ୍ୟ ସେ ଅଡ଼େ ପହଂଚିଥିବାର ଜଣାନାହିଁ । ସେପରି କୌଟିଲ୍ୟଂକ ଅର୍ଥଶାସ୍ତ୍ର ମଧ୍ୟ ଜଣାପଡ଼ିବା ଭଳି ପଶ୍ଚିମଅଡ଼େ ପ୍ରସରିଥିବା ସଙ୍କେତ ମିଳୁନାହିଁ । ମୂଳତଃ ପଶ୍ଚିମଅଡ଼ୁ ହୁଏତ ପ୍ରଭାବିତ ହୋଇଥିଲେ

ମଧ୍ୟ ଏହା ମୁଖ୍ୟତଃ ଭାରତୀୟ । କୁହାଯାଇଚି—ପଶ୍ଚିମଅଡ଼େ ରାଜ୍ୟ ସାମ୍ରାଜ୍ୟଭାବ ବହୁତ ପ୍ରାଚୀନ । ଲେଖ ବା କୋଣଶୀର୍ଷ ମୃତ୍‌ଫଳକ ଲେଖ (Cuniform) ମାନଂକରୁ ଜଣାଯାଏ ପ୍ରାୟ ଖ୍ରୀଷ୍ଟପୂର୍ବ ୨୫୦୦ ବର୍ଷ ଆଗରୁ ଏବ ଦକ୍ଷିଣ ଇରାକର ସେକାଲ (Accad) ସମ୍ରାଟ୍ ସାରୁକନ୍ ବା ସାର୍ଗନ୍ (Sargon)ଙ୍କ ସାମ୍ରାଜ୍ୟ ପାରସ୍ୟ ଉପସାଗରରୁ ଭୂମଧ୍ୟସାଗର ପର୍ଯ୍ୟଂତ ବିସ୍ତୃତ ଥିଲା । ଶେଷକୁ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ସପ୍ତମ ଓ ଷଷ୍ଠ ଶତାବ୍ଦୀ ବେଳକୁ ଏକ୍‌ମିନିୟନ୍ ସମ୍ରାଟମାନଂକ ପାରସ୍ୟ ସାମ୍ରାଜ୍ୟ ଭାରତର ସିଂଧୁ ସମେତ ଇଜିପ୍ଟ ସୁଦ୍ଧା ବ୍ୟାପ୍ତ ଥିଲା । ଏହା ଦୁଇଶ ବର୍ଷରୁ ଅଧିକକାଳ ବ୍ୟାପି ରହିଥିଲା । ମଝିରେ ଗ୍ରୀକ୍ ସାମ୍ରାଜ୍ୟ ଭିତରେ ପେରିକ୍ଲସ୍ (Pericles) ପ୍ରଭୃତିଂକ ସାଧାରଣତଂତ୍ରବାଦଠାରୁ ଫିଲିପ୍‌ସ ଅଲେକଜାଂଡ଼ର ତଥା ସେଲ୍ୟୁକସ୍ ପ୍ରଭୃତିଂକ ସାମ୍ରାଜ୍ୟବାଦ କଥା କହିବା ଦରକାର ନାହିଁ । ସେହିସବୁ ସାମ୍ରାଜ୍ୟରେ ଭାରତର ମୌଳିକ ଜୈନଭାବ ଭାବିତ ଅହିଂସାଧନା ଓ ଅନ୍ତର୍ବ[illegible]ମୈତ୍ରୀ ଉପରେ ମୁଖ୍ୟତଃ ପ୍ରତିଷ୍ଠିତ ଦିଗ୍‌ବିଜୟ ଓ ଚକ୍ରବର୍ତ୍ତିତ୍ୱ ଭାବ ପ୍ରକାଶ ପାଇନାହିଁ । ମନେହୁଏ କୌଟିଲ୍ୟଂକ ଅର୍ଥଶାସ୍ତ୍ରରେ ସେହିସବୁ ପଶ୍ଚିମ ସାମ୍ରାଜ୍ୟର ଭାବ ବରାବର ପ୍ରତିଫଳିତ ହୋଇଥିଲା । ଅବଶ୍ୟ ପୂର୍ବ ପଶ୍ଚିମର ଏହି ସଂପର୍କ ତଥା ପଶ୍ଚିମ ସାମ୍ରାଜ୍ୟଭାବର ପ୍ରଭାବ, କୌଟିଲ୍ୟଂକ ବେଳୁ ଆରଂଭ ହୋଇନଥିଲା । ପଶ୍ଚିମର ଏହି ସାମ୍ରାଜ୍ୟ-ଭାବରେ ମନୁଷ୍ୟର ବାସ୍ତବକ୍ରିୟା ପ୍ରୟୋଗବିଜ୍ଞାନ ବେଶ୍ କାର୍ଯ୍ୟ କରୁଥିଲା । ଆଦର୍ଶରେ ମଧ୍ୟ ପରକୁ ଭାଂଗି ରାଜ୍ୟରକ୍ଷା କରିବା ଓ ରାଜ୍ୟ ବଢ଼ାଇବା ଏଥିରେ ଖୁବ୍ ପ୍ରକାଶ ପାଇଥିଲା । ଏହା ମଧ୍ୟ ଭାରତର ରାଜ୍ୟ ସାମ୍ରାଜ୍ୟ ସଭ୍ୟତାକୁ କୌଟିଲ୍ୟଂକ ବହୁକାଳ ପୂର୍ବରୁ ପ୍ରଭାବିତ କରିବାକୁ ଲାଗିଥିଲା । ଭାରତର ମନୀଷୀମାନେ ନିଜର ଦିଗ୍‌ବିଜୟ ଭାବ ପ୍ରଭୃତିରେ ଏହାର ପ୍ରଭାବ ବହୁକାଳ ଲକ୍ଷ୍ୟକରି ସେଥିପାଇଁ ବ୍ୟବସ୍ଥାମାନ ଦେଇ ଆସୁଥିଲେ । କୌଟିଲ୍ୟ ନିଜ ଅର୍ଥଶାସ୍ତ୍ରରେ ଏହିପରି ଅଂତତଃ ଦଶଗୋଟି ଗ୍ରଂଥକାରଂକ ସମାଲୋଚନା କରିଛଂତି । ସେ ଦଶଗୋଟିଂକ ନାମ ହେଉଛି—(୧) ମନୁଶିଷ୍ୟମାନେ, (୨) ବୃହସ୍ପତିଶିଷ୍ୟମାନେ, (୩) ଶୁକ୍ରଶିଷ୍ୟମାନେ, (୪) ଦ୍ରୋଣାଚାର୍ଯ୍ୟ, (୫) ବିଶାଳାକ୍ଷ, (୬) ପରାଶର, (୭) ପିଶୁନ ବା ନାରଦ, (୮) କୌଣପଦଂତ ବା ଭୀଷ୍ମ, (୯) ବାତବ୍ୟାଧି ବା ଉଦ୍ଧବ, (୧୦) ବାହୁଦଂତୀପୁତ୍ର ବା ଇଂଦ୍ର । ଏସମସ୍ତେ ନାନାଭାବରେ ଅଥଚ ଖଂଡ଼ିତଭାବରେ ଏହି ଅର୍ଥଶାସ୍ତ୍ର ବିଷୟବସ୍ତୁ

ସବୁର ଆଲୋଚନା କରିଥିଲେ । କୌଟିଲ୍ୟ ମଧ୍ୟ ନିଜ ଅର୍ଥଶାସ୍ତ୍ରରେ ଏମାନଙ୍କ ମତର ଆଲୋଚନା ଓ ସମାଲୋଚନା କରିଛନ୍ତି । ରାଜା ନିଜ ପୁତ୍ରଙ୍କଠାରୁ ଆତ୍ମରକ୍ଷା କରିବା ବିଷୟରେ ଏମାନେ ଯେଉଁ ମତ ଦେଇଛନ୍ତି ତାହା ନିମ୍ନରେ ଦିଆଗଲା ।

ଭାରଦ୍ୱାଜ (ଦ୍ରୋଣାଚାର୍ଯ୍ୟ)ଙ୍କ ମତରେ—

କଙ୍କଡ଼ାର ଛୁଆଗୁଡ଼ିକ ଜନ୍ମହେବା ସମୟରେ ସେମାନେ ମା'ର ପେଟ ଫଟାଇ ଯେପରି ଜନ୍ମ ହୁଅନ୍ତି, ରାଜପୁତ୍ରମାନେ ଠିକ୍ ସେହିପରି ପିତାଙ୍କୁ ହତ୍ୟାକରି ରାଜ୍ୟ ଦଖଲ କରିବା ସକାଶେ ଯତ୍ନ କରିଥାନ୍ତି । ତେଣୁ ରାଜପୁତ୍ରମାନଙ୍କୁ ଜନ୍ମ ସମୟରେ ହିଁ ଗୁପ୍ତରେ ହତ୍ୟାକରିଦେବା ଶ୍ରେୟସ୍କର ।

ଆଚାର୍ଯ୍ୟ ବିଶାଳାକ୍ଷଙ୍କ ମତରେ ଏପରି ଜଘନ୍ୟ ଶିଶୁହତ୍ୟା ଗର୍ହିତ କାର୍ଯ୍ୟ । ଯଦି ସମସ୍ତ ରାଜକୁମାରଙ୍କୁ ଏପରି ହତ୍ୟା କରାଯାଏ ତେବେ କ୍ଷତ୍ରିୟକୁଳ ନିର୍ମୂଳ ହୋଇଯିବ । ଏଣୁ ଏମାନଙ୍କୁ ଅନ୍ତଃପୁରରେ କୌଣସି ନିର୍ଦ୍ଦିଷ୍ଟ ଜାଗାରେ ସ୍ୱତନ୍ତ୍ରଭାବେ ରଖାଇଦେବାକୁ ହେବ ।

ପରାଶର ଓ ତାହାଙ୍କ ଶିଷ୍ୟମାନେ କହନ୍ତି ଯେ, ରାଜପୁତ୍ରମାନଙ୍କୁ ଏପରି ନଜରବନ୍ଦୀ କଲେ ସର୍ପ ଯେପରି ଭୀତ ହୋଇ ମନୁଷ୍ୟକୁ ଦଂଶନ କରେ, ଏମାନେ ସେହିପରି ରାଜା ସେମାନଙ୍କ ଅନିଷ୍ଟ କରିବା ଆଶଙ୍କାରେ, ରାଜାଙ୍କୁ ଗିରଫଦାର କରିବାକୁ ଚେଷ୍ଟା କରନ୍ତି । ଏଣୁ ରାଜସୀମାରେ ବାସ କରୁଥିବା କୌଣସି ଦୁର୍ଗପାଳଙ୍କ ନିକଟରେ ସ୍ୱତନ୍ତ୍ର ଭାବରେ ଏମାନଙ୍କୁ ରଖାଇ ଦେବା ଉଚିତ ।

ପିଶୁନ (ନାରଦ)ଙ୍କ ମତରେ ସୀମାନ୍ତବର୍ତ୍ତୀ ଦୁର୍ଗପାଳଙ୍କ ନିକଟରେ ରଖାଇବା ମଧ୍ୟ ଉଚିତ ନୁହେଁ, କାରଣ ମେଣ୍ଢ଼ା ଯେପରି ପଛକୁ ହଟିଯାଇ ତୀବ୍ରବେଗରେ ଆସି ମସ୍ତକ ଆଘାତ କରେ, ରାଜପୁତ୍ର ସେହିପରି ରାଜାଙ୍କଠାରୁ ଦୂରରେ ରହି ନିଜର ନିର୍ବାସନ ବିଷୟ କାଳକ୍ରମେ ଅବଗତ ହେବା ପରେ ତତ୍ସ୍ଥ ଦୁର୍ଗପାଳାଦିଙ୍କୁ ଆୟତ୍ତ କରି ଅତର୍କିତଭାବେ ରାଜାଙ୍କୁ ଆକ୍ରମଣ କରି ପାରନ୍ତି । ଏଣୁ ରାଜା ନିଜରାଜ୍ୟର ଦୂର ସୀମାନ୍ତସ୍ଥିତ କୌଣସି ସାମନ୍ତରାଜାଙ୍କ ତତ୍ତ୍ୱାବଧାନରେ ରାଜକୁମାରମାନଙ୍କୁ ରଖିବାର ବ୍ୟବସ୍ଥା କରିବେ ।

ଅର୍ଥ କୌଣପଦଂତ (ଭୀଷ୍ମ) ନାରଦଂକ ଏହି ମତକୁ ସ୍ୱୀକାର କରଂତ ନାହିଁ । ସେ କହଂତ ଯେପରି ବାଛୁରିକୁ ଦୂରରେ ରଖି ଅନ୍ୟମାନେ ଗାଈଠାରୁ କ୍ଷୀର ଦୁହିଁ ଖାଂତ, ସେଇପରି କୌଣସି ସାମଂତଂକ ନିକଟରେ ରାଜପୁତ୍ରମାନଂକୁ ରଖିଲେ ସେମାନେ ଉକ୍ତ ରାଜାଂକଠାରୁ ରାଜପୁତ୍ରଂକୁ ଦେବା ବାହାନାରେ ଧନସଂପଦ ନେଇଯିବେ । ତେଣୁ ରାଜପୁତ୍ରମାନଂକୁ ମାତାଂକର କୌଣସି ବଂଧୁ ନିକଟରେ ରଖାଇବାକୁ ହେବ ।

ଅର୍ଥ ବାତବ୍ୟାଧି (ଉଦ୍ଧବ)ଙ୍କ ମତରେ ମାତୃବଂଧୁଂକ ନିକଟରେ ରାଜପୁତ୍ରମାନଂକୁ ରଖିବାଫଳରେ ସେମାନେ ଏହାଂକୁ ଅଳକରି କେବଳ ନିଜର ଅଭିଳାଷ ପୂର୍ଣ୍ଣ କରିଥାଂତ । ଯେପରି ଅଦିତ ଅର୍ଥାତ୍ ଦେବତା-ମାନଂକ ଚିତ୍ରପଟ ଦେଖାଇ ଭିକମାଗିବା ବ୍ୟକ୍ତି (ମଂଗଳଚଂଡ଼ିଆ ପ୍ରଭୃତି) ଓ କୌଶିକ ଅର୍ଥାତ୍ ସର୍ପମାନଂକୁ ଦେଖାଇ ଭିକମାଗିବା ବ୍ୟକ୍ତି ନିଜର ପ୍ରତିପୋଷଣ ସକାଶେ ଚିତ୍ରପଟ ଓ ସର୍ପକୁ ଅଳ କରଂତ, ରାଜକୁମାରଂକ ମାତୃବଂଧୁମାନେ ସେପରି ରାଜକୁମାରଂକ ନାମ ପ୍ରତ୍ୟେକ ସାମଂତ ଓ ପ୍ରଜାମାନଂକୁ କହି ସେମାନଂକଠାରୁ ଧନ ଅଦାୟ କରିଥାଂତ । ତେଣୁ ରାଜକୁମାରମାନଂକୁ ସ୍ତ୍ରୀମାନଂକ ମଧ୍ୟରେ ରଖାଇଦେଲେ ସେମାନେ ଆଉ ରାଜାଂକର ଦ୍ରୋହାଚରଣ କରିବେ ନାହିଁ ।

ଅର୍ଥ କୌଣପଦଂକ ମତରେ ଉପରୋକ୍ତ ଉପାୟ ଯୁକ୍ତିହୀନ ବୋଲି ବିବେଚିତ ହୁଏ ।

ସେ କହଂତ—ଏପରି କରିବାଦ୍ୱାରା ରାଜକୁମାରମାନଂକୁ ଜୀଇଁ ଥାଉ ଥାଉ ମାରିଦେବାପରି ହୁଏ । ଅଶିକ୍ଷିତ ରାଜପୁତ୍ରମାନଂକ ଦ୍ୱାରା ରାଜା କାଠ-ଭକ୍ଷିତ କାଷ୍ଠପରି ବିନାଶହେତୁରେ ମଧ୍ୟ ବିନାଶପ୍ରାପ୍ତ ହୁଅଂତ । ଅତଏବ ରାଜମହିଷୀ ଋତୁମତୀ ହେବାବେଳେ ପୁରୋହିତଂକ ଦ୍ୱାରା ଇଂଦ୍ର ଓ ବୃହସ୍ପତିଂକ ଉଦ୍ଦେଶରେ ହବନ କରାଇ ଯେପରି ଐଶ୍ୱର୍ଯ୍ୟଶାଳୀ ଓ ବିଦ୍ୱାନ୍ ପୁତ୍ର ଜନ୍ମ ହେବ ସେପରି ବ୍ୟବସ୍ଥା କରିବେ । ରାଜମହିଷୀ ଗର୍ଭବତୀ ହେଲେ ଆୟୁର୍ବେଦୀୟ କୌମାରଭୃତ୍ୟ ତଂତ୍ରୋକ୍ତ ପୁଂସବନ ଚିକିତ୍ସା ପ୍ରୟୋଗ କରି ସୁଖପ୍ରସବ ଔଷଧ ପ୍ରୟୋଗଦ୍ୱାରା ଗର୍ଭରକ୍ଷା କରିବେ । ପୁତ୍ର ଜନ୍ମହେବା ପରେ ପୁରୋହିତଂକଦ୍ୱାରା ଜାତକର୍ମ ସଂସ୍କାର ବିଧିମତ କରାଇବେ ଏବଂ କୁମାରମାନେ ପ୍ରାପ୍ତବୟସ୍କ ହେବା ସଂଗେ ସଂଗେ ସେମାନଂକୁ ବିଭିନ୍ନ

ବିଦ୍ୟାରେ ପ୍ରବୀଣତା ଲାଭ କରିଥିବା ବିଶେଷଜ୍ଞମାନଂକଦ୍ୱାରା ସକଳ ବିଦ୍ୟାରେ ଶିକ୍ଷିତ କରାଇବେ ।

ଏଣୁ କୌଟଲ୍ୟଂକ ଅର୍ଥଶାସ୍ତ୍ର ଭାରତରେ ଏକ ନୂତନ ବସ୍ତୁ । କ୍ରମେ ୟୁରୋପ ପ୍ରଭୃତିର ସଂଘର୍ଷ ତଥା ପ୍ରାଚୀନ ଓ ଅଧୁନାକ ପ୍ରଭାବ ଫଳରେ ଯେଉଁ National ବା ଜାତିଗତ ରାଜ୍ୟ. ସାମ୍ରାଜ୍ୟପ୍ରଭାବ କ୍ରମେ ପ୍ରକାଶ ପାଇ ଆସିଚ, ବିଶେଷତଃ ଏହିଭାବରେ ଭାରତୀୟ ପ୍ରଭାବକୁ ବୁଡ଼ାଇ ଯାହା ଭାରତରେ ଫୁଟିଆସିଛି, ସେଥିରେ କୌଟଲ୍ୟଂକ ଅର୍ଥଶାସ୍ତ୍ରର ସ୍ଥାନ ଏକାବେଳକେ ଅଦ୍ୱିତୀୟ । ସଂସ୍କୃତ ହିସାବରେ ଭାରତୀୟ ଦର୍ଶନଜୟ ଓ ରାଜସୂୟର ସ୍ଥାନ ଯେତେ ଉଚ୍ଚରେ ଥାଉ ନା କାହିଁକି, କୌଟଲ୍ୟଂକ ଅର୍ଥଶାସ୍ତ୍ର ପ୍ରୟୋଗ ପ୍ରକ୍ରିୟା ·ସଂପୂର୍ଣ୍ଣ ଭିନ୍ନ ହେଲେ ମଧ୍ୟ ଅତ୍ୟଂତ ବିଚାର-ଯୋଗ୍ୟ ଓ ଉପାଦେୟ । ଏହାର କାର୍ଯ୍ୟକାରିତା ମଧ୍ୟ ବର୍ତ୍ତମାନ ପରସ୍ଥିତିରେ ଜାତୀୟ ଭାବର ପୋଷକ । ସମସ୍ତ ନିରସ୍ତ୍ରୀକରଣ ପ୍ରଭୃତି ବଡ଼ ବଡ଼ କଥାର ଆଲୋଚନା ସତ୍ତ୍ୱେ ସାମ୍ରାଜ୍ୟବୃଦ୍ଧି ଓ ପ୍ରତିହିଂସାଭାବ ଦିନକୁଦିନ ବଢ଼ୁଛି ସିନା କମୁନାହିଁ । ପିଲଂକୁ ଯଦି ଶିକ୍ଷାଦିଆଯାଏ ସମସ୍ତେ ଦାଂଡ଼ରେ ଚାଲିବା ବେଳେ ମୁଖ ସଜାଡ଼ି ଚାଲ, ତେବେ କେହି କାହାକୁ ମାରିବେ ନାହିଁ କିମ୍ବା କୌଣସି ଦ୍ୱଂଦ୍ୱ ବା କଳହର ସମ୍ଭାବନା ନାହିଁ । ଏ ଯେପରି, ନିରସ୍ତ୍ରୀକରଣ କଥାଟି ମଧ୍ୟ ଉଚ୍ଚସ୍ତରରେ ଠିକ୍ ସେହିପରି । କେବଳ ସେତିକି ନୁହେ, ମନୋବିଜ୍ଞାନ ତତ୍ତ୍ୱର ଯଥାର୍ଥ ଆଲୋଚନା କଲେ ବୁଝାଯିବ, ଋଣାତ୍ମକ (Negative) ଅହିଂସା, ଧନାତ୍ମକ (Positive) ମୈତ୍ରୀ ନୁହେ । ଏହିପରି ଯଥାର୍ଥ ବିଚାର ସତ୍ତ୍ୱ, ପ୍ରାଚୀନ କାଳର ଛୁଡ଼ିଯାଇଥିବା ଓ ଅଭିଭୂତ ହୋଇଥିବା ଭାରତୀୟ ଧନାତ୍ମକ ବୃତ୍ତି ପୁଣି ଜଗତରେ ନ ଫୁଟିଲେ ହୁଏତ ଜଗତର ନିତ୍ୟକାମ୍ୟ ଚିରଶାନ୍ତି ଅସୁନାହିଁ । ତଥାପି ବର୍ତ୍ତମାନର ଜାତୀୟ ଭାବଗତ ପ୍ରବୃତ୍ତିର ପରିସ୍ଥିତିରେ କୌଟଲ୍ୟଂକ ଅର୍ଥଶାସ୍ତ୍ରର ବିଚକ୍ଷଣତା ବୁଝିବା ତଥା ଅଂତତଃ ସାହିତ୍ୟରେ ତାର ପ୍ରଭାବାଦି ଫୁଟାଇବା ଅତ୍ୟଂତ ଦରକାର । ଓଡ଼ିୟାରେ ଅର୍ଥଶାସ୍ତ୍ରର ଅନୁବାଦ ନାହିଁ । ଉପରେ କୁହାଯାଇଥିବା କାରଣମାନଂକରୁ ସ୍ପଷ୍ଟ ଜାଣିହେବ, ଏ ସ୍ୱାଧୀନତାର ଯୁଗରେ ଭାରତରେ ଅଂଚଳିକ ଭାଷା ଓ ସାହିତ୍ୟମାନଂକର ନୂତନ ଉଦ୍‌ବୋଧ ବେଳରେ ଏଭଳି ଶାସ୍ତ୍ରର ଅନୁବାଦ ଅତି ସ୍ପୃହଣୀୟ । ଶ୍ରୀଯୁକ୍ତ

ଅନଂତରାମ କରଂଙ୍କର ଏହି ଅନୁବାଦଟି ପଂଡ଼ିତ ଶ୍ରୀ ବନମାଳୀ ସାହିତ୍ୟ-ଭୂଷଣଂକ ସଂଶୋଧନରେ ପୁଷ୍ଟ ଓ ସମୃଦ୍ଧ ହୋଇଛି । ମୋର ମନେହୁଏ, ଏହା ଲୋକରେ ଖୁବ୍ ଆଦର ପାଇବ । ଛାତ୍ରବୃନ୍ଦମାନେ ଓ ନୂତନ ପାଠକ-ମାନେ ଏଥିରୁ କେବଳ ପ୍ରେରଣା ନୁହେ, ଜାତୀୟ ସାହିତ୍ୟର ବହୁତ ଉପାଦାନ ପାଇବେ । ଆଜିକାଲି ବିଶେଷରେ ରାଷ୍ଟ୍ରର କର୍ମାଁରୁ ସ୍ୱାମାନେ ନାନାଭାବରେ ଅନବହିତ କାହିଁକି ବରଂ ଦୂଷିତ ବୋଲି ଅଭିଯୋଗମାନ ହେଉଛି । ଅର୍ଥଶାସ୍ତ୍ରର ପ୍ରୟୋଗବିଜ୍ଞାନ ପ୍ରତି ସେମାନଂଙ୍କର ଏକାନ୍ତ ଲକ୍ଷ୍ୟ କରିବା ଉଚିତ । ଜଗନ୍ନାଥ ଆଦର୍ଶର ପରଂପରାରେ ପରିବୃଦ୍ଧ ଓଡ଼ିଶାରେ ବିଶେଷତଃ ଏହାର ଆଲୋଚନା ଏକାଂତ ପ୍ରୟୋଜନୀୟ । ଅତଏବ ଏ ଅନୁବାଦଟି ଓଡ଼ିଆଏ ପଢ଼ଂନ୍ତୁ, ପ୍ରଭାବ ଓ ପ୍ରୟୋଗରେ ଜାଗ୍ରତ ହୁଅଂନ୍ତୁ, ଦେଶରେ ଯଥାର୍ଥ ପ୍ରଗତି ଫୁଟୁ । ଶୁଭମସ୍ତୁ ।

(ସ୍ୱାକ୍ଷର)

**ନୀଳକଂଠ ଦାସ**

୧୬-୧୧-୫୮

କ୍ୟାଂପ—ଅସିକା

# ପ୍ରସ୍ତାବନା

ଜଗନ୍ନାଥଙ୍କ ଅପାର କରୁଣା ଏବଂ ଓଡ଼ିଶା ସାହିତ୍ୟ ଏକାଡ଼େମୀଙ୍କ ଅନୁକୂଲ୍ୟରୁ ବିଶ୍ୱବିଖ୍ୟାତ କୂଟନୀତିବିଶାରଦ, ମହାପଣ୍ଡିତ ଅଗ୍ରଗଣ୍ୟ କୌଟିଲ୍ୟ ପ୍ରଣୀତ ଅର୍ଥଶାସ୍ତ୍ରର 'ପୂର୍ବାର୍ଦ୍ଧ' ଓଡ଼ିଆ ଭାଷାରେ ପ୍ରଥମବାର ପ୍ରକାଶିତ ହେଲା । ଏହି 'ଅର୍ଥଶାସ୍ତ୍ର' ଭାରତୀୟ ରାଜନୀତି, ସମାଜନୀତି ତଥା ଅର୍ଥନୀତିର ଏକ ବିପୁଳ ସମନ୍ୱୟ । କୌଟିଲ୍ୟଙ୍କ ପୂର୍ବବର୍ତ୍ତୀ ଅର୍ଥଶାସ୍ତ୍ର ପ୍ରଣେତାଗଣ ନିଜ ନିଜ ଗ୍ରନ୍ଥକୁ ଶୁକ୍ରନୀତି, ବାର୍ହସ୍ପତ୍ୟନୀତି ଓ ଉଦ୍ଧବନୀତି ଇତ୍ୟାଦି ନାମରେ ନାମିତ କରିଥିବା ସ୍ଥଳେ କୌଟିଲ୍ୟ ସ୍ୱପ୍ରଣୀତ ଗ୍ରନ୍ଥର ନାମ 'ଅର୍ଥଶାସ୍ତ୍ର' ରଖିଛନ୍ତି । 'ଅର୍ଥ' ଶବ୍ଦର ସ୍ପଷ୍ଟୀକରଣ କରିବାକୁ ଯାଇ ସେ କହିଛନ୍ତି ଯେ ମନୁଷ୍ୟମାନଙ୍କ ବୃତ୍ତିକୁ 'ଅର୍ଥ' କୁହାଯାଏ ଏବଂ ଯେଉଁ ଭୂମିରେ ଏପରି ବିଭିନ୍ନ ବୃତ୍ତି ଅବଲମ୍ବନକାରୀ ମନୁଷ୍ୟ ବାସ କରନ୍ତି ବ୍ୟାପକ ଅର୍ଥରେ ତାହାର ନାମ ହିଁ 'ଅର୍ଥ' । ଏବଂଭୂତ ମନୁଷ୍ୟ ବାସୋପଯୋଗୀ ଭୂମିକୁ ପଣ୍ଡିତମାନେ ପୃଥିବୀ ବା 'ରାଜ୍ୟ' ନାମରେ ନାମିତ କରିଛନ୍ତି । ଅତଏବ ଏହି ରାଜ୍ୟଲାଭ ଓ ରାଜ୍ୟପାଳନ ବିଷୟକ ନୀତି ନିୟମ ଯେଉଁ ଶାସ୍ତ୍ରର ବିଷୟବସ୍ତୁ, ସେହି ଶାସ୍ତ୍ରର ନାମ 'ଅର୍ଥଶାସ୍ତ୍ର' ।

କୌଟିଲ୍ୟଙ୍କ ଏହି ଅର୍ଥଶାସ୍ତ୍ରର ପ୍ରଣୟନ କାଳ ନିରୂପଣ କରିବାକୁ ଗଲେ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ୩୨୧ ଠାରୁ ୨୯୮ ବର୍ଷ ମଧ୍ୟରେ ମୌର୍ଯ୍ୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ ସମୟରେ ଏହା ପ୍ରଣୀତ ହୋଇଥିଲା (Archaeological researches of India ଦେଖନ୍ତୁ) । ଶୁଣାଯାଏ ଏହି ଗ୍ରନ୍ଥପ୍ରଣେତା ଏକସମୟରେ ତକ୍ଷଶିଳା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଥିଲେ । ସେତେବେଳେ ଉକ୍ତ ବିଶ୍ୱବିଦ୍ୟାଳୟରେ ଯେଉଁସବୁ ଉପାଦେୟ ଗ୍ରନ୍ଥ ମିଳୁଥିଲା ଏବଂ ସେଗୁଡ଼ିକର ଅଧ୍ୟୟନ ଫଳରେ ତାଙ୍କର ଯେଉଁ ମାର୍ଜିତ ଓ ବ୍ୟାପକ ଜ୍ଞାନଲାଭ ହୋଇଥିଲା, ପରିସ୍ଥିତିର ଗୃପରେ ପଡ଼ି ସେ ଯେତେବେଳେ ବିଦ୍ୟାଳୟ ଛାଡ଼ି ମନ୍ତ୍ରଣାଳୟକୁ ଆସନ୍ତି, ସେତେବେଳେ ତାଙ୍କର ଏହି ଜ୍ଞାନ ପରିପକ୍ୱ ଓ ପରିବର୍ଦ୍ଧିତ ହୋଇ ପରିଶେଷରେ ଗୋଟିଏ ଅତି ଉପାଦେୟ ଗ୍ରନ୍ଥଆକାରରେ ରୂପାୟିତ ହୋଇଗଲା । ବିଶେଷତଃ ହୋଇ

ବିଷୟବସ୍ତୁ ଏପରି ଯଥାର୍ଥ ଓ ନିର୍ଭୁଲ ପ୍ରତୀତ ହେଲା ଯେ ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନଙ୍କ ଭାବପ୍ରବଣତା ଏଥିରେ ସ୍ଥାନ ପାଇଲାନାହିଁ କି ଜଡ଼ବାଦୀଙ୍କ କପଟ ନାସ୍ତିକତା ମଧ୍ୟ ଏହାର ମୌଳିକତାକୁ ଦୋହଲାଇ ପାରିଲା ନାହିଁ । ମୁଖ୍ୟତଃ ଯଥାର୍ଥତା ଉପରେ ଆତ୍ମପ୍ରତିଷ୍ଠା କରି ଏହା ଏକ ସର୍ବଜନପ୍ରିୟ ଓ ଅନୁସରଣୀୟ ଗ୍ରନ୍ଥରୂପେ ଖ୍ୟାତି ଅର୍ଜନ କଲା ।

ଯେଉଁ ଯୁଗଜନ୍ମା ମନୀଷୀ ଏହି ଗବେଷଣାପୂର୍ଣ୍ଣ ଗ୍ରନ୍ଥର ପ୍ରଣେତା, ତା'ଙ୍କର ଖ୍ୟାତି ଓ ଅସ୍ତିତ୍ୱ ବିଷୟରେ ପାଶ୍ଚାତ୍ୟ ପଣ୍ଡିତ ଡାକ୍ତର ଓ୍ୱିଣ୍ଟରନିଜ **(Winternitz)**, ଡାକ୍ତର ଜଲି **(Jolly)** ଏବଂ ଡାକ୍ତର କୀଥ୍ **(Keith)**ଙ୍କ ଧାରଣା ଭିନ୍ନରକମର ଦେଖାଯାଏ । ଡାକ୍ତର ଓ୍ୱିଣ୍ଟରନିଜ କହନ୍ତି—

**(i) "No reference is made in the work to the great empire of Chandragupta, which is said to have been built up by Chanakya** *(Dr. Winternitz)*, **nor is the name Pataliputra, the capital of the empire, mentioned."** *(Dr. Jolly)*

ଅର୍ଥଶାସ୍ତ୍ରରେ ଚାଣକ୍ୟଙ୍କ ଦ୍ୱାରା ଗଠିତ ହୋଇଥିବା ସମ୍ରାଟ ମୌର୍ଯ୍ୟ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟର ଉଲ୍ଲେଖ ନାହିଁ । (ଡା. ଓ୍ୱିଣ୍ଟରନିଜ) କିମ୍ବା ସେହି ନବଗଠିତ ସାମ୍ରାଜ୍ୟର ରାଜଧାନୀ ପାଟଳୀପୁତ୍ରର ନାମ ମଧ୍ୟ ଉଲ୍ଲେଖ ନାହିଁ (ଡା. ଜଲି) ।

**(ii) "No great person named Kautalya did exist during the time of Chandragupta Maurya, as he is not mentioned by Megasthenes."** *(Dr. Jolly)*

ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସମୟରେ କୌଟଲ୍ୟ ନାମକ ଜଣେ ବିରାଟ ବ୍ୟକ୍ତି ଥିବା କଥା ମେଗାସ୍ଥିନିସଙ୍କ ଭାରତ ବିବରଣୀରେ ନାହିଁ । ଅତଏବ କୌଟଲ୍ୟ ବୋଲି କେହିଜଣେ ସେତେବେଳେ ନଥିଲେ (ଡା. ଜଲି) ।

**(iii) The word Kautilya meaning as it does falsehood and hypocrisy could not possibly have been adopted as the name of the famous minister of Chandragupta** *(Dr. Keith and Dr. Winternitz).*

'କୌଟିଲ୍ୟ' ଶବ୍ଦ ମିଥ୍ୟାଗୁରୁ ଓ କୁଟିଳତାର ଅର୍ଥ ବୁଝାଉଛି । ଏପରି ଗୋଟାଏ କୁଖ୍ୟାତ ବ୍ୟକ୍ତି ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ସ୍ୱନାମଧନ୍ୟ ମନ୍ତ୍ରୀରୂପେ କଦାପି ଗୃହୀତ ହୋଇନଥିବ (ଡା. କୀଥ ଓ ଓ୍ୱିଣ୍ଟରନୀଜ୍)।

ପାଶ୍ଚାତ୍ୟ ପଣ୍ଡିତମାନଙ୍କର ଏସବୁ ବିବରଣୀରୁ ଜଣାଯାଏ ଯେ, ସେମାନେ ଯେଉଁ ଦୃଷ୍ଟିକୋଣରୁ କୌଟିଲ୍ୟ ଓ ତାଙ୍କ ଅର୍ଥଶାସ୍ତ୍ରର ଅସ୍ତିତ୍ୱ ନିରୂପଣ କରିବାକୁ ଚେଷ୍ଟା କରୁଥିଲେ ସେପରି ସୁବିଧା ତାଙ୍କୁ ମିଳିଲା ନାହିଁ । ଅର୍ଥଶାସ୍ତ୍ର ଆମୂଳଚୂଳ ପାଠ ନକରି କିମ୍ବା ସେଥିରେ ଲେଖାଯାଇଥିବା ଅଧିକରଣ ଓ ପ୍ରକରଣଗୁଡ଼ିକର ମର୍ମାର୍ଥ ଅବଗତ ନହୋଇ, କେବଳ ଐତିହାସିକ ଦୃଷ୍ଟି-କୋଣରୁ ତାର ଦୋଷତ୍ରୁଟି ବାଛିଣି ବସିଲେ ପ୍ରମାଦରେ ପଡ଼ିବା ସ୍ୱାଭାବିକ । କୌଟିଲ୍ୟ ଅର୍ଥଶାସ୍ତ୍ରରେ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟ କଥା ଲେଖି ନାହାନ୍ତି କିନ୍ତୁ ଗ୍ରନ୍ଥଶେଷରେ ଲେଖିଛନ୍ତି—

"ଯେନ ଶାସ୍ତ୍ରଂ ଚ ଶସ୍ତ୍ରଂ ଚ ନନ୍ଦରାଜ ଗତା ଚ ଭୂଃ ।
ଅମର୍ଷେଣୋଦ୍ଧୃତାନ୍ୟାଶୁ ତେନ ଶାସ୍ତ୍ରମିଦଂ କୃତମ୍ ॥"

ଅର୍ଥାତ୍ (ନନ୍ଦରାଜ କୃତ) ଅନୀତିର ଅମର୍ଷରେ (ଅସହିଷ୍ଣୁତାରେ) ଯେ କି ଶାସ୍ତ୍ର, ଶସ୍ତ୍ର ଓ ନନ୍ଦରାଜାଙ୍କ ଅଧିକୃତ ଭୂମି ଆଶୁ ଉଦ୍ଧାର କରିଥିଲେ, ସେହି କୌଟିଲ୍ୟଙ୍କ ଦ୍ୱାରା ଏହି ଶାସ୍ତ୍ର ପ୍ରଣୀତ ହେଲା । ଏଥିଦ୍ୱାରା କ'ଣ ପ୍ରକାରାନ୍ତରେ ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟଲାଭ ବିଷୟ ସ୍ପଷ୍ଟ ହେଉନାହିଁ ? ଚାଣକ୍ୟ ନନ୍ଦରାଜାଙ୍କଠାରୁ ରାଜ୍ୟୋଦ୍ଧାର କରି କ'ଣ ନିଜେ ସେଥିରେ ସମ୍ରାଟ ହେଲେ ନା ଆଉ କାହାକୁ ସମ୍ରାଟ ପଦରେ ଅଭିଷିକ୍ତ କଲେ ? ଆମୂଳଚୂଳ ଗ୍ରନ୍ଥପାଠ ନକରିବା ଫଳରେ ସମାଲୋଚକଙ୍କ ମନରେ ଏପରି ସଂଶୟ ଜାତହେଲା । ସେହିପରି 'ପାଟଳୀପୁତ୍ର' କଥା ଅର୍ଥଶାସ୍ତ୍ରରେ ନାହିଁ ବୋଲି ଗୋଟିଏ ଯୁକ୍ତି କରାଯାଇଛି । ଅର୍ଥଶାସ୍ତ୍ରର ପ୍ରକରଣ ଭିତରେ ଯଦି ପାଟଳୀପୁତ୍ରର କୌଣସି ଦରକାର ଥା'ନ୍ତା ତେବେ ଗ୍ରନ୍ଥକର୍ତ୍ତା ତାକୁ ନଲେଖି ଛାଡ଼ିନଥାନ୍ତେ । ଅର୍ଥଶାସ୍ତ୍ରରେ ଅପ୍ରାସଙ୍ଗିକ କଥା ସେ ଆଦୌ ଲେଖିବେ ନାହିଁ ବୋଲି ପ୍ରଥମ ଅଧ୍ୟାୟର ଶେଷରେ କହିଛନ୍ତି—

"ସୁଖଗ୍ରହଣ ବିଜ୍ଞେୟଂ ତତ୍ତ୍ୱାର୍ଥ ପଦନିଶ୍ଚିତମ୍ ।
କୌଟିଲ୍ୟେନ କୃତଂ ଶାସ୍ତ୍ରଂ ବିମୁକ୍ତ ଗ୍ରନ୍ଥବିସ୍ତରମ୍ ॥"

ଅର୍ଥାତ୍ ନିରର୍ଥକ ପଦସଂଯୋଗଜନିତ ବିଭ୍ରମରୁ ମୁକ୍ତିଲାଭ କରିଥିବା କୌଟିଲ୍ୟ-କୃତ ଏହି ଶାସ୍ତ୍ରରେ ତତ୍ତ୍ୱ, ଅର୍ଥ ଓ ପଦର ଯଥାଯଥ ସନ୍ନିବେଶ ହୋଇଥିବା ଯୋଗୁଁ ଏହା କେବଳ ପଣ୍ଡିତମାନଙ୍କର କାହିଁକି ସୁକୁମାରମତି ପାଠକମାନଙ୍କର ମଧ୍ୟ ସୁବୋଧ ହୋଇ ପାରିଛି । ଅତଏବ ନିରର୍ଥକ ପଦସଂଯୋଗ ଯେତେବେଳେ କୌଟିଲ୍ୟଙ୍କ ଇଚ୍ଛାର ବିରୁଦ୍ଧ, ସେତେବେଳେ ପାଟଳୀପୁତ୍ର ନାମ ଉଲ୍ଲେଖ କରିବାର କୌଣସି ଆବଶ୍ୟକତା ଦେଖିଲେ ନାହିଁ ବୋଲି ସେ ଅର୍ଥଶାସ୍ତ୍ରପ୍ରଣେତା ନୁହନ୍ତି ? ଏ ବଡ଼ ଅଦ୍ଭୁତଧରଣର ଯୁକ୍ତି । ତା'ପରେ କୁହାଯାଇଛି ଯେ ମେଗାସ୍ଥିନିସ୍‌ଙ୍କ ଭାରତ ବିବରଣୀରେ କୌଟିଲ୍ୟଙ୍କ ନାମ ନାହିଁ, ଅତଏବ କୌଟିଲ୍ୟ ବା ଚାଣକ୍ୟ ନାମରେ କୌଣସି ବ୍ୟକ୍ତି ଏଦେଶରେ କେବେ ନଥିଲେ । ତେବେ ଏଦେଶରେ ମେଗାସ୍ଥିନିସ୍‌ଙ୍କ ଭାରତ ବିବରଣୀକୁ ପ୍ରାମାଣିକ ରେକର୍ଡ଼ରୂପେ ସ୍ୱୀକାର କରାଯିବ ନା ବିଷ୍ଣୁପୁରାଣ, ଦଣ୍ଡୀଙ୍କ ଦଶକୁମାରଚରିତ, ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର' ଓ କାମନ୍ଦକଙ୍କ ନୀତିସାରକୁ ପ୍ରାମାଣିକ ଗ୍ରନ୍ଥରୂପେ ଗ୍ରହଣ କରାଯିବ ? ବିଷ୍ଣୁପୁରାଣ (୪ର୍ଥ ଖଣ୍ଡ-୨୪ ଅଧ୍ୟାୟ)ରେ ଲେଖାଅଛି—

"ମହାପଦ୍ମଃ । ତତ୍ପୁତ୍ରାଶ୍ଚୈକଂ ବର୍ଷଶତମବନୀପତୟୋ ଭବିଷ୍ୟନ୍ତି ନବୈବ । ତାନ୍ନନ୍ଦାନ୍‌କୌଟିଲ୍ୟୋ ବ୍ରାହ୍ମଣସମୁଦ୍ଧରିଷ୍ୟତି । ତେଷାମଭାବେ ମୌର୍ଯ୍ୟାଶ୍ଚ ପୃଥିବୀଂ ଭୋକ୍ଷନ୍ତି । କୌଟିଲ୍ୟ ଏବ ଚନ୍ଦ୍ରଗୁପ୍ତଂ ରାଜ୍ୟେଽଭି-ଷେକ୍ଷ୍ୟତି । ତସ୍ୟାପି ପୁତ୍ରୋ ବିନ୍ଦୁସାରୋ ଭବିଷ୍ୟତି । ତସ୍ୟାପ୍ୟ-ଶୋକବର୍ଦ୍ଧନଃ ।"

ଅର୍ଥାତ୍—ପ୍ରଥମେ ମହାପଦ୍ମ, ତା'ପରେ ତାଙ୍କ ପୁତ୍ରମାନେ, ଏପରି ସର୍ବମୋଟ ନବ ନନ୍ଦ ଏକଶତ ବର୍ଷପର୍ଯ୍ୟନ୍ତ ପୃଥିବୀର ରାଜା ହେବେ । ସେହି ନନ୍ଦରାଜାମାନଙ୍କଠାରୁ କୌଟିଲ୍ୟ ନାମକ ବ୍ରାହ୍ମଣ ଏହି ରାଜ୍ୟ ଉଦ୍ଧାର କରିବେ ଏବଂ ଏହି କୌଟିଲ୍ୟ ଚନ୍ଦ୍ରଗୁପ୍ତଙ୍କୁ ତକ୍ତ ରାଜସିଂହାସନରେ ଅଭିଷିକ୍ତ କରିବେ । ଚନ୍ଦ୍ରଗୁପ୍ତଙ୍କ ପୁତ୍ର ବିନ୍ଦୁସାର ଏବଂ ତାଙ୍କ ପୁତ୍ର ଅଶୋକବର୍ଦ୍ଧନ ନାମରେ ଖ୍ୟାତ ହେବେ । ଦଣ୍ଡୀ ତା'ଙ୍କ ଦଶକୁମାରଚରିତର ଅଷ୍ଟମୋଚ୍ଛ୍ୱାସରେ ଲେଖିଚନ୍ତି—

"ଅଧୀଷ୍ୱ ତାବଦ୍ଦଣ୍ଡନୀତିଂ ଇୟମିଦାନୀଂ ଆଚାର୍ଯ୍ୟ ବିଷ୍ଣୁଗୁପ୍ତେନ ମୌର୍ଯ୍ୟାର୍ଥେ ଷଡ଼୍‌ଭିଃ ଶ୍ଲୋକ ସହସ୍ରୈଃ ସଂକ୍ଷିପ୍ତା" ।

ଅର୍ଥାତ୍—"ଅଗ୍ରଜ୍ଞ ବିଷ୍ଣୁଗୁପ୍ତ (କୌଟଲ୍ୟ) ମୌର୍ଯ୍ୟ ଚନ୍ଦ୍ରଗୁପ୍ତଙ୍କ ନୀତିଶାସ୍ତ୍ରର ଅଧ୍ୟୟନ ଓ ପ୍ରୟୋଗ ପାଇଁ ଯେଉଁ ଦଣ୍ଡନୀତି (ଅର୍ଥଶାସ୍ତ୍ର) ବର୍ତ୍ତମାନ ମାତ୍ର ଛ'ହଜାର ଶ୍ଳୋକରେ ରଚନା କରିଚନ୍ତି ତାକୁ ତୁମେ ଅଧ୍ୟୟନ କର ।"

ସେହିପରି ବିଷ୍ଣୁଶର୍ମା ତାଙ୍କ 'ପଞ୍ଚତନ୍ତ୍ର'ରେ ନୀତିଶାସ୍ତ୍ରକାରମାନଙ୍କୁ ନମସ୍କାର କରିବାକୁ ଯାଇ କହିଚନ୍ତି—

"ମନବେ ବାଚସ୍ପତୟେ ଶୁକ୍ରାୟ ପରାଶରାୟ ସସୁତାୟ ।
ଚାଣକ୍ୟାୟ ଚ ବିଦୁଷେ ନମୋଽସ୍ତୁ ନୟଶାସ୍ତ୍ର କର୍ତ୍ତୃଭ୍ୟଃ ।"

ଅର୍ଥାତ୍—ମନୁ, ବୃହସ୍ପତି, ଶୁକ୍ର, ବ୍ୟାସ ସହିତ ପରାଶର, ବିଦ୍ୱାନ ଚାଣକ୍ୟ ଓ ଅନ୍ୟାନ୍ୟ ନୀତିଶାସ୍ତ୍ରକାରମାନଙ୍କୁ ମୋର ନମସ୍କାର ।

'ନୀତିସାର' ପ୍ରଣେତା କାମନ୍ଦକ (ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀ) କୌଟଲ୍ୟଙ୍କ ମହିମା ବର୍ଣ୍ଣନ କରିବାକୁ ଯାଇ କହିଚନ୍ତି—

"ବଂଶେବିଶାଲବଂଶାନା ମୃଷୀଣାମିବଭୂୟସାମ୍ ।
ଅପ୍ରତିଗ୍ରାହକାଣାଂ ଯୋ ବଭୂବ ଭୁବିବିଶ୍ରୁତଃ ॥

ଜାତବେଦା ଇବାର୍ଚ୍ଚିଷ୍ମାନ୍ ବେଦାନ୍ ବେଦବିଦାଂ ବରଃ ।
ଯୋଽଧୀତିବାନ୍ ସୁଚତୁରଶ୍ଚତୁରୋଽପ୍ୟେକ ବେଦବତ୍ ॥

ଯସ୍ୟାଭିଚାରବଜ୍ରେଣ ବଜ୍ରଜ୍ୱଲନତେଜସଃ ।
ପପାତମୂଲତଃଶ୍ରୀମାନ୍‌ସୁପର୍ବାନନ୍ଦପର୍ବତଃ ॥

ଏକାକୀ ମନ୍ତ୍ରଶକ୍ତ୍ୟା ଯଃ ଶକ୍ତ୍ୟା ଶକ୍ତିଧରୋପମଃ ।
ଆଜହାର ନୃଚନ୍ଦ୍ରାୟ ଚନ୍ଦ୍ରଗୁପ୍ତାୟ ମେଦିନୀମ୍ ॥

ନୀତିଶାସ୍ତ୍ରାମୃତଂ ଧୀମାନର୍ଥଶାସ୍ତ୍ରମହୋଦଧେଃ ।
ସମୁଦ୍ଦଧ୍ରେ ନମସ୍ତସ୍ମୈ ବିଷ୍ଣୁଗୁପ୍ତାୟ ବେଧସେ ॥

ଦର୍ଶନାତ୍ତସ୍ୟ ସୁଦୃଶୋ ବିଦ୍ୟାନାଂ ପାରଦୃଶ୍ୱନଃ ।
ଯତ୍କିଂଚିଦୁପଦେକ୍ଷ୍ୟାମଃ ରାଜବିଦ୍ୟାବିଦାଂ ମତମ୍ ।"

ଅର୍ଥାତ୍—ଯେ ଅପ୍ରତିଗ୍ରହଶୀଳ ବିଶାଳକୁଳରେ, ମହାନ୍ ମହର୍ଷିମାନଙ୍କପରି ପ୍ରସିଦ୍ଧ ବଂଶରେ ଜନ୍ମଗ୍ରହଣ କରି ପୃଥିବୀବିଖ୍ୟାତ ହୋଇଥିଲେ,

ଯେ ଅଗ୍ନିସମାନ ତେଜସ୍ୱୀ ଏବଂ ଯେ ଗୁରବେଦକୁ ଗୋଟିଏ ବେଦପରି ପାଠ କରିଥିଲେ, ଯେ ବଜ୍ରାଗ୍ନି ସଦୃଶ ମନ୍ତ୍ର ଓ ଅଭିଗୃହ ବଜ୍ରପ୍ରହାର ଦ୍ୱାରା ନନ୍ଦବଂଶରୂପୀ ପର୍ବତକୁ ସମୂଳେ ନଷ୍ଟ କରିଥିଲେ, ଯେ ପରାକ୍ରମରେ କାର୍ତ୍ତିକେୟ ସମାନ, ଯେ ଏକାକୀ ମନ୍ତ୍ରଶକ୍ତିର (ମନ୍ତ୍ରଣାଶକ୍ତିର) ପ୍ରଭାବରେ ହିଁ ଚନ୍ଦ୍ରଗୁପ୍ତଙ୍କୁ ସାମ୍ରାଜ୍ୟେଶ୍ୱର କରାଇଥିଲେ, ଯେ ଅର୍ଥଶାସ୍ତ୍ରରୂପୀ ସମୁଦ୍ର ମନ୍ଥନପୂର୍ବକ ନୀତିଶାସ୍ତ୍ରରୂପୀ ଅମୃତ ଆବିଷ୍କାର କରିଥିଲେ, ସେହି ଅସୀମଗୁଣସମ୍ପନ୍ନ ବିଷ୍ଣୁଗୁପ୍ତଙ୍କୁ ନମସ୍କାର କରୁଛି ।

ଏପରି ପୁରାଣଶାସ୍ତ୍ରର ପ୍ରମାଣ ଥାଉ ଥାଉ ମେଗାସ୍ଥିନିସ୍‌ଙ୍କ ଭାରତ ବିବରଣୀ ଯେ ଏଦେଶର କାହିଁକି ଏକ ପ୍ରାମାଣିକ ରେକର୍ଡ଼ ହେବ, ତାର କିଛି ମାନେ ଅଛି ? ଯେଉଁମାନେ ସଂସ୍କୃତଭାଷାଧ୍ୟୟନ କରି ପୁରାଣଶାସ୍ତ୍ର ପଢ଼ୁଛନ୍ତି, ସେମାନଙ୍କର ବୋଧହୁଏ ଏପରି ଭ୍ରମଧାରଣା ନଥିବ । ମେଗାସ୍ଥିନିସ୍ ଲେଖନ୍ତୁ ବା ନ ଲେଖନ୍ତୁ, ଚାଣକ୍ୟଙ୍କ ବିଷୟରେ ଆମ ଦେଶରେ ଉପରୋକ୍ତ ଲେଖାଗୁଡ଼ିକ ଯଥେଷ୍ଟ ପ୍ରମାଣ ଦେଇ ପାରିବେ । ବିଦେଶୀ ଲୋକ ଏଦେଶର ସବୁକଥା ଜାଣିବାର ତାଙ୍କର କିଛି ହକ ଅଛି କି ? ସେ ଆସିବାବେଳେ ଯାହା ଯାହା ଶୁଣିଲେ ବା ଜାଣିଲେ ତାହା ସବୁ ଲେଖିଯାଇଛନ୍ତି । ସେ ଲେଖିନାହାନ୍ତି ବୋଲି ଯେ କୌଟିଲ୍ୟ ବୋଲି କିଏ ଏଦେଶରେ ନଥିଲେ, ଏପରି ଭାବିବା ମାତ୍ର ମୂଢ଼ତାର ପରିଚୟକ ।

ତା'ପରେ ଆଉ ଗୋଟାଏ ଯୁକ୍ତି ହେଲା ଯେ 'କୌଟିଲ୍ୟ' ନାମ ଗୋଟାଏ କୁଟିଳ ପ୍ରକୃତିର ଲୋକଙ୍କୁ ସମ୍ରାଟ ଚନ୍ଦ୍ରଗୁପ୍ତ କଦାପି ମନ୍ତ୍ରୀରୂପେ ବାଛୁନଥିବେ । ମାତ୍ର ସମାଲୋଚକ ଏହାଙ୍କର ପ୍ରକୃତ ନାମ 'କୌଟଲ୍ୟ' ସିନା, 'କୌଟିଲ୍ୟ' ନୁହେ ବୋଲି ଭଲଭାବେ ଜାଣନ୍ତି କି ? ଉପର୍ଯ୍ୟୁକ୍ତ ଉଦ୍ଧରଣମାନଙ୍କରେ ସେହି ଜଣେମାତ୍ର ବ୍ୟକ୍ତିଙ୍କୁ 'କୌଟଲ୍ୟ', 'ଚାଣକ୍ୟ' ଓ 'ବିଷ୍ଣୁଗୁପ୍ତ' ନାମରେ ନାମିତ କରାଯାଇଛି । ଏହାର ବିବରଣୀ ଦେବାକୁ ଯାଇ ପ୍ରସିଦ୍ଧ ଟୀକାକାର ମହାମହୋପାଧ୍ୟାୟ ଗଣପତିଶାସ୍ତ୍ରୀ ଲେଖିଛନ୍ତି—

"ଅସ୍ୟ ଶାସ୍ତ୍ରସ୍ୟ ପ୍ରଣେତା ତତ୍ର ଭବାନ୍ ଆର୍ଯ୍ୟଃ କୌଟଲ୍ୟଶ୍ଚାଣକ୍ୟୋ ବିଷ୍ଣୁଗୁପ୍ତ ଇତି ତ୍ରିଧା ସଂଜ୍ଞାୟତେ । କୁଟଲୋ ନାମ ଗୋତ୍ର ପ୍ରବର୍ତ୍ତକର୍ଷିଃ ତସ୍ୟ ଗୋତ୍ରାପତ୍ୟଂ 'କୌଟଲ୍ୟ' ଇତି ସଂଜ୍ଞା ଗୋତ୍ର ନିବନ୍ଧନା, ଚଣକୋ

ଦେଶବିଶେଷସ୍ତଥ୍ରମିଦ୍ଧା ଚାଣକ୍ୟ ଇତି ଦେଶନିବନ୍ଧନା, ବିଷ୍ଣୁନା ଗୁପ୍ତୋ ରକ୍ଷିତ ଇତ୍ୟର୍ଥିକା ବିଷ୍ଣୁଭକ୍ତେନ ପିତା ନାମକରଣ ସଂସ୍କାର କାଳେ କୃତା ବିଷ୍ଣୁଗୁପ୍ତ ଇତ୍ୟେଷା ସାଂସ୍କାରିକୀ ସଂଜ୍ଞା ।"

ଅର୍ଥାତ୍ ଏହି ଗ୍ରନ୍ଥପ୍ରଣେତାଙ୍କର କୌଟଲ୍ୟ, ଚାଣକ୍ୟ ଓ ବିଷ୍ଣୁଗୁପ୍ତ ଏପରି ତିନୋଟି ନାମ ପ୍ରସିଦ୍ଧ । କୁଟଲ ଗୋତ୍ରରେ ଜନ୍ମଗ୍ରହଣ କରିଥିବା ଯୋଗୁଁ ଏହାଙ୍କର ଗୋତ୍ରୀୟ ନାମ 'କୌଟଲ୍ୟ', ଚଣକ ନାମକ (ତକ୍ଷଶିଳା ଅଞ୍ଚଳର) ଏକ ସ୍ଥାନରେ ଜନ୍ମଗ୍ରହଣ କରିଥିବାରୁ ଏହାଙ୍କର ଦେଶ ସମ୍ବନ୍ଧୀୟ ନାମ 'ଚାଣକ୍ୟ' ଏବଂ ନାମକରଣ ସଂସ୍କାର ବେଳେ ବିଷ୍ଣୁଭକ୍ତ ପିତାଙ୍କଦ୍ୱାରା ଶ୍ରଦ୍ଧାରେ ଦିଆଯାଇଥିବା ନାମ 'ବିଷ୍ଣୁଗୁପ୍ତ' ( ଅର୍ଥାତ୍ ବିଷ୍ଣୁରକ୍ଷିତ ) । ନନ୍ଦରାଜାଙ୍କ ଉଚ୍ଛେଦକର ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସାମ୍ରାଜ୍ୟରକ୍ଷାର ଚରମ ଦାୟିତ୍ୱ ବହନପୂର୍ବକ ସକଳକ୍ଷେତ୍ରରେ ଶତ୍ରୁପ୍ରଯୁକ୍ତ ଶଠ ଉପାୟମାନଙ୍କୁ ଶଠ ଉପାୟଦ୍ୱାରା ହିଁ ପ୍ରତିହତ କରିବା ଯୋଗୁଁ ଏହାଙ୍କର ଶୁଦ୍ଧ ନାମ 'କୌଟଲ୍ୟ' ପରିବର୍ତ୍ତେ 'କୌଟିଲ୍ୟ' ବୋଲି ଗୋଟିଏ ଅଶୁଦ୍ଧ ନାମର ସୃଷ୍ଟି ହୋଇଛି । ରାଜନୀତିର କୁଟିଳତା ଭିତରେ ବହୁକାଳ ଧରି ଚଳିବା ହେତୁ କୌଟଲ୍ୟଙ୍କ ଏ ଗୋତ୍ରୀୟ ନାମ ପ୍ରତି କେହି ଦୃଷ୍ଟି ଦିଅନ୍ତି ନାହିଁ । ବିଶେଷତଃ ବିଜ୍ଞ ଓ ବେଦବିତ୍‌ମାନଙ୍କ ବ୍ୟତୀତ ଅନ୍ୟମାନେ ବ୍ରାହ୍ମଣମାନଙ୍କ ଗୋତ୍ର-ପ୍ରବର କଥା ସେତେ ବୁଝନ୍ତି ନାହିଁ । ତେଣୁ କୌଟଲ୍ୟଙ୍କ କାର୍ଯ୍ୟକଳାପ ବିଷୟରେ 'ମୁଦ୍ରାରାକ୍ଷସ' ପ୍ରଭୃତି ନାଟକରୁ ଓ ଇତିହାସମାନଙ୍କରୁ ଲୋକେ ଯାହା ଶୁଣୁଚନ୍ତି ତଦନୁସାରେ ତାଙ୍କ ନାମ 'କୌଟିଲ୍ୟ' ହୋଇଥିବ ବୋଲି ଭାବି ତାଙ୍କୁ ଏପରି ଡାକୁଚନ୍ତି ।

ଏହି କୌଟଲ୍ୟଙ୍କୁ କେତେକ ଅଭିଧାନରେ ବାତ୍ସ୍ୟାୟନ ମୁନି ବୋଲି ମଧ୍ୟ ଲେଖାଯାଇଛି । କାମସୂତ୍ର ଲେଖକ ବାତ୍ସ୍ୟାୟନ ଯେଉଁ ସୂତ୍ରାତ୍ମକ ଗ୍ରନ୍ଥ ଲେଖିଚନ୍ତି ସେଥିରେ କୌଟଲ୍ୟଙ୍କ ଅର୍ଥଶାସ୍ତ୍ରରେ ଥିବା କେତେକ ସୂତ୍ରର ଛାୟା ଦେଖିବାକୁ ମିଳେ । ଏଣେ କୌଟଲ୍ୟ ତାଙ୍କ ଅର୍ଥଶାସ୍ତ୍ରକୁ ଛ'ସହସ୍ର ଶ୍ଳୋକରେ ପ୍ରଣୟନ କରିଥିଲେ ବୋଲି (ଷଡ଼୍‌ଭିଃ ଶ୍ଳୋକ ସହସ୍ରୈଃ—ଦଣ୍ଡୀ) ଲେଖାଥିବା ସ୍ଥଳେ ବର୍ତ୍ତମାନ ମିଳୁଥିବା ଅର୍ଥଶାସ୍ତ୍ର ବାତ୍ସ୍ୟାୟନଙ୍କ କାମସୂତ୍ର ପରି ସୂତ୍ରବହୁଳ ହୋଇଛି । ଏଣୁ ପାଠକମାନେ ଗୋଟାଏ ଧନ୍ଦାରେ ପଡ଼ି କୌଟଲ୍ୟଙ୍କୁ ବାତ୍ସ୍ୟାୟନ ବୋଲି କହନ୍ତି ପିନା,

ପ୍ରକୃତରେ ବାତ୍ସ୍ୟାୟନ କୌଟିଲ୍ୟ ନୁହନ୍ତି । କୌଟିଲ୍ୟଙ୍କ ପ୍ରଥମ ରଚନା ଶ୍ଳୋକମୟ ହୋଇ ଥାଇପାରେ । କିନ୍ତୁ ପରବର୍ତ୍ତୀ କାଳରେ ସେ ତାକୁ ସୂତ୍ରାକାରରେ ସଜାଇ ଏବଂ ସେହି ସୂତ୍ରଗୁଡ଼ିକର ଭାଷ୍ୟ ନିଜେ ଲେଖି ଭାଷ୍ୟକାରମାନଙ୍କ ପ୍ରମାଦରୁ ତାଙ୍କ ଶାସ୍ତ୍ରର ଅର୍ଥ ଅନର୍ଥରେ ପରିଣତ ହୋଇ ସମାଜର ଅହିତ ସାଧନ ଯେପରି ନକରେ ସେପରି ସତର୍କତା ଅବଲମ୍ବନ କରିଚନ୍ତି । ତେଣୁ ସେ ଅର୍ଥଶାସ୍ତ୍ରର ସର୍ବଶେଷରେ ଲେଖିଚନ୍ତି—

"ଦୃଷ୍ଟ୍ୱା ବିପ୍ରତିପତ୍ତି ବହୁଧା ଶାସ୍ତ୍ରେଷୁ ଭାଷ୍ୟକାରାଣାମ୍ ।
ସ୍ୱୟମେବ ବିଷ୍ଣୁଗୁପ୍ତଶ୍ଚକାର ସୂତ୍ରଂ ଚ ଭାଷ୍ୟଂ ଚ ।"

(ଶାସ୍ତ୍ରମାନଙ୍କରେ ଭାଷ୍ୟକାରମାନଙ୍କର ବହୁବିଧ ବୈସାଦୃଶ୍ୟ ଦେଖି ସ୍ୱୟଂ ବିଷ୍ଣୁଗୁପ୍ତ ତାଙ୍କ ଅର୍ଥଶାସ୍ତ୍ରର ସୂତ୍ର ଓ ଭାଷ୍ୟ କରିଯାଇଚନ୍ତି) । ଅର୍ଥଶାସ୍ତ୍ରର ସୂତ୍ର ସହିତ କାମସୂତ୍ରର ସୂତ୍ରଗୁଡ଼ିକ କିପରି ମେଳଖାଉଚି ଏବଂ କାମସୂତ୍ରକାର ଅର୍ଥଶାସ୍ତ୍ରକାରଙ୍କ ସହ ସୌସାଦୃଶ୍ୟ ରକ୍ଷି ଗତ କରିଥିବା ଯୋଗୁଁ ଲୋକେ କିପରି ବାତ୍ସ୍ୟାୟନଙ୍କ ସ୍ଥାନରେ କୌଟିଲ୍ୟଙ୍କୁ ଏବଂ କୌଟିଲ୍ୟଙ୍କ ସ୍ଥାନରେ ବାତ୍ସ୍ୟାୟନଙ୍କୁ ଭେଲିକରେ ଭେଟୁଚନ୍ତି, ତଳେ ଦିଆଯାଇଥିବା ପଂକ୍ତିଗୁଡ଼ିକରୁ ତାହା ସହଜେ ଜଣା ପଡ଼ିଯିବ ।

| କାମସୂତ୍ର | ଅର୍ଥଶାସ୍ତ୍ର |
|---|---|
| ୧ । କାମସୂତ୍ରମିଦଂ ପ୍ରଣୀତମ୍ । ତସ୍ୟାୟଂ ପ୍ରକରଣାଧିକରଣ ସମୁଦ୍ଦେଶଃ । ୧-୧ | ଇଦମର୍ଥଶାସ୍ତ୍ରଂ କୃତମ୍ । ତସ୍ୟାୟଂ ପ୍ରକରଣାଧିକରଣ ସମୁଦ୍ଦେଶଃ । ବିଦ୍ୟା ସମୁଦ୍ଦେଶଃ ।···ଔପନିଷଦିକମ୍ । ୧-୧ |
| ୨ । ଯଥା ଦାଣ୍ଡକ୍ୟନାମଭୋଜଃ କାମାଦ୍ ବ୍ରାହ୍ମଣକନ୍ୟାମଭିମନ୍ୟ ମାନସ୍ସବନ୍ଧୁ ରାଷ୍ଟ୍ରୋବିନନାଶ । ରାବଣଶ୍ଚ ସୀତା-ମପରେ ଶୃନ୍ୟେ ଚ ବହବୋ ଦୃଶ୍ୟନ୍ତେ କାମବଶଗା ବିନଷ୍ଟା ଇତ୍ୟର୍ଥ ଚିନ୍ତକାଃ । ୧-୨ | ଯଥା ଦାଣ୍ଡକ୍ୟନାମ ଭୋଜଃ କାମାଦ୍ ବ୍ରାହ୍ମଣକନ୍ୟାମଭିମନ୍ୟ ମାନସ୍ସବନ୍ଧୁ ରାଷ୍ଟ୍ରୋବିନନାଶ । ରାବଣଃ ପରଦାରା-ନପ୍ରଯୁଚ୍ଛନ୍ ··ଏତେ ଶୃନ୍ୟେ ଚ ବହବଃ ଶତ୍ରୁଷଡ୍‌ବର୍ଗମାଶ୍ରିତାଃ । ସବନ୍ଧୁରାଷ୍ଟ୍ରା ରାଜାନୋ ବିନେଶୁରଜିତେନ୍ଦ୍ରିୟାଃ । ୧-୬ |
| ୩ । କାମୋପଧାଶୁଦ୍ଧାନ୍ରକ୍ଷିଣୋନ୍ତଃ ପୁରେ ସ୍ଥାପୟେଦିତ୍ୟାଚାର୍ଯ୍ୟାଃ । ୧-୬ | କାମୋପଧାଶୁଦ୍ଧାନ୍ ବାହ୍ୟାଭ୍ୟଂତର ବିହାରରକ୍ଷାସୁ । ୧-୧୦ |

| କାମସୂତ୍ର | ଅର୍ଥଶାସ୍ତ୍ର |
|---|---|
| ୧। ଅର୍ଥୋ ଧର୍ମ କାମ ଇତ୍ୟର୍ଥ ତ୍ରିବର୍ଗଃ ଅନର୍ଥୋଽଧର୍ମୋ ଦ୍ୱେଷ ଇତ୍ୟନର୍ଥ ତ୍ରିବର୍ଗଃ । | ଅର୍ଥୋଧର୍ମଃ କାମ ଇତ୍ୟର୍ଥ ତ୍ରିବର୍ଗଃ ଅନର୍ଥୋଽଧର୍ମଶ୍ଶୋକ ଇତ୍ୟନର୍ଥ ତ୍ରିବର୍ଗଃ ୯-୭ |

ଏପରି ଅନେକ ଜାଗାରେ କୌଟିଲ୍ୟ ଓ ବାତ୍ସ୍ୟାୟନଙ୍କ ଲେଖାର ସାମଞ୍ଜସ୍ୟ ରହିଥିବା ଯୋଗୁଁ କେତେକ ପଣ୍ଡିତ କୌଟିଲ୍ୟ ଯିଏ ବାତ୍ସ୍ୟାୟନ ମଧ୍ୟ ସିଏ ବୋଲି କହିଚନ୍ତି । କିନ୍ତୁ ଏହି ସିଦ୍ଧାନ୍ତ ନିତାନ୍ତ ଅମୂଳକ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରର ସୂତ୍ରାନୁସରଣ ପୂର୍ବକ ପରବର୍ତ୍ତୀ କାମସୂତ୍ରକାର (ବାତ୍ସ୍ୟାୟନ) ତାଙ୍କର ଲେଖା ଲେଖିଚନ୍ତି । ବାତ୍ସ୍ୟାୟନଙ୍କ ପ୍ରକୃତ ନାମ ମଲ୍ଲନାଗ । ବତ୍ସ ଗୋତ୍ରରେ ଜନ୍ମଗ୍ରହଣ କରିଥିବା ଯୋଗୁଁ ତାଙ୍କର ଗୋତ୍ରିୟ ନାମ ହେଉଚି 'ବାତ୍ସ୍ୟାୟନ' । ସେହିପରି ଅନ୍ୟ କେତେଜଣ ମଧ୍ୟ ଯୁକ୍ତି କରନ୍ତି ଯେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଯାଜ୍ଞବଲ୍କ୍ୟଙ୍କ ନାମୋଲ୍ଲେଖ ନାହିଁ, ଅତଏବ କୌଟିଲ୍ୟ ବୋଲି କେହି ଜଣେ ନଥିଲେ ବା ତାଙ୍କଦ୍ୱାରା ଅର୍ଥଶାସ୍ତ୍ର ରଚିତ ହୋଇନାହିଁ । ମାତ୍ର ସେକାଳର ଲୋକେ ନିଜ ନିଜ ସ୍ଥାନରେ ରହି କିଏ କାହାକୁ ଚିହ୍ନାନପଡ଼ି ଯେପରି ଏକାନ୍ତ ସାଧନାନିରତ ଥିଲେ, ସେଥିରେ କୌଟିଲ୍ୟ ଓ ଯାଜ୍ଞବଲ୍କ୍ୟ ଏକାସମୟର ହୋଇ ମଧ୍ୟ କିଏ କାହାକୁ ନଜାଣି ଜଣେ ଅର୍ଥଶାସ୍ତ୍ର ଓ ଅନ୍ୟଜଣେ ଧର୍ମଶାସ୍ତ୍ର ରଚନାରେ ପ୍ରବୃତ୍ତ ହୋଇଥାଇ ପାରନ୍ତି । ଉଭୟ ମନୀଷୀ ମନୁସଂହିତା ଅଧ୍ୟୟନ କରିଥିବା କଥା ତାଙ୍କ ଲେଖାରୁ ଜଣାପଡ଼େ । କିନ୍ତୁ ଏ ଦୁହେଁ କେହି କାହା କଥା ଅଦୌ କେଉଁଠାରେ ହେଲେ ଲେଖି ନାହାନ୍ତି । ତା'ବୋଲି ଯେ କୌଟିଲ୍ୟ ବା ଯାଜ୍ଞବଲ୍କ୍ୟ ଯଥାକ୍ରମେ ଅର୍ଥଶାସ୍ତ୍ର ଓ ଧର୍ମଶାସ୍ତ୍ର ଲେଖିନଥିଲେ, ଏପରି ଭାବିବା ନିରର୍ଥକ । ସେ ଯୁଗରେ ଏପରି ବହୁ ବରିଷ୍ଠ ବ୍ୟକ୍ତି କେହି କାହା କଥା ନଜାଣି ରହିଥିବା ଅନେକ ସ୍ଥାନରୁ ଜଣାପଡ଼େ ।

କୌଟିଲ୍ୟ ମୌର୍ଯ୍ୟ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ନଥିଲେ ବୋଲି କେତେଜଣ ପାଶ୍ଚାତ୍ୟ ପଣ୍ଡିତ ଯୁକ୍ତି କରୁଥିବା ବେଳେ ଜଣେ ପ୍ରସିଦ୍ଧ ଐତିହାସିକ ଭିନ୍‌ସେଣ୍ଟ୍ ଏ. ସ୍ମିଥ୍ ତାଙ୍କ ଇତିହାସରେ ଚନ୍ଦ୍ରଗୁପ୍ତ, କୌଟିଲ୍ୟ ଓ ତାଙ୍କ ଅର୍ଥଶାସ୍ତ୍ର ବିଷୟରେ ଲେଖିଚନ୍ତି—

"All traditions agree that the ship of the state was steered with exceptional ability by his Brahmin minister, whose writings show that his state-craft was not hampered by any moral scruples." (*Abridged History*, page 75)

"ସମସ୍ତ ଐତିହ୍ୟ ସ୍ୱୀକାର କରନ୍ତି ଯେ ସେହି (ଚନ୍ଦ୍ରଗୁପ୍ତଙ୍କ) ସାମ୍ରାଜ୍ୟ-ନୌକା ତାଙ୍କ ବ୍ରାହ୍ମଣମନ୍ତ୍ରୀଙ୍କ ଦ୍ୱାରା ଅସାଧାରଣ ସାମର୍ଥ୍ୟର ସହିତ ଚାଳିତ ହେଉଥିଲା, ଯାହାଙ୍କ ରାଜ୍ୟଶାସନକୌଶଳ କୌଣସି ନୈତିକ ଦ୍ୱିଧାଦ୍ୱାରା ଅବଦ୍ଧ ନଥିଲା ବୋଲି ତାଙ୍କ ଲେଖାବଳୀ ପ୍ରମାଣିତ କରନ୍ତି ।" ଏଥିଦ୍ୱାରା ଚନ୍ଦ୍ରଗୁପ୍ତ, କୌଟଲ୍ୟ, କୌଟଲ୍ୟଙ୍କ ମନ୍ତ୍ରିତ୍ୱ ଏବଂ ଅର୍ଥଶାସ୍ତ୍ରର ସାରବତ୍ତା ଏକାଧାରରେ ପ୍ରମାଣିତ ହୋଇଯାଉଚି । ଯେଉଁମାନେ ଜାଣିଶୁଣି ପ୍ରକୃତ କଥାର ଅପଳାପ କରିବା ପାଇଁ ନାନା ଯୁକ୍ତି ବାଢ଼ିବସନ୍ତି, ସେମାନଙ୍କ ନିକଟରେ ବାସ୍ତବ ତଥ୍ୟର ଅନୁସନ୍ଧାନ ନିରର୍ଥକ । ସେମାନେ ଉପରୋକ୍ତ ଐତିହାସିକ ବର୍ଣ୍ଣନା ପ୍ରତି ଅବହିତ ନହୋଇ କେବଳ ମନମୁତାବକ କଥା କହିଯାଇଚନ୍ତି ।

ଯେତେବେଳେ ଏହି ଦେଶ ଅନାର୍ଯ୍ୟମାନଙ୍କଦ୍ୱାରା ଅଧ୍ୟୁଷିତ, ଯେତେ-ବେଳେ ବୈଦିକ ବର୍ଣ୍ଣାଶ୍ରମଧର୍ମର ବିଲୋପସାଧନ ପାଇଁ ବିଗତ ତିନିଶହ ବର୍ଷଠାରୁ ଆନ୍ଦୋଳନ ଚାଲିଚି, ଯେତେବେଳେ ଦେଶରେ ଶ୍ରମଣ ବ୍ରାହ୍ମଣଙ୍କ ମଧ୍ୟରେ ସାମ୍ପ୍ରଦାୟିକ ସଂଘର୍ଷ ଲାଗିରହିଚି ଏବଂ ସାରା ଭାରତର ଲୋକେ ଯେତେବେଳେ ନାସ୍ତିକତା ଆଡ଼କୁ ଓଟାରିହୋଇ ଯାଉଚନ୍ତି, ଠିକ୍ ସେତିକ-ବେଳେ ଏହି ମତମାନ ଚାଣକ୍ୟ ରାଜନୀତି କ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ଆର୍ଯ୍ୟ ମର୍ଯ୍ୟାଦାର ଶୃଙ୍ଖଳ ଭିତରେ ଏଦେଶର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବିକାଶକୁ ନିୟନ୍ତ୍ରିତ କରିବା ପାଇଁ ଏହାଙ୍କୁ ବଡ଼ କଠୋର ବ୍ୟବସ୍ଥାମାନ ଗ୍ରହଣ କରିବାକୁ ପଡ଼େ । ରାଜନୀତି କ୍ଷେତ୍ରରେ ନିନ୍ଦା ପ୍ରଶଂସା, ଅପମାନ ଓ ସମ୍ମାନ ଲାଗି ରହିଥାଏ । ଏଥିରେ ଟଳମଳ ହେବା ବ୍ୟକ୍ତି ଶାସନଦାୟିତ୍ୱ ସକ୍ଷମଭାବେ ତୁଲାଇ ପାରିବ ନାହିଁ । ସ୍ୱଧର୍ମର ପ୍ରତିଷ୍ଠା ପାଇଁ ଯେତେ ବାଧାବିଘ୍ନ ପଡ଼ିଥିଲେ ମଧ୍ୟ ତାକୁ ଏଡ଼ାଇ ଦେବାର ଶକ୍ତି ଶାସକଙ୍କର ରହିବା ଆବଶ୍ୟକ । ଚାଣକ୍ୟ ଏଥିପାଇଁ କହିଚନ୍ତି—

ତସ୍ମାତ୍ ସ୍ୱଧର୍ମଂ ଭୂତାନାଂ ରାଜାନବ୍ୟଭିଚାରୟେତ୍ ।
ସ୍ୱଧର୍ମ ସନ୍ଦଧାନୋ ହି ପ୍ରେତ୍ୟ ଚେହ ଚ ନନ୍ଦତି ॥

ଅତଏବ ରାଜା ପ୍ରଜାମାନଙ୍କୁ ସ୍ୱଧର୍ମର ବ୍ୟଭିଚାର କରିବା ପାଇଁ କଦାପି ସୁବିଧା ଦେବେନାହିଁ । କାରଣ ସ୍ୱଧର୍ମ ସମ୍ୟକ୍‌ଭାବେ ଅନୁଷ୍ଠିତ ହେଲେ ଇହଲୋକ ଓ ପରଲୋକରେ ଆନନ୍ଦ ମିଳେ ।

× × × ×

କୌଟିଲ୍ୟ ଓ ତାଙ୍କର ଏହି ଅର୍ଥଶାସ୍ତ୍ର ବିଷୟରେ ଯେତେ ମତ ମତାନ୍ତର ଥିଲେ ମଧ୍ୟ ନିର୍ଦ୍ୱନ୍ଦରେ ଏଦେଶର ସମସ୍ତେ ଏ ଦୁଇଟିର ଅସ୍ତିତ୍ୱ ବିଷୟରେ ଏକମତ । କୌଟିଲ୍ୟ ବା ଚାଣକ୍ୟ ନାମକ ଜଣେ ମହାପଣ୍ଡିତ ଏଦେଶରେ ଥିଲେ ଏବଂ ସେ ତାଙ୍କ ଅସାଧାରଣ ବୁଦ୍ଧି ବିଦ୍ୟାବଳରେ ମୌର୍ଯ୍ୟ ଚନ୍ଦ୍ରଗୁପ୍ତଙ୍କୁ ମଗଧ ସାମ୍ରାଜ୍ୟର ସମ୍ରାଟ କରାଇ ନିଜର ମହିମା ପ୍ରକଟ କରିବା ସଙ୍ଗେ ସଙ୍ଗେ ନିଜର ବିଦ୍‌ବତ୍ତା, ବହୁଦର୍ଶିତା ଓ ବିରାଟ ଅନୁଭୂତିର ନିଦର୍ଶନ ସ୍ୱରୂପ 'ଅର୍ଥଶାସ୍ତ୍ର' ନାମକ ଗୋଟିଏ ଅତି ଉପାଦେୟ ଗ୍ରନ୍ଥ ଲେଖିଯାଇଛନ୍ତି ବୋଲି ଏଦେଶର ସମସ୍ତ ଜ୍ଞାନଲୋକେ ନିଃସନ୍ଦେହରେ ଜାଣିଛନ୍ତି । କୌଟିଲ୍ୟ ତାଙ୍କର ଏହି ଜନପ୍ରିୟ ଗ୍ରନ୍ଥରେ ଯେଉଁ ପୂର୍ବାଚାର୍ଯ୍ୟ-ମାନଙ୍କ ବିଭିନ୍ନ ବିଷୟକ ମତର ଉଦ୍ଧାର ପୂର୍ବକ ନିଜର ବଳିଷ୍ଠ ମତଦ୍ୱାରା ସେଗୁଡ଼ିକର ଖଣ୍ଡନ ମଣ୍ଡନ କରିଛନ୍ତି, ସେମାନେ ହେଉଛନ୍ତି—

(୧) ମାନବାଃ (ମନୁଶିଷ୍ୟଗଣ ଅର୍ଥାତ୍ ମନୁ)
(୨) ବାର୍ହସ୍ପତ୍ୟାଃ (ବୃହସ୍ପତିଶିଷ୍ୟଗଣ ଅର୍ଥାତ୍ ବୃହସ୍ପତି)
(୩) ଔସନଶାଃ (ଶୁକ୍ରଶିଷ୍ୟଗଣ ଅର୍ଥାତ୍ ଶୁକ୍ର)
(୪) ଭାରଦ୍ୱାଜଃ (ଦ୍ରୋଣାଚାର୍ଯ୍ୟ)
(୫) ବିଶାଲାକ୍ଷଃ (ଜନୈକ ଅର୍ଥଶାସ୍ତ୍ରାଚାର୍ଯ୍ୟ)
(୬) ପରାଶରଃ (ପ୍ରସିଦ୍ଧ ନୀତିଶାସ୍ତ୍ରକାର)
(୭) ପିଶୁନଃ (ନାରଦ)
(୮) କୌଣପଦନ୍ତଃ (ଭୀଷ୍ମ)
(୯) ବାତବ୍ୟାଧିଃ (ଉଦ୍ଧବ)
(୧୦) ବାହୁଦନ୍ତୀପୁତ୍ରଃ (ଇନ୍ଦ୍ର)

ଏମାନଙ୍କ ଗ୍ରନ୍ଥ ଓ ତତ୍ସମସ୍ତୋପଲବ୍ଧ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କ ସାରାଂଶ ଗ୍ରହଣ ପୂର୍ବକ କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ର ଲେଖିଥିବା ଯୋଗୁଁ ସେ ତା'ର (ଅର୍ଥଶାସ୍ତ୍ରର) ସର୍ବପ୍ରଥମ ସୂତ୍ରରେ କହିଚନ୍ତି—"ପୃଥିବ୍ୟା ଲାଭେ ପାଲନେ ଚ ଯାବନ୍ତ୍ୟର୍ଥଶାସ୍ତ୍ରାଣି ପୂର୍ବାଚାର୍ଯ୍ୟୈଃ ପ୍ରସ୍ଥାପିତାନି ପ୍ରାୟଶସ୍ତାନି ସଂହୃତ୍ୟୈକମିଦ-ମର୍ଥଶାସ୍ତ୍ରଂ କୃତମ୍ ।" ପୃଥିବୀ ଅର୍ଥାତ୍ ମନୁଷ୍ୟବତୀ ଭୂମିର ଲାଭ ଓ ପାଳନ ସକାଶେ ପୂର୍ବାଚାର୍ଯ୍ୟଗଣ ଯେଉଁ ସମସ୍ତ ଅର୍ଥଶାସ୍ତ୍ର ପ୍ରବର୍ତ୍ତନ କରି ଯାଇଚନ୍ତି ପ୍ରାୟ ସେ ସମସ୍ତ ଶାସ୍ତ୍ରର ସାରାଂଶ ସଂଗ୍ରହ ପୂର୍ବକ ମୁଁ ଏହି ଅର୍ଥଶାସ୍ତ୍ର ପ୍ରଣୟନ କଲି; ଅତଏବ ମୋର ଏହି ଏକମାତ୍ର ଗ୍ରନ୍ଥ ଅଧ୍ୟୟନଦ୍ୱାରା ପୂର୍ବାଚାର୍ଯ୍ୟ ପ୍ରବର୍ତ୍ତିତ କଠିନ ଶବ୍ଦାର୍ଥପୂର୍ଣ୍ଣ ଗ୍ରନ୍ଥସମୂହର ତତ୍ତ୍ୱ ସୁଖଲଭ୍ୟ ହେବ ।

ଏହି 'ଅର୍ଥଶାସ୍ତ୍ର' ସମାଜବିଜ୍ଞାନ (**Sociology**), ରାଜନୀତିବିଜ୍ଞାନ (**Political Science**) ଓ ଲୋକବ୍ୟବହାର ବିଦ୍ୟା ବା ଅର୍ଥ ବ୍ୟବହାର ଶାସ୍ତ୍ର (**Economics**)ର ସମନ୍ୱୟରେ ପ୍ରଣୀତ । ଦୈନନ୍ଦିନ ଜୀବନରେ ଏ ତିନିଗୋଟିର ଉପଯୋଗିତା ଯେତେ, ଅନ୍ୟଗୁଡ଼ିକର ସେତେ ନୁହେଁ । ସାମାଜିକ ମନୁଷ୍ୟର ବିପଦ ସମ୍ପଦ, ଦୁଃଖ ସୁଖ, ହାନି ଲାଭ ଓ ପତନ ଅଭ୍ୟୁଦୟର ପଥପ୍ରଦର୍ଶକରୂପେ ଏହି ତିନିଗୋଟି ଶାସ୍ତ୍ର ଆବହମାନ-କାଳରୁ ସମାଜରେ ଆଦୃତ ହୋଇ ଆସୁଚନ୍ତି । ମତିମାନ୍ କୌଟିଲ୍ୟ ସମାଜ ଜୀବନର ଅତ୍ୟାବଶ୍ୟକ ବସ୍ତୁ ପ୍ରତି ନଜର ରଖି ବଳିଷ୍ଠ ସମାଜ ଗଠନର ବ୍ୟାପକ ଦୃଷ୍ଟିଭଙ୍ଗିରେ ହିଁ ତାଙ୍କର ଏହି ଉପାଦେୟ ଶାସ୍ତ୍ରର ପ୍ରବର୍ତ୍ତନ କରିଚନ୍ତି ।

ଏହି ଗ୍ରନ୍ଥରେ 'ତନ୍ତ୍ର' ଅର୍ଥାତ୍ ସ୍ୱରାଜ୍ୟ ଅନୁଷ୍ଠାନ (**Home Policy**) ଏବଂ 'ଆବାପ' ଅର୍ଥାତ୍ 'ପରରାଷ୍ଟ୍ର ଅନୁଷ୍ଠାନ' (**Foreign Policy**)ର ଯାବତୀୟ ବିଷୟ ଆଲୋଚନା କରାଯାଇଚି ଏବଂ ଏଥିରେ ପନ୍ଦରଗୋଟି ଅଧିକରଣ, ଦେଡ଼ଶହ ଅଧ୍ୟାୟ ଏବଂ ଏକଶହଅଶିଏ ପ୍ରକରଣ ଅଛି । ପ୍ରଥମ ପାଞ୍ଚଗୋଟି ଅଧିକରଣରେ 'ସ୍ୱରାଜ୍ୟ ଅନୁଷ୍ଠାନ' ଏବଂ ଶେଷ ଦୁଇଟି ଅଧିକରଣ ବ୍ୟତୀତ ଅନ୍ୟ ଅଧିକରଣଗୁଡ଼ିକରେ 'ପରରାଷ୍ଟ୍ର ଅନୁଷ୍ଠାନ' ବିଷୟ ଆଲୋଚିତ ହୋଇଚି । ରାଜ୍ୟକୁ ସ୍ୱାଧୀନ କରି ଏବଂ ଏଥିରେ ସୁଶାସନ ପ୍ରତିଷ୍ଠା କରି ପରରାଷ୍ଟ୍ର ସହିତ ଅବସ୍ଥାନୁଯାୟୀ ଶତ୍ରୁ, ମିତ୍ର, ମଧ୍ୟମ ଓ ଉଦାସୀନ ଭାବ ପୋଷଣପୂର୍ବକ ରାଜ୍ୟର ସମ୍ପଦ ବୃଦ୍ଧି କରିବାକୁ

'ଅର୍ଥସିଦ୍ଧି' କୁହାଯାଏ । ଯେଉଁ ରାଜ୍ୟରେ ଏପରି କାର୍ଯ୍ୟାନୁଷ୍ଠାନ କରାଯାଏ ସେ ରାଜ୍ୟର ଲୋକେ ରାଜ୍ୟସମ୍ପଦ ଭୋଗ କରନ୍ତି; ଧନୀ, ମାନୀ ଓ ଜ୍ଞାନୀ ଭାବରେ ସେମାନଙ୍କର ଖ୍ୟାତି ବିଶ୍ୱପ୍ରସାରୀ ହୁଏ ଏବଂ ସେ ରାଜ୍ୟର ଅଭ୍ୟୁଦୟଜନିତ ପରାକ୍ରମରେ ଶତ୍ରୁମାନେ ଭୀତ ହୋଇ ସେମାନଙ୍କୁ ଶୋଷଣ ବା ଆକ୍ରମଣ କରିବାକୁ ସାହସ କରନ୍ତି ନାହିଁ (ଆଧୁନିକ ଆମେରିକା ଓ ରୁଷିଆ ଏହାର ପ୍ରତ୍ୟକ୍ଷ ପ୍ରମାଣ) ।

ଆଧୁନିକ ଶିକ୍ଷାରେ 'ଅର୍ଥଶାସ୍ତ୍ର'କୁ (**Economics**) କହନ୍ତି । କିନ୍ତୁ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ବିଷୟରେ କହିବାକୁ ଯାଇ ପ୍ରସିଦ୍ଧ ଟୀକାକାର ମହାମହୋପାଧ୍ୟାୟ ପଣ୍ଡିତ ଗଣପତି ଶାସ୍ତ୍ରୀ ଲେଖିଚନ୍ତି—

"ଅର୍ଥୋନାମ ବୃତ୍ତିଃ ବର୍ତ୍ତନଂ ସ୍ଥିତିଃ, ସୈବ ହି ମନୁଷ୍ୟାଣାଂ ମୁଖ୍ୟୋଽର୍ଥଃ । ତସ୍ୟା ଚ ମନୁଷ୍ୟସମ୍ବନ୍ଧିନ୍ୟା ତଦାଧାରଭୂତା ଭୂମି-ରୁପଲକ୍ଷ୍ୟତେ । ଏବଞ୍ଚ ମନୁଷ୍ୟବତୀଭୂମିରିତ୍ୟର୍ଥଃ । ତସ୍ୟାଃ ଲାଭ ପାଲନୋ-ପାୟୋପଦେଶକ ଶାସ୍ତ୍ରଂ—ଅର୍ଥଶାସ୍ତ୍ରମ୍ ।"

ଅର୍ଥାତ୍ ମନୁଷ୍ୟମାନଙ୍କ ବୃତ୍ତି (ଯୋଗ୍ୟତାନୁସାରେ ରୋଜଗାର ସକାଶେ ଅବଲମ୍ବନ କରିବା ଉପାୟ), ବୃତ୍ତିରୁ ମିଳିବା ବର୍ତ୍ତନ (ଧନଧାନ୍ୟାଦି ଜୀବନଯାପନର ଉପାଦାନ) ଏବଂ ବର୍ତ୍ତନ ଅନୁରୂପ ନୈତିକ, ସାମାଜିକ ଓ ପାରିବାରିକ ସ୍ଥିତି (ରୋଜଗାର ଅନୁରୂପ ଜୀବନଯାତ୍ରା ନିର୍ବାହ)ର ନାମ 'ଅର୍ଥ' । ଅତଏବ ମନୁଷ୍ୟମାନଙ୍କର ମୁଖ୍ୟ ହେଉଚି ଅର୍ଥ । ଏପରି ବୃତ୍ତିମନ୍ତ ମନୁଷ୍ୟ ବାସକରିଥିବା ଭୂମି ଅର୍ଥାତ୍ 'ରାଜ୍ୟ'ର ଲାଭ ଓ ପାଳନ ବିଷୟରେ ଯେଉଁ ଶାସ୍ତ୍ର ଉପଦେଶ ଦିଏ ସେହି ଶାସ୍ତ୍ରକୁ 'ଅର୍ଥଶାସ୍ତ୍ର' କୁହାଯାଏ । କୌଟିଲ୍ୟଙ୍କ ମତରେ ରାଜ୍ୟ ସମ୍ପଦ ପୃଥିବୀର ସର୍ବଶ୍ରେଷ୍ଠ ସମ୍ପଦ । ଏହି ସମ୍ପଦର ଲାଭ ଓ ପାଳନ ଫଳରେ ଧର୍ମ, ଅର୍ଥ, କାମ ତ୍ରିବର୍ଗ ସମ୍ପତ୍ତି ଆପ୍ରବୃତ୍ତି ହୁଏ ଏବଂ ଏଥିପାଇଁ ଦକ୍ଷ, ସ୍ୱାଧୀନଚେତା ଓ କର୍ତ୍ତବ୍ୟପରାୟଣ ନାଗରିକ ଆବଶ୍ୟକ ହୁଅନ୍ତି । ଯେଉଁ ଶାସ୍ତ୍ରରେ ଏପରି ଯୋଗ୍ୟ ନାଗରିକ-ଗଠନର ନାନାବିଧ ଉପାୟ ଅଛି, ସେହି ଶାସ୍ତ୍ରର ନାମ 'ଅର୍ଥଶାସ୍ତ୍ର' ।

ଯେଉଁ ସୁଚିନ୍ତିତ ଦୃଷ୍ଟିଭଙ୍ଗୀ ନେଇ ଏହି ଶାସ୍ତ୍ର ପ୍ରଣୟନ କରାଯାଇଚି ତାହା ପ୍ରକାଶ କରିବାକୁ ଯାଇ କୌଟିଲ୍ୟ କହିଚନ୍ତି, "ବିଦ୍ୟାହି ଦ୍ରବ୍ୟଂ

ବିନଯୁକ୍ତ ନାଦ୍ରବ୍ୟମ୍” ଅର୍ଥାତ୍ ଯେକୌଣସି କ୍ରିୟା ତଦନୁକୂଳ ଦ୍ରବ୍ୟକୁ ହିଁ ସମ୍ପୃକ୍ତ କରେ, ଅଦ୍ରବ୍ୟକୁ ସମ୍ପୃକ୍ତ କରେ ନାହିଁ । ଦେଶରେ ଶାସକ, ମନ୍ତ୍ରୀ, ପୁରୋହିତ, ଗୁପ୍ତଚର, ଦୂତ, ସେନାପତି, ଅଧ୍ୟକ୍ଷ, କର୍ମଗୃହୀ, କାରିଗର, ଧର୍ମସ୍ଥ (ଜଜ୍) ଓ ପ୍ରଶ୍ନରିକ ପ୍ରଭୃତି ଦାୟିତ୍ୱସମ୍ପନ୍ନ ବ୍ୟକ୍ତିବିଶେଷଙ୍କ ନିର୍ବାଚନ ସକାଶେ ସେ ଏବଂବିଧ କାର୍ଯ୍ୟସାଧନକ୍ଷମ ଶାରୀରିକ, ମାନସିକ, କୌଳିକ ଓ ଗୃହବିଦ୍ୟକ ଗୁଣସମ୍ପନ୍ନ ସ୍ୱଭାବସୁଲଭ ବ୍ୟକ୍ତିଙ୍କୁ ହିଁ ବାଛିବା ଉପାୟ ବତାଇଛନ୍ତି । ଦେଶର ଜନସାଧାରଣ କୃଷି, ବାଣିଜ୍ୟ ଓ ଶ୍ରମ ଇତ୍ୟାଦିରେ ସର୍ବଦା ବ୍ୟସ୍ତ ଏବଂ ଯେଉଁମାନେ ଶିକ୍ଷିତ ଓ ତାଲିମପ୍ରାପ୍ତ, ସେମାନେ ବିଜ୍ଞାନ, ଦର୍ଶନ, କଳା ଓ କଳ୍ପନା ବିଳାସରେ ସର୍ବଦା ନିରତ । ଅଶିକ୍ଷିତ ହୁଅନ୍ତୁ ବା ଶିକ୍ଷିତ ହୁଅନ୍ତୁ, ଯାହାର ଯେଉଁ କାର୍ଯ୍ୟ କରିବାକୁ ସ୍ୱାଭାବିକ ଯୋଗ୍ୟତା (**Born fitness**) ନାହିଁ, ତାକୁ ସେହିକାର୍ଯ୍ୟରେ ନିଯୁକ୍ତ କରିବା କଦାପି ସଙ୍ଗତ ନୁହେ । ଏଥିପାଇଁ ରାଜ୍ୟରକ୍ଷା ଓ ରାଜ୍ୟଶାସନ ସକାଶେ ଗୁଣବନ୍ତ ଓ ଲକ୍ଷଣବନ୍ତ ବ୍ୟକ୍ତିଙ୍କୁ ତଦ୍‌ପଦମାନେ ନିର୍ବାଚନ ସୂତ୍ରରେ ନିଯୁକ୍ତ କରିବା ବିଷୟ ଅର୍ଥଶାସ୍ତ୍ରରେ କୁହାଯାଇଛି ।

ନିୟମାନୁସାରେ ରାଜ୍ୟଶାସନ ଚତୁଃକେନ୍ଦ୍ରୀ । ଏହା ଯଥାକ୍ରମେ ବିଗ୍ରହ-କୈନ୍ଦ୍ରିକ ଶାସନ, ଭୟକୈନ୍ଦ୍ରିକ ଶାସନ, ଗଠନକୈନ୍ଦ୍ରିକ ଶାସନ ଓ ବଳକୈନ୍ଦ୍ରିକ ଶାସନ ନାମରେ ପରିଚିତ । ଯେତେବେଳେ ଏ ଦେଶରେ ଋଷିମୁନିମାନଙ୍କ ଶାସନ ଚଳୁଥିଲା, ସେ ଶାସନର ନାମ ଥିଲା ‘ବିଗ୍ରହ କୈନ୍ଦ୍ରିକ ଶାସନ’ । କାଳକ୍ରମେ ଏହି ଶାସନର ଅବସାନ ଘଟିଲେ, ତା’ସ୍ଥାନରେ ‘ଭୟକୈନ୍ଦ୍ରିକ ଶାସନ’ ଅସ୍ତିପ୍ରତିଷ୍ଠା କରେ । ଋଷିଶାସନ ବେଳେ ଲୋକେ ବିଗ୍ରହକୁ ମାନୁଥିଲେ, ବର୍ତ୍ତମାନ ଦଣ୍ଡକୁ ମାନି ଚଳିବାକୁ ବାଧ୍ୟ ହେଲେ । ରାଜାମାନଙ୍କ ଶାସନକୁ ଭୟକୈନ୍ଦ୍ରିକ ଶାସନ କୁହାଯାଉଥିବା ଯୋଗୁଁ ରାଜାମାନଙ୍କର ଅନ୍ୟ ନାମ ‘ଦଣ୍ଡଧର’ । କାଳକ୍ରମେ ରାଜଶାସନ ଯେତେ-ବେଳେ କଳୁଷିତ ହୁଏ, ଅନିୟମିତ ରାଜଦଣ୍ଡରେ ପ୍ରଜା ଯେତେବେଳେ କ୍ଷୁବ୍ଧ ହୁଅନ୍ତି, ସେତେବେଳେ ସେମାନେ ସଙ୍ଗଠିତ ଭାବରେ ରାଜଶାସନର ବିଲୋପସାଧନ କରି ଶାସନଦାୟିତ୍ୱ ନିଜହାତକୁ ନିଅନ୍ତି । ସେତେବେଳେ ଏହି ଶାସନର ନାମ ହୁଏ ‘ଗଠନକୈନ୍ଦ୍ରିକ ଶାସନ’ । ପ୍ରଜାତନ୍ତ୍ର ଗଠନ-କୈନ୍ଦ୍ରିକ ଶାସନରେ ସାଧାରଣତଃ ଅନଭିଜ୍ଞ ଲୋକେ ଶାସନକାର୍ଯ୍ୟ ଚଳାନ୍ତି

ବା ଯେଉଁ ଅଭିଜ୍ଞ ଲୋକେ ଲୋକଙ୍କଦ୍ୱାରା ନିର୍ବାଚିତ ହୋଇ ଏହି ଶାସନ ଚଳାଇବାକୁ ଯାନ୍ତି, ସେମାନେ ଜନସାଧାରଣଙ୍କ ମନଧରା କାର୍ଯ୍ୟ କରିବାକୁ ବାଧ୍ୟ ହୁଅନ୍ତି । ତେଣୁ ଏମାନଙ୍କ ଶାସନ କାର୍ଯ୍ୟ ଅବେଳ ଅକାଳରେ ଢିଲା ହୋଇଯାଏ ଏବଂ ଏପରି ହେବା ଫଳରେ ଏହି ଗଠନକେନ୍ଦ୍ରିକ ଶାସନ ଉପରେ ଅପ୍ରତ୍ୟାଶିତଭାବେ ଆତ୍ମପ୍ରତିଷ୍ଠା କରେ 'ବଳକେନ୍ଦ୍ରିକ ଶାସନ' । ବଳକେନ୍ଦ୍ରିକ ଶାସନର ନିୟାମକ ହୁଏ ଦେଶର ଜଣେ ପ୍ରବଳ ପ୍ରତାପୀ ବ୍ୟକ୍ତି, ଯାହାର ଇଙ୍ଗିତରେ କି ଦେଶର ସମସ୍ତ ବ୍ୟକ୍ତି କେବଳ ଗୋଟିଏ ଗୋଟିଏ ଯନ୍ତ୍ରପରି ପରିଚାଳିତ ହୁଅନ୍ତି । ଯେତେ ପ୍ରବଳ ପ୍ରତାପୀ ହେଲେ ମଧ୍ୟ ଜଣେ ବ୍ୟକ୍ତି ଏପରି ଖିଆଲ୍‌ଖୁସି ନମାନି ଦେଶଲୋକଙ୍କୁ ବାହିନେବା ଫଳରେ ଦେଶର ଆଶାତୀତ ଅଗ୍ରଗତି ସଙ୍ଗେ ସଙ୍ଗେ ମର୍ମନ୍ତୁଦ ଅଧୋଗତି ମଧ୍ୟ ହୋଇଥାଏ । ତେଣୁ ଏପରି ଅବସ୍ଥା ଘଟିବା ପରେ ଘଣ୍ଟା କଣ୍ଟା ଘୂରି ଆସିଲା ପରି ଲୋକଙ୍କ ମନ ଫେରିଆସେ ପୁଣି ସେହି ବିଚାରକେନ୍ଦ୍ରିକ ଶାସନ ଆଡ଼କୁ । ଯୁଗ ଯୁଗ ଧରି ଏହି ଚତୁଃକେନ୍ଦ୍ରୀ ଶାସନ ପୃଥିବୀରେ ଚାଲିଆସୁଚି, ଚିରକାଳ ଚାଲୁଥିବ ।

ଚାଣକ୍ୟ କିନ୍ତୁ ଏହି ଶାସନସଂସ୍ଥାର ଦୁର୍ଗତି ବିଷୟ ଅବହିତ ହୋଇ ଏହାର ପ୍ରତିକାରର ଗୋଟାଏ ଉପାୟ ବାହାର କରିଚନ୍ତି । ସେ କହିଚନ୍ତି—

"ବ୍ୟବସ୍ଥିତାର୍ଯ୍ୟ ମର୍ଯ୍ୟାଦଃ କୃତବର୍ଣ୍ଣାଶ୍ରମ ସ୍ଥିତିଃ ।
ତ୍ରୟ୍ୟା ହି ରକ୍ଷିତୋ ଲୋକଃ ପ୍ରସୀଦତି ନ ସୀଦତି ॥"

ଅର୍ଥାତ୍ ଯେଉଁ ଜନମଣ୍ଡଳର ସଦାଚାର ନିୟମ ବର୍ଣ୍ଣାଶ୍ରମଦ୍ୱାରା ପ୍ରତିବଦ୍ଧ, ଯେଉଁ ରାଜ୍ୟରେ ସ୍ୱଧର୍ମ ଓ ସ୍ୱକର୍ମ ଅନୁସାରେ ବର୍ଣ୍ଣାଶ୍ରମର ପ୍ରତିଷ୍ଠା କରାଯାଇ କେବଳ ବୈଦିକ ବିଧାନାନୁସାରେ ରାଜ୍ୟ ପରିଚାଳନା କରାଯାଏ, ସେହି ରାଜ୍ୟ କୌଣସିକାଳେ ବିନାଶପ୍ରାପ୍ତ ନହୋଇ ସର୍ବଦା ପ୍ରସନ୍ନ ରହେ । ଚାଣକ୍ୟଙ୍କ ମତାନୁସାରେ ଏପରି ରାଜ୍ୟରେ ଉପରୋକ୍ତ ଚତୁଃକେନ୍ଦ୍ରୀ ଶାସନ ପ୍ରବର୍ତ୍ତିତ ନହୋଇ ଗୋଟାଏ ସନାତନ ଶାସନସଂସ୍ଥାର ପ୍ରତିଷ୍ଠା ହୁଏ । ତାଙ୍କର ଏହି କାଳଜୟୀ କଳ୍ପନାମୂଳରେ ଗୋଟାଏ ବିରାଟ ବାସ୍ତବତାର ଆଭାସ ମିଳେ । ମୃତ୍ୟୁ ଅଜେୟ ହେଲେ ମଧ୍ୟ ସମାଧିସ୍ଥ ଯୋଗୀ ଯେପରି ତାକୁ ଜୟକରେ, ଚାଣକ୍ୟଙ୍କ ଏହି ଶାସନକଳ୍ପନା ମଧ୍ୟ ସାଧାରଣ ନିୟମକୁ ଟପି ସେପରି ଏକ ନିତ୍ୟ ସତ୍ୟ ସନାତନ ନିୟମ

ପ୍ରବର୍ତ୍ତିନ କରିବାକୁ ଇଙ୍ଗିତ ଦିଏ । ଏଦେଶରେ ମଧ୍ୟ ଦିନେ ଏହି ଶାସନସଂସ୍ଥା ପ୍ରଚଳିତ ଥିଲା । ସେଥିପାଇଁ ଏଦେଶରେ ତ୍ରିକାଳଦର୍ଶୀ ମନୀଷୀମାନେ ଥିଲେ; ସତ୍ୟ, ସରଳତା, ଭକ୍ତି, ପ୍ରୀତି ଓ ସଜ୍ଜନ ସେବାଦ୍ୱାରା ଏଦେଶ ଲୋକଙ୍କ ଅନ୍ତଃକରଣ ବଡ଼ ପବିତ୍ର ଓ ମହତ୍ତ୍ୱ ଥିଲା । ଦୀର୍ଘଜୀବନ ଲାଭପାଇଁ, ଅସାଧାରଣ ବୁଦ୍ଧିବୃତ୍ତିର ଅଧିକାରୀ ହେବାପାଇଁ, ହିଂସା, ଦ୍ୱେଷ, ପରଶ୍ରୀ-କାତରତା, ଈର୍ଷା ଓ ଲୋଭ ମୋହର କଳୁଷରୁ ଶରୀର, ମନ ଓ ଆତ୍ମାକୁ ମୁକ୍ତ କରିବା ପାଇଁ ଏହି ବୈଦିକ ଶାସନ ରୂପକ କଳ୍ପତରୁର ଆଶ୍ରୟ ନେଇ ଲୋକେ ବାସ୍ତବିକ ବଡ଼ ଆତ୍ମତୃପ୍ତି ଅନୁଭବ କରୁଥିଲେ ।

ଦେଶୋଦ୍ଧାର ଓ ଦେଶରକ୍ଷାର କଳ୍ପନା ଭିତରୁ ଚାଣକ୍ୟଙ୍କ ଅର୍ଥଶାସ୍ତ୍ରର ଜନ୍ମ । ବୈଦେଶିକମାନଙ୍କ ଆକ୍ରମଣ, ପ୍ରଲୋଭନ ଓ ଶୋଷଣରୁ ଦେଶକୁ ଉଦ୍ଧାର କରିବା ଏବଂ ଦେଶଦ୍ରୋହୀ-ଆଭ୍ୟନ୍ତରୀଣ ଶତ୍ରୁ ଓ ଆକ୍ରମଣକାରୀ ବା ଷଡ଼ଯନ୍ତ୍ରକାରୀ-ବାହ୍ୟଶତ୍ରୁଙ୍କ ଦୌରାତ୍ମ୍ୟରୁ ଦେଶକୁ ରକ୍ଷାକରିବା ବିଷୟରେ ଏଥିରେ ବହୁତ ଆଲୋଚନା କରାଯାଇଛି । ଦେଶରେ କୃଷି, ବାଣିଜ୍ୟ, ଶିଳ୍ପ, ଗୋରକ୍ଷା, ଖଣିଅନୁଷ୍ଠାନ, ରତ୍ନସଂଗ୍ରହ, ବନ-ସଂରକ୍ଷଣ, ହସ୍ତୀ ଅଶ୍ୱାଦି ମୂଲ୍ୟବାନ ଓ ଉପଯୋଗୀ ପଶୁମାନଙ୍କର ଶିକ୍ଷାଦାନ ଓ ଯଥାକାର୍ଯ୍ୟରେ ନିଯୋଗ, ସୁରା, ବେଶ୍ୟା ଓ ମାଂସ ପ୍ରଭୃତିର ନିୟନ୍ତ୍ରଣ, ମାପତୌଲର ବିଚାର, ଫଉଜଦାରୀ ଓ ଦେଓ୍ୱାନୀ ମାଲ୍‌ମକଦମାର ବିଚାର, ଦେଶରକ୍ଷା ସକାଶେ ନିଯୁକ୍ତ ହୋଇଥିବା ସୈନ୍ୟବିଭାଗର କାର୍ଯ୍ୟକଳାପ ସମ୍ବନ୍ଧେ ଆଲୋଚନା, ଦୈବୀ ଓ ମାନୁଷୀ ବିପତ୍ତିର ପ୍ରତିକାର, ଆଭ୍ୟନ୍ତରୀଣ ବଳସଂଚୟ, ସ୍ୱଦେଶର ଶକ୍ତି ପରୀକ୍ଷା, ପ୍ରବଳ ବା ଦୁର୍ବଳ ଶତ୍ରୁ ଏବଂ ଅଗ୍ରବର୍ତ୍ତୀ, ପାର୍ଶ୍ୱବର୍ତ୍ତୀ ଓ ପଶ୍ଚାଦ୍‌ବର୍ତ୍ତୀ ଶତ୍ରୁ ପ୍ରତି କର୍ତ୍ତବ୍ୟ ନିରୂପଣ, ଯୁଦ୍ଧ, ସନ୍ଧି, ଆକ୍ରମଣ, ଭେଦପ୍ରୟୋଗ, ଆସନ (ବଳସଂଚୟ ପାଇଁ କିଛିକାଳ କିଛି ନକରିବାର ତୁନିହେବା) ଏବଂ ଆଶ୍ରୟ ନାମକ ଛ'ଗୋଟି ଉପାୟର ଆଲୋଚନା, ପାପିଷ୍ଠ ଶତ୍ରୁପ୍ରତି ମନ୍ତ୍ର ଓ ଔଷଧ ପ୍ରୟୋଗ, ସଂଘ ସଂଗଠନ, ସମବାୟ ପ୍ରଚେଷ୍ଟା ପ୍ରଭୃତି ଗୋଟିଏ ସ୍ୱାଧୀନ ସାର୍ବଭୌମ ରାଜ୍ୟ ସକାଶେ ଯାହା ସବୁ ଆବଶ୍ୟକ ଏଥିରେ ତାହାର ବିଚାର କରାଯାଇଛି । ଏପରି ରାଷ୍ଟ୍ରର ଲୋକେ ଯୋଗ୍ୟ ଓ ଦକ୍ଷହେବା ଯୋଗୁଁ ନାନା ଉପାୟରେ ଅର୍ଥ ଉପାର୍ଜନ କରି ସୁଖ ଶାନ୍ତିରେ କାଳଯାପନ କରନ୍ତି ଏବଂ ସେମାନଙ୍କ ସାମାଜିକ ସ୍ତର ମଧ୍ୟ ଉନ୍ନତ ହୁଏ ।

ଏହି ଗ୍ରନ୍ଥର 'ଔପନିଷଦିକ ଅଧିକରଣ' ବର୍ଣ୍ଣିତ 'ଅଦ୍ଭୁତୋତ୍ପାଦନ' ଓ 'ଭୈଷଜ୍ୟମନ୍ତ୍ର ପ୍ରୟୋଗ' ପ୍ରଭୃତି ବହୁ କୌତୂହଳପ୍ରଦ ବିଷୟ । ଶାସକଙ୍କ ମହିମା ପ୍ରଚାର ପାଇଁ ଜଳରେ ବରୁଣଦେବତାଙ୍କ ଆବିର୍ଭାବ, ଶ୍ମଶାନରେ ଭୂତପ୍ରେତଙ୍କ ସଂଚାର, ଜଳପ୍ରବାହରେ ସୋଲଭେଲା ଭାସିନଯାଇ ରହିବା ଏବଂ ଯୁଦ୍ଧବେଳେ ବା ଶତ୍ରୁ ଶିବିରରୁ ଗୁପ୍ତ ସମ୍ବାଦ ସଂଗ୍ରହ ବେଳେ ନିଜର ସୈନିକମାନେ ମାସ ମାସ ଧରି ଉପବାସ ରହି ମଧ୍ୟ ଭୋକିଲା ନହେବା, ଅନ୍ଧକାରରେ ଏକପ୍ରକାର ଅଞ୍ଜନ ଲଗାଇ ସମସ୍ତଙ୍କୁ ଦେଖିବା, ଗୋଟାଏ ମନ୍ତ୍ର ପଢ଼ି ଶତ୍ରୁଗ୍ରାମର ମନୁଷ୍ୟ, ପଶୁ, ଏପରିକି କୁକ୍କୁରମାନଙ୍କୁ ମଧ୍ୟ ନିଦ୍ରିତ କରାଇଦେବା, ମିତ୍ରଭାବାପନ୍ନ ଶତ୍ରୁମାନଙ୍କ ମଧ୍ୟରେ ମନ୍ତ୍ରବଳରେ ଶତ୍ରୁଭାବ ସୃଷ୍ଟି କରାଇବା, ସ୍ତମ୍ଭନ, ମୋହନ, ବଶ୍ୟ, ଉଚ୍ଚାଟନାଦି ମନ୍ତ୍ର ପ୍ରୟୋଗ, ଶତ୍ରୁକୁ ଭେଳିକି କରି ଘଉଡ଼ାଇ ଦେବା ଓ ତାର ମନକୁ ଦୁର୍ବଳ କରିଦେବା, ଶତ୍ରୁସୈନ୍ୟଙ୍କୁ ବିଷଜଳ ଓ ବିଷବାଷ୍ପ ପ୍ରୟୋଗଦ୍ୱାରା ମୋହଗ୍ରସ୍ତ କରିବା ଇତ୍ୟାଦି ବହୁ ବିଷୟ ଅଛି । କୌଟିଲ୍ୟ କହିଛନ୍ତି, ଏସବୁ କେବଳ ଅଧାର୍ମିକ ଶତ୍ରୁପ୍ରତି ପ୍ରୟୋଗ କରିବାକୁ ହେବ ସିନା, ଧାର୍ମିକ ଶତ୍ରୁପ୍ରତି ପ୍ରୟୋଗ କରିବାକୁ ହେବନାହିଁ ।

ସମାଲୋଚକ ୱିଣ୍ଟରନିଜ କହନ୍ତି, କଣେ ଅର୍ଥଶାସ୍ତ୍ରୀ ଏପରି ପ୍ରତାରଣା-ପୂର୍ଣ୍ଣ, ଘୃଣ୍ୟ ଓ ହିଂସାତ୍ମକ କାର୍ଯ୍ୟ କରିବାକୁ ଉପଦେଶ ଦେଇ ଶାସ୍ତ୍ରର ମର୍ଯ୍ୟାଦା କ୍ଷୁର୍ଣ୍ଣ କରିଛନ୍ତି । କିନ୍ତୁ ସେ ଜାଣିବା ଉଚିତ ଥିଲା ଯେ ପରମ ଦୟାଳୁ ବୁଦ୍ଧଦେବ ଯଦି ରାଜ୍ୟଶାସନ କରିଥାନ୍ତେ, ତେବେ ସେ ମଧ୍ୟ ଏପରି ଆଚରଣ କରିବାକୁ ବାଧ୍ୟ ହୋଇଥାନ୍ତେ, ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଯେଉଁ ଶତ୍ରୁ ପ୍ରବଳ ଓ ଅଧାର୍ମିକ, ଯେଉଁ ଶତ୍ରୁ ଅପ୍ରତ୍ୟାଶିତ ଭାବେ ଆକ୍ରମଣ କରି ଦେଶ ଛାରଖାର କରେ ଏବଂ ହତ୍ୟା, ଅତ୍ୟାଚାର ଓ ଲୁଣ୍ଠନର ନାରକୀୟ ବ୍ୟାପାରରେ ଦେଶର ସର୍ବନାଶ ଘଟାଏ, ସେପରି ଶତ୍ରୁକୁ (ସେପରି ଶତ୍ରୁର ସୈନ୍ୟମାନଙ୍କୁ) ଧାର୍ମିକ, ଅଧାର୍ମିକ ଯେକୌଣସି ଉପାୟରେ ନିପାତ କରି ଦେଶକୁ ଏହି ଚରମ ବିପତ୍ତିରୁ ରକ୍ଷା କରିବା ହିଁ ଶ୍ରେଷ୍ଠ ରାଜଧର୍ମ । ଏଥିରେ ଯେଉଁ ଶାସକ ଦ୍ୱିଧା କରେ ସେ ଯେତେ ଧାର୍ମିକ ହେଲେ ମଧ୍ୟ ତା'ର ଓ ତା'ରାଜ୍ୟର ପତନ ଅନିବାର୍ଯ୍ୟ । ଅତଏବ କୌଟିଲ୍ୟଙ୍କ ଉପରୋକ୍ତ ଉପଦେଶଦ୍ୱାରା ଦୁର୍ବଳ ଓ ଆକ୍ରାନ୍ତ ଧାର୍ମିକ ଶାସକ ଯେପରି

ରାଜ୍ୟରକ୍ଷା ସକାଶେ, ବଳ ନହେଲେ ମଧ୍ୟ କଳକୌଶଳରେ ହେଲେ କ୍ଷମ ହେବେ ସେପରି ସୁବିଧା ଦିଆଯାଇଛି । ଶାସନକାର୍ଯ୍ୟର ପ୍ରଧାନ ଲକ୍ଷ୍ୟ ହେଉଛି ପ୍ରଜାରକ୍ଷା । ଶତ୍ରୁପ୍ରଯୁକ୍ତ ଗୁପ୍ତଚରଠାରୁ ଆରମ୍ଭ କରି ନାନାବିଧ ଭେଦ ପ୍ରୟୋଗ ଓ ମାରଣ ପ୍ରୟୋଗ (ଦେଶର ଶାସକମାନଙ୍କୁ ମାରିଦେବାର ଷଡ଼୍ଯନ୍ତ୍ର) ଇତ୍ୟାଦି ଅପରାଧମୂଳକ କାର୍ଯ୍ୟକଳାପର ତଦନ୍ତ କରି ଓ ତାର ଦୃଢ଼ ପ୍ରତିକାର ସଙ୍ଗେ ସଙ୍ଗେ ଆତ୍ମରକ୍ଷା, ଦେଶରକ୍ଷା ତଥା ମନ୍ତ୍ରରକ୍ଷା ସକାଶେ ଦକ୍ଷତା ଅର୍ଜନ କରିବା ହିଁ ଶାସକର ମୁଖ୍ୟ କାର୍ଯ୍ୟ । ରାଜ୍ୟଶାସନ ଅତି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ । ଏକାର୍ଯ୍ୟରେ ଅନୁଭୂତ ନଥିବା ମହାପଣ୍ଡିତଙ୍କର ମଧ୍ୟ ପଦେ ପଦେ ଭ୍ରମ ପ୍ରମାଦ ରହିଯିବା ସ୍ୱାଭାବିକ । ବାଣଭଟ୍ଟଙ୍କ ଭଳି ବିଶ୍ୱମାନ୍ୟ ଅମର କବିଙ୍କର ମଧ୍ୟ ଏବିଷୟରେ ଏକ ଭ୍ରାନ୍ତଧାରଣା ଥିବାଯୋଗୁଁ ସେ କୌଟିଲ୍ୟ ଅର୍ଥଶାସ୍ତ୍ରର ସମାଲୋଚନା କରି କହିଛନ୍ତି—

"କିମ୍ବା ସାମ୍ପ୍ରତଂ ଯେଷାମତିନୃଶଂସପ୍ରାୟୋପଦେଶନିର୍ଘୃଣଂ କୌଟିଲ୍ୟ-ଶାସ୍ତ୍ରଂ ପ୍ରମାଣମ୍ ।"

"ବର୍ତ୍ତମାନ୍ ସେହି ଅତିନୃଶଂସପ୍ରାୟ ନିର୍ଦ୍ଦୟ ଉପଦେଶପୂର୍ଣ୍ଣ କୌଟିଲ୍ୟଶାସ୍ତ୍ର କଥା କହି କି ଲାଭ ।" ଏଠାରେ ବାଣକବିଙ୍କ କୋମଳ ହୃଦୟ କୌଟିଲ୍ୟଙ୍କ ରାଜନୈତିକ କଠୋର ବାସ୍ତବତାରେ ବିଚଳିତ ହୋଇପଡ଼ିଛି । ତେଣୁ ସେ ତାକୁ ବଡ଼ "ନିର୍ଦ୍ଦୟ କୌଟିଲ୍ୟଶାସ୍ତ୍ର" ବୋଲି କହିପକାଇଛନ୍ତି । କିନ୍ତୁ ବାଣ ଯଦି ପ୍ରକୃତରେ କୌଟିଲ୍ୟଙ୍କପରି ଥରେ କେବେ ମନ୍ତ୍ରୀ ହୋଇଥାନ୍ତେ, ତେବେ ବୁଝିଥାନ୍ତେ ଏ ଅର୍ଥଶାସ୍ତ୍ର ଅସଲ ବେଳେ କିପରି କାମ ଦେଉଛି । କବିଙ୍କ କଳ୍ପନାବିଳାସ ବା ସମାଲୋଚକଙ୍କ ଯୁକ୍ତିଗୁନ୍ତୁରି ଶାସକଙ୍କ କଠୋର ବାସ୍ତବତା ଆଗରେ ସବୁବେଳେ ମୁଣ୍ଡ ନୁଆଁଇ ଦେଇଛନ୍ତି । ଅତଏବ ରାଜନୀତି, ସମାଜନୀତି ଓ ଅର୍ଥନୀତି ବିଷୟରେ ପ୍ରକୃତ ଜ୍ଞାନାର୍ଜନ କରିନଥିବା ବ୍ୟକ୍ତି ପକ୍ଷେ ଏହାର ସମାଲୋଚନା ନିରର୍ଥକ ମାତ୍ର ।

ଏହି ଗ୍ରନ୍ଥରେ ଜଣେ ସୁଯୋଗ୍ୟ ଗୃହସ୍ଥ ଯେପରି ନିଜର ଗୃହକୁ ଶତ୍ରୁଶୂନ୍ୟ, ଅଭାବଶୂନ୍ୟ ଓ ଅନର୍ଥଶୂନ୍ୟ କରିବାକୁ ଚେଷ୍ଟା କରେ, ସେପରି ଜଣେ ଶାସକ ମଧ୍ୟ ତା ଦେଶକୁ ଧର୍ମମାର୍ଗରେ ପରିଚାଳିତ କରି ଦେଶର ସବୁ ଧର୍ମ, ସବୁ ସମ୍ପ୍ରଦାୟ ଓ ସବୁ ଶ୍ରେଣୀର ଲୋକଙ୍କୁ ଯୋଗ୍ୟ, ଉପାର୍ଜନକ୍ଷମ, ପରିଶ୍ରମୀ, ଦେଶଭକ୍ତ ଓ ସ୍ୱାଧୀନମନା କରି ଗଢିବା ପାଇଁ ଏକାଧାରେ

ଉପଦେଶ ଦିଆଯାଇଛି । ଏ ଦେଶର ତଥା ପୃଥିବୀର ରାଜନୀତି, ଅର୍ଥନୀତି ଓ ସମାଜନୀତି ସମ୍ବନ୍ଧୀୟ ଶ୍ରେଷ୍ଠ ସାହିତ୍ୟ ବା ଶାସ୍ତ୍ରମାନଙ୍କ ମଧ୍ୟରେ ଏହାର ସ୍ଥାନ ଅତି ଉଚ୍ଚରେ । ତେଣୁ ସ୍ୱାଧୀନ ଭାରତରେ କୌଟିଲ୍ୟ ଅର୍ଥଶାସ୍ତ୍ରର ଆଲୋଚନା ଏକାନ୍ତ ଅବଶ୍ୟକ ମନେକରି ମୁଁ ମୋର ଗୁରୁ ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ, ସାହିତ୍ୟାଚାର୍ଯ୍ୟ, କବିରତ୍ନ, ସାଂଖ୍ୟବିଶାରଦ, ବେଦାନ୍ତକେଶରୀ, ହିନ୍ଦୁଭାଷା କୋବିଦ ମହୋଦୟଙ୍କ ସାହାଯ୍ୟରେ ଏହାର ଅନୁବାଦରେ ପ୍ରବୃତ୍ତ ହେଲି । ପଣ୍ଡିତ ମହୋଦୟ ଏହାର ସଂଶୋଧନ ଭାର ବହନପୂର୍ବକ ସେ ସମୟର ମୁଖ୍ୟମନ୍ତ୍ରୀ ମାନ୍ୟବର ଡକ୍ଟର ହରେକୃଷ୍ଣ ମହତାବ, ଶିକ୍ଷାମନ୍ତ୍ରୀ ମାନ୍ୟବର ଲିଙ୍ଗରାଜ ପାଣିଗ୍ରାହୀ, ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି (ବର୍ତ୍ତମାନ ସ୍ୱର୍ଗତ) ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ସଂପାଦକ ଅଧ୍ୟାପକ ଶ୍ରୀ ଗୌରୀକୁମାର ବ୍ରହ୍ମାଙ୍କୁ ପାଣ୍ଡୁଲିପି ସହ ସାକ୍ଷାତ କଲେ । ଏ ଗ୍ରନ୍ଥର ମୁଖବନ୍ଧ ଲେଖିବା ପାଇଁ ଓଡ଼ିଶାର ସ୍ୱନାମଧନ୍ୟ ମନୀଷୀ ପଣ୍ଡିତ ନୀଳକଣ୍ଠ ଦାସ, ଏମ୍. ଏ., ଡି. ଲିଟ୍. ଆମର ଅନୁରୋଧ ରକ୍ଷାକରି ୧୯୫୮ ମସିହା ନଭେମ୍ବର ୧୫ ତାରିଖରେ ଗଞ୍ଜାମର ଅସିକାଠାରେ ମୁଖବନ୍ଧ ଲେଖିଦେଇ ଥିଲେ । ଏ ଗ୍ରନ୍ଥର ପ୍ରକାଶ ପାଇଁ ଶେରଗଡ଼ ରାଜାସାହେବ ଶ୍ରୀ ଉଦୟପ୍ରତାପ ସିଂହଦେବଙ୍କ ସହଯୋଗ ଓ ପ୍ରେରଣା ଲାଭକରି ଆମେ ଦୁହେଁ ଏ କାର୍ଯ୍ୟରେ ସର୍ବଥା କୃତକାର୍ଯ୍ୟ ହେଲୁ ।

ପରିଶେଷରେ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ସହୃଦୟ କର୍ତ୍ତୃପକ୍ଷ ଏହି ଉପାଦେୟ ଗ୍ରନ୍ଥର ପ୍ରକାଶ ଦାୟିତ୍ୱ ବହନ କରି ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କ୍‌ସ୍‌ର ସୁଯୋଗ୍ୟ ପରିଚାଳକ ଶ୍ରୀ ହାଡ଼ୁ ରାୟଗୁରୁଙ୍କ ତତ୍ତ୍ୱାବଧାନରେ ଏହାକୁ ମୁଦ୍ରିତ କରାଇଲେ । ଓଡ଼ିଶାର ଯଶସ୍ୱୀ ମୁଖ୍ୟମନ୍ତ୍ରୀ ମାନ୍ୟବର ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ, ଜନପ୍ରିୟ ଉପମୁଖ୍ୟମନ୍ତ୍ରୀ ମାନ୍ୟବର ଶ୍ରୀ ବୀରେନ୍ ମିତ୍ର, କର୍ମବୀର ଶିକ୍ଷାମନ୍ତ୍ରୀ ମାନ୍ୟବର ଶ୍ରୀ ପବିତ୍ରମୋହନ ପ୍ରଧାନ, ଓଡ଼ିଶା ସାହିତ୍ୟ ଏକାଡେମୀର ବର୍ତ୍ତମାନ ସଭାପତି ସାଂସ୍କୃତିକ ବିଭାଗୀୟ ଉପମନ୍ତ୍ରୀ ମାନ୍ୟବର ଶ୍ରୀ ସନ୍ତୋଷକୁମାର ସାହୁ, ଗ୍ରାମ ପଞ୍ଚାୟତ ବିଭାଗୀୟ ଉପମନ୍ତ୍ରୀ ମାନ୍ୟବର ଶ୍ରୀ ବୃନ୍ଦାବନ ନାୟକ ଏବଂ ଗଞ୍ଜାମ ଜିଲ୍ଲା ପରିଷଦ ଚେୟାରମ୍ୟାନ୍ ଶ୍ରୀ ଦୀନବନ୍ଧୁ ବେହେରା ପ୍ରଭୃତି ନେତୃବୃନ୍ଦ ଏହି ଗ୍ରନ୍ଥର ଆଶୁ ପ୍ରକାଶ କାମନା କରି ମତେ ଉତ୍ସାହିତ କରିଥିଲେ ।

ଘୁମୁସର ତଥା ଗଞ୍ଜାମର ଓ ଓଡ଼ିଶାର ବିଭିନ୍ନ ଅଞ୍ଚଳର ବହୁ ହିତୈଷୀ ବନ୍ଧୁ ମତେ ଏହି କାର୍ଯ୍ୟରେ ଗଭୀର ପ୍ରେରଣା ଦେଇ ଚିରଋଣୀ କରି ଦେଇଚନ୍ତି । ଜଗନ୍ନାଥଙ୍କ କୃପା ଏବଂ ମୋର ପୂଜ୍ୟ ପିତା ଶ୍ରୀ ସୀତାରାମ କର ଶର୍ମା ଓ ପୂଜନୀୟା ମାତା ମାଳତୀ ଦେବୀଙ୍କ ଆଶୀର୍ବାଦରୁ, ସମସ୍ତଙ୍କ ସାହାଯ୍ୟ ଓ ସହାନୁଭୂତିରେ ଏହି ଗ୍ରନ୍ଥ ପ୍ରକାଶିତ ହେଲା । ଏଥିପାଇଁ ସମସ୍ତଙ୍କ ନିକଟରେ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଚି । ଏ କାର୍ଯ୍ୟରେ ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ ମହୋଦୟଙ୍କ ପରିଶ୍ରମ ଚିରସ୍ମରଣୀୟ ହୋଇ ରହିବ ।

## ନିବେଦନ

ଏଦେଶର ନେତା, କର୍ମୀ, ପଣ୍ଡିତ, ବ୍ୟବସ୍ଥାପକ, ବୈଜ୍ଞାନିକ, ଦାର୍ଶନିକ, ଅଧ୍ୟାପକ, ଅଧ୍ୟକ୍ଷ, କର୍ମଗୃହୀ, ଛାତ୍ର, ଶିଳ୍ପୀ, କୃଷକ, ବ୍ୟବସାୟୀ ଓ ନାନା ବୃତ୍ତିଅବଲମ୍ବନକାରୀ ନାଗରିକମାନଙ୍କ ରାଜନୀତି, ସମାଜନୀତି ଓ ଅର୍ଥନୀତି ବିଷୟକ ବ୍ୟାପକ ଜ୍ଞାନର ପରିବେଷଣ ସକାଶେ ଓଡ଼ିଆଭାଷାରେ କୌଟିଲ୍ୟ ଅର୍ଥଶାସ୍ତ୍ରର ଅନୁବାଦ ହେଲା । ଏହି ଅର୍ଥଶାସ୍ତ୍ର ପ୍ରାୟ ତେଇଶିଶହ ବର୍ଷ ତଳର ଗୋଟିଏ ସଂସ୍କୃତ ସୂତ୍ରମୟ ଗ୍ରନ୍ଥ । ଏହାର ସୂତ୍ରମାନଙ୍କର ସରଳାର୍ଥ କରିବାକୁ ଯାଇ ବିଭିନ୍ନ ଭାଷାଭାଷୀ ଅନୁବାଦକମାନଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଚି । ଓଡ଼ିଆ ଭାଷାରେ ଅନୂଦିତ ହେବା ଆଗରୁ ଇଂରାଜୀ, ସଂସ୍କୃତ, ହିନ୍ଦୀ, ମରାଠି ଓ ବଙ୍ଗଭାଷାରେ ଏହାର ଅନୁବାଦ ବାହାରିଚି ଏବଂ ଏହି ଅନୁବାଦମାନଙ୍କରେ ଅସାମଞ୍ଜସ୍ୟ ରହିଥିବା କଥା ଅନେକ ସ୍ଥାନରେ ପ୍ରକାଶ ପାଇଚି । ୧୯୦୯ ମସିହାରେ ମହାମହୋପାଧ୍ୟାୟ ଅର୍ଥଶାସ୍ତ୍ରବିଶାରଦ ପଣ୍ଡିତପ୍ରବର ଡକ୍ଟର ଆର୍. ଶ୍ୟାମଶାସ୍ତ୍ରୀ ଯେତେବେଳେ ଏହାର ଇଂରାଜୀ ଅନୁବାଦ କରନ୍ତି, ସେତେବେଳେ ଏହି ଗ୍ରନ୍ଥର ଭାଷ୍ୟଗୁଡ଼ିକ ବଡ଼ କଠିନ ଥିବାପରି ମନେହେଲା । ତେଣୁ ସେ ସେତେବେଳେ ଏଥିରୁ ଯାହା ବୁଝିଲେ ତଦନୁରୂପ ଅନୁବାଦ କରିଗଲେ । କିନ୍ତୁ ତାଙ୍କ ପରବର୍ତ୍ତୀ ସଂସ୍କୃତଟୀକାକାର ମହାମହୋପାଧ୍ୟାୟ ପଣ୍ଡିତ ଟି. ଗଣପତିଶାସ୍ତ୍ରୀ ଯେତେବେଳେ ୧୯୨୩ ମସିହାରେ ତାଙ୍କର ସୁବିଖ୍ୟାତ ଶ୍ରୀମୂଳାଖ୍ୟ ବ୍ୟାଖ୍ୟା ପ୍ରକାଶ କଲେ, ସେତେବେଳେ ସେ ଶ୍ୟାମଶାସ୍ତ୍ରୀଙ୍କର

ଏହି ଇଂରାଜୀ ଅନୁବାଦରେ ବହୁ ଭ୍ରମ ପ୍ରମାଦ ଥିବା କଥା ପ୍ରଦର୍ଶନ କଲେ । ଲାହୋର ଓ ଦିଲ୍ଲୀରୁ ଯେଉଁ ହିନ୍ଦୀ ଅନୁବାଦ ବାହାରିଛି, ସେ ସବୁ ମଧ୍ୟ ଏହି ଇଂରାଜୀ ଅନୁବାଦପରି ସ୍ଥଳବିଶେଷରେ ପ୍ରମାଦପୂର୍ଣ୍ଣ ।

ମୁଁ ଯେତେବେଳେ ଏହି ଗ୍ରନ୍ଥର ଅନୁବାଦ କରିବାକୁ ଗଲି, ସେତେବେଳେ ଏହାର କେତେକାଂଶ ହିନ୍ଦୀ ଓ ଇଂରାଜୀ ଗ୍ରନ୍ଥ ଅନୁସାରେ ଅନୁବାଦ କଲି; ଏତିକିବେଳେ ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ ମହୋଦୟଙ୍କ ଘୋର ଆପତ୍ତିକ୍ରମେ ପୁଣି ଏହି ଅନୁବାଦ ସଂସ୍କୃତଟୀକା ଅନୁଯାୟୀ କରିବାକୁ ବାଧ୍ୟ ହେଲି । ପଣ୍ଡିତ ମହୋଦୟ ମଧ୍ୟ ଖୁବ୍ ସତର୍କତାର ସହିତ ଏହି ଅନୁବାଦକୁ ସଂସ୍କୃତ ବ୍ୟାଖ୍ୟା ସହିତ ମିଳାଇ ବହୁ ଶ୍ରମସ୍ୱୀକାର ପୂର୍ବକ ସଂଶୋଧନ କରିଛନ୍ତି । କେବଳ ଏତିକି ନୁହେଁ, ଓଡ଼ିଶା ସାହିତ୍ୟ ଏକାଡେମୀ ଯେତେବେଳେ ଏହାର ପ୍ରକାଶ ଦାୟିତ୍ୱ ନେଲେ, ସେତେବେଳେ ତାଙ୍କ ନିର୍ଦ୍ଦେଶକ୍ରମେ ଓଡ଼ିଶାର ପ୍ରଖ୍ୟାତ ପ୍ରାବନ୍ଧିକ ଶ୍ରୀ କପିଳେଶ୍ୱର ଦାଶ, ଏମ୍. ଏ., ବି. ଇଡ୍. ଏହା ପର୍ଯ୍ୟବେକ୍ଷଣ (Review) କରି ଠାଏଠାଏ ଓଡ଼ିଆ ଅଂଶ ସଜାଡ଼ି ଦେଇଛନ୍ତି ।

ଏପରି ହେଲେ ମଧ୍ୟ ଏତେ ବଡ଼ ଗ୍ରନ୍ଥରେ ଅନୁବାଦକ, ସଂଶୋଧକ, ପର୍ଯ୍ୟବେକ୍ଷକ ଓ ମୁଦ୍ରାକରଙ୍କର ଅଲକ୍ଷ୍ୟରେ ଯଦି କେଉଁଠି କିଛି ଭୁଲ ବା ଅସଙ୍ଗତ ବିଷୟ ରହିଯାଇଥିବାର କୌଣସି ପାଠକବନ୍ଧୁଙ୍କ ଦୃଷ୍ଟିଗୋଚର ହୁଏ, ତେବେ ସେ ତାହା ଦୟାପୂର୍ବକ ନିଜର ଯୁକ୍ତିସଂଗତ ସଂକେତ (Suggestion) ସହିତ ଅନୁବାଦକଙ୍କୁ ଜଣାଇଦେଲେ ପରବର୍ତ୍ତୀ ସଂସ୍କରଣରେ ତାହା ଯଥାବିଧି ସମାବେଶିତ ହେବ ।

ବିଶେଷ କଥା—ଭାରତ ସ୍ୱାଧୀନ ହେବା ପରେ ମୋଭଳି ଜଣେ ସାଧାରଣ କର୍ମୀର ପରବର୍ତ୍ତୀ କର୍ତ୍ତବ୍ୟରୂପେ ମୁଁ ଏହି କୌଟଲ୍ୟ-ଅର୍ଥଶାସ୍ତ୍ରର ଅନୁବାଦକୁ ହିଁ ବାଛିନେଲି । ଆଜି ଆମ ଦେଶରେ ପଣ୍ଡିତ ନେହରୁ ଯେପରି ଜଣେ ଅସାଧାରଣ ବ୍ୟକ୍ତି ଓ ସର୍ବମାନ୍ୟ ଜନନାୟକ, ପ୍ରାୟ ବାଇଶିଶହ ବର୍ଷ ପୂର୍ବେ ଏହି ଗ୍ରନ୍ଥପ୍ରଣେତା ଆଚାର୍ଯ୍ୟ ଚାଣକ୍ୟ ମଧ୍ୟ ସେପରି ଜଣେ ପୂଜ୍ୟ ଓ ପ୍ରତିଭାବାନ୍ ବ୍ୟକ୍ତି ଭାବରେ ଏ ଦେଶରେ ଖ୍ୟାତି ଅର୍ଜନ କରିଥିଲେ । ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର ଗଠନପାଇଁ ଚାଣକ୍ୟଙ୍କର ଯେଉଁ

ପରିକଳ୍ପନା ଥିଲା, ତାଙ୍କୁ ସେ ତାଙ୍କର ଏହି ଉପାଦେୟ ଗ୍ରନ୍ଥରେ ରୂପାୟିତ କରି ଯାଇଛନ୍ତି । ଦେଶ କ'ଣ, ସରକାର କ'ଣ, ମନ୍ତ୍ରୀ, ନେତା, ସଦସ୍ୟ, ଅଧ୍ୟକ୍ଷ, ଦୂତ, କର୍ମଚାରୀ ଓ ସେନାପତିଙ୍କ କର୍ତ୍ତବ୍ୟ କ'ଣ, ଦେଶରେ କୃଷି, ବାଣିଜ୍ୟ ଓ ଶିଳ୍ପର ଉନ୍ନତି କିପରି ହେବ, ଦେଶର ପ୍ରତ୍ୟେକ ବ୍ୟକ୍ତି କିପରି ବିଦ୍ୱାନ୍ ଓ ଧନବାନ୍ ହୋଇ ଭଦ୍ରୋଚିତ ଜୀବନଯାପନ କରିବେ, ଦେଶ କିପରି ଶତ୍ରୁ କବଳରେ ନପଡ଼ି ସର୍ବଦା ସ୍ୱାଧୀନ ହୋଇ ରହିବ, ଗୁପ୍ତଚରସଂସ୍ଥା କିପରି ସୁଦୃଢ଼ ହେବ, ଦେଶର ଗୁପ୍ତସଂବାଦ କିପରି ଗୁଢ଼ ବା ଗୋପନୀୟ ହୋଇ ରହିବ, ପୃଥିବୀର ଲୋକେ ଦେଶକୁ କିପରି ସମ୍ମାନ ଦେବେ ଏବଂ ସର୍ବୋପରି ଦେଶବାସୀ କିପରି ଅସୀମ ଧୈର୍ଯ୍ୟ ଓ ବୀରତ୍ୱର ସହିତ ଦେଶମାତୃକାର ସ୍ୱାଧୀନତା ରକ୍ଷାପାଇଁ ସର୍ବଦା ପ୍ରସ୍ତୁତ ହୋଇ ରହିବେ—ଏ ସମସ୍ତ ବିଷୟ ଏଥିରେ ଆଲୋଚନା କରାଯାଇଛି । ଓଡ଼ିଶାବାସୀ ଏ ସମସ୍ତ ବିଷୟ ନିଜ ମାତୃଭାଷାରେ ପଢ଼ି ନିଜକୁ ଯେପରି ଉନ୍ନତ କରି ଗଢ଼ିବାକୁ ଯତ୍ନ କରିବେ ସେହି ଲକ୍ଷ୍ୟରେ ମୁଁ ଏହି ଅନୁବାଦ କରିଛି । ସମସ୍ତେ ଏହା ପଢ଼ନ୍ତୁ ଓ ଆଲୋଚନା କରନ୍ତୁ, ଏହା ମୋର ଆନ୍ତରିକ କାମନା ।

ବହୁକାଳ ଧରି ଦେଶ ପରାଧୀନ ହେବା ଫଳରେ ଦେଶବାସିଙ୍କ ମନରେ ଅବସାଦ, ନୈରାଶ୍ୟ ଓ ଅଧୀରତା ଜମିରହିଛି । ଏବେ ମଧ୍ୟ ଏ ଦେଶରେ ଇଂରାଜୀ ଭାଷା ମାଧ୍ୟମରେ ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସକଳ କ୍ଷେତ୍ରରେ ଶିକ୍ଷାଦାନ ଚାଲିଛି । ଇଂରାଜୀ ଭାଷା ଗୋଟାଏ ମତ୍ତହସ୍ତୀ ପରି ଆମ ମାନସ-କାନନରେ ବିହାର କରୁଥିବା ବେଳେ ସଂସ୍କୃତ ଭାଷା ସୁପ୍ତସିଂହ ଭଳି ବିସ୍ମୃତିର ଗୁହା ଗହ୍ୱରରେ ଆଶ୍ରୟ ନେଇଛି । କିନ୍ତୁ ସୁରଭାରତୀର ପ୍ରାଚୀଦିଗ୍‌ବଳୟ କ୍ରମେ କୁଙ୍କୁମରାଗରେ ରଞ୍ଜିତ ହେଉଥିବାର ଉପଲବ୍ଧ ହେଉଛି । ସଂସ୍କୃତ ଭାଷାର ଉପାଦେୟ ଗ୍ରନ୍ଥମାନଙ୍କୁ ବିଭିନ୍ନ ପ୍ରାଦେଶିକ ଭାଷାରେ ଅନୁବାଦ କରି ଆଞ୍ଚଳିକ ସାହିତ୍ୟର ଶ୍ରୀ ସମ୍ପାଦନ ଲାଗି ପ୍ରବଳ ପ୍ରଚେଷ୍ଟା ସମାରବ୍ଧ ହୋଇଅଛି । ମନେ ହେଉଛି, ସଂସ୍କୃତଭାଷାର ଅବସନ୍ନ ପ୍ରାଣରେ ତାରୁଣ୍ୟର ନବୀନ ସ୍ପନ୍ଦନ ସଂଚରିତ ହେଉଅଛି ଓ ଆଜିର ଶିକ୍ଷିତ ସମାଜ ସେହି ତାରୁଣ୍ୟର ତରଳ ଲହରୀରେ ପ୍ରୀତିପ୍ରବଣ ହୋଇ ପ୍ରାଚୀନ ଭାରତୀୟ ଚିନ୍ତା ସଙ୍ଗେ

ନିଜନିଜର ଅମ୍ବିକ ସମ୍ପର୍କ ସ୍ଥାପନ କରିବାକୁ ଲାଳାୟିତ ଓ ପ୍ରଚେଷ୍ଟିତ ହେଉଅଛନ୍ତି । ଭଗବାନ୍ କରନ୍ତୁ, ଦିନ ଆସୁ, ତରୁଣ ମୁକ୍ତ ଭାରତ ପ୍ରବୀଣ ଭାରତର ଗୁରୁଗମ୍ଭୀର ଶଙ୍ଖଧ୍ୱନିରେ ଧ୍ୱନିତ ହୋଇଉଠୁ, 'ପୁରାତନ'ର ଅନୁଭୂତିରେ 'ନବୀନ'ର କର୍ମଠତା ସମାବେଶିତ ହୋଇ ସୁବର୍ଣ୍ଣ ଲତିକାରେ ସୌରଭର ସଙ୍ଗୃହ ହେଉ ।

**ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ**

ଜଗନ୍ନାଥପୁର ଶାସନ,
ପୋଃଅଃ ଜଗନ୍ନାଥପ୍ରସାଦ
(ଗଞ୍ଜାମ)

ବିନୀତ
**ଅନୁବାଦକ ।**

# ସମର୍ପଣ

ଦେଶମାତୃକାର ସେବା,

ସମାଜର କଲ୍ୟାଣ ଓ ଭାରତୀୟ

ମହାଜାତିର ସ୍ୱାଧୀନତା ରକ୍ଷା ସକାଶେ

ଯେଉଁ ପୁଣ୍ୟାତ୍ମାଗଣ ଚରମ ଭାବନା, ଚରମ

ସାଧନା ଓ ଚରମ ତ୍ୟାଗ ସ୍ୱୀକାର କରିଚନ୍ତି—

କରୁଚନ୍ତି—କରିବେ, ସେମାନଙ୍କ

ମହାନ୍ ବ୍ୟକ୍ତିତ୍ୱ ନିକଟରେ

ଅନୁବାଦକ

ବିନମ୍ରଭାବେ ତାର ଏହି

ନଗଣ୍ୟ ଶ୍ରମଟିକୁ ଅର୍ପଣ କରୁଚି ।



# ଗ୍ରନ୍ଥପ୍ରଶସ୍ତିଃ

ବିଶ୍ୱେଽସ୍ମିନ୍ ଧର୍ମାର୍ଥକାମମୋକ୍ଷାଣାଂ ଚତୁର୍ଣ୍ଣାଂ ପୁରୁଷାର୍ଥାନାଂ ମଧ୍ୟେଽର୍ଥସ୍ୟ ପ୍ରଧାନୋପାଦେୟତା ସର୍ବଜନସମ୍ମତା । ନହି କଶ୍ଚିଦର୍ଥେନ ବିନା ଶାରୀରିକଯାତ୍ରାମପି ନିର୍ବାହୟିତୁଂ ସମର୍ଥଃ । ଶରୀରାଭାବେ ଧର୍ମକାମମୋକ୍ଷାଣାଂ ତ୍ରୟାଣାଂ ପୁରୁଷାର୍ଥାନାଂ ସଂପ୍ରାପ୍ତିରସଂଭବା । ଅତଃ ଅର୍ଥବିଷୟକଜିଜ୍ଞାସାୟାଃ କରଣୀୟତା ଦେଦୀପ୍ୟମାନାବର୍ତ୍ତି । ଜନାନାଂ ଜୀବନୋପାୟଃ 'ଅର୍ଥ' ଇତି—ଅବଦତ୍ ତନ୍ତ୍ରଭବାନ୍ ସକଳକୋବିଦକୁଳମୁକୁଟାଲଂକାରଃ ଶ୍ରୀମାନ୍ ମହାମନୀଷୀ କୌଟିଲ୍ୟଃ । ସ ଖଳୁ ବିରଚୟ୍ୟାର୍ଥଶାସ୍ତ୍ରଂ ତତ୍ରାନ୍ତର୍ଭୂତ-ମଚ୍ଛରେଦର୍ଥାନାଂ ବିସ୍ତରଜାତମ୍ । ଅର୍ଥାସ୍ତନ୍ତ୍ରାବାପାଦୟଃ । ଏତେଷାଂ ବିସ୍ପଷ୍ଟବିବରଣଂ କୃତ୍ୱା ସ୍ୱସିଦ୍ଧାନ୍ତମସ୍ଥାପୟତ୍ । ଅସ୍ମାତ୍ ପୂର୍ବେ ମହାନ୍ତୋ ମହନୀୟଚରିତାଃ ପରଂ ନୀତିବିସ୍ତରବିଚକ୍ଷଣାଃ ଶୁକ୍ରବୃହସ୍ପତିଭୀଷ୍ମୋଦ୍ଧବ-ଦ୍ରୋଣେନ୍ଦ୍ରସହଦେବପ୍ରଭୃତୟୋ ବିଶିଷ୍ଟନୀତିବିଦ୍ୟାନିଷ୍ଣାତାଃ ପଣ୍ଡିତାଃ ସ୍ୱ ସ୍ୱ ନାମ୍ନା ନୀତିଶାସ୍ତ୍ରାଣ୍ୟକଲ୍ପୟନ୍ । ଅୟଂ ତୁ ପ୍ରମାଣପାରାବାରଃ ସକଳ ବେଦବେଦାନ୍ତାଦିଦର୍ଶନଶାସ୍ତ୍ରବାରାଂନିଧିଃ ଶ୍ରୀକୌଟିଲ୍ୟଃ ସୁଗଭୀରଭାବ-ଭରିତସୂତ୍ରକଦମ୍ବମୟମର୍ଥଶାସ୍ତ୍ରମକରୋତ୍ ନ ସ୍ୱନାମ୍ନା ଚ । ଏବମେବାର୍ଥଶାସ୍ତ୍ରଂ ନାମ ରାଜ୍ୟପରିଚାଳକଗ୍ରନ୍ଥବିଶେଷଃ । ଶାସ୍ତ୍ରେଽସ୍ମିନ୍ ଶୁକ୍ରାଦିମହର୍ଷିଣାଂ ନୀତିଶାସ୍ତ୍ରଗତମତଂ ଶାସ୍ତ୍ରୀୟଲୌକିକଯୁକ୍ତିପରଂପରୟା ଖଣ୍ଡୟିତ୍ୱା ବିଜ୍ଞାତ-ବେଦଲୋକମର୍ଯ୍ୟାଦଃ ସ୍ୱସିଦ୍ଧାନ୍ତମତମସ୍ଥାପୟତ୍ । ସଃ ଚନ୍ଦ୍ରଗୁପ୍ତରକ୍ଷକଃ ପରମନୀତିପଣ୍ଡିତଶ୍ଚାଣକ୍ୟଃ । ଶାସ୍ତ୍ରେଽସ୍ମିନ୍ ଅଧୋଲିଖିତାନାଂ ବିଷୟାଣାଂ ସୁବିସ୍ତରଃ ସମ୍ୟକ୍କୃତତ୍ୱେନ ପ୍ରତିଭାବିତା ସତା ।

(୧) ସ୍ୱରାଷ୍ଟ୍ରପାଳନପରରାଷ୍ଟ୍ରନୀତିନିୟନ୍ତ୍ରଣବିଷୟକବିସ୍ତରଃ, ଅଧ୍ୟକ୍ଷ କର୍ମକର୍ତ୍ତୃଣାଂ ନିର୍ବାଚନଂ ନିଯୋଜନଂ ଚ । (୨) ବଳବଦ୍ଦଳଯୁକ୍ତସ୍ୟ ସ୍ୱାଧୀନରାଷ୍ଟ୍ରସ୍ୟ ପରିଚାଳନପ୍ରକ୍ରିୟା, ଲକ୍ଷଣଯୁକ୍ତମନ୍ତ୍ରୀନିର୍ବାଚନଂ ଚ । (୩) ମନ୍ତ୍ରିମଣ୍ଡଳସ୍ୟ ସଂଖ୍ୟା, ତତ୍ପ୍ରଧାନସ୍ୟ ମନ୍ତ୍ରିଣଃ କାର୍ଯ୍ୟକଳାପଃ ରାଷ୍ଟ୍ରଦୂତନିର୍ବାଚନଂ ତଦ୍ୱିନିଯୋଜନଂ ଚ । (୪) ତସ୍ୟ ପରୀକ୍ଷା ପରୀକ୍ଷାୟାଃ ସୁବିବୃତିଶ୍ଚ । (୫) ଗୁପ୍ତଚରାଣାଂ ଲକ୍ଷଣଂ ତେଷାଂ ନିଯୁକ୍ତିପ୍ରକାରଶ୍ଚ ପ୍ରତିବେଶିନିତ୍ୟବୈରିତ୍ୱବିସ୍ତରଶ୍ଚ । (୬) କୃଷିବାଣିଜ୍ୟଶିଳ୍ପସୂନସୁରାମାଂସ-

ବେଣ୍ୟାୟୁଧଗବାଶ୍ୱହସ୍ତିପଦାତପ୍ରଭୃତୀନାଂ ସୁବ୍ୟବସ୍ଥାଲୋଚନଂ, କୋଷ-ମନ୍ତ୍ରଣାବିଚାରାଳୟାଣାଂ ବିଧିବିହିତବ୍ୟବସ୍ଥୟା ନିର୍ମାଣଂ ଦୁର୍ଗନିର୍ମାଣପ୍ରକ୍ରିୟା ଚ । (୭) ଆୟୁଧଲକ୍ଷଣମାୟୁଧାଗାରନିର୍ମାଣପଦ୍ଧତିଶ୍ଚ । ଗୁପ୍ତଧନସଂରକ୍ଷଣ-କ୍ରମଃ କୂଟନୀତ୍ୟା ସୈନ୍ୟସଂରକ୍ଷଣସ୍ଥାନନିର୍ମାଣଂ ଜଳସ୍ଥଳାକାଶ-ଭୌମାଦୃଶ୍ୟମନ୍ତ୍ରଯନ୍ତ୍ରତନ୍ତ୍ରକପଟସଂପୁଟଯୁଦ୍ଧାନାଂ ପ୍ରକ୍ରିୟା ଚ । (୮) ବିଚାରମନ୍ତ୍ରଣାମୁଦ୍ରାଯନ୍ତ୍ରାଳୟାନ୍ତଃସ୍ଥପୁରନିର୍ମାଣଂ ତଦାଧିକାରିକପୁରୁଷାଣାଂ ଲକ୍ଷଣବିଚାରଶ୍ଚ । (୯) ସୁବର୍ଣ୍ଣାଦିଧାତୁଖନିବିଜ୍ଞାନଂ ତତ୍ପରୀକ୍ଷା ଚ । (୧୦) ଦୋହଦଶକ୍ତ୍ୟାଧିକଶସ୍ୟସମୁତ୍ପାଦନପ୍ରକାରଃ ସାମବାୟିକକୃତିତ୍ୱପ୍ରଦର୍ଶନଂ ଚ । (୧୧) ରାଜନୈତିକାର୍ଥନୈତିକସାମାଜିକାନାଂ ବିଷୟାଣାଂ ସକାରଣକ-ବିଚାରଶ୍ଚ । (୧୨) ବିଚାରପତିପ୍ରଭୃତୀନାଂ ପଞ୍ଚାବୟବବାକ୍ୟଜ୍ଞାନପୂର୍ବଃ-ସରସିଦ୍ଧାନ୍ତାନୁସରଣଂ ପତ୍ରସାକ୍ଷ୍ୟପ୍ରମାଣାନାଂ ଚ କ୍ରମଶଃ ଆଲୋଚନଂ ଚ । (୧୩) କଣ୍ଟକଶୋଧନଂ ପରରାଷ୍ଟ୍ରାଗତସ୍ୱରାଷ୍ଟ୍ରବିଚରଣଶୀଳଗୁପ୍ତଚରାଣାଂ ତତ୍ତଦ୍ବିଭାଗୀୟପୁରୁଷୈରନୁସନ୍ଧାନଂ ଚ । (୧୪) ଭାରତୀୟାର୍ଯ୍ୟମର୍ଯ୍ୟାଦା ସଂରକ୍ଷଣପୁରଃସରଭାରତୀୟସଂସ୍କୃତିସଂପନ୍ନାଦମକାଳସିଦ୍ଧରାଜନିର୍ବାଚନମ୍ । ବୈବସ୍ୱତମନୋରାଦ୍ୟମନିର୍ବାଚନପ୍ରାପ୍ତରାଜତ୍ୱସମ୍ବନ୍ଧୀୟସୁବିଚାରଶ୍ଚ । (୧୫) ସର୍ବଦା ଭାରତସ୍ୟାସ୍ୟ ରାଜନୀତିର୍ଗଣତାନ୍ତ୍ରିକୀ ଏବ ହିତକାରିଣୀତି ବିଚାରଃ, ଉଭୟତଃ ପ୍ରାପ୍ତବର୍ତ୍ତିନାନାଂ ଶତ୍ରୁରାଜ୍ୟେକୃତବିବାହାଦି-କ୍ରିୟାଣାଂ ଦୃଢ଼ରାଜ୍ୟସ୍ଥିତାମବଲମ୍ବମାନାନାମପି ସତ୍ୟବସରେ ସ୍ୱାମିଭକ୍ତି-ପରବଶତୟା ତତ୍ତ୍ୟାଗନିପୁଣାନାଂ ପରମର୍ମଜ୍ଞାନାଂ ବିଜ୍ଞାନାଂ ବିବିଧ ଗୁଢ଼ଚରାଣାଂ ପରରାଷ୍ଟ୍ରେ ବିଧିନା ନିୟୋଜନଂ ଚ । (୧୬) କାର୍ଯ୍ୟପ୍ରେଷ୍ୟାଣାଂ ରାଜଦୂତଭିନ୍ନବିବିଧଦୂତାନାଂ ପ୍ରେଷଣପ୍ରକାରଃ, ସନ୍ଧିବିଗ୍ରହ-ଯାନାସନଦ୍ୱୈଧୀଭାବାଶ୍ରୟାଣାଂ ସୁବିଚାରଶ୍ଚ । (୧୭) ସମୟୁକ୍ତିର୍ବ୍ୟତା, ବିଷଶସ୍ତ୍ରାସ୍ତ୍ରପ୍ରୟୋଗବିଧିବିଚାରଶ୍ଚ । (୧୮) ସ୍ୱାମ୍ୟମାତ୍ୟସୁହୃତ୍କୋଷ-ରାଷ୍ଟ୍ରଦୁର୍ଗବଳାନାଂ ବିଧିବିହିତଶକ୍ତ୍ୟା ସଂରକ୍ଷଣମ୍, ତଦ୍ବିଷୟବିଚାରଶ୍ଚ । (୧୯) ଯୁଦ୍ଧକାଳୀନସୈନ୍ୟନିବେଶପ୍ରକାରଃ ସୈନ୍ୟସାମନ୍ତାନାଂ ବ୍ୟୂହ-ରଚନୟା ନିବେଶନପ୍ରକାରବିଚାରଶ୍ଚ । (୨୦) ବିଷମିଶ୍ରିତଖାଦ୍ୟାନାଂ ପକ୍ଷିଭିଃ ପରୀକ୍ଷା ତଦ୍ବିଚାରଶ୍ଚ । (୨୧) ଶତ୍ରୁସଂହାରବିଷୟକ ବିଚିତ୍ରମୟ-ବିବିଧୋପାୟାନାଂ ବିଶେଷବିବରଣମ୍, ସ୍ତମ୍ଭନମୋହନାଦୀନାଂ ପ୍ରତ୍ୟକ୍ଷ-କାର୍ଯ୍ୟକାରିତାବିଷୟକବିଚାରଶ୍ଚ । (୨୨) ସମନ୍ତ୍ରକବିଷଦଗ୍ଧଧୂମୋଦ୍ଗମ-

ନିପୁଣମୋହକା(କୃତ୍ରିମକା)ସ୍ତ୍ରଶସ୍ତ୍ରାଣାଂ ଶତ୍ରୋଃ ପରାଭବାର୍ଥଂ ଗୁରୁପରଂପରା-ପରପ୍ରାପ୍ତବିଧିନା ପ୍ରୟୋଗଃ, ଯୁଦ୍ଧସମୟୋଚିତାତ୍ମରକ୍ଷା ବ୍ୟବସ୍ଥା ଚ । (୨୩) ସର୍ବୋତ୍କୃଷ୍ଟାକାଶଯୁଦ୍ଧସମ୍ବନ୍ଧୀୟୁବିଗ୍ରହଃ, ମାୟାସୈନ୍ୟନିର୍ମାଣଂ ଚ । (୨୪) ସୀମାନ୍ତସଂରକ୍ଷଣସମ୍ବନ୍ଧେ ରାଜ୍ୟପରଂପରାଳକାନାଂ କର୍ତ୍ତବ୍ୟତା-ସମ୍ବନ୍ଧୀୟୁବିଗ୍ରହଃ କଳ୍ପିତରଯୁଗେଷୁ ପ୍ରଭୁମନ୍ତ୍ରୋତ୍ସାହାଦୀନାଂ ତ୍ରିବିଧ-ଶକ୍ତୀନାଂ ପ୍ରଧାନତୟା କରଣୀୟୁତାବିଗ୍ରହଶ୍ଚ । (୨୫) ଯୁଗେଷ୍ୱସ୍ମିନ୍ କଳୌ ତ୍ରିବିଧଶକ୍ତୀନାମୁପଯୁକ୍ତାନାଂପରମୋପାଦେୟୁତାସ୍ତି ତଥାପି ସଂଘଶକ୍ତେଃ ପ୍ରାଧାନ୍ୟଂ ବିଷୟେଽସ୍ମିନ୍ ବହୁବିଗ୍ରହଃ, ରାଜଭବନନିର୍ମାଣସ୍ୟ-ଚମତ୍କାରପଦ୍ଧତିଃ, ନିର୍ମାଣାପରକ୍ଷଣେ ତନ୍ନିର୍ମାତୃଣାମବସ୍ଥାବର୍ଣ୍ଣନଂ ଚ । (୨୬) ଆନ୍ୱୀକ୍ଷିକ୍ୟାଦୀନାଂ ବିଦ୍ୟାସ୍ୱବିସ୍ତୃତିଃ, ଖଣ୍ଡମଣ୍ଡଳେ ନିଯୁକ୍ତାନାଂ ପ୍ରଧାନାଧିକାରିଣାଂ ପରୀକ୍ଷାପୂର୍ବଃସରନିଯୋଜନଂ ଚ । (୨୭) ସହଜପ୍ରାକୃତକୃତ୍ରିମାଣାଂ ଶତ୍ରୂଣାଂ ଲକ୍ଷଣଂ, ତାନ୍ ପ୍ରତି କର୍ତ୍ତବ୍ୟବିଗ୍ରହଶ୍ଚ । (୨୮) ଶତ୍ରୂଣାଂ ମନ୍ତ୍ରଶକ୍ତ୍ୟା ସଂହାରଃ, ତଦ୍‌ବିଷୟଶିକ୍ଷାଦାନପଦ୍ଧତିଶ୍ଚ । (୨୯) ରାଜ୍ୟତଃ ନୀତ୍ୟା, ଧର୍ମେଣ ଗୃହମର୍ଯ୍ୟାଦାସଂରକ୍ଷଣପୂର୍ବଃସରକରଗ୍ରହଣବିଷୟକ ସୁବିଗ୍ରହଃ, ମୁଦ୍ରା-ବ୍ୟବହାରବିଧିଶ୍ଚ । (୩୦) ସ୍ୱାୟତ୍ତସଚିବାୟତ୍ତୋଭୟାୟତ୍ତସିଦ୍ଧିପ୍ରଭୃତୀନାଂ ବିଷୟାନାଂ ବିଗ୍ରହଃ, ନାନୋପାୟେନ ଶତ୍ରୋଃ ସଂଘଭେଦନବିଗ୍ରହଶ୍ଚ । (୩୧) ବିଜିଗୀଷୋଃ କଦା ଜୈତ୍ରଯାତ୍ରାପ୍ରଶସ୍ତା କଦା ବାପସ୍ତତ୍ସମ୍ବନ୍ଧୀୟୁବିଗ୍ରହଃ, ଜେତବ୍ୟପାର୍ଷ୍ଣିଗ୍ରାହାଦୀନାଂଲକ୍ଷଣବିଗ୍ରହଶ୍ଚ । (୩୨) ଅବରୋଧସ୍ୟ ମୂଳବଳେନ ସଂରକ୍ଷଣଂ, ବିଜୟମନ୍ତ୍ରିତସ୍ୟ ପରାଭୂତଶତ୍ରୁଂପ୍ରତି ବ୍ୟବହାରଶ୍ଚ । (୩୩) ଶିକ୍ଷାବିଭାଗସ୍ୟ ସର୍ବୋତ୍କୃଷ୍ଟତାସମ୍ବନ୍ଧୀୟୁ ବିଗ୍ରହଃ, ସମ୍ଭୂୟ-ସମୁତ୍ଥାନାଦିକଂ ଚ । ଏବଂ ବହବଃ ବିଷୟାଃ ସଂବର୍ଣ୍ଣିତାଶ୍ଚାସ୍ମିନ୍ନର୍ଥଶାସ୍ତ୍ରେ ତତ୍ସର୍ବବିଜ୍ଞାତା ବିସ୍ତୃତଗ୍ରନ୍ଥେନ ।

କଠିନସଂସ୍କୃତସୂକ୍ତମୟସ୍ୟ ଗୂଢ଼ତତ୍ତ୍ୱବତୋଽସ୍ୟାର୍ଥଶାସ୍ତ୍ରସ୍ୟ ବୋଧ-ଗମ୍ୟତା ସର୍ବେଷାଂ ନ ଭବେତେତିମତ୍ୱା ମାମକାନାନ୍ତେବାସିନା ଶ୍ରୀଅନନ୍ତରାମ-କରଶର୍ମଣାନୂଦିତମିଦମର୍ଥଶାସ୍ତ୍ରଂ ସର୍ବେଷାଂ ସୁଖବୋଧାୟ ।

ରାଜ୍ୟପାଳନବିଷୟେଽସ୍ୟଶାସ୍ତ୍ରସ୍ୟସିଦ୍ଧାନ୍ତ ଏବ ସର୍ବଯୁଗୋପଯୋଗୀ ନାତ୍ରବିଚିକିତ୍ସା । ମହାମତିରସୌ କୁଟଳଗୋତ୍ରୋଦ୍ଭବଃ ବ୍ରାହ୍ମଣପଣ୍ଡିତଃ ତକ୍ଷଶିଳାବିଶ୍ୱବିଦ୍ୟାଳୟସ୍ୟାଧ୍ୟାପକତ୍ୱମୁରୀକୃତ୍ୟ ଭାରତୀୟାନ୍ ତଥା

ଦେଶାନ୍ତରଗତାନ୍ ଅର୍ଥଶାସ୍ତ୍ରାଦକମପାଠୟତ୍ । ଅସ୍ୟ ମହତୋବିଦୁଷଃ ପ୍ରତିଭା ଅନନ୍ୟସାଧାରଣୀ । ଇଦାନୀଂତନପରିସ୍ଥିତାବପି ଚାଣକ୍ୟକୃତାର୍ଥ-ଶାସ୍ତ୍ରସ୍ୟାଶୟଂ ଯଦ ଯାସ୍ୟନ୍ତି ଭାରତୀୟନେତୃସ୍ଥାନୀୟାଃ, ମହାମହିମସଂପନ୍ନାଃ, ପ୍ରବରମତୟୋ ଦେଶପରିଚାଳନାପରିସ୍ପୃଣାଃ, ତଦାବଶ୍ୟମେବ ଭାରତବର୍ଷ-ସ୍ୟାସ୍ୟ ଅଦୃଷ୍ଟପୂର୍ବଂ ହିତଂ ଭବିଷ୍ୟତି ନାତ୍ରସନ୍ଦେହଃ । ଗ୍ରନ୍ଥସ୍ୟାସ୍ୟ କୌଟିଲ୍ୟସ୍ୟ କତିପୟଚମତ୍କାରବିଧିର୍ବର୍ଣ୍ଣିତେ ମୁଦ୍ରାରାକ୍ଷସନାମକନାଟକେ । ଯଥାତ୍ରସନ୍ଧ୍ୟାଦୀନାଂ ସୁବିଚାରସ୍ତଥାନ୍ୟସ୍ମିନ୍ ଶାସ୍ତ୍ରେ ନାସ୍ତୀତି ମାମକୀନୋ ବିଚାରଃ ।

ଅପିଚ—ବ୍ୟବସ୍ଥିତାର୍ଯ୍ୟମର୍ଯ୍ୟାଦଃ କୃତବର୍ଣ୍ଣାଶ୍ରମସ୍ଥିତିଃ ।
ତ୍ରୟ୍ୟାହି ରକ୍ଷିତୋ ଲୋକଃ ପ୍ରସୀଦତି ନ ସୀଦତି ॥

ଶ୍ଲୋକାଦସ୍ମାତ୍ କୌଟିଲ୍ୟାର୍ଥଶାସ୍ତ୍ରମଧ୍ୟସ୍ଥାତ୍ ଧର୍ମକାମମୋକ୍ଷାଣାମପି ପ୍ରାପ୍ତ୍ୟୁପାୟଃ, ବର୍ତ୍ତତେ କୌଟିଲ୍ୟାର୍ଥଶାସ୍ତ୍ରେ ଇତ୍ୟବଗମ୍ୟତେ । ଅସ୍ମିନ୍ ବିବିଧପ୍ରାଣିପରିପୂରିତାଖଣ୍ଡଦଣ୍ଡାୟମାନପ୍ରଚଣ୍ଡପ୍ରପଞ୍ଚପ୍ରବାହେ ମଜ୍ଜନ୍ତୋ ଜନାଃ ଯଥା—ପୁରଃ ପ୍ରାପ୍ୟାର୍ଥଂ ତେନ ଚ ଧର୍ମକାମମୋକ୍ଷାଣାଂ ଭାଜନାନି ଭବେୟୁସ୍ତଥା ଉପାୟପରଂପରାମସ୍ମିନ୍ ଶାସ୍ତ୍ରେଽଲିଖତ୍ । ଅତ୍ର ଚ ସମ୍ୟକ୍ ବର୍ଣ୍ଣିତ ସ୍ତତ୍ରଭବତା ମହାମତିନା ଚାଣକ୍ୟେନ କୌଟିଲ୍ୟାପରନାମ୍ନା ବିବୁଧକୁଳ-ତିଳକେନ ବିଷ୍ଣୁଗୁପ୍ତେନ ସର୍ବଃ ଶିଳ୍ପରାଜନୀତିବିଷୟଃ ।

ଏତାଦୃଶମର୍ଥଶାସ୍ତ୍ରଂ ଭାରତେତରଦେଶେଽଧୁନା ନାସ୍ତୀତି ମେ ବିଚାରଃ । କୃତୋତ୍କଳାନୁବାଦମସ୍ୟ ପଣ୍ଡିତଶ୍ରୀଅନନ୍ତରାମକରଣମ୍ ମାମକୀନାନ୍ତେବାସୀ ମାମଦର୍ଶୟତ୍ ତତ୍ର ଚ ଦୃଷ୍ଟ୍ୱାହଂ ବହୁସଂଗତଂ, ଅର୍ଥଶାସ୍ତ୍ରୀୟସୂତ୍ରାଣାଂ ପଣ୍ଡିତ-ଶ୍ରୀଗଣପତିଶାସ୍ତ୍ରିଣା କୃତାୟାଃ, ଟୀକାୟାଶ୍ଚ ସ୍ପଷ୍ଟାର୍ଥଂ ବହୁପରିଶ୍ରମେଣାକରବମ୍ । ଅସଂଗତବିଶିଷ୍ଟସ୍ଥଳଂ ସଂଗତସମ୍ବନ୍ଧଂ କୃତ୍ୱାଶୋଧୟମ୍ । ଅସ୍ମିନ୍ ବିଷୟେ ବହ୍ୱାୟାସୋମୟାକୃତଃ । ଅନୁବାଦଂ କୁର୍ବାଣସ୍ୟ ପଣ୍ଡିତଶ୍ରୀଅନନ୍ତରାମସ୍ୟ ମଦୀୟଶିଷ୍ୟସ୍ୟ ଉତ୍କଳାନୁବାଦଃ ସୁଶୋଭନଃ କୃତୋ ମୟା ପ୍ରଗାଢ଼ପରିଶ୍ରମବତା । ମମାତ୍ର ସାହାଯ୍ୟପ୍ରଦାନବିଷୟେ ଗ୍ରନ୍ଥସ୍ୟାସ୍ୟ ମୁଖବନ୍ଧ ଲେଖକେନ ପଣ୍ଡିତଶ୍ରୀନୀଳକଣ୍ଠଦାସେନ ଉତ୍କଳବିଧାନସଭାବାଚମ୍ପତିନା ଲିଖିତାତ୍ ପ୍ରାରମ୍ଭିକାତ୍ ସମ୍ୟକ୍ ଜ୍ଞାନଂ ସାଧୂନାଂ ସଂସ୍କୃତଭାଷାମଣ୍ଡିତାନାଂ ପଣ୍ଡିତାନାଂ ତଥାନ୍ୟେଷାଂ ବିଦୁଷାଂ ଚ ଭବିଷ୍ୟତୀତି ମେ ସିଦ୍ଧାନ୍ତବଚନମ୍ ।

ପଣ୍ଡିତଶ୍ରୀଅନନ୍ତରାମକୃତୋତ୍କଳାନୁବାଦସହିତମର୍ଥଶାସ୍ତ୍ରମବଲୋକିତଂ ମୟାମୂଳଚୂଳମ୍ । ଚାଣକ୍ୟକୃତଶାସ୍ତ୍ରସୂତ୍ରବ୍ୟୂହଂ ପଣ୍ଡିତଶ୍ରୀଗଣପତିଶାସ୍ତ୍ରିକୃତାଂ ଟୀକାଂ ଚ ବିବିଚ୍ୟ ଅନୁବାଦସ୍ୟ ସଂଶୋଧନଂ ପରିବର୍ତ୍ତନଂ ଚାକରବମ୍ । ଆଶାସେଽହମୁତ୍କଳାନୁବାଦଯୁକ୍ତାର୍ଥଶାସ୍ତ୍ରମିଦଂ ସର୍ବେଷାମୁତ୍କଳୀୟାନାଂ ରାଜ୍ୟ-ପରିଚାଳନାଧୁରଂଧରାଣାଂ ନେତୃସ୍ଥାନୀୟାନାଂ ବିଦୁଷାଂ, ଧର୍ମାର୍ଥକାମମୋକ୍ଷ-ପରାୟଣାନାମାର୍ଯ୍ୟାଣାଂ, ଶାସ୍ତ୍ରବିଶାରଦାନାଂ ନୀତିମତାଂ, ବିଚକ୍ଷଣାନାଂ ଶାସକାନାଂ, ଦେଶରକ୍ଷଣକାର୍ଯ୍ୟତତ୍ପରାଣାଂ କୃଷକାଣାଂ, ବନବିଷୟକ ନୀତିଜିଜ୍ଞାସୂନାଂ ବନକର୍ମକାରିଣାଂ, ଶିଳ୍ପକାରାଣାଂ, ନିର୍ମଳପ୍ରତିଭାବତାଂ ସତାଂ କବୀନାଂ, ଜନସେବାନିପୁଣାନାଂ ସାଧୂନାଂ, ·ବିଷୟବାସନାରତାନାଂ ଗୃହସ୍ଥାନାଂ, କିଂ ବହୁନା ବ୍ରହ୍ମବିଦାମପି ମହୋପକାରକାରକଂ ଭବେତ୍ ।

ଅସ୍ୟ ଗ୍ରନ୍ଥସ୍ୟାନୁବାଦାବସରେ ଶୁଭବାସରେ ମତ୍ସବିଧଂ ପ୍ରାପ୍ୟ ପଣ୍ଡିତଶ୍ରୀଅନନ୍ତରାମକରଶର୍ମା ମାମବଦତ୍—ମହାଭାଗ ! ସାନୁବାଦମର୍ଥଶାସ୍ତ୍ର-ମିଦଂ କଥଂ ପ୍ରକାଶଂ ପ୍ରାପ୍ସ୍ୟତୀତି । ତଦୁପାୟଚିନ୍ତାପରତନ୍ତୋଽହମବଦଂ 'ଦୀର୍ଘାୟୁଷଃ ଶ୍ରୀଶରଦୁର୍ଗୀୟସ୍ୟ ରାଜମହୋଦୟସ୍ୟ ଶ୍ରୀଉଦୟପ୍ରତାପସିଂହ-ଦେବବର୍ମଣଃ ପରମକୃପୟା ଗ୍ରନ୍ଥସ୍ୟାସ୍ୟ ପ୍ରକାଶନଂ ଭବିଷ୍ୟତୀତି' । ତତଃ ଅସ୍ମିନ୍ ବିଷୟେ ପ୍ରାର୍ଥିତୋ ମୟା ଶରଦୁର୍ଗରାଜଃ । ସ ଚ ସତ୍ୟବସରେ ମାଂ ଅନନ୍ତରାମଂ ଗୃହୀତ୍ୱା ଲିଙ୍ଗରାଜନାମ୍ନା ପ୍ରସିଦ୍ଧସ୍ୟ ମନୁଜଦନୁଜା-ଦିତିଜାଦିଭିର୍ବନ୍ଦିତସ୍ୟଭଗବତଶ୍ଚନ୍ଦ୍ରାର୍ଦ୍ଧଚୂଡ଼ାମଣେଃ, ହରିହରୈକ୍ୟମୟସ୍ୟ ନିବାସଭବନଂ ଭୁବନେଶ୍ୱରଂ ନୀତ୍ୱା ତଦାନୀଂତନୋତ୍କଳମୁଖ୍ୟମନ୍ତ୍ରିଣା ମାନ୍ୟବରେଣ ଡକ୍ଟରୋପାଧିମତା ଶ୍ରୀମତା ମହତାବମହୋଦୟେନାବାଂ ମେଳୟିତ୍ୱା ଗ୍ରନ୍ଥମିଦଂ ତଲ୍ଲୋଚନଗୋଚରଂ କାରୟିତ୍ୱା ଚ ଗ୍ରନ୍ଥପ୍ରକାଶ ବିଷୟେ ପ୍ରଗାଢ଼ପ୍ରଯତ୍ନପରବଶଃ ସମଭବତ୍ ।

ମାନ୍ୟବର ମୁଖ୍ୟମନ୍ତ୍ରୀ ମହୋଦୟଃ ସାହିତ୍ୟ ଏକାଡେମ୍ୟାଂ ମାମର୍ଥଶାସ୍ତ୍ର ବିଷୟକଭାଷଣକରଣାୟ ନିର୍ଦ୍ଦେଶଂ ଦତ୍ତ୍ୱା ଗ୍ରନ୍ଥପ୍ରକାଶନବିଷୟେ ଶ୍ରଦ୍ଧାମକରୋତ୍ । କୃତଗ୍ରନ୍ଥପ୍ରକାଶନଚେଷ୍ଟୋ ମନ୍ତ୍ରିଶ୍ରେଷ୍ଠଃ ସାହିତ୍ୟ ଏକାଡେମୀତଃ ଗ୍ରନ୍ଥପ୍ରକାଶସିଦ୍ଧାନ୍ତଂ ଚାକରୋତ୍ । ତତ୍ରସ୍ଥିତାଃ ସର୍ବେ ଶିଷ୍ଟା ଉତ୍କଳବିଧାନସଭାବାଚସ୍ପତିପଣ୍ଡିତ ଶ୍ରୀନୀଳକଣ୍ଠଦାଶ ପଦ୍ମଶ୍ରୀଲକ୍ଷ୍ମୀନାରାୟଣସାହୁ

ପ୍ରଭୃତୟୋ ମାନ୍ୟଗଣ୍ୟାଃ ପରମସ୍ୟାମୁଦାର୍ଥଶାସ୍ତ୍ରପ୍ରକାଶନେ ସ୍ୱୀକୃତିଂ ଦତ୍ତବନ୍ତଃ । ତତଃ ଗ୍ରନ୍ଥୋଽୟଂ ମୁଦ୍ରାଣାଳୟଂଗତଃ । ଅଧୁନାତୁ ପ୍ରକାଶିତଃ ଶ୍ରୀହାଡ଼ୁରାୟଗୁରୁ ମହାଶୟସ୍ୟ ମୁଦ୍ରାଣାଳୟେ ।

ବିଭାବୟାମି ଅସ୍ୟାର୍ଥଶାସ୍ତ୍ରସ୍ୟ ବୃହଦୁପକାରିତା ସକଳଜନହୃଦୟାହ୍ଲାଦକାରିଣୀ ଭବତୀତି । ପ୍ରବଳପ୍ରତାପବନ୍ନନ୍ଦବଂଶଧ୍ୱଂସକାରଣା ମେଧାବତା ସତା ସକଳଶାସ୍ତ୍ରସୁବିଚାରବିଶାରଦେନ ଚଣକଦେଶୋଦ୍ଭବେନ ବା ଚଣକମହର୍ଷିପୁତ୍ରେଣ କୁଟଲଗୋତ୍ରୋତ୍ପନ୍ନେନ (କୌଟିଲ୍ୟେନ) ଶ୍ରୀବିଷ୍ଣୁଗୁପ୍ତେନ ଶୁକ୍ରବୃହସ୍ପତିପ୍ରଭୃତୀନାଂ ତତ୍ତ୍ୱବିଦାଂ ଜଗଦ୍ୱନ୍ଦ୍ୟପଦାରବିନ୍ଦାନାଂ ମହାନୁଭାବାନାଂ ନୀତିଶାସ୍ତ୍ରପ୍ରଣେତୄଣାଂ ମତଂ କାରଣପ୍ରଦର୍ଶନପୁରଃସରଂ ଖଣ୍ଡୟିତ୍ୱା ସର୍ବଯୁଗୋପଯୋଗି ଭବିଷ୍ୟଦ୍ଭାରତବର୍ଷୀୟଗଣତାନ୍ତ୍ରିକରାଜ୍ୟପରିଚାଳନାସହାୟକଂ ଏକମେବାର୍ଥଶାସ୍ତ୍ରଂ ବିରଚିତମ୍ । ତେନ ଚ ଭାରତବର୍ଷୀୟାଣାମନ୍ୟେଷାଂ ଚ ରାଜ୍ୟଚାଳକାନାଂ ମହଦୁପକୃତିରକାରି । ବିଶେଷତଃ ଶାସ୍ତ୍ରମିଦଂ କେଚନ ବିଦେଶୀୟା ବିଦ୍ୱାଂସଶ୍ଚାଣକ୍ୟକୃତମିତି ନ ସ୍ୱୀକୁର୍ବନ୍ତି । ତେ ଯଦି ଭାରତୀୟସୁସଂସ୍କୃତିସଂପନ୍ନାର୍ଯ୍ୟମର୍ଯ୍ୟାଦାବିଷୟବ୍ରାତସଂବଳିତଶାସ୍ତ୍ରାଣ୍ୟପଠିଷ୍ୟନ୍ ତର୍ହି ଏବଂ ମା କଥୟିଷ୍ୟନ୍ । କେଚନ ପ୍ରକୃତବିବେକଗ୍ରନ୍ଥକର୍ତ୍ତୃପ୍ରଭୃତୟଃ ପଣ୍ଡିତାଃ ଚାଣକ୍ୟଂ ବାତ୍ସ୍ୟାୟନ ଇତି ବଦନ୍ତି କଥୟନ୍ତି ଚ, ଚାଣକ୍ୟକୃତାର୍ଥଶାସ୍ତ୍ରୀୟସୂତ୍ରାଣାଂ ବାତ୍ସ୍ୟାୟନକୃତକାମଶାସ୍ତ୍ରୀୟସୂତ୍ରାଣାଂ ଚ ସାମ୍ୟମସ୍ତି । ଅତଏବ ଚାଣକ୍ୟଃ ସ ଏବ ବାତ୍ସ୍ୟାୟନ ଇତି । କିନ୍ତୁ ଚାଣକ୍ୟକୃତାର୍ଥଶାସ୍ତ୍ରୀୟ ସୂତ୍ରଲେଖନପରିପାଟୀରନ୍ୟା, ବାତ୍ସ୍ୟାୟନକୃତକାମଶାସ୍ତ୍ରୀୟ ସୂତ୍ରଲେଖନପରିପାଟୀରନ୍ୟା ଚ । ଅତଃ ଜ୍ଞାୟତେ ଚାଣକ୍ୟବାତ୍ସ୍ୟାୟନୟୋର୍ନୈକ୍ୟମ୍ । ଅନ୍ୟ କୋଽପି ବା ବିଚାରୟନ୍ତୁ—ବିଶ୍ୱହିତୈଷିଣାଂ ମହତାମହତ୍ତମମହାଶୟାନାଂ ସ୍ୱତଃ ସମୁଦ୍ଭୂତଶବ୍ଦବ୍ରହ୍ମଣାମାଚାର୍ଯ୍ୟାଣାଂ, ଜନତୋପକାରନିପୁଣାନାଂ, ବିଶ୍ୱାତ୍ମବୋଧବତାଂ, ସତାଂ ମୁଖାତ୍ ତୁଲ୍ୟାଭାରତୀ ନିଃସରତି, ନାତ୍ର ସନ୍ଦେହଃ । ଅତଏବ ଚାଣକ୍ୟକୃତାର୍ଥଶାସ୍ତ୍ରୀୟସୂତ୍ରୈଃ ସହ ବାତ୍ସ୍ୟାୟନମୁନିକୃତକାମଶାସ୍ତ୍ରୀୟସୂତ୍ରାଣାଂ କାଦାଚିତ୍କସାମ୍ୟସ୍ୟାସ୍ତିତ୍ୱମସ୍ତି । ଏଷ ନ୍ୟାୟଃ ବହୁଗ୍ରନ୍ଥେଷୁ ଦୃଶ୍ୟତେ । ଯଦାହଂ ପଣ୍ଡିତକୁଳମଣ୍ଡନସ୍ୱରୂପାଣାଂ, ପୂଜ୍ୟପାଦାନାଂ, ସକଳବିଦ୍ୟାସମ୍ଭାରଡମ୍ବରନିରତାନାଂ, ବିଷୟବାସନାସ୍ୱାମରତାନାଂ ନିତ୍ୟାନନ୍ଦ-

ରସାସ୍ୱାଦନନିର୍ମଳାନ୍ତଃକରଣାନାଂ କାଶ୍ୟାଂ ଶ୍ରୀଜାନକୀଜାନିଚରଣସରୋରୁହଧ୍ୟାନନିରତାନାଂ ଚ ଗୁଣଗଣସଂକୁଷାଣାମାର୍ଯ୍ୟମର୍ଯ୍ୟାଦାସଂରକ୍ଷଣଧୁରଂଧରାଣାଂ, ନିରବଚ୍ଛିନ୍ନଗୀର୍ବାଣବାଣୀଭଣନବିଚକ୍ଷଣାନାଂ, ଷଡ୍ଦର୍ଶନବିଦାଂ, କବିପଣ୍ଡିତବରେଣ୍ୟାନାଂ, ନିବେଦନଶତକହଂସଗୀତଚନ୍ଦ୍ରିକାପ୍ରଭୃତି ବହୁଗ୍ରନ୍ଥକର୍ତ୍ତୃଣାଂ, ଅଧୁନାସ୍ୱର୍ଗୀୟାନାଂ, ଶ୍ରୀ ନିତ୍ୟାନନ୍ଦପ୍ରକାଶବ୍ରହ୍ମଗୁରୂଣାଂସବିଧେ ଯଦାହଂ ଅର୍ଥଶାସ୍ତ୍ରପଠନମକରବଂ ତଦା ଚାଣକ୍ୟବାତ୍ସ୍ୟାୟନୈକ୍ୟସମ୍ବନ୍ଧେ ମୟାପୃଷ୍ଟୋଽବଦତ୍ ସଃ । ବତ୍ସ ! ଅୟଂ ତେ ଭ୍ରମ ଇତି । ଅପିଚ ବହୁବିଶିଷ୍ଟବିଦ୍ୱଜ୍ଜନମୁଖେଭ୍ୟଃ ଶ୍ରୁତଂ ମୟା । 'ନଚାଣକ୍ୟବାତ୍ସ୍ୟାୟନୟୋରଭିନ୍ନତା ଇତି' । ଅତୋଽହଂ ଭାବୟାମି ବାତ୍ସ୍ୟାୟନୋଭିନ୍ନଃ ଚାଣକ୍ୟୋଽପି ଭିନ୍ନଃ ।

ଅୟମସ୍ମାକଂ ସପର୍ଯ୍ୟାଚର୍ଯ୍ୟାଭାଜନଂ ଦିବସ୍ଥୋଽପି ଚାଣକ୍ୟଃ । କୌଟିଲ୍ୟାର୍ଥଶାସ୍ତ୍ରସ୍ୟ ଉତ୍କଳାନୁବାଦଂ କୃତ୍ୱା ମଚ୍ଛିଷ୍ୟୋଽନନ୍ତରାମସ୍ୱୋତ୍କଳୀୟାନାଂ ମହାନ୍ତମୁପକାରଂ କୃତବାନ୍ ଅତଃ ଏଷୋଽପି ସତାଂ ପ୍ରଶଂସାଭାଜନଂ ଇତି ମମାଭିପ୍ରାୟଃ । ସଦସଦ୍ବିଚାରବନ୍ତଃ ସନ୍ତଃ ସ୍ୱଗ୍ରନ୍ଥମିମମୁତ୍କଳାନୁବାଦସହିତମବଲୋକ୍ୟ ପରମାନନ୍ଦସନ୍ଦୋହଭରିତାନ୍ତଃକରଣା ଅବଶ୍ୟଂ ଭବେୟୁରିତି ମମାଶା ଚ ।

ସତାଂ ସେବକଃ

**ପଣ୍ଡିତ ଶ୍ରୀ ବନମାଳୀ ସାହିତ୍ୟଭୂଷଣ**

କାବ୍ୟତୀର୍ଥ-ସାହିତ୍ୟାଚାର୍ଯ୍ୟ-କବିରତ୍ନ-ସାଂଖ୍ୟବିଶାରଦ-
ବେଦାନ୍ତକେଶରୀ-ରାଷ୍ଟ୍ରଭାଷାକୋବିଦଃ,
ଶରଦୁର୍ଗୀୟ ହରକୃଷ୍ଣପୁର ଶାସନନିବାସୀ ।

୫-୩-୬୩

# ପାଠ ସୂଚନା

## ( A guide to the readers of Arthasastra )

ଅର୍ଥଶାସ୍ତ୍ରପ୍ରେମୀ ପାଠକବର୍ଗଙ୍କ ସୁବୋଧ ସକାଶେ ପ୍ରକାଶିତ କୌଟଲ୍ୟ-ଅର୍ଥଶାସ୍ତ୍ରରେ ଓଡ଼ିଆଲିପିର ମୂଳସଂସ୍କୃତ ସୂତ୍ର, ସୂତ୍ରାନୁଯାୟୀ ପ୍ରାଞ୍ଜଳ ଓଡ଼ିଆ ଅନୁବାଦ, ଆବଶ୍ୟକୀୟ ସଂସ୍କୃତ ଓ ଇଂରେଜୀ ଟିପ୍ପଣୀ ବା 'ଉଦ୍ଧରଣ' ଏବଂ ସଂସ୍କୃତ, ଇଂରେଜୀ ଓ ଓଡ଼ିଆ ଭାଷାର ଶିରୋନାମ ମୁଦ୍ରିତ ହେଲା । ସଂସ୍କୃତ, ଓଡ଼ିଆ ଓ ଇଂରେଜୀଭାଷାଭିଜ୍ଞ ପାଠକମାନଙ୍କ ରୁଚିଅନୁକୂଳ ଶାସ୍ତ୍ରାଲୋଚନା ସକାଶେ ଏଥିରେ ଏପରି ବ୍ୟବସ୍ଥା କରାଯାଇଛି ଯେ, ପଣ୍ଡିତମାନେ ସଂସ୍କୃତ ଓ ଓଡ଼ିଆଭାଷାରେ, ଓଡ଼ିଆ ଭାଷାଭାଷୀ କେବଳ ଓଡ଼ିଆରେ ଏବଂ ଇଂରେଜୀଶିକ୍ଷିତ ବନ୍ଧୁଗଣ ଓଡ଼ିଆ ଓ ଇଂରେଜୀ ଉଭୟ ଭାଷାରେ ଏହାର ମର୍ମାର୍ଥ ଅବଗତ ହୋଇ ପାରିବେ । ଏହି ଗ୍ରନ୍ଥ ପାଠ କରିବାକୁ ଗଲାବେଳେ ପଣ୍ଡିତମାନେ ଗ୍ରନ୍ଥର ମୂଳରୁ, ରାଜନୀତିଜ୍ଞମାନେ ପ୍ରଥମ ଅଧିକରଣର ଅଷ୍ଟମ ଅଧ୍ୟାୟରୁ, ଆଇନଜ୍ଞମାନେ ତୃତୀୟ ଅଧିକରଣରୁ (ଧର୍ମସ୍ଥୀୟ ଅଧିକରଣରୁ), ଦାର୍ଶନିକ ଓ ଅଧ୍ୟାପକଗଣ ପ୍ରଥମ ଅଧିକରଣର ଦ୍ୱିତୀୟ ଅଧ୍ୟାୟରୁ, କର୍ମଗୃହମାନେ ଦ୍ୱିତୀୟ ଅଧିକରଣରୁ (ଅଧ୍ୟକ୍ଷ ପ୍ରଚାର ଅଧିକରଣରୁ), ଲେଖକ ଓ ସମାଲୋଚକମାନେ ସୂଚୀପତ୍ରରୁ, କର୍ମିମାନେ ପ୍ରଥମ ଅଧିକରଣର ଷୋଡ଼ଶ ଅଧ୍ୟାୟରୁ, ଶିଳ୍ପୀ, ବ୍ୟବସାୟୀ ଓ କୃଷକାଦିମାନେ ଦ୍ୱିତୀୟ ଅଧିକରଣର ଏକାଦଶ ଅଧ୍ୟାୟରୁ ଏବଂ ସର୍ବ-ସାଧାରଣ ଦ୍ୱିତୀୟ ଅଧିକରଣରୁ ସେମାନଙ୍କ ଅଧ୍ୟୟନ ଆରମ୍ଭ କରିବେ । ଅର୍ଥଶାସ୍ତ୍ରୀୟ ଭାଷା ସାଧାରଣ ଭାଷାଠାରୁ ଟିକିଏ ଭିନ୍ନ । ଏଥିରେ କବିସୁଲଭ କଳ୍ପନାବିଳାସ ନାହିଁ କିମ୍ବା ଅବୋଧ ନ୍ୟାୟଶାସ୍ତ୍ରର କଠିନତା ମଧ୍ୟ ନାହିଁ । ଗ୍ରନ୍ଥର ପ୍ରତି ଅକ୍ଷର ଓ ମାତ୍ରାରେ ତତ୍ତ୍ୱାର୍ଥ ନିହିତ ଏବଂ ଏହାର ଆଲୋଚନା, ଗବେଷଣା ଓ ଅନୁଶୀଳନ ଫଳରେ ମନୁଷ୍ୟର ସାମାଜିକ ତଥା ନୈତିକ ଜୀବନ ବଡ଼ ଉନ୍ନତ ଓ ସୁଶୃଙ୍ଖଳ ହୁଏ । ସଂସାରଯାତ୍ରାର ସ୍ୱଚ୍ଛନ୍ଦନିର୍ବାହ ପାଇଁ ପ୍ରତ୍ୟେକ ସାମାଜିକ ମନୁଷ୍ୟର ଏହା ପଠନୀୟ । ଅର୍ଥଶାସ୍ତ୍ରପ୍ରେମୀ ବନ୍ଧୁବର୍ଗ ଏହା ସର୍ବଦା ମନେରଖି ଶାସ୍ତ୍ରାଧ୍ୟୟନରେ ମନୋଯୋଗୀ ହେବାପାଇଁ ଅନୁରୋଧ ।

ଜଗନ୍ନାଥପ୍ରସାଦ (ଘୁମୁସର)
୨୮-୨-୬୩

ବିନୀତ
ଅନୁବାଦକ

# ବିଷୟାନୁକ୍ରମଣୀ



## ବିନୟାଧିକାରିକଂ ପ୍ରଥମାଧିକରଣମ୍





# ଅଧ୍ୟକ୍ଷପ୍ରଚାରଃ ଦ୍ୱିତୀୟମଧିକରଣମ୍

## ଧର୍ମସ୍ଥୀୟଂ ତୃତୀୟମଧିକରଣମ୍

ଇତି ପୂର୍ବାର୍ଦ୍ଧମ୍

# ଓଡ଼ିଆ ଓ ଇଂରେଜି ସୂଚିପତ୍ର

## ବିନୟାଧିକାରିକ—ପ୍ରଥମାଧିକରଣ

### CONCERNING DISCIPLINE

# ଅଧକ୍ଷ ପ୍ରଚ୍ଚାର—ଦ୍ୱିତୀୟ ଅଧିକରଣ

## THE DUTY OF GOVERNMENT SUPERINTENDENTS

# ଧର୍ମସ୍ଥୀୟ—ତୃତୀୟ ଅଧିକରଣ

## CONCERNING LAW

ଇତି ପୂର୍ବାର୍ଦ୍ଧ ସୂଚୀ

---

# ଶୁଦ୍ଧିପତ୍ର

| ପୃଷ୍ଠା | ପଙ୍‌କ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୯୮ | ଟିପ୍‌ପଣୀ ୨ୟ ଧାଡ଼ି | ଅପତାଲଭ୍ୟ | ଅପଣ ଲଭ୍ୟ |
| ୧୩୨ | ୧୭ | ଗୋରୁତ ଅର୍ଥାତ୍ (ଗାଈ ବୋବାଇଲେ ଯେତେ ଦୂର ଶୁଣାପିବ ସେତକ ଲମ୍ବା ଚଉଡ଼ା ଥିବା ବା ଦୁଇ କୋଶ ଲମ୍ବା ଚଉଡ଼ା ଥିବା) | ଗୋରୁତପର ଅର୍ଥାତ୍ ସମଚତୁର୍ଦ୍ଦିଗ ଏକ କୋଶ ପରିମାଣ ଥିବା |
| ,, | ଟିପ୍‌ପଣୀ | ଗୋରୁତ = ଗବ୍ୟୂତ (ଦୁଇକୋଶ) | ଗୋରୁତ = ଏକକ୍ରୋଶ |
| ୨୦୩ | ୮ | ମହାମତ ଗୃଣକ୍ୟ | ଗୃଣକ୍ୟ |
| ୨୪୦ | ଟିପ୍‌ପଣୀ | ଧ୍ମସୂକ | ଧ୍ମାସୂକ |
| ୨୩୪ } ୩୮୧ } | ୨ | ଏକତ୍ରିଂଶ ଠାରୁ ପଞ୍ଚାଶ ପ୍ରକରଣମାନଙ୍କରେ | ଶେଷରେ 'ତ୍' ଯୁକ୍ତ ହେବ |
| ୪୧୬ } ୫୩୬ } | | ଏକୋନଷଷ୍ଟିତମ ଠାରୁ ପଞ୍ଚସପ୍ତତିତମ ପ୍ରକରଣ ପର୍ଯ୍ୟନ୍ତ | 'ତମ' ବିଯୁକ୍ତ ହେବ |
| ୪୨୩ | ୮ | ଋତୁମତୀ ହୋଇ କହେ ନାହିଁ କନ୍ୟା ଯେଉଁ ପୁରୁଷ ଋତୁମତୀ ସ୍ତ୍ରୀ ସହିତ ସହବାସ କରେ ନାହିଁ | ଋତୁମତୀ ହୋଇ କହେ ନାହିଁ କନ୍ୟା ଋତୁସ୍ନାତା ହୋଇ ପତି ସହବାସ କରେ ନାହିଁ, ତାକୁ (ପତି ମଧ୍ୟ ଋତୁ-ସ୍ନାତା ପତ୍ନୀ ସହ-ବାସ ନକଲେ ତା'କୁ) |
| ୫୩୬ | ୨ | ଦ୍ୟୂତସମାହ୍ୱର୍ଯ୍ୟ | ଦ୍ୟୂତସମାହ୍ୱୟମ୍ |
| ,, | ୬ | 'ଦୂତ' | 'ଦ୍ୟୂତ' |

ଓଁ

ଶ୍ରୀ ଗଣେଶାୟ ନମଃ

# କୌଟଲ୍ୟ-ଅର୍ଥଶାସ୍ତ୍ରମ୍

## ( ବିନୟାଧିକାରିକଂ - ପ୍ରଥମାଧିକରଣମ୍ )

### ରାଜବୃତ୍ତିଃ

### ❋ବିନୟାଧିକାରିକ - ପ୍ରଥମାଧିକରଣ - ରାଜବୃତ୍ତି

## CONCERNING DISCIPLINE

### ( THE LIFE OF A KING )

ଓଁ ନମଃ ଶୁକ୍ରବୃହସ୍ପତିଭ୍ୟାମ୍ ।

**ପୃଥିବ୍ୟା ଲାଭେ ପାଳନେ ଚ ଯାବନ୍ତ୍ୟର୍ଥଶାସ୍ତ୍ରାଣି ପୂର୍ବାଚାର୍ଯ୍ୟୈଃ ପ୍ରସ୍ଥାପିତାନି ପ୍ରାୟଶସ୍ତାନି ସଂହୃତ୍ୟୈ*କମିଦ★ମର୍ଥଶାସ୍ତ୍ରଂ କୃତମ୍ ।**

---

ବିଦ୍ୟାରାଜଂ ଗିରଂ ଦେବୀଂ ନମସ୍କୃତ୍ୟ ଗୁରୂନପି
କୌଟଲ୍ୟାର୍ଥଶାସ୍ତ୍ରସ୍ୟାନୁବାଦଃ କ୍ରିୟତେ ମୟା ।

ନିଖିଳ ବିଦ୍ୟାବିଚକ୍ଷଣ, ନନ୍ଦବଂଶ ଉଚ୍ଛେଦକ ମହାମତି ଆଚାର୍ଯ୍ୟ କୌଟଲ୍ୟ, ଧର୍ମ-ଅର୍ଥ-କାମାତ୍ମକ ତ୍ରିବର୍ଗ ସମ୍ପତ୍ତି-ହେତୁଭୂତ, ଅର୍ଥୋପାର୍ଜନ-

---

❋ ବିଶେଷ ବିଶେଷ ନୀତିମାନଙ୍କୁ ଆଶ୍ରୟକରି ବିବିଧପ୍ରକାର ଶିକ୍ଷାର ମହତ୍ତ୍ୱ ଯେଉଁ ଅଧିକରଣରେ ସନ୍ନିବେଶିତ ତା'ର ନାମ 'ବିନୟାଧିକାରିକ' ଅଧିକରଣ ।

* ମୋର ଏହି ଏକମାତ୍ର ଗ୍ରନ୍ଥର ପରିଶୀଳନ ଫଳରେ ପୂର୍ବାଚାର୍ଯ୍ୟ ପ୍ରଣୀତ ଦର୍ଶନବିଜ୍ଞାନ-ତତ୍ତ୍ୱପୂର୍ଣ୍ଣ ଜଟିଳ ଶାସ୍ତ୍ରସମୂହର ମର୍ମାର୍ଥ ସୁଖବୋଧ୍ୟ ହେବ । ଏହା ଆଚାର୍ଯ୍ୟ କୌଟଲ୍ୟଙ୍କ ଅଭିପ୍ରାୟ ।

★ ଅର୍ଥଶାସ୍ତ୍ରଂ—ଅର୍ଥୋନାମ ବୃତ୍ତିଃ ବର୍ତ୍ତନଂ ସ୍ଥିତିଃ । ସୈବ ହି ମନୁଷ୍ୟାଣାଂ ମୁଖ୍ୟୋଽର୍ଥଃ ।

**ତସ୍ୟାୟଂ *ପ୍ରକରଣାଧିକରଣସମୁଦ୍ଦେଶଃ—**

**(୧) ବିଦ୍ୟାସମୁଦ୍ଦେଶଃ; (୨) ବୃଦ୍ଧସଂଯୋଗଃ; (୩) ଇନ୍ଦ୍ରିୟଜୟଃ; (୪) ଅମାତ୍ୟୋତ୍ପତ୍ତିଃ; (୫) ମନ୍ତ୍ରିପୁରୋହିତୋତ୍ପତ୍ତିଃ; (୬) ଉପଧାଭିଃ ଶୌଚାଶୌଚଜ୍ଞାନମମାତ୍ୟାନାମ୍; (୭) ଗୂଢ଼ପୁରୁଷୋତ୍ପତ୍ତିଃ; (୮)**

---

ଉପାୟ-ଉପଦେଶପ୍ରଧାନ, ସ୍ୱପ୍ରଣୀତ ଅର୍ଥଶାସ୍ତ୍ର ପ୍ରଣୟନ ପ୍ରାରମ୍ଭରେ ଅସୁରଗୁରୁ ଶୁକ୍ର ଓ ଦେବଗୁରୁ ବୃହସ୍ପତିଙ୍କୁ ନମସ୍କାର କରି କହୁଛନ୍ତି— "ମନୁଷ୍ୟବତୀ ଅପ୍ରାପ୍ତଭୂମିର ପ୍ରାପ୍ତି ଓ ପ୍ରାପ୍ତଭୂମିର ପରିପାଳନ ବିଷୟରେ ଶୁକ୍ର, ବୃହସ୍ପତି, ଇନ୍ଦ୍ର, ନାରଦ, ମନୁ, ପରାଶର, ଭୀଷ୍ମ, ଦ୍ରୋଣ, ଉଦ୍ଧବ ଓ ବିଶାଳାକ୍ଷ ପ୍ରଭୃତି ପ୍ରାଚୀନ ଅର୍ଥଶାସ୍ତ୍ର ପ୍ରଣେତାଗଣ ଯେଉଁ ସବୁ ଅର୍ଥଶାସ୍ତ୍ର ସମୂହର ପ୍ରବର୍ତ୍ତନ କରି ଯାଇଛନ୍ତି, ପ୍ରାୟଃ ସେ ସମସ୍ତ ଶାସ୍ତ୍ରର ସାରସଂଗ୍ରହ ପୂର୍ବକ, ସ୍ୱବୁଦ୍ଧିବିଚାରପ୍ରସୂତ ବ୍ୟବସ୍ଥା ସଂବଳିତ, ନାନାଶାସ୍ତ୍ର ବିପ୍ରକୀର୍ଣ୍ଣ ସମସ୍ତ ବିଷୟୈକନିଧାନ ଏହି ଏକମାତ୍ର 'ଅର୍ଥଶାସ୍ତ୍ର' ମୁଁ ପ୍ରଣୟନ କଲି । ଏହି ଶାସ୍ତ୍ରାନ୍ତର୍ଗତ ପ୍ରକରଣ-ଅଧିକରଣଗୁଡ଼ିକର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦର୍ଶିତ ହେଲା:—

(୧) 'ବିଦ୍ୟାସମୁଦ୍ଦେଶ' ଅର୍ଥାତ୍ ଆନ୍ୱୀକ୍ଷିକୀ, ତ୍ରୟୀ, ବାର୍ତ୍ତା ଓ ଦଣ୍ଡନୀତି ନାମକ ବିଦ୍ୟାଚତୁଷ୍ଟୟର ବିଚାର । (୨) ଜ୍ଞାନବୃଦ୍ଧ ଓ ବୟୋବୃଦ୍ଧମାନଙ୍କ ସହିତ ସଂଯୋଗ ସ୍ଥାପନ । (୩) ଇନ୍ଦ୍ରିୟ ଜୟ । (୪) ଅମାତ୍ୟ (ରାଜସହାୟକ)ମାନଙ୍କ ଉତ୍ପତ୍ତି । (୫) ମନ୍ତ୍ରୀ (ପ୍ରଧାନ ଅମାତ୍ୟ) ଏବଂ ପୁରୋହିତଙ୍କ ଉତ୍ପତ୍ତି । (୬) ଉପଧା (ଛଳନା)ଦ୍ୱାରା ମନ୍ତ୍ରୀ ଓ ପୁରୋହିତଙ୍କ ଶୌଚାଶୌଚ ଜ୍ଞାନ । (୭) ଗୁପ୍ତଚରଙ୍କ ଉତ୍ପତ୍ତି । (୮) ଗୁପ୍ତଚରମାନଙ୍କ

---

BOOK I. *(Concerning Discipline)*—(1) The end of sciences; (2) association with the aged; (3) restraint of the organs of sense (the life of a saintly king); (4) the creation of ministers; (5) the creation of councillors and priests; (6) ascertaining by temptations purity or impurity in the

---

ତସ୍ୟା ଚ ମନୁଷ୍ୟସମ୍ବନ୍ଧିନ୍ୟା ତଦାଧାରଭୂତା ଭୂମିରୁପଲକ୍ଷ୍ୟତେ । ଏବଂ ଚ ମନୁଷ୍ୟବତୀଭୂମିରିତ୍ୟର୍ଥଃ । ତସ୍ୟାଃ ଲାଭପାଲନୋପାୟୋପଦେଶକଂ ଶାସ୍ତ୍ରଂ—ଅର୍ଥଶାସ୍ତ୍ରଂ ।

* ପ୍ରକ୍ରିୟନ୍ତେ ପ୍ରକର୍ଷେଣ ବ୍ୟୁତ୍ପାଦ୍ୟନ୍ତେ ଏଷ୍ୱର୍ଥା ଇତି ପ୍ରକରଣାନି । ଅଧିକ୍ରିୟନ୍ତେ ବିଷୟୀକ୍ରିୟନ୍ତେ ଏଷୁ ପ୍ରକରଣାନୀତ୍ୟଧିକରଣାନି ।

ଗୂଢ଼ପୁରୁଷପ୍ରଣିଧିଃ; (୯) ସ୍ୱବିଷୟେ କୃତ୍ୟାକୃତ୍ୟପକ୍ଷରକ୍ଷଣମ୍; (୧୦) ପରବିଷୟେ କୃତ୍ୟାକୃତ୍ୟପକ୍ଷୋପଗ୍ରହଃ; (୧୧) ମନ୍ତ୍ରାଧିକାରଃ; (୧୨) ଦୂତପ୍ରଣିଧିଃ; (୧୩) ରାଜପୁତ୍ର ରକ୍ଷଣମ୍; (୧୪) ଅବରୁଦ୍ଧବୃତ୍ତମ୍; (୧୫) ଅବରୁଦ୍ଧେ ଚ ବୃତ୍ତିଃ; (୧୬) ରାଜପ୍ରଣିଧିଃ; (୧୭) ନିଶାନ୍ତପ୍ରଣିଧିଃ; (୧୮) ଆତ୍ମରକ୍ଷିତକମ୍ ।

ଇତି ବିନୟାଧିକାରିକଂ ପ୍ରଥମାଧିକରଣମ୍ ।

---

ସ୍ୱ ସ୍ୱ କାର୍ଯ୍ୟରେ ନିଯୁକ୍ତ । (୯) ସ୍ୱଦେଶର 'କୃତ୍ୟ' ଅର୍ଥାତ୍ କ୍ରୁଦ୍ଧଲୁବ୍ଧାଦି ଶତ୍ରୁଭେଦ୍ୟବର୍ଗ, 'ଅକୃତ୍ୟ' ଅର୍ଥାତ୍ ଶତ୍ରୁର ଅଭେଦ୍ୟ ନିଜ ସୁହୃଦ୍‌ବର୍ଗଙ୍କୁ ଶତ୍ରୁର ଭେଦପ୍ରୟୋଗରୁ ସଂରକ୍ଷଣ । (୧୦) ପରରାଜ୍ୟର କୃତ୍ୟ ଓ ଅକୃତ୍ୟ-ବର୍ଗଙ୍କୁ ଭେଦନୀତି ପ୍ରୟୋଗଦ୍ୱାରା ସ୍ୱପକ୍ଷେ ଆନୟନ । (୧୧) ସ୍ୱରାଷ୍ଟ୍ର ରକ୍ଷଣ ଓ ପରରାଷ୍ଟ୍ର ଜୟ ବିଷୟକ କର୍ମମାନଙ୍କର ଆରମ୍ଭ-ଉପାୟାଦି ସିଦ୍ଧାନ୍ତ ରୂପକ ମନ୍ତ୍ରଣା କାର୍ଯ୍ୟର ନିରୂପଣ । (୧୨) ଦୂତ ନିଯୁକ୍ତ ବିବେଚନ । (୧୩) ପିତୃଦ୍ରୋହାଦି ଅପରାଧ ଓ ଶତ୍ରୁର ଭେଦ ପ୍ରୟୋଗରୁ ରାଜକୁମାରଙ୍କ ରକ୍ଷଣ । (୧୪) ରାଜାଙ୍କ କର୍ତ୍ତୃକ ଅବରୁଦ୍ଧ ହୋଇଥିବା ରାଜକୁମାରଙ୍କର ପିତାଙ୍କ ପ୍ରତି ବ୍ୟବହାର । (୧୫) ଅବରୁଦ୍ଧ ରାଜକୁମାରଙ୍କ ପ୍ରତି ରାଜାଙ୍କ ବ୍ୟବହାର । (୧୬) ରାଜକାର୍ଯ୍ୟ ବିବେଚନ । (୧୭) ରାଜଭବନର ସ୍ଥାପନ ସକାଶେ ଉପଯୁକ୍ତ ସ୍ଥାନ ଓ ସନ୍ନିବେଶ (ନିର୍ମାଣ ବା ରଚନା)ର ବିଚାର । (୧୮) (ରାଜାଙ୍କ) ଆତ୍ମରକ୍ଷାର ଉପାୟ ବିବେଚନ । ଇତି ।

---

character of ministers; (7) the institution of spies; (8) creation of wandering spies; (9) protection of parties for or against one's own cause in one's own state; (10) winning over the factions for or against an enemy's cause in an enemy's state; (11) the business of council meeting; (12) the mission of envoys; (13) protection of princes; (14) the conduct of a prince kept under restraint; (15) treatment of a prince kept under restraint; (16) the duties of a king; (17) duty towards the harem; (18) personal safety.

## ଅଧ୍ୟକ୍ଷପ୍ରଚାରଃ ଦ୍ୱିତୀୟମଧିକରଣମ୍ ।

(୧) ଜନପଦନିବେଶଃ; (୨) ଭୂମିଚ୍ଛିଦ୍ରବିଧାନମ୍ ; (୩) ଦୁର୍ଗ-ବିଧାନମ୍ ; (୪) ଦୁର୍ଗନିବେଶଃ; (୫) ସନ୍ନିଧାତୃ ନିଚୟ କର୍ମ; (୬) ସମାହର୍ତୃ ସମୁଦୟପ୍ରସ୍ଥାପନମ୍ ; (୭) ଅକ୍ଷପଟଳେ ଗାଣନିକ୍ୟାଧିକାରଃ; (୮) ସମୁଦୟସ୍ୟ ଯୁକ୍ତାପହୃତସ୍ୟ ପ୍ରତ୍ୟାନୟନମ୍; (୯) ଉପଯୁକ୍ତ ପରୀକ୍ଷା; (୧୦) ଶାସନାଧିକାରଃ; (୧୧) କୋଷପ୍ରବେଶ୍ୟ ରତ୍ନପରୀକ୍ଷା; (୧୨) ଆକରକର୍ମାନ୍ତପ୍ରବର୍ତ୍ତନମ୍ ; (୧୩) ଅକ୍ଷଶାଳାୟାଂ ସୁବର୍ଣ୍ଣାଧ୍ୟକ୍ଷଃ;

---

(୧) ବସତିସ୍ଥାପନ ବିଧି । (୨) କୃଷି ଓ ନିବାସର ଅନୁପଯୋଗୀ ଗିରି, ବନ ଓ ଗହ୍ୱରମୟ ଭୂମିର ଉପଯୋଗ ପ୍ରକାର । (୩) ଦୁର୍ଗନିର୍ମାଣବିଧି । (୪) ଦୁର୍ଗମଧ୍ୟରେ ବିଭିନ୍ନ ଭବନର ପ୍ରତିଷ୍ଠା । (୫) 'ସନ୍ନିଧାତା' (ଧନସଞ୍ଚୟକାରୀ କର୍ମଚାରୀ)ଙ୍କ ଧନାଦି ରକ୍ଷଣ ବ୍ୟାପାର । (୬) 'ସମାହର୍ତ୍ତା' (ରାଜ୍ୟର ସମସ୍ତ ଆୟସ୍ଥାନରୁ ରାଜସ୍ୱ ଆହରଣ-କର୍ତ୍ତା)ଙ୍କର ଧନ ଉତ୍ଥାନ ମାର୍ଗ ପରିକଳ୍ପନା । (୭) 'ଅକ୍ଷ' ଅର୍ଥାତ୍ ଗଣନ-ଯୋଗ୍ୟ ସ୍ୱର୍ଣ୍ଣମୁଦ୍ରା ଓ ରୌପ୍ୟମୁଦ୍ରାଦି ଗଣନା ସ୍ଥାନରେ ନିଯୁକ୍ତ ହୋଇଥିବା ଗଣନ କାର୍ଯ୍ୟକାରୀ 'ଗାଣନିକ'ଙ୍କ କାର୍ଯ୍ୟକଳାପ । (୮) ରାଜସ୍ୱ ଅପହରଣକାରୀ କର୍ମଚାରୀଙ୍କଠାରୁ ଅପହୃତ ଧନର ଆଦାୟ ବ୍ୟବସ୍ଥା । (୯) ଯୁକ୍ତ ଅର୍ଥାତ୍ କରଣି ପ୍ରଭୃତିଙ୍କ ଉପରିସ୍ଥ କର୍ମଚାରୀ (ଉପଯୁକ୍ତ ବା ଅଫିସର) ମାନଙ୍କ ସ୍ୱଭାବ ପରୀକ୍ଷା (ଦୋଷ ଗବେଷଣା) । (୧୦) ଶାସନ ଅର୍ଥାତ୍ ରାଜାଜ୍ଞା (ପରବାନା)ର ଲିଖନବିଧି । (୧୧) ରାଜକୋଷରେ ପ୍ରବେଶଯୋଗ୍ୟ ମଣିମୁକ୍ତାଦି ରତ୍ନମାନଙ୍କର ପରୀକ୍ଷା । (୧୨) ସୁବର୍ଣ୍ଣ ରଜତାଦି ଖନିଜ ପଦାର୍ଥର ଉତ୍ପାଦନ ଓ ନିୟନ୍ତ୍ରଣ

---

BOOK II. *(The Duties of Government Superintendents)*— (1) Formation of villages; (2) division of land; (3) construction of forts; (4) buildings within the fort; (5) the duty of the chamberlain; (6) the business of collection of revenue by the collector-general; (7) the business of keeping up accounts in the office of accountants; (8) detection of what is embezzled by government servants out of state revenue; (9) examination of the conduct of government servants; (10) the procedure of forming royal writs; (11) the superintendent of the treasury (examination of gems

**(୧୪) ବିଶିଖାୟାଂ ସୌବର୍ଣ୍ଣିକ ପ୍ରଚାରଃ; (୧୫) କୋଷ୍ଠାଗାରାଧ୍ୟକ୍ଷଃ; (୧୬) ପଣ୍ୟାଧ୍ୟକ୍ଷଃ; (୧୭) କୁପ୍ୟାଧ୍ୟକ୍ଷଃ; (୧୮) ଆୟୁଧାଗାରାଧ୍ୟକ୍ଷଃ; (୧୯) ତୁଲାମାନପୌତବମ୍; (୨୦) ଦେଶକାଳମାନମ୍; (୨୧) ଶୁଲ୍କାଧ୍ୟକ୍ଷଃ; (୨୨) ସୂତ୍ରାଧ୍ୟକ୍ଷଃ; (୨୩) ସୀତାଧ୍ୟକ୍ଷଃ; (୨୪) ସୁରାଧ୍ୟକ୍ଷଃ; (୨୫) ସୂନାଧ୍ୟକ୍ଷଃ; (୨୬) ଗଣିକାଧ୍ୟକ୍ଷଃ; (୨୭) ନାବଧ୍ୟକ୍ଷଃ;**

---

ବ୍ୟବସ୍ଥା । (୧୩) 'ଅକ୍ଷଶାଳା' ( ସ୍ୱର୍ଣ୍ଣରୌପ୍ୟାଦି ସଂଗ୍ରହଶାଳ )ରେ ସୁବର୍ଣ୍ଣାଧ୍ୟକ୍ଷଙ୍କ ବ୍ୟାପାର । (୧୪) 'ବିଶିଖା' ଅର୍ଥାତ୍ ପ୍ରଧାନ ବଜାର ରାସ୍ତାରେ ରାଜ୍ୟର ସୁବର୍ଣ୍ଣ କ୍ରୟବିକ୍ରୟ ସକାଶେ ନିଯୁକ୍ତ ହୋଇଥିବା କର୍ମଚାରୀଙ୍କ ବ୍ୟାପାର । (୧୫) କୋଷ୍ଠାଗାର (ଉଦରପୋଷଣ ସକାଶେ ଧାନ୍ୟ, ଘୃତ, ମୁଦ୍ଗାଦି ସଂଗ୍ରହାଳୟ)ର ଅଧ୍ୟକ୍ଷଙ୍କ ବ୍ୟାପାର । (୧୬) ବିକ୍ରୟ ଦ୍ରବ୍ୟାଧ୍ୟକ୍ଷଙ୍କ ବ୍ୟାପାର । (୧୭) 'କୁପ୍ୟ' ଅର୍ଥାତ୍ ସାର, ଦାରୁ, ବେଣୁ ବଲ୍କଳ (ବକଳ) ପ୍ରଭୃତି ବନଜାତ ପଦାର୍ଥର ଅଧ୍ୟକ୍ଷଙ୍କ ବ୍ୟାପାର । (୧୮) ଆୟୁଧାଗାର ( ଅସ୍ତ୍ରଶସ୍ତ୍ରାଦି ଯୁଦ୍ଧ ଉପକରଣ ଗୃହ )ର ଅଧ୍ୟକ୍ଷଙ୍କ ବ୍ୟାପାର । (୧୯) ମାପ ଏବଂ ତୁଳ ନିୟନ୍ତ୍ରଣର ଅଧ୍ୟକ୍ଷଙ୍କ ବ୍ୟାପାର । (୨୦) 'ଦେଶ' ଅର୍ଥାତ୍ ଯୋଜନ, କ୍ରୋଶ ଇତ୍ୟାଦି ଏବଂ 'କାଳ' ଅର୍ଥାତ୍ ଲବ, ଲେଶ, ନିମେଷାଦିର ମାନ ( ମାପରୂପ ) । (୨୧) 'ଶୁଲ୍କ' ( ପଦ୍ଧର ଭାଗରୁ ଏକଭାଗ ଇତ୍ୟାଦି ରାଜଦେୟ ପଦାର୍ଥ ) ଅଧ୍ୟକ୍ଷଙ୍କ ବ୍ୟାପାର । (୨୨) କାର୍ପାସାଦି ସୂତ୍ରଜାତ ପଦାର୍ଥର ଅଧ୍ୟକ୍ଷଙ୍କ ବ୍ୟାପାର । (୨୩) କୃଷିତନ୍ତ୍ର ଓ ବୃକ୍ଷାୟୁର୍ବେଦଜ୍ଞ-କୃଷ୍ୟଧ୍ୟକ୍ଷଙ୍କ ବ୍ୟାପାର । (୨୪) ମଦ୍ୟାଧ୍ୟକ୍ଷଙ୍କ ବ୍ୟାପାର । (୨୫) ସୂନା ଅର୍ଥାତ୍ ଭକ୍ଷ୍ୟ ପ୍ରାଣିବଧ ସ୍ଥାନ (କସେଇଖାନା)ର ଅଧ୍ୟକ୍ଷଙ୍କ ବ୍ୟାପାର । (୨୬) ବେଶ୍ୟାଧ୍ୟକ୍ଷଙ୍କ ବ୍ୟାପାର । (୨୭) ନୌବିଭାଗର ଅଧ୍ୟକ୍ଷଙ୍କ

---

that are to be entered into the treasury); (12) conducting mining operations and manufacture; (13) the superintendent of gold; (14) the duties of the state goldsmith in the high road; (15) the superintendent of store-house; (16) the superintendent of commerce; (17) the superintendent of forest produce; (18) the superintendent of the armoury; (19) the superintendent of weights and measures; (20) measurement of space and time; (21) the superintendent of tools; (22) the superintendent of weaving; (23) the superintendent of agriculture; (24) the superintendent of liquor; (25) the

(୨୮) ଗୋଧ୍ୟକ୍ଷଃ; (୨୯) ଅଶ୍ୱାଧ୍ୟକ୍ଷଃ; (୩୦) ହସ୍ତ୍ୟଧ୍ୟକ୍ଷଃ; (୩୧) ରଥାଧ୍ୟକ୍ଷଃ; (୩୨) ପତ୍ତ୍ୟଧ୍ୟକ୍ଷଃ; (୩୩) ସେନାପତି ପ୍ରଚାରଃ; (୩୪) ମୁଦ୍ରାଧ୍ୟକ୍ଷଃ; (୩୫) ବିବୀତାଧ୍ୟକ୍ଷଃ; (୩୬) ସମାହର୍ତୃ ପ୍ରଚାରଃ; (୩୭) ଗୃହପତିକ ବୈଦେହକ ତାପସବ୍ୟଂଜନାଃ ପ୍ରଣିଧୟଃ; (୩୮) ନାଗରକପ୍ରଣିଧିଃ ।

ଇତ୍ୟଧ୍ୟକ୍ଷ ପ୍ରଚାରେ ଦ୍ୱିତୀୟମଧିକରଣମ୍ ।



ବ୍ୟାପାର । (୨୮) ଗୋ-ମହିଷ-ଛାଗ-ମେଷାଦି ପଶୁମାନଙ୍କ ଅଧ୍ୟକ୍ଷଙ୍କ ବ୍ୟାପାର । (୨୯) ଅଶ୍ୱମାନଙ୍କ ଜାତିଲକ୍ଷଣବିଜ୍ଞାତା ଓ ସେମାନଙ୍କ ରକ୍ଷଣାବେକ୍ଷଣକର୍ତ୍ତା ଅଶ୍ୱାଧ୍ୟକ୍ଷଙ୍କ ବ୍ୟାପାର । (୩୦) ହସ୍ତିମାନଙ୍କ ଜାତି, ଲକ୍ଷଣବିଜ୍ଞାତା ଓ ରକ୍ଷଣାବେକ୍ଷଣକର୍ତ୍ତା ହସ୍ତ୍ୟଧ୍ୟକ୍ଷଙ୍କ ବ୍ୟାପାର । (୩୧) ଦେବରଥ ଓ ଯୁଦ୍ଧରଥାଦିର ଅଧ୍ୟକ୍ଷଙ୍କ ବ୍ୟାପାର । (୩୨) ପାଦାତିକ ସୈନ୍ୟର ଅଧ୍ୟକ୍ଷଙ୍କ ବ୍ୟାପାର । (୩୩) ସେନାପତି (ହସ୍ତୀ, ଅଶ୍ୱ, ରଥ ଓ ପାଦାତିକ ଚତୁରଂଗ ବଳର ନେତା)ଙ୍କ ସେନାବିଷୟକ ବ୍ୟାପାର । (୩୪) ରାଜନାମାଙ୍କିତ ମୋହର ଓ ରାଜପ୍ରତିମାଂକିତ ମୋହର ଯାହା କି ଶାସନପତ୍ର ଓ ସନନ୍ଦ ଇତ୍ୟାଦିରେ ଦିଆଯାଏ—ତାହାର ଅଧ୍ୟକ୍ଷଙ୍କ ବ୍ୟାପାର । (୩୫) 'ବିବୀତ' ଅର୍ଥାତ୍ କର୍ଷଣ-ଅଯୋଗ୍ୟ ତୃଣ-ଜଳମୟ-ପଶୁଚାରଣ ସ୍ଥାନର ଅଧ୍ୟକ୍ଷଙ୍କ ବ୍ୟାପାର । (୩୬) ରାଜ୍ୟର ଆଦାୟ ସ୍ଥାନମାନଙ୍କରୁ ରାଜାର୍ଥ ସଂଗ୍ରାହକ ଜନପଦାଧ୍ୟକ୍ଷଙ୍କ ବ୍ୟାପାର । (୩୭) ସମାହର୍ତ୍ତାଙ୍କ କାର୍ଯ୍ୟୋପଯୋଗୀ ଜନପଦବୃତ୍ତାନ୍ତ ଜ୍ଞାନ ସକାଶେ ଗୃହସ୍ଥ, ବଣିକ ଓ ତପସ୍ୱୀ ବେଶଧାରୀ ଗୁପ୍ତଚରମାନଙ୍କ ନିଯୁକ୍ତି । (୩୮) ନଗରରକ୍ଷକ କର୍ମଚାରୀଙ୍କ ବ୍ୟାପାର ଚିନ୍ତା ।

ଇତ୍ୟଧ୍ୟକ୍ଷ ପ୍ରଚାରେ ଦ୍ୱିତୀୟମଧିକରଣଂ ।



superintendent of slaughter-house; (26) the superintendent of prostitutes; (27) the superintendent of ships; (28) the superintendent of cows; (29) the superintendent of horses; (30) the superintendent of elephants; (31) the superintendent of chariots; (32) the superintendent of infantry; (33) the duty of the commander-in-chief; (34) the superintendent of passports; (35) the superintendent of pasture lands; (36) the duty of revenue collectors; (37) spies in the guise of householders, merchants and ascetics; (38) the duty of a city superintendent.



# ଧର୍ମସ୍ଥୀୟଂ ତୃତୀୟ ମଧିକରଣମ୍

**★(୧) ବ୍ୟବହାର ସ୍ଥାପନା; (୨) ବିବାଦପଦନିବନ୍ଧଃ; (୩) ବିବାହସଂଯୁକ୍ତମ୍; (୪) ଦାୟବିଭାଗଃ; (୫) ବାସ୍ତୁକମ୍; (୬) ସମୟସ୍ୟାନପାକର୍ମ; (୭) ଋଣାଦାନମ୍; (୮) ଔପନିଧିକମ୍; (୯) ଦାସକର୍ମକରକଳ୍ପଃ;**

'ଧର୍ମସ୍ଥ' ଅର୍ଥାତ୍ ଧର୍ମଶାସ୍ତ୍ର ଅନୁସାରେ ମାଲିମକଦ୍ଦମା ଇତ୍ୟାଦିର ନିର୍ଣ୍ଣାୟକ (ଅଧିକାରୀ) 'ଧର୍ମଶାସ୍ତ୍ରଜ୍ଞ' । ଏହାଙ୍କଦ୍ୱାରା ନିର୍ଣ୍ଣୀତ ହେବା ବିଷୟଗୁଡ଼ିକ ଏହି ଅଧିକରଣରେ ଆଲୋଚିତ ହେବ ।

(୧) ବିବାହ, ଦାୟଭାଗ ଓ ଋଣଦାନାଦି ଅଠର ପ୍ରକାର ବିବାଦ ସମ୍ବନ୍ଧୀୟ ସନ୍ଦେହହାରକ ବିଷୟ (ଦାବୀ ବା ମକଦ୍ଦମା)ର ନାମ ବ୍ୟବହାର । ଏହାର ସ୍ଥାପନା ଅର୍ଥାତ୍ କେଉଁ କେଉଁ ବ୍ୟବହାର ସିଦ୍ଧ ଓ କେଉଁ କେଉଁ ବ୍ୟବହାର ଅସିଦ୍ଧ ତା'ର ବ୍ୟବସ୍ଥାପନ । (୨) ବାଦୀ-ପ୍ରତିବାଦୀଙ୍କ ଆଇନସିଦ୍ଧ ଦାବୀ ନିର୍ଣ୍ଣୟ । (୩) ଅଷ୍ଟବିଧ ବିବାହ ସମ୍ବନ୍ଧୀୟ ବ୍ୟବହାର । (୪) ଦାୟବିଭାଗ ଅର୍ଥାତ୍ ପିତୃ-ପିତୃବ୍ୟାଦିଙ୍କ ଧନର ବିଭାଗ । (୫) ଗୃହ, ଆରାମ (ବଗିଚା) ଓ କ୍ଷେତ୍ର ସମ୍ପର୍କୀୟ ବିଷୟ ବିବେଚନା । (୬) ଏ ବିଷୟ ମୁଁ କରିବି, ଏହି ବିଷୟ ଏହାଙ୍କ ଦ୍ୱାରା ବା ଏମାନଙ୍କ ଦ୍ୱାରା ହେବ, ଏପରି ସିଦ୍ଧାନ୍ତର ନାମ 'ସମୟ', ଏହି ସମୟର ତ୍ୟାଗାଭାବର ନାମ 'ସମୟସ୍ୟାନପାକର୍ମ' । (୭) ଋଣ ଆଦାୟ ସମ୍ବନ୍ଧୀୟ ବ୍ୟବହାର । (୮) ଉପନିଧି (ଅମାନତ ବା ଗଚ୍ଛିତଧନ) ସମ୍ବନ୍ଧୀୟ ବ୍ୟବହାର । (୯) ଦାସ (ପରସକାଶେ ଅତଶୟୁ ଖଟିବା ବ୍ୟକ୍ତି), କର୍ମକର (ଶୁଶ୍ରୂଷାକାରୀ ବେତନଭୋଗୀ ଚାକର) ସମ୍ବନ୍ଧୀୟ ବିଧାନ ।

BOOK III. *(Concerning Law)*—(1) Determination of forms of agreements; (2) determination of legal disputes; (3) concerning marriage; (4) division of inheritance; (5) buildings; (6) non-performance of agreements; (7) recovery of debts; (8) concerning deposits; (9) rules regarding

★ବିନାନାର୍ଥେଽବସନ୍ଦେହେ ହରଣଂ ହାର ଉଚ୍ୟତେ । ନାନା ସନ୍ଦେହ ହରଣାତ୍ 'ବ୍ୟବହାର' ଇତି ସ୍ଥିତିଃ ।°। ନାନା ବିବାଦବିଷୟଃ ସଂଶୟୋ ହ୍ରିୟତେଽନେନ ଇତି ବ୍ୟବହାରଃ ।

**(୧୦) ସମ୍ଭୂୟସମୁତ୍ଥାନମ୍; (୧୧) ବିକ୍ରୀତକ୍ରୀତାନୁଶୟଃ; (୧୨) ଦତ୍ତସ୍ୟାନପାକର୍ମ; (୧୩) ଅସ୍ୱାମିବିକ୍ରୟଃ; (୧୪) ସ୍ୱସ୍ୱାମିସମ୍ବନ୍ଧଃ; (୧୫) ସାହସମ୍; (୧୬) ବାକ୍ପାରୁଷ୍ୟମ୍; (୧୭) ଦଣ୍ଡପାରୁଷ୍ୟମ୍; (୧୮) ଦ୍ୟୂତସମାହ୍ୱୟମ୍; (୧୯) ପ୍ରକୀର୍ଣ୍ଣକାନି ।**

ଇତି ଧର୍ମସ୍ଥୀୟଂ ତୃତୀୟମଧିକରଣମ୍ ।

---

(୧୦) ସମବାୟ ଉନ୍ନତି ସକାଶେ ବ୍ୟାପାରୀ ବା ଅନ୍ୟ ବ୍ୟକ୍ତିମାନଙ୍କ ଦ୍ୱାରା ସମୂହଭାବେ କରାଯିବା କାର୍ଯ୍ୟ । (୧୧) କ୍ରୟବିକ୍ରୟ ବିଷୟକ ପଶ୍ଚାତ୍ତାପ । (୧୨) ଧର୍ମାର୍ଥ ସକାଶେ କୌଣସି ପଦାର୍ଥ ଦାନ କରିବାକୁ ପ୍ରତିଶ୍ରୁତି ଦେଇ ତାର ଅପ୍ରଦାନ । (୧୩) ସ୍ୱତ୍ୱହୀନ ବିକ୍ରୟ (ଅବୈଧ ବିକ୍ରୟ) । (୧୪) ସ୍ୱତ୍ୱାଧିକାର । (୧୫) ଅବଗୃହୀତ କର୍ମ (ଲୁଟି, ଡକାୟତି, ଗୁଣ୍ଡାମି ପ୍ରଭୃତି) । (୧୬) ଗାଳି, ନିନ୍ଦା ପ୍ରଭୃତି ଦ୍ୱାରା ମାନହାନିକର ଦ୍ରୋହାଚରଣ । (୧୭) ପ୍ରହାରଦଣ୍ଡଦ୍ୱାରା କରାଯିବା ଦ୍ରୋହାଚରଣ । (୧୮) ଜୁଆଖେଳ, ମେଣ୍ଢାଯୁଦ୍ଧ ଓ କୁକୁଡ଼ାଯୁଦ୍ଧ ପ୍ରଭୃତି ବିଷୟକ ବ୍ୟବହାର । (୧୯) ସାଧାରଣ ଅପରାଧ ସମ୍ବନ୍ଧୀୟ ବିଚାର ।

ଇତି ଧର୍ମସ୍ଥୀୟଂ ତୃତୀୟମଧିକରଣମ୍ ।

---

slaves and labourers; (10) co-operative undertakings; (11) rescission of purchase and sale; (12) resumption of gifts, (13) sale without ownership; (14) ownership; (15) robbery; (16) defamation; (17) assault; (18) gambling and betting; (19) miscellaneous.

## କଣ୍ଟକ ଶୋଧନଂ ଚତୁର୍ଥମଧିକରଣମ୍

(୧) କାରୁକରକ୍ଷଣମ୍; (୨) ବୈଦେହକରକ୍ଷଣମ୍; (୩) ଉପନିପାତ ପ୍ରତୀକାରଃ; (୪) ଗୂଢ଼ାଜୀବିନାଂ ରକ୍ଷା; (୫) ସିଦ୍ଧବ୍ୟଂଜନୈର୍ମାଣବ ପ୍ରକାଶନମ୍; (୬) ଶଂକାରୂପକର୍ମାଭିଗ୍ରହଃ; (୭) ଆଶୁମୃତକପରୀକ୍ଷା; (୮) ବାକ୍ୟକର୍ମାନୁଯୋଗଃ; (୯) ସର୍ବାଧିକରଣରକ୍ଷଣମ୍;

---

କଣ୍ଟକ ଅର୍ଥାତ୍ ପ୍ରଜାପୀଡ଼କ ଶିଳ୍ପୀ, ବ୍ୟବହାରୀ ପ୍ରଭୃତି; 'ଶୋଧନ' ଅର୍ଥାତ୍ ଏମାନଙ୍କ ଦ୍ୱାରା ସମ୍ଭବିବା ପ୍ରଜାପୀଡ଼ାର ପ୍ରଶମନ । ୦ ।

(୧) ବଢ଼େଇ, ଲୋହରା, ସୁନାରି ପ୍ରଭୃତି କୃଷ୍ଟ କର୍ମକରମାନଙ୍କ ପ୍ରବଞ୍ଚନାରୁ ଦେଶବାସିଙ୍କ ରକ୍ଷଣ । (୨) ବ୍ୟାପାରିମାନଙ୍କ ପ୍ରବଞ୍ଚନାରୁ ଦେଶବାସିଙ୍କ ରକ୍ଷଣ । (୩) ଦୈବୀ ବିପତ୍ତିର ପ୍ରତୀକାର । (୪) ଗୁପ୍ତଭାବରେ ଲାଞ୍ଚଗ୍ରହଣ ପୂର୍ବକ ରାଜା ଓ ପ୍ରଜାଙ୍କୁ ଠକିଚଣ୍ଡି ଜୀବିକା ନିର୍ବାହ କରୁଥିବା ବ୍ୟକ୍ତିମାନଙ୍କଠାରୁ ଦେଶବାସିଙ୍କ ରକ୍ଷଣ । (୫) ସିଦ୍ଧ ବ୍ୟଂଜନ ଅର୍ଥାତ୍ ମୁଣ୍ଡି, ଜଟିଳ ଓ ତାପସବେଶଧାରୀ ଗୁପ୍ତଚରଙ୍କ ଦ୍ୱାରା ପ୍ରଲୋଭନ ବିଦ୍ୟା ପ୍ରୟୋଗ ପୂର୍ବକ ଚୌର୍ଯ୍ୟାଦି ଅପରାଧପ୍ରବୋନ୍ମୁଖୀ ବ୍ୟକ୍ତିମାନଙ୍କ ଦୁଷ୍କର୍ମ ଉଦ୍‌ଘାଟନ । (୬) ନିଜର ପରପ୍ରତି ଓ ପରର ନିଜପ୍ରତି ଶଂକାରୁ ଅନୁମାନ, ଚୌର୍ଯ୍ୟଧନ ସହ ଦର୍ଶନ ଓ ସନ୍ଧିଚ୍ଛେଦନ ସମୟରେ (ସିନ୍ଧି ଖୋଳିବା ସମୟରେ) ଚୋରଗ୍ରହଣ (ଗିରଫଦାରକରଣ) । (୭) ହଠାତ୍ ମରିଯିବା ବ୍ୟକ୍ତି ସ୍ୱୟଂ ମୃତ ବା ପରଦ୍ୱାରା ମାରିତ ଏହାର ପରୀକ୍ଷା । (୮) ଯୁକ୍ତିଯୁକ୍ତ ସୁକୌଶଳ ବାକ୍ୟ ପ୍ରୟୋଗ ଦ୍ୱାରା ଚୋରର ଚୌର୍ଯ୍ୟ ପ୍ରକାଶ ଓ କଶାଘାତ (ଚାବୁକମାଡ଼) ଦ୍ୱାରା ଚୋରର ବିଚାରଣା । (୯) ଅଧ୍ୟକ୍ଷପ୍ରଚାର ଅଧିକରଣୋକ୍ତ ସମସ୍ତ ଅଧ୍ୟକ୍ଷ ଓ ସେମାନଙ୍କ ଅଧସ୍ତନ କର୍ମଚାରୀ (କିରାନି ପ୍ରଭୃତି)ଙ୍କ

---

BOOK IV. *(Removal of Thorns)*—(1) Protection of artisans; (2) protection of merchants; (3) remedies against national calamities; (4) suppression of the wicked living by foul means; (5) detection of youths of criminal tendency by ascetic spies; (6) seizure of criminals on suspicion or in the very act; (7) examination of sudden death; (8) trial and torture to elicit confession; (9) protection of all kinds of

**(୧୦) ଏକାଂଗବଧନିଷ୍କ୍ରୟଃ; (୧୧) ଶୁଦ୍ଧଶ୍ଚିତ୍ରଶ୍ଚଦଣ୍ଡକଳ୍ପଃ; (୧୨) କନ୍ୟାପ୍ରକର୍ମ; (୧୩) ଅତିଚାରଦଣ୍ଡଃ ।**

ଇତି କଣ୍ଟକଶୋଧନଂ ଚତୁର୍ଥମଧିକରଣମ୍ ।

---

ଶୋଷଣରୁ ସମସ୍ତ ପ୍ରଜା ଓ ସର୍ବବିଧ ଧନର ରକ୍ଷଣବ୍ୟବସ୍ଥା । (୧୦) ହସ୍ତ, ପଦ, ଚକ୍ଷୁ, କର୍ଣ୍ଣ ପ୍ରଭୃତି ଅଙ୍ଗବିଶେଷର ଛେଦନ ପରିବର୍ତ୍ତେ ଅର୍ଥଦଣ୍ଡର ବ୍ୟବସ୍ଥା । (୧୧) ଅକ୍ଳେଶମାରଣ ଓ କ୍ଳେଶମାରଣ ବିଧି । (୧୨) ଅପ୍ରାପ୍ତବୟସ୍କା ★କନ୍ୟା ବା ଅବିବାହିତା †ନବଯୌବନା ପ୍ରତି ପ୍ରଯୁକ୍ତ ହେବା ଅବୈଧ ଯୌନକ୍ରିୟା ସମ୍ପର୍କୀୟ ଅପରାଧର ଦଣ୍ଡବିଧାନ । (୧୩) ଅଭକ୍ଷ୍ୟଭକ୍ଷଣ *ଅଗମ୍ୟାଗମନ ନିମିତ୍ତକ ଦଣ୍ଡବିଧାନ ।

ଇତି କଣ୍ଟକଶୋଧନଂ ଚତୁର୍ଥମଧିକରଣମ୍ ।

---

government departments; (10) fines in lieu of mutilation of limbs; (11) death with or without torture; (12) sexual intercourse with immature girls; (13) atonement for violating justice.

---

★ କନ୍ୟାହ୍ରିକାଭୋପଯମା ସଲଜ୍ଜା ନବଯୌବନା । ଇତି ସାହିତ୍ୟଦର୍ପଣେ ।

† ଅଷ୍ଟବର୍ଷା ଭବେଦ୍ ଗୌରୀ ନବବର୍ଷା ଚ ରୋହିଣୀ ।
ଦଶବର୍ଷା ଭବେତ୍ କନ୍ୟା ଅତଊର୍ଦ୍ଧ୍ୱ ରଜସ୍ୱଳା ॥ ଇତି ସ୍ମୃତିଃ ।

* ଅଗମ୍ୟା—ଆର୍ଯ୍ୟ ମତରେ ଗୁରୁପତ୍ନୀ, ରାଜପତ୍ନୀ, ବିମାତା (ସାବତ ମା), ଜେଠେଇ, ଖୁଡ଼ୀ, ମାଇଁ, ମାଉସୀ, ପିଉସୀ, ଦେଢ଼ଶାଶୁ, ଝିଅ, ଭାଇବୋହୂ, ଝିଅରୀ, ପୁତ୍ରବଧୂ, ଶାଶୂ, ଗର୍ଭବତୀ ସ୍ତ୍ରୀ, ଭଉଣୀ, ଭଣିଜୀ, ଶିଷ୍ୟା, ଶିଷ୍ୟପତ୍ନୀ, ଭଣଜାବୋହୂ ଓ ପୁତୁରାବୋହୂ ପ୍ରଭୃତି ସମ୍ଭୋଗଯୋଗ୍ୟା ନୁହନ୍ତି । ଏମାନେ ଅଗମ୍ୟା ।

## ଯୋଗବୃତ୍ତଂ ପଞ୍ଚମମଧିକରଣମ୍

(୧) ଦାଣ୍ଡକର୍ମିକମ୍; (୨) କୋଶାଭିସଂହରଣମ୍; (୩) ଭୃତ୍ୟଭରଣୀୟମ୍; (୪) ଅନୁଜୀବୀବୃତ୍ତମ୍; (୫) ସାମୟାଚରିକମ୍; (୬) ରାଜ୍ୟପ୍ରତିସନ୍ଧାନମ୍; (୭) ଏକୈଶ୍ୱର୍ଯ୍ୟମ୍ ।

ଇତି ଯୋଗବୃତ୍ତଂ ପଞ୍ଚମମଧିକରଣମ୍ ।

---

(୧) ଉପାଂଶୁ ବଧ (ଗୁପ୍ତଦଣ୍ଡ)ର ପ୍ରୟୋଗ । (୨) ଅର୍ଥସଙ୍କଟ ସମୟରେ ପୂର୍ବ ଅପେକ୍ଷା ଅଧିକ ଧନ ସଂଗ୍ରହ ପୂର୍ବକ ରାଜକୋଷର ସମୃଦ୍ଧିକରଣ । (୩) ବୁଦ୍ଧି, ଶାସ୍ତ୍ର ଓ ସେବାଦ୍ୱାରା ସାହାଯ୍ୟ କରୁଥିବା ଭୃତ୍ୟମାନଙ୍କ ଭରଣ ପୋଷଣର ବ୍ୟବସ୍ଥା । (୪) ମନ୍ତ୍ରୀପ୍ରଭୃତି ଉଚ୍ଚପଦସ୍ଥ କର୍ମଚାରୀଙ୍କର ରାଜାଙ୍କ ପ୍ରତି ବ୍ୟବହାର । (୫) ସମୟୋଚିତ ବ୍ୟବସ୍ଥାଦ୍ୱାରା ରାଜ୍ୟପାଳନ । (୬) ରାଜା 'ବ୍ୟସନ' (ଦ୍ୟୂତ, ସ୍ତ୍ରୀ ଓ ମଦ୍ୟାଦି)ରେ ଆସକ୍ତ ହେଲେ ରାଜପୁତ୍ରଙ୍କୁ ସିଂହାସନରେ ଅଭିଷିକ୍ତ କରି ମନ୍ତ୍ରୀମାନଙ୍କଦ୍ୱାରା ରାଜ୍ୟରକ୍ଷା ପାଇଁ କରାଯିବା ବ୍ୟବସ୍ଥା । (୭) ଏକୈଶ୍ୱର୍ଯ୍ୟ ଅର୍ଥାତ୍ ବହୁତ ରାଜପୁତ୍ରମାନଙ୍କ ମଧ୍ୟରୁ ଜଣେମାତ୍ର ରାଜପୁତ୍ରଙ୍କୁ ସାର୍ବଭୌମ କ୍ଷମତା ପ୍ରଦାନ । (ବହୁନାୟକ ଦୋଷ ନିବାରଣ ସକାଶେ ଏକୈଶ୍ୱର୍ଯ୍ୟ କ୍ଷମତା ପ୍ରଦାନ) ।

ଇତି ଯୋଗବୃତ୍ତଂ ପଞ୍ଚମମଧିକରଣମ୍ ।

---

BOOK V. *(Conduct of Courtiers)*—(1) Concerning the awards of punishments; (2) replenishment of the treasury; (3) concerning subsistence to government servants; (4) the conduct of a courtiers; (5) time-serving; (6) consolidation of the kingdom and (7) absolute sovereignty.



## ମଣ୍ଡଳଯୋନିଃ ଷଷ୍ଠଂ ଅଧିକରଣମ୍

(୧) ପ୍ରକୃତି ସଂପଦଃ; (୨) ଶମବ୍ୟାୟାମିକମ୍ ।

ଇତି ମଣ୍ଡଳଯୋନିଃ ଷଷ୍ଠମଧିକରଣମ୍ ।

---

## ଷାଡ଼୍‌ଗୁଣ୍ୟଂ ସପ୍ତମମଧିକରଣମ୍

(୧) ଷାଡ଼୍‌ଗୁଣ୍ୟସମୁଦ୍ଦେଶଃ; (୨) କ୍ଷୟସ୍ଥାନବୃଦ୍ଧିନିଶ୍ଚୟଃ; (୩) ସଂଶ୍ରୟବୃତ୍ତିଃ; (୪) ସମହୀନଜ୍ୟାୟସାଂ ଗୁଣାଭିନିବେଶଃ;

---

ବିଜୟାଭିଳାଷୀ ରାଜା, ଶତ୍ରୁରାଜା, ମଧ୍ୟମରାଜା ଓ ଉଦାସୀନ ରାଜାଙ୍କ ସମବାୟକୁ 'ମଣ୍ଡଳ' କୁହାଯାଏ । ଏହି ମଣ୍ଡଳ ପରବର୍ତ୍ତୀ ଅଧିକରଣରେ ଅଲୋଚିତ ହେବା ସନ୍ଧି ବିଗ୍ରହାଦି ଷାଡ଼୍‌ଗୁଣ୍ୟ ପ୍ରୟୋଗର 'ଯୋନି' ଅର୍ଥାତ୍ କାରଣ ଅଟେ ।

(୧) 'ପ୍ରକୃତି' ଅର୍ଥାତ୍ ସ୍ୱାମୀ, ଅମାତ୍ୟ, ସୁହୃଦ୍, କୋଷ, ରାଷ୍ଟ୍ର, ଦୁର୍ଗ ଓ ବଳ (ସୈନ୍ୟ)ର (ଗୁଣ) ସଂପଦ ଅର୍ଥାତ୍ ଅପେକ୍ଷାକୃତ ଗୁଣାଧିକ୍ୟ ବିବରଣ । (୨) ଶାନ୍ତି ଓ ଉଦ୍ୟୋଗ (କର୍ମଫଳ ଉପଭୋଗର କଲ୍ୟାଣ ଯାହାଦ୍ୱାରା ସାଧିତ ହୁଏ ତାହାକୁ 'ଶମ' ଏବଂ କର୍ମାରମ୍ଭ ଉପକରଣମାନଙ୍କର କର୍ମଯୋଗ ଘଟକକୁ ବ୍ୟାୟାମ କୁହାଯାଏ) ।

ଇତି ମଣ୍ଡଳଯୋନିଃ ଷଷ୍ଠମଧିକରଣମ୍ ।

---

(୧) ସଂକ୍ଷେପରେ ସନ୍ଧି, ବିଗ୍ରହ, ଯାନ, ଆସନ, ସଂଶ୍ରୟ ଓ ଦ୍ୱୈଧୀଭାବ ନାମକ ଛ' ଗୋଟି ଗୁଣର ପ୍ରତିପାଦନ । (୨) କ୍ଷୟ, ସ୍ଥାନ ଓ ବୃଦ୍ଧିର ସ୍ୱରୂପ ନିର୍ଣ୍ଣୟ । (୩) ପ୍ରବଳ ରାଜାର ଆଶ୍ରୟ ପୂର୍ବକ ଅବସ୍ଥାନ । (୪) ସମବଳ, ହୀନବଳ ଓ ଉତ୍କୃଷ୍ଟ ବଳଶାଳୀ ଶତ୍ରୁପ୍ରତି ଯଥୋଚିତ ଗୁଣପ୍ରୟୋଗ ।

---

BOOK VI. *(The Source of Sovereign States)*—(1) The elements of sovereignty; (2) concerning peace and exertion.

---

BOOK VII. *(The End of Sixfold Policy)*—(1) The sixfold policy; (2) determination of deterioration, stagnation, and progress; (3) the nature of alliance; (4) the character of equal,

**(୫) ହୀନସନ୍ଧୟଃ; (୬) ବିଗୃହ୍ୟାସନମ୍; (୭) ସନ୍ଧାୟାସନମ୍; (୮) ବିଗୃହ୍ୟଯାନମ୍; (୯) ସନ୍ଧାୟଯାନମ୍; (୧୦) ସମ୍ଭୂୟପ୍ରୟାଣମ୍; (୧୧) ଯାତବ୍ୟାମିତ୍ରୟୋରଭିଗ୍ରହ ଚିନ୍ତା; (୧୨) କ୍ଷୟ ଲୋଭ ବିରାଗ ହେତବଃ ପ୍ରକୃତୀନାମ୍; (୧୩) ସାମବାୟିକବିପରିମର୍ଶଃ; (୧୪) ସଂହିତ ପ୍ରୟାଣିକମ୍; (୧୫) ପରିପଣିତାପରିପଣିତାପସୃତାଶ୍ଚ ସନ୍ଧୟଃ;**

---

(୫) ହୀନବଳ ଶତ୍ରୁ ସହିତ ସନ୍ଧିର ବ୍ୟବସ୍ଥା । (୬) ଶତ୍ରୁ ସହିତ ବିରୋଧ କରି (ଯୁଦ୍ଧଘୋଷଣା କରି) ଓ ଶତ୍ରୁଦେଶକୁ ଧାନ୍ୟାଦି ଖାଦ୍ୟପଦାର୍ଥ ନ ଦିବାର ବ୍ୟବସ୍ଥା କରି (ଶତ୍ରୁକୁ ଅର୍ଥନୈତିକ ବାସନ୍ଧ କରି) ନିଜରାଜ୍ୟରେ ସ୍ଥିରଭାବରେ ଅବସ୍ଥାନ । (୭) ଯୁଦ୍ଧପାଇଁ ଅକ୍ଷମ ହେଲେ ଶତ୍ରୁ ସହିତ ସନ୍ଧି ସ୍ଥାପନ ପୂର୍ବକ ଅବସ୍ଥାନ । (୮) ପାର୍ଷ୍ଣିଗ୍ରାହ ଅର୍ଥାତ୍ ପଶ୍ଚାତ୍‌ବର୍ତ୍ତୀ ଶତ୍ରୁ ସହିତ ବିଗ୍ରହ କରି ଶତ୍ରୁପ୍ରତି ଅଭିଯାନ । (୯) ପାର୍ଷ୍ଣିଗ୍ରାହାଦିଙ୍କ ସହିତ ସନ୍ଧିସ୍ଥାପନ କରି ଶତ୍ରୁପ୍ରତି ଅଭିଯାନ । (୧୦) ସମ, ହୀନ ଓ ଉତ୍କୃଷ୍ଟ ଶକ୍ତିଶାଳୀ ରାଜାଙ୍କ ସହ ଏକତ୍ରିତ ହୋଇ ଶତ୍ରୁପ୍ରତି ଅଭିଯାନ । (୧୧) ଅରକ୍ଷପଦ୍‌ସମ୍ପନ୍ନ ବ୍ୟସନୀ ରାଜା (ଯାତବ୍ୟ) ଏବଂ ନିତ୍ୟାପକାରୀ ଶତ୍ରୁରାଜା ଏ ଦୁହିଙ୍କ ମଧ୍ୟରୁ କାହାପ୍ରତି ଅଭିଯାନ କରାଯିବ ଏହାର ସିଦ୍ଧାନ୍ତ । (୧୨) ପ୍ରକୃତିବର୍ଗର କ୍ଷୟ (ଗଜ, ବାଜି, ପୁରୁଷ ଓ ଧନ ପ୍ରଭୃତିର ଅପଚୟ) ଲୋଭ ଓ ବିରାଗ ଉତ୍ପତ୍ତିର କାରଣ ନିର୍ଣ୍ଣୟ । (୧୩) ବିଜିଗୀଷୁ ରାଜାଙ୍କ ଅନୁଗତ ରାଜାମାନଙ୍କ (ସଂଘବଦ୍ଧ ହୋଇ ରହିଥିବା ରାଜାମାନଙ୍କ) ଗୁରୁ ଲଘୁଭାବ ବିଚାର । (୧୪) ପରସ୍ପର ସନ୍ଧିବଦ୍ଧ ବିଜୟାଭିଳାଷୀ ରାଜା ଓ ଶତ୍ରୁରାଜାଙ୍କ ଅନ୍ୟପ୍ରତି ମିଳିତ ଅଭିଯାନ । (୧୫) ଦେଶ, କାଳ ଓ କାର୍ଯ୍ୟ ବ୍ୟବସ୍ଥାଦ୍ୱାରା କରାଯିବା ସନ୍ଧି (ପରିପଣିତ ସନ୍ଧି),

---

inferior and superior kings; (5) forms of agreement made by an inferior king; (6) neutrality after proclaiming war or after concluding a treaty of peace; (7) marching after proclaiming war or after making peace; (8) the march of combined powers; (9) considerations about marching against an assailable enemy and a strong enemy; (10) causes leading to the dwindling, greed and disloyalty of the army; (11) considerations about the combination of powers; (12) the march of combined powers; (13) agreement of peace with or without definite terms; (14) peace with renegades; (15) peace and

**(୧୬) ଦ୍ୱୈଧୀଭାବିକାଃ ସନ୍ଧିବିକ୍ରମାଃ; (୧୭) ଯାତବ୍ୟ ବୃତ୍ତିଃ; (୧୮) ଅନୁଗ୍ରାହ୍ୟମିତ୍ରବିଶେଷାଃ; (୧୯) ମିତ୍ରହିରଣ୍ୟଭୂମିକର୍ମ ସନ୍ଧୟଃ; (୨୦) ପାର୍ଷ୍ଣିଗ୍ରାହଚିନ୍ତା; (୨୧) ହୀନଶକ୍ତିପୂରଣମ୍; (୨୨) ବଳବତା ବିଗୃହ୍ୟୋପରୋଧହେତବଃ; (୨୩) ଦଣ୍ଡୋପନତବୃତ୍ତମ୍; (୨୪) ଦଣ୍ଡୋପନାୟିବୃତ୍ତମ୍; (୨୫) ସନ୍ଧିକର୍ମ; (୨୬) ସନ୍ଧିମୋକ୍ଷଃ; (୨୭)**

---

ଏହାର ବିପରୀତ ସନ୍ଧି (ଅପରିପଣିତ ସନ୍ଧି) ଏବଂ କୌଣସି କାରଣ ବଶତଃ ସ୍ୱପକ୍ଷରୁ ଖସି ପଳାଇ ଯାଇଥିବା ପଳାତକ ରାଜାଙ୍କ ସହିତ ପୁନଃସ୍ଥାପିତ ସନ୍ଧି (ଅପସୃତ ସନ୍ଧି)ର ନିର୍ଣ୍ଣୟ । (୧୬) ସନ୍ଧି ଓ ବିଗ୍ରହର ଉପାଦାନ ରୂପକ ଦ୍ୱୈଧୀଭାବ ସମ୍ବନ୍ଧୀୟ ସନ୍ଧି ଓ ବିକ୍ରମର ବିବରଣ । (୧୭) ବିଜୟାଭିଳାଷୀ ରାଜାଙ୍କର ଅନୁଗତ ରାଜାମାନଙ୍କ ପ୍ରତି ଓ ଅନୁଗତ ରାଜାମାନଙ୍କର ବିଜୟାଭିଳାଷୀ ରାଜାଙ୍କ ପ୍ରତି ବ୍ୟବହାର । (୧୮) ଅନୁଗ୍ରହଯୋଗ୍ୟ ମିତ୍ରବିଶେଷ ସମ୍ବନ୍ଧୀୟ ବିଚାର । (୧୯) ମିତ୍ରସନ୍ଧି, ହିରଣ୍ୟସନ୍ଧି, ଭୂମିସନ୍ଧି ଓ କର୍ମସନ୍ଧି ବିବେଚନ । (୨୦) ପାର୍ଷ୍ଣିଗ୍ରାହ ଅବସ୍ଥାପନ୍ନ ବିଜୟାଭିଳାଷୀ ରାଜାଙ୍କର ଅନୁଷ୍ଠେୟ କର୍ମର ବିଚାର ବା ଶତ୍ରୁର ପୃଷ୍ଠଗ୍ରହଣ ସମ୍ବନ୍ଧେ ଅନୁଷ୍ଠାନର ବିଚାର । (୨୧) କ୍ଷୟପ୍ରାପ୍ତ ପ୍ରଭୁଶକ୍ତି, ମନ୍ତ୍ରଶକ୍ତି ଓ ଉତ୍ସାହଶକ୍ତିର ବୃଦ୍ଧି ବ୍ୟବସ୍ଥା । (୨୨) ପ୍ରବଳ ଶତ୍ରୁ ସହିତ ଯୁଦ୍ଧକରି ତା'ର ଦୁର୍ଗପ୍ରବେଶ କାରଣ ଚିନ୍ତନ । (୨୩) ଦଣ୍ଡଦ୍ୱାରା (ବଳଦ୍ୱାରା) ପରାଜିତ ରାଜାଙ୍କର ବଳବନ୍ତ ଶତ୍ରୁରାଜାପ୍ରତି ବ୍ୟବହାର । (୨୪) ବଳଦ୍ୱାରା ଶତ୍ରୁକୁ ନିଜ ଅଧୀନ କରିଥିବା ବିଜିଗୀଷୁ ରାଜାଙ୍କର ତତ୍ ସମୟୋଚିତ ବ୍ୟବହାର । (୨୫) ଶପଥାଦିଦ୍ୱାରା ସନ୍ଧିର ଦୃଢ଼ୀକରଣ । (୨୬) ସନ୍ଧିମୋକ୍ଷ ଅର୍ଥାତ୍ ସନ୍ଧିବିଷୟକ ସ୍ୱୀକୃତ ଚୁକ୍ତିର ଭଙ୍ଗ । (୨୭) ମଧ୍ୟମରାଜାଙ୍କପ୍ରତି ବିଜୟାଭିଳାଷୀ ରାଜାଙ୍କ ଆଚରଣ ।

---

**war by adopting the double policy; (16) the attitude of an assailable enemy; (17) friends that deserve help; (18) agreement for the acquisition of a friend or gold; (19) agreement of peace for the acquisition of land; (20) agreement for undertaking a work; (21) considerations about an enemy in the rear; (22) recruitment of lost power; (23) measures conducive to peace with a strong and provoked enemy; (24) the attitude of a conquered enemy; (25) the attitude of a conquered king; (26) making peace and breaking it; (27) the**

ମଧ୍ୟମଚରିତମ୍; (୨୮) ଉଦାସୀନଚରିତମ୍; (୨୯) ମଣ୍ଡଳଚରିତମ୍।
ଇତି ଷାଡ୍‌ଗୁଣ୍ୟଂ ସପ୍ତମମଧିକରଣମ୍ ।

## ବ୍ୟସନାଧିକାରିକଂ ଅଷ୍ଟମଂ ଅଧିକରଣମ୍

(୧) ପ୍ରକୃତିବ୍ୟସନବର୍ଗଃ; (୨) ରାଜରାଜ୍ୟୟୋର୍ବ୍ୟସନଚିନ୍ତା; (୩) ପୁରୁଷବ୍ୟସନବର୍ଗଃ; (୪) ପୀଡ଼ନବର୍ଗଃ; (୫) ସ୍ତମ୍ଭନବର୍ଗଃ; (୬) କୋଶସଂଗବର୍ଗଃ; (୭) ବଳବ୍ୟସନବର୍ଗଃ; (୮) ମିତ୍ରବ୍ୟସନବର୍ଗଃ ।
ଇତି ବ୍ୟସନାଧିକାରିକଂ ଅଷ୍ଟମଂ ଅଧିକରଣମ୍ ।

---

(୨୮) ଉଦାସୀନ ରାଜାଙ୍କପ୍ରତି ବିଜିଗୀଷୁ ରାଜାଙ୍କର ବ୍ୟବହାର ।
(୨୯) ବିଜିଗୀଷୁ ରାଜାଙ୍କର ଶତ୍ରୁମଣ୍ଡଳ ଓ ମିତ୍ରମଣ୍ଡଳପ୍ରତି ବ୍ୟବହାର ।
ଇତି ଷାଡ୍‌ଗୁଣ୍ୟଂ ସପ୍ତମମଧିକରଣମ୍ ।

(୧) ସ୍ୱାମୀ, ଅମାତ୍ୟ ପ୍ରଭୃତି ସପ୍ତପ୍ରକୃତିର ବ୍ୟସନସମୂହ ନିରୂପଣ । (୨) ରାଜା ଓ ରାଜ୍ୟ ବ୍ୟସନର ଗୁରୁତା ଓ ଲଘୁତାର ବିଚାର । (୩) ପୁରୁଷମାନଙ୍କ ବ୍ୟସନଜନ୍ୟ ଦୋଷସମୂହର ନିରୂପଣ । (୪) ଦୈବୀ ମାନୁଷୀ ପୀଡ଼ାସମୂହର ବିଚାର । (୫) ରାଜକାର୍ଯ୍ୟ ଉପରୋଧକ ହେତୁସମୂହର ନିରୂପଣ । (୬) ରାଜସ୍ୱ ପ୍ରତିଷେଧକ କାରଣସମୂହର ନିରୂପଣ । (୭) ବଳ ଅର୍ଥାତ୍ ହସ୍ତୀ, ଅଶ୍ୱ, ରଥ ଓ ପଦାତି—ଏହି ଚତୁରଙ୍ଗବଳ ଓ ମୌଳଭୃତକାଦି ଭେଦରେ ଛ'ପ୍ରକାର ବଳର ଅମାନିତ, ଅବମାନିତ ପ୍ରଭୃତି ତେତିଶି ପ୍ରକାର ବ୍ୟସନର ନିରୂପଣ । (୮) ମିତ୍ରସମ୍ବନ୍ଧୀୟ ବ୍ୟସନବର୍ଗର ନିରୂପଣ ।
ଇତି ବ୍ୟସନାଧିକାରିକଂ ଅଷ୍ଟମଂ ଅଧିକରଣମ୍ ।

---

conduct of a Madhyama king; (28) of a neutral king and (29) of a circle of states.

BOOK VIII. ( *Concerning Vices and Calamities* )—(1) The aggregate of the calamities of the elements of sovereignty; (2) considerations about the troubles of the king and his kingdom; (3) the aggregate of the troubles of men; (4) the group of molestations; (5) the group of obstructions; (6) the group of financial troubles; (7) the group of troubles of the army; and (8) the group of troubles of a friend.

## ଅଭିଯାସ୍ୟତ୍ କର୍ମ ନବମଂ ଅଧିକରଣମ୍

(୧) ଶକ୍ତିଦେଶକାଳବଳାବଳଜ୍ଞାନମ୍; (୨) ଯାତ୍ରାକାଳାଃ; (୩) ବଳୋପାଦାନକାଳାଃ; (୪) ସନ୍ନାହଗୁଣାଃ; (୫) ପ୍ରତିବଳକର୍ମ; (୬) ପଶ୍ଚାତ୍ କୋପଚିନ୍ତା; (୭) ବାହ୍ୟାଭ୍ୟନ୍ତର ପ୍ରକୃତି କୋପପ୍ରତୀକାରଃ; (୮) କ୍ଷୟବ୍ୟୟଲାଭବିପରମର୍ଶଃ; (୯) ବାହ୍ୟାଭ୍ୟନ୍ତରସ୍ଥାପଦଃ; (୧୦)

---

ବିଜୟାଭିଳାଷୀ ରାଜା ଅଭିଯାନ ପୂର୍ବରୁ କରିବା କାର୍ଯ୍ୟସମୂହର ବିଚାର—(୧) ଉତ୍ସାହାଦି ଶକ୍ତି, ଦେଶ ଓ କାଳର ବଳାବଳ ଜ୍ଞାନ । (୨) ଅଭିଯାନ ସମୟ ନିରୂପଣ । (୩) ମୌଳଭୃତକାଦି ଛ'ପ୍ରକାର ଦଳର ଉପାଦାନକାଳ ଅର୍ଥାତ୍ ଯଥୋପଯୋଗୀ କାର୍ଯ୍ୟରେ ବିନିଯୋଗର ସମୟ ନିରୂପଣ । (୪) ସନ୍ନାହଗୁଣ ଅର୍ଥାତ୍ ଶସ୍ତ୍ର, କବଚ ପ୍ରଭୃତି ଗ୍ରହଣର ଶ୍ରେଷ୍ଠତ୍ୱ ବିଚାର । (୫) ଶତ୍ରୁସୈନ୍ୟକୁ ପରାଭୂତ କରିବା ସମର୍ଥ ସ୍ୱସୈନ୍ୟର ସଜ୍ଜୀକରଣ । (୬) ପଶ୍ଚାଦ୍‌ବର୍ତ୍ତୀ ଶତ୍ରୁକୃତ ଦାହ ବିଲୋପ ପ୍ରଭୃତି ଅନର୍ଥର ଆଲୋଚନା । (୭) ରାଷ୍ଟ୍ରମୁଖ୍ୟ ଓ ଅନ୍ତପାଳ ପ୍ରଭୃତି ବାହ୍ୟ ପ୍ରକୃତି ଏବଂ ମନ୍ତ୍ରୀ ପୁରୋହିତ ପ୍ରଭୃତି ଅଭ୍ୟନ୍ତର ପ୍ରକୃତିମାନଙ୍କ ଅଯଥା କୋପର (ଚିତ୍ତ ବିକାରର) ପ୍ରତୀକାର । (୮) ସ୍ୱପକ୍ଷର ଯୋଦ୍ଧା ପ୍ରଭୃତି ପ୍ରଧାନ ପୁରୁଷମାନଙ୍କ ହ୍ରାସ, ସୁବର୍ଣ୍ଣ ଓ ଧାନ୍ୟାଦିର ବ୍ୟୟ ଓ ଅଭିଯାନର ଫଳସ୍ୱରୂପ ପ୍ରାପ୍ତହେବା ଭୂମି ଇତ୍ୟାଦିର ଗୁରୁତା ଓ ଲଘୁତାର ସିଦ୍ଧାନ୍ତ । (୯) ରାଷ୍ଟ୍ରମୁଖ୍ୟ ଓ ଅନ୍ତପାଳାଦିଙ୍କଦ୍ୱାରା ଉତ୍ପାଦିତ ବାହ୍ୟ ଆପଦ ଏବଂ ମନ୍ତ୍ରୀ ପୁରୋହିତାଦିଙ୍କଦ୍ୱାରା ଉତ୍ପାଦିତ ଅଭ୍ୟନ୍ତର ଆପଦର ସ୍ୱରୂପ ଓ ପ୍ରତୀକାର ଚିନ୍ତା । (୧୦) ଦୁଷ୍ଟପ୍ରଜା

---

BOOK IX. *(The Work of an Invader)*—(1) The knowledge of power, place, time, strength and weakness; (2) the time of invasion; (3) the time for recruiting the army; (4) the form of equipment; (5) the work of arraying a rival force; (6) considerations of annoyance in the rear; (7) remedies against internal and external troubles; (8) consideration about loss of men, wealth and profit; (9) internal and external dangers; (10) persons associated with traitors and enemies;

ଦୂଷ୍ୟଶତ୍ରୁସଂଯୁକ୍ତାଃ; (୧୧) ଅର୍ଥାନର୍ଥସଂଶୟଯୁକ୍ତାଃ; (୧୨) ତାସାମୁପାୟବିକଳ୍ପଜାଃସିଦ୍ଧୟଃ ।

ଇତ୍ୟଭିଯାସ୍ୟତ୍ କର୍ମ ନବମମଧିକରଣମ୍ ।

## ସାଂଗ୍ରାମିକଂ ଦଶମଂ ଅଧିକରଣମ୍ ।

(୧) ସ୍କନ୍ଧାବାରନିବେଶଃ । (୨) ସ୍କନ୍ଧାବାରପ୍ରୟାଣମ୍ । (୩) ବଳବ୍ୟସନାବସ୍କନ୍ଦକାଳରକ୍ଷଣମ୍; (୪) କୂଟଯୁଦ୍ଧବିକଳ୍ପାଃ; (୫) ସ୍ୱସୈନ୍ୟୋତ୍ସାହନମ୍; (୬) ସ୍ୱବଳାନ୍ୟବଳବ୍ୟାୟୋଗଃ;

---

ଓ ଶତ୍ରୁକୃତ ଆପଦର ସ୍ୱରୂପ ଓ ପ୍ରତୀକାର ଚିନ୍ତା । (୧୧) ମିତ୍ର, ହିରଣ୍ୟ ଭୂମ୍ୟାଦି 'ଅର୍ଥ',—ଏହାର ନାଶ ଓ ଶରୀର ନାଶରୂପକ 'ଅନର୍ଥ'—ଏ ଉଭୟର (ଅର୍ଥ ପ୍ରାଣ ଦୁହିଙ୍କର) ସନ୍ଦେହ ସମ୍ପର୍କୀୟ ଆପଦର ବିବେଚନା । (୧୨) ଉକ୍ତ ଆପଦମାନଙ୍କର ଶାନ୍ତିପାଇଁ ସାମାଦି ଉପାୟର ପ୍ରୟୋଗ ଭେଦରେ ପ୍ରତୀକାର ବ୍ୟବସ୍ଥା ।

ଇତି ଅଭିଯାସ୍ୟତ୍ କର୍ମ ନବମଂ ଅଧିକରଣମ୍ ।

(୧) ସ୍କନ୍ଧାବାର ଅର୍ଥାତ୍ ସୈନ୍ୟନିବେଶ ସ୍ଥାନର ନିର୍ମାଣବିଧି । (୨) ସ୍କନ୍ଧାବାର ଦିଗରେ ରାଜାଙ୍କ ସଦଳବଳେ ଯୁଦ୍ଧଯାତ୍ରା । (୩) ଅମାନିତ ବିମାନିତାଦି ରୂପକ ବଳବ୍ୟସନ (ସୈନ୍ୟ ସମ୍ବନ୍ଧୀୟ ବିପଦ) ଦୀର୍ଘ ମାର୍ଗ, ଦୁର୍ଗମ ମାର୍ଗ ଓ ମରୁଭୂମିମୟ ମାର୍ଗ ଗମନରୂପକ ଅବସ୍କନ୍ଦ କାଳ ଇତ୍ୟାଦିରୁ ସୈନ୍ୟମାନଙ୍କ ରକ୍ଷଣ । (୪) ଶତ୍ରୁର ବଳବ୍ୟସନ ଓ ଅବସ୍କନ୍ଦାଦି କାଳରୂପକ ଛିଦ୍ର ଅନ୍ୱେଷଣ ପୂର୍ବକ କପଟ ଉପାୟରେ କରିପିବା ବିଭିନ୍ନ ପ୍ରକାରର ଯୁଦ୍ଧ । (୫) ସ୍ୱସୈନ୍ୟମାନଙ୍କ ଉତ୍ସାହ ଉତ୍ପାଦନ । (୬) ସ୍ୱସୈନ୍ୟମାନଙ୍କ

---

(11) doubts about wealth and harm; and (12) success to be obtained by the employment of alternative strategic means.

BOOK X. *(Relating to War)*—(1) Encampment; (2) march of the camps; (3) protection of the army in times of distress and attack; (4) forms of treacherous fights; (5) encouragement to one's own army; (6) the fight between one's

(୭) ଯୁଦ୍ଧଭୂମୟଃ; (୮) ପତ୍ତ୍ୟଶ୍ୱରଥହସ୍ତିକର୍ମାଣି; (୯) ପକ୍ଷକକ୍ଷୋରସ୍ୟାନାଂ ବଳାଗ୍ରତୋ ବ୍ୟୂହବିଭାଗଃ; (୧୦) ସାରଫଲ୍ଗୁବଳବିଭାଗଃ; (୧୧) ପତ୍ତ୍ୟଶ୍ୱରଥହସ୍ତିଯୁଦ୍ଧାନି; (୧୨) ଦଣ୍ଡଭୋଗମଣ୍ଡଳାସଂହତବ୍ୟୂହବ୍ୟୂହନମ୍; (୧୩) ତସ୍ୟ ପ୍ରତିବ୍ୟୂହ ସଂସ୍ଥାପନମ୍ ।

ଇତି ସାଂଗ୍ରାମିକଂ ଦଶମମଧିକରଣମ୍ ।

---

ପରସୈନ୍ୟାପେକ୍ଷା ଅନୁକୂଳ ଦିଗ, ଅନୁକୂଳ ସୂର୍ଯ୍ୟକିରଣ ଓ ଅନୁକୂଳ ବାୟୁ ପ୍ରଭୃତି ଦୃଷ୍ଟିରଖି ବ୍ୟୂହ ରଚନାଦିର ବିଶିଷ୍ଟ ଆୟୋଜନ । (୭) ସମ, ସ୍ଥିର ଓ ଅବକାଶାଦି ଲକ୍ଷଣଯୁକ୍ତ ଯୁଦ୍ଧଭୂମି । (୮) ପଦାତି, ହସ୍ତୀ, ଅଶ୍ୱ ଓ ରଥ ନାମକ ଚତୁରଙ୍ଗ ବଳର ବ୍ୟାପାର । (୯) ପକ୍ଷ, କକ୍ଷ, ଉରସ୍ୟ ବିଶେଷରେ ସେନାର ସଂଖ୍ୟାନୁସାରେ ବ୍ୟୂହ ରଚନା । (୧୦) ପିତୃପିତାମହାଦି କାଳରୁ ସୈନ୍ୟରୂପେ କାର୍ଯ୍ୟ କରି ଆସୁଥିବା ସାର ବଳ ଏବଂ ଏହାର ବିପରୀତ ଭୀରୁ, ଦୁର୍ବଳ ଓ ସାରହୀନ (ଫଲ୍ଗୁ) ବଳର ବିଭାଗୀକରଣ । (୧୧) ପାଦାତିକ, ଅଶ୍ୱ, ରଥ ଓ ହସ୍ତୀ ସେନାର ଯୁଦ୍ଧ । (୧୨) ଦଣ୍ଡବ୍ୟୂହ, ସର୍ପବ୍ୟୂହ, ମଣ୍ଡଳ-ବ୍ୟୂହ ଓ ଅସଂହତବ୍ୟୂହ ପ୍ରଭୃତି ପ୍ରାକୃତିକ ବ୍ୟୂହ ରଚନା ଏବଂ ଉକ୍ତ ବ୍ୟୂହ-ମାନଙ୍କର ବିକୃତିବ୍ୟୂହ ରଚନା । (୧୩) ଉକ୍ତ ଦଣ୍ଡାଦି ବ୍ୟୂହର ପ୍ରତିବ୍ୟୂହ ସ୍ଥାପନା ।

ଇତି ସାଂଗ୍ରାମିକଂ ଦଶମମଧିକରଣମ୍ ।

---

own and enemy's armies; (7) battlefields; (8) the work of infantry, cavalry, chariots and elephants; (9) distinctive array of troops in respect of wings, flanks and front; (10) distinction between strong and weak troops; (11) battles with infantry, cavalry, chariots and elephants; (12) the array of the army like a staff, a snake, a circle or in detached order; (13) the array of the army against that of an enemy.

—0—

## ସଂଘବୃତ୍ତଂ ଏକାଦଶମଧିକରଣମ୍ ।

**(୧) ଭେଦୋପାଦାନାନ ; (୨) ଉପାଂଶୁଦଣ୍ଡଃ ।**

ଇତି ସଂଘବୃତ୍ତମେକାଦଶମଧିକରଣମ୍ ।

## ଆବଲୀୟସଂ ଦ୍ୱାଦଶମଧିକରଣମ୍ ।

**(୧) *ଦୂତକର୍ମ; (୨) ମନ୍ତ୍ରଯୁଦ୍ଧଂ ; (୩) ସେନାମୁଖ୍ୟ ବଧଃ ;**

ଶସ୍ତ୍ରୋପଜୀବୀ ସଂଘବଦ୍ଧ ଦଳମାନଙ୍କ ପ୍ରତି ରାଜାଙ୍କ ବିଧେୟ ବ୍ୟବହାର । (୧) ଭେଦ ଅର୍ଥାତ୍ ସଂଘବିଶ୍ଳେଷଣ ଉପାୟ ଉପାଦାନ ଅର୍ଥାତ୍ ତାର ପ୍ରୟୋଗ । (୨) ଗୁପ୍ତବଧ ଉପାୟ ।

ଇତି ସଂଘବୃତ୍ତମେକାଦଶମଧିକରଣମ୍ ।

ଆବଲୀୟସ ଅର୍ଥାତ୍ ଦୁର୍ବଳତର ରାଜାଙ୍କର ସନ୍ଧି ଅନନ୍ତରୁ ସବଳ ଶତ୍ରୁରାଜାଙ୍କ ପ୍ରତି ଆଚରିତ କର୍ମ ।

(୧) *ନିସୃଷ୍ଟାର୍ଥ, ପରିମିତାର୍ଥ ଓ ସନ୍ଦେଶହାରକ ନାମକ ତ୍ରିବିଧ ଦୂତ କର୍ମ ବିବେଚନ । (୨) ବୁଦ୍ଧିଶକ୍ତିଦ୍ୱାରା ଯୁଦ୍ଧକରଣ (ଅନେକ ଶତ୍ରୁ ବଶବର୍ତ୍ତୀ ଓ ଅନେକ ଶତ୍ରୁଙ୍କ ନିଧନ ଇତ୍ୟାଦି ଉଦାହରଣ ଦେଇ ଶତ୍ରୁର ବୁଦ୍ଧିକୁ ବଞ୍ଚନାଦ୍ୱାରା ଅସ୍ଥିରୀକରଣ) । (୩) ସେନାପତି ବଧର ଉପାୟ ।

BOOK XI. *(The Conduct of Corporations)*—(1) Causes of dissension; (2) secret punishment.

BOOK XII. *(Concerning a Powerful Enemy)*—(1) The duties of a messenger; (2) battle of intrigue; (3) slaying the

* ନିସୃଷ୍ଟାର୍ଥୋ ମିତାର୍ଥଶ୍ଚ ତଥା ସନ୍ଦେଶହାରକଃ ।
କାର୍ଯ୍ୟପ୍ରେଷ୍ୟସ୍ତ୍ରିଧାଦୂତୋ ଦୂତ୍ୟଶ୍ଚାପି ତଥାବିଧାଃ ॥ (ଇତି ସାହିତ୍ୟଦର୍ପଣେ) ।

**(୪) ମଣ୍ଡଳପ୍ରୋତ୍ସାହନମ୍; (୫) ଶସ୍ତ୍ରାଗ୍ନିରସପ୍ରଣିଧୟଃ; (୬) *ବବଧାସାରପ୍ରସାରବଧଃ; (୭) ଯୋଗାତିସନ୍ଧାନମ୍; (୮) ଦଣ୍ଡାତିସନ୍ଧାନମ୍; (୯) ଏକବିଜୟଃ ।**

ଇତ୍ୟାବଳୀୟସଂ ଦ୍ୱାଦଶମଧିକରଣମ୍ ।

—0—

(୪) ଅସ୍ତ୍ରରକ୍ଷା ସକାଶେ ମିତ୍ରମଣ୍ଡଳର ପ୍ରୋତ୍ସାହନ । (୫) ଶତ୍ରୁ ପ୍ରତି ଗୁପ୍ତଭାବେ ଅଗ୍ନି ଓ ବିଷପ୍ରୟୋଗ । (୬) *ବିବଧ ଅର୍ଥାତ୍ ନିଜ ରାଜ୍ୟରୁ ଧାନ୍ୟାଦି ପ୍ରାପ୍ତି, ଆସାର ଅର୍ଥାତ୍ ମିତ୍ରବଳ, ପ୍ରସାର ଅର୍ଥାତ୍ ତୃଣକାଷ୍ଠାଦିର ପ୍ରବେଶ,—ଏମାନଙ୍କର ବଧ (ନିଜ ଦେଶରୁ ଧାନ୍ୟାଦି ଖାଦ୍ୟପଦାର୍ଥ ଧରି ଆସୁଥିବା ଭାରବାହକ, ସାହାଯ୍ୟପାଇଁ ଆସୁଥିବା ମିତ୍ରସୈନ୍ୟ ଏବଂ ଅଶ୍ୱ, ହସ୍ତୀ ପ୍ରଭୃତିଙ୍କପାଇଁ ତୃଣ ଓ ଜାଳେଣି ସକାଶେ ଜାଳକାଠ ଆଣୁଥିବା ବ୍ୟକ୍ତିମାନଙ୍କର ବଧ) । (୭) ଯୋଗ ଅର୍ଥାତ୍ କପଟ ଉପାୟ, ଯଥା—ଦେବାଳୟ ପ୍ରବେଶ ଅବସରରେ ଶତ୍ରୁ ଉପରେ କପଟରେ ଶିଳାଯନ୍ତ୍ର ମୋକ୍ଷଣ (ଦେଉଳ ଉପରୁ କୌଶଳଭାବେ ରଖା ଯାଇଥିବା ପଥରଖଣ୍ଡ ପକାଇବା) ଭିତ୍ତିପାତନ (ବାଡ଼ ମଡ଼େଇଦେବା) ଇତ୍ୟାଦି ଉପାୟରେ ଶତ୍ରୁଜୟ । (୮) ବଧ ଓ କ୍ଳେଶପ୍ରାପ୍ତି ସକାଶେ ଅଦ୍ଭୁତ ଶତ୍ରୁର ପରାଭବ । (୯) ଏକାକୀ ବିଜୟାଭିଳାଷୀ ରାଜାଙ୍କଦ୍ୱାରା ଶତ୍ରୁର ପରାଭବ ।

ଇତ୍ୟାବଳୀୟସଂ ଦ୍ୱାଦଶମଧିକରଣମ୍ ।

---

commander-in-chief; (4) inciting a circle of states; (5) spies with weapons, fire and poison; (6) destruction of supply of stores; (7) and of granaries; (8) capture of the enemy by means of secret contrivances or by means of the army; and (9) complete victory.

---

* ନିରୁଦ୍ଧ ବବଧାସାର ପ୍ରସାରଗାଇବବ୍ରଜମ୍ ।
ହ୍ୟପରୁନ୍ଧନ୍ତୁ ଦାଶାର୍ହା ପୁଷ୍ଟଂ ମାହୃଷ୍ଟଂ ଦ୍ୱିଷଃ ॥ (ଇତି ଶିଶୁପାଳବଧେ) ।

## ଦୁର୍ଗଲମ୍ଭୋପାୟସ୍ତ୍ରୟୋଦଶମଧିକରଣମ୍ ।

(୧) ଉପଜାପଃ ; (୨) ଯୋଗବାମନମ୍ ; (୩) ଅପସର୍ପପ୍ରଣିଧିଃ ; (୪) ପର୍ଯୁପାସନକର୍ମ ; (୫) ଅବମର୍ଦ୍ଦଃ ; (୬) ଲବ୍ଧପ୍ରଶମନମ୍ ।

ଇତି ଦୁର୍ଗଲମ୍ଭୋପାୟସ୍ତ୍ରୟୋଦଶମଧିକରଣମ୍ ।

---

## ଔପନିଷଦଂ ଚତୁର୍ଦ୍ଦଶମଧିକରଣମ୍ ।

(୧) ପରଘାତପ୍ରୟୋଗଃ ; (୨) ପ୍ରଲମ୍ଭନମ୍ ;

---

ପରଦୁର୍ଗପ୍ରାପ୍ତିର ଉପାୟ ନିରୂପଣ । (୧) ଉପଜାପ ଅର୍ଥାତ୍ ବିଭିନ୍ନ ପ୍ରକାର ଭେଦନୀତିର ପ୍ରୟୋଗ । (୨) ଗୁପ୍ତଚର ସାହାଯ୍ୟରେ ଶତ୍ରୁଦୁର୍ଗରୁ ଶତ୍ରୁର ବହିଷ୍କରଣ । (୩) ଶତ୍ରୁରାଜ୍ୟରେ ଗୁପ୍ତଚରମାନଙ୍କ ନିବାସନ । (୪) ଶତ୍ରୁଦୁର୍ଗର ଚତୁର୍ଦ୍ଦିଗରେ ସୈନ୍ୟନିବାସନ ବ୍ୟାପାର (ଶତ୍ରୁଦୁର୍ଗର ଅବରୋଧ) । (୫) କେତେବେଳେ କି ପ୍ରକାରେ ପରଦୁର୍ଗ ଗ୍ରହଣ କରାଯିବ ତା'ର କର୍ତ୍ତବ୍ୟ ନିରୂପଣ । (୬) ଅଧିକୃତ ରାଜ୍ୟରେ ଶାନ୍ତିପ୍ରତିଷ୍ଠା ।

ଇତି ଦୁର୍ଗଲମ୍ଭୋପାୟସ୍ତ୍ରୟୋଦଶମଧିକରଣମ୍ ।

---

ଉପନିଷତ୍ ଅର୍ଥାତ୍ ଶତ୍ରୁଜୟ ଉପାୟର ରହସ୍ୟ । ଏହାର ଉଦ୍ଦେଶରେ ପ୍ରବୃତ୍ତି ହେବା ବିଷୟର ନାମ ଔପନିଷଦ । (୧) ଶତ୍ରୁବଧ ସକାଶେ ମାରଣ ଔଷଧ ପ୍ରୟୋଗ । (୨) ଔଷଧ ଓ ମନ୍ତ୍ର ପ୍ରୟୋଗଦ୍ୱାରା ଶତ୍ରୁବଞ୍ଚନ

---

BOOK XIII. *(Strategic Means to Capture a Fortress)*—(1) Sowing the seeds of dissension; (2) enticement of kings by secret contrivances; (3) the work of spies in a siege; (4) & (5) the operation of a siege; (6) restoration of peace in a conquered country.

---

BOOK XIV. *(Secret Means)*—(1) Means to injure an enemy; (2) wonderful and delusive contrivances;

**(୩) ସ୍ୱବଳୋପଘାତ ପ୍ରତୀକାରଃ ।**

ଇତ୍ୟୌପନିଷଦଂ ଚତୁର୍ଦ୍ଦଶମଧିକରଣମ୍ ।

---

**ତନ୍ତ୍ରଯୁକ୍ତିଃ ପଞ୍ଚଦଶମଧିକରଣମ୍ ।**

**(୧) ତନ୍ତ୍ରଯୁକ୍ତୟଃ ।**

ଇତି ତନ୍ତ୍ରଯୁକ୍ତିଃ ପଞ୍ଚଦଶମଧିକରଣମ୍ ।

---

**ଶାସ୍ତ୍ରସମୁଦ୍ଦେଶଃ ପଞ୍ଚଦଶାଧିକରଣାନି ସପଞ୍ଚାଶଦଧ୍ୟାୟଶତଂ ସାଶୀତି—ପ୍ରକରଣଶତଂ ଷଟ୍‌ଶ୍ଳୋକ ସହସ୍ରାଣୀତି✝ ।**

---

(ଏହି ପ୍ରଲମ୍ଭନ ଅଦ୍ଭୁତୋତ୍ପାଦନ ଓ ଭୈଷଜ୍ୟମନ୍ତ୍ର ପ୍ରୟୋଗଭେଦରେ ଦୁଇ ପ୍ରକାର) । (୩) ଶତ୍ରୁ ପ୍ରଯୁକ୍ତ ବିଷବାଷ୍ପ ଓ ବିଷଜଳାଦି ଉପଘାତରୁ ସ୍ୱସୈନ୍ୟମାନଙ୍କ ରକ୍ଷଣ ।

ଇତ୍ୟୌପନିଷଦଂ ଚତୁର୍ଦ୍ଦଶମଧିକରଣମ୍ ।

---

ତନ୍ତ୍ରଯୁକ୍ତି ଅର୍ଥାତ୍ ତନ୍ତ୍ରାବାପାତ୍ମକ ଅର୍ଥଶାସ୍ତ୍ରର ଅର୍ଥନିର୍ଣ୍ଣୟର ଉପଯୋଗୀ ଯୁକ୍ତିସମୂହ । (୧) ତନ୍ତ୍ରଯୁକ୍ତି ଅର୍ଥାତ୍ ଅର୍ଥଶାସ୍ତ୍ରର ଅର୍ଥନିର୍ଣ୍ଣୟ ଉପଯୋଗୀ 'ଅଧିକରଣ', 'ବିଧାନ' ପ୍ରଭୃତି ବତିଶିଗୋଟି ଯୁକ୍ତିର ବିବରଣ ।

ଇତି ତନ୍ତ୍ରଯୁକ୍ତିଃ ପଞ୍ଚଦଶମଧିକରଣମ୍ ।

---

(3) remedies against the injuries of one's own army.

---

BOOK XV. *(The Plan of a Treatise)*—(1) Paragraphical divisions of this treatise.

---

✝ ଅଧୀଷ୍ୱ ତାବଦ୍‌ଦଣ୍ଡନୀତିଂ ଇୟମିଦାନୀଂ ଆଚାର୍ଯ୍ୟ ବିଷ୍ଣୁଗୁପ୍ତେନ ମୌର୍ଯ୍ୟାର୍ଥେ ଷଡ଼୍‌ଭିଃ ଶ୍ଳୋକ ସହସ୍ରୈଃ ସଂକ୍ଷିପ୍ତା (ଦଣ୍ଡିକୃତ ଦଶକୁମାରଚରିତ ଅଷ୍ଟମୋଚ୍ଛ୍ୱାସେ) ।

**ସୁଖଗ୍ରହଣ ବିଜ୍ଞେୟଂ ତତ୍ତ୍ୱାର୍ଥ ପଦନିଶ୍ଚିତମ୍ ।**
*** କୌଟିଲ୍ୟେନ କୃତଂ ଶାସ୍ତ୍ରଂ ବିମୁକ୍ତ ଗ୍ରନ୍ଥବିସ୍ତରମ୍ ॥**

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ପ୍ରଥମୋଽଧ୍ୟାୟଃ ରାଜବୃତ୍ତିଃ ।

---

ଏହି ଅର୍ଥଶାସ୍ତ୍ର ପନ୍ଦରଗୋଟି ଅଧିକରଣ, ଏକଶତ ପଞ୍ଚାଶ ଅଧ୍ୟାୟ, ଏକଶତ ଅଶୀଏ ପ୍ରକରଣ ଏବଂ ଛ' ହଜାର ଶ୍ଳୋକରେ ରଚିତ ହୋଇଅଛି ।

ନିରର୍ଥକ ପଦ ସଂଯୋଗ ଜନିତ ବିସ୍ତୃତିରୁ ମୁକ୍ତିଲାଭ କରିଥିବା କୌଟଲ୍ୟକୃତ ଏହି ଅର୍ଥଶାସ୍ତ୍ରରେ ତତ୍ତ୍ୱ, ଅର୍ଥ ଓ ପଦର ଯଥାଯଥ ସନ୍ନିବେଶ ହୋଇଥିବା ଯୋଗୁଁ ଏହା କେବଳ ପଣ୍ଡିତମାନଙ୍କର : କାହିଁକି ସୁକୁମାରମତି ପାଠକମାନଙ୍କର ମଧ୍ୟ ସୁବୋଧ ହୋଇ ପାରିଛି । ଅତଏବ, ଏହି ଗ୍ରନ୍ଥ ପାଠକରି, ମାନବସମାଜର ସକଳ ଶ୍ରେଣୀର ଲୋକେ ଉପକୃତ ହୋଇ ପାରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ପ୍ରଥମୋଽଧ୍ୟାୟଃ ରାଜବୃତ୍ତିଃ ।

---

* 'କୌଟଲ୍ୟ', 'ଚାଣକ୍ୟ' ଓ 'ବିଷ୍ଣୁଗୁପ୍ତ', ଆଚାର୍ଯ୍ୟ ଚାଣକ୍ୟଙ୍କର ଏ ତିନିଗୋଟି ନାମ ପ୍ରସିଦ୍ଧ । କୁଟଲ ଗୋତ୍ରରେ ଜନ୍ମଗ୍ରହଣ କରିଥିବାରୁ ଗୋତ୍ରାନୁସାରେ ଏହାଙ୍କ ନାମ 'କୌଟଲ୍ୟ' । ଚଣକ ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିବାରୁ ସ୍ଥାନାନୁସାରେ ଏହାଙ୍କର ଅନ୍ୟ ନାମ 'ଚାଣକ୍ୟ' । ଏବଂ ନାମକରଣ ଦିବସରେ ବିଷ୍ଣୁଭକ୍ତ ପିତାମାତା ଓ ପୁରୋହିତ ଶ୍ରଦ୍ଧାରେ କରିଥିବା ନାମକରଣ ଅନୁସାରେ ଏହାଙ୍କର ଅନ୍ୟତମ ନାମ 'ବିଷ୍ଣୁଗୁପ୍ତ' ।

ଅଥସ୍ୟାତ୍ କୁଟିଲୋଗୋତ୍ର କୁଟ୍ୟୌ ପୁଂସିନପ୍ ପୁନଃ ।
ବିଦ୍ୟାଦାଭରଣେଽଥକିଃ କୁଟିଲଂ କୁଞ୍ଚିତେ ଭବେତ୍ ।
ଡଗରେ ତୁ କ୍ଲୀ ତଗରପାଦିକାୟାଂ ସ୍ତ୍ରିୟାମିତି ॥

—ଇତି ନାନାର୍ଥାର୍ଣ୍ଣବସଂକ୍ଷେପେ । କେଶବସ୍ୱାମୀ ।



# ଦ୍ୱିତୀୟୋଽଧ୍ୟାୟଃ

## ପ୍ରଥମ ପ୍ରକରଣଂ—ବିଦ୍ୟାସମୁଦ୍ଦେଶଃ । ଆନ୍ୱୀକ୍ଷିକୀ ସ୍ଥାପନା

**THE END OF SCIENCES**

*( Determination of the Place of Anvikshiki )*

ଆନ୍ୱୀକ୍ଷିକୀ ତ୍ରୟୀ ବାର୍ତ୍ତା ଓ ଦଣ୍ଡନୀତି ନାମକ ବିଦ୍ୟାଚତୁଷ୍ଟୟର ବିଚାର ।

(୧) ଆନ୍ୱୀକ୍ଷିକୀ ତ୍ରୟୀ ବାର୍ତ୍ତା ଦଣ୍ଡନୀତି ଶ୍ଚେତି ବିଦ୍ୟାଃ; (୨) ତ୍ରୟୀ ବାର୍ତ୍ତା ଦଣ୍ଡନୀତିଶ୍ଚେତି ମାନବାଃ, ତ୍ରୟୀବିଶେଷୋହ୍ୟାନ୍ୱୀକ୍ଷିକୀତି; (୩) ବାର୍ତ୍ତା ଦଣ୍ଡନୀତି ଶ୍ଚେତି ବାର୍ହସ୍ପତ୍ୟାଃ, ସଂବରଣ ମାତ୍ରଂ ହି ତ୍ରୟୀ ଲୋକଯାତ୍ରାବିଦ ଇତି; (୪) ଦଣ୍ଡନୀତିରେକା ବିଦ୍ୟେତ୍ୟୌଶନସାଃ,

---

(୧) ଆନ୍ୱୀକ୍ଷିକୀ ଅର୍ଥାତ୍ ହେତୁବିଦ୍ୟା; ତ୍ରୟୀ ଅର୍ଥାତ୍ ଋକ୍, ଯଜୁ ଓ ସାମ ବେଦ; ବାର୍ତ୍ତା ଅର୍ଥାତ୍ କୃଷି, ପଶୁପାଳନ ଓ ବାଣିଜ୍ୟ (ବିଦ୍ୟା); ଦଣ୍ଡନୀତି ଅର୍ଥାତ୍ ରାଜନୀତି, ଏହି ଚାରିଗୋଟିକୁ 'ବିଦ୍ୟା' କୁହାଯାଏ । (୨) ମନୁଶିଷ୍ୟ ଅର୍ଥାତ୍ ମନୁମତାବଲମ୍ବୀମାନେ ତ୍ରୟୀ, ବାର୍ତ୍ତା ଓ ଦଣ୍ଡନୀତି ଏହି ତିନିଗୋଟିକୁ ବିଦ୍ୟାରୂପେ ସ୍ୱୀକାର କରି ଆନ୍ୱୀକ୍ଷିକୀ ବିଦ୍ୟାକୁ ତ୍ରୟୀର ଅନ୍ତର୍ଗତ ଏକ ବେଦବିଶେଷ ବୋଲି ପ୍ରଚାର କରିଛନ୍ତି । (୩) ବୃହସ୍ପତିଙ୍କ ଶିଷ୍ୟ ଅର୍ଥାତ୍ ବୃହସ୍ପତିଙ୍କ ମତାବଲମ୍ବୀମାନେ ବାର୍ତ୍ତା ଓ ଦଣ୍ଡନୀତି ଏ ଦୁଇଟିକୁ କେବଳ ବିଦ୍ୟାରୂପେ ସ୍ୱୀକାର କରି ବାର୍ତ୍ତା ଓ ଦଣ୍ଡନୀତିପ୍ରବୀଣ ଲୋକଯାତ୍ରା ବିଦୁଷଗଣ ତ୍ରୟୀ—( ବେଦବିଦ୍ୟା )କୁ କେବଳ 'ସଂବରଣ' ଅର୍ଥାତ୍ ବେଦନିନ୍ଦକ—ନାସ୍ତିକତାଦୋଷରୂପକ ଲୋକନିନ୍ଦାର ଦ୍ୱାରରୁଦ୍ଧ କରିବା ସକାଶେ ଗ୍ରହଣ କରିଥାନ୍ତି ବୋଲି ପ୍ରଚାର କରିଛନ୍ତି । (୪) ଶୁକ୍ରଙ୍କ ଶିଷ୍ୟମାନେ କେବଳ ଦଣ୍ଡନୀତିକୁ ହିଁ ବିଦ୍ୟାରୂପେ ସ୍ୱୀକାର କରି, ଅନ୍ୟ ବିଦ୍ୟାମାନଙ୍କର ଯୋଗକ୍ଷେମ ଦଣ୍ଡନୀତିର ଅନ୍ତର୍ଭୁକ୍ତ ବୋଲି ପ୍ରଚାର

---

(୧)—ଆନ୍ୱୀକ୍ଷିକୀ—(Anvikshiki) that which comprises the philosophy of Sankhya, Yoga and Lokayata.

ତ୍ରୟୀ—Rik, Sama and Yajurveda.

ବାର୍ତ୍ତା—Agriculture, cattle-breeding and trade.

**ତସ୍ୟାଂ ହି ସର୍ବବିଦ୍ୟାରମ୍ଭାଃ ପ୍ରତିବଦ୍ଧା ଇତି; (୫) ଚତସ୍ର ଏବ ବିଦ୍ୟା ଇତି କୌଟିଲ୍ୟଃ; ତାଭିର୍ଧର୍ମାର୍ଥୌ ଯଦ୍ ବିଦ୍ୟାତ୍, ତଦ୍ ବିଦ୍ୟାନାଂ ବିଦ୍ୟାତ୍ୱମ୍; (୬) ସାଂଖ୍ୟଂ ଯୋଗୋ ଲୋକାୟତଂ ଚେତ୍ୟାନ୍ୱୀକ୍ଷିକୀ, ଧର୍ମାଧର୍ମୌ ତ୍ରୟ୍ୟାମ୍ । ଅର୍ଥାନର୍ଥୌ ବାର୍ତ୍ତାୟାମ୍ । ନୟାପନୟୌ-ଦଣ୍ଡନୀତ୍ୟାମ୍, ବଲାବଲେ ଚୈତାସାଂ ହେତୁଭିରନ୍ୱୀକ୍ଷମାଣାନ୍ୱୀକ୍ଷିକୀ ଲୋକସ୍ୟୋପକରୋତି, ବ୍ୟସନେଽଭ୍ୟୁଦୟେ ଚ ବୁଦ୍ଧିମବସ୍ଥାପୟତି,**

---

କରଛନ୍ତି । (୫) କିନ୍ତୁ କୌଟିଲ୍ୟ ଆନ୍ୱୀକ୍ଷିକୀ, ତ୍ରୟୀ, ବାର୍ତ୍ତା ଓ ଦଣ୍ଡନୀତି ଏହି ଚାରିଗୋଟି ବିଦ୍ୟାକୁ 'ବିଦ୍ୟା' ବୋଲି ସ୍ୱୀକାର କରି, ଏହି ଚାରିଗୋଟି ବିଦ୍ୟାରେ ଜ୍ଞାନଲାଭ ନ ହେଲେ ଧର୍ମ-ଅଧର୍ମ, ନ୍ୟାୟ-ଅନ୍ୟାୟ, ପାପ-ପୁଣ୍ୟ, ଇହଲୋକ ଓ ପରଲୋକ ଇତ୍ୟାଦି ବିଷୟରେ ଉପଯୁକ୍ତ ଧାରଣା ହେବା ଅସମ୍ଭବ ବୋଲି ପ୍ରଚାର କରିଛନ୍ତି । (୬) ପ୍ରକୃତି ପୁରୁଷ ବିବେଚକ କପିଳପ୍ରୋକ୍ତ ସାଂଖ୍ୟଶାସ୍ତ୍ର, ପ୍ରତ୍ୟାହାର ଧ୍ୟାନଧାରଣା ପ୍ରତିପାଦକ ମହେଶ୍ୱର-ପ୍ରୋକ୍ତ ଯୋଗଶାସ୍ତ୍ର, ବୃହସ୍ପତି ଓ ଗାର୍ଗ୍ୟୋକ୍ତ ଲୋକାୟତ ଅର୍ଥାତ୍ ନ୍ୟାୟଶାସ୍ତ୍ର, ଏହି ତ୍ରୟାତ୍ମକ ଶାସ୍ତ୍ରକୁ 'ଆନ୍ୱୀକ୍ଷିକୀ', ମୁଖ୍ୟତଃ ଧର୍ମ ଓ ଅଧର୍ମ ବିଷୟକ ଜ୍ଞାନଉତ୍ପାଦକ ଶାସ୍ତ୍ରକୁ 'ତ୍ରୟୀ', ମୁଖ୍ୟତଃ ଅର୍ଥ ଓ ଅନର୍ଥ ପ୍ରତିପାଦକ ଶାସ୍ତ୍ରକୁ 'ବାର୍ତ୍ତା', ନୟ ଅର୍ଥାତ୍ ପ୍ରବଳ ଶତ୍ରୁ ସହିତ ଯୋଗକ୍ଷେମ ଫଳଦାୟକ ସନ୍ଧିସ୍ଥାପନ ଏବଂ ଅପନୟ ଅର୍ଥାତ୍ ପ୍ରବଳ ଶତ୍ରୁ ସହ ଯୋଗକ୍ଷେମ ଫଳନାଶକ ବିରୋଧ ବିଷୟକ ଜ୍ଞାନ ଉତ୍ପାଦକ ଶାସ୍ତ୍ରକୁ 'ଦଣ୍ଡନୀତି' ବୋଲି ପୂର୍ବାଚାର୍ଯ୍ୟ-ମାନେ କହିଅଛନ୍ତି । ଆନ୍ୱୀକ୍ଷିକୀ—ଉକ୍ତ ତ୍ରୟୀ, ବାର୍ତ୍ତା ଓ ଦଣ୍ଡନୀତି ବିଦ୍ୟା-ସମୂହର ସାର୍ଥକତା ଓ ନିରର୍ଥକତାକୁ ହେତୁବାଦଦ୍ୱାରା ସିଦ୍ଧକରି ଲୋକ ଉପକାର କରେ; ବିପତ୍ତି ଓ ସମ୍ପତ୍ତିରେ ବୁଦ୍ଧିକୁ ଅବିକୃତ ରଖେ ଏବଂ ପ୍ରଜ୍ଞା, ବାକ୍ୟ ଓ କ୍ରିୟା ( କାର୍ଯ୍ୟ )ରେ ବିଚକ୍ଷଣତା ସମ୍ପାଦନ କରାଏ ।

---

ଦଣ୍ଡନୀତି—**Science of government.**

"ଅଙ୍ଗାନି ବେଦା ଶ୍ଚତ୍ୱାରୋ ମୀମାଂସା ନ୍ୟାୟ ବିସ୍ତରଃ,
ଧର୍ମଶାସ୍ତ୍ର ପୁରାଣଂ ଚ ତ୍ରୟୀଦଂ ସର୍ବ ମୁଚ୍ୟତେ ।"—କାମନ୍ଦକ ।

(୩)—ଲୋକଯାତ୍ରାବିଦ୍—**A man experienced in affairs temporal.**

(୬)—ବିଦ୍ୟା ବିଦ୍ୟୋଚୈତାହାମିତି ପାଠାନ୍ତରଂ ।

**ପ୍ରଜ୍ଞାବାକ୍ୟକ୍ରିୟା ବୈଶାରଦ୍ୟଂ ଚ କରୋତ ।**

**(୭) ପ୍ରଦୀପଃ ସର୍ବବିଦ୍ୟାନା ମୁପାୟଃ ସର୍ବକର୍ମଣାମ୍,**
**ଆଶ୍ରୟଃ ସର୍ବଧର୍ମାଣାଂ ଶଶ୍ୱଦାନ୍ୱୀକ୍ଷିକୀ ମତା ।**

---

(୭) ଅନ୍ୱୀକ୍ଷିକୀ ବିଦ୍ୟା ସର୍ବବିଦ୍ୟାର ପ୍ରଦୀପ ଅର୍ଥାତ୍ ପ୍ରକାଶକ, ସର୍ବକାର୍ଯ୍ୟର ଉପାୟ ଅର୍ଥାତ୍ ସାଧକ ଏବଂ ବୈଦିକ ଲୌକିକାଦି ସର୍ବଧର୍ମମାନଙ୍କର ସର୍ବଦା ଆଶ୍ରୟ ବୋଲି ସ୍ୱୀକୃତ ହୋଇଅଛି ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ
ପ୍ରଥମାଧିକରଣେ ଦ୍ୱିତୀୟୋଽଧ୍ୟାୟଃ—
ବିଦ୍ୟାସମୁଦ୍ଦେଶେ ଅନ୍ୱୀକ୍ଷିକୀ ସ୍ଥାପନା ।

---

(୧—୭)—୧ ଆନ୍ୱୀକ୍ଷିକୀ—Comprises the philosophy of Sankhya, Yoga and Lokayat. ୨ ବାର୍ତ୍ତା—Agriculture, cattle-breeding and trade (ଆନ୍ୱୀକ୍ଷିକୀ ନ୍ୟାୟାନୁଗାମିନୀ—ସାଂଖ୍ୟ, ଯୋଗ, ତର୍କଶାସ୍ତ୍ରାଣି ଅନ୍ୟା ତୁ ପୂର୍ବୋତ୍ତର ମୀମାଂସେ ଆହ୍ୱ ଚ । କାମନ୍ଦକଃ—"ଅଙ୍ଗାନି ବେଦା ଶ୍ଚତ୍ୱାରୋ ମୀମାଂସା ନ୍ୟାୟ ବିସ୍ତରଃ । ଧର୍ମଶାସ୍ତ୍ରଂ ପୁରାଣଂ ଚ ତ୍ରୟୀଦଂ ସର୍ବମୁଚ୍ୟତେ" । ୩ ଦଣ୍ଡନୀତି—ରାଜନୀତି, ଶାସନ ବିଜ୍ଞାନ (Science of government) । ୪ ସମ୍ୱରଣ—ନାସ୍ତିକୋତ୍ସୃମିତ ଲୋକାନାଦାଦ୍ୱାରା ସବୃତ୍ତି ସାଧନମେବ କେବଳଂ (pretext ?) । ୫ ଲୋକଯାତ୍ରାବିଦଃ—ବାର୍ତ୍ତା-ଦଣ୍ଡନୀତ୍ୟନୁଷ୍ଠାନ ଲକ୍ଷଣ ଲୋକତନ୍ତ୍ର ବିଦୁଷଃ (a man experienced in affairs temporal) । ୬ ଧର୍ମ—ଅଧ୍ୟୟନ, ଯଜ୍ଞାନୁଷ୍ଠାନାଦି; ଅଧର୍ମ—କୁକୁରମାଂସଭକ୍ଷଣାଦି କର୍ମ (righteous and unrighteous acts) । ୭ ଅର୍ଥଃ—କାଳବୀଜବାପାଦି ଫଳମ୍; ଅନର୍ଥ—ଅକାଳବୀଜ-ବାପାଦିଜନ୍ୟମ୍ (wealth and non-wealth); ନୟ—ଯାଚୃସା ସନ୍ଧ୍ୟାଦିଃ ଯେନ ଯୋଗକ୍ଷେମୋନିଷ୍ପାଦ୍ୟତେ; ଅପନୟସ୍ତୁ—ଯାଚୃସା ବିଗ୍ରହାଦିଃ ଯେନ ଯୋଗକ୍ଷେମୋ ବିହନ୍ୟତେ (expedient and inexpedient) ।

---

# ତୃତୀୟୋଽଧ୍ୟାୟଃ

## ପ୍ରଥମ ପ୍ରକରଣଂ—ବିଦ୍ୟାସମୁଦ୍ଦେଶଃ—ତ୍ରୟୀସ୍ଥାପନା

### THE END OF SCIENCES

*( Determination of the Place of the Triple Vedas )*

(୧) ସାମର୍ଗ୍ୟଜୁର୍ବେଦାସ୍ତ୍ରୟସ୍ତ୍ରୟୀ, ଅଥର୍ବବେଦେତିହାସବେଦୌ ଚ ବେଦାଃ । ଶିକ୍ଷାକଲ୍ପୋ, ବ୍ୟାକରଣଂ, ନିରୁକ୍ତଂ, ଛନ୍ଦୋବିଚିତିର୍ଜ୍ୟୋତିଷମିତି ଚାଙ୍ଗାନି; (୨) ଏଷ ତ୍ରୟୀଧର୍ମଶ୍ଚତୁର୍ଣ୍ଣାଂ ବର୍ଣ୍ଣାନାମାଶ୍ରମାଣାଂ ଚ, ସ୍ୱଧର୍ମସ୍ଥାପନାଦୌପକାରକଃ । ସ୍ୱଧର୍ମୋ-ବ୍ରାହ୍ମଣସ୍ୟାଧ୍ୟୟନମଧ୍ୟାପନଂ ଯଜନଂ ଯାଜନଂ ଦାନଂ ପ୍ରତିଗ୍ରହ

(୧) ସାମ, ଋକ୍, ଯଜୁ ଏ ତିନିଗୋଟି ବେଦକୁ 'ତ୍ରୟୀ' ଏବଂ (ଏହି ତିନିବେଦ ସହିତ) ଅଥର୍ବବେଦ ଓ ସମସ୍ତ ଇତିହାସକୁ 'ବେଦ' କୁହାଯାଏ । ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ ଏ ଛ'ଗୋଟି ବେଦର ଅଙ୍ଗ । ବର୍ଣ୍ଣମାନଙ୍କର ଉଚ୍ଚାରଣର ଉପଦେଶକ ଶାସ୍ତ୍ରକୁ 'ଶିକ୍ଷା', ଯଜ୍ଞପ୍ରଭୃତି ଅନୁଷ୍ଠାନପ୍ରବର୍ତ୍ତକ ଆଶ୍ୱଲାୟନାଦି ପ୍ରଣୀତ ଗ୍ରନ୍ଥକୁ 'କଳ୍ପ', ଭାଷାର ଶୁଦ୍ଧିନିର୍ଦ୍ଦେଶକ ପାଣିନିପ୍ରଭୃତି ପ୍ରଣୀତ ଶାସ୍ତ୍ରକୁ ବ୍ୟାକରଣ, ଯାସ୍କ ପ୍ରଣୀତ ବୈଦିକ ପାରିଭାଷିକ ଶବ୍ଦକୋଷକୁ 'ନିରୁକ୍ତ', ପିଙ୍ଗଳାଦି ପ୍ରଣୀତ ସ୍ୱର ରଚନା ଶାସ୍ତ୍ରକୁ 'ଛନ୍ଦ' ଏବଂ ଗ୍ରହନକ୍ଷତ୍ରାଦି ଜ୍ୟୋତିଷ୍କ ପଦାର୍ଥମାନଙ୍କ କ୍ରିୟାକଳାପବୋଧକ ଶାସ୍ତ୍ରକୁ 'ଜ୍ୟୋତିଷ' କୁହାଯାଏ । (୨) ଏହି ବେଦବର୍ଣ୍ଣିତ ଧର୍ମର ମର୍ମ ହେଉଛି ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରିବର୍ଣ୍ଣ ଏବଂ ବ୍ରହ୍ମଚାରୀ, ଗୃହୀ,

(୧)—ଶିକ୍ଷା phonetics, କଳ୍ପ ceremonial injunctions, ବ୍ୟାକରଣ grammar, ନିରୁକ୍ତ glossarial explanation of obscure Vedic terms, ଛନ୍ଦ prosody, ଜ୍ୟୋତିଷ astronomy.

"ଋକ୍ ଯଜୁଃ ସାମ ଋଗେନ ସାଙ୍ଗ ବେଦ ଗଢୋପିବା,
ତ୍ରୟୀତି ପଠ୍ୟତେ ଲୋକେ ଦୃଷ୍ଟା ଦୃଷ୍ଟାର୍ଥ ସାଧନୀ ।"—ଦେବୀପୁରାଣ ।

ଶ୍ଚେତ । କ୍ଷତ୍ରିୟସ୍ୟାଧ୍ୟୟନଂ ଯଜନଂ ଦାନଂ ଚ ଶସ୍ତ୍ରାଜୀବୋ ଭୂତରକ୍ଷଣଂ ଚ । ବୈଶ୍ୟସ୍ୟାଧ୍ୟୟନଂ ଯଜନଂ ଦାନଂ କୃଷିପଶୁପାଲ୍ୟେ ବାଣିଜ୍ୟା ଚ । ଶୂଦ୍ରସ୍ୟ ଦ୍ୱିଜାତିଶୁଶ୍ରୂଷା, ବାର୍ତ୍ତା କାରୁକୁଶୀ-ଲବକର୍ମ୍ମ ଚ; (୩) ଗୃହସ୍ଥସ୍ୟ ସ୍ୱକର୍ମ୍ମାଜୀବସ୍ତୁଲ୍ୟୈରସମାନର୍ଷିଭି ର୍ବୈବାହ୍ୟମୃତୁଗାମିତ୍ୱଂ ଦେବପିତ୍ରତିଥିଭୃତ୍ୟେଷୁ ତ୍ୟାଗଃ ଶେଷ-ଭୋଜନଂ ଚ; (୪) ବ୍ରହ୍ମଚାରିଣଃ ସ୍ୱାଧ୍ୟାୟୋଽଗ୍ନିକାର୍ଯ୍ୟାଭିଷେକୌ ଭୈକ୍ଷବ୍ରତତ୍ୱମାଚାର୍ଯ୍ୟେ ପ୍ରାଣାନ୍ତିକୀ ବୃତ୍ତିସ୍ତଦଭାବେ ଗୁରୁପୁତ୍ରେ

---

ବାନପ୍ରସ୍ଥ ଏବଂ ସନ୍ନ୍ୟାସୀ ଏହି ଚତୁର୍ବିଧ ଆଶ୍ରମିମାନଙ୍କର ବ୍ୟବସ୍ଥା କରିବା । ଅଧ୍ୟୟନ (ଶିଖିବା), ଅଧ୍ୟାପନ (ଶିଖାଇବା), ଯଜନ (ଯଜ୍ଞ କରିବା), ଯାଜନ (ଯଜ୍ଞ କରାଇବା), ଦାନ ଓ ପ୍ରତିଗ୍ରହ (ଦାନ ଦେବା ଓ ଗ୍ରହଣ କରିବା),—ବ୍ରାହ୍ମଣର ଏହା ସ୍ୱଧର୍ମ୍ମ; ଅଧ୍ୟୟନ, ଯଜନ, ଦାନ, ଶସ୍ତ୍ରଜୀବିତ୍ୱ ଏବଂ ପ୍ରଜାରକ୍ଷଣ,—କ୍ଷତ୍ରିୟର ଏହା ସ୍ୱଧର୍ମ୍ମ; ଅଧ୍ୟୟନ, ଯଜନ, ଦାନ, କୃଷି, ପଶୁପାଳନ ଓ ବାଣିଜ୍ୟ,—ବୈଶ୍ୟର ଏହା ସ୍ୱଧର୍ମ୍ମ ଏବଂ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଜାତିକୁ ନିଜ ନିଜ କର୍ମ୍ମଦ୍ୱାରା ସାହାଯ୍ୟ କରିବା ଓ କୃଷି, ଶିଳ୍ପ, ଚାରଣ, ପଶୁପାଳନ ଇତ୍ୟାଦି ଦ୍ୱାରା ଜୀବିକା ନିର୍ବାହ,—ଶୂଦ୍ରର ଏହା ସ୍ୱଧର୍ମ୍ମ ଅଟେ । (୩) ଗୃହସ୍ଥର କାର୍ଯ୍ୟ ହେଉଛି ସ୍ୱଧର୍ମ୍ମ ଅନୁସାରେ ଜୀବିକାର୍ଜନ କରିବା; ଉପଯୁକ୍ତ ଓ ଅସମାନଗୋତ୍ରୀ କନ୍ୟା ସହିତ ବିବାହ ସମ୍ବନ୍ଧ ସ୍ଥାପନା କରିବା; ଋତୁକାଳରେ ଅର୍ଥାତ୍ ଋତୁସ୍ନାନର ଦଶମ ବା ଦ୍ୱାଦଶ ଦିନରେ ସ୍ତ୍ରୀ ସହବାସ କରିବା ଓ ଦେବ, ପିତୃ, ଅତିଥି ତଥା ଭୃତ୍ୟମାନଙ୍କୁ ଦେଇ କରିବା ପରେ ଅବଶିଷ୍ଟ ଦ୍ରବ୍ୟ ଭୋଜନ କରିବା । (୪) ନିଜ ସ୍ୱାଧ୍ୟାୟ (ସ୍ୱବେଦାଧ୍ୟୟନ), ହବନ, ସ୍ନାନ, ଭିକ୍ଷାବୃତ୍ତି, ଆଚାର୍ଯ୍ୟଙ୍କ ନିକଟରେ ଆଜୀବନ ନିବାସ, ଗୁରୁଙ୍କ ଅଭାବରେ ଗୁରୁପୁତ୍ର ବା ବୟସ୍କ ସାଥି ବ୍ରହ୍ମଚାରୀଙ୍କ (ସହାଧ୍ୟାୟୀମାନଙ୍କ) ସହିତ ନିବାସ,—ବ୍ରହ୍ମଚାରୀଙ୍କର ଏହା କର୍ତ୍ତବ୍ୟ ।

---

(୨)—କାରୁକୁଶୀଲବ କର୍ମ ଚ—**The profession of artisans and court-bards** ଶିଳ୍ପୀ ଓ ଚାରଣ କର୍ମ । ଶସ୍ତ୍ରଜୀବିତ୍ୱ—**Military occupation.**

ପତ୍ରହ୍ମଚାରିଣି ବା; (୫) ବାନପ୍ରସ୍ଥସ୍ୟ ବ୍ରହ୍ମଚର୍ଯ୍ୟଂ, ଭୂମୌ ଶଯ୍ୟା, ଜଟାଜିନଧାରଣମଗ୍ନିହୋତ୍ରାଭିଷେକୌ ଦେବତାପିତ୍ରତିଥିପୂଜା ବନ୍ୟଶ୍ଚାହାରଃ; (୬) ପରିବ୍ରାଜକସ୍ୟ ସଂଯତେନ୍ଦ୍ରିୟତ୍ୱମନାରମ୍ଭୋ ନିଷ୍କିଞ୍ଚନତ୍ୱଂ ସଂଗତ୍ୟାଗୋ ଭୈକ୍ଷମନେକତ୍ର ଅରଣ୍ୟେ ବାସୋ ବାହ୍ୟାଭ୍ୟନ୍ତରଂ ଚ ଶୌଚମ୍; (୭) ସର୍ବେଷାମହିଂସା ସତ୍ୟଂ ଶୌଚମନସୂୟାନୃଶଂସ୍ୟଂ କ୍ଷମା ଚ; (୮) ସ୍ୱଧର୍ମଃ ସ୍ୱର୍ଗାୟାନନ୍ତ୍ୟାୟ ଚ । ତସ୍ୟାତିକ୍ରମେ ଲୋକଃ ସଂକରାଦୁଚ୍ଛିଦ୍ୟେତ;

(୯) ତସ୍ମାତ୍ ସ୍ୱଧର୍ମଂ ଭୂତାନାଂ ରାଜା ନ ବ୍ୟଭିଚାରୟେତ୍, ସ୍ୱଧର୍ମଂ ସଂଦଧାନୋହି ପ୍ରେତ୍ୟ ଚେହ ଚ ନନ୍ଦତି ।

---

(୫) ବ୍ରହ୍ମଚର୍ଯ୍ୟପାଳନ, ଭୂମି ଶୟନ, ଜଟା ଧାରଣ, ମୃଗଚର୍ମ ଧାରଣ, ପ୍ରାତଃ ଓ ସାୟଂକାଳରେ ସମିଧ ଓ ଘୃତଦ୍ୱାରା ଅଗ୍ନିକାର୍ଯ୍ୟ, ତ୍ରିକାଳ ସ୍ନାନ, ଦେବତା ଓ ଅତିଥିପୂଜା ଏବଂ କନ୍ଦମୂଳ, କଦଳୀ, ଜମ୍ବୁ ଆଦି ବନ୍ୟ ଫଳମୂଳ ଆହାର,— ଏହା ବାନପ୍ରସ୍ଥର କର୍ତ୍ତବ୍ୟ । (୬) ଇନ୍ଦ୍ରିୟ ଜୟ, ଯେ କୌଣସି କର୍ମରେ ଫଳର ଆଶା ତ୍ୟାଗ (ନିଷ୍କାମତା), ନିଷ୍କିଂଚନତ୍ୱ ଅର୍ଥାତ୍ ନିକଟରେ ଅଣୁପରିମାଣେ ମଧ୍ୟ ଧନ ନ ରଖିବା, ସଂଗତ୍ୟାଗ, ପ୍ରାଣରକ୍ଷା ନିମିତ୍ତ ମାତ୍ର ବହୁଦ୍ୱାରୁ ଭିକ୍ଷା ଗ୍ରହଣ କରିବା, ବନବାସ, କାୟିକ, ବାଚିକ ଓ ମାନସିକ ଶୁଦ୍ଧି,—ପରିବ୍ରାଜକ (ସନ୍ନ୍ୟାସୀ)ର ଏହା ପ୍ରଧାନ କର୍ତ୍ତବ୍ୟ । (୭) ଅହିଂସାଚରଣ, ସତ୍ୟଭାଷଣ, ଅଭ୍ୟନ୍ତର ଓ ବାହ୍ୟଶୁଦ୍ଧି, ଗୁଣପକ୍ଷପାତିତା, ଅନିଷ୍ଠୁରତା,—ଏହା ସମସ୍ତ ବର୍ଣ୍ଣାଶ୍ରମଧର୍ମାବଲମ୍ବିମାନଙ୍କର କର୍ତ୍ତବ୍ୟ ଅଟେ । (୮) ସ୍ୱଧର୍ମପାଳନ ସ୍ୱର୍ଗ ଓ ମୋକ୍ଷର କାରଣ ଅଟେ । ଏହାର ବ୍ୟତିକ୍ରମରେ କର୍ମସଂକରତା ଓ ବର୍ଣ୍ଣସଂକରତା ଯୋଗୁଁ ଲୋକସମାଜର ଉଚ୍ଛେଦ ଅନିବାର୍ଯ୍ୟ ହୋଇଉଠେ । (୯) ଅତଏବ ରାଜା ପ୍ରଜାମାନଙ୍କୁ ସ୍ୱଧର୍ମର ବ୍ୟଭିଚାର କରିବା ପାଇଁ କଦାପି ପ୍ରଶ୍ରୟ ଦେବେ ନାହିଁ । କାରଣ ସ୍ୱଧର୍ମ ଅନୁସାରେ କର୍ତ୍ତବ୍ୟ କରିବା ଫଳରେ ମନୁଷ୍ୟର ଇହକାଳ ଓ ପରକାଳ ସୁଖଶାନ୍ତିରେ ଅତିବାହିତ ହୁଏ । (୧୦) ଯାହାର ସଦାଚାର ନିୟମ ବର୍ଣ୍ଣାଶ୍ରମଦ୍ୱାରା ପ୍ରତିବଦ୍ଧ, ସେହି

---

(୫)—ବାନପ୍ରସ୍ଥ—**Forest recluse.**

(୧୦) ବ୍ୟବସ୍ଥିତାର୍ଯ୍ୟମର୍ଯ୍ୟାଦଃ କୃତବର୍ଣ୍ଣାଶ୍ରମ ସ୍ଥିତଃ,
ତ୍ରଯ୍ୟା ହି ରକ୍ଷିତୋ ଲୋକଃ ପ୍ରସୀଦତି ନ ସୀଦତି ।

## ଚତୁର୍ଥୋଽଧ୍ୟାୟଃ

### ପ୍ରଥମ ପ୍ରକରଣଂ—ବିଦ୍ୟାସମୁଦ୍ଦେଶଃ—
### ବାର୍ତ୍ତା ଦଣ୍ଡନୀତି ସ୍ଥାପନା

THE END OF SCIENCES

*( Varta and Dandaneeti )*

### କୃଷି, ବାଣିଜ୍ୟ ଓ ଦଣ୍ଡନୀତିର ବିଚାର

(୧) କୃଷି ପାଶୁପାଲ୍ୟେ ବାଣିଜ୍ୟା ଚ ବାର୍ତ୍ତା ଧାନ୍ୟପଶୁହିରଣ୍ୟ
କୁପ୍ୟବିଷ୍ଟିପ୍ରଦାନାଦୌପକାରକୀ, ତୟା ସ୍ୱପକ୍ଷଂ ପରପକ୍ଷଂ ଚ

---

ବର୍ଣ୍ଣାଶ୍ରମ ଧର୍ମରେ ଅବସ୍ଥାନ କରିଥିବା ଲୋକ ( ଜନମଣ୍ଡଳ ବା ଜଗତ ) ତ୍ରୟୀଧର୍ମ ( ବେଦବିହିତ ଧର୍ମ ) ଦ୍ୱାରା ହିଁ ରକ୍ଷିତ ହେଲେ କଦାପି ବିନାଶପ୍ରାପ୍ତ ନ ହୋଇ ସର୍ବଦା ପ୍ରସନ୍ନ ରହେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ପ୍ରଥମାଧିକରଣେ ବିଦ୍ୟାସମୁଦ୍ଦେଶେ
ତ୍ରୟୀସ୍ଥାପନା—ତୃତୀୟୋଽଧ୍ୟାୟଃ ।

(୧) ପରାଶର ପ୍ରୋକ୍ତ କ୍ଷେତ୍ର ବୀଜ ବାପ ପରିକର୍ମ୍ମାଦି ପ୍ରତିପାଦକ 'କୃଷିଶାସ୍ତ୍ର', ଗୌତମ ଶାଳିହୋତ୍ରାଦି ପ୍ରଣୀତ ଗବାଶ୍ୱାଦି ପାଳନ ପ୍ରକାରୋପଦେଶକ 'ପାଶୁପାଲ୍ୟ ଶାସ୍ତ୍ର' ଏବଂ ବିଦେହରାଜ ପ୍ରଣୀତ କ୍ରୟ ବିକ୍ରୟ ବ୍ୟବହାର ତନ୍ତ୍ର 'ବାଣିଜ୍ୟ ଶାସ୍ତ୍ର',—ଏହି କୃଷିପଶୁପାଳନ ଓ ବାଣିଜ୍ୟ ଶାସ୍ତ୍ର ତ୍ରୟର ସମନ୍ୱୟକୁ 'ବାର୍ତ୍ତା' କୁହାଯାଏ । ଏହି ବାର୍ତ୍ତାବିଦ୍ୟା ଧାନ୍ୟ, ପଶୁ, ସୁବର୍ଣ୍ଣ, ରୌପ୍ୟ, ତାମ୍ରାଦି ଧାତୁ, ସାର ଦାରୁ ପ୍ରଭୃତି ବନଜାତ ପଦାର୍ଥ ତଥା ବେଠିଆ ପ୍ରଭୃତି ସେବକମାନଙ୍କୁ ପ୍ରାପ୍ତ କରାଇ ବିଶେଷ ଉପକାର ସାଧନ କରେ । ଏହି ବାର୍ତ୍ତାବିଦ୍ୟାରେ କୁଶଳୀ ହୋଇଥିବା ରାଜା ପ୍ରଚୁର ଧନ ଓ ସୈନ୍ୟର ଅଧିକାରୀ ହୋଇ ଯଥାକ୍ରମେ ସ୍ୱରାଷ୍ଟ୍ର ଓ ପରରାଷ୍ଟ୍ରକୁ ବଶୀଭୂତ କରିବାପାଇଁ

ବଶୀକରୋତି କୋଶଦଣ୍ଡାଭ୍ୟାଂ; (୨) ଆନ୍ୱୀକ୍ଷିକୀତ୍ରୟୀବାର୍ତ୍ତାନାଂ ଯୋଗକ୍ଷେମସାଧନୋ ଦଣ୍ଡଃ, ତସ୍ୟ ନୀତିର୍ଦ୍ଦଣ୍ଡନୀତିଃ ଅଲବ୍ଧଲାଭାର୍ଥା, ଲବ୍ଧ ପରିରକ୍ଷିଣୀ, ରକ୍ଷିତ ବିବର୍ଧନୀ, ବୃଦ୍ଧସ୍ୟ ତୀର୍ଥେଷୁ ପ୍ରତିପାଦନୀ ଚ; (୩) ତସ୍ୟାମାୟତ୍ତା ଲୋକଯାତ୍ରା । ତସ୍ମାଲ୍ଲୋକଯାତ୍ରାର୍ଥୀ ନିତ୍ୟମୁଦ୍ୟତଦଣ୍ଡଃ ସ୍ୟାତ୍ । ନହ୍ୟେବଂବିଧଂ ବଶୋପନୟନମସ୍ତି ଭୂତାନାଂ ଯଥା ଦଣ୍ଡ ଇତ୍ୟାଚାର୍ଯ୍ୟାଃ; (୪) ନେତି କୌଟଲ୍ୟଃ, ତୀକ୍ଷ୍ଣଦଣ୍ଡୋ ହି ଭୂତାନାମୁଦ୍ବେଜନୀୟଃ । ମୃଦୁଦଣ୍ଡଃ ପରିଭୂୟତେ । ଯଥାର୍ହଦଣ୍ଡଃ ପୂଜ୍ୟଃ । ସୁବିଜ୍ଞାତ ପ୍ରଣୀତୋ ହି ଦଣ୍ଡଃ ପ୍ରଜାଧର୍ମ୍ମାର୍ଥକାମୈର୍ଯୋଜୟତି । ଦୁଷ୍ପ୍ରଣୀତଃ କାମକ୍ରୋଧାଭ୍ୟାମଜ୍ଞାନାଦ୍ ବାନପ୍ରସ୍ଥପରିବ୍ରାଜକାନପି କୋପୟତି, କିମଙ୍ଗପୁନର୍ଗୃହସ୍ଥାନ୍ । ଅପ୍ରଣୀତୋ ହି ମାତ୍ସ୍ୟନ୍ୟାୟମୁଦ୍ଭାବୟତି । ବଳୀୟାନବଳଂ ହି ଗ୍ରସତେ ଦଣ୍ଡଧରାଭାବେ । ତେନ ଗୁପ୍ତଃ ପ୍ରଭବତୀତି ।

---

ସମର୍ଥ ହୁଅନ୍ତି । (୨) ଆନ୍ୱୀକ୍ଷିକୀ (ହେତୁବିଦ୍ୟା), ତ୍ରୟୀ (ବେଦବିଦ୍ୟା), ବାର୍ତ୍ତା (କୃଷି ପଶୁପାଳନ ଓ ବାଣିଜ୍ୟ ବିଦ୍ୟା) ଏହି ତିନି ବିଦ୍ୟାକୁ ସୁଚାରୁରୂପେ ପରିଚାଳିତ କରିବାପାଇଁ ଦଣ୍ଡନୀତି ହିଁ ସମର୍ଥ ଅଟେ । ଦଣ୍ଡ ଦେବା ନୀତିକୁ 'ଦଣ୍ଡନୀତି' କହନ୍ତି । ଏ ଦଣ୍ଡନୀତି ଅପ୍ରାପ୍ତ ଧନର ପ୍ରାପ୍ତିକାରକ, ପ୍ରାପ୍ତ ଧନର ରକ୍ଷାକାରକ, ରକ୍ଷିତ ଧନର ବୃଦ୍ଧିକାରକ ଏବଂ ବୃଦ୍ଧ, ପୂଜ୍ୟ, ପୁଣ୍ୟକ୍ଷେତ୍ର, ଯଜ୍ଞ ଓ ଅସହାୟମାନଙ୍କ ସେବାରେ ବୃଦ୍ଧିପ୍ରାପ୍ତ ଧନର ବିନିଯୋଗକାରକ ଅଟେ । (୩) ସାରା ସଂସାରର ଲୋକଯାତ୍ରା ଅର୍ଥାତ୍ ଲୋକବ୍ୟବହାର ଦଣ୍ଡନୀତିର ଅଧୀନ । ସୁତରାଂ ଲୋକଯାତ୍ରାର୍ଥୀ ରାଜା ସର୍ବଦା ଦଣ୍ଡପ୍ରୟୋଗ ପାଇଁ ଉଦ୍ୟତ ହେବେ । ଦଣ୍ଡ ସଦୃଶ ଲୋକବଶକାରକ ଉପାୟ ଅନ୍ୟ କିଛି ନାହିଁ ବୋଲି ସମସ୍ତ ଆଚାର୍ଯ୍ୟମାନଙ୍କର ମତ । (୪) କୌଟିଲ୍ୟ ଉପରୋକ୍ତ ମତର ପ୍ରତିରୋଧ କରି କହନ୍ତି—"ଉଗ୍ର ଦଣ୍ଡ ପ୍ରଜାମାନଙ୍କ ଉଦ୍‌ବେଗଜନକ (ଉତ୍ତେଜନା ସୃଷ୍ଟିକାରକ), ମୃଦୁ ଦଣ୍ଡ ଘୃଣା ବା ହେୟତ୍ୱଜନକ, ଏବଂ ଦେଶ କାଳ ଓ ଅପରାଧର ମାତ୍ରାନୁଯାୟୀ ବ୍ୟବସ୍ଥିତ ଦଣ୍ଡ ପୂଜ୍ୟ ଅର୍ଥାତ୍ ଲୋକମାନ୍ୟ ଅଟେ । ଏପରି ଶାସ୍ତ୍ରସମ୍ମତ ସୁପ୍ରଣୀତ ଯଥାର୍ଥ ଦଣ୍ଡ ହିଁ ପ୍ରଜାମାନଙ୍କୁ ଧର୍ମ୍ମ, **ଅର୍ଥ ଓ**

**(୫) ଚତୁର୍ବର୍ଣ୍ଣାଶ୍ରମୋ ଲୋକୋ ରାଜ୍ଞା ଦଣ୍ଡେନ ପାଳିତଃ,**
**ସ୍ୱଧର୍ମକର୍ମାଭିରତୋ ବର୍ତ୍ତତେ ସ୍ୱେଷୁ କର୍ମସୁ ।**

---

କାମରୂପକ ତ୍ରିବର୍ଗ ସାଧନାରେ ନିଯୁକ୍ତ କରେ । କିନ୍ତୁ କାମ, କ୍ରୋଧ ଓ ଅଜ୍ଞାନହେତୁକ ଦୁଷ୍ପ୍ରଣୀତ ଦଣ୍ଡ ବାନପ୍ରସ୍ଥ ଓ ସନ୍ନ୍ୟାସୀମାନଙ୍କୁ ଯେତେବେଳେ ପ୍ରକୁପିତ କରାଏ, ସେତେବେଳେ ତାହା ଗୃହୀମାନେ ବା କିପରି ସହ୍ୟ କରିବେ ? ଦଣ୍ଡନୀତି ଆଦୌ ପ୍ରଯୁକ୍ତ ନହେଲେ ମଧ୍ୟ କ୍ଷୁଦ୍ର ମତ୍ସ୍ୟକୁ ବୃହତ୍ ମତ୍ସ୍ୟ ଗ୍ରାସ କଲାପରି ବଳବାନ୍ ବ୍ୟକ୍ତି ଦୁର୍ବଳକୁ ଗ୍ରାସ କରିଦିଅନ୍ତି; ଉପଯୁକ୍ତ ଦଣ୍ଡଧର (ରାଷ୍ଟ୍ରନାୟକ) ଅଭାବରେ ମଧ୍ୟ ବଳବାନ୍ ପ୍ରଜା ଏପରି ଦୁର୍ବଳ ପ୍ରଜାମାନଙ୍କୁ ଦମନ କରିପକାନ୍ତି । ଅତଏବ ସୁପ୍ରଣୀତ ଦଣ୍ଡଦ୍ୱାରା ସୁରକ୍ଷିତ ଦୁର୍ବଳ ପ୍ରଜା ଉତ୍ତମ ଶାସନଦ୍ୱାରା ପ୍ରଭାବିତ ହୋଇ ନ୍ୟାୟବଳରେ ବଳଶାଳୀ ହୋଇଥାନ୍ତି । (୫) ସୁଶାସକଙ୍କ ସୁପ୍ରଣୀତ ଦଣ୍ଡନୀତିରେ ପାଳିତ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର; ବ୍ରହ୍ମଚାରୀ, ଗୃହୀ, ବାନପ୍ରସ୍ଥ ଓ ସନ୍ନ୍ୟାସୀ ଏହି ବର୍ଣ୍ଣାଶ୍ରମୀମାନେ ସ୍ୱ ସ୍ୱ ସ୍ଥାନରେ ସ୍ୱ ସ୍ୱ ଧର୍ମକର୍ମରେ ପ୍ରବୃତ୍ତ ହୁଅନ୍ତି ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ଚତୁର୍ଥୋଽଧ୍ୟାୟଃ—ବିଦ୍ୟାସମୁଦ୍ଦେଶେ ବାର୍ତ୍ତା ସ୍ଥାପନା, ଦଣ୍ଡନୀତି ସ୍ଥାପନା ଚ ।
ବିଦ୍ୟାସମୁଦ୍ଦେଶଃ ସମାପ୍ତଃ ।

---

# ପଞ୍ଚମୋଽଧ୍ୟାୟଃ

## ଦ୍ୱିତୀୟ ପ୍ରକରଣଂ—ବୃଦ୍ଧସଂଯୋଗଃ
## ( ବିଶେଷଜ୍ଞ ସହଯୋଗଃ )

**ASSOCIATION WITH THE AGED**

**ବୃଦ୍ଧ ଅର୍ଥାତ୍ ଆନ୍ୱୀକ୍ଷିକ୍ୟାଦି ବିଦ୍ୟାବିଶାରଦମାନଙ୍କ ସହିତ ଶିଷ୍ୟସମ୍ପର୍କ ସ୍ଥାପନ ।**

**(୧) ତସ୍ମାଦ୍ ଦଣ୍ଡମୂଳାସ୍ତିସ୍ରୋ ବିଦ୍ୟାଃ, ବିନୟମୂଳୋ ଦଣ୍ଡଃ ପ୍ରାଣଭୃତାଂ ଯୋଗକ୍ଷେମାବହଃ; (୨) କୃତକଃ ସ୍ୱାଭାବିକଶ୍ଚ ବିନୟଃ, କ୍ରିୟା ହି ଦ୍ରବ୍ୟଂ ବିନୟତି ନାଦ୍ରବ୍ୟମ୍ । ଶୁଶ୍ରୂଷାଶ୍ରବଣଗ୍ରହଣ**

---

(୧) ଚତୁର୍ବର୍ଣ୍ଣାଶ୍ରମୀ ପ୍ରଜାମାନେ ସୁଶାସକଙ୍କ ସୁପ୍ରଣୀତ ଶାସ୍ତ୍ରୀୟ ଦଣ୍ଡଦ୍ୱାରା ପାଳିତ ହେଲେ ସେମାନଙ୍କର ସ୍ୱ ସ୍ୱ ଧର୍ମକର୍ମ ଅନୁଷ୍ଠାନ—ପ୍ରବଣତାର ଉତ୍ପତ୍ତି ହୁଏ, ଅତଏବ, ଆନ୍ୱୀକ୍ଷିକୀ, ତ୍ରୟୀ ଓ ବାର୍ତ୍ତା ବିଦ୍ୟା ଦଣ୍ଡନୀତିର ଅଧୀନ । ବିନୟମୂଳକ ଦଣ୍ଡ ମନୁଷ୍ୟମାନଙ୍କର ଯୋଗକ୍ଷେମ ସମ୍ପତ୍ତିର ହେତୁ ଅଟେ । (୨) 'କୃତକ' ଓ 'ସ୍ୱାଭାବିକ' ଭେଦରେ 'ବିନୟ' ଦୁଇପ୍ରକାର । କଳ୍ପିତ ଅର୍ଥାତ୍ କୃତ୍ରିମ ଉପାୟରେ ନିଷ୍ପନ୍ନ ହୋଇଥିବା ବିନୟକୁ 'କୃତକ' ଏବଂ ବିନାଚେଷ୍ଟାରେ ସ୍ୱଭାବସିଦ୍ଧ ବିନୟକୁ 'ସ୍ୱାଭାବିକ' (ପ୍ରାକୃତିକ) କୁହାଯାଏ । ଯେ କୌଣସି କ୍ରିୟା ତଦନୁକୂଳ ଦ୍ରବ୍ୟକୁ ହିଁ ବିନୀତ ଅର୍ଥାତ୍ ସଂସ୍କୃତ କରେ, ଅଦ୍ରବ୍ୟକୁ କରେ ନାହିଁ । 'ଶୁଶ୍ରୂଷା' ଅର୍ଥାତ୍ ଶ୍ରବଣଯୋଗ୍ୟ ଶାସ୍ତ୍ର ଶ୍ରବଣର ଇଚ୍ଛା, 'ଶ୍ରବଣ' ଅର୍ଥାତ୍ ଈଦୃଶ ଇଚ୍ଛା ଯୋଗୁଁ ଶାସ୍ତ୍ରଶ୍ରବଣ, 'ଗ୍ରହଣ' ଅର୍ଥାତ୍ ଶ୍ରୁତାର୍ଥ ଜ୍ଞାନ, 'ଧାରଣ' ଅର୍ଥାତ୍ ଗୃହୀତ ଶାସ୍ତ୍ରାର୍ଥର ଅବିସ୍ମରଣ (ନ ପାଶୋରିବା), 'ବିଜ୍ଞାନ' ଅର୍ଥାତ୍ ଧାରିତ ଜ୍ଞାନର ସାଧ୍ୟ ସାଧନାଦି ସ୍ୱରୂପ ବିବେକଜ୍ଞାନ, 'ଊହ' ଅର୍ଥାତ୍ ତର୍କ (ଶବ୍ଦଦ୍ୱାରା କୁହା ନଯାଇଥିବା ବିଷୟକୁ ଅନୁମାନ କରି ଜାଣିବା), 'ଅପୋହ' ଅର୍ଥାତ୍ ବିତର୍କ (ଅଯୌକ୍ତିକ କଥାକୁ ଅସିଦ୍ଧ କରି କାଟିଦେବା), 'ତତ୍ତ୍ୱାଭିନିବେଶ'

---

(୨)—ନାଦ୍ରବ୍ୟେ ନିହିତା କାଚିତ୍ କ୍ରିୟା ଫଳବତୀ ଭବେତ୍,
ନବ୍ୟାପାର ଶତେନାପି ଶୁକବତ୍ ପାଠ୍ୟତେ ବକଃ ।

**ଧାରଣବିଜ୍ଞାନୋହାପୋହତତ୍ତ୍ୱାଭିନିବିଷ୍ଟବୁଦ୍ଧିଂ ବିଦ୍ୟାବିନୟତି ନେତରମ୍; (୩) ବିଦ୍ୟାନାନ୍ତୁ ଯଥାସ୍ୱମାଚାର୍ଯ୍ୟପ୍ରାମାଣ୍ୟାଦ୍ ବିନୟୋ ନିୟମଶ୍ଚ; (୪) ବୃତ୍ତଚୌଳକର୍ମା ଲିପିଂ ସଂଖ୍ୟାନଂ ଚୋପଯୁଞ୍ଜୀତ । ବୃତ୍ତୋପନୟନସ୍ତ୍ରୟୀମାନ୍ୱୀକ୍ଷିକୀଂ ଚ ଶିଷ୍ଟେଭ୍ୟଃ, ବାର୍ତ୍ତାମଧ୍ୟକ୍ଷେଭ୍ୟଃ, ଦଣ୍ଡନୀତିଂ ବକ୍ତୃପ୍ରୟୋକ୍ତୃଭ୍ୟଃ; (୫) ବ୍ରହ୍ମଚର୍ଯ୍ୟଂ ଚଷୋଡ଼ଶାଦ୍-ବର୍ଷାତ୍, ଅତୋ ଗୋଦାନଂ ଦାରକର୍ମ ଚ । ଅସ୍ୟ ନିତ୍ୟଶ୍ଚ ବିଦ୍ୟାବୃଦ୍ଧ**

---

ଅର୍ଥାତ୍ ବସ୍ତୁର ଯାଥାତ୍ମ୍ୟଜ୍ଞାନ, ଏହି ଅଷ୍ଟବିଧ ଗୁଣଯୁକ୍ତ ବୁଦ୍ଧିସଂପନ୍ନ ଶିଷ୍ୟଙ୍କୁ ବିଦ୍ୟା ଶିକ୍ଷିତ କରେ ସିନା ଇତର ଶିଷ୍ୟଙ୍କୁ ଶିକ୍ଷିତ କରେ ନାହିଁ । (୩) ଯେଉଁ ଶିଷ୍ୟ ଯେଉଁ ବିଦ୍ୟା ଶିକ୍ଷା କରିବାକୁ ଯୋଗ୍ୟ (ଅଧିକାରୀ) ସେହି ବିଦ୍ୟା ଶିକ୍ଷା ସକାଶେ ସେହି ବିଦ୍ୟାର ବିଶେଷଜ୍ଞ (ଗୁରୁ) ଯେଉଁ ନିୟମର ବ୍ୟବସ୍ଥା କରିବେ ଶିଷ୍ୟ ତଦନୁସାରେ ଚଳିବାକୁ ହେବ । (୪) ଜନ୍ମର ତିନିବର୍ଷ ବା ପାଞ୍ଚବର୍ଷ ପରେ ଅଭିଭାବକଗଣ ବାଳକର ମୁଣ୍ଡନ ସଂସ୍କାର ସମାପନ କରି ପ୍ରଥମେ ତାଙ୍କୁ ଅକ୍ଷର ଓ ଗଣିତ ଶିକ୍ଷା ଦେବେ; ଯଜ୍ଞୋପବୀତ ସଂସ୍କାର ଓ ଗାୟତ୍ରୀ ଉପଦେଶ ଗ୍ରହଣ ପରେ ଉଚ୍ଚକୋଟିର ଶିଷ୍ଟ ପଣ୍ଡିତଙ୍କଠାରୁ ବେଦବିଦ୍ୟା ଓ ଆନ୍ୱୀକ୍ଷିକୀ ବିଦ୍ୟା; କୃଷି, ବାଣିଜ୍ୟ, ଗୋପାଳନାଦିର ଅଧ୍ୟକ୍ଷମାନଙ୍କଠାରୁ ବାର୍ତ୍ତାବିଦ୍ୟା ଏବଂ ଅଭିଜ୍ଞ, ନେତା ଓ ଶାସକମାନଙ୍କଠାରୁ ଦଣ୍ଡନୀତି ଶିକ୍ଷା ପାଇବା ପାଇଁ ନିଯୁକ୍ତ କରିବେ । (୫) ବିଦ୍ୟାର୍ଥୀ ଅନ୍ତତଃ ଷୋହଳ ବର୍ଷ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ପାଳନ, ତା'ପରେ ସମାବର୍ତ୍ତନ ପୂର୍ବକ କେଶସଂସ୍କାର କର୍ମ ଶେଷକରି ବିବାହ କରିପାରିବେ । ବିବାହ କାର୍ଯ୍ୟ କରିସାରି ସଂସାରୀ ହେବା ପରେ ମଧ୍ୟ ଶିକ୍ଷାର ସଂସ୍କାରକୁ ଚିରସ୍ଥାୟୀ କରିବାପାଇଁ ଯେଉଁ ଯେଉଁ ବିଦ୍ୟାରେ ତାଙ୍କର ଅଭିରୁଚି ଜନ୍ମିଛି, ସେହି ସେହି ବିଦ୍ୟାର ବିଶେଷଜ୍ଞମାନଙ୍କ ସହିତ ଶାସ୍ତ୍ର

---

(୫)—ଗୋଦାନଂ—ଗାବଃ କେଶାଃ ଦୀୟନ୍ତେ ଖଣ୍ଡ୍ୟନ୍ତେ ଇତି ଗୋଦାନଂ । କେଶଖଣ୍ଡନାଖ୍ୟଂ କର୍ମ (କେଶସଂସ୍କାର କର୍ମ), ଯଥା—ରଘୁବଂଶେ, "ଅଥାସ୍ୟ ଗୋଦାନବିଧେରନନ୍ତରଂ ବିବାହଦୀକ୍ଷାଂ ନିରବର୍ତ୍ତୟଦ୍ଗୁରୁଃ" । ଅର୍ଥାତ୍ ଅଜ ମହାରାଜ ସ୍ୱପୁତ୍ର ରଘୁଙ୍କ ଗୋଦାନ ଅର୍ଥାତ୍ କେଶସଂସ୍କାର କର୍ମ ସମାପନ ପରେ ବିବାହ କରାଇଲେ ।

ସଂଯୋଗୋ ବିନୟବୃଦ୍ଧ୍ୟର୍ଥଂ, ତନ୍ମୂଳତ୍ୱାଦ୍ ବିନୟସ୍ୟ; (୬) ପୂର୍ବମହର୍ଭାଗଂ ଦସ୍ତ୍ୟଶ୍ୱରଥପ୍ରହରଣବିଦ୍ୟାସୁ ବିନୟଂ ଗଚ୍ଛେତ୍, ପଶ୍ଚିମମିତିହାସଶ୍ରବଣେ । ପୁରାଣମିତିବୃତ୍ତମାଖ୍ୟାୟିକୋଦାହରଣଂ ଧର୍ମଶାସ୍ତ୍ରମର୍ଥଶାସ୍ତ୍ରଂ ଚେତୀତିହାସଃ । ଶେଷମହୋରାତ୍ରଭାଗମପୂର୍ବଗ୍ରହଣଂ ଗୃହୀତପରିଚୟଂ ଚ କୁର୍ଯାଦ୍, ଅଗୃହୀତାନାମାଭୀକ୍ଷ୍ଣ୍ୟ ଶ୍ରବଣଂ ଚ; (୭) ଶ୍ରୁତାଦ୍ଧିପ୍ରଜ୍ଞୋପକାୟତେ ପ୍ରଜ୍ଞୟା ଯୋଗୋ ଯୋଗା-

ସଂସ୍କାରର ଅଭିବୃଦ୍ଧି ସକାଶେ ସଂଯୋଗ ସ୍ଥାପନ କରିବେ । ଯେହେତୁ ବିନୟ (ଶାସ୍ତ୍ରସଂସ୍କାର) ବୃଦ୍ଧସଂଯୋଗ ଫଳରେ ହିଁ ଉତ୍ପନ୍ନ ହୋଇଥାଏ । (୬) କ୍ଷତ୍ରିୟ ବିଦ୍ୟାର୍ଥୀ ପୂର୍ବାହ୍ଣରେ ହସ୍ତୀ, ଅଶ୍ୱ, ରଥ ଓ ଶସ୍ତ୍ରାସ୍ତ୍ର ବିଦ୍ୟା ଶିକ୍ଷା କରିବେ ଏବଂ ଅପରାହ୍ଣରେ ଇତିହାସ ଶ୍ରବଣ କରିବେ । ସ୍କନ୍ଦାଦି ଅଷ୍ଟାଦଶ ପୁରାଣ, ରାମାୟଣ, ମହାଭାରତାଦି ଇତିହାସ, 'ଆଖ୍ୟାୟିକା' ଅର୍ଥାତ୍ ଦିବ୍ୟମାନୁଷାଦି ଚରିତ ସମ୍ବଳିତ ଉପନ୍ୟାସ (କାଦମ୍ବରୀ, ହର୍ଷଚରିତ, ବାସବଦତ୍ତା ପ୍ରଭୃତି ଗ୍ରନ୍ଥ), 'ଉଦାହରଣ' ଅର୍ଥାତ୍ ନ୍ୟାୟ, ମୀମାଂସାଦି ଶାସ୍ତ୍ର, 'ଧର୍ମଶାସ୍ତ୍ର' ଅର୍ଥାତ୍ ମନୁ, ପରାଶର, ଯାଜ୍ଞବଲ୍କ୍ୟ ଇତ୍ୟାଦି ଧର୍ମଗ୍ରନ୍ଥ ଏବଂ 'ଅର୍ଥଶାସ୍ତ୍ର' ଅର୍ଥାତ୍ ଔଶନସ, ବାର୍ହସ୍ପତ୍ୟାଦି ରାଜନୀତି ଗ୍ରନ୍ଥସମୂହକୁ ଇତିହାସ କୁହାଯାଏ । ଦିବସ ଓ ରାତ୍ରିର ଅବଶିଷ୍ଟ ଭାଗରେ ଅର୍ଥାତ୍ ବିଶ୍ରାମ ନେବା ସମୟରେ ନୂତନ ବିଷୟର ଶିକ୍ଷା ଓ ପୁରାତନ ବିଷୟର ଚର୍ଚ୍ଚା କରିବେ । (୭) ଶାସ୍ତ୍ରୋକ୍ତ କର୍ମ ଅନୁଷ୍ଠାନରୁ ଶ୍ରଦ୍ଧା ଏବଂ

(୬)—ଧର୍ମାର୍ଥ କାମମୋକ୍ଷାଣା ମୁପଦେଶ ସମନ୍ୱିତଂ, ପୂର୍ବବୃତ୍ତକଥାଯୁକ୍ତ ମିତିହାସ ପ୍ରଚକ୍ଷତେ ।
ଅର୍ଥାତ୍—ଧର୍ମ, ଅର୍ଥ, କାମ ଓ ମୋକ୍ଷ ବିଷୟକ ଉପଦେଶ ସମନ୍ୱିତ ଧାରାବାହିକ ପୂର୍ବ ବୃତ୍ତାନ୍ତ କଥନକୁ 'ଇତିହାସ' କହନ୍ତି ।

ମଦ୍ୱୟଂ ଭଦ୍ୱୟଂ ଚୈବ ବ୍ରତ୍ରୟଂ ବଚତୁଷ୍ଟୟଂ, ଆପନାଲିଙ୍ଗକୂସ୍କାନି ପୁରାଣାନି ବିଦୁର୍ବୁଧାଃ ।
'ମ'ଦ୍ୱୟ ଅର୍ଥାତ୍ ମତ୍ସ୍ୟ ଓ ମାର୍କଣ୍ଡେୟ ପୁରାଣ, 'ଭ'ଦ୍ୱୟ ଅର୍ଥାତ୍ ଭବିଷ୍ୟ ଓ ଭାଗବତ ପୁରାଣ, 'ବ୍ର'ତ୍ରୟ ଅର୍ଥାତ୍ ବ୍ରହ୍ମବୈବର୍ତ୍ତ, ବ୍ରହ୍ମପୁରାଣ ଓ ବ୍ରହ୍ମାଣ୍ଡ ପୁରାଣ, 'ବ' ଚତୁଷ୍ଟୟ ଅର୍ଥାତ୍ ବିଷ୍ଣୁ, ବାୟୁ, ବରାହ ଓ ବାମନ ପୁରାଣ, 'ଆ' ଅର୍ଥାତ୍ ଆଦିପୁରାଣ, 'ପ' ଅର୍ଥାତ୍ ପଦ୍ମପୁରାଣ, 'ନା' ଅର୍ଥାତ୍ ନାରଦପୁରାଣ, 'ଲିଂ' ଅର୍ଥାତ୍ ଲିଂଗପୁରାଣ, 'ଗ' ଅର୍ଥାତ୍ ଗରୁଡ଼ପୁରାଣ, 'କୂ' ଅର୍ଥାତ୍ କୂର୍ମପୁରାଣ ଓ ସ୍କନ୍ଦପୁରାଣ ।

ଦାମ୍ବରଭେତ ବଦ୍ୟାସାମର୍ଥ୍ୟମ୍;

(୮) ବଦ୍ୟାବ୍ବନୀତୋ ଘଜା ହ୍ଵ ପ୍ରଜାନାଂ ବନଯ୍ୟେ ରତଃ,
ଅନନ୍ୟାଂ ପଦବୀଂ ଭୁଙ୍କ୍ତେ ସର୍ବଭୂତହ୍ବତେ ରତଃ ।

## ଷଷ୍ଠୋଽଧ୍ୟାୟଃ

## ତୃତୀୟ ପ୍ରକରଣଂ—ଇନ୍ଦ୍ରିୟଜୟଃ

## ( ଅରଷଡ଼୍ବର୍ଗତ୍ୟାଗଃ )

RESTRAINT OF THE ORGANS OF SENSE

*( The Shaking off of the Aggregate of the Six Enemies )*

ଚକ୍ଷୁ କର୍ଣ୍ଣାଦ ଇନ୍ଦ୍ରିୟସମୂହର ସ୍ୱ ସ୍ୱ ବଷୟରେ (ରୂପାଦମାନଙ୍କରେ) ଅବରୁଦ୍ଧ ପ୍ରବୃତ୍ତିକୁ 'ଇନ୍ଦ୍ରିୟଜୟ' କୁହାଯାଏ । ଏହା ସ୍ୱାଭାବକ ଓ କୃତକ ଭେଦରେ ଦୁଇପ୍ରକାର । ବୃଦ୍ଧସଂଯୋଗ ବଷୟର ଆଲୋଚନା ପରେ ତାର ଆନୁଷଙ୍ଗିକ ଇନ୍ଦ୍ରିୟଜୟ ବଷୟର ଆଲୋଚନା ଏଠାରେ କରାଯିବ ।

(୧) ବଦ୍ୟାବନୟହେତୁରନ୍ଦ୍ରିୟଜୟଃ, କାମକ୍ରୋଧଲୋଭମାନ-ମଦହର୍ଷତ୍ୟାଗାତ୍ କାର୍ଯଃ । କର୍ଣ୍ଣତ୍ୱଗକ୍ଷିଜିହ୍ୱାଘ୍ରାଣେନ୍ଦ୍ରିୟାଣାଂ ଶବ୍ଦ

---

ଯୋଗରୁ ମନସ୍ୱିତା ବା ସତ୍ତ୍ୱବତ୍ତାର ଉତ୍ପତ୍ତି ହୁଏ । ସୁତରାଂ ପଣ୍ଡିତଗଣ ଏହାକୁ ବଦ୍ୟାଶକ୍ତି ଜାତ ଫଳ ବୋଲି କହନ୍ତି । (୮) ସୁଶିକ୍ଷିତ ଓ ସମସ୍ତ ବଦ୍ୟାରେ ନିଷ୍ଣାତ ରାଜା, ପ୍ରଜାମାନଙ୍କୁ ସୁଶିକ୍ଷିତ କରାଇ ସେମାନଙ୍କ ହିତସାଧନ ସକାଶେ ତତ୍ପର ହୁଅନ୍ତି, ଏବଂ ଏହି ସର୍ବପ୍ରାଣୀ ହିତକାମୀ ରାଜା ମଣ୍ଡଳେଶ୍ୱରତ୍ୱ ଲାଭକରନ୍ତି ।

ଇତ କୌଟଲ୍ୟୀୟାର୍ଥଶାସ୍ତ୍ରେ ବନୟାଧିକାରକେ ପ୍ରଥମାଧିକରଣେ ପଞ୍ଚମୋଽଧ୍ୟାୟଃ—ବୃଦ୍ଧସଂଯୋଗଃ ।

---

(୧) ଇନ୍ଦ୍ରିୟଜୟ ବଦ୍ୟା ଓ ବନୟର କାରଣ ଅଟେ । ଏହା ଅରଷଡ଼୍ବର୍ଗ ଅର୍ଥାତ୍ କାମ (ପର ସ୍ତ୍ରୀ ଅଭିଳାଷ), କ୍ରୋଧ (ହିଂସାପ୍ରବର୍ତ୍ତିକ

**ସ୍ପର୍ଶରୂପରସଗନ୍ଧେ ଷ୍ୱବିପ୍ରତିପତ୍ତିରିନ୍ଦ୍ରିୟଜୟଃ ଶାସ୍ତ୍ରାର୍ଥାନୁଷ୍ଠାନଂ ବା କୃତ୍ସ୍ନଂ ହି ଶାସ୍ତ୍ରମିଦମିନ୍ଦ୍ରିୟଜୟଃ; (୨) ତଦ୍ଵିରୁଦ୍ଧବୃତ୍ତିରବଶ୍ୟେ-ନ୍ଦ୍ରିୟଶ୍ଚାତୁରନ୍ତୋଽପି ରାଜା ସଦ୍ୟୋ ବିନଶ୍ୟତି; (୩) ଯଥା ଦାଣ୍ଡକ୍ୟୋ ନାମ ଭୋଜଃ କାମାଦ୍ ବ୍ରାହ୍ମଣକନ୍ୟା ମଭିମନ୍ୟମାନଃ ସବନ୍ଧୁରାଷ୍ଟ୍ରୋ ବିନନାଶ, କରାଳଶ୍ଚ ବୈଦେହଃ । କୋପାତ୍ ଜନମେଜୟୋ ବ୍ରାହ୍ମଣେଷୁ ବିକ୍ରାନ୍ତସ୍ତାଳଜଂଘଶ୍ଚ ଭୃଗୁଷୁ; (୪) ଲୋଭାଦୈଳ ଶ୍ଚାତୁର୍ବର୍ଣ୍ୟ ମତ୍ୟାହାରୟମାଣଃ ସୌବୀରଶ୍ଚାଜବିନ୍ଦୁଃ । ମାନାଦ୍ ରାବଣଃ**

ଚିତ୍ତ ବିକାର), ଲୋଭ (ପରଦ୍ରବ୍ୟରେ ଇଚ୍ଛା), ମାନ (ମୂର୍ଖତାବଶତଃ ଅନ୍ୟଠାରୁ ନିଜକୁ ବଡ଼ ବୋଲି ଭାବିବା), ମଦ (ଧନ, ବିଦ୍ୟା ଓ ସତ୍କୁଳ ସମ୍ଭବତ୍ୱାଦିରୁ ଜାତହେବା ଗର୍ବ) ଓ ହର୍ଷ (ଅଭିଳଷିତ ଦ୍ରବ୍ୟ ପ୍ରାପ୍ତି ଓ ତାର ଉପଭୋଗଜନିତ ପ୍ରୀତି)ର ଜୟଦ୍ୱାରା ସମ୍ଭବପର ହୁଏ । କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା ଓ ନାସିକାର ସ୍ୱ ସ୍ୱ ବିଷୟ ଅର୍ଥାତ୍ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ବିଷୟରେ ଯେଉଁ ଅବିରୁଦ୍ଧ ପ୍ରବୃତ୍ତି ହୁଏ ତାହାକୁ 'ଇନ୍ଦ୍ରିୟଜୟ' କୁହାଯାଏ । ଶାସ୍ତ୍ରୋକ୍ତ ନିୟମର ଯଥାଯଥ ଅନୁଷ୍ଠାନକୁ ମଧ୍ୟ ଇନ୍ଦ୍ରିୟଜୟ କହନ୍ତି, ଯେହେତୁ ସମଗ୍ର ଶାସ୍ତ୍ରର ମୌଳିକ ଲକ୍ଷ୍ୟ କେବଳ ଇନ୍ଦ୍ରିୟଜୟ । (୨) ଶାସ୍ତ୍ରବିରୁଦ୍ଧାଚାରୀ ଅବଶ୍ୟେନ୍ଦ୍ରିୟ ରାଜା ଚତୁଃସମୁଦ୍ରବେଷ୍ଟିତ ଭୂମଣ୍ଡଳର ଅଧୀଶ୍ୱର ହୋଇଥିଲେ ମଧ୍ୟ ଅଚିରାତ୍ ବିନାଶପ୍ରାପ୍ତ ହୋଇଥାନ୍ତି । (୩) ଭୋଜବଂଶୀୟ ରାଜା ଦାଣ୍ଡକ୍ୟ ଏକ ବ୍ରାହ୍ମଣକନ୍ୟାକୁ କାମପରତନ୍ତ୍ର ହୋଇ ହରଣ କରିବା ହେତୁ ବ୍ରାହ୍ମଣଶାପରେ ରାଷ୍ଟ୍ର ଓ ବନ୍ଧୁମାନଙ୍କ ସହିତ ବିନାଶପ୍ରାପ୍ତ ହେଲେ; ବିଦେହ ରାଜ୍ୟର କରାଳନାମକ ରାଜାଙ୍କର ମଧ୍ୟ ଏହି ଦଶା ଘଟିଥିଲା; ରାଜା ଜନମେଜୟ ବ୍ରାହ୍ମଣ ଉପରେ ଏବଂ ତାଳଜଂଘ, ଭୃଗୁବଂଶୀୟ ବ୍ରାହ୍ମଣମାନଙ୍କ ଉପରେ କ୍ରୋଧବଶତଃ ଅନ୍ୟାୟାଚରଣ କରିବା ହେତୁ ବ୍ରାହ୍ମଣଶାପରେ ସେମାନଙ୍କର ସର୍ବନାଶ ଘଟିଥିଲା । (୪) ଇଳାର ପୁତ୍ର ପୁରୁରବା ଚାତୁର୍ବର୍ଣ୍ଣର ପ୍ରଜାମାନଙ୍କଠାରୁ ଲୋଭବଶତଃ ଧନ ଶୋଷଣ କରିବା ହେତୁ ସେମାନଙ୍କ ଅସନ୍ତୋଷରୁ ବିନଷ୍ଟ ହେଲେ

(୧)—ଅବିପ୍ରତିପତ୍ତି = ଅବିରୁଦ୍ଧ ପ୍ରବୃତ୍ତି । ଯଥା—ଚକ୍ଷୁର ଅବିରୁଦ୍ଧ ପ୍ରବୃତ୍ତି ଭଗବଦ୍ ରୂପ ଦର୍ଶନ ଇତ୍ୟାଦି ଏବଂ ବିରୁଦ୍ଧ ପ୍ରବୃତ୍ତି—କାମିନୀ ସ୍ତନମଣ୍ଡଳ ଜାନୁଜଘନ ଦର୍ଶନାଦି କୁତ୍ସିତ ପ୍ରବୃତ୍ତି ।

ପରଦାରାନପ୍ରଯଚ୍ଛନ୍ ଦୁର୍ଯ୍ୟୋଧନୋ ରାଜ୍ୟାଦଂଶଂ ଚ; (୪) ମଦାଦ୍ ଡମ୍ଭୋଦ୍ଭବୋ ଭୂତାବମାନୀ, ହୈହୟଶ୍ଚାର୍ଜ୍ଜୁନଃ । ହର୍ଷାଦ୍ ବାତାପି-ରଗସ୍ତ୍ୟମତ୍ୟାସାଦୟନ୍ ବୃଷ୍ଣିସଂଘଶ୍ଚ ଦ୍ୱୈପାୟନମିତି ।

(୬) ଏତେ ଚାନ୍ୟେ ଚ ବହବଃ ଶତ୍ରୁଷଡ୍‌ବର୍ଗମାଶ୍ରିତାଃ ।
ସବନ୍ଧୁରାଷ୍ଟ୍ରା ରାଜାନୋ ବିନେଶୁରଜିତେନ୍ଦ୍ରିୟାଃ ॥
(୭) ଶତ୍ରୁଷଡ୍‌ବର୍ଗମୁତ୍ସୃଜ୍ୟ ଜାମଦଗ୍ନ୍ୟୋ ଜିତେନ୍ଦ୍ରିୟଃ ।
ଅମ୍ବରୀଷଶ୍ଚ ନାଭାଗୋ ବୁଭୁଜାତେ ଚିରଂ ମହୀମ୍ ॥

---

ଏବଂ ସୌବୀରପତି ଅଜବିନ୍ଦୁ ମଧ୍ୟ ଏହି ଲୋଭଯୋଗୁଁ ବିନଷ୍ଟ ହେଲେ । (କିମ୍ବଦନ୍ତୀରୁ ପ୍ରକାଶ ଯେ ପୁରୁରବା ନୈମିଶାରଣ୍ୟର ବ୍ରାହ୍ମଣମାନେ ଯଜ୍ଞ କରିବା ସକାଶେ ସଂଗ୍ରହ କରିଥିବା ଧନ ବଳପୂର୍ବକ ହରଣ କରିବା ଯୋଗୁଁ ବ୍ରାହ୍ମଣ ଶାପରେ ନଷ୍ଟ ହେଲେ ।) ଅଭିମାନ ବଶତଃ ରାବଣ ସୀତାଙ୍କୁ ହରଣ କରିବା ଓ ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଭାଗ ନଦେବା ଫଳରେ ଏ ଦୁହିଁଙ୍କର ସମସ୍ତ ବିଭବ ନଷ୍ଟ ହୋଇ ଶୋଚନୀୟ ପତନ ଘଟିଲା । (୪) ଡମ୍ଭୋଦ୍ଭବ ନାମକ ରାଜା ରାଜମଦରେ ମତ୍ତ ହୋଇ ପ୍ରଜାଙ୍କ ଅବମାନନା କରିବା ଫଳରେ ନରନାରାୟଣଙ୍କ ଦ୍ୱାରା ନିହତ ହେଲେ ଏବଂ ହୈହୟ ବଂଶୋଦ୍ଭବ ରାଜା କାର୍ତ୍ତିବୀର୍ଯ୍ୟାର୍ଜ୍ଜୁନ ମଦୋନ୍ମତ୍ତ ହୋଇ ଜମଦଗ୍ନି ମହର୍ଷିଙ୍କୁ ଅପମାନିତ କରିବା ଫଳରେ ଉଗ୍ରଚଣ୍ଡ ମହାବୀର ପର୍ଶୁରାମଙ୍କ ଦ୍ୱାରା ନିହତ ହେଲେ । ବାତାପି ଅସୁର ଅତିହର୍ଷ ଯୋଗୁଁ ଅଗସ୍ତ୍ୟ ଋଷିଙ୍କୁ ବଞ୍ଚନା କରିବା ଫଳରେ ଏବଂ ଯାଦବମାନେ ବ୍ୟାସଦେବଙ୍କୁ ଅବମାନନା କରିବା ଫଳରେ ବିନାଶପ୍ରାପ୍ତ ହେଲେ । ଏ ସମସ୍ତ ବିଷୟ ମହାଭାରତରେ ବର୍ଣ୍ଣିତ ହୋଇଛି । (୬) ଏମାନେ, ଅନ୍ୟ ରାଜାମାନେ ମଧ୍ୟ କାମକ୍ରୋଧାଦି ଅରି ଷଡ଼୍‌ବର୍ଗର ଅଧୀନତା ସ୍ୱୀକାର ପୂର୍ବକ ଅଜିତେନ୍ଦ୍ରିୟ ହୋଇ ରାଷ୍ଟ୍ର ଓ ବନ୍ଧୁଗଣ ସହ ବିନାଶପ୍ରାପ୍ତ ହୋଇଛନ୍ତି । (୭) ଏହି ଶତ୍ରୁ ଷଡ଼୍‌ବର୍ଗଙ୍କୁ ତ୍ୟାଗକରି ଜିତେନ୍ଦ୍ରିୟ ପରଶୁରାମ, ନାଭାଗ ଏବଂ ଅମ୍ବରୀଷ ପ୍ରଭୃତି ବୀରମାନେ ଚିରକାଳ ପୃଥିବୀ ଭୋଗ କରିଥିଲେ ।

ଇତି କୌଟଲ୍ୟୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ ଷଷ୍ଠୋଽଧ୍ୟାୟଃ
ଇନ୍ଦ୍ରିୟଜୟେ ଅରିଷଡ଼୍‌ବର୍ଗତ୍ୟାଗଃ ।

## ସପ୍ତମୋଽଧ୍ୟାୟଃ

## ତୃତୀୟ ପ୍ରକରଣଂ । ଇନ୍ଦ୍ରିୟଜୟଃ—ରାଜର୍ଷିବୃତ୍ତମ୍ ।

### THE LIFE OF A SAINTLY KING

( ଜିତେନ୍ଦ୍ରିୟ, ଋଷିପ୍ରତମ ରାଜାଙ୍କ ଜୀବନବୃତ୍ତାନ୍ତ )

(୧) ତସ୍ମାଦରିଷଡ୍‌ବର୍ଗତ୍ୟାଗେନେନ୍ଦ୍ରିୟଜୟଂ କୁର୍ବୀତ, ବୃଦ୍ଧ-ସଂଯୋଗେନ ପ୍ରଜ୍ଞାଂ, ଚାରେଣ-ଚକ୍ଷୁ-ରୁତ୍ଥାନେନ ଯୋଗକ୍ଷେମ ସାଧନଂ, କାର୍ଯାନୁଶାସନେନ ସ୍ୱଧର୍ମସ୍ଥାପନଂ, ବିନୟଂବିଦ୍ୟୋ-ପଦେଶେନ, ଲୋକପ୍ରିୟତ୍ୱମର୍ଥସଂଯୋଗେନ, ହିତେନ ବୃତ୍ତିମ୍; (୨) ଏବଂ ବଶ୍ୟେନ୍ଦ୍ରିୟଃ ପରସ୍ତ୍ରୀଦ୍ରବ୍ୟହିଂସାଶ୍ଚ ବର୍ଜୟେତ୍ ସ୍ୱପ୍ନଂ ଲୌଲ୍ୟମନୃତମୁଦ୍ଧତବେଷତ୍ୱମନର୍ଥସଂଯୋଗଂ ଚ, ଅଧର୍ମସଂଯୁକ୍ତ

---

(୧) ରାଜା ଏହି ସମସ୍ତ ବିଷୟ ଆଲୋଚନା ପୂର୍ବକ ଅରି ଷଡ୍‌ବର୍ଗଙ୍କୁ ତ୍ୟାଗକରି ଇନ୍ଦ୍ରିୟ ଜୟ କରିବେ । ବିଶେଷଜ୍ଞମାନଙ୍କ ସହଯୋଗରେ ବୁଦ୍ଧିର ବିକାଶ, ଗୁପ୍ତଚରଙ୍କ ସାହାଯ୍ୟରେ ପରୋକ୍ଷ ବିଷୟର ଜ୍ଞାନ, ଉଦ୍‌ଯୋଗଦ୍ୱାରା ଯୋଗକ୍ଷେମ ସଂପାଦନ, କାର୍ଯ୍ୟାନୁଶାସନ ଦ୍ୱାରା ପ୍ରଜାବର୍ଗଙ୍କୁ ସ୍ୱ ସ୍ୱ କାର୍ଯ୍ୟରେ ପ୍ରବର୍ତ୍ତିନ ଦ୍ୱାରା ସ୍ୱଧର୍ମ ସ୍ଥାପନ, ବିଦ୍ୟା-ଉପଦେଶ ଦ୍ୱାରା ବିନୟ (ଶିକ୍ଷା) ଏବଂ ଧନଦାନ ଦ୍ୱାରା ଲୋକପ୍ରିୟତା ଅର୍ଜନ ପୂର୍ବକ ଲୋକହିତକର କାର୍ଯ୍ୟରେ ନିଜକୁ ସର୍ବଦା ନିଯୁକ୍ତ କରି ରାଜା ସମସ୍ତ ଶକ୍ତି ଅର୍ଜନ କରିବେ । (୨) ଏହିପରି ରାଜା ଜିତେନ୍ଦ୍ରିୟ ହୋଇ ପରସ୍ତ୍ରୀ, ପରଧନ ଓ ଅବୈଧ ହିଂସା (ଅଶାସ୍ତ୍ରୀୟ ହିଂସା ବା ବ୍ୟର୍ଥ ହିଂସା)ରୁ ନିବୃତ୍ତ ହେବେ ଏବଂ ଅଧିକ ଓ ଅକାଳରେ ଶୟନ, ଚପଳତା, ମିଥ୍ୟା ବ୍ୟବହାର, ଉଦ୍ଧତ ବେଶଭୂଷା, ଅଧର୍ମ ଓ ଅନର୍ଥକାରକ କାର୍ଯ୍ୟକଳାପ ତ୍ୟାଗ କରିବେ । (୩) ରାଜା ଧର୍ମ ଓ

---

୧—ଅରିଷଡ୍‌ବର୍ଗ—**Aggregate of six enemies i.e., Lust, Anger, Greed, Vanity, Haughtiness and Overjoy.**

ମନର୍ଥସଂଯୁକ୍ତଂ ଚ ବ୍ୟବହାରମ୍; (୩) ଧର୍ମାର୍ଥାବିରୋଧେନ କାମଂ ସେବେତ ନ ନିଃସୁଖଃ ସ୍ୟାତ୍ । ସମଂ ବା ତ୍ରିବର୍ଗମନ୍ୟୋନ୍ୟାନୁବନ୍ଧମ୍ । ଏକୋ ହ୍ୟତ୍ୟାସେବିତୋ ଧର୍ମାର୍ଥକାମାନାମାତ୍ମାନମିତରୌ ଚ ପୀଡ଼ୟତି; (୪) ଅର୍ଥ ଏବ ପ୍ରଧାନ ଇତି କୌଟଲ୍ୟଃ, ଅର୍ଥମୂଳୌ ହି ଧର୍ମକାମାବିତି; (୫) ମର୍ଯାଦାଂ ସ୍ଥାପୟେଦାଚାର୍ଯାନମାତ୍ୟାନ୍ ବା, ଯ ଏନମପାୟସ୍ଥାନେଭ୍ୟୋ ବାରୟେୟୁଃ, ଛାୟାନାଳିକାପ୍ରତୋଦେନ ବା ରହସି ପ୍ରମାଦ୍ୟନ୍ତମଭିତୁଦେୟୁଃ ।

---

ଅର୍ଥର ଅବିରୋଧରେ କାମ ସେବା କରିବେ,—ଅରସିକଙ୍କପରି ଏକବାରେ ସୁଖ ସେବାରୁ ବିରତ ହେବେ ନାହିଁ । ଧର୍ମ, ଅର୍ଥ ଓ କାମ ଅନ୍ୟୋନ୍ୟ ଅନୁବନ୍ଧ ଥିବା ହେତୁ ରାଜା ଏଗୁଡ଼ିକୁ ସମଭାବେ ଉପଭୋଗ କରିବେ । ଅଜ୍ଞାନବଶତଃ ଏଗୁଡ଼ିକର ଅସମ ସେବନ ଫଳରେ ଅର୍ଥାତ୍ ଅତିମାତ୍ର ଧର୍ମାଚରଣ ଅଥଚ ଅର୍ଥକାମର ଅସେବନ ଫଳରେ ଅର୍ଥ ଓ କାମବାଧା ପ୍ରାପ୍ତ ହୁଅନ୍ତି, ଅତିମାତ୍ର କାମ ସେବନ ଫଳରେ ଧର୍ମ ଓ ଅର୍ଥ ବାଧାପ୍ରାପ୍ତ ହୁଅନ୍ତି, ଏବଂ ଅତିମାତ୍ର ଅର୍ଥ ସେବନ କରିବା ଫଳରେ ଧର୍ମ ଓ କାମ ବାଧାପ୍ରାପ୍ତ ହୁଅନ୍ତି । (୪) କୌଟଲ୍ୟଙ୍କ ମତରେ ସଂସାରରେ କେବଳ ଅର୍ଥ ଏକା ପ୍ରଧାନ, (ସାଂସାରିକ ସମସ୍ତ ବିଷୟ ମୁଖ୍ୟତଃ ଅର୍ଥସାଧ୍ୟ) ଧର୍ମ ଓ କାମ ଅର୍ଥର ଅଧୀନ ଅଟନ୍ତି ଅର୍ଥାତ୍ ଅର୍ଥମୂଳକ ଅଟନ୍ତି । (୫) ରାଜା ତାଙ୍କର ଆଚାର୍ଯ ବା ଅମାତ୍ୟ (ଗୁରୁ ବା ମନ୍ତ୍ରୀ)ମାନଙ୍କୁ ନିଜ କାର୍ଯର ସୀମାରୂପେ ସ୍ଥାପିତ କରିବେ (କୌଣସି ବିଷୟର ସୀମାକୁ ଯେପରି ଲଙ୍ଘନ କରାଯାଏ ନାହିଁ ସେପରି ଏମାନଙ୍କ ମତ ବା ଉପଦେଶକୁ ଲଙ୍ଘନ ନକରି ରୀତିମତ ପାଳନ କରିବେ) ଯେଉଁମାନେ କି ସେ ବିପଥଗାମୀ ହେଲେ ତାଙ୍କର ନିୟାମକ ଭାବେ ସମସ୍ତ ବିପତ୍ତିରୁ ରକ୍ଷା କରିବାକୁ ଯତ୍ନ କରନ୍ତି ଏବଂ ଅନର୍ଥକର

---

(୫)—A king should appoint as a barrier, either Acharyas or Ministers who would boldly and effectively check him whenever he shows inclination to stray away from the path of righteousness.

(୭) ସହାୟସାଧ୍ୟଂ ରାଜତ୍ୱଂ ଚକ୍ରମେକଂ ନ ବର୍ତ୍ତତେ ।
କୁର୍ବୀତ ସଚିବାଂସ୍ତସ୍ମାତ୍ ତେଷାଂ ଚ ଶୃଣୁୟାନ୍ମତମ୍ ॥

---

କାର୍ଯ୍ୟାନୁଷ୍ଠାନରେ ପ୍ରବୃତ୍ତ ହେଲେ ସେଥିରୁ ତାଙ୍କୁ ଦୃଢ଼ଭାବେ ନିବୃତ୍ତକରନ୍ତି, ଏପରିକି ଅନ୍ତଃପୁରରେ ଅତ୍ୟନ୍ତ ଆସକ୍ତ ଥିବାବେଳେ ମଧ୍ୟ ଅତୀତ ସମୟଜ୍ଞାପକ ଛାୟାମାପ ଓ ସମୟଜ୍ଞାପକ ନାଳିକା ଦ୍ୱାରା ସମୟନିର୍ଦ୍ଧାରଣ ପୂର୍ବକ ପ୍ରମାଦଭଙ୍ଗ ସକାଶେ ତାଙ୍କ ମନରେ ବାରମ୍ବାର ବ୍ୟଥା ଜାତକରାଇ ପୁଣି ଯଥାସମୟରେ ଯଥାକାର୍ଯ୍ୟସାଧନ ସକାଶେ ନିର୍ଦ୍ଦେଶ ଦଅନ୍ତି । (୭) ରାଜତ୍ୱ ସହାୟସାଧ୍ୟ । ଶକଟାଦିଯାନ ଯେପରି ଗୋଟିଏ ମାତ୍ର ଚକରେ ଗଡ଼ିପାରେନାହିଁ, ରାଜତ୍ୱ ମଧ୍ୟ ସେପରି ଏକାକୀ ଚଳିପାରେ ନାହିଁ । ଅତଏବ ରାଜା ରାଜକାର୍ଯ୍ୟର ସୁପରିଚାଳନାସକାଶେ ଅମାତ୍ୟ ଓ ମନ୍ତ୍ରିମାନଙ୍କୁ ନିଯୁକ୍ତକରି ସେମାନଙ୍କ ସୁଚିନ୍ତିତମତ ଗ୍ରହଣପୂର୍ବକ ଶାସନକାର୍ଯ୍ୟ ଚଳାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ସପ୍ତମୋଽଧ୍ୟାୟଃ—ଇନ୍ଦ୍ରିୟଜୟେ—ରାଜର୍ଷିବୃତ୍ତମ୍ ।
ଇନ୍ଦ୍ରିୟଜୟଃ ସମାପ୍ତଃ ।

## ଅଷ୍ଟମୋଽଧ୍ୟାୟଃ

## ଚତୁର୍ଥ ପ୍ରକରଣମ୍—ଅମାତ୍ୟୋପ୍ତତ୍ତିଃ

### CREATION OF MINISTERS

*( ଅମାତ୍ୟ ଅର୍ଥାତ୍ ଯେ ରାଜାଙ୍କ ସହିତ ମନ୍ତ୍ରଣା କରନ୍ତି ଓ ତାଙ୍କ ପାର୍ଶ୍ୱରେ ଉପବେଶନ କରିବା ଯୋଗ୍ୟ, ତାଙ୍କର ଉତ୍ପତ୍ତି )

**(୧) ସହାଧ୍ୟାୟିନୋଽମାତ୍ୟାନ୍ କୁର୍ବୀତ ଦୃଷ୍ଟଶୌଚସାମର୍ଥ୍ୟ-ତ୍ୱାଦିତି ଭରଦ୍ୱାଜଃ, ତେ ହ୍ୟସ୍ୟ ବିଶ୍ୱାସ୍ୟା ଭବନ୍ତୀତି; (୨) ନେତି ବିଶାଳାକ୍ଷଃ । ସହ କ୍ରୀଡ଼ିତତ୍ୱାତ୍ ପରିଭବନ୍ତ୍ୟେନମ୍ । ଯେ ହ୍ୟସ୍ୟ**

(୧) ଭରଦ୍ୱାଜ ଅର୍ଥାତ୍ ଦ୍ରୋଣାଚାର୍ଯ୍ୟ କହନ୍ତି, ରାଜା ଅଧ୍ୟୟନ ସମୟରେ ଯେଉଁ ସହାଧ୍ୟାୟିମାନଙ୍କର ହୃଦୟ ଶୁଦ୍ଧି, ଚରିତ୍ର ଶୁଦ୍ଧି ଓ କାର୍ଯ୍ୟଦକ୍ଷତା ହୃଦୟଙ୍ଗମ କରିଥିବେ ତାଙ୍କୁ ଅମାତ୍ୟରୂପେ ନିଯୁକ୍ତ କରିବେ । କାରଣ ଏପରି ବ୍ୟକ୍ତିମାନେ ହିଁ ପ୍ରକୃତରେ ରାଜାଙ୍କର ବିଶ୍ୱାସଯୋଗ୍ୟ ବିବେଚିତ ହୋଇଥାନ୍ତି । (୨) ବିଶାଳାକ୍ଷ ନାମକ ଅର୍ଥଶାସ୍ତ୍ରାଚାର୍ଯ୍ୟ ଦ୍ରୋଣାଚାର୍ଯ୍ୟଙ୍କର ଏହି ମତକୁ ଖଣ୍ଡନ କରି କହନ୍ତି—ସହାଧ୍ୟାୟିମାନେ ରାଜାଙ୍କସହିତ ଅଧ୍ୟୟନ ସମୟରେ କ୍ରୀଡ଼ା କୌତୁକରେ ମାତି ସାହସୀ ହୋଇଥିବାଯୋଗୁଁ ଅମାତ୍ୟପଦରେ ନିଯୁକ୍ତହେଲେ ସେହି ପୂର୍ବାଭ୍ୟାସର ବଶବର୍ତ୍ତୀ ହୋଇ ରାଜାଙ୍କ ଆଜ୍ଞାକୁ ଅବଜ୍ଞା କରିଦେଇ ପାରନ୍ତି । ଅତଏବ ଯେଉଁମାନେ ରାଜାଙ୍କ ପାରଦାରିକାଦି ଅଶିଷ୍ଟ ଓ ଗୋପନୀୟ କାର୍ଯ୍ୟର ସମଧର୍ମା, ରାଜା ସେମାନଙ୍କୁ ଅମାତ୍ୟପଦରେ ନିଯୁକ୍ତ କରିବେ । କାରଣ ଏପରି ଲୋକଙ୍କୁ ଅମାତ୍ୟ ରୂପେ ନିଯୁକ୍ତ କଲେ ରାଜା ସେମାନଙ୍କର ମର୍ମଜ୍ଞ ହୋଇଥିବା ଯୋଗୁଁ ସେମାନେ

* ନୃପସ୍ୟ ତେହି ସୁହୃଦ ସ୍ତ ଏବ ଗୁରବୋମତାଃ ।
ଯ ଏନ ମୁପୃଥଗତଂ ବାରୟନ୍ତ୍ୟ ନିବାରିତାଃ ॥ ଇତି କାମନ୍ଦକଃ ।

ଶାନ୍ତୋ ବିନୀତଃ କୁଶଳଃ ସତ୍କୁଲୀନଃ ଶୁଭାନ୍ୱିତଃ ।
ଶାସ୍ତ୍ରାର୍ଥତତ୍ତ୍ୱଗୋମାତ୍ୟୋ ଭବେତ୍ ଭୂମି ଭୁଜାମିହ ॥ ଇତି ଯୁକ୍ତିକଳ୍ପତରୁ ।

ଗୁହ୍ୟସଧର୍ମାଣସ୍ତାନମାତ୍ୟାନ୍ କୁର୍ବୀତ ସମାନଶୀଳବ୍ୟସନତ୍ୱାତ୍, ତେ ହ୍ୟସ୍ୟ ମର୍ମଜ୍ଞଭୟାନ୍ନାପରାଧ୍ୟନ୍ତୀତି । (୩) ସାଧାରଣ ଏଷଦୋଷ ଇତି ପରାଶରଃ । ତେଷାମପି ମର୍ମଜ୍ଞ ଭୟାତ୍ କୃତାକୃତାନ୍ୟନୁବର୍ତ୍ତେତ ।

(୪) ଯାବଦ୍ ଭ୍ୟୋ ଗୁହ୍ୟମାଚଷ୍ଟେ ଜନେଭ୍ୟଃ ପୁରୁଷାଧିପଃ ।
ଅବଶଃ କର୍ମଣା ତେନ ବଶ୍ୟୋ ଭବତି ତାବତାମ୍ ॥

(୫) ଯ ଏନମାପତ୍ସୁ ପ୍ରାଣାବାଧଯୁକ୍ତାସ୍ୱନୁଗୃହ୍ଣୀୟୁସ୍ତାନମାତ୍ୟାନ୍ କୁର୍ବୀତ, ଦୃଷ୍ଟାନୁରାଗତ୍ୱାଦିତି; (୬) ନେତି ପିଶୁନଃ । ଭକ୍ତିରେଷା ନ ବୁଦ୍ଧିଗୁଣଃ । ସଂଖ୍ୟାତାର୍ଥେଷୁ କର୍ମସୁ ନଯୁକ୍ତା ଯେ ଯଥାଦିଷ୍ଟମର୍ଥଂ ସବିଶେଷଂ ବା

---

ଭୟରେ ରାଜାଙ୍କର କୌଣସିପ୍ରକାର ଅପରାଧ ନକରି ସତର୍କତାରସହିତ ନିଜର କର୍ତ୍ତବ୍ୟ ସୁରୂରୁରୂପେ ଚଳାଇବାକୁ ଯତ୍ନକରିବେ । (୩, ୪) ପରାଶରଋଷି କହନ୍ତି—ଏହି ଦୁଃଶୀଳତ୍ୱାଦିଦୋଷ ପ୍ରାୟ ସମସ୍ତଙ୍କଠାରେ ବିଦ୍ୟମାନ । ତେଣୁ ମର୍ମଜ୍ଞବ୍ୟକ୍ତିମାନଙ୍କୁ ଅମାତ୍ୟପଦରେ ନିଯୁକ୍ତ କଲେ ସେମାନେ ସଂଗତ ବା ଅସଙ୍ଗତ ଯାହାକିଛି କରିପିବେ ରାଜା (ଉକ୍ତ ଅମାତ୍ୟ ତାଙ୍କର ମର୍ମଜ୍ଞ ହୋଇଥିବା ଭୟରୁ) ତାଙ୍କର ଅନୁସରଣ କରିବାକୁ ବାଧ୍ୟ ହେବେ । ରାଜା ଯେତେ ଲୋକଙ୍କ ନିକଟରେ ନିଜର ଗୁପ୍ତ ଓ ଅଶିଷ୍ଟ ବ୍ୟବହାରର ପ୍ରକାଶକରିଥା'ନ୍ତି ତଦ୍ୱାରା ଅଧୀର ହୋଇ ସେ ସେମାନଙ୍କର ଅଧୀନ ହୋଇଯା'ନ୍ତି । ଅତଏବ ଗୁହ୍ୟସଧର୍ମୀ ବ୍ୟକ୍ତିମାନଙ୍କୁ (ନିଜର ଗୁପ୍ତ ଓ ଅଶିଷ୍ଟ ବ୍ୟବହାରରେ ଭାଗଦାର ବ୍ୟକ୍ତିମାନଙ୍କୁ) କଦାପି ଅମାତ୍ୟପଦରେ ନିଯୁକ୍ତ କରିବେ ନାହିଁ । (୫) ଯେଉଁମାନେ ରାଜାଙ୍କୁ ପ୍ରାଣସଙ୍କଟାଦି ବିପତ୍ତି ସମୟରେ ଅନୁଗ୍ରହ କରିଥାନ୍ତି, ସେମାନଙ୍କର ଅନୁରାଗ, ଚରିତ୍ର ଓ ଭକ୍ତି ପରୀକ୍ଷିତ ହୋଇ ଯାଇଥିବା ହେତୁ ସେମାନଙ୍କୁ ଅମାତ୍ୟପଦରେ ନିଯୁକ୍ତକରିବା ଉଚିତ । (୬) ପିଶୁନ ଅର୍ଥାତ୍ ନାରଦ ଉକ୍ତ ମତକୁ ସ୍ୱୀକାର ନକରି କହନ୍ତି—ଏହା ଭକ୍ତି ସିନା ବୁଦ୍ଧିର ଗୁଣ ନୁହେ, କାରଣ ରାଜାଙ୍କ ପ୍ରାଣସଙ୍କଟ ସମୟରେ ସାଧାରଣବୁଦ୍ଧି ମନୁଷ୍ୟ ମଧ୍ୟ ନିଜର ପ୍ରାଣପ୍ରତି ମମତା ନରଖି ରାଜାଙ୍କ ପ୍ରାଣରକ୍ଷା କରିଥାଏ । ତା'ବୋଲି ଯେ ସେ ମନ୍ତ୍ରୀ ହୋଇ ରାଜ୍ୟଶାସନରେ ରାଜାଙ୍କ ପ୍ରଧାନ ସହାୟକ ହେବ, ଏହା ଅମୂଳକ । ବସ୍ତୁତଃ

କୁର୍ଯ୍ୟୁଃ । ତାନମାତ୍ୟାନ୍ କୁର୍ବୀତ, ଦୃଷ୍ଟଗୁଣତ୍ୱାଦିତି; (୭) ନେତି କୌଣପଦନ୍ତଃ । ଅନ୍ୟୈରମାତ୍ୟଗୁଣୈରଯୁକ୍ତା ହ୍ୟେତେ । ପିତୃପୈତାମହାନମାତ୍ୟାନ୍ କୁର୍ବୀତ, ଦୃଷ୍ଟାପଦାନତ୍ୱାତ୍ । ତେ ହ୍ୟେନମପଚରନ୍ତମପି ନ ତ୍ୟଜନ୍ତି, ସଗନ୍ଧତ୍ୱାତ୍ । ଅମାନୁଷେଷ୍ୱପି ଚୈତଦ୍ ଦୃଶ୍ୟତେ-ଗାବୋ ହ୍ୟସଗନ୍ଧଂ ଗୋଗଣମତିକ୍ରମ୍ୟ ସଗନ୍ଧେଷ୍ୱେବାବତିଷ୍ଠନ୍ତେ ଇତି; (୮) ନେତି ବାତବ୍ୟାଧିଃ । ତେ ହ୍ୟସ୍ୟ ସର୍ବମବଗୃହ୍ୟ ସ୍ୱାମିବତ୍ ପ୍ରଚରନ୍ତୀତି । ତସ୍ମାନ୍ନୀତିବିଦୋ ନବାନମାତ୍ୟାନ୍ କୁର୍ବୀତ, ନବାସ୍ତୁ ଯମସ୍ଥାନେ ଦଣ୍ଡଧରଂ ମନ୍ୟମାନା

ଯେଉଁ ବ୍ୟକ୍ତି ନିର୍ଦ୍ଦିଷ୍ଟ ଦ୍ରବ୍ୟ ଉତ୍ପାଦନକାର୍ଯ୍ୟରେ ନିଯୁକ୍ତ ଥାଇ ସେହି ନିର୍ଦ୍ଦିଷ୍ଟ ଦ୍ରବ୍ୟ ବା ତତୋଽଧିକ ଦ୍ରବ୍ୟ ଉତ୍ପାଦନ କରିବାକୁ ସମର୍ଥ, ତାଙ୍କର ଗୁଣ ଦେଖି ତାଙ୍କୁ ରାଜା ଅମାତ୍ୟପଦରେ ନିଯୁକ୍ତକରିବେ । (୭) କୌଣପଦନ୍ତ ଅର୍ଥାତ୍ ଭୀଷ୍ମ ନାରଦଙ୍କ ମତକୁ ସମର୍ଥନ ନକରି କହନ୍ତି— କେବଳ ଧନସଂଗ୍ରହ କରିପାରୁଥିଲେ ଯେ କେହି ଅମାତ୍ୟହେବେ ଏପରି ନୁହେ; ବିଶ୍ୱାସ, ଅନୁରକ୍ତି ପ୍ରଭୃତି ଅତିରିକ୍ତ ଗୁଣସଂପନ୍ନ ବ୍ୟକ୍ତିଙ୍କୁ ହିଁ ଅମାତ୍ୟପଦରେ ନିଯୁକ୍ତକରିବା ଯୁକ୍ତିସଂଗତ । ଅତଏବ ପିତୃପିତାମହାଦି କୁଳକ୍ରମାଗତ ଓ ଉପରୋକ୍ତ ଗୁଣସଂପନ୍ନ ବ୍ୟକ୍ତିମାନଙ୍କୁ ମନ୍ତ୍ରୀପଦରେ (ଅମାତ୍ୟ ପଦରେ) ନିଯୁକ୍ତକରିବା ଶ୍ରେୟସ୍କର, ଯେହେତୁ ଏହି ବ୍ୟକ୍ତିମାନେ ପିତୃପିତାମହାଦିଙ୍କ ଅନୁଭୂତି ଓ ସଂସ୍କାରର ଉତ୍ତରାଧିକାରୀରୂପେ ଅଭିଜ୍ଞତା ଅର୍ଜନ କରିଥାନ୍ତି । ଏମାନେ ପୁରୁଷାନୁକ୍ରମେ ରାଜବଂଶର ଘନିଷ୍ଠ ସଂପର୍କରେ ଆସିଥିବାଯୋଗୁଁ ରାଜା ଏମାନଙ୍କର ଅପକାରକଲେ କିମ୍ବା ଅଜ୍ଞାନବଶତଃ ଅବମାନନା କଲେ ମଧ୍ୟ ଏମାନେ ରାଜାଙ୍କୁ ଛାଡ଼ିପାରନ୍ତିନାହିଁ । ମନୁଷ୍ୟ ଭିନ୍ନ ଅନ୍ୟ ପ୍ରାଣିମାନଙ୍କଠାରେ ମଧ୍ୟ ଏହି ବୃତ୍ତି ବିଦ୍ୟମାନ । ଉଦାହରଣତଃ ଗାଈ ଅପରିଚିତ ଗାଈପଲକୁ ଉପେକ୍ଷାକରି ପରିଚିତ ଗାଈପଲରେ ହିଁ ମିଶି ରହିବାକୁ ଭଲପାଏ, ଏହା ପ୍ରାୟ ସମସ୍ତେ ଜାଣନ୍ତି । (୮) ବାତବ୍ୟାଧି

(୮)—ଉଦ୍ଧବଙ୍କର ବାତବ୍ୟାଧି ଥିବା ଯୋଗୁଁ ଗୋଟିଏ ଅଂଶ କ୍ଷୀଣ ହୋଇଯାଇ ଥାଏ । ଏଣୁ ଶାସ୍ତ୍ରରେ ତାଙ୍କ ନାମ 'ବାତବ୍ୟାଧି' ବୋଲି କଥିତ ।

ଯଥା—ଜଗାଦପବନବ୍ୟାଧେ ର୍ଗିରଂ ମୁଦ୍ଧରପକ୍ଷତାଂ । ଇତି ଶିଶୁପାଳବଧଃ ।

ନାପରାଧ୍ୟନ୍ତୀତି; (୯) ନେତି ବାହୁଦନ୍ତୀପୁତ୍ରଃ । ଶାସ୍ତ୍ରବିଦଦୃଷ୍ଟକର୍ମା କର୍ମସୁ ବିଷାଦଂ ଗଚ୍ଛେତ୍ । ଅଭିଜନପ୍ରଜ୍ଞାଶୌଚଶୌର୍ଯ୍ୟାନୁରାଗଯୁକ୍ତାନମାତ୍ୟାନ୍ କୁର୍ବୀତ, ଗୁଣପ୍ରାଧାନ୍ୟାଦିତି; (୧୦) ସର୍ବମୁପପନ୍ନମିତି-କୌଟିଲ୍ୟଃ, କାର୍ଯସାମର୍ଥ୍ୟାଦ୍ଧି ପୁରୁଷସାମର୍ଥ୍ୟଂ କଲ୍ପ୍ୟତେ ସାମର୍ଥ୍ୟତଶ୍ଚ;

---

ଅର୍ଥାତ୍ ଉଦ୍ଧବ (ଶ୍ରୀକୃଷ୍ଣଙ୍କ ମନ୍ତ୍ରୀ) ଉପରୋକ୍ତ ମତକୁ ଖଣ୍ଡନକରି କହନ୍ତି—କୁଳକ୍ରମାଗତ ଅମାତ୍ୟମାନେ ସ୍ୱାମିଙ୍କର ସମସ୍ତ ବିଭବ ଓ କ୍ଷମତାକୁ ହସ୍ତଗତକରି ରାଜାଙ୍କପରି ଇଚ୍ଛାନୁଯାୟୀ କାର୍ଯ୍ୟକରନ୍ତି । ତେଣୁ ନୀତିଜ୍ଞ ନୂତନ ବ୍ୟକ୍ତିମାନଙ୍କୁ ଅମାତ୍ୟପଦରେ ନିଯୁକ୍ତକରିବା ଉଚିତ । କାରଣ ନୂତନ ଅମାତ୍ୟମାନେ ରାଜାଙ୍କ ଯମସଦୃଶ ଭୟରେ କୌଣସିପ୍ରକାର ଅପରାଧ କରନ୍ତିନାହିଁ । (୯) ଉଦ୍ଧବଙ୍କ ଏହି ମତକୁ ବାହୁଦନ୍ତୀପୁତ୍ର (ଇନ୍ଦ୍ର) ଖଣ୍ଡନକରି କହନ୍ତି—କେବଳ ନୀତିଶାସ୍ତ୍ରବିଶାରଦ ଅଥଚ କାର୍ଯ୍ୟତଃ ଶାସ୍ତ୍ରୋକ୍ତ କାର୍ଯ୍ୟାଚରଣରେ ଅସମର୍ଥ ବ୍ୟକ୍ତିମାନେ ଅମାତ୍ୟ କାର୍ଯ୍ୟ ସମ୍ପାଦନ କରିନପାରି ଅବସାଦ ପ୍ରାପ୍ତହୁଅନ୍ତି । ଅତଏବ କୁଳୀନ, ବୁଦ୍ଧିମାନ୍, ପବିତ୍ରହୃଦୟ, ଉତ୍ସାହଶକ୍ତିସମ୍ପନ୍ନ ଓ ପ୍ରଭୁଭକ୍ତ ବ୍ୟକ୍ତିମାନଙ୍କୁ ହିଁ ଗୁଣର ପ୍ରାଧାନ୍ୟ ଯୋଗୁଁ ଅମାତ୍ୟପଦରେ ନିଯୁକ୍ତ କରିବା ଶ୍ରେୟସ୍କର । (୧୦) କୌଟଲ୍ୟ ଉପରୋକ୍ତ ସମସ୍ତ ମତକୁ ସମର୍ଥନକରି କହନ୍ତି—ପୂର୍ବୋକ୍ତ ସହାଧ୍ୟାୟିମାନଙ୍କ ଶୌଚସାମର୍ଥ୍ୟାଦି ଗୁଣ ଓ ସ୍ୱାମିପରିଭବାଦି ଦୋଷର ବିବେଚନାକରିବା ନ୍ୟାୟସଙ୍ଗତ । କାରଣ ଯେଉଁ ବ୍ୟକ୍ତି ଯେଉଁ ପଦରେ ଅଧିଷ୍ଠିତହେବେ ସେହି କାର୍ଯ୍ୟ ସାଧନସକାଶେ ସେ କିପରି ଉପଯୁକ୍ତ, ତାହା ସେ ଅଧ୍ୟୟନ ଓ କ୍ରୀଡ଼ାଦି ସମୟରେ ପ୍ରକାଶକରିଥିବା ସାମର୍ଥ୍ୟ ଏବଂ ତାଙ୍କର ପ୍ରଜ୍ଞା, ଶାସ୍ତ୍ରସଂସ୍କାର ଓ ଶୌର୍ଯ୍ୟାଦିର ତାରତମ୍ୟାଦି ଲକ୍ଷଣରୁ କଳ୍ପନା କରିହେବ । ବିଶ୍ୱାସ୍ୟାଦି ଗୁଣ ଥିବାଯୋଗୁଁ ସହାଧ୍ୟାୟି ପ୍ରଭୃତି ବନ୍ଧୁମାନଙ୍କୁ ତୁଚ୍ଛଜ୍ଞାନ କରିବା ଉଚିତ ନୁହେ ଏବଂ ପରିଭବାଦିଦୋଷ ଥିବାଯୋଗୁଁ ମୁଖ୍ୟମନ୍ତ୍ରୀ ପ୍ରଭୃତି ଉଚ୍ଚପଦରେ ନିଯୁକ୍ତକରିବା ମଧ୍ୟ ଉଚିତ ନୁହେ । ଅତଏବ ଏମାନଙ୍କୁ କେବଳ କର୍ମସଚିବ ଅର୍ଥାତ୍ ସହଯୋଗୀ ମନ୍ତ୍ରୀ (ଯେଉଁ ବ୍ୟକ୍ତି କାର୍ଯ୍ୟସମ୍ପାଦନ ବିଷୟରେ ସହାୟତା କରେ) ପଦରେ ଦେଶକାଳର

(୧୧) ବିଭଜ୍ୟାମାତ୍ୟବିଭବଂ ଦେଶକାଲୌ ଚ କର୍ମ ଚ । 
ଅମାତ୍ୟାଃ ସର୍ବ ଏବୈତେ କାର୍ଯ୍ୟାଃ ସ୍ୟୁର୍ନତୁ ମନ୍ତ୍ରିଣଃ ॥

---

ଅବଶ୍ୟକତାନୁସାରେ ନିଯୁକ୍ତକରିବେ । (୧୧) ବିଶ୍ୱାସିତାଦି ଅମାତ୍ୟ ବିଭବକୁ ବିଭକ୍ତକରି ଅର୍ଥାତ୍ ଯେଉଁ ସ୍ଥାନରେ ଯେଉଁ ସମୟରେ ଯେଉଁ କାର୍ଯ୍ୟକୁ ସଂପାଦନ କରିବାପାଇଁ ଯେଉଁ ଯୋଗ୍ୟତା ଆବଶ୍ୟକ ତାହା ଭଲଭାବେ ବିବେଚନାକରି, ସେହି ସେହି ଯୋଗ୍ୟତାସଂପନ୍ନ ସହାଧ୍ୟାୟୀ ପ୍ରଭୃତି ବ୍ୟକ୍ତିମାନଙ୍କୁ କେବଳ ଅମାତ୍ୟ ଅର୍ଥାତ୍ କର୍ମସଚିବପଦରେ ହିଁ ନିଯୁକ୍ତ କରିବେ,—ମୁଖ୍ୟମନ୍ତ୍ରୀ ପ୍ରଭୃତି ଉଚ୍ଚତମପଦରେ ନିଯୁକ୍ତକରିବେ ନାହିଁ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ 
ଅଷ୍ଟମୋଽଧ୍ୟାୟଃ—ଅମାତ୍ୟୋତ୍ପତ୍ତିଃ ।

---

## ନବମୋଽଧ୍ୟାୟଃ

## ପଞ୍ଚମ ପ୍ରକରଣଂ—ମନ୍ତ୍ରିପୁରୋହିତୋତ୍ପତ୍ତିଃ

### THE CREATION OF COUNCILLORS AND PRIESTS

( ମନ୍ତ୍ରୀ ଓ ପୁରୋହିତଙ୍କ ଉତ୍ପତ୍ତି )

(୧) ଜାନପଦୋଽଭିଜାତଃ ସ୍ୱବଗ୍ରହଃ, କୃତଶିଲ୍ପଶ୍ଚକ୍ଷୁଷ୍ମାନ୍, ପ୍ରାଜ୍ଞୋ, ଧାରୟିଷ୍ଣୁର୍ଦକ୍ଷୋ ବାଗ୍ମୀ ପ୍ରଗଲ୍ଭଃ ପ୍ରତିପତ୍ତିମାନୁତ୍ସାହ ପ୍ରଭବଯୁକ୍ତଃ କ୍ଲେଶସହଃ ଶୁଚିର୍ମୈତ୍ରୋ ଦୃଢ଼ଭକ୍ତିଃ ଶୀଳବଳାରୋଗ୍ୟ-

('ମନ୍ତ୍ରୀ' ଅର୍ଥାତ୍ ପ୍ରଧାନ ଅମାତ୍ୟ,—ଯାହାଙ୍କ ଅଧୀନରେ ପୂର୍ବାଧ୍ୟାୟ ବର୍ଣ୍ଣିତ କର୍ମସଚିବମାନେ ନିଯୁକ୍ତ ହୁଅନ୍ତି ଏବଂ 'ପୁରୋହିତ' ଅର୍ଥାତ୍ ପ୍ରଥମେ ସମସ୍ତ କାର୍ଯ୍ୟରେ ଯାହାଙ୍କୁ ଯଥାର୍ଥଜ୍ଞାତାଭାବରେ ନିବେଶିତ କରାଯାଏ)

(୧) ସ୍ୱଦେଶୀ, ଶୁଦ୍ଧବଂଶୋଦ୍ଭବ, ସୁତନ୍ତ୍ରଯୁକ୍ତ ବା ପ୍ରମାଦଯୁକ୍ତକାର୍ଯ୍ୟ-ପ୍ରବୃତ୍ତିନିବାରଣସମର୍ଥ; ଯନ୍ତ୍ର, ଯାନ, ବାହନ, ଯୁଦ୍ଧ, ଆୟୁଧ ଓ ଗାନ୍ଧର୍ବବିଦ୍ୟାପ୍ରବୀଣ; ଅର୍ଥଶାସ୍ତ୍ରାଭିଜ୍ଞ, ପ୍ରାଜ୍ଞ ଅର୍ଥାତ୍ ଅସାଧାରଣ

---

(୧)—Qualifications of a minister:—Native, born of high family, influential, well trained in arts, possessed of foresight, wise, of strong memory, bold, eloquent, skilful, intelligent, possessed of enthusiasm, dignity and endurance, pure in character, affable, firm in loyal devotion, endowed with excellent conduct, strength, health and bravery, free from procrastination and ficklemindedness, affectionate and free from such qualities as excite hatred and enmity—these are the qualifications of a ministerial officer.

ଅର୍ଥଶାସ୍ତ୍ର ମନ୍ତ୍ରିଙ୍କର ଚକ୍ଷୁସ୍ୱରୂପ । ଅତଏବ ଅର୍ଥଶାସ୍ତ୍ରଅଭିଜ୍ଞ ମନ୍ତ୍ରୀଙ୍କୁ 'ଚକ୍ଷୁଷ୍ମାନ୍' କହନ୍ତି ।

ଅନେକ ସଂଶୟୋଚ୍ଛେଦି ପରୋକ୍ଷାର୍ଥସ୍ୟ ଦର୍ଶକଂ ।
ସର୍ବସ୍ୟ ଲୋଚନଂ ଶାସ୍ତ୍ରଂ ଯସ୍ୟନାସ୍ତ୍ୟନ୍ଧ ଏବସଃ ॥ ଇତି ହିତୋପଦେଶେ ।

ସତ୍ତ୍ୱସଂଯୁକ୍ତଃ ସ୍ତମ୍ଭଚାପଲ୍ୟବର୍ଜିତଃ ସଂପ୍ରିୟୋ ବୈରାଣାମକର୍ତ୍ତେତ୍ୟମାତ୍ୟସଂପତ୍ । ଅତଃ ପାଦାର୍ଦ୍ଧଗୁଣହୀନୌ ମଧ୍ୟମାବରୌ; (୨) ତେଷାଂ ଜନପଦମବଗ୍ରହଂ ଚାପ୍ୟତଃ ପରୀକ୍ଷେତ । ସମାନ ବିଦ୍ୟେଭ୍ୟଃ ଶିଳ୍ପଂଶାସ୍ତ୍ରଚକ୍ଷୁଷ୍ମତାଂ ଚ; କର୍ମାରମ୍ଭେଷୁ ପ୍ରଜ୍ଞାଂ ଧାରୟିଷ୍ଣୁତାଂ ଦାକ୍ଷ୍ୟଂ ଚ; କଥାଯୋଗେଷୁ ବାଗ୍ମୀତ୍ୱଂ ପ୍ରାଗଲ୍ଭ୍ୟଂ ପ୍ରତିଭାନବତ୍ତ୍ୱଂ ଚ; ଆପଦ୍ୟୁତ୍ସାହପ୍ରଭାବୌ କ୍ଲେଶସହତ୍ୱଂ ଚ; ସଂବ୍ୟବହାରଚ୍ଛୌଚଂ ମୈତ୍ରତାଂ ଦୃଢ଼ଭକ୍ତିତ୍ୱଂ ଚ; ସଂବାସିଭ୍ୟଃ ଶୀଳବଳାରୋଗ୍ୟସତ୍ତ୍ୱଯୋଗମସ୍ତମ୍ଭମଚାପଲ୍ୟଂ ଚ; ପ୍ରତ୍ୟକ୍ଷତଃ

ବୁଦ୍ଧିସମ୍ପନ୍ନ ପଣ୍ଡିତ, ଅଭିସ୍ମରଣଶୀଳ, ଦକ୍ଷ (କ୍ଷିପ୍ରକାରୀ), ବାଗ୍ମୀ ( ସୁମଧୁରବକ୍ତା ), ପ୍ରଗଲ୍ଭ ( ପ୍ରୌଢ଼ ), ପ୍ରତ୍ୟୁତ୍ପନ୍ନମତି, ଉତ୍ସାହୀ, ପ୍ରଭୁଶକ୍ତିମାନ୍, କଷ୍ଟସହିଷ୍ଣୁ, ଶୁଚି ଅର୍ଥାତ୍ ଧର୍ମୋପଧା, ଅର୍ଥୋପଧା, କାମୋପଧା ଓ ଭୟୋପଧାଦ୍ୱାରା ( ଛଳନାଦ୍ୱାରା ) ପରୀକ୍ଷିତ, ଶୁଦ୍ଧ ଚରିତ୍ରବାନ୍, ସଜ୍ଜନ ସ୍ନେହ ବ୍ୟବହାରିଦ୍ୱାରା ମିତ୍ରଗୁଣସମ୍ପନ୍ନ, ଦୃଢ଼ଭକ୍ତିମାନ୍, ଶୀଳ (ସତ୍‌ସ୍ୱଭାବ), ବଳ (ଦେହସାର), ଆରୋଗ୍ୟ ଓ ଧୈର୍ଯ୍ୟଯୁକ୍ତ; ଗର୍ବଶୂନ୍ୟ, ସ୍ଥିରସ୍ୱଭାବ, ସୌମ୍ୟଦର୍ଶନ ଅର୍ଥାତ୍ ମନୋହରରୂପବନ୍ତ, ସ୍ତ୍ରୀ ଭୂମ୍ୟାଦିବିଷୟକ ଅପରାଧଜନିତ ବୈରଭାବର ଅନୁତ୍ପାଦକ ଓ ଉପଶମକାରକ,—ଏତାଦୃଶ ମନ୍ତ୍ରୀଙ୍କୁ ଉତ୍ତମମନ୍ତ୍ରୀ, ଏହାର ଚତୁର୍ଥାଂଶ ଗୁଣହୀନ ମନ୍ତ୍ରୀଙ୍କୁ ମଧ୍ୟମମନ୍ତ୍ରୀ ଏବଂ ଅର୍ଦ୍ଧାଂଶ ଗୁଣହୀନ ମନ୍ତ୍ରୀଙ୍କୁ ଅଧମମନ୍ତ୍ରୀ କୁହାଯାଏ । (୨) ରାଜା ଉପର୍ଯ୍ୟୁକ୍ତ ଗୁଣସମ୍ପନ୍ନ ମନ୍ତ୍ରୀଙ୍କୁ ଯଥାର୍ଥବାଦୀ, ବିଶ୍ୱାସୀ ବ୍ୟକ୍ତିଙ୍କ ଦ୍ୱାରା ଏ ପ୍ରକୃତରେ ସ୍ୱଦେଶୀ ଓ ପ୍ରଭାବଶାଳୀ ବ୍ୟକ୍ତି ଅଟନ୍ତି କି ନାହିଁ ପରୀକ୍ଷା କରାଇବେ ଏବଂ ଏହାଙ୍କ ସମାନବିଦ୍ୱାନବ୍ୟକ୍ତିମାନଙ୍କଦ୍ୱାରା ଏହାଙ୍କର ଶିଳ୍ପଚାତୁରୀ, ଧର୍ମଶାସ୍ତ୍ର ଓ ଅର୍ଥଶାସ୍ତ୍ରାଦିରେ କିପରି ବିଚକ୍ଷଣତା ଅଛି ତାହା ମଧ୍ୟ ପରୀକ୍ଷା କରାଇବେ । (୩) ରାଜା ଯେଉଁ ବ୍ୟକ୍ତିଙ୍କୁ ପ୍ରଧାନମନ୍ତ୍ରୀ କରିବାକୁ ଇଚ୍ଛାକରିବେ ତାଙ୍କୁ କୌଣସି କାର୍ଯ୍ୟରେ ନିଯୁକ୍ତକରି ତାଙ୍କର ବୁଦ୍ଧି, ସ୍ମରଣଶକ୍ତି ଓ ଚାତୁରୀ ପରୀକ୍ଷାକରିବେ; ଶାସ୍ତ୍ରଚର୍ଚ୍ଚା ଦ୍ୱାରା ବାଗ୍ମିତା, ବ୍ୟାଖ୍ୟାନକାରିତା ଏବଂ ନବନବୋନ୍ମେଷଶାଳିନୀ ବୁଦ୍ଧିର ବିକାଶଶାଳିତା

(୨)—ଅପ୍ତିପ୍ରତ୍ୟାୟିତଦ୍ୱେଷ୍ୟାଚ୍ଛାଭସମ୍ବନ୍ଧସ୍ତ୍ରୋରପି ଇତି କେଶବଃ । ଆପ୍ତଃ = ଯଥାର୍ଥବକ୍ତା ।

**ସଂପ୍ରିୟତ୍ୱମବୈରତ୍ୱଂ ଚ; (୪) ପ୍ରତ୍ୟକ୍ଷପରୋକ୍ଷାନୁମେୟା ହି ରାଜବୃତ୍ତିଃ । ସ୍ୱୟଂଦୃଷ୍ଟଂ ପ୍ରତ୍ୟକ୍ଷଂ, ପରୋପଦିଷ୍ଟଂ ପରୋକ୍ଷଂ, କର୍ମସୁକୃତେନାକୃତାବେକ୍ଷଣମନୁମେୟମ୍; (୫) ଯୌଗପଦ୍ୟାତ୍ତୁ କର୍ମଣାମନେକତ୍ୱାଦନେକସ୍ଥତ୍ୱାଚ୍ଚ ଦେଶକାଳାତ୍ୟୟୋ ମାଭୂଦିତି ପରୋକ୍ଷମମାତ୍ୟୈଃ କାରୟେଦିତ୍ୟମାତ୍ୟକର୍ମ; (୬) ପୁରୋହିତମୁଦିତୋଦିତକୁଳଶୀଳଂ**

---

ପରୀକ୍ଷା କରିବେ; ଆପଦ ସମୟରେ ଉତ୍ସାହ, ପ୍ରଭାବ ଏବଂ ସହନଶକ୍ତି ପରୀକ୍ଷା କରିବେ; ଦୈନନ୍ଦିନ କାର୍ଯ୍ୟରେ ସହଯୋଗ କରି ଅନୁଭବ ଦ୍ୱାରା ହୃଦୟର ନିର୍ମଳତା, ମିତ୍ରତା ଏବଂ ରାଜ୍ୟ ଓ ରାଜାଙ୍କ ପ୍ରତି ଥିବା ଦୃଢ଼ ଭକ୍ତି ପରୀକ୍ଷା କରିବେ; ସାଥୀ ଲୋକଙ୍କଦ୍ୱାରା ସତ୍‌ସ୍ୱଭାବ, ବଳ, ଆରୋଗ୍ୟ, ଧୈର୍ଯ୍ୟ, ଜ୍ଞାନ, ଗମ୍ଭୀରତା ଓ ଅବିଚଳତା ପରୀକ୍ଷା କରାଇବେ ଏବଂ ସମ୍ମୁଖରେ ତାଙ୍କର ପ୍ରିୟବାଦିତା ଓ ଲୋକପ୍ରିୟତା ସ୍ୱୟଂ ପରୀକ୍ଷା କରିବେ । (୪) ପ୍ରତ୍ୟକ୍ଷ, ପରୋକ୍ଷ ଓ ଅନୁମାନଦ୍ୱାରା ଦଣ୍ଡନୀତି ପ୍ରତିପାଦିତ ରାଜକାର୍ଯ୍ୟ ସଂପାଦନ କରାଯାଏ । ଦାୟିତ୍ୱବହନକାରୀ ବ୍ୟକ୍ତିଙ୍କ କାର୍ଯ୍ୟକଳାପ ସ୍ୱଚକ୍ଷୁରେ ଦେଖିବାର ନାମ 'ପ୍ରତ୍ୟକ୍ଷ', ବିଶ୍ୱସ୍ତ ଓ ଅଭିଜ୍ଞ ବ୍ୟକ୍ତିଙ୍କଠାରୁ ଶ୍ରବଣ କରିବାର ନାମ 'ପରୋକ୍ଷ' ଏବଂ କୌଣସି କାର୍ଯ୍ୟର ଆରମ୍ଭ ଦେଖି ତା'ର ପରିଣାମ ସିଦ୍ଧାନ୍ତ କରିବାର ନାମ 'ଅନୁମାନ' । (୫) ରାଜା ଏକାବେଳେକେ ବହୁସ୍ଥାନରେ ବହୁପ୍ରକାର କାର୍ଯ୍ୟ ସ୍ୱୟଂ ଅନୁଷ୍ଠାନ କରି ପାରନ୍ତି ନାହିଁ । ଅତଏବ ଯଥାଦେଶ ଓ ଯଥାକାଳରେ ଯଥାକାର୍ଯ୍ୟ ସାଧନ କରିବା ପାଇଁ ଗୁଣବନ୍ତ ବ୍ୟକ୍ତିମାନଙ୍କୁ ମନ୍ତ୍ରୀରୂପେ ନିଯୁକ୍ତ କରି ତାଙ୍କଦ୍ୱାରା ଏହି କାର୍ଯ୍ୟ ସଂପାଦନ କରାଇଥା'ନ୍ତି । ମନ୍ତ୍ରିମାନଙ୍କ ଗୁଣପରୀକ୍ଷା କେବଳ ଏଥିପାଇଁ କରାଯାଇଥାଏ । (୬) ଶାସ୍ତ୍ରୋକ୍ତ ବିଦ୍ୟା ଓ ଅଭିଜନାଦି ସଂପନ୍ନ, ଉନ୍ନତରୁ ଉନ୍ନତତର

---

(୬)—The qualifications of a priest:—Him whose family and character are highly spoken of, who is well educated in the Vedas and six Angas, is skilful in reading portents, providential or accidental, is well versed in the science of government, and who is obedient and who can prevent calamities, providential or human, by performing such expiatory rites as are prescribed in the "Atharb Veda" the king shall employ as high priest.

ଷଡ଼ଙ୍ଗେ ବେଦେ ଦୈବେ ନିମିତ୍ତେ ଦଣ୍ଡନୀତ୍ୟାଂ ଚ ଅଭିବିନୀତ ମାପଦାଂ ଦୈବମାନୁଷୀଣାମ୍ ଅଥର୍ବଭିରୁପାୟୈଶ୍ଚ ପ୍ରତିକର୍ତ୍ତାରଂ କୁର୍ବୀତ । ତମାଚାର୍ଯ୍ୟଂ ଶିଷ୍ୟଃ ପିତରଂ ପୁତ୍ରୋଭୃତ୍ୟଃ ସ୍ୱାମିନମିବ ଚାନୁବର୍ତ୍ତେତ ।

(୭) ବ୍ରାହ୍ମଣେନୈଧିତଂ କ୍ଷତ୍ରଂ ମନ୍ତ୍ରୀମନ୍ତ୍ରାଭିମନ୍ତ୍ରିତମ୍ ।
ଜୟତ୍ୟଜିତମତ୍ୟନ୍ତଂ ଶାସ୍ତ୍ରାନୁଗମଶସ୍ତ୍ରିତମ୍ ॥

---

କୁଳୋତ୍ପନ୍ନ ଶିକ୍ଷାଗୁରୁ ଓ ଶୌଚପରାୟଣ; ଷଡ଼ଙ୍ଗ, ବେଦ, ଜ୍ୟୋତିଷଶାସ୍ତ୍ର, ଶକୁନ ଶାସ୍ତ୍ର ଓ ଦଣ୍ଡନୀତି ବିଶାରଦ, ଅଥର୍ବବେଦୋକ୍ତ ମନ୍ତ୍ରପ୍ରୟୋଗଦ୍ୱାରା ଦୈବୀ ବିପତ୍ତି ଓ ସାମଦାନାଦି ଉପାୟର ପ୍ରୟୋଗଦ୍ୱାରା ମାନୁଷୀ ବିପତ୍ତିର ପ୍ରତିକର୍ତ୍ତା, ଏତାଦୃଶ ବିଜ୍ଞ ଓ ଭକ୍ତିଭାଜନ ପୂଜନୀୟ ବ୍ୟକ୍ତିଙ୍କୁ ରାଜା ପୁରୋହିତରୂପେ ନିଯୁକ୍ତ କରିବେ । ଶିଷ୍ୟ ଆଚାର୍ଯ୍ୟଙ୍କୁ, ପୁତ୍ର ପିତାଙ୍କୁ ଓ ସେବକ ସ୍ୱାମିଙ୍କୁ ଯେପରି ଭକ୍ତି କରନ୍ତି, ରାଜା ପୁରୋହିତଙ୍କୁ ଠିକ୍ ସେପରି ଭକ୍ତି କରି ତାଙ୍କ ଉପଦେଶର ଅନୁବର୍ତ୍ତୀ ହେବେ । (୭) ଏପରି ବ୍ରାହ୍ମଣ ପୁରୋହିତଙ୍କଦ୍ୱାରା ବର୍ଦ୍ଧିତ ଏବଂ ଗୁଣବାନ୍ ମନ୍ତ୍ରିମାନଙ୍କ ମନ୍ତ୍ରଣାଦ୍ୱାରା ଅଭିରକ୍ଷିତ ଓ ସୁସଂସ୍କୃତ ରାଜବଂଶ ଶାସ୍ତ୍ରାନୁସାରେ ଆଚରିତ କର୍ମକୁ କେବଳ 'ଶସ୍ତ୍ର'ରୂପେ ବ୍ୟବହାର କରି ଅଜେୟ ଶତ୍ରୁକୁ ଜୟ ଓ ଅଲବ୍ଧ ଅର୍ଥକୁ ଲାଭ କରନ୍ତି ଏବଂ ଏଥିଯୋଗୁଁ ଏହି ରାଜବଂଶକୁ କେହି କେବେଁ ପରାଜିତ କରିପାରନ୍ତି ନାହିଁ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ନବମୋଽଧ୍ୟାୟଃ—ମନ୍ତ୍ରୀ ପୁରୋହିତୋତ୍ପତ୍ତିଃ ।

## ଦଶମୋଽଧ୍ୟାୟଃ

## ଷଷ୍ଠ ପ୍ରକରଣଂ—ଉପଧାଭିଃ ଶୌଚାଶୌଚଜ୍ଞାନମମାତ୍ୟାନାମ୍

ASCERTAINING BY TEMPTATIONS PURITY OR IMPURITY IN THE CHARACTER OF MINISTERS.

( ଛଳନାଦ୍ୱାରା ଅମାତ୍ୟମାନଙ୍କ ହୃଦ୍‌ଗତ ଭାବର ପରୀକ୍ଷା )

(୧) ମନ୍ତ୍ରିପୁରୋହିତସଖଃ ସାମାନ୍ୟେଷ୍ୱଧିକରଣେଷୁ ସ୍ଥାପୟିତ୍ୱାମାତ୍ୟାନୁପଧାଭିଃ ଶୋଧୟେତ୍ । (୨) ପୁରୋହିତ ମଯାଜ୍ୟଯାଜନାଧ୍ୟାପନେନିଯୁକ୍ତମମୃଷ୍ୟମାଣଂ ରାଜାଽବକ୍ଷିପେତ୍ । (୩) ସ ସତ୍ତ୍ରିଭିଃ ଶପଥପୂର୍ବମେକୈକମମାତ୍ୟମୁପଜାପୟେତ୍—ଅଧାର୍ମିକୋଽୟଂ ରାଜା, ସାଧୁ ଧାର୍ମିକମନ୍ୟମସ୍ୟ ତତ୍‌କୁଲୀନମବରୁଦ୍ଧଂ କୁଲ୍ୟମେକପ୍ରଗ୍ରହଂ ସାମନ୍ତମାଟବିକମୌପପାଦିକଂ ବା ପ୍ରତିପାଦୟାମଃ । ସର୍ବେଷାମେତଦ୍ରୋଚତେ, କଥଂ ବା ତବେତି । ପ୍ରତ୍ୟାଖ୍ୟାନେ ଶୁଚିରିତି ଧର୍ମୋପଧା ।

---

(୧) ରାଜା, ମନ୍ତ୍ରୀ ପୁରୋହିତଙ୍କ ସହଯୋଗରେ ସାଧାରଣ ଅମାତ୍ୟମାନଙ୍କୁ କର୍ମରେ ନିଯୁକ୍ତ କରି ଉପଧା ଅର୍ଥାତ୍ ଛଳନାଦ୍ୱାରା ସେମାନଙ୍କର ଶୁଦ୍ଧି ପରୀକ୍ଷା କରିବେ । (୨) ପୁରୋହିତଙ୍କ ସହିତ ପ୍ରଥମେ ଗୁପ୍ତରେ କଥାବାର୍ତ୍ତା କରି ରାଜା ତାଙ୍କୁ ଯଜ୍ଞାନୁଷ୍ଠାନର ଅଯୋଗ୍ୟ ଓ ଅଧ୍ୟାପନାର ଅଯୋଗ୍ୟ ବ୍ୟକ୍ତିଙ୍କର ଯାଜନ ଓ ଅଧ୍ୟାପନ କରିବା ସକାଶେ ନିଯୁକ୍ତ କରିବେ । ଉକ୍ତ ପୁରୋହିତ, ରାଜା ତାଙ୍କୁ ଏପରି ଅଧର୍ମ କାର୍ଯ୍ୟରେ ନିଯୁକ୍ତ କରିବାହେତୁ କ୍ରୁଦ୍ଧ ହେବେ (ଛଳନାଦ୍ୱାରା ସବୁ ସମକ୍ଷରେ କ୍ରୁଦ୍ଧ ହେବାପରି ଦେଖାଇ ହେବେ) ଏବଂ ରାଜା ତାଙ୍କୁ ଏଥିପାଇଁ ପଦଚ୍ୟୁତ କରିଦେବେ । (୩) ଉପରୋକ୍ତ ବହିଷ୍କୃତ ପୁରୋହିତ ସତ୍ରୀନାମକ ଗୁପ୍ତଚରମାନଙ୍କ ଜରିଆରେ ପ୍ରତ୍ୟେକ ଅମାତ୍ୟଙ୍କୁ ଶପଥପୂର୍ବକ ଉପଜାପିତ କରିବେ ଅର୍ଥାତ୍ ଛଳନାଦ୍ୱାରା ସେମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରି ଭୁଲାଇ କହିବେ, "ଏ ରାଜା ବଡ଼ ଅଧାର୍ମିକ, ଅତଏବ ଅସନ୍ତୁ, ଏହାଙ୍କ ବଂଶର ଅନ୍ୟ ଜଣେ ସାଧୁ ଓ ଧାର୍ମିକ ବ୍ୟକ୍ତିଙ୍କୁ କିମ୍ବା କୌଣସି ଶୁଦ୍ଧ ରାଜବଂଶର ଅନ୍ୟ ଜଣଙ୍କୁ କିମ୍ବା ଏହାଙ୍କର

(୪) ସେନାପତିରସତ୍‌ପ୍ରଗ୍ରହେଣାବକ୍ଷିପ୍ତଃ ସତ୍ତ୍ରିଭିରେକୈକମମାତ୍ୟ ମୁପଜାପୟେତ୍ ଲୋଭନୀୟେନାର୍ଥେନ ରାଜବିନାଶାୟ—"ସର୍ବେଷାମେତ ଦ୍ରୋଚତେ, କଥଂ ବା ତବେତି ।" ପ୍ରତ୍ୟାଖ୍ୟାନେ ଶୁଚିରିତି— ଅର୍ଥୋପଧା । (୫) ପରିବ୍ରାଜିକାଲବ୍ଧବିଶ୍ୱାସାନ୍ତଃପୁରେ କୃତସତ୍‌କାରା

---

ଅବରୁଦ୍ଧ ପୁତ୍ରାଦିଙ୍କ ମଧ୍ୟରୁ ଜଣଙ୍କୁ, ଅଥବା ଅନ୍ୟ ରାଜକୁଳର ଜଣେ ଉପଯୁକ୍ତ ବ୍ୟକ୍ତିଙ୍କୁ କିମ୍ବା ଜଣେ ସର୍ବମାନ୍ୟ ବ୍ୟକ୍ତିଙ୍କୁ ବା କୌଣସି ଏକ ସାମନ୍ତ କିମ୍ବା ଆଟବିକ ଅର୍ଥାତ୍ ବନପାଳ ରାଜାଙ୍କୁ, ସେପରି ନହେଲେ ଆମ୍ଭେ ସମସ୍ତେ ଯାହାଙ୍କୁ ଉପଯୁକ୍ତ ମନେକରି ନିର୍ବାଚନ କରିବା ତାହାଙ୍କୁ ଉକ୍ତ ରାଜଗାଦିରେ ବସାଇବା । ଅନ୍ୟ ସମସ୍ତେ ଏଥିରେ ଏକମତ; କହନ୍ତୁ ଏଥିରେ ଆପଣଙ୍କ ମତ କ'ଣ ? ଅମାତ୍ୟ ଯଦି ଏଥିରେ ଏକମତ ନୁହନ୍ତି ତେବେ ତାହାଙ୍କୁ ଶୁଦ୍ଧ-ସ୍ୱଭାବ ଅମାତ୍ୟ ବୋଲି ଜାଣିବାକୁ ହେବ । ଏହାକୁ 'ଧର୍ମୋପଧା' କୁହାଯାଏ । ଧର୍ମପ୍ରଧାନ ବିଷୟରେ ଅମାତ୍ୟାଦିମାନଙ୍କୁ ଏହି ଉପାୟରେ ପରୀକ୍ଷା କରାଯାଏ । (୪) ରାଜା ପ୍ରଥମେ ସେନାପତିଙ୍କ ସହିତ ଗୁପ୍ତରେ ବିଚାର କରି ଛଳ-ପୂର୍ବକ ତାଙ୍କୁ କୌଣସି ଅପୂଜ୍ୟବ୍ୟକ୍ତିର ସେବାକରିବା ସକାଶେ ନିର୍ଦ୍ଦେଶ ଦେବେ । ସେନାପତି ଏଥିରେ ଅସମ୍ମତି ପ୍ରକାଶ କରିବା ଯୋଗୁଁ ତାଙ୍କୁ ସର୍ବସମକ୍ଷରେ ପଦଚ୍ୟୁତ କରିଦେବେ ଏବଂ ଧନ ସମ୍ମାନର ହାନି ଘଟାଇବେ । ତତ୍ପରେ ଉକ୍ତ ବିତାଡ଼ିତ ସେନାପତି ସତ୍ରୀନାମକ ଗୁପ୍ତଚରମାନଙ୍କ ସାହାଯ୍ୟରେ ପ୍ରତ୍ୟେକ ଅମାତ୍ୟଙ୍କୁ ଭିନ୍ନ ଭିନ୍ନ ଭାବେ ଅର୍ଥାତ୍ କାହାର କଥା କାହାକୁ ନକହି ଲୋଭନୀୟ ଧନ (ଅମାତ୍ୟ ଯାହା ପାଇବାକୁ ଚାହୁଁଥିବେ ତତୋଽଧିକ ଧନ) ଦାନର ପ୍ରଲୋଭନ ଦେଖାଇ ପୂର୍ବୋକ୍ତ ବିତାଡ଼ିତ ଧୂର୍ତ୍ତବ୍ରାହ୍ମଣଙ୍କ ପରି ରାଜାଙ୍କ ବିରୁଦ୍ଧରେ ଅମାତ୍ୟମାନଙ୍କୁ ମତାଇ କହିବେ, "ଏଥିରେ ସମସ୍ତେ ଏକମତ । ଆପଣଙ୍କ ମତ କଣ ?" ଏ ପ୍ରସ୍ତାବକୁ ଯେଉଁ ଅମାତ୍ୟ ପ୍ରତ୍ୟାଖ୍ୟାନ କରିବେ ତାଙ୍କୁ ସଚ୍ଚୋଟ ବ୍ୟକ୍ତି ବୋଲି ବିଚାରିବେ । ଲୋଭୀ ଅମାତ୍ୟମାନଙ୍କ ଚରିତ୍ର ଏପରି ଅର୍ଥଲୋଭଦ୍ୱାରା ପରୀକ୍ଷା କରାଯିବାଯୋଗୁଁ ଏହାକୁ 'ଅର୍ଥୋପଧା' କୁହାଯାଏ । (୫) ରାଜା ଜଣେ ପରିବ୍ରାଜିକା

---

(୪)—ଧର୍ମୋପଧା—**Religious allurement.** ଅର୍ଥୋପଧା—**Allurement of wealth.** କାମୋପଧା—**Love allurement.** ଭୟୋପଧା—**Allurement under fear.**

ମହାମାତ୍ରମେକୈକମୁପଜପେତ୍—"ରାଜମହିଷୀ ତ୍ୱାଂ କାମୟତେ କୃତସମାଗମୋପାୟା । ମହାନର୍ଥସ୍ତେ ଭବିଷ୍ୟତୀତି ।" ପ୍ରତ୍ୟାଖ୍ୟାନେ ଶୁଚିରିତି କାମୋପଧା । (୬) ପ୍ରବହଣନିମିତ୍ତମେକୋଽମାତ୍ୟଃ ସର୍ବାନମାତ୍ୟାନାବାହୟେତ୍ । ତେନୋଦ୍-ବେଗେନ ରାଜାତାନବରୁନ୍ଧ୍ୟାତ୍ । କାପଟିକଶ୍ଚାତ୍ରଃ ପୂର୍ବାବରୁଦ୍ଧ-

( ସନ୍ନ୍ୟାସିନୀ )ଙ୍କୁ ରାଣୀଙ୍କ ନିକଟରେ ସତ୍କାରପୂର୍ବକ ରଖାଇବେ ଯଦ୍ଦ୍ୱାରା ସମସ୍ତେ ଜାଣିବେ ଏହି ପରିବ୍ରାଜିକା ରାଣୀଙ୍କର ବଡ଼ ବିଶ୍ୱାସିନୀ । ଏ ମହାମାତ୍ରମାନଙ୍କୁ ଭିନ୍ନ ଭିନ୍ନ ସମୟରେ ଏକାନ୍ତରେ କହିବେ, "ରାଣୀ ଆପଣଙ୍କୁ ବଡ଼ ଭଲ ପା'ନ୍ତି ଏବଂ ଆପଣଙ୍କୁ ଏକାନ୍ତରେ ଭେଟିବାପାଇଁ ସେ ସମସ୍ତ ବ୍ୟବସ୍ଥା କରିଛନ୍ତି । ଯଦି ଆପଣ ରାଣୀଙ୍କ ସ୍ନେହକୁ ପ୍ରତ୍ୟାଖ୍ୟାନ କରନ୍ତି ତେବେ ଆପଣଙ୍କର ବଡ଼ ଅନିଷ୍ଟ ଘଟିବ ।" ଏପରି କହିଲେ ମଧ୍ୟ ଯେଉଁ ମହାମାତ୍ର ଏ ପ୍ରସ୍ତାବକୁ ଅସ୍ୱୀକାର କରନ୍ତି ତାଙ୍କୁ ଉତ୍ତମ ମହାମାତ୍ର ବୋଲି ମନେ କରିବେ । ଏହାକୁ 'କାମୋପଧା' କୁହାଯାଏ । (୬) ରାଜା କୌଣସି ଜଣେ ଅମାତ୍ୟଙ୍କୁ ଅଯୁକ୍ତ କରି ତାଙ୍କଦ୍ୱାରା ଅନ୍ୟ ସମସ୍ତ ଅମାତ୍ୟମାନଙ୍କୁ ଛଳପୂର୍ବକ ନୌକାଦ୍ୱାରା ଜଳବିହାର ଓ ଯାନାଦିଦ୍ୱାରା ସ୍ଥଳବିହାର, ଯାତ୍ରା, କ୍ରୀଡ଼ାକୌତୁକ ବା ଉଦ୍ୟାନ ଭୋଜନ ପ୍ରଭୃତିରେ ଯୋଗଦାନ କରିବାପାଇଁ ଡକାଇବେ ଏବଂ ସେମାନେ ଏଥିରେ ଯୋଗଦେବା ସଙ୍ଗେ ସଙ୍ଗେ ରାଜା କୃତ୍ରିମ କ୍ରୋଧ ପ୍ରକାଶକରି ଉଦ୍‌ବେଗର ସହିତ ସେମାନଙ୍କୁ ଅର୍ଥଦଣ୍ଡ ଓ ପଦଚ୍ୟୁତ ଇତ୍ୟାଦି ଦଣ୍ଡରେ ଦଣ୍ଡିତ କରିବେ । ତା'ପରେ ଏଥିପୂର୍ବରୁ କପଟରାଜଦଣ୍ଡରେ ଅବମାନିତ ହୋଇଥିବା କପଟଛାତ୍ର ବେଶଧାରୀ ଗୁପ୍ତଚର ଅର୍ଥଦଣ୍ଡ ଓ ପଦଚ୍ୟୁତ ଦଣ୍ଡହେତୁ ଅପମାନିତ ହୋଇଥିବା ଏହି ଅମାତ୍ୟ-ମାନଙ୍କୁ ରାଜାଙ୍କ ବିରୁଦ୍ଧରେ ମତାଇ କହିବେ, "ଏ ରାଜା ବଡ଼ ଅଯୋଗ୍ୟ, ଏ କେବଳ ଅଯୋଗ୍ୟ ଲୋକଙ୍କୁ ହିଁ ପସନ୍ଦ କରନ୍ତି, ଏଣୁ ଏହାଙ୍କୁ ହତ୍ୟାକରି ଏହାଙ୍କ ସ୍ଥାନରେ ଅନ୍ୟ ଜଣଙ୍କୁ ରାଜା କରିଦେବା । ଅନ୍ୟ ସମସ୍ତ ଅଧିକାରୀ

(୫)—ମହାମାତ୍ର—ମନ୍ତ୍ରେକର୍ମଣିଭୂଷାୟାଂ ବିତ୍ତେମାନେ ପରିଚ୍ଛଦେ ।
ମାତ୍ରା ଚ ମହତୀ ଯେଷାଂ ମହାମାତ୍ରାସ୍ତୁ ତେ ସ୍ମୃତାଃ ।
(ରାଜ୍ୟର ପ୍ରଧାନ ବ୍ୟକ୍ତି ବା ପ୍ରଧାନ କର୍ମଚାରୀ)

ତେଷାମର୍ଥମାନାବକ୍ଷିପ୍ତମେକୈକମମାତ୍ୟମୁପଜପେତ୍ — "ଅ ସ ତ୍ ପ୍ରବୃତ୍ତୋଽୟଂ ରାଜା, ସାଧ୍ୱେନଂ ହତ୍ୱାଽନ୍ୟଂ ପ୍ରତିପାଦୟିଷ୍ୟାମଃ । ସର୍ବେଷାମେତଦ୍ରୋଚତେ, କଥଂ ବା ତବେତି" ପ୍ରତ୍ୟାଖ୍ୟାନେ ଶୁଚିରିତି ଭୟୋପଧା । (୭) ତତ୍ର ଧର୍ମୋପଧାଶୁଦ୍ଧାନ୍ ଧର୍ମସ୍ଥୀୟ କଣ୍ଟକଶୋଧନେଷୁ ସ୍ଥାପୟେତ୍, ଅର୍ଥୋପଧା ଶୁଦ୍ଧାନ୍ ସମାହର୍ତ୍ତୃ ସନ୍ନିଧାତୃନିଚୟକର୍ମସୁ, କାମୋପଧା ଶୁଦ୍ଧାନ୍ ବାହ୍ୟାଭ୍ୟନ୍ତର ବିହାର ରକ୍ଷାସୁ, ଭୟୋପଧାଶୁଦ୍ଧାନାସନ୍ନକାର୍ଯ୍ୟେଷୁ ରାଜ୍ଞଃ । ସର୍ବୋପଧା ଶୁଦ୍ଧାନ୍ ମନ୍ତ୍ରିଣଃ କୁର୍ଯ୍ୟାତ୍ । ସର୍ବତ୍ରାଶୁଚୀନ୍ ଖନିଦ୍ରବ୍ୟ ହସ୍ତିବନ କର୍ମାନ୍ତେଷୂପଯୋଜୟେତ୍ ।

---

ଏଥିରେ ଏକମତ ଅଛନ୍ତି, ଆପଣଙ୍କ ମତ କଣ ?" ଯଦି ସେ ଏଥିରେ ଏକମତ ନ ହୁଅନ୍ତି, ତେବେ ତାଙ୍କୁ ପବିତ୍ରହୃଦୟ ବୋଲି ଜାଣିବେ । ଏହାକୁ 'ଭୟୋପଧା' କୁହାଯାଏ । (୭) ରାଜା ଏପରି ଉପଧାମାନଙ୍କଦ୍ୱାରା ଶୁଦ୍ଧ ହୋଇଥିବା ଅମାତ୍ୟମାନଙ୍କ ମଧ୍ୟରୁ ଯେଉଁମାନେ ଧର୍ମୋପଧାଦ୍ୱାରା ଶୁଦ୍ଧ ହୋଇଥାନ୍ତି ସେମାନଙ୍କୁ ଧର୍ମସ୍ଥୀୟ ଓ କଣ୍ଟକ ଶୋଧନ (Civil and Criminal) କାର୍ଯ୍ୟରେ ନିଯୁକ୍ତ କରିବେ । ଅର୍ଥୋପଧା ଦ୍ୱାରା ଶୁଦ୍ଧ ହୋଇଥିବା ଅମାତ୍ୟମାନଙ୍କୁ ରାଜସ୍ୱ ଆଦାୟ ଓ ଭଣ୍ଡାରରକ୍ଷାଦି କାର୍ଯ୍ୟରେ ନିଯୁକ୍ତ କରିବେ (ସମାହର୍ତ୍ତା, ସନ୍ନିଧାତା ପ୍ରଭୃତି ପଦରେ ନିଯୁକ୍ତ କରିବେ) । କାମୋପଧାଦ୍ୱାରା ଶୁଦ୍ଧ ହୋଇଥିବା ଅମାତ୍ୟଙ୍କୁ ରାଣୀ ଓ ଭୋଗିନୀମାନଙ୍କ ରକ୍ଷାକାର୍ଯ୍ୟରେ ନିଯୁକ୍ତ କରିବେ । ଭୟୋପଧାଦ୍ୱାରା ଶୁଦ୍ଧ ହୋଇଥିବା ଅମାତ୍ୟଙ୍କୁ ଆତ୍ମରକ୍ଷା କାର୍ଯ୍ୟରେ ନିଯୁକ୍ତ କରିବେ ଅର୍ଥାତ୍ ଏମାନଙ୍କୁ ବିଶ୍ୱସ୍ତ ମନେକରି ନିଜର ଅଙ୍ଗରକ୍ଷୀରୂପେ ନିଯୁକ୍ତ କରିବେ; ଏବଂ ଉପରୋକ୍ତ ଚତୁର୍ବିଧ ଉପଧାଦ୍ୱାରା ଶୁଦ୍ଧ ହୋଇଥିବା ଅମାତ୍ୟଙ୍କୁ 'ମନ୍ତ୍ରୀ' ପଦରେ ନିଯୁକ୍ତ କରିବେ । ଉକ୍ତ ଚତୁର୍ବିଧ ଉପଧା ମଧ୍ୟରୁ କୌଣସି ଗୋଟିଏ ବା କେତୋଟି ଉପଧାଦ୍ୱାରା ଶୁଦ୍ଧ ହୋଇ ନଥିବା ଅମାତ୍ୟଙ୍କୁ ଖଣି, ଦ୍ରବ୍ୟବନ, ହସ୍ତିବନ ଇତ୍ୟାଦି କାର୍ଯ୍ୟରେ (ଉପରିସ୍ଥ କର୍ମଚାରୀଙ୍କ ଅଧୀନରେ) କେବଳ ଶାରୀରଶ୍ରମସାଧ୍ୟ

(୮) ତ୍ରିବର୍ଗଭୟସଂଶୁଦ୍ଧାନମାତ୍ୟାନ୍ ସ୍ୱେଷୁ କର୍ମସୁ,
ଅଧିକୁର୍ଯ୍ୟାଦ୍ୟଥାଶୌଚ ମିତ୍ୟାଚାର୍ଯ୍ୟା ବ୍ୟବସ୍ଥିତାଃ ।
(୯) ନତ୍ୱେବ କୁର୍ଯ୍ୟାଦାତ୍ମାନଂ ଦେବୀଂ ବା ଲକ୍ଷମୀଶ୍ୱରଃ,
ଶୌଚହେତୋରମାତ୍ୟାନାମେତତ୍ କୌଟଲ୍ୟ ଦର୍ଶନମ୍ ।
(୧୦) ନଦୂଷଣମଦୁଷ୍ଟସ୍ୟ ବିଷେଣେ ବା ମ୍ଭସଶ୍ଚରେତ୍,
କଦାଚିଦ୍ଧି ପ୍ରଦୁଷ୍ଟସ୍ୟ ନାଧିଗମ୍ୟେତ ଭେଷଜମ୍ ।
(୧୧) କୃତା ଚ କଳୁଷା ବୁଦ୍ଧିରୁପଧାଭିଶ୍ଚତୁର୍ବିଧା,
ନାଗତ୍ୱାନ୍ତଂ ନିବର୍ତ୍ତେତ ସ୍ଥିତା ସତ୍ତ୍ୱବତାଂ ଧୃତୌ ।

---

କାର୍ଯ୍ୟରେହିଁ ନିଯୁକ୍ତ କରିବେ । (୮) ଧର୍ମ, ଅର୍ଥ, କାମ ଓ ଭୟୋପଧାଦ୍ୱାରା ପରୀକ୍ଷିତ ହୋଇଥିବା ଅମାତ୍ୟମାନଙ୍କୁ ରାଜା, ଯେ ଯେଉଁ ଉପଧାରେ ପରୀକ୍ଷିତ ହୋଇ ଶୁଦ୍ଧ ହୋଇଛନ୍ତି, ତାଙ୍କୁ ତଦନୁରୂପ କାର୍ଯ୍ୟରେ ( ଗୃହକାର୍ଯ୍ୟରେ ) ନିଯୁକ୍ତ କରିବେ । (୯-୧୨) କିନ୍ତୁ କୌଟଲ୍ୟଙ୍କ ସିଦ୍ଧାନ୍ତ ଅନୁସାରେ ରାଜା ନିଜେ କିମ୍ବା ନିଜର ରାଣୀଙ୍କଦ୍ୱାରା ଅମାତ୍ୟମାନଙ୍କୁ ଉପଧାଦ୍ୱାରା ପରୀକ୍ଷାକରିବା ଯୁକ୍ତିସଙ୍ଗତ ନୁହେଁ, କାରଣ ସ୍ୱଭାବତଃ ଦୋଷଶୂନ୍ୟ ଅମାତ୍ୟମାନଙ୍କୁ ଏପରି ଛଳନାଦ୍ୱାରା ଭୁଲାଇ ଦୂଷିତ କରିବା ବିଶୁଦ୍ଧ ଓ ପ୍ରାଣପୋଷକ ଜଳରେ ପ୍ରାଣନାଶକ ବିଷସଂଯୋଗ ସଦୃଶ ହୋଇଥାଏ । ବଂଚନାଦ୍ୱାରା ବିଗିଡ଼ି ଯାଇଥିବା ଶୁଦ୍ଧସ୍ୱଭାବ ଅମାତ୍ୟଙ୍କୁ ଅନ୍ୟ କୌଣସି ଉପାୟରେ ଆୟତ୍ତ କରିହୁଏ ନାହିଁ । ଅଧିକନ୍ତୁ ଏହାର ଫଳରେ ରାଜା ମଧ୍ୟ ଏହି ଦୁଷ୍କର୍ମଦ୍ୱାରା ବିପଦରେ ପଡ଼ିଥାନ୍ତି । ମେଧାବୀ ଅମାତ୍ୟମାନଙ୍କ ବୁଦ୍ଧିକୁ ଯଦି ଏପରି ଉପଧାଦ୍ୱାରା ଦୂଷିତ କଲେ ଏହି ବିକୃତଭାବ ସେମାନଙ୍କ ମନରେ ଦୃଢ଼ୀଭୂତ ହୋଇ ଚରମ ସୀମାକୁ ନଯାଇ ନିବର୍ତ୍ତେ ନାହିଁ, ଅର୍ଥାତ୍ ରାଜାଙ୍କୁ ପଦଚ୍ୟୁତ ନ କରି ଶାନ୍ତ ହୁଏ ନାହିଁ । ଅତଏବ ରାଜା ଏହି ଚାରିପ୍ରକାର ଉପଧାଦ୍ୱାରା କେବଳ ବାହ୍ୟ-ଦୂଷଣୀୟ ବ୍ୟକ୍ତିମାନଙ୍କୁ ପରୀକ୍ଷା କରିବେ; ଅମାତ୍ୟମାନଙ୍କୁ ଏପରି ପରୀକ୍ଷା କରିବେ ନାହିଁ । ଦରକାର ହେଲେ ଅମାତ୍ୟମାନଙ୍କ ବହିରଙ୍ଗଦୂଷିତ ଭାବକୁ ଲକ୍ଷ୍ୟକରି

(୧୬) ତସ୍ମାଦ୍ ବାହ୍ୟମଧିଷ୍ଠାନଂ କୃତ୍ୱାର୍ଥେ ଚତୁର୍ବିଧେ,
ଶୌଚାଶୌଚମମାତ୍ୟାନାଂ ରାଜା ମାର୍ଗେତ ସତ୍ତ୍ରିଭିଃ ।

---

## ଏକାଦଶୋଽଧ୍ୟାୟଃ

## ସପ୍ତମ ପ୍ରକରଣଂ—ଗୂଢ଼ପୁରୁଷୋତ୍ପତ୍ତିଃ

### THE INSTITUTION OF SPIES.

ପୂର୍ବାଧ୍ୟାୟରେ ରାଜା ଅମାତ୍ୟମାନଙ୍କ ଶୌଚାଶୌଚ ପରୀକ୍ଷା ଗୁପ୍ତଚରମାନଙ୍କ ଦ୍ୱାରା କରାଇବା ପ୍ରସଙ୍ଗ ଆସିଥିବା ଯୋଗୁ ଏହି ଅଧ୍ୟାୟରେ ଗୁପ୍ତଚର ସଂସ୍ଥାର ବିସ୍ତାର କରାଯାଉଛି ।

(୧) ଉପାଧାଭିଃ ଶୁଦ୍ଧାମାତ୍ୟବର୍ଗୋ ଗୂଢ଼ପୁରୁଷାନୁତ୍ପାଦୟେତ୍ କାପଟିକୋଦାସ୍ଥିତ ଗୃହପତକବୈଦେହକତାପସବ୍ୟଂଜନାନ୍ ସତ୍ତ୍ରୀତୀକ୍ଷ୍ଣ

---

ସତ୍ରୀ ନାମକ ଗୁପ୍ତଚରମାନଙ୍କ ସାହାଯ୍ୟରେ ସେମାନଙ୍କ ବୁଦ୍ଧି ପରୀକ୍ଷା କରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ ଦଶମୋଽଧ୍ୟାୟଃ—ଉପଧାଭିଃ ଶୌଚାଶୌଚଜ୍ଞାନମମାତ୍ୟାନାମ୍ ।

---

(୧) ରାଜା, ଉପଧାଦ୍ୱାରା ଶୁଦ୍ଧ ହୋଇଥିବା ଅମାତ୍ୟବର୍ଗଙ୍କ ସାହାଯ୍ୟରେ ଗୂଢ଼ ପୁରୁଷ ଅର୍ଥାତ୍ ଗୁପ୍ତଚରମାନଙ୍କୁ ଉତ୍ପନ୍ନ କରିବେ । ଏହି ଗୁପ୍ତଚର କାପଟିକ, ଉଦାସ୍ଥିତ, ଗୃହପତକ, ବୈଦେହକ ଓ ତାପସ ବେଶଧାରୀ ଏବଂ ସତ୍ରୀ, ତୀକ୍ଷ୍ଣ, ରସଦ ଓ ଭିକ୍ଷୁକୀ ଭେଦରେ ବହୁପ୍ରକାର । (କୁବ୍ଜ, ବାମନ,

---

(୧)—କାପଟିକ—Spies under the guise of a fradulent disciple. ଉଦାସ୍ଥିତ—A recluse. ଗୃହପତକ—A householder. ବୈଦେହକ—A merchant. ତାପସ—An ascetic practising austerities. ସତ୍ରୀ—Classmates or a colleague. ତୀକ୍ଷ୍ଣ—A firebrand. ରସଦ—A poisoner. ଭିକ୍ଷୁକୀ—A mendicant woman ।

**ରସଦଭିକ୍ଷୁକୀଶ୍ଚ । (ଚକାରତ୍ କୁବ୍ଜବାମନକିରାତମୂକବଧିରଜଡ଼ାନ୍ଧନଟନର୍ତ୍ତକଗାୟନବାଦକବାଗ୍‌ଜୀବନକୁଶୀଲବା ଅପି—ଗୃହ୍ୟନ୍ତେ) । (୨) ପରମର୍ମଜ୍ଞଃ ପ୍ରଗଲ୍‌ଭ ଶ୍ଛାତ୍ରଃ କାପଟିକଃ । ତମର୍ଥମାନାଭ୍ୟାମୁତ୍ସାହ୍ୟ ମନ୍ତ୍ରୀ ବ୍ରୂୟାତ୍,—ରାଜାନଂ ମାଂ ଚ ପ୍ରମାଣଂ କୃତ୍ୱା ଯସ୍ୟଯଦକୁଶଳଂ ପଶ୍ୟସି ତତ୍ ତଦାନୀମେବ ପ୍ରତ୍ୟାଦଶେତି । (୩) ପ୍ରବ୍ରଜ୍ୟାପ୍ରତ୍ୟବସିତଃ ପ୍ରଜ୍ଞାଶୌଚଯୁକ୍ତ ଉଦାସ୍ଥିତଃ । ସ ବାର୍ତ୍ତାକର୍ମପ୍ରଦିଷ୍ଟାୟାଂ ଭୂମୌ ପ୍ରଭୂତହିରଣ୍ୟାନ୍ତେବାସୀ କର୍ମ କାରୟେତ୍ । କର୍ମଫଳାଚ୍ଚ ସର୍ବପ୍ରବ୍ରଜିତାନାଂ ଗ୍ରାସାଚ୍ଛାଦନାବସଥାନ୍ ପ୍ରତିବିଦଧ୍ୟାତ୍ । ବୃତ୍ତିକାମାଂଶ୍ଚୋପଜପେତ୍—ଏତେନୈବ ବେଷେଣ ରାଜାର୍ଥଶ୍ଚରିତବ୍ୟୋ ଭକ୍ତବେତନକାଳେ ଚୋପସ୍ଥାତବ୍ୟମିତି । ସର୍ବପ୍ରବ୍ରଜିତାଶ୍ଚ ସ୍ୱଂ ସ୍ୱଂ ବର୍ଗମୁପଜପେୟୁଃ ।**

---

କିରାତ, ମୂକ, ବଧିର, ଜଡ଼, ଅନ୍ଧ, ନଟ, ନର୍ତ୍ତକ, ଗାୟକ, ବାଦକ, ଗଳ୍ପସାଗର ଓ ଅଭିନେତା ବା ଚାରଣମାନେ ମଧ୍ୟ ଆବଶ୍ୟକସ୍ଥଳେ ଗୁପ୍ତଚରରୂପେ ଗୃହୀତ ହୁଅନ୍ତି) । (୨) ପରଚ୍ଛିଦ୍ରଜ୍ଞ, ପ୍ରୌଢ଼, ଛାତ୍ର ଅର୍ଥାତ୍ ଅବିବାହିତ, ଶରୀରମାତ୍ରସମ୍ବଳ, ଅଧ୍ୟାପକଅଧ୍ୟେତୃବୃତ୍ତିଯୁକ୍ତ କପଟ ବେଶଧାରୀ ଗୁପ୍ତଚରଙ୍କୁ 'କାପଟିକ' ଗୁପ୍ତଚର କୁହାଯାଏ । ଏହାଙ୍କୁ ଧନସମ୍ମାନ-ଦ୍ୱାରା ଉତ୍ସାହିତ କରି ମନ୍ତ୍ରୀ କହିବେ, "ରାଜାଙ୍କୁ ଏବଂ ମତେ ପ୍ରଧାନବ୍ୟକ୍ତି ବୋଲି ମନେକରି ଯେଉଁ ଅମାତ୍ୟଙ୍କ ଚୌର, ବ୍ୟଭିଚାର ଓ ପରକଳତ୍ର ଗମନ ଇତ୍ୟାଦି ଅକୁଶଳ କାର୍ଯ୍ୟ ଦେଖିବ ତାହା ହଠାତ୍ ତୁମ୍ଭେ ମତେ ଜଣାଇବ" । (୩) ସନ୍ନ୍ୟାସ ଗ୍ରହଣ ପରେ ତହିଁରୁ ନିବୃତ୍ତ, (ବୌଦ୍ଧ ଶୈବାଦି ବ୍ରତ ଗ୍ରହଣ କରି ମଧ୍ୟ ତହିଁରୁ ନିବୃତ୍ତ) ମତିମାନ୍ ଓ ଶୁଦ୍ଧହୃଦୟ ସନ୍ନ୍ୟାସୀ-ବେଶଧାରୀ ଗୁପ୍ତଚରଙ୍କୁ 'ଉଦାସ୍ଥିତ' କୁହାଯାଏ । ଏହି ଉଦାସ୍ଥିତ ଗୁପ୍ତଚର ପ୍ରଚୁର ଧନ ଏବଂ ବହୁଶିଷ୍ୟଙ୍କୁ ସଙ୍ଗରେ ନେଇ ତାଙ୍କୁ ନିର୍ଦ୍ଦେଶ ଦିଆଯାଇଥିବା କୃଷି, ପଶୁପାଳନ ଓ ବାଣିଜ୍ୟକେନ୍ଦ୍ରଯୋଗ୍ୟ ସ୍ଥାନରେ ଶିଷ୍ୟମାନଙ୍କଦ୍ୱାରା ଉପରୋକ୍ତ କୃଷିପ୍ରଭୃତି କାର୍ଯ୍ୟ କରାଇବେ । ଉକ୍ତ ସ୍ଥାନରେ ଅବସ୍ଥାନ କରି ନିଜ କାର୍ଯ୍ୟଦ୍ୱାରା ଉପାର୍ଜିତ ପଦାର୍ଥରେ ଭିନ୍ନ ଭିନ୍ନ ବେଶଧାରୀ ଶୈବ, ଶାକ୍ତ, ଦିଗମ୍ବରାଦି (ଜୈନାଦି) ନୂତନ ଓ ପୁରାତନ ସନ୍ନ୍ୟାସିମାନଙ୍କୁ ଅନ୍ନ, ବସ୍ତ୍ର ଓ ନିବାସସ୍ଥାନର ସୁବ୍ୟବସ୍ଥା କରିବେ । ଏହି ଅନ୍ନ, ବସ୍ତ୍ର ଓ ନିବାସାଦିର ସୁବ୍ୟବସ୍ଥା ହେତୁ ଯେଉଁ ସନ୍ନ୍ୟାସୀ ସେଠାରେ ସର୍ବଦା ରହିବାକୁ ଇଚ୍ଛା

**(୪) କର୍ଷକୋ ବୃତ୍ତିକ୍ଷୀଣଃ ପ୍ରଜ୍ଞାଶୌଚଯୁକ୍ତୋ ଗୃହପତିକବ୍ୟଂଜନଃ । ସ କୃଷିକର୍ମପ୍ରଦିଷ୍ଟାୟାଂ ଭୂମାବିତି ସମାନଂ ପୂର୍ବେଣ । (୫) ବଣିଜକୋ ବୃତ୍ତିକ୍ଷୀଣଃ ପ୍ରଜ୍ଞାଶୌଚଯୁକ୍ତୋ ବୈଦେହକବ୍ୟଂଜନଃ, ସବଣିକ୍‌କର୍ମ ପ୍ରଦିଷ୍ଟାୟାଂ ଭୂମାବିତି ସମାନଂ ପୂର୍ବେଣ । (୬) ମୁଣ୍ଡୋ ଜଟିଳୋ ବା ବୃତ୍ତିକାମସ୍ତାପସବ୍ୟଂଜନଃ । ସ ନଗରାଭ୍ୟାଶେ ପ୍ରଭୂତ ମୁଣ୍ଡ ଜଟିଳାନ୍ତେବାସୀ ଶାକଂ ଯବସମୁଷ୍ଟିଂ ବା ମାସଦ୍ୱିମାସାନ୍ତରଂ**

---

ପ୍ରକାଶ କରିବେ ତାହାଙ୍କୁ ଭେଦନୀତିରେ ବଶୀଭୂତକରି ରାଜାଙ୍କର ଗୁପ୍ତଚରରୂପେ ନିଯୁକ୍ତକରି କହିବେ, "ତୁମ୍ଭେ ଏହି ବେଶରେ ରାଜାଙ୍କର ଶତ୍ରୁ-ରାଜ୍ୟର ବୃତ୍ତାନ୍ତ ସଂଗ୍ରହକରି ମତେ ଜଣାଇବ ଏବଂ ଯଥାସମୟରେ ଏଠାରୁ ଆସି ତୁମ୍ଭର ବେତନ ଅର୍ଥାତ୍ ଅନ୍ନବସ୍ତ୍ରାଦି ନେଉଥିବ ।" ଏପରି ଭିନ୍ନ ଭିନ୍ନ ସଂପ୍ରଦାୟର ସନ୍ନ୍ୟାସୀମାନେ ନିଜ ନିଜର ସଂପ୍ରଦାୟସ୍ଥ ସନ୍ନ୍ୟାସୀମାନଙ୍କୁ ଭେଦନୀତିରେ ବଶୀଭୂତ କରି ନିଜର ସହାୟକ ଗୁପ୍ତଚରଭାବେ ନିଯୁକ୍ତ କରିବେ । (୪) କୃଷିବୃତ୍ତିଚ୍ୟୁତ, ବୁଦ୍ଧିଶୁଦ୍ଧିଯୁକ୍ତ କୃଷକ ଗୁପ୍ତଚରଙ୍କୁ 'ଗୃହପତିକ ବ୍ୟଞ୍ଜନ' କୁହାଯାଏ । ସେ କୃଷକ ବେଶରେ କୃଷକମାନଙ୍କ ମଧ୍ୟରେ ରହି ପୂର୍ବୋକ୍ତ ଉଦାସ୍ଥିତ ଗୁପ୍ତଚରଙ୍କପରି ନିଜର ବଶୀଭୂତ ଅନୁଚରମାନଙ୍କ ସାହାଯ୍ୟରେ ରାଜକାର୍ଯ୍ୟ ସଂପାଦନ କରିବେ । (୫) ଧନର ଅଭାବରୁ ବାଣିଜ୍ୟ ବୃତ୍ତିଚ୍ୟୁତ, ବୁଦ୍ଧିଶୁଦ୍ଧିଯୁକ୍ତ 'ବୈଦେହକ' ଅର୍ଥାତ୍ ବଣିକ ଗୁପ୍ତଚରଙ୍କୁ 'ବୈଦେହକ ବ୍ୟଞ୍ଜନ' କୁହାଯାଏ । ସେ ବୈଶ୍ୟମାନଙ୍କ ବ୍ୟବହାର ସ୍ଥଳରେ ଉପସ୍ଥିତ ହୋଇ ପୂର୍ବୋକ୍ତ ଉଦାସ୍ଥିତ ଓ ଗୃହପତିକ ଗୁପ୍ତଚରମାନଙ୍କପରି ନିଜର ଅନୁଚରମାନଙ୍କ ସାହାଯ୍ୟରେ ବଣିକମାନଙ୍କୁ ରାଜାଙ୍କ ଅନୁକୂଳ ହେବାପାଇଁ ପ୍ରେରଣା ଦେବେ । (୬) ବୌଦ୍ଧ ଭିକ୍ଷୁ—କ୍ଷପଣକ (ଲଙ୍ଗୁଳି ବାବାଜୀ)ଙ୍କ ପରି ମୁଣ୍ଡିତମସ୍ତକ କିମ୍ବା ଶୈବ ପାଶୁପତାଦିଙ୍କପରି ଜଟାଧାରୀ ଗୃହତ୍ୟାଗ କରିବା ଉଦ୍ଦେଶ୍ୟରେ ରହିବା ଗୁପ୍ତଚରଙ୍କୁ 'ତାପସ ବ୍ୟଞ୍ଜନ' କୁହାଯାଏ । ସେ ଜଟାଧାରୀ ବା ମୁଣ୍ଡିତମସ୍ତକ ଶିଷ୍ୟମାନଙ୍କୁ ନେଇ ପ୍ରକାଶ୍ୟରେ ମାସେ ବା ଦୁଇମାସ ବ୍ୟବଧାନରେ ଥରେ ଶାକ, ଫଳ ମୂଳ ଆହାର କରି ଲୋକ ସାଧାରଣଙ୍କୁ ଭୁଲାଇ ବିଶ୍ୱାସୀ କରିନେବେ; କିନ୍ତୁ

---

(୬)—ମୂଳପତ୍ର କରୀରାଗ୍ର ଫଳକାଣ୍ଡାଧିରୂଢ଼କଂ ।
ତ୍ୱକ୍ ପୁଷ୍ପଂ କବକଂ ଚେତି ଶାକଂ ଦଶବିଧଂ ସ୍ମୃତଂ । ଇତି ପ୍ରମାଣଂ ।

ପ୍ରକାଶମଶ୍ନୀୟାତ୍, ଗୂଢ଼ମିଷ୍ଟମାହାରମ୍ । (୭) ବୈଦେହ କାଲ୍ରେବାସିନଶ୍ଚୈନଂ ସମିଦ୍ଧଯୋଗୈରର୍ଚୟେୟୁଃ । ଶିଷ୍ୟାଶ୍ଚାସ୍ୟା ବେଦୟେୟୁଃ—ଅସୌସିଦ୍ଧଃ ସାମେଧିକ ଇତ । ସମେଧାଶା—ସ୍ତିଭିଷ୍ଟାଭିଗଣନାମଙ୍ଗବଦ୍ୟାୟା ଶିଷ୍ୟସଂଜ୍ଞାଭିଶ୍ଚ କର୍ମାଣ୍ୟଭିଜନେଽବସିତା-ନ୍ୟାଦଚେଶଦଲ୍ଲଲଭମଗ୍ନିଦାହଂ ଚୌରଭୟଂ ଦୂଷ୍ୟବଧଂ ତୁଷ୍ଟିଦାନଂ ବଦେଶପ୍ରବୃତ୍ତିଜ୍ଞାନମ୍ ଇଦମଦ୍ୟଶ୍ୱୋ ବା ଭବିଷ୍ୟତୀଦଂ ବା ରାଜା କରିଷ୍ୟତୀତି । (୮) ତଦସ୍ୟ ଗୂଢ଼ାଃ ସତ୍ତ୍ରଣଶ୍ଚ ସମ୍ପାଦୟେୟୁଃ । ସତ୍ତ୍ୱ ପ୍ରଜ୍ଞାବାକ୍ୟଶକ୍ତିସମ୍ପନ୍ନାନାଂ ରାଜଭବ୍ୟମନୁବ୍ୟାହରେନ୍ମନ୍ତ୍ରିସଂଯୋଗଞ୍ଚ । ମନ୍ତ୍ରୀ ଚୈଷାଂ ବୃତ୍ତିକର୍ମଭ୍ୟାଂ ବଯତେତ । ଯେ ଚ କାରଣାଦଭିକ୍ରୁଦ୍ଧା

---

ଲ୍ଲକ୍କାସ୍ୱିତଭାବେ ଅପଣାର ରୁଚି ଅନୁସାରେ ଭୋଜନ କରୁଥିବେ । (୭) ବଣିକବୃତ୍ତିକାରୀ ଶିଷ୍ୟମାନେ ତାପସବେଶଧାରୀ ଗୁପ୍ତଚରଙ୍କୁ ତାଙ୍କର ଇଚ୍ଛିତ ଉତ୍କୃଷ୍ଟ ପଦାର୍ଥ ଲାଭ କରାଇ ଅର୍ଚ୍ଚନା କରିବେ । ଅଥବା ଏହି ତାପସଙ୍କ ପ୍ରସନ୍ନତାରୁ ଆମ୍ଭମାନଙ୍କର ଅର୍ଥସିଦ୍ଧି ହେଲା ଏପରି କପଟଯୁକ୍ତି ଦେଖାଇ ଉକ୍ତ ତାପସଙ୍କୁ ଧନଦାନଦ୍ୱାରା ପୂଜାକରିବେ । ତାପସଙ୍କର ଶିଷ୍ୟମାନେ ମଧ୍ୟ "ଆମ୍ଭମାନଙ୍କ ଗୁରୁମହାରାଜ ଜଣେ ସିଦ୍ଧଯୋଗୀ, ଅତଏବ ଏ ଭବିଷ୍ୟତ୍ ଫଳପ୍ରାପ୍ତି ବିଷୟ ଜାଣିବାରେ ଅଭିଜ୍ଞ ଅଟନ୍ତି" ବୋଲି ପ୍ରଚାର କରିବେ । ଭବିଷ୍ୟତ୍ ଫଳପ୍ରାପ୍ତି ବିଷୟ ଜାଣିବା ଅଭିଳାଷରେ ପ୍ରଶ୍ନକରିବା ପାଇଁ ଆସିଥିବା ବ୍ୟକ୍ତିମାନଙ୍କର କୌଳିକ ବୃତ୍ତି ବିଷୟକୁ ପ୍ରଶ୍ନକର୍ତ୍ତାର ପ୍ରଶ୍ନକାଳୀନ ଅଙ୍ଗଭଙ୍ଗି ଓ ଚେଷ୍ଟାବିଶେଷଦ୍ୱାରା; ଶୁଭାଶୁଭ ଜ୍ଞାନପ୍ରତିପାଦକ ଜ୍ୟୋତିଷାଙ୍ଗ ଶାସ୍ତ୍ରଦ୍ୱାରା (ଆକାଶବାଣୀଦ୍ୱାରା ମଧ୍ୟ) ଏବଂ ପୂର୍ବରୁ ଉକ୍ତ ପ୍ରଶ୍ନକର୍ତ୍ତାମାନଙ୍କ ସମସ୍ତ ସମ୍ବାଦ ସଂଗ୍ରହ କରିଥିବା ଶିଷ୍ୟମାନଙ୍କ ଚକ୍ଷୁ ଭ୍ରୂଲତାଦିର ବିଳାସ ସୂଚନାଦ୍ୱାରା ପ୍ରକାଶ କରିବେ । ତା ପରେ ଅଳ୍ପଲାଭ, ଅଗ୍ନିଦାହ, ଚୌରଭୟ, ଶତ୍ରୁବଧ, ରାଜପ୍ରସନ୍ନତାରୁ ଧନପ୍ରାପ୍ତି, ଦୂରଦେଶବୃତ୍ତାନ୍ତ ଜ୍ଞାନ, ଏହା ଆଜି ସିଦ୍ଧହେବ ବା କାଲି ସିଦ୍ଧହେବ, ଏହି ବିଷୟ ଆଜି ବା କାଲି ରାଜା କରିବେ ବୋଲି ସେମାନଙ୍କୁ ବୁଝାଇବେ । (୮) ତା ପରେ ଏହି ତାପସ ବେଶଧାରୀ ଗୁପ୍ତଚରଙ୍କ ଉପରୋକ୍ତ ଅଳ୍ପଲାଭ, ଅଗ୍ନିଦାହ ପ୍ରଭୃତି ଭବିଷ୍ୟତ୍-ବାଣୀର ସତ୍ୟତା ପ୍ରମାଣିତ କରିବା ଉଦ୍ଦେଶ୍ୟରେ ପ୍ରଚ୍ଛନ୍ନଭାବେ କଳ୍ପିତ ଉପାୟ ଅବଲମ୍ବନ କରିବେ । ଅର୍ଥାତ୍ ସିଦ୍ଧବେଶଧାରୀ ତାପସ ଯାହାଙ୍କୁ

ସ୍ୱାନର୍ଥମାନାଭ୍ୟାଂ ଶମୟେତ୍, ଅକାରଣକ୍ରୁଦ୍ଧାନ୍ ତୂଷ୍ଣୀଂଦଣ୍ଡେନ ରାଜଦ୍ୱିଷ୍ଟକାରଣଶ୍ଚ ।

(୯) ପୂଜିତାଶ୍ଚାର୍ଥମାନାଭ୍ୟାଂ ରାଜ୍ଞା ରାଜୋପଜୀବିନାମ୍,

ଜାନୀୟୁଃ ଶୌଚମିତ୍ୟେତାଃ ପଞ୍ଚସଂସ୍ଥାଃ ପ୍ରକୀର୍ତ୍ତିତାଃ ।

ଅଲ୍ପଲାଭ କଥା କହିଥିବେ ତାଙ୍କୁ କୌଶଳକ୍ରମେ ତାହା ଲାଭ କରାଇଦେବେ ଏବଂ ଗୃହଦାହବିଷୟ ଯାହାଙ୍କୁ କହିଥିବେ କୌଶଳକ୍ରମେ ତାଙ୍କର ଗୃହଦାହ କରାଇ ତାପସଙ୍କର ଭବିଷ୍ୟତ୍‌ବାଣୀକୁ ଯଥାର୍ଥ ପ୍ରମାଣିତ କରାଇଦେବେ । ଧୈର୍ଯ୍ୟ, ବୁଦ୍ଧି, ବାଗ୍ମିତା ଓ ପ୍ରଭୃତିଗୁଣସମ୍ପନ୍ନ ପ୍ରଶ୍ନକର୍ତ୍ତାମାନଙ୍କୁ ଏହି ସିଦ୍ଧତାପସ ରାଜାଙ୍କଠାରୁ ଭବିଷ୍ୟତ୍ ଧନପ୍ରାପ୍ତି ଓ ମନ୍ତ୍ରୀଙ୍କ ସହିତ ସମ୍ବନ୍ଧ-ସ୍ଥାପନ ପ୍ରଭୃତି ବିଷୟକ ଭବିଷ୍ୟତ୍‌ବାଣୀ ଶୁଣାଇବେ ଏବଂ ଯେଉଁ ମନ୍ତ୍ରୀ ଉକ୍ତ ସିଦ୍ଧତାପସ ବେଶଧାରୀ ଗୁପ୍ତଚରଙ୍କୁ ରାଜକାର୍ଯ୍ୟ ସମ୍ପାଦନ ସକାଶେ ନିଯୁକ୍ତ କରିଛନ୍ତି ସେ ଉକ୍ତ ତାପସଙ୍କ ଭବିଷ୍ୟତ୍‌ବାଣୀକୁ ଚରିତାର୍ଥ କରିବା-ପାଇଁ ଉପରୋକ୍ତ ଧୈର୍ଯ୍ୟାଦି ସମ୍ପନ୍ନ ପ୍ରଶ୍ନକର୍ତ୍ତାମାନଙ୍କୁ ସେମାନଙ୍କ ଯୋଗ୍ୟତା ଅନୁସାରେ ଜୀବିକା ଖଞ୍ଜିଦେବେ ଏବଂ ବ୍ୟାପାର ଇତ୍ୟାଦି କରିବା ସକାଶେ ମୂଳଧନ ଯୋଗାଇ ଦେବେ । ଯେଉଁମାନେ, ରାଜା ତାଙ୍କର ପ୍ରକୃତରେ ଅପକାର କରିଥିବା ଯୋଗୁଁ କ୍ରୁଦ୍ଧ ହୋଇଛନ୍ତି ବୋଲି କାପଟିକାଦି ଗୁପ୍ତଚର-ମାନଙ୍କଠାରୁ ଜଣାଯାଇଛି, ମନ୍ତ୍ରୀ ସେମାନଙ୍କୁ ଧନ ଓ ସମ୍ମାନଦାନପୂର୍ବକ ଶାନ୍ତ କରିବେ; ଯେଉଁମାନେ ରାଜାଙ୍କ ଉପରେ ଅକାରଣରେ କ୍ରୁଦ୍ଧ ହୋଇଥିବେ ସେମାନଙ୍କୁ ଗୁପ୍ତଭାବରେ ଦଣ୍ଡିତ କରିବେ ଏବଂ ରାଜଦ୍ୱେଷୀ-ମାନଙ୍କୁ ଗୁପ୍ତ ଉପାୟ ଅବଲମ୍ବନପୂର୍ବକ ମରାଇଦେବେ ବା ଦେଶାନ୍ତରିତ କରାଇଦେବେ । (୯) ରାଜାଙ୍କ ଦ୍ୱାରା ଧନ ସମ୍ମାନ ଲାଭ କରିଥିବା ଗୁପ୍ତଚରମାନେ ରାଜୋପଜୀବୀ ଅମାତ୍ୟମାନଙ୍କର ବୁଦ୍ଧିଶୁଦ୍ଧିକୁ ଉତ୍ତମଭାବେ ଜାଣିରଖିବେ ଏବଂ ଏହି କାପଟିକ, ଉଦାସ୍ଥିତ, ଗୃହପତିକ, ବୈଦେହକ ଓ ତାପସ ବେଶଧାରୀ ଗୁପ୍ତଚରମାନଙ୍କ ମଧ୍ୟରୁ ଜଣକୁ ପ୍ରଧାନ କରି ସେମାନଙ୍କ କାର୍ଯ୍ୟକଳାପକୁ ନେଇ ରାଜା ଗୋଟିଏ ଗୋଟିଏ ସଂସ୍ଥା ସ୍ଥାପନ କରିବେ ।

ଇତି କୌଟଲ୍ୟୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ ଏକାଦଶୋଽଧ୍ୟାୟଃ—ଗୂଢ଼ପୁରୁଷୋତ୍ପତ୍ତୌ ସଂସ୍ଥୋତ୍ପତ୍ତିଃ ।

## ଦ୍ୱାଦଶୋଽଧ୍ୟାୟଃ

## ଅଷ୍ଟମ ପ୍ରକରଣଂ—ଗୂଢ଼ପୁରୁଷ ପ୍ରଣିଧିଃ

### THE INSTITUTION OF SPIES

*( Creation of Wandering Spies )*

( ଗୁପ୍ତଚରମାନଙ୍କୁ ସ୍ୱକାର୍ଯ୍ୟରେ ନିଯୁକ୍ତ କରିବା ବିଷୟ ଏ ଅଧ୍ୟାୟରେ ଆଲୋଚିତ ହେବ । )

(୧) ଯେ ଗୃହ୍ୟ ସମ୍ବନ୍ଧିନୋଽବଶ୍ୟଭର୍ତ୍ତବ୍ୟାସ୍ତେ ଲକ୍ଷଣମଙ୍ଗବିଦ୍ୟାଂ ଜମ୍ଭକବିଦ୍ୟାଂ ମାୟାଗତମାଶ୍ରମଧର୍ମଂ ନିମିତ୍ତମନ୍ତରଚକ୍ରମିତ୍ୟଧୀୟାନାଃ ସତ୍ରିଣାଃ ସଂସର୍ଗବିଦ୍ୟା ବା; (୨) ଯେ ଜନପଦେଶୂରାସ୍ତ୍ୟକ୍ତାତ୍ମାନୋ ହସ୍ତିନଂ ବ୍ୟାଳଂ ବା ଦ୍ରବ୍ୟହେତୋଃ ପ୍ରତିଯୋଧୟେୟୁସ୍ତେ ତୀକ୍ଷ୍ଣାଃ; (୩) ଯେ ବନ୍ଧୁଷୁ ନିଃସ୍ନେହାଃ

---

(୧) ଯେଉଁମାନେ ରାଜସମ୍ପର୍କୀୟ ଓ ରାଜାଙ୍କରେ ଅବଶ୍ୟ ପୋଷଣୀୟ ଏବଂ ହସ୍ତରେଖାଦି ଲକ୍ଷଣଜ୍ଞାପକ ସାମୁଦ୍ରିକ ଶାସ୍ତ୍ର, ବ୍ୟାକରଣାଦି ଅଙ୍ଗବିଦ୍ୟା, କିମ୍ବା ଅଙ୍ଗସ୍ପର୍ଶାଦି ଦ୍ୱାରା ଶୁଭାଶୁଭ ପରିଜ୍ଞାନବିଦ୍ୟା, ବଶୀକରଣ ଅନ୍ତର୍ଦ୍ଧାନାଦି ଜମ୍ଭକବିଦ୍ୟା, ମାୟାଗତ ଅର୍ଥାତ୍ ଇନ୍ଦ୍ରଜାଲବିଦ୍ୟା, ଆଶ୍ରମଧର୍ମ ଅର୍ଥାତ୍ ମନ୍ୱାଦି ଧର୍ମଶାସ୍ତ୍ର, ନିମିତ୍ତ ଅର୍ଥାତ୍ କଂପିଜଳଶବ୍ଦାଦି ଓ ପୂର୍ଣ୍ଣକୁମ୍ଭାଦି ଦର୍ଶନପ୍ରଭୃତି ନିମିତ୍ତଶାସ୍ତ୍ର, ପକ୍ଷିମାନଙ୍କ ଦ୍ୱାରା ଶୁଭାଶୁଭଜ୍ଞାପକ ପକ୍ଷିଶାସ୍ତ୍ର ଓ କାମଶାସ୍ତ୍ରୀୟ ନୃତ୍ୟଗୀତାଦି ସଂସର୍ଗ ବିଦ୍ୟାରେ କୁଶଳ, ସେହି ବ୍ୟକ୍ତିଙ୍କୁ 'ସତ୍ରୀ' କୁହାଯାଏ । (୨) ରାଜ୍ୟରେ ଯେଉଁମାନେ ବୀର, ଦେହ ଓ ପ୍ରାଣପ୍ରତି ଯେଉଁମାନଙ୍କର ଲେଶମାତ୍ର ଆସ୍ଥା ନଥାଏ, ଧନଲାଭ ସକାଶେ ହସ୍ତୀ, ବ୍ୟାଘ୍ର, ସିଂହ ଓ ସର୍ପ ପ୍ରଭୃତି ହିଂସ୍ରଜନ୍ତୁ ସହିତ ଯେଉଁମାନେ ଯୁଦ୍ଧ କରନ୍ତି, ସେମାନଙ୍କୁ 'ତୀକ୍ଷ୍ଣ' କୁହାଯାଏ । (୩) ଯେଉଁମାନେ ଆତ୍ମୀୟସ୍ୱଜନ(ବନ୍ଧୁ)ମାନଙ୍କ ପ୍ରତି ସ୍ନେହଶୂନ୍ୟ, କ୍ରୂର ଓ ଉତ୍ସାହହୀନ, ସେମାନଙ୍କୁ 'ରସଦ' କୁହାଯାଏ । (ଯେ କୌଣସି ବ୍ୟକ୍ତିଙ୍କୁ ଅକୁଣ୍ଠିତ ଚିତ୍ତରେ ବିଷ ଦେଇ ମାରିଦେବାପାଇଁ ଯେଉଁମାନେ ପ୍ରସ୍ତୁତ,

ଦ୍ଭୂରଷ୍ଟାନ୍ସାଷ୍ଟତେ ରସଦାଃ । (୪) ପରିବ୍ରାଜିକାବୃତ୍ତିକାମା ଦରିଦ୍ରା ବିଧବା ପ୍ରଗଲ୍ଭା ବ୍ରାହ୍ମଣ୍ୟନ୍ତଃପୁରେ କୃତସତ୍କାରା ମହାମାତ୍ରକୁଳା-ନ୍ୟଭିଗଚ୍ଛେତ୍ । ଏତୟା ମୁଣ୍ଡାବୃଷଲ୍ୟୋ ବ୍ୟାଖ୍ୟାତାଃ । ଇତି ସଂଚରାଃ । (୫) ତାନ୍ ରାଜା ସ୍ୱବିଷୟେ ମନ୍ତ୍ରିପୁରୋହିତସେନାପତିଯୁବରାଜ-ଦୌବାରିକାନ୍ତର୍ବଂଶିକ ପ୍ରଶାସ୍ତୃସମାହର୍ତୃସନ୍ନିଧାତୃପ୍ରଦେଷ୍ଟୃ-ନାୟକପୌରବ୍ୟାବହାରିକକାର୍ମାନ୍ତିକମନ୍ତ୍ରିପରିଷଦଧ୍ୟକ୍ଷଦଣ୍ଡ ଦୁର୍ଗାନ୍ତ ପାଳାଟବିକେଷୁ ଶ୍ରଦ୍ଧେୟ ଦେଶବେଷଶିଳ୍ପଭାଷାଭିଜନା-

---

ସେମାନଙ୍କୁ 'ରସଦ' କୁହାଯାଏ) । (୪) ମହାମାତ୍ର ପ୍ରଭୃତି ଉଚ୍ଚକୋଟିର ରାଜକର୍ମଚାରୀଙ୍କ ଶୌଚାଶୌଚ ପରିଜ୍ଞାନ ସକାଶେ ନିଯୁକ୍ତ ହୋଇଥିବା ଓ ରାଜାଙ୍କ ଅନ୍ତଃପୁରରେ ସତ୍କାର ପାଉଥିବା ସନ୍ନ୍ୟାସୀବେଶଧାରିଣୀ ବୃତ୍ତିକାମା (ଭୋଗାର୍ଥିନୀ) ଦରିଦ୍ରା, ବିଧବା ଓ ବୁଦ୍ଧିମତୀ ବୟସ୍କା ବ୍ରାହ୍ମଣୀଙ୍କୁ ପରିବ୍ରାଜିକା (ଭିକ୍ଷୁଣୀ) କୁହାଯାଏ । ଏହି ପରିବ୍ରାଜିକା ମହାମାତ୍ରାଦିମାନଙ୍କ ଗୃହକୁ ସତ୍କାର ପାଇବା ଅଭିଳାଷରେ ବାରଂବାର ଗମନ କରେ । ଏହି ବ୍ରାହ୍ମଣୀ ଭିକ୍ଷୁଣୀପରି ବୌଦ୍ଧଭିକ୍ଷୁଣୀ ଓ ଶୁଦ୍ରାମାନଙ୍କୁ ମଧ୍ୟ ନିଯୁକ୍ତ କରାଯାଏ । ଉପରୋକ୍ତ ସତ୍ରୀ, ତୀକ୍ଷ୍ଣ, ରସଦ ଓ ଭିକ୍ଷୁଣୀମାନଙ୍କର କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନଥିବା ଯୋଗୁଁ ଏମାନଙ୍କୁ ଚର ନକହି 'ସଂଚର' କୁହାଯାଏ । (୫) ରାଜା ନିଜ ଦେଶର ମନ୍ତ୍ରୀ, ପୁରୋହିତ, ସେନାପତି, ଯୁବରାଜ, ଦୌବାରିକ (ଦ୍ୱାରୀ), ଅନ୍ତଃପୁର ଅଧିକାରୀ, ପ୍ରଶସ୍ତା (ଛାଉଣିପକାଇବା କର୍ମଚାରୀ), ସମାହର୍ତ୍ତା (ରାଜସ୍ୱ ଅସୁଲର ଅଧିକାରୀ), ସନ୍ନିଧାତା (ଭଣ୍ଡାର ରକ୍ଷକ), ପ୍ରଦେଷ୍ଟା (କଣ୍ଟକଶୋଧନ ଅଧିକାରୀ), ନାୟକ, ପୁରମୁଖ୍ୟ, କାର୍ମାନ୍ତିକ (ଖଣିକର୍ମାଧିକାରୀ), ମନ୍ତ୍ରୀପରିଷଦର ଅଧ୍ୟକ୍ଷ, ଦଣ୍ଡପାଳ (ସୈନ୍ୟ ଓ ସେନା ମୁଖ୍ୟାଦିଙ୍କର ନେତା), ଦୁର୍ଗପାଳ (ପ୍ରାକାରାଦି ରକ୍ଷକ), ଅନ୍ତପାଳ (ସୀମାରକ୍ଷକ) ଓ ଆଟବିକ (ଆରଣ୍ୟକ ରାଜା) ପ୍ରଭୃତିଙ୍କ ବୁଦ୍ଧିଶୁଦ୍ଧି ଜାଣିବାପାଇଁ ଏମାନେ (ଏହି ସଂଚରମାନେ) ଶ୍ରଦ୍ଧାକରୁଥିବା ଦେଶ, ବେଶ, ଶିଳ୍ପ (କଳାକୌଶଳ), ପ୍ରାଚ୍ୟପାଶ୍ଚାତ୍ୟାଦି ବ୍ୟାବହାରିକ ଭାଷା ଓ ବ୍ରାହ୍ମଣ କ୍ଷତ୍ରିୟାଦି ଅଭିଜାତି ଇତ୍ୟାଦିରେ କପଟଭାବେ ସତର୍କତାର ସହିତ ସଜ୍ଜିତ କରାଇ ଉକ୍ତ ମନ୍ତ୍ରୀପ୍ରଭୃତି ସେବ୍ୟ ଅଧିକାରୀମାନେ

**ପଦେଶାନ୍ ଭକ୍ତିତଃ ସାମର୍ଥ୍ୟଯୋଗାଚ୍ଚାପସର୍ପୟେତ୍ । (୭) ତେଷାଂ ବାହ୍ୟଂ ଚରଂ ଛତ୍ରଭୃଂଗାରବ୍ୟଜନପାଦୁକାସନଯାନବାହନୋପଗ୍ରାହିତା ସ୍ତୀକ୍ଷ୍ଣା ବିଦ୍ୟୁଃ । ତଂ ସତ୍ତ୍ରିଣଃ ସଂସ୍ଥାସ୍ୱର୍ପୟେୟୁଃ । (୮) ସୁଦାରାଳିକ-ସ୍ନାପକସଂବାହକାସ୍ତରକକଳ୍ପକପ୍ରସାଧକୋଦକପରିଚାରକା ରସଦାଃ, କୁବ୍ଜବାମନକିରାତମୂକବଧିରଜଡ଼ାନ୍ଧଚ୍ଛଦ୍ମାନୋ ନଟନର୍ତ୍ତକଗାୟନ-ବାଦକବାଗ୍‌ଜୀବନକୁଶୀଲବାଃ ସ୍ତ୍ରିୟଶ୍ଚାଭ୍ୟନ୍ତରଂ ଚରଂ ବିଦ୍ୟୁଃ । ତଂ**

---

ଯେଉଁ ଯେଉଁ ଦେବତାର ଉପାସକ ସେହି ସେହି ଦେବତାଙ୍କର ଭକ୍ତ ବେଶରେ ନିଜ ଶକ୍ତିଅନୁରୂପ ଛତ୍ର ଚାମର ଗ୍ରହଣାଦି କର୍ମରେ ନିଯୁକ୍ତ ହୋଇ ସେମାନଙ୍କ ଆଚାର ବ୍ୟବହାର ଇତ୍ୟାଦି ଗୁପ୍ତଭାବରେ ସଂଗ୍ରହ କରି ଜଣାଇବା ସକାଶେ ଏମାନଙ୍କୁ ନିଜ ରାଜ୍ୟରେ ସଂଚାରିତ କରାଇବେ । (୭) ଉପରୋକ୍ତ ସଂଚାରମାନଙ୍କ ମଧ୍ୟରୁ ତୀକ୍ଷ୍ଣ ନାମକ ସଂଚାର ମନ୍ତ୍ରୀପ୍ରଭୃତି ଅଧିକାରୀମାନଙ୍କୁ ଛତ୍ର, ଭୃଙ୍ଗାର (ସ୍ୱର୍ଣ୍ଣନିର୍ମିତ ଜଳପାତ୍ରବିଶେଷ ବା ଝରି), ବ୍ୟଜନ (ବିଞ୍ଚଣା), ପାଦୁକା, ଆସନ, ଯାନ (ପାଲିଙ୍କି, ସବାରି, ଟାମଜାନ ପ୍ରଭୃତି) ଓ ବାହନ ଅର୍ଥାତ୍ ଅଶ୍ୱ ହସ୍ତୀ ପ୍ରଭୃତିଙ୍କର ଉପଗ୍ରହଣ ବୃତ୍ତିଦ୍ୱାରା ସେବାକରି ସେମାନଙ୍କର ବାହ୍ୟ ସମାଚାର ସଂଗ୍ରହ କରିବେ ଏବଂ ଉକ୍ତ ସମାଚାରକୁ ସତ୍ତ୍ରୀନାମକ ସଂଚାରମାନେ ପୂର୍ବୋକ୍ତ ଗୁପ୍ତଚର ସଂସ୍ଥାକୁ ଅର୍ପଣ କରିବେ । (୮) ସୁଲଭ ଉପାୟରେ ରାଜଦ୍ୱେଷକାରୀମାନଙ୍କୁ ଅର୍ଥାତ୍ ଦୂଷ୍ୟ ଅମାତ୍ୟ ପ୍ରଭୃତିଙ୍କୁ ବିଷପ୍ରୟୋଗ କରିବା ସକାଶେ ସେମାନଙ୍କ ଗୃହରେ ସୂପକାର, ଭୋଜନକାରକ, ସ୍ନାନକାରକ, ମର୍ଦ୍ଦନକାରକ, ଆସ୍ତରକ (ଶେଯ ବିଛାଇବା ବ୍ୟକ୍ତି), ନାପିତ, ବେଶକାରୀ, ଜଳଯୋଗାଣକାରୀ ଇତ୍ୟାଦି ଛଦ୍ମବେଶରେ ନିଯୁକ୍ତ ଥିବା 'ରସଦ' ନାମକ ଗୁପ୍ତଚର, କୁବ୍ଜ, ବାମନ, କିରାତ, ମୂକ, ବଧିର, ଜଡ଼, ଅନ୍ଧ ଇତ୍ୟାଦି କପଟବେଶରେ ଜୀବିକା ନିର୍ବାହ କରୁଥିବା ଗୁପ୍ତଚର, ନଟ, ନର୍ତ୍ତକ, ଗାୟକ, ବାଦକ, ଗଳ୍ପସାଗର ବା ପୁରାଣପଣ୍ଡା, କୁଶୀଳବ ଅର୍ଥାତ୍ ଖେଳ ତମାସା କରିବା କେଳା ପ୍ରଭୃତି ବ୍ୟକ୍ତି ଓ ପ୍ରତାରଣକୁଶଳା ସ୍ତ୍ରୀ କିମ୍ବା ନପୁଂସକ ଗୁପ୍ତଚରମାନଙ୍କୁ ଅଭ୍ୟନ୍ତର ଗୁପ୍ତଚରରୂପେ ନିଯୁକ୍ତ କରିବେ । ଏମାନେ ସଂଗ୍ରହ କରିଥିବା ସମାଚାର ଓ ବିଷଦାନ ପ୍ରଭୃତି କାର୍ଯ୍ୟର ବିବରଣୀ ଭିକ୍ଷୁକୀ ବେଶଧାରୀ ସଂଚାରମାନେ

ଭିକ୍ଷୁକ୍ୟାଃ ସଂସ୍ଥାସ୍ୱର୍ପୟେୟୁଃ; (୮) ସଂସ୍ଥାନାମନ୍ତେବାସିନଃ ସଂଜ୍ଞାଲିପି-ଭିଶ୍ଚାରସଂଚରଂ କୁର୍ଯୁଃ । ନଚେନ୍ୟାନ୍ୟଂ ସଂସ୍ଥାସ୍ତେ ବା ବିଦୁଃ; (୯) ଭିକ୍ଷୁକୀ ପ୍ରତିଷେଧେ ଦ୍ୱାସ୍ଥପରଂପରା ମାତାପିତୃବ୍ୟଂ ଜନାଃ ଶିଳ୍ପକାରକାଃ କୁଶୀଲବା ଦାସେ୍ୟା ବା ଗୀତପାଠ୍ୟବାଦ୍ୟଭାଣ୍ଡଗୂଢ଼ଲେଖ୍ୟ ସଂଜ୍ଞାଭିର୍ବାଚରଂନିର୍ହରେୟୁଃ । ଦୀର୍ଘରୋଗୋନ୍ମାଦାଗ୍ନିରସବିସର୍ଗେଣ

---

ଉପରୋକ୍ତ ଗୁପ୍ତଚର ସଂସ୍ଥାରେ ଅର୍ପଣ କରିବେ । (୮) ଗୁପ୍ତଚରସଂସ୍ଥାର କର୍ମଚାରୀଗଣ ନିଜନିଜର ସାଂକେତିକ ଲିପିଦ୍ୱାରା ବାହ୍ୟ ଓ ଅଭ୍ୟନ୍ତର ଚରମାନଙ୍କ କର୍ତ୍ତୃକ ସଂଗୃହୀତ ଗୁପ୍ତସମ୍ବାଦଗୁଡ଼ିକୁ ପତ୍ରରେ ଉଲ୍ଲେଖକରି ରାଜାଙ୍କ ନିକଟରେ ପହଞ୍ଚାଇଦେବେ । ଗୋଟିଏ ଗୁପ୍ତଚରସଂସ୍ଥା ଅନ୍ୟ ଗୁପ୍ତଚରସଂସ୍ଥାର ବିଷୟ ଏବଂ ଗୋଟିଏ ସଂଚର ଅନ୍ୟ ସଂଚରର ବିଷୟ ମଧ୍ଯ ଯେପରି ଆଦୌ ଜାଣିପାରିବ ନାହିଁ ସେପରି ବ୍ୟବସ୍ଥା କରିବାକୁ ହେବ । (୯) ମନ୍ତ୍ରୀ ପୁରୋହିତ ପ୍ରଭୃତିଙ୍କ ଗୃହରେ ସୂପକାରାଦି ଛଦ୍ମବେଶରେ ନିଯୁକ୍ତ ହୋଇଥିବା ଗୁପ୍ତଚରମାନଙ୍କଠାରୁ ଗୁପ୍ତସଂବାଦ ସଂଗ୍ରହକରି ରାଜାଙ୍କ ନିକଟରେ ପହଞ୍ଚାଇବା ପାଇଁ ନିଯୁକ୍ତ ହୋଇଥିବା ଭିକ୍ଷୁକୀ ନାମକ ସଂଚର ଯଦି ଉକ୍ତ ବ୍ୟକ୍ତିମାନଙ୍କ ଗୃହରେ ପ୍ରତିରୋଧ ହେତୁରୁ ପ୍ରବେଶ କରିନପାରେ, ତେବେ ଦ୍ୱାସ୍ଥପରଂପରା ଅର୍ଥାତ୍ ଉପରୋକ୍ତ ବ୍ୟକ୍ତିମାନଙ୍କ ଗୃହରେ ଦ୍ୱାରୀ ହିସାବରେ ନିଯୋଜିତ ହୋଇଥିବା ଗୁପ୍ତଚରମାନେ, ଉକ୍ତ ସୂପକାର ପ୍ରଭୃତି ଗୁପ୍ତଚରମାନଙ୍କଠାରୁ ଗୁପ୍ତସମ୍ବାଦ ସଂଗ୍ରହ କରି ଜଣକପରେ ଜଣେ ଅର୍ଥାତ୍ ଭିତର ଦ୍ୱାରୀ ତା'ପର ଦ୍ୱାରୀକି ଏବଂ ସେ ତା'ପର ଦ୍ୱାରୀକି, ଏହି ପରଂପରାକ୍ରମରେ ଗୁପ୍ତସମ୍ବାଦକୁ ଭିକ୍ଷୁକୀ ନିକଟରେ ପହଞ୍ଚାଇଦେବେ । ଏପରି ହୋଇ ନପାରିଲେ ଗୃହଭିତରେ ଥିବା ଉକ୍ତ ସୂପକାରାଦି ଗୁପ୍ତଚରମାନଙ୍କ ମାତାପିତା ବୋଲି ପରିଚୟ ଦେଇ ବୃଦ୍ଧପୁରୁଷ ଓ ସ୍ତ୍ରୀ ସଂଚରମାନେ ଗୁପ୍ତସଂବାଦ ଆହରଣ କରିବେ । ଅଥବା ବେଶକାରିଣୀ, ଗାୟକଗାୟିକା ଓ ଘରଗୃହିକା ବେଶରେ ମଧ୍ଯ ସଂଚରମାନେ ଉକ୍ତ ଗୁପ୍ତସଂବାଦ ଆହରଣ କରିବେ କିମ୍ବା ଗୁପ୍ତସମ୍ବାଦସୂଚକ ଗୀତ, ଶ୍ଳୋକପାଠ, ବାଦ୍ୟ, ଭାଣ୍ଡଗୂଢ଼ଲେଖ୍ୟ ଅର୍ଥାତ୍ ଜଳକୁମ୍ଭ ପ୍ରଭୃତିରେ ଗୁପ୍ତପତ୍ର ବା ଉକ୍ତ କୁମ୍ଭଉପରେ ଦିଆଯାଇଥିବା କୌଣସି ସାଙ୍କେତିକ ଚିହ୍ନମାନଙ୍କ ଦ୍ୱାରା ସଂବାଦ ଜଣାଇପାରିବା କୁଶଳବ୍ୟକ୍ତିମାନଙ୍କ ସାହାଯ୍ୟରେ ଗୁପ୍ତ-

**ବା ଗୂଢ଼ନିର୍ଗମନମ୍ । (୧୦) ତ୍ରୟାଣାମେକବାକ୍ୟେ ସଂପ୍ରତ୍ୟୟଃ । ତେଷାମଭୀକ୍ଷ୍ଣବିନିପାତେ ତୂଷ୍ଣୀଦଣ୍ଡଃ ପ୍ରତିଷେଧୋ ବା । (୧୧) କଣ୍ଟକଶୋଧନୋକ୍ତାଶ୍ଚାପସର୍ପାଃ ପରେଷୁ କୃତବେତନା ବସେୟୁଃ ସଂପାତନିଶ୍ଚାରାର୍ଥଂ, ତ ଉଭୟବେତନାଃ ।**

---

ସମ୍ବାଦକୁ ବାହାରକୁ ନେଇ ଆସିବେ । ଏ ସମସ୍ତ ଉପାୟ ବିଫଳ ହେଲେ ସୂପକାରାଦି ଛଦ୍ମବେଶରେ ଥିବା ଗୁପ୍ତଚରମାନେ ନିଜେ ଦୀର୍ଘରୋଗ, (ଗୁଲ୍ମାଦି) ଓ ଉନ୍ମାଦ ପ୍ରଭୃତି ରୋଗର ବାହାନା ଦେଖାଇ ଗୃହରେ ଅଗ୍ନିସଂଯୋଗ କରି କିମ୍ବା କାହାକୁହେଲେ ବିଷପ୍ରୟୋଗ କରି ବାହାରକୁ ଚାଲିଆସିବେ; ଅର୍ଥାତ୍ ଅଗ୍ନିସଂଯୋଗ ଓ ବିଷପ୍ରୟୋଗଦ୍ୱାରା ଗୃହମଧ୍ୟରେ କୋଲାହଳ ସୃଷ୍ଟିହେବା ଅବସରରେ ଉକ୍ତ ସୂପକାରାଦି ଗୁପ୍ତଚରମାନେ ଗୁପ୍ତସଂବାଦ ନେଇ ବାହାରକୁ ଚମ୍ପଟ କରିବେ । (୧୦) କେହି କାହାକୁ ଜାଣିନଥିବା ତିନିଜଣ ଗୁପ୍ତଚର ଯଦି ଏକାପରି ଅର୍ଥବୋଧ ହେଉଥିବା ଗୁପ୍ତସମ୍ବାଦ ପ୍ରକାଶ କରନ୍ତି, ତେବେ ତାହା ଠିକ୍ ବୋଲି ବିଶ୍ୱାସ କରିବେ । କିନ୍ତୁ ଏହି ଗୁପ୍ତଚରମାନେ ପରସ୍ପରବିରୋଧୀ ବା ଅସମାନ ସମ୍ବାଦ ଦେଲେ, ସେମାନଙ୍କ ମଧ୍ୟରୁ ମିଥ୍ୟା ସମ୍ବାଦ ଦେବା ଗୁପ୍ତଚରକୁ ଗୁପ୍ତଦଣ୍ଡ ଦେବେ ବା କାର୍ଯ୍ୟରୁ ଅନ୍ତର କରିଦେବେ । (୧୧) ଏ ବାଦେ କଣ୍ଟକଶୋଧନ ଅଧିକରଣୋକ୍ତ ସିଦ୍ଧ, ପ୍ରବ୍ରଜିତ ଓ ଚକ୍ରଚର ପ୍ରଭୃତି ଚରମାନଙ୍କୁ ମଧ୍ୟ ନିଯୁକ୍ତ କରିବାକୁ ହେବ । ଏମାନେ ଶତ୍ରୁରାଜ୍ୟରେ ମନ୍ତ୍ରୀ, ଅମାତ୍ୟ ପ୍ରଭୃତି ବିଶିଷ୍ଟ ରାଜକର୍ମଚାରୀମାନଙ୍କ ଗୃହରେ ସେମାନଙ୍କଠାରୁ ବେତନ ପାଇ ସାମର୍ଥ୍ୟ ଅନୁସାରେ ସେବା କରିବାକୁ ନିଯୁକ୍ତ ହେବେ । ନିଜ ରାଜାଙ୍କ ଗୁପ୍ତଚରମାନେ ଅନାୟାସରେ ନିଜ କାର୍ଯ୍ୟସାଧନ କରିବା ସକାଶେ ଏବଂ ଶତ୍ରୁରାଜ୍ୟର ଗୁପ୍ତଚରମାନେ ନିଜ ରାଜାଙ୍କ ଦେଶକୁ ଯେପରି ନ ଆସିବାକୁ ଇଚ୍ଛାକରିବେ ସେଥିସକାଶେ ଏମାନେ ବ୍ୟବସ୍ଥା କରିବେ । ଏମାନେ ନିଜ ରାଜାଙ୍କଠାରୁ ଓ ଶତ୍ରୁରାଜ୍ୟର ମନ୍ତ୍ରୀ, ଅମାତ୍ୟ ପ୍ରଭୃତି ଯାହାଙ୍କ ପାଖରେ ଚାକିରି କରିବେ, ସେମାନଙ୍କ ଠାରୁ ବେତନ ପାଇବା ଯୋଗୁଁ ଏମାନଙ୍କୁ ଉଭୟ ବେତନଭୋଗୀ ଚର

(୧୨) ଗୃହୀତ ପୁତ୍ରଦାରାଂଶ୍ଚ କୁର୍ଯ୍ୟାଦୁଭୟବେତନାନ୍ ।
ତାଂଶ୍ଚାରପ୍ରହିତାନ୍ ବିଦ୍ୟାତେଷାଂ ଶୌଚଞ୍ଚ ତଦ୍‌ବିଧୈଃ ॥
(୧୩) ଏବଂ ଶତ୍ରୌ ଚ ମିତ୍ରେ ଚ ମଧ୍ୟମେ ଚାବପେଚ୍ଚରାନ୍ ।
ଉଦାସୀନେ ଚ ତେଷାଂ ଚ ତୀର୍ଥେଷ୍ୱଷ୍ଟାଦଶସ୍ୱପି ॥
(୧୪) ଅନ୍ତର୍ଗୃହଚରାସ୍ତେଷାଂ କୁବ୍‌ଜବାମନଷଣ୍ଡକାଃ ।
ଶିଳ୍ପବତ୍ୟଃ ସ୍ତ୍ରିୟୋ ମୂକାଶ୍ଚିତ୍ରାଶ୍ଚ ମ୍ଳେଚ୍ଛଜାତୟଃ ॥
(୧୫) ଦୁର୍ଗେଷୁ ବଣିଜଃ ସଂସ୍ଥା ଦୁର୍ଗାନ୍ତେ ସିଦ୍ଧତାପସାଃ ।
କର୍ଷକୋଦାସ୍ଥିତା ରାଷ୍ଟ୍ରେ ରାଷ୍ଟ୍ରାନ୍ତେ ବ୍ରଜବାସିନଃ ॥
(୧୬) ବନେ ବନଚରାଃ କାର୍ଯ୍ୟାଃ ଶ୍ରମଣାଟବିକାଦୟଃ ।
ପରପ୍ରବୃତ୍ତିଜ୍ଞାନାର୍ଥାଃ ଶୀଘ୍ରାଶ୍ଚାରପରଂପରାଃ ॥

---

କୁହାଯାଏ । (୧୨) ରାଜା, ଉଭୟବେତନଭୋଗୀ ଗୁପ୍ତଚରମାନଙ୍କ ପୁତ୍ରଭାର୍ଯ୍ୟାପ୍ରଭୃତିଙ୍କୁ ଅନ୍ନବସ୍ତ୍ରାଦିର ବ୍ୟବସ୍ଥା କରି ନିଜ ରାଜ୍ୟରେ ରଖାଇ ପରରାଜ୍ୟକୁ କେବଳ ଏହି ଗୁପ୍ତଚରଙ୍କୁ ପଠାଇବେ ଏବଂ ଏହି ଉପାୟରେ ଶତ୍ରୁରାଜା ପଠାଇଥିବା ଉଭୟବେତନଭୋଗୀ ଗୁପ୍ତଚରଙ୍କୁ ଓ ନିଜେ ପ୍ରେରଣ କରିଥିବା ସ୍ୱକୀୟ ଉଭୟବେତନଭୋଗୀ ଗୁପ୍ତଚରଙ୍କ କାର୍ଯ୍ୟକଳାପକୁ ଅନ୍ୟ ଉଭୟବେତନଭୋଗୀ ଗୁପ୍ତଚରମାନଙ୍କଦ୍ୱାରା ଅନୁସନ୍ଧାନ କରାଇ ଜାଣିବେ । (୧୩) ରାଜା ଏହିପରି ଶତ୍ରୁ, ମିତ୍ର, ମଧ୍ୟମ ଓ ଉଦାସୀନ ରାଜାମାନଙ୍କ ପାଖରେ ଏବଂ ଏମାନଙ୍କର ମନ୍ତ୍ରୀ, ପୁରୋହିତ ପ୍ରଭୃତି ପୂର୍ବୋକ୍ତ ଅଷ୍ଟାଦଶ ତୀର୍ଥମାନଙ୍କ ପାଖରେ ମଧ୍ୟ ଗୁପ୍ତଚରମାନଙ୍କୁ ନିଯୁକ୍ତ କରିବେ । (୧୪) କୁବ୍‌ଜ, ବାମନ, ନପୁଂସକ, ବେଶକାରିଣୀ ସ୍ତ୍ରୀ, ମୂକ ଓ ନାନାବିଧ ନୀଚଜାତିର ବ୍ୟକ୍ତିମାନଙ୍କୁ ଶତ୍ରୁରାଜା ଓ ତାଙ୍କର ମନ୍ତ୍ରୀ ପୁରୋହିତାଦି ତୀର୍ଥମାନଙ୍କ ଗୃହରେ ଅନ୍ତର୍ଗୃହ ଚରରୂପେ ନିଯୁକ୍ତ କରିବେ । (୧୫) ଜଳାଦି ଦୁର୍ଗପ୍ରାୟ ସ୍ଥାନମାନଙ୍କରେ ଓ ରାଜଧାନୀ ପ୍ରଭୃତି ମହାନଗରୀମାନଙ୍କରେ ବଣିକ୍‌ମାନଙ୍କ ସଂସ୍ଥାକୁ, ଦୁର୍ଗସୀମାରେ ସିଦ୍ଧତାପସମାନଙ୍କ ସଂସ୍ଥାକୁ, ରାଜ୍ୟରେ କୃଷକ ଓ ଉଦାସ୍ଥିତମାନଙ୍କ ସଂସ୍ଥାକୁ ଏବଂ ରାଜ୍ୟସୀମାରେ ଗୋପାଳମାନଙ୍କୁ ଗୁପ୍ତଚର କାର୍ଯ୍ୟରେ ନିଯୁକ୍ତ କରିବେ । (୧୬) ବନରେ ଶବର କିରାତାଦିଙ୍କୁ ଓ ବୌଦ୍ଧଭିକ୍ଷୁ (ଶ୍ରମଣ) ବନପାଳ ପ୍ରଭୃତିଙ୍କୁ ବନଚର (ବଣରେ ବୁଲିବା

(୧୭) ପରସ୍ୟ ଚୈତେ ବୋଦ୍ଧବ୍ୟାସ୍ତାଦୃଶୈରେବ ତାଦୃଶାଃ ।
ଚାରସଂଚାରିଣଃ ସଂସ୍ଥା ଗୂଢ଼ାଶ୍ଚାଗୂଢ଼ସଂଜ୍ଞିତାଃ ॥

(୧୮) ଅକୃତ୍ୟାନ୍ କୃତ୍ୟପକ୍ଷୀୟୈର୍ଦର୍ଶିତାନ୍ କାର୍ଯ୍ୟହେତୁଭିଃ ।
ପରାପସର୍ପଜ୍ଞାନାର୍ଥଂ ମୁଖ୍ୟାନନ୍ତେଷୁ ବାସୟେତ୍ ॥



ଗୁପ୍ତଚର) ରୂପେ ନିଯୁକ୍ତ କରିବେ ଏବଂ ଶତ୍ରୁର ବ୍ୟାପାର ଜାଣିବାପାଇଁ ପ୍ରୟୋଜନ ହେଉଥିବା ଦ୍ରୁତଗାମୀ ବ୍ୟକ୍ତିମାନଙ୍କୁ ଚାର ପରଂପରା ସକାଶେ ନିଯୁକ୍ତ କରିବେ । (୧୭) ରାଜା ଶତ୍ରୁର ଗୁପ୍ତଚର ଅର୍ଥାତ୍ ନିଜର ସ୍ୱରୂପ ଲୁଚାଇବା ପାଇଁ ଅନ୍ୟ ବେଶରେ ପ୍ରକାଶ୍ୟଭାବେ ଭ୍ରମଣ କରୁଥିବା ଚାରସଂଚାରୀ (ସତ୍ରୀ, ତୀକ୍ଷ୍ଣ ପ୍ରଭୃତି ଗୁପ୍ତଚର) ଓ କାପଟିକ, ଉଦାସ୍ଥିତ ପ୍ରଭୃତି ସଂସ୍ଥାମାନଙ୍କୁ ତାଦୃଶ ନିଜଦେଶୀୟ ଗୁପ୍ତଚରମାନଙ୍କଦ୍ୱାରା ଜାଣିବାର ବ୍ୟବସ୍ଥା କରିବେ; (୧୮) ଏବଂ ରାଜ୍ୟର ମୁଖ୍ୟବ୍ୟକ୍ତିମାନଙ୍କୁ ଅସାଧୁ ଓ ବିରୁଦ୍ଧ ବ୍ୟକ୍ତି ବୋଲି ସେମାନଙ୍କ କାର୍ଯ୍ୟକାରଣଦ୍ୱାରା ବାହାରେ ଦର୍ଶାଇ ଶତ୍ରୁର ଗୁପ୍ତଚରମାନଙ୍କୁ ଜାଣିବାପାଇଁ ରାଜ୍ୟସୀମାରେ ରଖାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ ଦ୍ୱାଦଶୋଽଧ୍ୟାୟଃ—ଗୂଢ଼ପୁରୁଷୋତ୍ପତ୍ତୌ ସଂଚାରୋତ୍ପତ୍ତିର୍ଗୂଢ଼ପୁରୁଷ ପ୍ରଣିଧିଃ ।



## ତ୍ରୟୋଦଶୋଽଧ୍ୟାୟଃ

## ନବମ ପ୍ରକରଣଂ । ସ୍ୱବିଷୟେ କୃତ୍ୟାକୃତ୍ୟପକ୍ଷରକ୍ଷଣମ୍

PROTECTION OF PARTIES FOR OR AGAINST ONE'S OWN CAUSE IN ONE'S OWN STATE.

[ ସ୍ୱଦେଶରେ 'କୃତ୍ୟ' ଅର୍ଥାତ୍ କ୍ରୁଦ୍ଧ, ଲୁବ୍ଧ, ଭୀତ ଓ ଅବମାନିତ ବ୍ୟକ୍ତି
ଯେ କି ଶତ୍ରୁର ଭେଦ ପ୍ରୟୋଗରେ ଭୁଲି
ତା'ର ବଶବର୍ତ୍ତୀ ହୋଇଯାଇଛି
ଏବଂ
'ଅକୃତ୍ୟ' ଅର୍ଥାତ୍ ଶତ୍ରୁର ଭେଦପ୍ରୟୋଗରେ ନ ଭୁଲି ରହିଛି,
ଏ ଉଭୟଙ୍କର ଶତ୍ରୁର 'ଉପଜାପ' ଅର୍ଥାତ୍ ଭେଦପ୍ରୟୋଗରୁ ରକ୍ଷଣ । ]

(୧) କୃତମହାମାତ୍ୟାପସର୍ପଃ ପୌରଜାନପଦାନପସର୍ପୟେତ୍ । (୨) ସତ୍ତ୍ରିଣୋ ଦ୍ୱନ୍ଦ୍ୱିନସ୍ତୀର୍ଥସଭାଶାଲାପୂଗଜନସମବାୟେଷୁ ବିବାଦଂ କୁର୍ୟୁଃ-ସର୍ବଗୁଣସମ୍ପନ୍ନଶ୍ଚାୟଂ ରାଜା ଶ୍ରୂୟତେ । ନ ଚାସ୍ୟ କଶ୍ଚିଦ୍ ଗୁଣୋ ଦୃଶ୍ୟତେ ଯଃ ପୌରଜାନପଦାନ୍ ଦଣ୍ଡକରାଭ୍ୟାଂ

---

(୧) ପୂର୍ବୋକ୍ତ ମନ୍ତ୍ରୀ, ପୁରୋହିତ, ଅମାତ୍ୟ ପ୍ରଭୃତିଙ୍କ ନିକଟରେ ଗୁପ୍ତଚର ପ୍ରୟୋଗକରିବା ପରେ, ପୌର ଓ ଜାନପଦ (ନଗରବାସୀ ଓ ରାଜ୍ୟବାସୀ) ସାଧାରଣ ପ୍ରଜାଙ୍କର ରାଜାଙ୍କପ୍ରତି ଥିବା ଅନୁରାଗ ଓ ବିରାଗଭାବ ଜାଣିବାପାଇଁ ରାଜା ସେମାନଙ୍କଠାରେ ମଧ୍ୟ ଗୁପ୍ତଚରମାନଙ୍କୁ ପ୍ରୟୋଗ କରିବେ । (୨) ସତ୍ତ୍ରୀନାମକ ଗୁପ୍ତଚରଗଣ ତୀର୍ଥ, ସଭା, ପାନ୍ଥଶାଳା (ଧର୍ମଶାଳା), ଅନ୍ନଛତ୍ର, ଶ୍ରମିକଗୋଷ୍ଠୀ, ହାଟ, ମେଳା ପ୍ରଭୃତି ଜନସମାଗମ ସ୍ଥାନରେ ଥିବା ଲୋକମାନଙ୍କ ମଧ୍ୟରେ ପରସ୍ପର କପଟ କଳହ ଲଗାଇ ରାଜାଙ୍କ ସପକ୍ଷରେ ଓ ବିପକ୍ଷରେ ବାଦବିବାଦ କରାଇବେ । ଏକ ସତ୍ତ୍ରୀ କହିବେ, "ଏହି ରାଜା ସର୍ବଗୁଣସମ୍ପନ୍ନ ବୋଲି ଶୁଣାଯାଏ ।" ଅନ୍ୟ ସତ୍ତ୍ରୀ ଏ କଥାର ବିରୋଧ କରି କହିବେ, "ଏ ରାଜାଙ୍କର କୌଣସି ଗୁଣ ଦେଖାଯାଉନାହିଁ; ଏ ପୁରବାସୀ ଓ ରାଜ୍ୟବାସୀ ପ୍ରଜାମାନଙ୍କୁ ଦଣ୍ଡ ଓ କରଦ୍ୱାରା ପୀଡ଼ା ଦିଅନ୍ତି ।"

ପୀଡ଼ୟନ୍ତ ଇତି । (ଗ) ତତ୍ର ଯେଽନୁପ୍ରଶଂସେୟୁସ୍ତାନିତରସ୍ତଂ ଚ ପ୍ରତିଷେଧୟେତ୍—ମାତ୍ସ୍ୟନ୍ୟାୟାଭିଭୂତାଃ ପ୍ରଜା ମନୁଂ ବୈବସ୍ୱତଂ ରାଜାନଂ ¶ ଚକ୍ରିରେ । ଧାନ୍ୟ ଷଡ଼୍‌ଭାଗଂ ପଣ୍ୟ ଦଶଭାଗଂ ହିରଣ୍ୟଂ ଚାସ୍ୟ ଭାଗଧେୟଂ ପ୍ରକଲ୍ପୟାମାସୁଃ । ତେନ ଭୃତା ରାଜାନଃ ପ୍ରଜାନାଂ ଯୋଗକ୍ଷେମବହାଃ । ତେଷାଂ ✠ କିଲ୍‌ବିଷଂ ଦଣ୍ଡକରା ହରନ୍ତି,

(ଗ) ଉପରୋକ୍ତ ତୀର୍ଥାଦି ସ୍ଥାନମାନଙ୍କରେ ଯେଉଁମାନେ ରାଜନିନ୍ଦା ଶୁଣି ତଦନୁରୂପ ନିନ୍ଦାକରିବାକୁ ଲାଗିବେ ସେମାନଙ୍କୁ ବାରଣ କରି ଅନ୍ୟ ସତ୍ରୀ କହିବେ—ବଡ଼ମାଛ ଯେପରି ଛୋଟ ମାଛକୁ ଗ୍ରାସ କରେ, ପୂର୍ବକାଳରେ ବଳବାନ୍ ମନୁଷ୍ୟ ସେପରି ଦୁର୍ବଳ ମନୁଷ୍ୟକୁ ଦମନ କରୁଥିବା ଯୋଗୁଁ ଲୋକେ ସୂର୍ଯ୍ୟପୁତ୍ର ବୈବସ୍ୱତମନୁଙ୍କୁ ରାଜାରୂପେ ନିର୍ବାଚିତ କରି ତାଙ୍କର ପରାମର୍ଶକ୍ରମେ ଧାନ୍ୟାଦି ଫସଲର ଛ' ଭାଗରୁ ଏକଭାଗ, ବସ୍ତ୍ରାଦି ପଣ୍ୟଦ୍ରବ୍ୟର ଦଶଭାଗରୁ ଏକଭାଗ ଏବଂ ସୁବର୍ଣ୍ଣାଦି ଖନିଜଦ୍ରବ୍ୟର ଯଥାଦେଶପ୍ରସିଦ୍ଧ ( ଯେଉଁ ଦେଶରେ ଯେପରି ଭାଗ ଦେବା ପ୍ରସିଦ୍ଧ ) ରାଜଭାଗ ଦେବାପାଇଁ ସ୍ଥିର କଲେ । ତଦନୁସାରେ ରାଜାମାନେ ରାଜଭାଗ ଗ୍ରହଣକରି ପ୍ରଜାମାନଙ୍କର ⁕'ଯୋଗ'କ୍ଷେମର ବ୍ୟବସ୍ଥା କରି ଆସୁଛନ୍ତି (ଅପ୍ରାପ୍ତଦ୍ରବ୍ୟର ପ୍ରାପ୍ତି ଓ ପ୍ରାପ୍ତଦ୍ରବ୍ୟର ପରିପାଳନର ବ୍ୟବସ୍ଥା କରି ଆସୁଛନ୍ତି ଏବଂ ପ୍ରଜାମାନଙ୍କୁ ସମସ୍ତ ଆପଦ ବିପଦରୁ ରକ୍ଷାକରି ସେମାନଙ୍କର କଲ୍ୟାଣକର କାର୍ଯ୍ୟମାନ କରାଇ ଆସୁଛନ୍ତି) । ରାଜାଙ୍କଦ୍ୱାରା ପ୍ରଜାମାନଙ୍କ ପ୍ରତି ପ୍ରଯୁଜ୍ୟ ହେତୁ ଦଣ୍ଡ ଏବଂ ସେମାନଙ୍କଠାରୁ ଗ୍ରହଣକରାଯିବା କର ଯଥାକ୍ରମେ ପ୍ରଜାମାନଙ୍କର ଚୌର୍ଯ୍ୟାଦିଜନିତ ପାପର ପ୍ରାୟଶ୍ଚିତ୍ତସ୍ୱରୂପ ହୋଇ ସେମାନଙ୍କର ସ୍ୱଧର୍ମ ବ୍ୟତିକ୍ରମ ଦୋଷର ନିବାରକ ଏବଂ ଜନହିତକର କାର୍ଯ୍ୟ ଅର୍ଥାତ୍ ସ୍ୱାସ୍ଥ୍ୟ, ଶିକ୍ଷା, ଜଳସେଚନ ଓ ରାସ୍ତାଘାଟ ନିର୍ମାଣ ଇତ୍ୟାଦିର ସାଧକ ହୋଇଥାଏ । ପ୍ରଜାସଂରକ୍ଷଣ ସକାଶେ ରାଜାମାନେ କରଗ୍ରହଣ କରୁଥିବା ଯୋଗୁଁ ଅରଣ୍ୟନିବାସୀ ଋଷିମାନେ ମଧ୍ୟ ✢'ଉଞ୍ଛ' ଅର୍ଥାତ୍

¶ 'ଚକ୍ରୁଃ' । ✠ 'କ୍ଷମଦଣ୍ଡକରା ଅଯୋ' ଗ. ପାଠଃ ।

(ଗ)—⁕ ଅପ୍ରାପ୍ତସ୍ୟ ପ୍ରାପ୍ତିର୍ଯୋଗଃ, ପ୍ରାପ୍ତପରିପାଳନଂ 'କ୍ଷେମଃ' ।

✢ ଏକୈକଶଃ କପୋତବତ୍ ଧାନ୍ୟକଣୋଦ୍ ଗ୍ରହଣ ମୁଞ୍ଛଃ । ଇତି ଭରତେ । ଅର୍ଥାତ୍ କାବଡାପରି ଗୋଟିଏ ଗୋଟିଏ ଧାନ୍ୟାଦି ଶସ୍ୟ ଗୋଟାଇ ଆଣିବାକୁ 'ଉଞ୍ଛ' କୁହାଯାଏ । (ଲୁଣ୍ଠିକା)

**ଯୋଗକ୍ଷେମବହାଶ୍ଚ ପ୍ରଜାନାମ୍ । ତସ୍ମାଦୁଞ୍ଛଷଡ଼୍‌ଭାଗମାରଣ୍ୟକା ଅପି * ନିବପନ୍ତି ତସ୍ୟୈତଦ୍ ଭାଗଧେୟଂ ଯୋଽସ୍ମାନ୍ ଗୋପାୟତୀତି । ଇନ୍ଦ୍ରଯମସ୍ଥାନମେତଦ୍ ରାଜାନଃ ପ୍ରତ୍ୟକ୍ଷହେଡ଼ପ୍ରସାଦାଃ । ତାନ- † ବମନ୍ୟମାନଂ ଦୈବୋଽପି ଦଣ୍ଡଃ ସ୍ପୃଶତି । ତସ୍ମାଦ୍ ରାଜାନୋ ନାବମନ୍ତବ୍ୟାଃ ଇତି କ୍ଷୁଦ୍ରକାନ୍ ପ୍ରତିଷେଧୟେତ୍ । (୪) କମ୍ବଦନ୍ତୀଂ ଚ ବିଦ୍ୟୁଃ । ଯେଚାସ୍ୟ ଧାନ୍ୟପଶୁହିରଣ୍ୟାନ୍ୟାଜୀବନ୍ତି, ତୈରୁପକୁର୍ବନ୍ତି ବ୍ୟସନେଽଭ୍ୟୁଦୟେ ବା, କୁପିତଂ ବନ୍ଧୁଂ ରାଷ୍ଟ୍ରଂ ବା ବ୍ୟାବର୍ତ୍ତୟନ୍ତି, ଅମିତ୍ରମାଟବିକଂ ବା ପ୍ରତିଷେଧୟନ୍ତି, ତେଷାଂ ମୁଣ୍ଡଜଟିଳବ୍ୟଞ୍ଜନା।**

---

ବିଲ ପଦାରରେ ଝଡ଼ିପଡ଼ିବା ଧାନ୍ୟାଦି ଶସ୍ୟ (ଯାହା କେବଳ ଉଦର ପୋଷଣ ସକାଶେ ସେମାନେ ଲୁଣ୍ଟିକି ଆଣିଥାନ୍ତି, ତହିଁରୁ) 'ଛ'ଭାଗରୁ ଏକଭାଗ 'ରାଜା ଆମ୍ଭଙ୍କୁ ରକ୍ଷାକରୁଥିବା ଯୋଗୁଁ ଏହା ତାଙ୍କୁ ଦେବା ଉଚିତ' ଏହା ମନେକରି ରାଜସ୍ୱରୂପେ ପ୍ରଦାନ କରନ୍ତି । ଇନ୍ଦ୍ର ଓ ଯମ ଯେପରି ଅନୁଗ୍ରହ ଓ ନିଗ୍ରହକାରକ, ରାଜାମାନେ ମଧ୍ୟ ସେପରି ପ୍ରତ୍ୟକ୍ଷରେ ଅନୁଗ୍ରହ ଓ ନିଗ୍ରହକାରକ । ରାଜାଙ୍କୁ ଅବମାନନାକାରିବା ବ୍ୟକ୍ତିଙ୍କୁ ଦୈବଦଣ୍ଡ ମଧ୍ୟ ମିଳିଥାଏ । ଅତଏବ ରାଜାଙ୍କୁ କୌଣସିମତେ ଅବମାନନା କରିବା ଅନୁଚିତ ।' ଏପରି କହି କ୍ଷୁଦ୍ରବୁଦ୍ଧିଲୋକକଥିତ ରାଜନିନ୍ଦାର ବାରଣ କରିବେ । (୪) ସତ୍ରୀନାମକ ଗୁପ୍ତଚରମାନେ ରାଷ୍ଟ୍ରମଧ୍ୟରେ ହେଉଥିବା ଜନରବର ମଧ୍ୟ ତତ୍ତ୍ୱାନୁସନ୍ଧାନ କରୁଥିବେ । ଯେଉଁମାନେ ରାଜାଙ୍କ ଧାନ୍ୟ, ପଶୁ ଓ ହିରଣ୍ୟ (ସୁବର୍ଣ୍ଣ) ଦ୍ୱାରା ଜୀବିକାନିର୍ବାହ କରନ୍ତି କିମ୍ବା ବ୍ୟସନ ଓ ଅଭ୍ୟୁଦୟ ସମୟରେ ଉକ୍ତ ଧାନ୍ୟ ପଶୁ ହିରଣ୍ୟଦ୍ୱାରା ରାଜାଙ୍କର ଉପକାର କରନ୍ତି, ଯେଉଁମାନେ ରାଜାଙ୍କପ୍ରତି କୁପିତ ହୋଇଥିବା ବନ୍ଧୁ ବା ରାଷ୍ଟ୍ରକୁ କୋପରୁ ନିବର୍ତ୍ତାଇଥାନ୍ତି, ଯେଉଁମାନେ ଶତ୍ରୁ ଓ ବନପାଳ ଇତ୍ୟାଦିଙ୍କ ଶତ୍ରୁଭାବ ବାରଣ କରନ୍ତି, ସେମାନେ ରାଜାଙ୍କପ୍ରତି ସନ୍ତୁଷ୍ଟ କିମ୍ବା ଅସନ୍ତୁଷ୍ଟ, ତାହା ମୁଣ୍ଡ ବା ଜଟିଳ ବେଶଧାରୀ ଗୁପ୍ତଚରମାନେ ଜାଣି ରଖିବେ ।

---

* 'ବ' । † 'ମାନାନାଂ ଦେବୋଽପି ଦଣ୍ଡଂ ସ୍ପୃ' ଗ. ପାଠଃ ।

ସ୍ତୁଷ୍ଟାତୁଷ୍ଟତ୍ୱଂ ବିଦ୍ୟୁଃ । (୫) ତୁଷ୍ଟାନ୍ ଭୂୟଃ ପୂଜୟେତ୍ । ଅତୁଷ୍ଟାଂ ତୁଷ୍ଟିହେତୋସ୍ତ୍ୟାଗେନ ସାମ୍ନା ଚ ପ୍ରସାଦୟେତ୍ । ପରସ୍ପରାଦ୍ ବା ଭେଦୟେଦେନାନ୍ ସାମନ୍ତାଟବିକତତ୍କୁଲୀନାବରୁଦ୍ଧେଭ୍ୟଶ୍ଚ । ତଥାପ୍ୟତୁଷ୍ୟତୋ ଦଣ୍ଡକରସାଧନାଧିକାରେଣ ବା ଜନପଦବିଦ୍ୱେଷଂ ଗ୍ରାହୟେତ୍ । ବିଦ୍ୱିଷ୍ଟାନୁପାଂଶୁଦଣ୍ଡେନ ଜନପଦକୋପେନ ବା ସାଧୟେତ୍ । ଗୁପ୍ତପୁତ୍ରଦାରାନାକରକର୍ମାନ୍ତେଷୁ ବା ବାସୟେତ୍ ପରେଷାମାସ୍ପଦଭୟାତ୍ । (୬) କ୍ରୁଦ୍ଧଲୁବ୍ଧଭୀତାବମାନିନସ୍ତୁ ପରେଷାଂ କୃତ୍ୟାଃ । ତେଷାଂ କାର୍ତାନ୍ତିକନୈମିତ୍ତିକମୌହୂର୍ତିକବ୍ୟଂଜନାଃ

---

(୫) ଯେଉଁମାନେ ରାଜାଙ୍କପ୍ରତି ସନ୍ତୁଷ୍ଟ, ରାଜା ସେମାନଙ୍କୁ ଅଧିକ ଧନ ସମ୍ମାନ ଦାନଦ୍ୱାରା ସତ୍କୃତ କରିବେ, ଯେଉଁମାନେ ଅସନ୍ତୁଷ୍ଟ ସେମାନଙ୍କୁ ଧନଦାନ ଓ ସାନ୍ତ୍ୱନାବାକ୍ୟଦ୍ୱାରା ସନ୍ତୁଷ୍ଟ କରାଇବା ପାଇଁ ଯତ୍ନକରିବେ । ଯଦି ଏଥିରେ ଏମାନେ ଅସନ୍ତୁଷ୍ଟ ହୁଅନ୍ତି ତେବେ ଏମାନଙ୍କ ମଧ୍ୟରେ ପରସ୍ପର ଭେଦ ସୃଷ୍ଟି କରାଇବେ, ଏପରି କି ରାଜ୍ୟର ସାମନ୍ତ, ଆଟବିକ ଏବଂ ଏମାନଙ୍କ ଅବରୁଦ୍ଧ ବନ୍ଧୁବାନ୍ଧବଙ୍କଠାରୁ ମଧ୍ୟ ଏମାନଙ୍କୁ ଭିନ୍ନ କରାଇବେ । ଏପରି କରିବାଦ୍ୱାରା ଯଦି ଏମାନେ ଶାନ୍ତ ନ ହୁଅନ୍ତି, ତେବେ ଏହାଙ୍କୁ ଦଣ୍ଡଦେବା ଅଧିକାରୀ କିମ୍ବା କରଅସୁଲକରିବା ଅଧିକାରୀରୂପେ ନିଯୁକ୍ତ କରି, ଏହାଙ୍କ ବିରୁଦ୍ଧରେ ପ୍ରଜାଙ୍କୁ ମତାଇ ସେମାନେ ଯେପରି ଏହାଙ୍କପ୍ରତି ଦ୍ୱେଷାଚରଣ କରିବେ ସେପରି ବ୍ୟବସ୍ଥା କରାଇବେ; ରାଜ୍ୟଲୋକେ ଏହାଙ୍କପ୍ରତି ଦ୍ୱେଷଭାବ ପୋଷଣ କରିବା ପରେ ଏମାନଙ୍କୁ ଗୁପ୍ତଦଣ୍ଡରେ ଦଣ୍ଡିତ କରିବେ କିମ୍ବା ଯେଉଁ ପ୍ରଜାମାନେ ଏହାଙ୍କପ୍ରତି ଦ୍ୱେଷ କରନ୍ତି ତାଙ୍କଦ୍ୱାରା ଦମିତ କରାଇବେ; ଏମାନେ ଶତ୍ରୁ ସହିତ ମିଶିଯିବାର ଭୟ ଥିବାଯୋଗୁଁ ଏମାନଙ୍କ ପୁତ୍ରକଳତ୍ରଙ୍କ ଭରଣପୋଷଣର ଭାର ନିଜେ ବହନ କରି ଏମାନଙ୍କୁ ଖଣିକାର୍ଯ୍ୟ ପ୍ରଭୃତିରେ ନିଯୁକ୍ତ କରିଦେବେ । (୬) କ୍ରୁଦ୍ଧ, ଲୁବ୍ଧ, ଭୀତ ଓ ଅବମାନିତ ବ୍ୟକ୍ତିମାନେ ସହଜରେ ଶତ୍ରୁର ଆୟତ୍ତ ହୋଇଯାନ୍ତି ଅର୍ଥାତ୍ ଶତ୍ରୁର ଭେଦ୍ୟ ହୋଇଯାନ୍ତି । ଏମାନଙ୍କର ପରସ୍ପର ସମ୍ବନ୍ଧ, ଶତ୍ରୁସହିତ ସମ୍ବନ୍ଧ ଓ ଅନ୍ୟାନ୍ୟ ବିରୋଧିମାନଙ୍କ ସହିତ ସମ୍ବନ୍ଧକୁ ଦୈବଜ୍ଞ, ଶୁଭାଶୁଭଲକ୍ଷଣଜ୍ଞ, ଶକୁନଶାସ୍ତ୍ରୀ ଓ ଭୂତ ଭବିଷ୍ୟତ୍

ପରସ୍ପରଭିସମ୍ବନ୍ଧମ୍ ଅମିତ୍ରପ୍ରତିସମ୍ବନ୍ଧଂ ବା ବିଦ୍ୟୁଃ । (୭) ତୁଷ୍ଟାନର୍ଥ-ମାନାଭ୍ୟାଂ ପୂଜୟେତ୍ । ଅତୁଷ୍ଟାନ୍ ସାମଦାନଭେଦଦଣ୍ଡୈଃ ସାଧୟେତ୍ ।

(୮) ଏବଂ ସ୍ୱବିଷୟେ କୃତ୍ୟାନକୃତ୍ୟାଂଶ୍ଚ ବିଚକ୍ଷଣଃ ।
ପରୋପଜାପାତ୍ସଂରକ୍ଷେତ୍ ପ୍ରଧାନାନ୍ କ୍ଷୁଦ୍ରକାନପି ॥

---

ଏବଂ ବର୍ତ୍ତିମାନବିଷୟବେଶ୍ରେ ( ସବଂଜ୍ଞାଣ ) ବେଶଧାରୀ ଗୁପ୍ତଚରମାନେ ଲକ୍ଷ୍ୟକରିବେ । ଏଥିଦ୍ୱାରା ଅକୃତ୍ୟ ଅର୍ଥାତ୍ ଶତ୍ରୁର ଅଭେଦ୍ୟ ବ୍ୟକ୍ତିମାନଙ୍କ ଗତିବିଧି ଲକ୍ଷ୍ୟ ବିଷୟ ମଧ୍ୟ ଉକ୍ତ ହେଲା । (୭) ଉପରୋକ୍ତ ଉପାୟରେ କୃତ୍ୟ ଅର୍ଥାତ୍ ଶତ୍ରୁଭେଦ୍ୟ ଏବଂ ଅକୃତ୍ୟ ଅର୍ଥାତ୍ ଶତ୍ରୁଅଭେଦ୍ୟ ବ୍ୟକ୍ତିଙ୍କ ପରିଚୟ ପାଇ ରାଜା ତାଙ୍କପ୍ରତି ସନ୍ତୁଷ୍ଟ ବ୍ୟକ୍ତିମାନଙ୍କୁ ଧନସମ୍ମାନଦ୍ୱାରା ପୂଜା କରିବେ ଏବଂ ଅସନ୍ତୁଷ୍ଟ ବ୍ୟକ୍ତିମାନଙ୍କୁ ସାମ, ଦାନ, ଭେଦ ଓ ଦଣ୍ଡନୀତିର ପ୍ରୟୋଗଦ୍ୱାରା ଦମିତ କରିବେ । (୮) ଏହିପରି ନୀତିନିପୁଣ ରାଜା ନିଜରାଜ୍ୟର ପ୍ରଧାନ ଏବଂ ଅପ୍ରଧାନ 'କୃତ୍ୟ' ଅର୍ଥାତ୍ ଶତ୍ରୁବଶବର୍ତ୍ତୀ ପ୍ରଜାଗଣ ଏବଂ 'ଅକୃତ୍ୟ' ଅର୍ଥାତ୍ ଶତ୍ରୁଅବଶବର୍ତ୍ତୀ ପ୍ରଜାଗଣଙ୍କୁ ଶତ୍ରୁପ୍ରଯୁକ୍ତ 'ଭେଦ'ରୁ ରକ୍ଷା କରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ତ୍ରୟୋଦଶୋଽଧ୍ୟାୟଃ—ସ୍ୱବିଷୟେ କୃତ୍ୟାକୃତ୍ୟପକ୍ଷରକ୍ଷଣମ୍ ।

---

* 'ନ୍ଧଂ ମିତ୍ରାଟବିକସ' ଗ. ପାଠଃ ।

## ଚତୁର୍ଦ୍ଦଶୋଽଧ୍ୟାୟଃ

## ଦଶମ ପ୍ରକରଣଂ—ପରବିଷୟେ କୃତ୍ୟାକୃତ୍ୟପକ୍ଷୋପଗ୍ରହଃ

**WINNING OVER FACTIONS FOR OR AGAINST AN ENEMY'S CAUSE IN AN ENEMY'S STATE**

( ଭେଦନୀତିଦ୍ୱାରା ଶତ୍ରୁରାଜ୍ୟରେ ଥିବା ଅତୁଷ୍ଟ ଓ ତୁଷ୍ଟବର୍ଗଙ୍କ ଆୟତ୍ତୀକରଣ )

(୧) କୃତ୍ୟାକୃତ୍ୟପକ୍ଷୋପଗ୍ରହଃ ସ୍ୱବିଷୟେ ବ୍ୟାଖ୍ୟାତଃ ପରବିଷୟେ ବାଚ୍ୟଃ; (୨) ସଂଶ୍ରୁତ୍ୟାର୍ଥାନ୍ ବିପ୍ରଲବ୍ଧଃ, ତୁଲ୍ୟକାରିଣୋଃ ଶିଲ୍ପେ ବୋପକାରେ ବା ବିମାନିତଃ, ବଲ୍ଲଭାବରୁଦ୍ଧଃ, ସମାହୂୟ ପରାଜିତଃ, ପ୍ରବାସୋପତପ୍ତଃ, କୃତ୍ୱାବ୍ୟୟମଲବ୍ଧକାର୍ଯ୍ୟଃ, ସ୍ୱଧର୍ମାଦ୍

---

(୧) ପୂର୍ବ ଅଧ୍ୟାୟରେ ସ୍ୱଦେଶର ତୁଷ୍ଟ ଓ ଅତୁଷ୍ଟବର୍ଗଙ୍କ ଅୟତ୍ତକରିବା ବିଷୟର ବ୍ୟାଖ୍ୟାନ କରାଗଲା, ବର୍ତ୍ତମାନ ଶତ୍ରୁଦେଶରେ ଥିବା ତୁଷ୍ଟ ଓ ଅତୁଷ୍ଟ-ବର୍ଗର ଆୟତ୍ତୀକରଣ ବିଷୟରେ କୁହାଯିବ । (୨) ରାଜା ଧନ, ରତ୍ନ, ଭୂମି ଇତ୍ୟାଦି ଦେବାକୁ ପ୍ରତିଜ୍ଞାକରି ପ୍ରକୃତରେ ତାହା ନଦେବା ଯୋଗୁଁ ତଦ୍ୱାରା ପ୍ରତାରିତ ହୋଇଥିବା ବ୍ୟକ୍ତି; ଶିଳ୍ପକାର୍ଯ୍ୟ ଓ ଉପକାର ଏକାପରି କରିଥିବା ଦୁଇ ବ୍ୟକ୍ତିଙ୍କ ମଧ୍ୟରୁ ଜଣେ ସମ୍ମାନିତ ଓ ଅନ୍ୟଜଣେ ଅସମ୍ମାନିତ ହେଲେ, ସେହି ଅସମ୍ମାନିତ ବ୍ୟକ୍ତି; ରାଜାଙ୍କ ବିଶ୍ୱସ୍ତସେବକମାନଙ୍କ ଦ୍ୱାରା ରାଜଭବନରେ ପ୍ରବେଶକରିବାପାଇଁ ନିଷେଧ ଆଜ୍ଞା ପାଇଥିବା ବ୍ୟକ୍ତି; ରାଜାଙ୍କ ଡାକରାରେ ଦ୍ୟୂତକ୍ରୀଡ଼ାସକାଶେ ଆସି, ଖେଳରେ ହାରି ସର୍ବସ୍ୱାନ୍ତ ହୋଇଥିବା ବ୍ୟକ୍ତି; ରାଜକୃତ ଅବରୋଧ ଯୋଗୁଁ ନିଜର ଅଭିଳଷିତ ଦେଶରେ ବାସ ନକରି ପ୍ରବାସରେ ରହି ଦୁଃଖିତ ହେଉଥିବା ବ୍ୟକ୍ତି; ନିଜର କୌଣସି କାର୍ଯ୍ୟସିଦ୍ଧିସକାଶେ ରାଜକର୍ମଚାରୀମାନଙ୍କୁ ଉତ୍କୋଚ (ଲାଂଚ) ଦେଇ ମଧ୍ୟ ବିଫଳମନୋରଥ ହୋଇଥିବା ବ୍ୟକ୍ତି; ରାଜାଙ୍କ ମନାଯୋଗୁଁ ସ୍ୱଧର୍ମରୁ ଓ ଦାୟାଦି ଭାଗରୁ ବଂଚିତ ହୋଇଥିବା ବ୍ୟକ୍ତି; ମାନ ଅର୍ଥାତ୍ ଛତ୍ରପାଲିକି ପ୍ରଭୃତି ଉଚ୍ଚସମ୍ମାନ ଏବଂ ଅଧିକାର ଅର୍ଥାତ୍ ସମାହର୍ତ୍ତା ସନ୍ନିଧାତା ପ୍ରଭୃତି ନିଯୋଗରୁ (ଚାକିରୀରୁ) ଯାହାଙ୍କୁ ବିଚ୍ୟୁତ କରାଯାଇଥାଏ, ସେହି ବ୍ୟକ୍ତି;

**ଦାୟାଦ୍ୟାଦ୍ଦ୍ୱାପରୁଦ୍ଧଃ, ମାନାଧିକାରଭ୍ୟାଂ ଭ୍ରଷ୍ଟଃ, କୁଲ୍ୟୈରନ୍ତର୍ହିତଃ, ପ୍ରସଭଭିମୃଷ୍ଟସ୍ତ୍ରୀକଃ, କାରାଭିନ୍ୟସ୍ତଃ, ପରୋକ୍ତଦଣ୍ଡିତଃ, ମିଥ୍ୟାଚାର ବାରତଃ, ସର୍ବସ୍ୱମାହାରତଃ, ବନ୍ଧନପରିକ୍ଲିଷ୍ଟଃ, ପ୍ରବାସିତବନ୍ଧୁରିତି କ୍ରୁଦ୍ଧବର୍ଗଃ । (ଗ) ସ୍ୱୟମୁପହତଃ, ବିପ୍ରକୃତଃ, ପାପକର୍ମାଭିଖ୍ୟାତଃ, ତୁଲ୍ୟଦୋଷଦଣ୍ଡେନୋଦ୍ୱିଗ୍ନଃ, ପର୍ଯାତ୍ତଭୂମିଃ, ଦଣ୍ଡେନୋପହତଃ, ସର୍ବାଧିକରଣସ୍ଥଃ, ସହସୋପଚିତାର୍ଥଃ, ତତ୍କୁଲୀନୋପାଶଂସୁଃ,**

---

ଗୁଣଥିବା ସତ୍ତ୍ୱେ ଈର୍ଷାପରାୟଣ ରାଜବନ୍ଧୁମାନଙ୍କ ଦ୍ୱାରା ଯାହାଙ୍କ ବୁଦ୍ଧିବିଦ୍ୟା ପ୍ରକାଶିତ ହୋଇ ପାରୁନଥାଏ, ସେହି ବ୍ୟକ୍ତି; ଯାହାଙ୍କ ଭାର୍ଯାଙ୍କୁ ବଳପୂର୍ବକ ଧର୍ଷଣ କରାଯାଇଥାଏ, ସେହି ବ୍ୟକ୍ତି; ବିନା ଅପରାଧରେ କାରାଦଣ୍ଡ ଭୋଗୁଥିବା ବ୍ୟକ୍ତି; ରାଜା ଯାହାଙ୍କୁ ପରକଥାରେ ବିଶ୍ୱାସକରି ଅବିଚାରରେ ଦଣ୍ଡ ଦେଇଥାନ୍ତି, ସେହି ବ୍ୟକ୍ତି; ପ୍ରାଣିବଧରୂପକ ଯଜ୍ଞଅନୁଷ୍ଠାନ କରିନାହିଁ ବୋଲି ଯାହାଙ୍କୁ ଅଗ୍ରହଭ୍ରଷ୍ଟ କରାଯାଇଥାଏ, ସେହି ବ୍ୟକ୍ତି; ହୃତସର୍ବସ୍ୱବ୍ୟକ୍ତି; ବନ୍ଧନାଗାରରେ (ଜେଲଖାନାରେ) ଯଥାଯୋଗ୍ୟ କାର୍ଯ ନିୟନ୍ତ୍ରଣ ଯୋଗୁଁ କଷ୍ଟଭୋଗୁଥିବା ବ୍ୟକ୍ତି; ଯାହାଙ୍କର ପୁତ୍ର ଏବଂ ବନ୍ଧୁମାନଙ୍କୁ ସ୍ୱଦେଶରୁ ବହିଷ୍କୃତ କରାଯାଇଥାଏ, ସେହି ବ୍ୟକ୍ତି,—ଏମାନଙ୍କୁ 'କ୍ରୁଦ୍ଧବର୍ଗ' କୁହାଯାଏ । (ଗ) ଧନପାଇଁ ନିଜେ ମନୁଷ୍ୟମାରଣାଦି ନୃଶଂସକାର୍ଯ କରି ଦୂଷିତ ହୋଇଥିବା କିମ୍ବା ବିଜିଗୀଷୁ ରାଜା ଧନଦାନ ପୂର୍ବକ ଯାହାଦ୍ୱାରା ମନୁଷ୍ୟ-ମାରଣାଦି ନୃଶଂସ କାର୍ଯ କରାଇଥାନ୍ତି, ସେହି ଦୂଷିତ ବ୍ୟକ୍ତି; ଅନ୍ତଃପୁର ପ୍ରଭୃତିରେ ରାଜାଙ୍କ ବିରୁଦ୍ଧକାର୍ଯାରମ୍ଭ କରି ଦୂଷିତ ହୋଇଥିବା ବ୍ୟକ୍ତି; ବ୍ରହ୍ମହତ୍ୟା, ଗୋହତ୍ୟା, ସ୍ତ୍ରୀ ବାଳକାଦି ହତ୍ୟା ପ୍ରଭୃତି ମହାପାପ କର୍ମରେ କଳଙ୍କିତ ହୋଇଥିବା ବ୍ୟକ୍ତି; ନିଜସଦୃଶ ଅନ୍ୟକୌଣସି ଦୋଷୀ ଦଣ୍ଡିତ ହେଉଥିବା ଦେଖି ଭୀତ ହେବା ବ୍ୟକ୍ତି; ଭୂମି ଅପହରଣକାରୀ ବ୍ୟକ୍ତି; ଦଣ୍ଡଦ୍ୱାରା କର୍ଷିତ (ଦୁର୍ବଳ ହୋଇଯାଇଥିବା) ବ୍ୟକ୍ତି; ସମସ୍ତ ରାଜକୀୟ ନିଯୋଗସ୍ଥାନମାନଙ୍କରେ ଅଧିକାର ପାଇଥିବା ଯୋଗୁଁ ପଦଚ୍ୟୁତି ଭୟରେ ଭୀତ ହେଉଥିବା ବ୍ୟକ୍ତି; ଅକସ୍ମାତ୍ କିମ୍ବା ଗୁଣ୍ଡାମିପ୍ରଭୃତି ଦୁଃସାହସିକ କାର୍ଯଦ୍ୱାରା ପରଧନ ଲୁଣ୍ଠନ କରି ଧନୀ ହୋଇଥିବା ବ୍ୟକ୍ତି; ରାଜାଙ୍କ ଭାଇ ଭିରାଦରଙ୍କ ଉପାଶ୍ରିତ ବ୍ୟକ୍ତି; ରାଜାଙ୍କ ଦ୍ୱେଷଭାଜନ ହୋଇଥିବା ବ୍ୟକ୍ତି ଏବଂ

ପ୍ରଦ୍ଧଷ୍ଟୋରାଜ୍ଞା, ରାଜଦ୍ୱେଷୀ ଚେତ୍ୟଭୀତବର୍ଗଃ । (୪) ପରିକ୍ଷୀଣୋଽତ୍ୟାତ୍ତସ୍ୱଃ, କଦର୍ଯ୍ୟୋ ବ୍ୟସନ୍ୟତ୍ୟାହିତବ୍ୟବହାରଶ୍ଚେତି ଲୁବ୍ଧବର୍ଗଃ । (୫) ଆତ୍ମସଂଭାବିତୋ ମାନକାମଃ ଶତ୍ରୁପୂଜାମର୍ଷିତୋ ନୀଚୈରୁପହିତସ୍ତୀକ୍ଷ୍ଣଃ ସାହସିକୋ ଭୋଗେନାସଂତୁଷ୍ଟ ଇତି ମାନିବର୍ଗଃ । (୬) ତେଷାଂ ମୁଣ୍ଡଜଟିଳବ୍ୟଂଜନୈର୍ଯୋ ଯଦ୍ଭକ୍ତିଃ କୃତ୍ୟପକ୍ଷୀୟସ୍ତଂ ତେନୋପଜାପୟେତ୍ । (୭) ଯଥା ମଦାନ୍ଧୋ ହସ୍ତୀ ମତ୍ତେନାଧିଷ୍ଠିତୋ ଯଦ୍ୟଦାସାଦୟତି ତତ୍ସର୍ବଂ ପ୍ରମୃଦ୍ନାତ୍ୟେବମୟମ-

---

ରାଜଦ୍ରୋହୀ ବ୍ୟକ୍ତି,—ଏମାନଙ୍କୁ 'ଭୀତବର୍ଗ' କୁହାଯାଏ । (୪) ସ୍ୱକର୍ମ ଦୋଷରୁ ସର୍ବସ୍ୱାନ୍ତ ହେବା ବ୍ୟକ୍ତି; ରାଜାଙ୍କଦ୍ୱାରା ଦଣ୍ଡ (ଜରିମାନା) ଓ କର ପ୍ରଭୃତିରେ ଅତିମାତ୍ର ଶୋଷିତ ବ୍ୟକ୍ତି; କୃପଣ ବ୍ୟକ୍ତି; ସୁରା, ବେଶ୍ୟା ପ୍ରଭୃତି ବ୍ୟସନରେ ଆସକ୍ତ ଥିବା ବ୍ୟକ୍ତି; ଅତିଶୟ ଧନଲୋଭରେ ବିପଦସଙ୍କୁଳ ବ୍ୟବହାରମାନଙ୍କରେ ହସ୍ତକ୍ଷେପ କରିଥିବା ବ୍ୟକ୍ତି,—ଏମାନଙ୍କୁ 'ଲୁବ୍ଧବର୍ଗ' କୁହାଯାଏ । (୫) ମୁଁ ଅତିଶୟ ବିଦ୍ୱାନ୍ ଓ ଶୂର ବୋଲି ନିଜକୁ ବଡ଼ ମନେକରିବା ବ୍ୟକ୍ତି; ଧନାଭିଳାଷକୁ ପରିହାର କରି କେବଳ ସମ୍ମାନଲୋଲୁପ ବ୍ୟକ୍ତି; ନିଜ ଶତ୍ରୁକୁ ରାଜାଙ୍କଠାରୁ ଧନ ସମ୍ମାନ ମିଳିବାର ସହି ନପାରିବା ବ୍ୟକ୍ତି; ନୀଚ ବା ଦୁର୍ଜନଦ୍ୱାରା କୌଣସି ଅକରଣୀୟ କାର୍ଯ୍ୟରେ ଅଗତ୍ୟା ବାଧ୍ୟହୋଇ ନିଯୋଜିତ ହେବା ବ୍ୟକ୍ତି; ଉଗ୍ରପ୍ରକୃତିକ ନିର୍ଭୀକ ବ୍ୟକ୍ତି; ସାହସିକ ଅର୍ଥାତ୍ ଅତର୍କିତ ଭାବରେ ସାରାସାର ବିଚାର ନକରି ଯେକୌଣସି କାର୍ଯ୍ୟ କରିବାକୁ ହଠାତ୍ ତେଣିପଡ଼ିବା ବ୍ୟକ୍ତି; ଅଳ୍ପ ଦରମା ପାଉଥିବା ଯୋଗୁଁ ଇଚ୍ଛା କରୁଥିବା ଭୋଗ ସୁଖରୁ ବଞ୍ଚିତ ହୋଇ ଅତୃପ୍ତ ହୋଇଥିବା ବ୍ୟକ୍ତି,—ଏମାନଙ୍କୁ 'ମାନିବର୍ଗ' କୁହାଯାଏ । (୬) ରାଜା, ଶତ୍ରୁରାଜ୍ୟର ଉପରୋକ୍ତ କ୍ରୁଦ୍ଧ, ଭୀତ, ଲୁବ୍ଧ ଓ ମାନୀ ନାମକ କୃତ୍ୟପକ୍ଷୀୟ ବ୍ୟକ୍ତିମାନଙ୍କ ମଧ୍ୟରୁ (ଶତ୍ରୁର ଭେଦନୀତିରେ ଭୁଲି ଯାଇଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ) ଯେଉଁମାନେ ଯେଉଁ ବିଷୟରେ ଅନୁରାଗୀ ହୋଇଥାନ୍ତି ତାହାଙ୍କୁ ମୁଣ୍ଡଜଟିଳ ବ୍ୟଞ୍ଜନ ଗୁପ୍ତଚରଙ୍କ ଦ୍ୱାରା ତାହା ପ୍ରଦାନପୂର୍ବକ ଶତ୍ରୁ ପକ୍ଷରୁ ହଟାଇ ଆଣି ନିଜର ବଶବର୍ତ୍ତୀ କରି ରଖିବେ । (୭) ରାଜା ଶତ୍ରୁରାଜ୍ୟର କ୍ରୁଦ୍ଧବର୍ଗୀୟ ବ୍ୟକ୍ତିମାନଙ୍କୁ ସତ୍ରୀନାମକ ଗୁପ୍ତଚରମାନଙ୍କ ଦ୍ୱାରା

ଶାସ୍ତ୍ରଚକ୍ଷୁରନ୍ଧୋ ରାଜାଽନେନ ମନ୍ତ୍ରିଣାଧିଷ୍ଠିତଃ ପୌରଜାନପଦବଧା-ୟାଭ୍ୟୁଦ୍ୟତଃ; ଶକ୍ୟମସ୍ୟ ପ୍ରତିହସ୍ତିପ୍ରୋତ୍ସାହନେନାପକର୍ତ୍ତୁଂ, ଅମର୍ଷଃ କ୍ରିୟତାମିତି କ୍ରୁଦ୍ଧବର୍ଗମୁପଜାପୟେତ୍ । (୮) ଯଥାଲୀନଃ ସର୍ପୋ ଯସ୍ମାଦ୍ ଭୟଂ ପଶ୍ୟତି ତତ୍ର ବିଷମୁତ୍ସୃଜତ୍ୟେବମୟଂ ରାଜା ଜାତଦୋଷାଶଂକସ୍ତ୍ୱୟି ପୁରା କ୍ରୋଧବିଷମୁତ୍ସୃଜତି, ଅନ୍ୟତ୍ର ଗମ୍ୟତାମିତି ଭୀତବର୍ଗମୁପଜାପୟେତ୍ । (୯) ଯଥା ଶ୍ୱଗଣିନାଂ ଧେନୁଃ ଶ୍ୱଭ୍ୟୋ ଦୁହ୍ୟତେ ନ ବ୍ରାହ୍ମଣେଭ୍ୟଃ ଏବମୟଂ ରାଜା ସତ୍ତ୍ୱପ୍ରଜ୍ଞାବାକ୍ୟଶକ୍ତିହୀନେଭ୍ୟୋ ଦୁହ୍ୟତେ ନାତ୍ମଗୁଣସଂପନ୍ନେଭ୍ୟଃ । ଅସୌ ରାଜାପୁରୁଷବିଶେଷଜ୍ଞଃ ସେବ୍ୟତାମିତି ଲୁବ୍ଧବର୍ଗ ମୁପ-

---

ମତାଇବେ—"ଯେପରି ମଦାନ୍ଧ ହସ୍ତୀ ଉନ୍ମତ୍ତ ହସ୍ତିପକ (ଅସାବଧାନ ମାହୁନ୍ତ) ଦ୍ୱାରା ଗୃହୀତହୋଇ ଯେଉଁ ଯେଉଁ ପଦାର୍ଥକୁ ଦେଖେ ସେ ସମସ୍ତ ପଦାର୍ଥକୁ ଧ୍ୱସ୍ତବିଧ୍ୱସ୍ତ କରିଦିଏ, ସେପରି ଶାସ୍ତ୍ରଚକ୍ଷୁବିହୀନ ହେତୁ ଅନ୍ଧସ୍ୱରୂପ ହୋଇଥିବା ତୁମ୍ଭର ଏହି ରାଜା, ତଥାବିଧ ଅନ୍ଧ ଓ ଅଜ୍ଞ ମନ୍ତ୍ରୀଙ୍କ ଦ୍ୱାରା ପରିଗୃହୀତ ହୋଇ ପୁରବାସୀ ଓ ରାଜ୍ୟବାସୀ ପ୍ରଜାମାନଙ୍କ ବଧସକାଶେ ଉଦ୍ୟତ ହୋଇଛନ୍ତି । ଏଣୁ ଯେପରି ମଦାନ୍ଧ ହସ୍ତୀକୁ ହଟାଇବା ପାଇଁ ଅନ୍ୟ ଏକ ବଳବାନ୍ ହସ୍ତୀକୁ ଉତ୍ତେଜିତ କରାଯାଏ, ସେପରି ତୁମ୍ଭର ଏହି ଅତ୍ୟାଗ୍ରହୀ ରାଜାଙ୍କୁ ରାଜ୍ୟଚ୍ୟୁତ କରିବାପାଇଁ ତୁମ୍ଭେ ଅନ୍ୟରାଜାଙ୍କୁ ଏହାଙ୍କ ବିରୁଦ୍ଧରେ ଉତ୍ତେଜିତ କର"—ଏପରି କହି ଶତ୍ରୁରାଜ୍ୟର କ୍ରୁଦ୍ଧବର୍ଗଙ୍କୁ ଶତ୍ରୁରାଜାଙ୍କଠାରୁ ଭିନ୍ନ କରାଇବେ । (୮) ରାଜା ଶତ୍ରୁପକ୍ଷର ଭୀତବର୍ଗଙ୍କୁ ଗୁପ୍ତଚରଙ୍କଦ୍ୱାରା ମତାଇବେ—"ଯେପରି ସର୍ପ ଗୁପ୍ତଭାବରେ ଥାଇ ଯାହାଠାରୁ ଭୟର ଆଶଂକା କରେ ତା'କୁ ଦଂଶନ କରି ବିଷୋତ୍ସର୍ଗ କରେ, ସେପରି ତୁମ୍ଭର ଏହି ରାଜା ପୂର୍ବେ ତୁମ୍ଭର ଅନିଷ୍ଟ କରିଥିବା ଯୋଗୁଁ ଭାଳେ ତୁମ୍ଭେ ତାର ପ୍ରତିଶୋଧ ନେବା ଭୟରେ ତୁମ୍ଭଉପରେ କ୍ରୋଧବିଷ ଉତ୍ସର୍ଗ କରିବେ । ଏଣୁ ତୁମ୍ଭେ ଅନ୍ୟତ୍ର ପଳାୟନ କର"—ଏପରି କହି ଶତ୍ରୁରାଜ୍ୟର ଭୀତବର୍ଗଙ୍କୁ ଶତ୍ରୁରାଜାଙ୍କଠାରୁ ଅଲଗା କରାଇବେ । (୯) ଶତ୍ରୁରାଜ୍ୟର ଲୁବ୍ଧବର୍ଗଙ୍କୁ ଗୁପ୍ତଚରଙ୍କଦ୍ୱାରା ରାଜା ଏପରି ମତାଇବେ—"ଯେପରି କୁକ୍କୁରମାନଙ୍କୁ ପୋଷିଥିବା ଚଣ୍ଡାଳ ବା କିରାତ ନିଜେ ପୋଷିଥିବା ଗାଈର

କାପୟେତ୍ । (୧୦) ଯଥା ଚଣ୍ଡାଳୋଦପାନଶ୍ଚଣ୍ଡାଳାନାମେବୋପଭୋଗ୍ୟୋ ନାନ୍ୟେଷାମେବମୟଂ ରାଜା ନୀଚୋ ନୀଚାନାମେବୋପଭୋଗ୍ୟୋ ନ ତ୍ୱଦ୍‌ବିଧାନାମାର୍ଯାଣାମ୍ । ଅସୌ ରାଜା ପୁରୁଷବିଶେଷଜ୍ଞଃ ତତ୍ର ଗମ୍ୟତାମିତି ମାନିବର୍ଗମୁପଜାପୟେତ୍ ।

(୧୧) ତଥେତି ପ୍ରତିପନ୍ନାଂସ୍ତାନ୍ ସଂହୃତାନ୍ ପଣକର୍ମଣା
ଯୋଜୟେତ ଯଥାଶକ୍ତି ପାପସର୍ପାନ୍ ସ୍ୱକର୍ମସୁ ।

---

କ୍ଷୀର ବ୍ରାହ୍ମଣାଦିଙ୍କୁ ନଦେଇ କେବଳ କୁକ୍କୁରମାନଙ୍କୁ ଦେଇଥାଏ, ସେପରି ତୁମ୍ଭର ଏହି ରାଜା ଅଳ୍ପବଳ, ପ୍ରଜ୍ଞା ଓ ବାକ୍‌ଶକ୍ତିବିହୀନ ନୀଚଲୋକମାନଙ୍କୁ ଧନଦାନ କରନ୍ତି ସିନା, ଗୁଣବାନ୍ ବ୍ୟକ୍ତିମାନଙ୍କୁ ଧନଦାନ କରନ୍ତି ନାହିଁ । (କିମ୍ବା ତା' ଗାଈକୁ କୁକ୍କୁରପୋଷଣପାଇଁ ଦୋହନ କଲାପରି ଏହି ରାଜା ମୂର୍ଖ, ଦୁର୍ବୃତ୍ତ ଓ ହୀନଲୋକମାନଙ୍କ ପୋଷଣ ସକାଶେ ରାଜସ୍ୱ ଆଦାୟ କରି ବିନିଯୋଗ କରନ୍ତି ସିନା ଗୁଣବାନ୍ ବ୍ୟକ୍ତିମାନଙ୍କୁ କିଛି ସାହାଯ୍ୟ କରନ୍ତି ନାହିଁ ।) ଅତଏବ ଅମୁକ ରାଜା (ଗୁପ୍ତଚରଙ୍କୁ ପ୍ରେରଣ କରିଥିବା ରାଜା) ପୁରୁଷବିଶେଷଜ୍ଞ ଅର୍ଥାତ୍ କେଉଁ ବ୍ୟକ୍ତି କିପରି ତାହା ଭଲଭାବେ ଜାଣନ୍ତି । ଏଣୁ ଏହାଙ୍କୁ ସେବାକର"—ଏପରି କହି ଶତ୍ରୁପକ୍ଷର ଲୁବ୍ଧବର୍ଗଙ୍କୁ ଶତ୍ରୁରାଜାଙ୍କଠାରୁ ଅଲଗା କରାଇବେ । (୧୦) ଶତ୍ରୁରାଜ୍ୟର ମାନିବର୍ଗଙ୍କୁ ରାଜା ଗୁପ୍ତଚରମାନଙ୍କଦ୍ୱାରା ମତାଇବେ—"ଯେପରି ଚଣ୍ଡାଳମାନଙ୍କର କୂପ ଚଣ୍ଡାଳମାନଙ୍କର କେବଳ ଉପଭୋଗ୍ୟ, ଅନ୍ୟମାନଙ୍କର ଉପଭୋଗ୍ୟ ନୁହେଁ, ସେପରି ତୁମ୍ଭର ଏହି ନୀଚପ୍ରକୃତିକ ରାଜା ନୀଚବ୍ୟକ୍ତିମାନଙ୍କର କେବଳ ଆଶ୍ରୟ (ପୋଷକ) ଅଟନ୍ତି, ତୁମ୍ଭପରି ପୂଜ୍ୟବ୍ୟକ୍ତିଙ୍କ ପୋଷକ ନୁହନ୍ତି । ଅମୁକ ରାଜା ପୁରୁଷବିଶେଷଜ୍ଞ, ଅତଏବ ତାଙ୍କ ନିକଟକୁ ଆଶ୍ରୟାର୍ଥେ ଗମନକର"—ଏପରି କହି ଶତ୍ରୁରାଜ୍ୟର ମାନିବର୍ଗଙ୍କୁ ଶତ୍ରୁରାଜାଙ୍କଠାରୁ ଅଲଗା କରାଇବେ । (୧୧) ଉପରୋକ୍ତ ଭେଦନୀତି ପ୍ରୟୋଗଦ୍ୱାରା ପରପକ୍ଷରେ ପ୍ରବେଶ କରିବାପାଇଁ ସ୍ୱୀକୃତ ହୋଇଥିବା ଏବଂ ସତ୍ୟ, ଶପଥ, ପ୍ରଲୋଭନାଦି ଦ୍ୱାରା ଅୟୃତ୍ତ ହୋଇଥିବା କୃତ୍ୟପକ୍ଷୀୟ ବ୍ୟକ୍ତିମାନଙ୍କୁ (ଶତ୍ରୁର ଗୁପ୍ତଚରଙ୍କ ଫାନ୍ଦରେ ପଡ଼ି ନିଜ ରାଜାଙ୍କ ବିରୁଦ୍ଧାଚରଣ କରୁଥିବା ବ୍ୟକ୍ତିମାନଙ୍କୁ) ସେମାନଙ୍କ ଅଜ୍ଞାତରେ ନିଜର ଗୁପ୍ତଚରମାନଙ୍କୁ ସେମାନଙ୍କ ସାଥିରେ ଦେଇ,

**(୧୬) ଲଭେତ ସାମଦାନାଭ୍ୟାଂ କୃତ୍ୟାଂଶ୍ଚ ପରଭୂମିଷୁ ।**
**ଅକୃତ୍ୟାନ୍ ଭେଦଦଣ୍ଡାଭ୍ୟାଂ ପରଦୋଷାଂଶ୍ଚ ଦର୍ଶୟେତ୍ ।**

---

ଯେ ଯେଉଁ କାର୍ଯ୍ୟ କରିବାକୁ ଉପଯୁକ୍ତ ତାଙ୍କୁ ସେହି କାର୍ଯ୍ୟରେ ନିଯୁକ୍ତ କରିବେ । (୧୬) ରାଜା, ଶତ୍ରୁର ଭେଦନୀତି ପ୍ରୟୋଗଦ୍ୱାରା ଶତ୍ରୁରାଜ୍ୟକୁ ଚାଲିଯାଇଥିବା କୃତ୍ୟବର୍ଗୀୟ ବ୍ୟକ୍ତିମାନଙ୍କୁ ବୁଝାଇ ସୁଝାଇ ତଥା ଧନଦାନ ପୂର୍ବକ ଅଯତ୍ତକରି ସ୍ୱଦେଶକୁ ଫେରାଇ ଆଣିବେ ଏବଂ ଯେଉଁମାନେ ଶତ୍ରୁର ଭେଦନୀତିରେ ଭୁଲି ତା'ର ଅଯତ୍ତ ହୋଇନାହାନ୍ତି ଅଥଚ ନିଜ ରାଜାଙ୍କ ପ୍ରତି ବିରକ୍ତ ହୋଇଛନ୍ତି, ଏପରି ଅକୃତ୍ୟବର୍ଗୀୟ ବ୍ୟକ୍ତିମାନଙ୍କୁ ଭେଦ ଓ ଦଣ୍ଡଦ୍ୱାରା (ଭୟ ପ୍ରଦର୍ଶନ, ଦଣ୍ଡଦାନାଦି ଦ୍ୱାରା) ମୁଖ୍ୟତଃ ଶତ୍ରୁର ଦୋଷ ପ୍ରଦର୍ଶନ ଦ୍ୱାରା ନିଜ ବଶବର୍ତ୍ତୀ କରିବେ ।

ଇତି କୌଟଲୀୟେଽର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ ଚତୁର୍ଦ୍ଦଶୋଽଧ୍ୟାୟଃ—ପରବିଷୟେ କୃତ୍ୟାକୃତ୍ୟପକ୍ଷୋପଗ୍ରହଃ ।

---

## ପଞ୍ଚଦଶୋଽଧ୍ୟାୟଃ

## ଏକାଦଶ ପ୍ରକରଣଂ—ମନ୍ତ୍ରାଧିକାରଃ ।

### THE BUSINESS OF COUNCIL MEETING

କର୍ମମାନଙ୍କର ଆରମ୍ଭ ଓ ଉପାୟାଦି କାର୍ଯ୍ୟ ନିରୂପଣକୁ ମନ୍ତ୍ର କୁହାଯାଏ । ଏହି ଅଧ୍ୟାୟରେ ତା'ର ବିସ୍ତୃତ ବିଚାର କରାଯିବ ।

**(୧) କୃତସ୍ୱପକ୍ଷପରପକ୍ଷୋପଗ୍ରହଃ କାର୍ଯ୍ୟାରମ୍ଭାଂଶ୍ଚିନ୍ତୟେତ୍ । ମନ୍ତ୍ରପୂର୍ବାଃ ସର୍ବାରମ୍ଭାଃ । (୨) ତଦୁଦ୍ଦେଶଃ ସଂବୃତଃ କଥାନାମନିଃସ୍ରାବୀ ପକ୍ଷିଭିରପ୍ୟନାଲୋକ୍ୟଃ ସ୍ୟାତ୍ । ଶ୍ରୂୟତେ ହି ଶୁକଶାରିକାଭିର୍ମନ୍ତ୍ରୋ**

(୧) ରାଜନୀତିପ୍ରବୀଣ ରାଜା ସ୍ୱଦେଶ ଓ ପରଦେଶର କୃତ୍ୟାକୃତ୍ୟ-ବର୍ଗୀୟ ବ୍ୟକ୍ତିମାନଙ୍କୁ ସ୍ୱାୟତ୍ତ କରିବା ପରେ, ସ୍ୱଦେଶରେ ଦୁର୍ଗ ନିର୍ମାଣ ପ୍ରଭୃତି ଏବଂ ପରଦେଶରେ ସନ୍ଧିବିଗ୍ରହ ପ୍ରଭୃତି କାର୍ଯ୍ୟମାନଙ୍କ ବିଷୟରେ ଚିନ୍ତାକରିବେ । ସମସ୍ତ କାର୍ଯ୍ୟର ଆରମ୍ଭ ପୂର୍ବରୁ ପ୍ରଥମେ ରାଜା ସମସ୍ତ ଉପଧା ଶୁଦ୍ଧ, ପ୍ରବୀଣ, ନୀତିଜ୍ଞ ଓ ବୁଦ୍ଧିମାନ୍ ମନ୍ତ୍ରୀମାନଙ୍କ ସହିତ ଉତ୍ତମଭାବେ ମନ୍ତ୍ରଣାକରି ପରେ କାର୍ଯ୍ୟାରମ୍ଭ କରିବେ । (୨) ମନ୍ତ୍ରଣା ସ୍ଥାନ ଏପରି ସୁରକ୍ଷିତ ଓ ସର୍ବଂସ ଆବୃତ ହେବା ଉଚିତ, ସେଠାର କଥାବାର୍ତ୍ତା ଯେପରି କେହି ଶୁଣିପାରିବେ ନାହିଁ । ପକ୍ଷୀ ମଧ୍ୟ ଏହି କଥାବାର୍ତ୍ତା ଶୁଣିବାକୁ ହେବନାହିଁ କିମ୍ବା ମନ୍ତ୍ରଣାସ୍ଥାନ ଦେଖିବାକୁ ହେବନାହିଁ । ଶୁଣାଯାଏ, ଶୁଆ ଶାରି କୌଣସି ରାଜାଙ୍କ ମନ୍ତ୍ରଣାର ଅବିକଳ ସ୍ୱର ନକଲକରି ଗାଇବା ଫଳରେ ତାଙ୍କ ମନ୍ତ୍ରଣା ବାହାରେ ପ୍ରକାଶ ପାଇଯାଇଥିଲା । ଅନ୍ୟ କେଉଁଠାରେ କୁକୁରଦ୍ୱାରା କୌଣସି ରାଜାଙ୍କର ମନ୍ତ୍ରଣା ପ୍ରକାଶିତ ହୋଇ ଯାଇଥିବା କଥା ମଧ୍ୟ ଶୁଣାଯାଏ । ଏପରି ଅନ୍ୟ ପଶୁପକ୍ଷୀଙ୍କଦ୍ୱାରା ମନ୍ତ୍ରଣା ପ୍ରକାଶ

(୨)—ରହସ୍ତମ୍ବେନ ସନ୍ଧାନ୍ତ ପ୍ରଥମାପ୍ତେ ଚକାଶିରେ ।
ଏକାକିନୋଽପି ପରତଃ ପୌରୁଷେୟ ବୃତା ଇବ ।
ନିସ୍ତମ୍ଭେ ନିର୍ଗବାକ୍ଷେ ଚ ନିର୍ଭିତ୍ୟନ୍ତର ସଶ୍ରୟେ ।
ପ୍ରାସାଦାଗ୍ରେଽରଣ୍ୟେ ବା ମନ୍ତ୍ରୟେ ଖ୍ରବଖ୍ରବନୌ ।
ଗିରିପୃଷ୍ଠଂ ସମାସାଦ୍ୟ ପ୍ରାସାଦଂ ବା ରହୋଗତଃ
ନିସ୍ତମ୍ଭେ ନିଃଶଲାକେ ଚ ମନ୍ତ୍ରୟେଦ୍ଭାବଶ୍ରଦ୍ଧିତଃ । ମାଘ ।

ଭିନ୍ନଃ ଶ୍ୱଭିରନ୍ୟୈଷ୍ଟ ତର୍ଯ୍ୟଗ୍ୟୋନଭିଃ । (୩) ତସ୍ମାନ୍ମନ୍ତ୍ରୋଦ୍ଦେଶମନାୟୁକ୍ତୋ ନୋପଗଚ୍ଛେତ୍ । ଉଚ୍ଛିଦ୍ୟେତ ମନ୍ତ୍ରଭେଦୀ । ମନ୍ତ୍ରଭେଦୋ ହି ଦୂତାମାତ୍ୟ ସ୍ୱାମିନାମିଙ୍ଗିତାକାରାଭ୍ୟାମ୍ । (୪) ଇଙ୍ଗିତମନ୍ୟଥାବୃତ୍ତିଃ, ଆକୃତଗ୍ରହଣମାକାରଃ । ତସ୍ୟ ସଂବରଣଂ ଆୟୁକ୍ତପୁରୁଷରକ୍ଷଣମାକାର୍ଯ୍ୟକାଲାଦିତ । (୫) ତେଷାଂ ହି ପ୍ରମାଦମଦସୁପ୍ତପ୍ରଳାପକାମାଦିରୁତ୍ସେକଃ । ପ୍ରଚ୍ଛନ୍ନୋଽବମତୋ ବା ମନ୍ତ୍ରଂ ଭିନତ୍ତି । ତସ୍ମାଦ୍ରକ୍ଷେନ୍ମନ୍ତ୍ରମ୍ । (୬) ମନ୍ତ୍ରଭେଦୋହ୍ୟଯୋଗକ୍ଷେମକରୋ ରାଜ୍ଞସ୍ତଦାୟୁକ୍ତପୁରୁଷାଣାଂ

---

ପାଇପିବାର ଯଥେଷ୍ଟ ସମ୍ଭାବନା ରହିଛି । (୩) ଅତଏବ ରାଜା ଆଜ୍ଞାଦେବେ ଯେପରିକି ମନ୍ତ୍ରଣା ସ୍ଥାନରେ ବିନାଅଦେଶରେ କୌଣସି ବ୍ୟକ୍ତି ପ୍ରବେଶ କରିପାରିବେ ନାହିଁ । ଯେଉଁ ବ୍ୟକ୍ତି ଏହି ଆଜ୍ଞାକୁ ଅବଜ୍ଞା କରିବ ରାଜା ତାକୁ ଦେଶରୁ ଅନ୍ତର କରିଦେବେ କିମ୍ବା ଶୂଳଉପରେ ଚଢ଼ାଇ ତା'ର ଶିରଚ୍ଛେଦ କରାଇଦେବେ । କୌଣସି କୌଣସି ସମୟରେ ଦୂତ, କର୍ମଚାରୀ ଏବଂ ସ୍ୱୟଂ ରାଜାଙ୍କ ଅସାବଧାନତା ଯୋଗୁଁ ସେମାନଙ୍କ ଆକାରଇଙ୍ଗିତରୁ ମଧ୍ୟ ମନ୍ତ୍ରଣା ପ୍ରକାଶିତ ହୋଇଯାଇଥାଏ । (୪) ମନୁଷ୍ୟର ସ୍ୱାଭାବିକ ଚେଷ୍ଟାର ବିପରୀତ ଚେଷ୍ଟାକୁ 'ଇଙ୍ଗିତ' ଏବଂ ମୁଖ ଓ ଅଙ୍ଗପ୍ରତ୍ୟଙ୍ଗର ସ୍ୱାଭାବିକ ଭଙ୍ଗୀର ବିପରୀତ ଭଙ୍ଗୀକୁ 'ଆକାର' କହନ୍ତି । ରାଜାଙ୍କ କର୍ତ୍ତବ୍ୟ ହେଉଛି ନିଜର ଇଙ୍ଗିତ ଆକାରକୁ ଗୁପ୍ତଭାବେ ରଖି କାର୍ଯ୍ୟକାଳ ଉପସ୍ଥିତ ନ ହୋଇଥିବା ପର୍ଯ୍ୟନ୍ତ ମନ୍ତ୍ରଣା ସକାଶେ ଏକତ୍ରିତ ହୋଇଥିବା ବ୍ୟକ୍ତିମାନଙ୍କଠାରୁ ମଧ୍ୟ ଅପ୍ରସଂବରଣ କରିବେ । (୫) ମନ୍ତ୍ରଣାକାର୍ଯ୍ୟରେ ନିଯୁକ୍ତ ହୋଇଥିବା ବ୍ୟକ୍ତିମାନଙ୍କ ଅସାବଧାନତା, ମଦ୍ୟପାନାଦିଜନିତ ଶତ୍ରବିକାର, ସ୍ୱପ୍ନାଳାପ, କାମ ଅର୍ଥାତ୍ ବିଷୟତୃଷ୍ଣା ଓ ଗର୍ବଇତ୍ୟାଦି ଦୋଷ ମନ୍ତ୍ରଣା ପ୍ରକାଶ କରିଦିଏ । ପୁଣି ଲୁଚିକରି ଶୁଣୁଥିବା ବ୍ୟକ୍ତି ଏବଂ ମନ୍ତ୍ରଣାସ୍ଥାନରେ ଜଡ଼ା କାଲ ବୋଲି ଯେଉଁମାନଙ୍କୁ ଅବହେଳା କରି ରହିବାକୁ ପ୍ରଶ୍ରୟ ଦିଆଯାଇଥାଏ ସେହି ବ୍ୟକ୍ତିମାନେ ମନ୍ତ୍ରଣାକୁ ପଦାରେ ପକାଇଦିଅନ୍ତି । ଅତଏବ ରାଜା ଉପରୋକ୍ତ ସମସ୍ତ ବିଷୟପ୍ରତି ଦୃଷ୍ଟି ରଖି ଅତି ସାବଧାନରେ ମନ୍ତ୍ରରକ୍ଷା କରିବେ । (୬) ମନ୍ତ୍ରଣାପ୍ରକାଶ ରାଜା ଓ ମନ୍ତ୍ରଣାକାର୍ଯ୍ୟରେ ନିଯୁକ୍ତଥିବା ବ୍ୟକ୍ତିମାନଙ୍କ ଯୋଗକ୍ଷେମର ବିଘାତକ । ତେଣୁ ଅତି ଗୋପନୀୟ ବିଷୟ

ଚ । ତସ୍ମାଦ୍ ଗୁହ୍ୟମେକୋ ମନ୍ତ୍ରୟେତେତି ଭାରଦ୍ୱାଜଃ । ମନ୍ତ୍ରିଣାମପି ହି ମନ୍ତ୍ରିଣୋ ଭବନ୍ତି । ତେଷାମପ୍ୟନ୍ୟେ । ସୈଷାମନ୍ତ୍ରିପରଂପରା ମନ୍ତ୍ରଂ ଭିନତ୍ତି ।

(୭) ତସ୍ମାନ୍ନାସ୍ୟ ପରେ ବିଦ୍ୟୁଃ କର୍ମକିଂଚିଚ୍ଚିକୀର୍ଷିତମ୍ ।
ଆରବ୍ଧାରସ୍ତୁ ଜାନୀୟୁରାରବ୍ଧଂ କୃତମେବ ବା ॥

(୮) ନୈକସ୍ୟ ମନ୍ତ୍ରସିଦ୍ଧିରସ୍ତୀତି ବିଶାଳାକ୍ଷଃ । ପ୍ରତ୍ୟକ୍ଷପରୋକ୍ଷାନୁମେୟା ହି ରାଜବୃତ୍ତିଃ । ଅନୁପଲବ୍ଧସ୍ୟ ଜ୍ଞାନମୁପଲବ୍ଧସ୍ୟ ନିଶ୍ଚୟବଳାଧାନମର୍ଥ-ଦ୍ୱୈଧସ୍ୟ ସଂଶୟଚ୍ଛେଦନମେକଦେଶଦୃଷ୍ଟସ୍ୟ ଶେଷୋପଲବ୍ଧିରିତି ମନ୍ତ୍ରିସାଧ୍ୟମେତତ୍ । ତସ୍ମାଦ୍ ବୁଦ୍ଧିବୃଦ୍ଧୈଃ ସାର୍ଧମାସୀତ ମନ୍ତ୍ରମ୍ ।

---

ଗୁଡ଼ୁକର ମନ୍ତ୍ରଣା ରାଜା ଏକାକୀ କରିବାକୁ ହେବ, ଏହା ଭାରଦ୍ୱାଜପକ୍ଷ ସମର୍ଥକମାନଙ୍କ ମତ । ମନ୍ତ୍ରିମାନଙ୍କର ମଧ୍ୟ ମନ୍ତ୍ରଣାଦାତା ଥା'ନ୍ତି ଏବଂ ସେମାନଙ୍କର ମଧ୍ୟ ଅନ୍ୟ ମନ୍ତ୍ରଣାଦାତା ରହିଥାନ୍ତି । ଅତଏବ ଏହି ମନ୍ତ୍ରିପରଂପରଦ୍ୱାରା ମନ୍ତ୍ରଣା ବାହାରେ ପ୍ରକାଶିତ ହୋଇଯାଏ । (୭) ବିଜୟାଭିଳାଷୀ ରାଜା କରିବାକୁ ଇଚ୍ଛା କରିଥିବା କାର୍ଯ୍ୟ ଅନ୍ୟମାନେ କଦାପି ଜାଣିବାକୁ ହେବନାହିଁ । କିନ୍ତୁ ଉକ୍ତ କାର୍ଯ୍ୟାନୁଷ୍ଠାନର ଉପକ୍ରମ-କର୍ତ୍ତାମାନେ କାର୍ଯ୍ୟାରମ୍ଭ ପରେ ନିଜର ସୂକ୍ଷ୍ମବୁଦ୍ଧି ବଳରେ କାର୍ଯ୍ୟର ଗତିବିଧିକୁ ଦେଖି କିଛି କିଛି ଅନୁମାନ କରିପାରନ୍ତି (ଯଦି ଅନୁମାନ କରି ନପାରନ୍ତି ତେବେ କାର୍ଯ୍ୟ ନିଷ୍ପନ୍ନ ହେବା ପର୍ଯ୍ୟନ୍ତ ଏମାନେ ମଧ୍ୟ କିଛି ଜାଣିବାକୁ ହେବନାହିଁ) । (୮) ଭାରଦ୍ୱାଜଙ୍କ ଏହି ମତକୁ ଆକ୍ଷେପକରି ବିଶାଳାକ୍ଷ କହନ୍ତି, ଏକାକୀ ମନ୍ତ୍ରଣା କରିବାଦ୍ୱାରା କଦାପି ମନ୍ତ୍ରସିଦ୍ଧ ହୁଏ ନାହିଁ । କାରଣ ରାଜକାର୍ଯ୍ୟ ପ୍ରତ୍ୟକ୍ଷ, ପରୋକ୍ଷ ଓ ଅନୁମାନସିଦ୍ଧ, ପୁଣି ମନ୍ତ୍ରୀପୁରୋହିତାଦିଙ୍କ ସାହାଯ୍ୟସାପେକ୍ଷ । ନ ଜାଣିଥିବା ବିଷୟକୁ ଜାଣିବା, ଜାଣିବା ବିଷୟକୁ ନିଶ୍ଚିତଭାବେ ଦୃଢ଼କରିବା, ସଂଶୟାପନ୍ନ ବିଷୟରୁ ସଂଶୟ ଦୂରକରିବା, କୌଣସି ବିଷୟର ଏକ ଅଂଶ ଜାଣିବା ପରେ ସମ୍ପୂର୍ଣ୍ଣ ବିଷୟର ସମସ୍ତ ଅଂଶକୁ ଅନୁମାନଦ୍ୱାରା ଜାଣିବା, ଏବଂବିଧ ଅନ୍ୟାନ୍ୟ ସମସ୍ତକାର୍ଯ୍ୟ ମନ୍ତ୍ରୀସାଧ୍ୟ କାର୍ଯ୍ୟ ଅଟେ । ଅତଏବ ରାଜା ପ୍ରଶସ୍ତବୁଦ୍ଧିମାନ୍ ମନ୍ତ୍ରୀଙ୍କ ସହିତ

(୯) ନ କଂଚଦବମନ୍ୟେତ ସର୍ବସ୍ୟ ଶୃଣୁୟାନ୍ମତମ୍ ।
ବାଳସ୍ୟାପ୍ୟର୍ଥବଦ୍‌ବାକ୍ୟମୁପଯୁଂଜୀତ ପଣ୍ଡିତଃ ।।

(୧୦) ଏତନ୍ମନ୍ତ୍ରଜ୍ଞାନଂ ନୈତନ୍ମନ୍ତ୍ରରକ୍ଷଣମିତ ପାରାଶରାଃ । ଯଦସ୍ୟ କାର୍ଯମଭିପ୍ରେତଂ ତତ୍‌ପ୍ରତରୂପକଂ ମନ୍ତ୍ରିଣଃ ପୃଚ୍ଛେତ୍— କାର୍ଯମିଦମେବମାସୀ ଦେବଂ ବା ଯଦଭବେତ୍ ତତ୍ କଥଂ କର୍ତ୍ତବ୍ୟମିତ । ତେ ଯଥାବ୍ରୂୟୁଃ ତତ୍ କୁର୍ଯାତ୍ । ଏବଂମଂତ୍ରୋପଲବ୍‌ଧିଃ ସଂବୃତଶ୍ଚ ଭବତୀତ । (୧୧) ନେତ ପିଶୁନଃ । ମନ୍ତ୍ରିଣୋ ହି ବ୍ୟବହିତମର୍ଥଂ ବୃତ୍ତମବୃତ୍ତଂ ବା ପୃଷ୍ଟମନାଦରେଣ ବ୍ରୁବନ୍ତ ପ୍ରକାଶୟନ୍ତ ବା । ସ ଦୋଷଃ । ତସ୍ମାତ୍ କର୍ମସୁ ଯେ ଯେଷ୍ୱଭିପ୍ରେତାସ୍ତୈଃ ସହ ମନ୍ତ୍ରୟେତ୍ । ତୈର୍ମନ୍ତ୍ରୟମାଣୋ ହି ମନ୍ତ୍ରବୁଦ୍ଧିଂ ଗୁପ୍ତିଂ ଚ ଲଭତ ଇତ ।

---

ମନ୍ତ୍ରଣା ଉଦ୍ଦେଶ୍ୟରେ ବୈଠକ କରିବେ । (୯) କେବଳ ପ୍ରଶସ୍ତ ବୁଦ୍ଧିମାନ୍ ମନ୍ତ୍ରୀମାନଙ୍କ ମତ କାହିଁକି, ବୁଦ୍ଧିମାନ୍ ରାଜା କାହାକୁ ହେଲେ ଅବଜ୍ଞା ନକରି ସମସ୍ତଙ୍କର ମତ ଶ୍ରବଣ କରିବେ । ଏପରି କି ପଣ୍ଡିତବ୍ୟକ୍ତି ବାଳକର ସାର୍ଥକବାକ୍ୟକୁ ମଧ୍ୟ ଗ୍ରହଣକରି ଉପଯୋଗ କରିବା ଶ୍ରେୟସ୍କର । (୧୦) ପରାଶରମତାବଲମ୍ବିମାନଙ୍କ ମତରେ ଏହା ମନ୍ତ୍ରଜ୍ଞାନ ବିନା ମନ୍ତ୍ରରକ୍ଷା ନୁହେ । ରାଜା ଯେଉଁ ବିଷୟରେ ମନ୍ତ୍ରଣା କରିବାକୁ ଇଚ୍ଛା କରିବେ ତାହା ପ୍ରକାଶ ନକରି ତତ୍‌ସମାନ ଅନ୍ୟ ଗୋଟିଏ ବିଷୟରେ ମନ୍ତ୍ରିମାନଙ୍କୁ ଏପରି ପଚାରିବେ, "ଏହି କାର୍ଯ୍ୟ ଏପରି ଅଛି, ଯଦି ଭବିଷ୍ୟତରେ ଏପରି ହେବ ତେବେ ସେ ସମ୍ବନ୍ଧେ କ'ଣ କରିବା ଉଚିତ ?" ଏହାର ଉତ୍ତରରେ ମନ୍ତ୍ରିମାନେ ଯାହା କହିବେ ସେପରି କରିବାକୁ ହେବ । ଏପରି କଲେ ମନ୍ତ୍ରଜ୍ଞାନ ଓ ମନ୍ତ୍ରରକ୍ଷା କାର୍ଯ୍ୟ ସିଦ୍ଧ ହୋଇପାରିବ । (୧୧) ପିଶୁନ ଅର୍ଥାତ୍ ନାରଦ ଏହି ମତକୁ ସ୍ୱୀକାର କରନ୍ତିନାହିଁ । ତାଙ୍କ ମତରେ ଯଦି ମନ୍ତ୍ରିମାନଙ୍କୁ ପ୍ରକୃତ ବିଷୟ ନକହି ପ୍ରକାରାନ୍ତରରେ ସେମାନଙ୍କ ପରାମର୍ଶ ନିଆଯାଏ, ତେବେ ସେମାନେ ପର୍ଯ୍ୟାଲୋଚନା ନକରି ଅନାଦର ବା ଅନାସ୍ଥାରେ କିଛି ଗୋଟାଏ କହିଦଅନ୍ତି ଏବଂ ଏ ରାଜା ଅମ୍ଭମାନଙ୍କୁ ବିଶ୍ୱାସ ନକରି ଅମ୍ଭମାନଙ୍କଦ୍ୱାରା ଅନୁଷ୍ଠିତ ହେବା କାର୍ଯ୍ୟ ଅମ୍ଭମାନଙ୍କୁ ପ୍ରକାଶ ନକରି ଗୋପନ ରଖନ୍ତି ଭାବି, କ୍ରୋଧରେ ମନ୍ତ୍ରଣାକୁ ପ୍ରକାଶିତ କରିଦଅନ୍ତି । ଏଣୁ ଏମାନଙ୍କ ସହିତ ରାଜା

**(୧୨) ନେତ କୌଟଲ୍ୟଃ । ଅନବସ୍ଥାହ୍ୟେଷା । ମନ୍ତ୍ରିଭିସ୍ତ୍ରିଭିଶ୍ଚତୁର୍ଭିର୍ବା ସହ ମନ୍ତ୍ରୟେତ । (୧୩) ମନ୍ତ୍ରୟମାଣୋ ହ୍ୟେକେନାର୍ଥକୃଚ୍ଛ୍ରେଷୁ ନିଶ୍ଚୟଂ ନାଧିଗଚ୍ଛେତ୍ । ଏକଶ୍ଚ ମନ୍ତ୍ରୀ ଯଥେଷ୍ଟ ମନବଗ୍ରହଃ-ଚରତ । ଦ୍ୱାଭ୍ୟାଂ ମନ୍ତ୍ରୟମାଣୋ ଦ୍ୱାଭ୍ୟାଂ ସଂହତାଭ୍ୟାମବଗୃହ୍ୟତେ, ବିଗୃହୀତାଭ୍ୟାଂ ବିନାଶ୍ୟତେ । ତ୍ରିଷୁ ଚତୁର୍ଷୁ ବା ନୈକାନ୍ତଂ କୃଚ୍ଛ୍ରେଣୋପପଦ୍ୟତେ ମହାଦୋଷମ୍ । ଉପପନ୍ନନ୍ତୁ ଭବତ । (୧୪) ତତଃ ପରେଷୁ କୃଚ୍ଛ୍ରେଣାର୍ଥ ନିଶ୍ଚୟୋ ଗମ୍ୟତେ, ମନ୍ତ୍ରୋ ବା ରକ୍ଷ୍ୟତେ । ଦେଶକାଳକାର୍ଯବଶେନ**

---

ପ୍ରକୃତ ମନ୍ତ୍ରଣା କରିବା ଉଚିତ । ବିଶେଷତଃ ଯେଉଁ ବିଷୟରେ ଯେଉଁ ବ୍ୟକ୍ତିଙ୍କୁ ନିଯୁକ୍ତ କରାଯାଇଛି, ସେହି ବିଷୟର ମନ୍ତ୍ରଣା ସେହି ବ୍ୟକ୍ତିମାନଙ୍କ ସହିତ କରି ରାଜା ମନ୍ତ୍ରଜ୍ଞାନ ଓ ମନ୍ତ୍ରଗୁପ୍ତି ଲାଭ କରିବେ । (୧୨) କୌଟିଲ୍ୟଙ୍କ ମତରେ ପ୍ରତ୍ୟେକ କାର୍ଯ୍ୟର ଅଧ୍ୟକ୍ଷଙ୍କ ସହିତ ଏପରି ପରାମର୍ଶ କରିବା ଫଳରେ ମନ୍ତ୍ରଣା ଖୁବ୍ ଦୀର୍ଘ ହୋଇଯାଏ ଏବଂ ଅନବସ୍ଥା ପ୍ରାପ୍ତ ହୁଏ । ସୁତରାଂ ରାଜା ତିନିଜଣ କିମ୍ବା ଚାରିଜଣ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ସମସ୍ତ ବିଷୟ ସିଦ୍ଧାନ୍ତ କରିବା ଉଚିତ । (୧୩) ଯେଉଁ ରାଜା ଜଣେ ମନ୍ତ୍ରୀଙ୍କ ସହିତ ମନ୍ତ୍ରଣା କରନ୍ତି ସେ କାର୍ଯ୍ୟସଙ୍କଟ ସମୟରେ ବା ମତଭେଦ ସ୍ଥାନରେ କୌଣସି ସିଦ୍ଧାନ୍ତ କରିପାରନ୍ତି ନାହିଁ । କାରଣ ଜଣେ ମନ୍ତ୍ରୀ ସ୍ୱେଚ୍ଛାପୂର୍ବକ ଉଚ୍ଛୃଙ୍ଖଳଭାବେ କାମକରିଥାନ୍ତି । ଯଦି ରାଜା ଦୁଇଜଣ ମନ୍ତ୍ରୀଙ୍କ ସହିତ ପରାମର୍ଶ କରନ୍ତି, ତେବେ ଏ ଦୁଇଜଣ ମନ୍ତ୍ରୀ ଏକମତ ହୋଇଗଲେ ଏମାନେ କରିବା ସିଦ୍ଧାନ୍ତ ସଙ୍ଗତ ହେଉ ବା ଅସଙ୍ଗତ ହେଉ ରାଜା ତାହା ଗ୍ରହଣ କରିବାକୁ ବାଧ୍ୟ ହୋଇଥାନ୍ତି । ସାଧାରଣତଃ ଦୁଇଜଣ ମନ୍ତ୍ରୀ ଏକମତ ହୋଇଯିବା ଯଥେଷ୍ଟ ସମ୍ଭାବନା ଥିବାରୁ ଏପରି ମନ୍ତ୍ରଣା କରିବା ଉଚିତ ନୁହେଁ । ଯଦି ଦୁଇଜଣ ମନ୍ତ୍ରୀ ଏକମତ ନ ହୋଇ ଭିନ୍ନ ଭିନ୍ନ ମତ ପ୍ରକାଶ କରନ୍ତି, ତେବେ ମଧ୍ୟ ମନ୍ତ୍ରଣା ଏକବାରେ ନଷ୍ଟ ହୋଇଯାଏ । ସୁତରାଂ ତିନିଜଣ ବା ଚାରିଜଣ ମନ୍ତ୍ରୀ ମିଳିତଭାବେ କୌଣସି ମନ୍ତ୍ରଣାର ସିଦ୍ଧାନ୍ତକଲେ ଏଭଳି କୌଣସି ମହାଦୋଷ ବା ଅନର୍ଥ ଘଟିବାର ସମ୍ଭାବନା ରହେନାହିଁ, ବରଂ ଏପରି କରିବାଦ୍ୱାରା କାର୍ଯ୍ୟ ଠିକ୍‌ଭାବେ ସାଧିତହେବାର ବହୁସ୍ଥାନରେ ଦେଖାଯାଇଛି । (୧୪) ଯଦି ଚାରିଜଣରୁ ଅଧିକ ମନ୍ତ୍ରୀ ମନ୍ତ୍ରଣାସକାଶେ ନିଯୁକ୍ତ ହୁଅନ୍ତି, ତେବେ ମନ୍ତ୍ରଜ୍ଞାନ ଓ ମନ୍ତ୍ରରକ୍ଷା

**ତ୍ରୈକେନ ସହ ଦ୍ୱାଭ୍ୟାମେକୋ ବା ଯଥାସାମର୍ଥ୍ୟଂ ମନ୍ତ୍ରୟେତ । (୧୫) କର୍ମଣାମାରମ୍ଭୋପାୟଃ, ପୁରୁଷଦ୍ରବ୍ୟସଂପଦ୍, ଦେଶକାଳ-ବିଭାଗଃ, ବିନପାତପ୍ରତୀକାରଃ, କାର୍ଯ୍ୟସିଦ୍ଧିରିତି ପଞ୍ଚାଙ୍ଗୋ ମନ୍ତ୍ରଃ । ତାନେକୈକଶଃ ପୃଚ୍ଛେତ୍ ସମସ୍ତାଂଶ୍ଚ । (୧୬) ହେତୁଭିଶ୍ଚୈଷାଂ ମତପ୍ରବିବେକାନ୍ ବିଦ୍ୟାତ୍ । ଅବାପ୍ତାର୍ଥଃ କାଳଂ ନାତିକ୍ରାମୟେତ୍ । ନ ଦୀର୍ଘକାଳଂ ମନ୍ତ୍ରୟେତ । ନ ଚ ତେଷାଂ ପକ୍ଷୀୟୈର୍ଯେଷାମ୍**

---

କଷ୍ଟସାଧ୍ୟ ହୁଏ । ଅତଏବ ଦେଶ, କାଳ ଓ କାର୍ଯ୍ୟର ଅବଶ୍ୟକତା ଦୃଷ୍ଟିରେ ଜଣେ କିମ୍ବା ଦୁଇଜଣ ମନ୍ତ୍ରୀଙ୍କ ସହିତ ଯଥାଶକ୍ତି ବିଚାର କରି ଯଥାସମୟରେ ଯଥାଯୋଗ୍ୟ କାର୍ଯ୍ୟ ସାଧନକରିବା ଉଚିତ । ସମର୍ଥ ରାଜା ଏକାକୀ ସାମର୍ଥ୍ୟ ଅନୁସାରେ ମନ୍ତ୍ରଣାକରି ମଧ୍ୟ ଏ ସମସ୍ତ କାର୍ଯ୍ୟ ସାଧନ କରିପାରନ୍ତି । (୧୫) ନିଜଦେଶରେ ପରିଖା (ଜଳ), ପ୍ରାକାରାଦି (ପାଚେରି) ରୂପକ ଦୁର୍ଗ ନିର୍ମାଣ ଏବଂ ଶତ୍ରୁଦେଶକୁ ସନ୍ଧିବିଗ୍ରହାଦି ସକାଶେ ଦୂତ ପ୍ରେରଣାଦି କାର୍ଯ୍ୟାରମ୍ଭକ ଉପାୟ ଅବଲମ୍ବନ; ସ୍ୱଦେଶରେ ଦୁର୍ଗାଦି ନିର୍ମାଣକୁଶଳ ବଢ଼େଇ, ଲୋହରି, ଚାପିଆ ପ୍ରଭୃତି ଯୋଗ୍ୟ ପୁରୁଷ ସଂଗ୍ରହ ଏବଂ ପରଦେଶରେ ସନ୍ଧିବିଗ୍ରହାଦି ଅନୁଷ୍ଠାନକୁଶଳ ଦୂତ, ସେନାପତି ପ୍ରଭୃତି ପୁରୁଷରକ୍ଷଣ, ସ୍ୱଦେଶରେ ବୃହଦାକାର ବୃକ୍ଷାଦି ଦ୍ରବ୍ୟସଂଗ୍ରହ ଓ ପରଦେଶ ଜୟ ସକାଶେ ସୁବର୍ଣ୍ଣ ରତ୍ନାଦି ଦ୍ରବ୍ୟସଂଗ୍ରହ; ସ୍ୱଦେଶରେ ଦୁର୍ଗାଦି ନିର୍ମାଣ ସକାଶେ ଉପଯୁକ୍ତ ସ୍ଥାନ ନିର୍ଣ୍ଣୟ ଏବଂ ସୁଭିକ୍ଷ, ଦୁର୍ଭିକ୍ଷ ଓ ବର୍ଷାଦି କାଳ ନିର୍ଣ୍ଣୟ ଏବଂ ପରଦେଶରେ ସନ୍ଧ୍ୟାଦି ବିଷୟରେ ମହାଫଳ ଓ ଉର୍ବରାଦି ଦେଶ ଏବଂ ଅଭିଯୋଗ ଓ ଅନଭିଯୋଗାଦି କାଳର ନିର୍ଣ୍ଣୟ; ସ୍ୱଦେଶରେ ଦୁର୍ଗାଦି ନିର୍ମାଣବିଷୟକ ବିଘ୍ନ ଓ ପରଦେଶରେ ସନ୍ଧିପୁରୁଷପ୍ରେରଣ ବିଷୟକ ବିଘ୍ନର ପ୍ରତୀକାର, କାର୍ଯ୍ୟସିଦ୍ଧି ଅର୍ଥାତ୍ କ୍ଷୟ ସ୍ଥାନ ଓ ବୃଦ୍ଧିରୂପକ ତ୍ରିବିଧ କର୍ମଫଳର ବିଚାର—ଏ ପାଞ୍ଚପ୍ରକାର ବିଷୟକୁ ମନ୍ତ୍ରର ପଞ୍ଚାଙ୍ଗ କହନ୍ତି । ରାଜା ଏହି ମନ୍ତ୍ରଣାବିଷୟ ମନ୍ତ୍ରିମାନଙ୍କ ସହିତ ସ୍ୱତନ୍ତ୍ରଭାବେ କିମ୍ବା ସମବେତଭାବେ ବିଚାରକରି ସେମାନଙ୍କ ମତ ଗ୍ରହଣ କରିବେ । (୧୬) ରାଜା ଉପଯୁକ୍ତ କାରଣଦ୍ୱାରା ଏହି ମନ୍ତ୍ରିମାନଙ୍କ ମତଗତି ପରୀକ୍ଷା କରି ସେମାନଙ୍କ ହୃଦ୍‌ଗତ ବିଷୟକୁ ଗ୍ରହଣ କରିବେ । ଯେତେବେଳେ କାର୍ଯ୍ୟ ନିଷ୍ପନ୍ନ ହୋଇଯିବ,

ଅପକୁର୍ଯ୍ୟାତ୍ । (୧୭) ମନ୍ତ୍ରିପରିଷଦଂ ଦ୍ୱାଦଶାମାତ୍ୟାନ୍ କୁର୍ବୀତେତି ମାନବାଃ । ଷୋଡ଼ଶେତି ବାର୍ହସ୍ପତ୍ୟାଃ । ବିଂଶତିମ୍ ଇତ୍ୟୌଶନସାଃ । ଯଥାସାମର୍ଥ୍ୟମିତି କୌଟଲ୍ୟଃ । ତେ ହ୍ୟସ୍ୟ ସ୍ୱପକ୍ଷଂ ପରପକ୍ଷଂ ଚ ଚିନ୍ତୟେୟୁଃ । ଅକୃତାରମ୍ଭମାରବ୍ଧାନୁଷ୍ଠାନମନୁଷ୍ଠିତବିଶେଷଂ ନିୟୋଗସମ୍ପଦଂ ଚ କର୍ମଣାଂ କୁର୍ୟୁଃ । ଆସନ୍ନୈଃ ସହ କାର୍ଯ୍ୟାଣି ପଶ୍ୟେତ୍, ଅନାସନ୍ନୈଃ ସହ ପତ୍ରସଂପ୍ରେଷଣେନ ମନ୍ତ୍ରୟେତ । (୧୮) ଇନ୍ଦ୍ରସ୍ୟ ହି ମନ୍ତ୍ରିପରିଷଦୃଷୀଣାଂ ସହସ୍ରମ୍ । ସ ତଚ୍ଚକ୍ଷୁଃ ।

---

ଯେତେବେଳେ ଏହାକୁ କାର୍ଯ୍ୟକାରୀ କରିବାରେ ବିଳମ୍ବ କରିବେନାହିଁ । ଦୀର୍ଘକାଳ କୌଣସି ମନ୍ତ୍ରଣା କରିବେ ନାହିଁ । ରାଜା ଯେଉଁମାନଙ୍କର ଅପକାର କରିଛନ୍ତି, ସେମାନଙ୍କ ସହିତ ଓ ସେମାନଙ୍କ ସମ୍ପର୍କୀୟ ଲୋକଙ୍କ ସହିତ କୌଣସି ମନ୍ତ୍ରଣା କରିବେନାହିଁ । (୧୭) ମନୁ ମତାବଲମ୍ବୀମାନେ ମନ୍ତ୍ରିପରିଷଦରେ ବାରଜଣ, ବୃହସ୍ପତି ମତାବଲମ୍ବିମାନେ ଷୋହଳଜଣ ଏବଂ ଶୁକ୍ରାଚାର୍ଯ୍ୟ ମତାବଲମ୍ବିମାନେ କୋଡ଼ିଏଜଣ ମନ୍ତ୍ରୀ ରହିବାପାଇଁ ମତପ୍ରକାଶ କରିଛନ୍ତି । କିନ୍ତୁ କୌଟିଲ୍ୟଙ୍କ ମତରେ ଅବସ୍ଥାନୁସାରେ ନ୍ୟୁନ ବା ଅଧିକ ସଂଖ୍ୟକ ମନ୍ତ୍ରୀ ନିଯୁକ୍ତକରିବା ହେଉଛି ସର୍ବଶ୍ରେଷ୍ଠ ବ୍ୟବସ୍ଥା । ଏହି ମନ୍ତ୍ରିମାନେ ରାଜାଙ୍କର ସ୍ୱପକ୍ଷ ଓ ବିପକ୍ଷଗତ କାର୍ଯ୍ୟର ସମୀକ୍ଷା ପୂର୍ବକ ଅନୁଷ୍ଠାନ, ଅକୃତକାର୍ଯ୍ୟର ଅନୁଷ୍ଠାନ ଉପକ୍ରମ, ଉପକ୍ରାନ୍ତ କାର୍ଯ୍ୟର (ଆରମ୍ଭ ହୋଇଥିବା କାର୍ଯ୍ୟର) ପରିସମାପ୍ତି, ପରିସମାପିତ କାର୍ଯ୍ୟର ସଂସ୍କାର ଅର୍ଥାତ୍ ପ୍ରସ୍ତୁତ ପ୍ରାସାଦାଦିର ଶୋଭା ବର୍ଦ୍ଧନାର୍ଥେ ତହିଁରେ ଚୂର୍ଣ୍ଣ ଲେପନ ଓ ଚିତ୍ରପଟାଦି ଅର୍ପଣ ଏବଂ ଏହିସବୁ କାର୍ଯ୍ୟରେ ନିଯୁକ୍ତ ହୋଇଥିବା ଶିଳ୍ପୀ ଓ କର୍ମକର-ମାନଙ୍କ ଗୁଣବାହୁଲ୍ୟ ସଂପାଦନ ପୂର୍ବକ ଏହାର ନିରାପତ୍ତା ଓ ପରିଚାଳନାଦି ବିଷୟରେ ଉପଯୁକ୍ତ ବ୍ୟବସ୍ଥା କରିବେ । ରାଜା ନିକଟରେ ଥିବା ମନ୍ତ୍ରିମାନଙ୍କ ସହିତ ମୌଖିକ ବାର୍ତ୍ତାଳାପ କରିବେ ଏବଂ ଦୂରସ୍ଥ ମନ୍ତ୍ରିମାନଙ୍କ ସହିତ ସାଂକେତିକ ଶବ୍ଦବିଶିଷ୍ଟ ପତ୍ରପ୍ରେରଣଦ୍ୱାରା ବିଚାର ବିନିମୟ କରିବେ । (୧୮) ଇନ୍ଦ୍ରଙ୍କ ମନ୍ତ୍ରୀପରିଷଦରେ ସହସ୍ରେ ଋଷି ଅଛନ୍ତି ବୋଲି ବେଦାଦିରେ ବର୍ଣ୍ଣିତ ହୋଇଛି । ସେ ଏହି ସହସ୍ର ଋଷିମନ୍ତ୍ରିପରିଷଦାତ୍ମକ ଚକ୍ଷୁଦ୍ୱାରା କାର୍ଯ୍ୟ-ତତ୍ତ୍ୱର ଦର୍ଶନ ଓ ସାଧନ କରନ୍ତି ବୋଲି ତାଙ୍କର ପ୍ରକୃତରେ ଦୁଇଟି ଚକ୍ଷୁ ଥିବା

ତସ୍ମାଦମଂ ଦ୍ୱ୍ୟକ୍ଷଂ ସହସ୍ରାକ୍ଷମାହୁଃ । (୧୯) ଆତ୍ୟୟିକେ କାର୍ଯ୍ୟେ ମନ୍ତ୍ରିଣୋ ମନ୍ତ୍ରିପରିଷଦଂ ଚାହୂୟ ବ୍ରୂୟାତ୍ । ତତ୍ର ଯଦ୍ ଭୂୟିଷ୍ଠାଃ କାର୍ଯ୍ୟସିଦ୍ଧିକରଂ ବା ବ୍ରୂୟୁସ୍ତତ୍ କୁର୍ଯ୍ୟାତ୍ । କୁର୍ବତଶ୍ଚ—

(୨୦) ନାସ୍ୟ ଗୁହ୍ୟଂ ପରେ ବିଦ୍ୟୁଶ୍ଛିଦ୍ରଂ ବିଦ୍ୟାତ୍ ପରସ୍ୟ ଚ ।
ଗୂହେତ୍ କୂର୍ମ ଇବାଙ୍ଗାନି ଯତ୍ ସ୍ୟାଦ୍ ବିବୃତମାତ୍ମନଃ ।।
(୨୧) ଯଥା ହ୍ୟଶ୍ରୋତ୍ରିୟଃ ଶ୍ରାଦ୍ଧଂ ନ ସତାଂ ଭୋକ୍ତୁମର୍ହତି ।
ଏବମଶ୍ରୁତଶାସ୍ତ୍ରାର୍ଥୋ ନ ମନ୍ତ୍ରଂ ଶ୍ରୋତୁମର୍ହତି ।

---

ସେଥିପାଇଁ ଲୋକେ ତାଙ୍କୁ 'ସହସ୍ରାକ୍ଷ' ବୋଲି କହନ୍ତି । (୧୯) ଅତଏବ ରାଜା ପ୍ରାଣନାଶର ଶଂକା ବା ଏପରି କୌଣସି ଜରୁରୀ କାର୍ଯ୍ୟରେ ପୂର୍ବୋକ୍ତ ମନ୍ତ୍ରୀମାନଙ୍କୁ ବା ମନ୍ତ୍ରୀପରିଷଦକୁ ଏକତ୍ରିତ ବା ଆହୂତ କରି ସେମାନଙ୍କ ସମକ୍ଷରେ ଉକ୍ତ ସମସ୍ୟା ଉପସ୍ଥାପିତ କରିବେ ଏବଂ ସଂଖ୍ୟାଧିକ ମନ୍ତ୍ରୀ ଯେଉଁ ମତ ପ୍ରକାଶ କରିବେ ଅଥବା ସଂଖ୍ୟାନ୍ୟୂନ ମନ୍ତ୍ରୀ ଯଦି କାର୍ଯ୍ୟସିଦ୍ଧିକର ପରାମର୍ଶ ଦେବେ, ତେବେ ତାହା ଗ୍ରହଣକରି ତଦନୁସାରେ କାର୍ଯ୍ୟାନୁଷ୍ଠାନ କରିବେ । (୨୦) ରାଜା ନିଜର ଗୋପନୀୟ ବିଷୟକୁ ଶତ୍ରୁର ଅଗୋଚର କରି, ଶତ୍ରୁର ଛିଦ୍ର ଜାଣିବାକୁ ଯତ୍ନ କରିବେ । କଇଁଚ ଯେପରି ଖୋଳଭିତରେ ନିଜର ଅଙ୍ଗଗୁଡ଼ିକୁ ସଙ୍କୁଚିତ କରି ରଖେ, ରାଜା ମଧ୍ୟ ନିଜର ବିଷୟକୁ ସେପରି ଗୁପ୍ତକରି ରଖିବେ । (୨୧) ଅବ୍ରାହ୍ମଣ ଯେପରି ସଜ୍ଜନମାନଙ୍କ ଶ୍ରାଦ୍ଧଭୋଜନ ଦେବାପାଇଁ ଅନର୍ହ, ଅଶ୍ରୁତଶାସ୍ତ୍ରାର୍ଥବ୍ୟକ୍ତି (ଶାସ୍ତ୍ରାର୍ଥ ଶ୍ରବଣ କରିନଥିବା ବ୍ୟକ୍ତି) ସେପରି ମନ୍ତ୍ରଣା ଶୁଣିବାକୁ ଅନର୍ହ ହୋଇଥାଏ (ଅନୁପଯୁକ୍ତ ହୋଇଥାଏ) ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ପଞ୍ଚଦଶୋଽଧ୍ୟାୟଃ—ମନ୍ତ୍ରାଧିକାରଃ ।

# ଷୋଡ଼ଶୋଽଧ୍ୟାୟଃ

## ଦ୍ୱାଦଶ ପ୍ରକରଣଂ—ଦୂତପ୍ରଣିଧିଃ ।

### THE MISSION OF ENVOYS

( ନିସୃଷ୍ଟାର୍ଥ, ପରିମିତାର୍ଥ ଓ ସନ୍ଦେଶହର ନାମକ ତିନିପ୍ରକାର ଦୂତଙ୍କ ସନ୍ଦେଶଦାନ ପୂର୍ବକ ଶତ୍ରୁରାଜ୍ୟକୁ ପ୍ରେରଣ ବିଷୟ ଏହି ଅଧ୍ୟାୟରେ ଆଲୋଚିତ ହେବ । )

(୧) ଉଦ୍ଧୃତମନ୍ତ୍ରୋ ଦୂତପ୍ରଣିଧିଃ । ଅମାତ୍ୟସଂପଦୋପେତୋ ନିସୃଷ୍ଟାର୍ଥଃ, ପାଦଗୁଣହୀନଃ ପରିମିତାର୍ଥଃ, ଅର୍ଦ୍ଧଗୁଣହୀନଃ ଶାସନହରଃ । (୨) ସୁପ୍ରତିବିହିତଯାନବାହନପୁରୁଷପରିବାପଃ ପ୍ରତିଷ୍ଠେତ । ଶାସନମେବଂ ବାଚ୍ୟଃ ପରଃ, ସ ବକ୍ଷ୍ୟତ୍ୟେବଂ, ତସ୍ୟେଦଂ ପ୍ରତିବାକ୍ୟମ୍, ଏବମତିସନ୍ଧାତବ୍ୟମ୍ ଇତ୍ୟଧୀୟାନୋ ଗଚ୍ଛେତ୍ । ଅଟବ୍ୟନ୍ତପାଳପୁରରାଷ୍ଟ୍ରମୁଖ୍ୟୈଶ୍ଚ ପ୍ରତିସଂସର୍ଗଂ ଗଚ୍ଛେତ୍ । ଅନୀକସ୍ଥାନଯୁଦ୍ଧପ୍ରତିଗ୍ରହାପସାରଭୂମିରାତ୍ମନଃ ପରସ୍ୟ ଚାବେକ୍ଷେତ । ଦୁର୍ଗରାଷ୍ଟ୍ରପ୍ରମାଣଂ ସାରବୃତ୍ତିଗୁପ୍ତିଚ୍ଛିଦ୍ରାଣି ଚୋପଲଭେତ । ପରାଧିଷ୍ଠାନ-

(୧) ରାଜା ମନ୍ତ୍ରାର୍ଥ ନିର୍ଦ୍ଧାରଣ ପରେ ଦୂତ ପ୍ରେରଣ କରିବେ । ପୂର୍ବୋକ୍ତ ଜାନପଦାଦି ଅମାତ୍ୟସଂପଦଯୁକ୍ତ ଦୂତଙ୍କୁ 'ନିସୃଷ୍ଟାର୍ଥ', ଏହାଙ୍କ ଚତୁର୍ଥାଂଶ ଗୁଣହୀନ ଦୂତଙ୍କୁ 'ପରିମିତାର୍ଥ' ଏବଂ ଅର୍ଦ୍ଧଗୁଣହୀନ ଦୂତଙ୍କୁ 'ଶାସନହର' କୁହାଯାଏ । (୨) ରାଜଦୂତ ସମ୍ୟକ୍ ସଜ୍ଜୀକୃତ ଶିବିକାଦି ଯାନ, ଅଶ୍ୱାଦି ବାହନ, ଶୁଶ୍ରୂଷାକାରୀ ନୌକର ଓ ଶଯ୍ୟାସ୍ତରଣାଦି ବ୍ୟବହାର୍ଯ୍ୟ ଦ୍ରବ୍ୟ ସଙ୍ଗରେ ନେଇ ଶତ୍ରୁଦେଶରେ ପ୍ରବେଶ କରିବାକୁ ବାହାରିବେ । ସେ ମନେ ମନେ ବିଚାର କରିବେ ଯେ, 'ଶତ୍ରୁରାଜାଙ୍କ ସମକ୍ଷରେ ମୁଁ ଏପରି ଢଙ୍ଗରେ ଆମ ରାଜାଙ୍କ ସନ୍ଦେଶ ବୁଝାଇବି; ସେ ଏପରି କହିଲେ ମୁଁ ଏପରି ପ୍ରତ୍ୟୁତ୍ତର ଦେବି ।' ଶତ୍ରୁରାଜାଙ୍କୁ ଯୁକ୍ତିବଳରେ ପରାଜିତ କରିବାପାଇଁ ଏପରି ପୁନଃପୁନଃ କର୍ତ୍ତବ୍ୟ ଅନୁସନ୍ଧାନ କରି, ଦୂତ ଶତ୍ରୁଦେଶରେ ପ୍ରବେଶକରିବେ ଏବଂ ପ୍ରବେଶକରିବା ବେଳେ ସେ ଦେଶର ବନରକ୍ଷକ, ସୀମାରକ୍ଷକ, ପୁରମୁଖ୍ୟ ଓ ରାଜମୁଖ୍ୟମାନଙ୍କୁ ନିଜର ପରିଚୟ ଦେଇଦେଇ ଯିବେ ।

**ମନୁଜ୍ଞାତଃ ପ୍ରବିଶେତ୍ । ଶାସନଂ ଚ ଯଥୋକ୍ତଂ ବ୍ରୂୟାତ୍ ପ୍ରାଣାବାଧେଽପି ଦୃଷ୍ଟେ । ପରସ୍ୟ ବାଚି ବକ୍ତ୍ରେ ଦୃଷ୍ଟ୍ୟାଂ ଚ ପ୍ରସାଦଂ ବାକ୍ୟପୂଜନ-ମିଷ୍ଟପରିପ୍ରଶ୍ନଂ ଗୁଣକଥାସଙ୍ଗମାସନ୍ନମାସନଂ ସତ୍କାରମିଷ୍ଟେଷୁ ସ୍ମରଣଂ ବିଶ୍ୱାସଗମନଂ ଚ ଲକ୍ଷୟେତ୍ ତୁଷ୍ଟସ୍ୟ, ବିପରୀତମତୁଷ୍ଟସ୍ୟ । ତଂ ବ୍ରୂୟାତ୍ ଦୂତମୁଖା ବୈ ରାଜାନସ୍ତ୍ୱଂ ଚାନ୍ୟେ ଚ । ତସ୍ମାଦୁଦ୍ୟତେଷ୍ୱପି ଶସ୍ତ୍ରେଷୁ ଯଥୋକ୍ତଂ ବକ୍ତାରଃ । ତେଷାମନ୍ତାବସାୟିନୋଽପ୍ୟବଧ୍ୟାଃ, କିମଙ୍ଗ ପୁନର୍ବ୍ରାହ୍ମଣାଃ । ପରସ୍ୟୈତଦ୍ ବାକ୍ୟମେଷ ଦୂତଧର୍ମଃ ଇତି ।**

---

ସେଠାରେ ପ୍ରବେଶ କରି ନିଜରାଜ୍ୟର ଓ ଶତ୍ରୁରାଜ୍ୟର ସୈନ୍ୟମାନଙ୍କ ନିବେଶଯୋଗ୍ୟ ଭୂମି, ଯୁଦ୍ଧଭୂମି ଓ ଅପସରଣର ଅନୁକୂଳ ଭୂମି କିପରି ଅଛି ତାହା ଭଲଭାବେ ଜାଣିନେବେ । ଶତ୍ରୁରାଜାଙ୍କର କେତେଗୋଟି ଦୁର୍ଗ ଅଛି, ତାଙ୍କ ରାଜ୍ୟର ବିସ୍ତାର କେତେ, ଧାନ୍ୟ ସୁବର୍ଣ୍ଣାଦି ଉତ୍ପତ୍ତିର ପରିମାଣ କେତେ, ପ୍ରଜାମାନଙ୍କର ଜୀବିକା କ'ଣ, ଆତ୍ମରକ୍ଷା ଓ ରାଜ୍ୟରକ୍ଷାର ଉପାୟ ବା ସୁବିଧା କ'ଣ ଓ ତାଙ୍କର 'ଛିଦ୍ର' ଅର୍ଥାତ୍ ଶତ୍ରୁ ଆକ୍ରମଣର ବାଟ ଓ ରାଜ୍ୟର ଦୋଷଦୁର୍ବଳତା କ'ଣ ଅଛି ତାହା ଭଲଭାବେ ଉପଲବ୍ଧି କରିବେ । ଦୂତ ଶତ୍ରୁରାଜାଙ୍କ ଆଜ୍ଞାପ୍ରାପ୍ତ ହେବା ପରେ ତାଙ୍କ ରାଜ୍ୟରେ ପ୍ରବେଶ କରିବେ ଏବଂ ପ୍ରାଣଭୟ ଉପସ୍ଥିତ ହେଲେ ମଧ୍ୟ ନିଜ ସ୍ୱାମୀ ଯେପରି ସନ୍ଦେଶ ପଠାଇଛନ୍ତି ତାହା ଅବିକଳ ସେହିପରି ଶତ୍ରୁରାଜାଙ୍କ ଆଗରେ ପ୍ରକାଶ କରିବେ (ନିଜର ପ୍ରାଣରକ୍ଷା ପାଇଁ ଅନ୍ୟଥା କହିବେ ନାହିଁ) । ଶତ୍ରୁରାଜାଙ୍କ ବଚନ, ମୁଖ ଓ ଦୃଷ୍ଟିରେ ଯଦି ପ୍ରସନ୍ନତାର ଆଭାସ ମିଳେ, ସେ ଯଦି ଦୂତବାକ୍ୟର ଆଦର କରନ୍ତି, ପ୍ରିୟ କୁଶଳାଦି ପ୍ରଶ୍ନ କରନ୍ତି, ସନ୍ଦେଶପ୍ରେରକ ରାଜାଙ୍କ ଗୁଣ ଶ୍ରବଣ କରିବାକୁ ଆଗ୍ରହ ପ୍ରକାଶ କରନ୍ତି, ଦୂତଙ୍କୁ ନିଜର ଆସନ ନିକଟରେ ବସାନ୍ତି, ସତ୍କାର କରନ୍ତି, ଇଷ୍ଟବନ୍ଧୁମାନଙ୍କ କୁଶଳ ସମାଚାର ପଚାରନ୍ତି (ସ୍ୱାଦୁ ଭୋଗ୍ୟ ଫଳାଦିଦ୍ୱାରା ଦୂତ ମନେପକାଇବାଭଳି ବ୍ୟବହାର କରନ୍ତି) ଏବଂ ଦୂତ ଉପରେ ବିଶ୍ୱାସ ସ୍ଥାପନ କରନ୍ତି, ତେବେ ଏହି ସମସ୍ତ ଲକ୍ଷଣରୁ ଶତ୍ରୁରାଜା ନିଜ ରାଜାଙ୍କ ପ୍ରତି ତୁଷ୍ଟ ଏବଂ ଏହାର ବିପରୀତ ଲକ୍ଷଣରୁ ଅତୁଷ୍ଟ ଅଛନ୍ତି ବୋଲି ବୁଝିନେବେ । ଶତ୍ରୁରାଜା ନିଜ ରାଜାଙ୍କ ପ୍ରତି ଅତୁଷ୍ଟ ଥିବା ଜଣାଗଲେ ଦୂତ କହିବେ,—ରାଜାମାନେ

**(୩) ବସେଦବସୃଷ୍ଟଃ, ପୂଜୟା ନୋତ୍ସିକ୍ତଃ, ପରେଷୁ ବଳିତ୍ୱଂ ନ ମନ୍ୟେତ, ବାକ୍ୟମନିଷ୍ଟଂ ସହେତ, ସ୍ତ୍ରିୟଃ ପାନଂ ଚ ବର୍ଜୟେତ୍, ଏକଃ ଶୟୀତ, ସୁପ୍ତମତ୍ତୟୋର୍ହି ଭାବଜ୍ଞାନଂ ଦୃଷ୍ଟମ୍ । (୪) କୃତ୍ୟପକ୍ଷୋପଜାପମକୃତ୍ୟପକ୍ଷେ ଗୂଢ଼ପ୍ରଣିଧାନଂ ରାଗାପରାଗୌ ଭର୍ତ୍ତରି ରନ୍ଧ୍ରଂ ଚ ପ୍ରକୃତୀନାଂ ତାପସବୈଦେହକବ୍ୟଞ୍ଜନାଭ୍ୟାମୁପଲଭେତ । ତୟୋରନ୍ତେବାସିଭିଶ୍ଚିକିତ୍ସକପାଷଣ୍ଡବ୍ୟଂଜନୋଭୟବେ ତନୈର୍ବା,**

---

ଦୂତମୁଖ ଅର୍ଥାତ୍ ସେମାନଙ୍କର ସ୍ୱ ଅଭିପ୍ରାୟ ନିବେଦନର ଦ୍ୱାର ହେଉଛନ୍ତି ଦୂତମାନେ । (ଏଣୁ ଦୂତମାନଙ୍କୁ ସ୍ୱାମୀଙ୍କର ମୁଖସ୍ଥାନୀୟ କୁହାଯାଏ ।) ଅତଏବ ତାଙ୍କୁ ବଧକରିବାକୁ ଉଦ୍ୟତ ହୋଇଥିବା ଶସ୍ତ୍ରକୁ ମଧ୍ୟ ଭ୍ରୂକ୍ଷେପ ନକରି ସେମାନେ ନିଜ ରାଜାଙ୍କ ଅଭିପ୍ରାୟ ସ୍ପଷ୍ଟଭାବେ ପ୍ରକାଶ କରନ୍ତି । ଦୂତମାନଙ୍କ ମଧ୍ୟରେ ଚଣ୍ଡାଳଦୂତ ମଧ୍ୟ ଅବଧ୍ୟ ବୋଲି ଜଣାଶୁଣା ଥିବା ସ୍ଥଳେ ବ୍ରାହ୍ମଣଦୂତ ଅବଧ୍ୟ ବୋଲି ପ୍ରକାଶ କରିବା ନିରର୍ଥକ ମାତ୍ର । ଏଣୁ ପ୍ରେରକ ରାଜାଙ୍କ ବାକ୍ୟର ପ୍ରତିନିଧିତ୍ୱ କରିବା ହେଉଚି ଦୂତଧର୍ମ । (୩) ଯେ ପର୍ଯ୍ୟନ୍ତ ଶତ୍ରୁରାଜା ବିଦାୟ ଦେଇନାହାନ୍ତି ସେପର୍ଯ୍ୟନ୍ତ ଦୂତ ସେହି ରାଜ୍ୟରେ ହିଁ ଅବସ୍ଥାନ କରିବେ । ଶତ୍ରୁରାଜାଙ୍କ ସତ୍କାରରେ ଗର୍ବିତ ହେବେନାହିଁ । ଶତ୍ରୁ ସମକ୍ଷରେ ନିଜ ରାଜାଙ୍କ ବଳର ଅଭିମାନ ପ୍ରକାଶକରିବେ ନାହିଁ । ସେ ଅନିଷ୍ଟବାକ୍ୟ ପ୍ରକାଶକଲେ ମଧ୍ୟ ତାହା ଧୈର୍ଯ୍ୟର ସହିତ ସହ୍ୟକରିବେ । ପରସ୍ତ୍ରୀ ଓ ସୁରାପାନ ବର୍ଜନପୂର୍ବକ ଏକାକୀ ଶୟନକରିବେ । ସୁରାପାନ କରିବା ଫଳରେ ମତ୍ତହୋଇ କୌଣସି ଗୁପ୍ତବିଷୟ ପ୍ରକାଶକରିଦେବା ଓ ଅନ୍ୟମାନଙ୍କ ସହ ଶୟନକଲେ ନିଦବାଉଳାରେ ଗୁପ୍ତବିଷୟ ପ୍ରକାଶ କରିଦେବା ଭୟ ବରାବର ରହିଥାଏ । ଏଣୁ ଦୂତ ସୁରାପାନ ଓ ଅନ୍ୟମାନଙ୍କ ସହିତ ଶୟନ କରିବା ବର୍ଜନ କରିବେ । (୪) ଦୂତ, ନିଜ ରାଜାଙ୍କ କର୍ତ୍ତୃକ ନିଯୁକ୍ତ ତାପସ ଓ ବଣିକ୍ ବ୍ୟଂଜନ ଗୁପ୍ତଚର ସଂସ୍ଥା କର୍ତ୍ତୃକ ଶତ୍ରୁଦେଶର କୃତ୍ୟପକ୍ଷ ଅର୍ଥାତ୍ ଆୟତ୍ତଯୋଗ୍ୟ ମନ୍ତ୍ରୀ, ଅମାତ୍ୟ ଓ ପ୍ରଜାବର୍ଗଙ୍କୁ ଭେଦନୀତି ଦ୍ୱାରା, ଏବଂ ଅକୃତ୍ୟପକ୍ଷ ଅର୍ଥାତ୍ ଆୟତ୍ତକୁ ନ ଆସିବା ବ୍ୟକ୍ତିମାନଙ୍କୁ ଗୁପ୍ତପ୍ରୟୋଗ ଅର୍ଥାତ୍ ତୀକ୍ଷ୍ଣ ରସଦ ପ୍ରଭୃତି ଗୁପ୍ତଚରମାନଙ୍କ ଦ୍ୱାରା ଯଥାକ୍ରମେ ପ୍ରହାର ଓ ସମ୍ମୋହକ ବିଷଦାନ ତଥା ସାମାଦି ନୀତି ପ୍ରୟୋଗଦ୍ୱାରା ବଶୀଭୂତ କରିବା ଏବଂ ଶତ୍ରୁରାଜାଙ୍କ ପ୍ରତି ପ୍ରକୃତି ଅର୍ଥାତ୍ ଅମାତ୍ୟାଦିଙ୍କର ଥିବା

ତେଷାମସଂଭଷାୟାଂ ଯାଚକମତ୍ତୋନ୍ମତ୍ତସୁପ୍ତପ୍ରଳାପୈଃ ପୁଣ୍ୟ-ସ୍ଥାନଦେବଗୃହଚିତ୍ରଲେଖ୍ୟସଂଜ୍ଞାଭିର୍ବା ଚାରମୁପଲଭେତ । ଉପଲବ୍ଧ-ସ୍ୟୋପଜାପମୁପେୟାତ୍ । (୫) ପରେଣଚୋକ୍ତଃ ସ୍ୱାସାଂ ପ୍ରକୃତୀନାଂ ପରମାଣଂ ନାଚକ୍ଷୀତ । ସର୍ବଂବେଦ ଭବାନତ ବ୍ରୂୟାତ୍, କାର୍ଯ୍ୟ-ସିଦ୍ଧିକରଂ ବା । (୬) କାର୍ଯ୍ୟସ୍ୟ ସିଦ୍ଧାବୁପରୁଧ୍ୟମାନସ୍ତର୍କୟେତ୍ କିଂ ଭର୍ତ୍ତୁର୍ମେ ବ୍ୟସନମାସନ୍ନଂ ପଶ୍ୟନ୍, ସ୍ୱଂ ବା ବ୍ୟସନଂ ପ୍ରତିକର୍ତ୍ତୁ-କାମଃ, ପାର୍ଷ୍ଣିଗ୍ରାହାସାରବନ୍ତଃକୋପମାଟବିକଂ ବା ସମୁତ୍ଥାପୟିତୁ-

---

ଅନୁରାଗ ଓ ବିରାଗ, ଉଭୟଙ୍କ ଭିତରେ ଥିବା ତ୍ରୁଟି, ଛିଦ୍ର ଇତ୍ୟାଦି ବିଷୟ ଉକ୍ତ ଗୁପ୍ତଚରମାନଙ୍କଠାରୁ ଜାଣିବେ । ଅଥବା ଏହି ତାପସ ବଣିକ ପ୍ରଭୃତି ଗୁପ୍ତଚରମାନଙ୍କ ଶିଷ୍ୟ କିମ୍ବା ବୈଦ୍ୟ, ପାଷଣ୍ଡ ବେଶଧାରୀ ଓ ଉଭୟ ବେତନଭୋଗୀ ଗୁପ୍ତଚରମାନଙ୍କଦ୍ୱାରା ମଧ୍ୟ ଏସମସ୍ତ କାର୍ଯ୍ୟ ଜାଣିପାରିବେ । ଯଦି ଏ ଗୁପ୍ତଚରମାନଙ୍କ ସହିତ ଦୂତ କଥାଭାଷା କରିବାକୁ ସୁବିଧା ନପାନ୍ତି ତେବେ ଯାଚକ (ଭିକାରୀ), ନିଶାଖୋର, ମୂର୍ଖ ଓ ସୁପ୍ତଅବସ୍ଥାରେ ପ୍ରଳାପ କରୁଥିବା ବ୍ୟକ୍ତିପରି ବାହାନା କରି ଉପର୍ଯ୍ୟୁକ୍ତ ଗୁପ୍ତଚରମାନେ ରାଜଦୂତଙ୍କୁ ସମ୍ବାଦର ସଙ୍କେତ ପ୍ରଦାନକରିବେ । ଅଧିକନ୍ତୁ ତୀର୍ଥସ୍ଥାନ, ଦେବାଳୟ, ଚିତ୍ରଲେଖ୍ୟ ଇତ୍ୟାଦିରୁ ମଧ୍ୟ ସମ୍ବାଦ ସଂଗ୍ରହ ଓ ସଙ୍କେତପ୍ରଦାନାଦି କାର୍ଯ୍ୟ କରିବାକୁ ଏମାନେ ଚେଷ୍ଟାକରିବେ । ଦୂତ ବିରୋଧୀ ରାଷ୍ଟ୍ରର ସମାଚାର ସଂଗ୍ରହ ପରେ ଯାହାକୁ ଯେଉଁପରି ଭେଦନୀତି ପ୍ରୟୋଗଦ୍ୱାରା ଆୟତ୍ତ କରାଯାଇପାରିବ ସେପରି ମଧ୍ୟ କରିବାକୁ ଚେଷ୍ଟା କରିବେ । (୫) ଯଦି ଶତ୍ରୁରାଜା ନିଜରାଜାଙ୍କ ଗୁପ୍ତବିଷୟ ଜାଣିବାପାଇଁ ତା'ଙ୍କୁ କିଛି ପ୍ରଶ୍ନ କରନ୍ତି, ତେବେ ଦୂତ କହିବେ, "ଆପଣ ତ ସବୁ ଜାଣନ୍ତି (ଅର୍ଥାତ୍ ଚରଦ୍ୱାରା ସବୁ ଜାଣନ୍ତି), ମୁଁ ଆଉ ଅଧିକ କଣ କହିବି ?" ଏପରି ଉତ୍ତର ଦେଇ କଦାପି କୌଣସି ଗୁରୁତର ବିଷୟ ପ୍ରକାଶ କରିବେନାହିଁ କିମ୍ବା ମନ୍ତ୍ରୀଅମାତ୍ୟାଦିଙ୍କ ପରିମାଣ ଓ ପରିଚୟ ମଧ୍ୟ ଦେବେନାହିଁ । ଏପରି ହେଲେ ମଧ୍ୟ ଶତ୍ରୁରାଜା ଯଦି ଅଧିକ କିଛି ପ୍ରଶ୍ନକରନ୍ତି, ତେବେ ଦୂତ ଭାବିଚିନ୍ତି ନିଜକାର୍ଯ୍ୟ ସିଦ୍ଧ ହେବାପରି ଉପଯୁକ୍ତ ଉତ୍ତର ଦେବେ । (୬) କାର୍ଯ୍ୟ ସିଦ୍ଧ ହେବା ପରେ ବିପକ୍ଷରାଜା କୌଣସି କାର୍ଯ୍ୟର ଅବଧି ରଖି ଯଦି ଦୂତଙ୍କୁ ଅଟକାଇ ରଖନ୍ତି, ତେବେ

କାମଃ, ମିତ୍ରମାକ୍ରନ୍ଦଂ ବା ବ୍ୟାପାଦୟିତୁକାମଃ, ସ୍ୱଂ ବା ପରତୋ ବିଗ୍ରହମନ୍ତଃକୋପମାଟବକଂ ବା ପ୍ରତିକର୍ତ୍ତୁକାମଃ, ସଂସିଦ୍ଧଂ ମେ ଭର୍ତ୍ତୁର୍ଯାତ୍ରାକାଳମଭିହନ୍ତୁକାମଃ, ସସ୍ୟକୁପ୍ୟପଣ୍ୟସଂଗ୍ରହଂ ଦୁର୍ଗକର୍ମ୍ମ ବଳସମୁତ୍ଥାନଂ ବା କର୍ତ୍ତୁକାମଃ, ସ୍ୱସୈନ୍ୟାନାଂ ବା ବ୍ୟାୟାମଦେଶକାଳାବାକାଂକ୍ଷମାଣଃ, ପରିଭବପ୍ରମଦାଭ୍ୟାଂ ବା; ସଂସର୍ଗାନୁବନ୍ଧାର୍ଥୀ ବା ମାମୁପରୁଣଦ୍ଧୀତି । (୭) ଜ୍ଞାତ୍ୱା ବସେଦପସରେଦ୍

---

ଦୂତ ବୁଝିବାକୁ ହେବ, ହୁଏତ ଏ ରାଜା ଆମଦେଶ ରାଜାଙ୍କର କୌଣସି ନିକଟତମ ବିପତ୍ତିର ସମ୍ଭାବନାକୁ ଅପେକ୍ଷା କରି ମତେ ଅଟକାଇ ରଖିଛନ୍ତି କିମ୍ବା ନିଜର କୌଣସି ଦୁର୍ବଳତାକୁ ସଜାଡ଼ିବା ସକାଶେ ଏପରି ବ୍ୟବସ୍ଥା କରିଛନ୍ତି । ଏ ରାଜା ଆମ୍ଭ ରାଜାଙ୍କର କୌଣସି ପାର୍ଷ୍ଣିଗ୍ରାହ, ଶତ୍ରୁର ମିତ୍ରଙ୍କ ସହିତ ମିଶିବା ତଥା କୌଣସି ବନ୍ୟପାଳ ରାଜାଙ୍କୁ ଆମ୍ଭ ରାଜାଙ୍କ ବିରୁଦ୍ଧରେ ମତାଇବାକୁ ଯତ୍ନ କରୁନାହାନ୍ତି ତ ? ଏ ରାଜା ଆମ୍ଭ ରାଜାଙ୍କ ଆଗରେ ଓ ପଛରେ ଥିବା ସାହାଯ୍ୟକାରୀ ମିତ୍ରମାନଙ୍କୁ ହତ୍ୟାକରିବାକୁ ଯତ୍ନ କରୁଛନ୍ତି କି ? କିମ୍ବା ନିଜସହିତ ଯୁଦ୍ଧ କରିବା ସକାଶେ ଅସୁଥିବା କୌଣସି ରାଜାଙ୍କ ସହିତ ଅଥବା କୌଣସି ବଣୁଆ ରାଜାଙ୍କ ସହିତ ହେବାକୁ ଥିବା ଯୁଦ୍ଧ ଦ୍ୱେଷାଦିର ପ୍ରତିକାରପାଇଁ ମତେ ଅଟକାଉଛନ୍ତି କି ? ଆମ ରାଜାଙ୍କର ଆକ୍ରମଣ ସମୟକୁ ପ୍ରତିହତ କରିବା ସକାଶେ ଏ ରାଜା ଚେଷ୍ଟା କରୁଛନ୍ତି କି ? ଅଥବା ଯୁଦ୍ଧପାଇଁ ଆବଶ୍ୟକୀୟ ଖାଦ୍ୟାଦି ପଦାର୍ଥ ସଂଗ୍ରହ, ଶସ୍ତ୍ର ବାରୁଦ ପ୍ରଭୃତି ଯୁଦ୍ଧୋପକରଣ, ଦୁର୍ଗ ମରାମତି ବା ସୈନ୍ୟବୃଦ୍ଧି ଓ ସୈନ୍ୟାଦି ସଂଗ୍ରହପାଇଁ ଯତ୍ନ କରୁଛନ୍ତି କି ? ନିଜ ସୈନ୍ୟମାନଙ୍କର ବ୍ୟାୟାମ, ଶିକ୍ଷା ଓ ଆକ୍ରମଣପାଇଁ ଅନୁକୂଳ ଦେଶକାଳକୁ ଅପେକ୍ଷା କରୁଛନ୍ତି କି ? ଅଥବା ପରିଭବ ଅର୍ଥାତ୍ ମନ୍ତ୍ରୀପ୍ରଭୃତିଙ୍କର ଅନ୍ତଃକୋପ ଉତ୍ପାଦନଜନିତ ଅନାଦର ଯୋଗୁଁ କିମ୍ବା ବହୁଦିନ ସହବାସଜନିତ ପ୍ରୀତି ଯୋଗୁଁ ଅଥବା ବିବାହାଦି ସମ୍ବନ୍ଧସ୍ଥାପନ କରିବା ଉଦ୍ଦେଶ୍ୟରେ ବା ମୋର କୌଣସି ଦୋଷ ପ୍ରମାଣିତ କରିବାପାଇଁ ଏ ରାଜା ମତେ ଅଟକାଉଛନ୍ତି କି ? ଇତ୍ୟାଦି ବିଷୟରେ ତର୍କଣା କରିବେ । (୭) ବିପକ୍ଷ ରାଜାଙ୍କ କାର୍ଯ୍ୟକଳାପକୁ ତର୍କଣା ଦ୍ୱାରା ନିଶ୍ଚିତ ଭାବରେ

ବା । ପ୍ରୟୋଜନମିଷ୍ଟମବେକ୍ଷେତ ବା । ଶାସନମନଷ୍ଟମୁକ୍ତ୍ୱା ବନ୍ଧବଧଭୟାଦବସୃଷ୍ଟୋଽପ୍ୟପଗଚ୍ଛେତ୍ । ଅନ୍ୟଥା ନିୟମ୍ୟେତ ।

(୮) ପ୍ରେଷଣଂ ସନ୍ଧିପାଳତ୍ୱଂ ପ୍ରତାପୋ ମିତ୍ରସଂଗ୍ରହଃ ।
ଉପଜାପଃ ସୁହୃଦ୍‌ଭେଦୋ ଦଣ୍ଡଗୂଢ଼ାତିସାରଣମ୍ ॥
(୯) ବନ୍ଧୁରତ୍ନାପହରଣଂ ଚରଜ୍ଞାନଂ ପରାକ୍ରମଃ ।
ସମାଧିମୋକ୍ଷୋ ଦୂତସ୍ୟ କର୍ମ ଯୋଗସ୍ୟ ଚାଶ୍ରୟଃ ॥
(୧୦) ସ୍ୱଦୂତୈଃ କାରୟେଦେତତ୍ ପରଦୂତାଂଶ୍ଚ ରକ୍ଷୟେତ୍ ।
ପ୍ରତିଦୂତାପସର୍ପାଭ୍ୟାଂ ଦୃଶ୍ୟାଦୃଶ୍ୟୈଶ୍ଚ ରକ୍ଷିଭିଃ ॥

---

ଜାଣିପାରି ଦୂତ ସେ ରାଜ୍ୟରେ ଅବସ୍ଥାନ କରିବେ ବା ନିଜରାଜ୍ୟକୁ ହଠାତ୍ ପ୍ରତ୍ୟାବର୍ତ୍ତନ କରିବେ କିମ୍ବା ସେଠାରେ ରହି ନିଜ ରାଜାଙ୍କର ପ୍ରୟୋଜନକୁ ସିଦ୍ଧକରିବାପାଇଁ ଚେଷ୍ଟା କରିବେ । ନିଜ ରାଜାଙ୍କ ଦ୍ୱାରା ପ୍ରେରିତ ଶତ୍ରୁରାଜାଙ୍କ ଦ୍ୱେଷକାରକ ସମ୍ବାଦ ପ୍ରକାଶ କରି ଦୂତ ଯଦି ଶତ୍ରୁରାଜାଙ୍କ ନିଗ୍ରହର ପାତ୍ର ହୁଅନ୍ତି ତେବେ ବଧବନ୍ଧନର ଭୟ ହେତୁ ଦୂତ ଶତ୍ରୁରାଜାଙ୍କ ବିନାନୁମତିରେ ମଧ୍ୟ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିପାରିବେ । ଏପରି ନକଲେ ବିପକ୍ଷ ରାଜାଙ୍କ ଦ୍ୱାରା ଅକସ୍ମାତ୍ ବନ୍ଦୀହେବା ଅସମ୍ଭବ ନୁହେ । (୮, ୯, ୧୦) ଶତ୍ରୁଦେଶରୁ ନିଜଦେଶକୁ ଓ ନିଜ ଦେଶରୁ ଶତ୍ରୁଦେଶକୁ ସମ୍ବାଦ ଆଦାନପ୍ରଦାନ କରିବା, ସନ୍ଧି ନିୟମକୁ ରକ୍ଷାକରିବା, ନିଜ ରାଜାଙ୍କ ପ୍ରତାପକୁ ପ୍ରକାଶ କରିବା, ମିତ୍ର ସଂଗ୍ରହ କରିବା, ବିପକ୍ଷ ରାଜାଙ୍କ ବିରୋଧୀ ଲୋକଙ୍କୁ ଆୟତ୍ତ କରିବା, ଶତ୍ରୁରାଜାଙ୍କ ମିତ୍ରମାନଙ୍କ ମଧ୍ୟରେ ଭେଦ ସୃଷ୍ଟିକରିବା, ଗୁପ୍ତଦଣ୍ଡ ଦେବାର ବ୍ୟବସ୍ଥା କରିବା, ଶତ୍ରୁରାଜାଙ୍କ ବନ୍ଧୁ ଓ ରତ୍ନମାନଙ୍କୁ ଆୟତ୍ତ କରିବା, ଶତ୍ରୁରାଜାଙ୍କ ଗୁପ୍ତଚରମାନଙ୍କ କାର୍ଯ୍ୟକଳାପକୁ ସଂଗ୍ରହ କରିବା, ସମୟ ଆସିଲେ ନିଜର ପରାକ୍ରମ ଦେଖାଇବା, ସନ୍ଧିବେଳେ ଶତ୍ରୁରାଜାଙ୍କ ଜିମାରେ ଥିବା ନିଜରାଜ୍ୟର ରାଜକୁମାରଙ୍କୁ କୌଶଳରେ ମୁକ୍ତ କରିବା, ନିଜ କାର୍ଯ୍ୟ ସିଦ୍ଧିସକାଶେ ମାରଣାଦି ଅଭିଚାରର ପ୍ରୟୋଗ କରିବା ଇତ୍ୟାଦି ରାଜଦୂତଙ୍କର କାର୍ଯ୍ୟ ଅଟେ । ରାଜା ଏସବୁ କାର୍ଯ୍ୟ ନିଜ ଦୂତଦ୍ୱାରା କରାଇବେ ଏବଂ ଶତ୍ରୁରାଜ୍ୟର ଦୂତ ନିଜରାଜ୍ୟରେ ଏହିପରି କରୁଥିବା ସନ୍ଦେହ ରଖି

## ସପ୍ତଦଶୋଽଧ୍ୟାୟଃ

## ତ୍ରୟୋଦଶ ପ୍ରକରଣଂ—ରାଜପୁତ୍ରରକ୍ଷଣମ୍

**PROTECTION OF PRINCES**

( ରାଜପୁତ୍ରମାନଙ୍କଠାରୁ ରାଜାଙ୍କର ଆତ୍ମରକ୍ଷା )

(୧) ରକ୍ଷିତୋ ରାଜା ରାଜ୍ୟଂ ରକ୍ଷତ୍ୟାସନ୍ନେଭ୍ୟଃ ପରେଭ୍ୟଶ୍ଚ । ପୂର୍ବଂ ଦାରେଭ୍ୟଃ ପୁତ୍ରେଭ୍ୟଶ୍ଚ । ଦାରରକ୍ଷଣଂ ନିଶାନ୍ତପ୍ରଣିଧୌ ବକ୍ଷ୍ୟାମଃ । ପୁତ୍ରରକ୍ଷଣଂ—(୨) ଜନ୍ମପ୍ରଭୃତି ରାଜପୁତ୍ରାନ୍ ରକ୍ଷେତ୍ । କର୍କଟକସଧର୍ମାଣୋ ହି ଜନକଭକ୍ଷାଃ ରାଜପୁତ୍ରାः । ତେଷାମଜାତସ୍ନେହେ ପିତର୍ୟୁପାଂଶୁଦଣ୍ଡଃ ଶ୍ରେୟାନିତି

---

ନିଜରାଜ୍ୟର ଗୁପ୍ତଚର ଏବଂ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷ ରକ୍ଷିପୁରୁଷମାନଙ୍କଦ୍ୱାରା ତଦନ୍ତ କରାଇବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ ଷୋଡ଼ଶୋଽଧ୍ୟାୟଃ—ଦୂତପ୍ରଣିଧିଃ ।

---

(୧) ନିଜର ବନ୍ଧୁମାନଙ୍କଠାରୁ ଓ ଶତ୍ରୁମାନଙ୍କ ଷଡ଼୍‌ଯନ୍ତ୍ରରୁ ସୁରକ୍ଷିତ ରାଜା ନିଜ ରାଜ୍ୟର ପ୍ରଜାମାନଙ୍କୁ ସୁରକ୍ଷିତ କରିପାରନ୍ତି । ଏଣୁ ରାଜା ପ୍ରଥମେ ନିଜ ଭାର୍ଯ୍ୟା ଏବଂ ପୁତ୍ରଠାରୁ ଆତ୍ମରକ୍ଷା କରିବାକୁ ଚେଷ୍ଟାକରିବେ । ରାଣୀମାନଙ୍କଠାରୁ ଆତ୍ମରକ୍ଷା କରିବାର ଉପାୟ ନିଶାନ୍ତପ୍ରଣିଧି ନାମକ ପ୍ରକରଣରେ ବର୍ଣ୍ଣନା କରାଯିବ । ବର୍ତ୍ତମାନ ପୁତ୍ରମାନଙ୍କଠାରୁ ସୁରକ୍ଷିତ ହେବାର ଉପାୟ ବର୍ଣ୍ଣନା କରାଯାଉଛି । (୨) କଙ୍କଡ଼ାର ଛୁଆଗୁଡ଼ିକ ଜନ୍ମହେବା ସମୟରେ ମା'ର ପେଟ ଫଟାଇ ଯେପରି ଜନ୍ମହୁଅନ୍ତି, ରାଜପୁତ୍ରମାନେ ଠିକ୍ ସେହିପରି ପିତାଙ୍କୁ ହତ୍ୟାକରି ରାଜ୍ୟ ଦଖଲ କରିବା ପକାଶେ ଯତ୍ନ କରିଥାନ୍ତି । ତେଣୁ ଭାରଦ୍ୱାଜ (ଭରଦ୍ୱାଜଙ୍କ ଶିଷ୍ୟଗଣ ବା ଦ୍ରୋଣାଚାର୍ଯ୍ୟ)ଙ୍କ ମତରେ ରାଜପୁତ୍ରମାନଙ୍କୁ ଜନ୍ମସମୟରେ ହିଁ ଗୁପ୍ତରେ ହତ୍ୟା କରିଦେବା ଶ୍ରେୟସ୍କର ।

---

(୧)—**ନିଜ ବନ୍ଧୁ ଅର୍ଥାତ୍ ଭାର୍ଯ୍ୟା ଏବଂ ପୁତ୍ର ରାଜାଙ୍କର ପ୍ରଥମ ବିପତ୍ତିସ୍ଥାନ ଅଟନ୍ତି ।**

**✻ ଭାରଦ୍ୱାଜଃ । (୩) ନୃଶଂସମଦୃଷ୍ଟବଧଃ କ୍ଷତ୍ରବୀଜବିନାଶଶ୍ଚେତି ବିଶାଳାକ୍ଷଃ । ତସ୍ମାଦେକସ୍ଥାନାବରୋଧଃ ଶ୍ରେୟାନିତି । (୪) ଅହିଭୟ-ମେତଦିତି ପାରାଶରାଃ । କୁମାରୋ ହି ବିକ୍ରମଭୟାନ୍ମାଂ ପିତା ରୁଣଦ୍ଧୀତି ଜ୍ଞାତ୍ୱା ତମେବାଙ୍କେ କୁର୍ଯ୍ୟାତ୍ । ତସ୍ମାଦନ୍ତପାଳଦୁର୍ଗେବାସଃ ଶ୍ରେୟାନିତି । (୫) ଔରଭ୍ରକଂ ଭୟମେତଦିତି ପିଶୁନଃ । ପ୍ରତ୍ୟାପତ୍ତେର୍ହି ତଦେବ କାରଣଂ ଜ୍ଞାତ୍ୱାନ୍ତପାଳସଖଃ ସ୍ୟାତ୍ । ତସ୍ମାତ୍ ସ୍ୱବିଷୟା-**

(୩) ଅଗ୍ରୂର୍ଣ ବିଶାଳାକ୍ଷଙ୍କ ମତରେ ଏପରି ଜଘନ୍ୟ ଶିଶୁହତ୍ୟା ନିତାନ୍ତ ଗର୍ହିତ କାର୍ଯ୍ୟ । ଯଦି ସମସ୍ତ ରାଜକୁମାରଙ୍କୁ ଏପରି ହତ୍ୟା କରାଯିବ, ତେବେ କ୍ଷତ୍ରିୟକୁଳ ନିର୍ମୂଳ ହୋଇଯିବ । ଏଣୁ ଏମାନଙ୍କୁ ଅନ୍ତଃପୁରର କୌଣସି ନିର୍ଦ୍ଦିଷ୍ଟ ଜାଗାରେ ସ୍ୱତନ୍ତ୍ରଭାବେ କୌଣସିପ୍ରକାରେ ଅଟକାଇ ରଖାଇଦେବାକୁ ହେବ । (୪) ପରାଶର ମତାବଲମ୍ବିମାନେ ମନେକରନ୍ତି ରାଜପୁତ୍ରମାନଙ୍କୁ ଏପରି ନଜରବନ୍ଦୀ କରି ରଖିଲେ ଏହା ସର୍ପଯହିବାସ ପରି ଭୟାବହ ହୋଇଥାଏ । ସର୍ପ ଯେପରି ଭୀତ ହୋଇ ମନୁଷ୍ୟକୁ ଦଂଶନ କରେ ଏମାନେ ମଧ୍ୟ ସେପରି ନିଜ ବଧଭୟରେ ଭୀତହୋଇ ରାଜାଙ୍କୁ ହତ୍ୟାକରିବା ସକାଶେ ଚେଷ୍ଟା କରନ୍ତି । ଏଣୁ ଏମାନଙ୍କୁ ରାଷ୍ଟ୍ରସୀମାରେ ଥିବା ଅନ୍ତପାଳ ଦୁର୍ଗରେ ରଖାଇଦେଲେ, ନିଜ ଦୁର୍ଗଠାରୁ ଦୂରରେ ରହିବାଯୋଗୁଁ ଏମାନେ ଏପରି ଅପଚେଷ୍ଟା କରିପାରିବେ ନାହିଁ । (୫) ପିଶୁନ (ନାରଦ)ଙ୍କ ମତରେ ରାଜକୁମାରମାନଙ୍କୁ ସୀମାନ୍ତବର୍ତ୍ତୀ ଦୁର୍ଗପାଳଙ୍କ ନିକଟରେ ରଖାଇବା ମଧ୍ୟ ଉଚିତ ନୁହେଁ । କାରଣ ମେଣ୍ଢା ଯେପରି ପଛକୁ ହଟିଯାଇ ତୀବ୍ରବେଗରେ ଆସି ମସ୍ତକାଘାତ କରେ, ରାଜପୁତ୍ର ସେପରି ରାଜାଙ୍କଠାରୁ ଦୂରରେ ରହି ନିଜର ନିର୍ବାସନ ବିଷୟ କାଳକ୍ରମେ ଅବଗତ ହେବା ପରେ ତନ୍ତ୍ରସ୍ଥ ଦୁର୍ଗପାଳାଦିଙ୍କୁ ଅନୁକୂଳ କରି ଅଗ୍ରନକଭାବେ ରାଜାଙ୍କୁ ଆକ୍ରମଣ କରିପାରନ୍ତି । ଏଣୁ ରାଜା ନିଜ ରାଜ୍ୟର ଦୂରସୀମାନ୍ତସ୍ଥିତ କୌଣସି ସାମନ୍ତରାଜାଙ୍କ ତତ୍ତ୍ୱାବଧାନରେ ରାଜକୁମାରମାନଙ୍କୁ ରଖିଦେବା ଶ୍ରେୟସ୍କର ।

✻ ଭରଦ୍ୱାଜସ୍ୟ ଅପତ୍ୟଂ ପୁମାନ୍ ଭାରଦ୍ୱାଜଃ, ଦ୍ରୋଣାଚାର୍ଯ୍ୟଃ ।

ଦପକୃଷ୍ଟେ ସାମନ୍ତଦୁର୍ଗେ ବାସଃ ଶ୍ରେୟାନିତି । (୬) ବତ୍ସସ୍ଥାନମେତଦିତି କୌଣପଦନ୍ତଃ । ବତ୍ସେନେବ ହି ଧେନୁଂ ପିତରମସ୍ୟ ସାମନ୍ତୋ ଦୁହ୍ୟାତ୍ । ତସ୍ମାନ୍ମାତୃବନ୍ଧୁଷୁ ବାସଃ ଶ୍ରେୟାନିତି । (୭) ଧ୍ୱଜସ୍ଥାନମେତଦିତି ବାତବ୍ୟାଧିଃ । ତେନ ହି ଧ୍ୱଜେନାଦିତିକୌଶିକବଦସ୍ୟ ମାତୃବାନ୍ଧବା ଭିକ୍ଷେରନ୍ । ତସ୍ମାଦ୍ ଗ୍ରାମ୍ୟଧର୍ମେଷ୍ୱେନ ମବସୃଜେୟୁଃ । ସୁଖୋପରୁଦ୍ଧା ହି ପୁତ୍ରାଃ ପିତରଂ ନାଭି ଦ୍ରୁହ୍ୟନ୍ତୀତି । (୮) ଜୀବନ୍ମରଣମେତଦିତି କୌଟିଲ୍ୟଃ । କାଷ୍ଠମିବ ହି ଘୁଣଜଗ୍ଧଂ ରାଜକୁଳମବିନୀତପୁତ୍ରମଭିଯୁକ୍ତମାତ୍ରଂ ଭଜ୍ୟେତ । ତସ୍ମାଦ୍ ଋତୁମତ୍ୟାଂ ମହିଷ୍ୟାମ୍

---

(୬) କୌଣପଦନ୍ତ (ଭୀଷ୍ମ) ନାରଦଙ୍କ ଏହି ମତକୁ ସ୍ୱୀକାର କରନ୍ତି ନାହିଁ । ସେ କହନ୍ତି ଯେପରି ବାଛୁରୀକୁ ଦୂରରେ ରଖି ଅନ୍ୟମାନେ ଗାଈଠାରୁ କ୍ଷୀର ଦୋହନ କରନ୍ତି, ସେପରି କୌଣସି ସାମନ୍ତଙ୍କ ନିକଟରେ ରାଜପୁତ୍ରଙ୍କୁ ରଖିଦେଲେ ସେମାନେ ଉକ୍ତ ରାଜାଙ୍କଠାରୁ ରାଜପୁତ୍ରଙ୍କୁ ଦେବା ବାହାନା କରି ଧନସମ୍ପଦ ନେଇଯିବେ । ଏଣୁ ରାଜପୁତ୍ରମାନଙ୍କୁ ମାତାଙ୍କର କୌଣସି ବନ୍ଧୁମାନଙ୍କ ନିକଟରେ ରଖିବାହିଁ ଶ୍ରେୟସ୍କର । (୭) ବାତବ୍ୟାଧି (ଉଦ୍ଧବ)ଙ୍କ ମତରେ ମାତୃବନ୍ଧୁ ନିକଟରେ ରାଜକୁମାରମାନଙ୍କୁ ରଖିଦେବା ଫଳରେ ସେମାନେ ଏହି ରାଜକୁମାରଙ୍କୁ ଆଳ କରି କେବଳ ନିଜର ଅଭିଳାଷ ପୂର୍ଣ୍ଣ କରିଥାନ୍ତି । ଯେପରି 'ଅଦୀତ' ଅର୍ଥାତ୍ ଦେବତାମାନଙ୍କ ଚିତ୍ରପଟ୍ଟ ଦେଖାଇ ଭିକ୍ଷା ମାଗିବା ବ୍ୟକ୍ତି ଏବଂ 'କୌଶିକ' ଅର୍ଥାତ୍ ସର୍ପମାନଙ୍କୁ ଦେଖାଇ ଭିକ୍ଷା ମାଗିବା ବ୍ୟକ୍ତି ନିଜର ପ୍ରତିପୋଷଣ ସକାଶେ ଚିତ୍ରପଟ୍ଟ ଓ ସର୍ପକୁ ଆଳ କରନ୍ତି, ରାଜକୁମାରଙ୍କ ମାତୃବନ୍ଧୁମାନେ ସେପରି ରାଜକୁମାରମାନଙ୍କ ନାମ ପ୍ରତ୍ୟେକ ସାମନ୍ତ ଓ ପ୍ରଜାମାନଙ୍କୁ କହି ସେମାନଙ୍କଠାରୁ ଧନ ଆଦାୟ କରିଥାନ୍ତି । ଏଣୁ ରାଜକୁମାରମାନଙ୍କୁ ସ୍ତ୍ରୀମାନଙ୍କ ମଧ୍ୟରେ ରଖାଇଦେଲେ ସେମାନେ ଆଉ ରାଜାଙ୍କର ଦ୍ରୋହାଚରଣ କରିବେନାହିଁ । (୮) କୌଟିଲ୍ୟଙ୍କ ମତରେ ଉପର୍ଯ୍ୟୁକ୍ତ ସମସ୍ତ ଉପାୟ ଯୁକ୍ତିହୀନ ବୋଲି ବିବେଚିତ ହୁଏ । ସେ କହନ୍ତି ଏପରି କରିବାଦ୍ୱାରା ରାଜକୁମାରମାନଙ୍କୁ ଜୀଇଁ ଥାଉଥାଉ ମାରିଦେବା ପରି ହୁଏ । ଅଶିକ୍ଷିତ ରାଜପୁତ୍ରମାନଙ୍କଦ୍ୱାରା ରାଜା କୀଟଭକ୍ଷିତ କାଷ୍ଠପରି ବିନାଶନ୍ମୁଖରେ ମଧ୍ୟ ବିନାଶପ୍ରାପ୍ତ

**ଋତ୍ୱିଜ *ଶ୍ଚରୁମୈନ୍ଦ୍ରାବାର୍ହସ୍ପତ୍ୟଂ ନିର୍ବପେୟୁଃ । ଆପନ୍ନସତ୍ତ୍ୱାୟାଂ କୌମାରଭୃତ୍ୟୋଗର୍ଭଭର୍ମ୍ମଣି †ପ୍ରଜନେନ ଚ ନିଯତେତ । ପ୍ରଜାତାୟାଃ ପୁତ୍ରସଂସ୍କାରଂ ପୁରୋହିତଃ କୁର୍ଯ୍ୟାତ୍ । ସମର୍ଥଂ ତଦ୍ବିଦୋ ବିନୟେୟୁଃ । (୯) ସତ୍ତ୍ରିଣାମେକଶ୍ଚୈନଂ ମୃଗୟାଦ୍ୟୂତମଦ୍ୟସ୍ତ୍ରୀଭିଃ ପ୍ରଲୋଭୟେତ୍— ପିତରି ବିକ୍ରମ୍ୟ ରାଜ୍ୟଂ ଗୃହାଣେତି । ତଦନ୍ୟଃ ସତ୍ତ୍ରୀ ପ୍ରତିଷେଧୟେଦ୍ ଇତ୍ୟାମ୍ଭୀୟାଃ । (୧୦) ମହାଦୋଷମବୁଦ୍ଧବୋଧନମିତି କୌଟିଲ୍ୟଃ ।**

---

ହିଅନ୍ତି । ସୁତରାଂ ରାଜମହିଷୀ ଋତୁମତୀ ହେବାବେଳେ ପୁରୋହିତଙ୍କଦ୍ୱାରା ଇନ୍ଦ୍ର ଓ ବୃହସ୍ପତିଙ୍କ ଉଦ୍ଦେଶ୍ୟରେ ହବନ କରାଇ ଯେପରି ଐଶ୍ୱର୍ଯ୍ୟଶାଳୀ ଓ ବିଦ୍ୱାନ୍ ପୁତ୍ର ଜନ୍ମହେବ ସେପରି ବ୍ୟବସ୍ଥା କରିବେ । ରାଜମହିଷୀ ଗର୍ଭବତୀ ହେଲେ ଆୟୁର୍ବେଦୀୟ 'କୌମାରଭୃତ୍ୟ' ନାମକ ତନ୍ତ୍ରାନୁସାରେ ପୁଂସବନ ଚିକିତ୍ସା କରାଇ ସୁଖପ୍ରସବାଦି ଔଷଧ ପ୍ରୟୋଗଦ୍ୱାରା ଗର୍ଭରକ୍ଷା କରିବେ । ପୁତ୍ର ଜନ୍ମହେବା ପରେ ରାଜପୁରୋହିତଙ୍କଦ୍ୱାରା ଜାତକର୍ମ୍ମ ସଂସ୍କାର ବିଧିମତ କରାଇବେ ଏବଂ କୁମାରମାନେ ପ୍ରାପ୍ତବୟସ୍କ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ବିଭିନ୍ନ ବିଦ୍ୟାରେ ପ୍ରବୀଣତା ଲାଭ କରିଥିବା ବିଶେଷଜ୍ଞମାନଙ୍କଦ୍ୱାରା ଶିକ୍ଷିତ କରାଇବେ । (୯) 'ଅମ୍ଭି' ନାମକ ଅଚାର୍ଯ୍ୟଙ୍କ ମତାବଲମ୍ବିମାନଙ୍କ ମତରେ ରାଜପୁତ୍ରମାନଙ୍କୁ ସେମାନଙ୍କ ସହଚରମାନେ (ସତ୍ରୀନାମକ ସହାଧ୍ୟାୟୀ ଗୁପ୍ତଚରମାନେ) ମୃଗୟା (ଶିକାର), ଦ୍ୟୂତ (ଜୁଆ), ମଦ୍ୟ, ସୁନ୍ଦରୀ ସ୍ତ୍ରୀ ଇତ୍ୟାଦି ବିଷୟରେ ପ୍ରବର୍ତ୍ତାଇ ରାଜାଙ୍କଠାରୁ ରାଜ୍ୟ ଛଡ଼ାଇ ଆଣିବାପାଇଁ ମତାଇବେ । ଏଣେ ଅନ୍ୟ ଗୁପ୍ତଚର ସହଚରମାନେ ଠିକ୍ ଏହାର ବିପରୀତ ବ୍ୟବହାର କରି ଉକ୍ତ କାର୍ଯ୍ୟକୁ ଖଣ୍ଡନ କରିବେ । (୧୦) କୌଟିଲ୍ୟ କହନ୍ତି,—ସରଳମତି ରାଜକୁମାରମାନଙ୍କୁ ସେମାନେ ନ ଜାଣିଥିବା ବିଷୟ ଅଯଥା ବତାଇ, ରାଜାଙ୍କ ବିରୋଧୀ କରି ଠିଆକରାଇବା ମହାଦୋଷ । ନୂତନ ମୃତ୍ତିକାପାତ୍ର

---

* ଐଶ୍ୱର୍ଯ୍ୟପ୍ରତାପାଦ୍ୟର୍ଥମୀନ୍ଦ୍ରପ୍ରୀଣନଂ, ବୁଦ୍ଧିବିଦ୍ୟାଦ୍ୟର୍ଥଂ ବୃହସ୍ପତିପ୍ରୀଣନମିତି—

ଗଣପତିଶାସ୍ତ୍ରୀ, ଅର୍ଥଶାସ୍ତ୍ର ଟୀକାକାରଃ ।

† କୁମାରଭୃତ୍ୟାକୁଶଳୈରନୁଷ୍ଠିତେ ଭିଷଗ୍ଭିରାପ୍ତୈ ରଥଗର୍ଭଭର୍ମ୍ମଣି ଇତି—

ରଘୁବଂଶେ, କାଳିଦାସଃ ।

ନବଂ ହି ଦ୍ରବ୍ୟଂ ଯେନ ଯେନାର୍ଥଜାତେନୋପଦହ୍ୟତେ ତତ୍ତଦାଚୂଷତ୍,'ଏବମୟଂ ନବବୁଦ୍ଧିର୍ଯଦ୍ୟଦୁଚ୍ୟେତ ତତ୍ତଚ୍ଛାସ୍ତ୍ରୋପଦେଶ ମିବାଭିଜାନାତ । ତସ୍ମାଦ୍ ଧର୍ମ୍ମମର୍ଥଂ ଚାସ୍ୟୋପଦିଶେନ୍ନାଧର୍ମ୍ମମନର୍ଥଂ ଚ । (୧୧) ସତ୍ତ୍ରିଣସ୍ତ୍ୱେନଂ ତବ ସ୍ମଃ ଇତ ବଦନ୍ତଃ ପାଳୟେୟୁଃ । ଯୌବନୋତ୍ସେକାତ୍ ପରସ୍ତ୍ରୀଷୁ ମନଃ କୁର୍ବାଣମ୍ ଆର୍ଯ୍ୟାବ୍ୟଂଜନାଭିଃ ସ୍ତ୍ରୀଭିରମେଧ୍ୟାଭିଃ ଶୂନ୍ୟାଗାରେଷୁ ରାତ୍ରାବୁଦ୍ୱେଜୟେୟୁଃ । ମଦ୍ୟକାମଂ ଯୋଗପାନେନୋଦ୍ୱେଜୟେୟୁଃ । ଦ୍ୟୂତକାମଂ କାପଟିକୈଃ ପୁରୁଷୈରୁଦ୍ୱେଜୟେୟୁଃ । ମୃଗୟାକାମଂ ପ୍ରତିରୋଧକ-

---

(ମାଟିପାତ୍ର)ରେ ତେଲ କମ୍ବା ଘୃତ ନିକ୍ଷେପ କଲେ ସେ ଯେପରି ତାହା ଚୁଚୁମି ନେଇଯାଏ, ନୂତନ ବୟସର ରାଜପୁତ୍ରମାନଙ୍କୁ ସେପରି ପ୍ରଥମରୁ ଯେଉଁ ଶିକ୍ଷା ଦିଆଯାଏ, ତାହାକୁ ଶାସ୍ତ୍ରୋପଦେଶ ଭଳି ମନେକରି ସେମାନେ ଗ୍ରହଣ କରନ୍ତି । ଏଣୁ ରାଜପୁତ୍ରମାନଙ୍କୁ ଧର୍ମ୍ମ ଓ ନୀତି ସମ୍ବନ୍ଧେ ଶିକ୍ଷା ଦେବାକୁ ହେବ । ଅଧର୍ମ୍ମ ଓ ଅନୀତିର ଜଟିଳ ପରିକ୍ଷାରେ ପକାଇବାପାଇଁ ସେମାନଙ୍କୁ ପ୍ରଥମରୁ କୁଶିକ୍ଷା ଦେଲେ ତାହା ସେମାନଙ୍କ ମନରେ କୁସଂସ୍କାର ଆଣିଦେବ ଏବଂ ତଦ୍ଦ୍ୱାରା ସେ ନିଜେ ପଥଭ୍ରଷ୍ଟ ହେବା ସଙ୍ଗେ ସଙ୍ଗେ ନିଜର ବଂଶକୁ ମଧ୍ୟ ନଷ୍ଟକରିବେ । (୧୧) ଏ ରାଜକୁମାରମାନଙ୍କ ସହାଧ୍ୟାୟୀ ଗୁପ୍ତଚର-ବନ୍ଧୁମାନେ ହାର୍ଦ୍ଦିକତା ଦେଖାଇ ଏମାନଙ୍କୁ ପାଳନ କରିବେ । ଯୌବନର ପ୍ରାରମ୍ଭରେ ଯଦି ସେମାନେ ଉଚ୍ଛୃଙ୍ଖଳ ହୋଇ ପରସ୍ତ୍ରୀ, ବେଶ୍ୟା ଇତ୍ୟାଦିରେ ଅସକ୍ତ ହୁଅନ୍ତି, ତେବେ ସେମାନଙ୍କୁ ଉକ୍ତ ସାଥୀମାନେ କୁଳସ୍ତ୍ରୀରୂପରେ ବେଶ୍ୟାମାନଙ୍କୁ ସଜାଇ ଏକାନ୍ତ ଗୃହରେ ସେମାନଙ୍କ ସହିତ ମିଳିତ କରାଇ ବ୍ୟାଧି (ମେହ, ଉପଦଂଶ ପ୍ରଭୃତି ଯୌନବ୍ୟାଧି) ଭୟ ଦେଖାଇ ସେମାନଙ୍କୁ ଏପରି ଅନ୍ୟାୟ କାର୍ଯ୍ୟରୁ ବିରତ ହେବାପାଇଁ ଉପଦେଶ ଦେବେ । ତଦ୍ଦ୍ୱାରା ସେମାନଙ୍କ ମନରେ ଯେପରି ଘୃଣା ଜାତହେବ ସେପରି ବ୍ୟବସ୍ଥା କରି, ଯେଉଁ ବେଶ୍ୟା ଏପରି କରିଥିବ ତାକୁ ପୁରସ୍କାର ଦେଇ ସନ୍ତୁଷ୍ଟ କରିବେ । ଯେଉଁ ରାଜକୁମାର ମଦ୍ୟପାନରେ ଅସକ୍ତ ହେବେ, ତା'ଙ୍କୁ ମଦ୍ୟସହିତ କୌଣସି ଅରୁଚିକର ଔଷଧ ମିଶାଇ ପାନ କରାଇ ସେଥିରୁ ନିବୃତ୍ତ କରାଇବେ ।

ବ୍ୟଞ୍ଜନୈସ୍ତ୍ରାସୟେୟୁଃ । ପିତରି ବିକ୍ରମଂବୁଦ୍ଧିଂ ତଥେତ୍ୟନୁପ୍ରବିଶ୍ୟ ଭେଦୟେୟୁଃ । (୧୨) ଅପ୍ରାର୍ଥନୀୟୋ ରାଜା, ବିପନ୍ନେ ଘାତଃ ସଂପନ୍ନେ ନରକପାତଃ, ସଂକ୍ରୋଶଃ ପ୍ରଜାଭିରେକଲୋଷ୍ଟବଧଶ୍ଚେତି । (୧୩) ବିରାଗଂ ପ୍ରିୟମେକପୁତ୍ରଂ ବା ବଧ୍ନୀୟାତ୍ । ବହୁପୁତ୍ରଃ ପ୍ରତ୍ୟନ୍ତମନ୍ୟବିଷୟଂ ବା ପ୍ରେଷୟେଦ୍ ଯତ୍ର ଗର୍ଭଃ ପଣ୍ୟଂ ଡମ୍ବୋ ବା ନ ଭବେତ୍ । ଆତ୍ମସଂପନ୍ନଂ ସୈନାପତ୍ୟେ ଯୌବରାଜ୍ୟେ ବା

ଜୁଆଖେଳରେ ଆସକ୍ତ ହେଲେ, କପଟ ଜୁଆଖେଳାଳିବେଶଧାରୀ ଗୁପ୍ତଚରଙ୍କ ଦ୍ୱାରା ଏହି ଆସକ୍ତିକୁ ପ୍ରତିହତ କରିବେ । ମୃଗୟାସକ୍ତ ହେଲେ, ଛଦ୍ମବେଶ-ଧାରୀ ତସ୍କରଙ୍କଦ୍ୱାରା ଡରାଇ ଏବଂ ପିତାଙ୍କୁ ପରାହତ କରି ରାଜ୍ୟଲାଭ କରିବାକୁ ଚେଷ୍ଟା କରୁଥିଲେ, ଗୁପ୍ତଚରଙ୍କଦ୍ୱାରା "ଏହା କରିବା ଉଚିତ" ଏପରି କଥାଛଳରେ ବତାଇ, ସଙ୍ଗୀହୋଇ, ପରେ କାର୍ଯ୍ୟରେ ତାହା ନିବାରଣ କରିବା ସକାଶେ ବ୍ୟବସ୍ଥା କରିବେ । (୧୨) ରାଜାଙ୍କପ୍ରତି ଦ୍ରୋହାଚରଣ କରିବା ରାଜପୁତ୍ରଙ୍କୁ ସାଥୀ ଗୁପ୍ତଚର ବତାଇବେ, ଯଦି ରାଜାଙ୍କ ବିରୁଦ୍ଧରେ ଯାଇ ତୁମେ ହାରିଯାଅ ତେବେ ତୁମର ମୃତ୍ୟୁ ସୁନିଶ୍ଚିତ । ଯଦି ବା ଜୟଲାଭ କର ତେବେ ପିତୃବଧ ପାତକରୁ ତୁମେ ନରକଯନ୍ତ୍ରଣା ଭୋଗ କରିବ, ଲୋକେ ତୁମକୁ ନିନ୍ଦାକରିବେ ଏବଂ ପ୍ରଜାମାନେ ଉତ୍ତ୍ୟକ୍ତ ହୋଇ ତୁମକୁ ଜଣଜଣକେ ଗୋଟିଏ ଲେଖାଏ ଢେଲା ବା ପଥର ମାରିମାରି ହତ୍ୟା କରିବେ । (ଜଣଜଣକେ ଗୋଟିଏ ଲେଖାଏ ଢେଲା ମାରିଲେ ମଧ୍ୟ ତୁମେ ମରିବ) । (୧୩) ରାଜପୁତ୍ର ଯଦି ରାଜାଙ୍କ ବିରୋଧ କରନ୍ତି ତେବେ ସେ ରାଜାଙ୍କର ଏକମାତ୍ର ପ୍ରିୟପୁତ୍ର ହୋଇଥିଲେ ମଧ୍ୟ ତାଙ୍କୁ ବନ୍ଧନରେ ରଖିବେ । ଯଦି ରାଜାଙ୍କର ବହୁତ ପୁତ୍ର ଥା'ନ୍ତି, ତେବେ ବିରୋଧୀପୁତ୍ରଙ୍କୁ କୌଣସି ମ୍ଳେଚ୍ଛ ଦେଶକୁ ବା ଅନ୍ୟଦେଶକୁ ପଠାଇଦେଇ ସେଠାରେ ଯେପରି ତାଙ୍କୁ ରାଜୋଚିତ ଖାଦ୍ୟ, ବସ୍ତ୍ରାଦି ଭୂଷଣ ଓ ବିପ୍ଳବୀ ସହଚରମାନଙ୍କର ସମ୍ପୂର୍ଣ୍ଣ ଅଭାବ ହେବ, ସେପରି ବ୍ୟବସ୍ଥା କରିବେ । ଯଦି ରାଜପୁତ୍ର ଯୋଗ୍ୟତା-

(୧୩)—ଅତ୍ର 'ଗର୍ଭଃ' = ରାଜପୁତ୍ରୋଚିତମନ୍ନଂ । 'ପଣ୍ୟଂ' = ରାଜପୁତ୍ରୋଚିତଂ ବସନାଭରଣାଦିକଂ ଆପତ୍ତାଲଭ୍ୟଂ ଭୋଗ୍ୟବସ୍ତୁ । 'ଡମ୍ବୋ' = ରାଜପୁତ୍ରକର୍ମିତଃ ପ୍ରକୃତୀନାଂ ବିପ୍ଳବଃ ।

ସ୍ଥାପୟେତ୍ । (୧୪) ବୁଦ୍ଧିମାନାହାର୍ଯ୍ୟବୁଦ୍ଧିର୍ଦୁର୍ବୁଦ୍ଧିରିତ ପୁତ୍ରବିଶେଷାଃ । ଶିଷ୍ୟମାଣୋ ଧର୍ମାର୍ଥାବୁପଲଭତେ ଚାନୁତିଷ୍ଠତି ଚ ବୁଦ୍ଧିମାନ୍ । ଉପଲଭମାନୋ ନାନୁତିଷ୍ଠତ୍ୟାହାର୍ଯ୍ୟବୁଦ୍ଧିଃ । ଅପାୟନିତ୍ୟୋ ଧର୍ମାର୍ଥଦ୍ୱେଷୀ ଚେତିଦୁର୍ବୁଦ୍ଧିଃ । (୧୫) ସ ଯଦ୍ୟେକପୁତ୍ରଃ ପୁତ୍ରୋତ୍ପତ୍ତାବସ୍ୟ ପ୍ରଯତେତ । ପୁତ୍ରିକାପୁତ୍ରାନୁତ୍ପାଦୟେଦ୍ ବା । (୧୬) ବୃଦ୍ଧସ୍ତୁ ବ୍ୟାଧିତୋ ବା ରାଜା ମାତୃବନ୍ଧୁକୁଲ୍ୟଗୁଣବତ୍ସାମନ୍ତାନାମନ୍ୟତମେନ କ୍ଷେତ୍ରେ ବୀଜମୁତ୍ପାଦୟେତ୍ । ନ ଚୈକପୁତ୍ରମବିନୀତଂ ରାଜ୍ୟେ ସ୍ଥାପୟେତ୍ ।

---

ସଫଳ ହୁଅନ୍ତି, ତେବେ ତାଙ୍କୁ ସେନାପତି କିମ୍ବା ଯୁବରାଜ ପଦରେ ନିଯୁକ୍ତ କରିବେ । (୧୪) ରାଜପୁତ୍ର ତିନିପ୍ରକାର, ଯଥା—ବୁଦ୍ଧିମାନ୍, ଆହାର୍ଯ୍ୟବୁଦ୍ଧି ଓ ଦୁର୍ବୁଦ୍ଧି । ଯେଉଁ ରାଜପୁତ୍ର ଶିକ୍ଷାପାଇବାମାତ୍ରେ ଧର୍ମ ଓ ନୀତିକୁ ଠିକ୍‌ଭାବେ ଗ୍ରହଣ କରି ଆଚରଣ କରିପାରନ୍ତି ତାଙ୍କୁ ବୁଦ୍ଧିମାନ୍, ଯେଉଁ ରାଜପୁତ୍ର ଧର୍ମ ଓ ନୀତିକୁ ଜାଣି ସୁଦ୍ଧା ଆଚରଣ କରନ୍ତିନାହିଁ ତାଙ୍କୁ ଆହାର୍ଯ୍ୟବୁଦ୍ଧି ଏବଂ ଯେଉଁ ରାଜପୁତ୍ର ସର୍ବଦା ପିତାଙ୍କ ବିରୋଧାଚରଣ କରି ଧର୍ମ ଓ ନୀତିର ଦ୍ୱେଷାଚରଣ କରନ୍ତି ତାଙ୍କୁ ଦୁର୍ବୁଦ୍ଧି କୁହାଯାଏ । (୧୫) ଯଦି ରାଜପୁତ୍ର ପିତାଙ୍କର ଏକମାତ୍ର ପୁତ୍ର ହୋଇ ଦୁର୍ବୁଦ୍ଧି ହୋଇଥାଏ, ତେବେ ରାଜା ଏହି ଦୁର୍ବୁଦ୍ଧି ପୁତ୍ରର ଗୋଟିଏ ଐଶ୍ୱର୍ଯ୍ୟଶାଳୀ ଓ ବୁଦ୍ଧିମାନ୍ ପୁତ୍ର ହେବାସକାଶେ (ବୈଦିକ ଗର୍ଭସଂସ୍କାରାଦି କର୍ମ ଏବଂ କୌମାର ଭୃତ୍ୟାଦି ଆୟୁର୍ବେଦୋକ୍ତ ଚିକିତ୍ସା ବିଧାନର ଆଶ୍ରୟ ନେଇ) ଯତ୍ନ କରିବେ । ଯଦି ସେପରି ନହୁଏ ତେବେ ନିଜର କନ୍ୟାଠାରୁ ଜାତହେବା ପୁତ୍ରସନ୍ତାନକୁ ନିଜପଦରେ ଅଭିଷିକ୍ତ କରିବେ । (୧୬) ଯଦି ରାଜା ବୃଦ୍ଧ ଓ ବ୍ୟାଧିଯୁକ୍ତ ହୁଅନ୍ତି ତେବେ ମାତୃକୁଳ ବା ସ୍ୱକୁଳର କିମ୍ବା ଅନ୍ୟକୌଣସି ଗୁଣବନ୍ତ ସାମନ୍ତଙ୍କ ସହଯୋଗରେ ନିଜ ଭାର୍ଯ୍ୟାଙ୍କଠାରୁ ନିୟୋଗଦ୍ୱାରା ପୁତ୍ରୋତ୍ପତ୍ତି କରାଇବେ ସିନା, ଅଶିକ୍ଷିତ ଦୁରାଗ୍ରହ ପୁତ୍ରକୁ କଦାପି ରାଜ୍ୟାଧିକାର

---

(୧୪)—ବୁଦ୍ଧିମାନ୍—Those of sharp intelligence.

ଆହାର୍ଯ୍ୟବୁଦ୍ଧି—Those of stagnant intelligence.

ଦୁର୍ବୁଦ୍ଧି—Those of perverted mind.

(୧୭) ବହୂନାମେକସଂରୋଧଃ ପିତାପୁତ୍ରହିତୋ ଭବେତ୍ ।
ଅନ୍ୟତ୍ରାପଦ ଐଶ୍ୱର୍ଯ୍ୟଂ ଜ୍ୟେଷ୍ଠଭାଗି ତୁ ପୂଜ୍ୟତେ ॥

(୧୮) କୁଳସ୍ୟ ବା ଭବେଦ୍ ରାଜ୍ୟଂ କୁଳସଂଘୋ ହି ଦୁର୍ଜୟଃ ।
ଅରାଜବ୍ୟସନାବାଧଃ ଶଶ୍ୱଦାବସତି କ୍ଷିତମ୍ ॥

---

ଦେବେନାହିଁ । (୧୭) ଯଦି ରାଜାଙ୍କର ବହୁତ ପୁତ୍ର ଥା'ନ୍ତି ଓ ସେମାନଙ୍କ ମଧ୍ୟରୁ ଯଦି ଜଣେ ଦୁରାଗ୍ରହୀ ହୁଏ, ତେବେ ସେହି ଦୁରାଗ୍ରହୀ ପୁତ୍ରକୁ ରାଜା କୌଣସି କାର୍ଯ୍ୟରେ ନିଯୁକ୍ତ ନକରି ମ୍ଳେଚ୍ଛଦେଶାଦିମାନଙ୍କରେ ଅଟକାଇ ରଖିବେ । ଏପରି ପରିସ୍ଥିତି ନଥିଲେ ରାଜା ନିଜ ପୁତ୍ରମାନଙ୍କ ହିତଚିନ୍ତାରେ ହିଁ ରତହେବେ । ଯଦି ସମସ୍ତ ପୁତ୍ର ପିତୃଭକ୍ତ ହୋଇଥାନ୍ତି, ତେବେ ରାଜା ଜ୍ୟେଷ୍ଠ ପୁତ୍ରଙ୍କୁ ରାଜ୍ୟ ଓ ଐଶ୍ୱର୍ଯ୍ୟ ପ୍ରଦାନ କରି ପ୍ରଶଂସାରପାତ୍ର ହେବେ । (୧୮) ଅଥବା ରାଜ୍ୟକୁ ବହୁପୁତ୍ର-ସଂଘନେତୃ କରିବା ଉଚିତ । କାରଣ କୁଳର ସମସ୍ତ ବ୍ୟକ୍ତି ସଂଘବଦ୍ଧଭାବେ ରାଜ୍ୟ ପରିଚାଳନା କରୁଥିଲେ ସେମାନେ ଶତ୍ରୁଦ୍ୱାରା ଦୁର୍ଜିତ ହୁଅନ୍ତି । ଏଥିଦ୍ୱାରା ରାଜ୍ୟକୁ କୌଣସି ବାଧା ବିଘ୍ନ ପହୁଞ୍ଚିବାର ସମ୍ଭାବନା ନଥାଏ ଏବଂ ଶାସନକାର୍ଯ୍ୟ ଉତ୍ତମରୂପେ ସମ୍ପାଦିତ ହୁଏ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ସପ୍ତଦଶୋଽଧ୍ୟାୟଃ—ରାଜପୁତ୍ରରକ୍ଷଣମ୍ ।

---

## ଅଷ୍ଟାଦଶୋଽଧ୍ୟାୟଃ

## ଚତୁର୍ଦ୍ଦଶ ଓ ପଞ୍ଚଦଶ ପ୍ରକରଣମ୍

## ଅବରୁଦ୍ଧବୃତ୍ତମ୍, ଅବରୁଦ୍ଧେଚ ବୃତ୍ତିଃ ।

**CONDUCT OF A PRINCE KEPT UNDER RESTRAINT AND THE TREATMENT OF A RESTRAINED PRINCE.**

( ଏହି ଅଧ୍ୟାୟରେ ଅବରୁଦ୍ଧ ରାଜକୁମାରଙ୍କର ରାଜାଙ୍କ ପ୍ରତି କର୍ତ୍ତବ୍ୟ ଏବଂ ରାଜାଙ୍କର ଅବରୁଦ୍ଧ ରାଜକୁମାରଙ୍କ ପ୍ରତି ବ୍ୟବହାର ବିଷୟ ଆଲୋଚନା କରାଯାଇଛି । )

**(୧) ରାଜପୁତ୍ରଃ କୃଚ୍ଛ୍ରବୃତ୍ତିରସଦୃଶେ କର୍ମଣି ନିଯୁକ୍ତଃ ପିତରମନୁବର୍ତ୍ତେତ, ଅନ୍ୟତ୍ର ପ୍ରାଣାବାଧକପ୍ରକୃତିକୋପପାତକେଭ୍ୟଃ । (୨) ପୁଣ୍ୟକର୍ମଣି ନିଯୁକ୍ତଃ ପୁରୁଷମଧିଷ୍ଠାତାରଂ ଯାଚେତ । ପୁରୁଷାଧିଷ୍ଠିତଶ୍ଚ ସବିଶେଷମାଦେଶମନୁତିଷ୍ଠେତ୍ । ଅଭିରୂପଂ ଚ କର୍ମଫଳ**

---

(୧) ରାଜା ଯଦି କୌଣସିପ୍ରକାର ସନ୍ଦେହ କରି କୌଣସି ପୁତ୍ରଙ୍କୁ ଅବରୁଦ୍ଧ କରନ୍ତି ଏବଂ ସେହି ସମୟରେ ଯଦି ତାଙ୍କପ୍ରତି କିଛି କଠିନ ବ୍ୟବହାର ହୁଏ ବା ତାହାଙ୍କୁ କୌଣସି ପ୍ରକାର ଅନୁପଯୁକ୍ତ କାର୍ଯ୍ୟରେ ନିଯୁକ୍ତ କରାଯାଏ, ତଥାପି ଅବରୁଦ୍ଧ ରାଜପୁତ୍ର ପିତାଙ୍କର ଅନୁକୂଳ କାର୍ଯ୍ୟ ଆଚରଣ କରିବା ଉଚିତ । ଯଦି ରାଜାଙ୍କର ଏହି ବ୍ୟବହାର ଯୋଗୁଁ ରାଜକୁମାରଙ୍କ ପ୍ରାଣସନ୍ଦେହ ହୁଏ ଏବଂ ଏଥିଯୋଗୁଁ ଯଦି କର୍ମଗୃହୀ ଓ ପ୍ରଜାମାନେ ରାଜାଙ୍କ ଉପରେ ଉତ୍ତ୍ୟକ୍ତ ହୁଅନ୍ତି, ତେବେ ରାଜପୁତ୍ର ରାଜାଙ୍କ ବିରୋଧରେ ମଧ୍ୟ ଯାଇପାରିବେ । (୨) ଅବରୁଦ୍ଧ ରାଜପୁତ୍ର ଯଦି ରାଜାଙ୍କ କର୍ତ୍ତୃକ କୌଣସି ପୁଣ୍ୟକର୍ମ୍ମ କରିବାପାଇଁ ନିଯୁକ୍ତ ହୁଅନ୍ତି, ତେବେ ସେ ଉକ୍ତ କାର୍ଯ୍ୟରେ ଦକ୍ଷତା ଲାଭ କରିଥିବା କୌଣସି ଏକ କର୍ମ୍ମନେତାଙ୍କୁ ଉପଦେଷ୍ଟାରୂପେ ପଠାଇବା ପାଇଁ ପିତାଙ୍କୁ ଅନୁରୋଧ କରିବେ । ଏହି କର୍ମ୍ମନେତାଙ୍କ ତତ୍ତ୍ୱାବଧାନରେ ରହି ରାଜପୁତ୍ର ପିତାଙ୍କର ଆଦେଶକୁ

ସୌପାୟନିକଂ ଚ ଲଭଂ ପିତୁରୁପନାୟୟେତ୍ । (୩) ତଥାଽପ୍ୟତୁଷ୍ୟନ୍ତମନ୍ୟସ୍ମିନ୍ ପୁତ୍ରେ ଦାରେଷୁ ବା ସ୍ନିହ୍ୟନ୍ତମରଣ୍ୟାୟ ଆପୃଚ୍ଛେତ । ବନ୍ଧବଧଭୟାଦ୍ ବା ଯଃ ସାମନ୍ତୋ ନ୍ୟାୟବୃତ୍ତିର୍ଧାର୍ମିକଃ ସତ୍ୟବାଗବିସଂବାଦକଃ ପ୍ରତିଗ୍ରହୀତା ମାନୟିତା ଚାଭିପନ୍ନାନାଂ ତମାଶ୍ରୟେତ । (୪) ତତ୍ରସ୍ଥଃ କୋଶଦଣ୍ଡସମ୍ପନ୍ନଃ ପ୍ରବୀରପୁରୁଷକନ୍ୟାସମ୍ବନ୍ଧମଟବୀସମ୍ବନ୍ଧଂ କୃତ୍ୟପକ୍ଷୋପଗ୍ରହଂ ବା କୁର୍ଯ୍ୟାତ୍ । ଏକଚରଃ ସୁବର୍ଣ୍ଣପାକମଣିରାଗହେମରୂପ୍ୟପଣ୍ୟାକରକର୍ମାନ୍ତାନାଜୀବେତ୍ । (୫) ପାଷଣ୍ଡସଂଘଦ୍ରବ୍ୟମଶ୍ରୋତ୍ରିୟଭୋଗ୍ୟଂ ଦେବଦ୍ରବ୍ୟମାଢ଼୍ୟବିଧବା-

---

ବିଧିପୂର୍ବକ ପାଳନ କରିବେ ଏବଂ ସ୍ୱକୋପାର୍ଜିତ ଧାନ୍ୟାଦି ଫସଲ ଏବଂ କୃଷକମାନଙ୍କଠାରୁ ମିଳିବା ଔପାୟନିକ (ଭେଟି) ପିତାଙ୍କ ପରିତୋଷ ସକାଶେ ସମର୍ପଣ କରିବେ । (୩) ଏଥିରେ ରାଜା ରାଜପୁତ୍ର ଉପରେ ଅସନ୍ତୁଷ୍ଟ ହୋଇ ଯଦି ରାଜପୁତ୍ରଙ୍କ ମାତୃଭିନ୍ନ ଅନ୍ୟ ପତ୍ନୀଠାରେ ଓ ଅନ୍ୟ ଭାଇମାନଙ୍କଠାରେ ସ୍ନେହ ରଖନ୍ତି, ତେବେ ଏହି ଅବରୁଦ୍ଧ ରାଜକୁମାର "ତପସ୍ୟାକରିବା ସକାଶେ ମତେ ବନକୁ ଯିବାକୁ ଆଦେଶ ଦିଅନ୍ତୁ" ବୋଲି ରାଜାଙ୍କୁ ନିବେଦନ କରିବେ । ଏପରି ଦୈନ୍ୟ ପ୍ରକାଶକରିବା ସତ୍ତ୍ୱେ ରାଜାଙ୍କର ଯଦି ଉଦାରତା ପ୍ରକାଶ ନପାଏ, ତେବେ ନିଜର ବଧ କିମ୍ବା ବନ୍ଧନ ଶଙ୍କା କରି ରାଜକୁମାର କୌଣସି ନ୍ୟାୟପରାୟଣ, ଧାର୍ମିକ, ସତ୍ୟବାଦୀ, ସଚ୍ଚୋଟ—ଆଶ୍ରୟଦାତା ଓ ଆଶ୍ରିତମାନଙ୍କୁ ସମ୍ମାନିତ କରିବା ସାମନ୍ତଙ୍କ ଆଶ୍ରୟ ନେବେ । (୪) ଏହି ଆଶ୍ରୟଦାତା ସାମନ୍ତଙ୍କ ନିକଟରେ ରହି ରାଜପୁତ୍ର ଧନ ଓ ସୈନ୍ୟ ସଂଗ୍ରହ ପୂର୍ବକ କୌଣସି ମହାବୀରପୁରୁଷଙ୍କ କନ୍ୟାର ପାଣିଗ୍ରହଣ କରି ଓ ନିଜ ରାଜ୍ୟର ବନପାଳଙ୍କ ସହ ମିତ୍ରତା ସ୍ଥାପନ କରି ନିଜ ପିତାଙ୍କ ବିରୋଧିମାନଙ୍କୁ ଆୟତ୍ତ କରିନେବେ । ଯଦି ଏ ସମସ୍ତ ସମ୍ଭବ ହୋଇନପାରେ, ତେବେ ରସତନ୍ତ୍ରୋକ୍ତ ପ୍ରୟୋଗଦ୍ୱାରା ଲୌହ ଓ ପାରଦକୁ ସ୍ୱର୍ଣ୍ଣରେ ପରିଣତ କରିବା ଉପାୟ ଅବଲମ୍ବନ କରି, ଜୀବିକାନିର୍ବାହ କରିବେ; ହୀରା, ବୈଦୂର୍ଯ୍ୟ, ମୁକ୍ତା, ରୌପ୍ୟ, ପଦ୍ମରାଗ, ଲକ୍ଷା ଓ ସୁବର୍ଣ୍ଣ ପ୍ରଭୃତି ଖନିଜ ଓ ପ୍ରାଣିଜ ମୂଲ୍ୟବାନ୍ ପଦାର୍ଥ କ୍ରୟବିକ୍ରୟ କରି ଜୀବିକାନିର୍ବାହର ବ୍ୟବସ୍ଥା କରିବେ । ଏହା ଧନସଂଗ୍ରହର ଅନ୍ୟତମ ଉପାୟ ଅଟେ । (୫) ରାଜପୁତ୍ର କୌଣସି ବେଦପାଠୀ ବ୍ରାହ୍ମଣଙ୍କ ଧନ

ଦ୍ରବ୍ୟଂ ବା ଗୂଢ଼ମନୁପ୍ରବିଶ୍ୟ ସାର୍ଥଯାନପାତ୍ରାଣି ଚ ମଦନରସଯୋଗେନାତିସନ୍ଧାୟାପହରେତ୍ । (୬) ପାରଗ୍ରାମିକଂ ବା ଯୋଗମାତିଷ୍ଠେତ୍ । ମାତୁଃ ପରିଜନୋପଗ୍ରହେଣ ବା ଚେଷ୍ଟେତ । (୭) କାରୁଶିଳ୍ପିକୁଶୀଲବଚିକିତ୍ସକବାଗ୍‌ଜୀବନପାଷଣ୍ଡଚ୍ଛଦ୍ମଭିର୍ବା ନଷ୍ଟରୂପସ୍ତଦ୍‌ବ୍ୟଞ୍ଜନସଖଃ ଛିଦ୍ରେ ପ୍ରବିଶ୍ୟ ରାଜ୍ଞଃ ଶସ୍ତ୍ରରସାଭ୍ୟାଂ ପ୍ରହୃତ୍ୟ ବ୍ରୂୟାତ୍— (୮) ଅହମସୌ କୁମାରଃ, ସହଭୋଗ୍ୟମିଦଂ ରାଜ୍ୟମେକୋ ନାର୍ହତି ଭୋକ୍ତୁଂ, ତତ୍ର ଯେ କାମୟନ୍ତେ ଭର୍ତୁଂ ତାନହଂ ଦ୍ୱିଗୁଣେନ ଭକ୍ତବେତନେନୋପସ୍ଥାସ୍ୟେ ଇତି । ଇତ୍ୟବରୁଦ୍ଧବୃତ୍ତମ୍ । (୯) ଅବରୁଦ୍ଧଂ ତୁ

---

ବ୍ୟତୀତ ପାଷଣ୍ଡସଂଘଦ୍ୱାରା ସଂଚିତ ହୋଇଥିବା ଧନ, କୋଠଧନ, ଅଧାର୍ମିକମାନଙ୍କ ସଂଚିତ ଧନ ବା ଧନିକା-ଏକାକିନୀ-ବିଧବାମାନଙ୍କ ଧନ ସେମାନଙ୍କ ସହିତ କପଟରେ ସହଯୋଗ କରି ଅପହରଣ କରିବେ । ଜଳପଥ ଓ ସ୍ଥଳପଥରେ ଯାତାୟାତ କରୁଥିବା ବ୍ୟବସାୟୀମାନଙ୍କୁ କୌଶଳକ୍ରମେ ମାଦକଦ୍ରବ୍ୟ ସେବନ କରାଇ ସେମାନଙ୍କ ଧନ ମଧ୍ୟ ଅପହରଣ କରିବେ । (୬) ଅଧିକନ୍ତୁ ଦୁର୍ଗଲମ୍ଭୋପାୟ ପ୍ରକରଣୋକ୍ତ ପରରାଜ୍ୟ ଦଖଲ କରିବା ଉପାୟ ଅବଲମ୍ବନ କରି ରାଜପୁତ୍ର ଧନସଂଚୟ କରିବେ । ଅଥବା ନିଜ ମାତୃବନ୍ଧୁ ଓ ତାଙ୍କ ସେବକମାନଙ୍କ ସହାୟତାରେ ନିଜ କାର୍ଯ୍ୟସିଦ୍ଧିକରିବା ପାଇଁ ଯତ୍ନବାନ୍ ହେବେ । (୭) କାରିଗର (ବଢ଼େଇ, କମାର ପ୍ରଭୃତି ଗୃହନିର୍ମାଣକର୍ତ୍ତା) ଚିତ୍ରକାର, ଗାୟକ, ବାଦକ, ବୈଦ୍ୟ, ଗଳ୍ପସାଗର, ପାଷଣ୍ଡ ପ୍ରଭୃତି ଛଦ୍ମବେଶରେ ନିଜ ରୂପକୁ ଗୁପ୍ତକରି ରାଜାଙ୍କର ଅପକାର ସ୍ଥାନରେ ପ୍ରବେଶ ପୂର୍ବକ ଶସ୍ତ୍ର କିମ୍ବା ବିଷପ୍ରୟୋଗଦ୍ୱାରା ରାଜାଙ୍କୁ ହତ୍ୟାକରି ସଚିବମାନଙ୍କୁ କହିବେ,—(୮) "ମୁଁ ଆପଣମାନଙ୍କର ସେହି ପରିଚିତ ରାଜକୁମାର । ଆମ୍ଭେମାନେ ସମସ୍ତେ ମିଳିମିଶି ରାଜ୍ୟଭୋଗ କରିବା ଉଚିତ, ମୋର ପିତାଙ୍କପରି ଜଣେ କେହି ଏକାକୀ ଭୋଗ କରିବା ଉଚିତ ନୁହେ । ତେଣୁ ଯେଉଁମାନେ ମୋ ସହିତ ସହଯୋଗ କରି ଅମାତ୍ୟାଦି ପଦବୀର ଆଶାକରନ୍ତି, ସେମାନଙ୍କୁ ଦୁଇଗୁଣ ବେତନଭତ୍ତା ଦିଆଯିବ ।" (ଏ ପର୍ଯ୍ୟନ୍ତ ବିନାପରାଧରେ ଅବରୁଦ୍ଧ ରାଜପୁତ୍ରଙ୍କ କର୍ତ୍ତବ୍ୟ ବିଷୟ ବର୍ଣ୍ଣନା କରାଗଲା) । (୯) ଅବରୁଦ୍ଧ ରାଜକୁମାରଙ୍କ ମନ୍ତ୍ରିପ୍ରଭୃତି ମୁଖ୍ୟବ୍ୟକ୍ତିଙ୍କ

ମୁଖ୍ୟପୁତ୍ରାପସର୍ପାଃ ପ୍ରତିପାଦ୍ୟାନୟେୟୁଃ, ମାତା ବା ପ୍ରତିଗୃହୀତା । ତ୍ୟକ୍ତଂ ଗୂଢ଼ପୁରୁଷାଃ ଶସ୍ତ୍ରରସାଭ୍ୟାଂ ହନ୍ୟୁଃ । ଅତ୍ୟକ୍ତଂ ତୁଲ୍ୟଶୀଳାଭିଃ ସ୍ତ୍ରୀଭିଃ ପାନେନ ମୃଗୟୟା ବା ପ୍ରସଜ୍ୟ ରାତ୍ରାବୁପଗୃହ୍ୟାନୟେୟୁଃ ।

(୧୦) ଉପସ୍ଥିତଂ ଚ ରାଜ୍ୟେନ ମଦୂର୍ଦ୍ଧ୍ୱମିତି ସାନ୍ତ୍ୱୟେତ୍ ।
ଏକସ୍ଥମଥ ସଂରୁନ୍ଧ୍ୟାତ୍ ପୁତ୍ରବାନ୍ ବା ପ୍ରବାସୟେତ୍ ॥

---

ପୁତ୍ରଙ୍କପରି ସମାନବେଶଧାରୀ ଗୁପ୍ତଚରମାନେ କିମ୍ବା ରାଜକୁମାରଙ୍କ ମାତା ଅଥବା ମାତୃତୁଲ୍ୟା ଅନ୍ୟ ରାଜସ୍ତ୍ରୀ "ପିତା ତୁମ୍ଭଙ୍କୁ ଯୁବରାଜପଦରେ ଅଭିଷିକ୍ତ କରିବେ, ତୁମ୍ଭେ ରାଜାଙ୍କପ୍ରତି ଅନୁକୂଳ ହୁଅ" ଏପରି ବୁଝାଇ ରାଜାଙ୍କ ନିକଟକୁ ଫେରାଇ ଆଣିବେ । ଯଦି କୌଣସି ଉପାୟରେ ରାଜପୁତ୍ର ବଶବର୍ତ୍ତୀ ନ ହୁଅନ୍ତି, ତେବେ ରାଜା ତାଙ୍କୁ ତ୍ୟକ୍ତକରି ଗୁପ୍ତଘାତକଙ୍କଦ୍ୱାରା ଶସ୍ତ୍ର ଓ ବିଷପ୍ରୟୋଗ କରାଇ ମରାଇଦେବେ । ଯଦି ରାଜପୁତ୍ର ସ୍ନେହବଶତଃ ତାଙ୍କର ଏହି ଅପରାଧୀ ଅବୁଝା କୁମାରଙ୍କୁ ମୃତ୍ୟୁଦଣ୍ଡ ଦେବା ସକାଶେ ପରିତ୍ୟାଗ ନ କରନ୍ତି, ତେବେ ତାଙ୍କ ସମାନସ୍ୱଭାବର କୌଣସି ସୁନ୍ଦରୀ ସ୍ତ୍ରୀଦ୍ୱାରା ସୁରାପାନ କିମ୍ବା ଶିକାରରେ ତାଙ୍କୁ ଆସକ୍ତ କରାଇ ବନ୍ଧନପୂର୍ବକ ରାତ୍ରରେ ନିକଟକୁ ଅଣାଇବେ । (୧୦) ଫେରାଇ ଆଣିଥିବା ରାଜପୁତ୍ରଙ୍କୁ ରାଜା କହିବେ— "ମୋ ଉତ୍ତାରୁ ଏ ରାଜ୍ୟ ତୁମର ହେବ, ତୁମେ ଶାନ୍ତହୁଅ ।" ସେ ଯଦି ଏଥିରେ ଶାନ୍ତ ନ ହୁଅନ୍ତି, ପୁଣି ରାଜାଙ୍କର ଏକମାତ୍ର ପୁତ୍ର ହୋଇଥାନ୍ତି, ତେବେ ରାଜା ତାଙ୍କୁ କାରାବରୁଦ୍ଧ କରିବେ । ଯଦି ରାଜାଙ୍କର ଅନ୍ୟ କୌଣସି ଗୁଣବାନ୍ ପୁତ୍ର ଥା'ନ୍ତି, ତେବେ ରାଜା ଫେରାଇ ଆଣିଥିବା ଏହି ଅଯୋଗ୍ୟ ପୁତ୍ରଙ୍କୁ ଦେଶାନ୍ତରିତ କରାଇବେ କିମ୍ବା ମରାଇଦେବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ଅଷ୍ଟାଦଶୋଽଧ୍ୟାୟଃ—ଅବରୁଦ୍ଧବୃତ୍ତମବରୁଦ୍ଧେଚ ବୃତ୍ତିଃ ।

# ଊନବିଂଶୋଽଧ୍ୟାୟଃ

## ଷୋଡ଼ଶ ପ୍ରକରଣଂ—ରାଜପ୍ରଣିଧିଃ

## THE DUTIES OF A KING

## ( ରାଜବ୍ୟାପାର ନିରୂପଣ )

(୧) ରାଜାନମୁତ୍ତିଷ୍ଠମାନମନୂତ୍ତିଷ୍ଠନ୍ତେ ଭୃତ୍ୟାଃ । ପ୍ରମାଦ୍ୟନ୍ତମନୁପ୍ରମାଦ୍ୟନ୍ତି । କର୍ମାଣି ଚାସ୍ୟ ଭକ୍ଷୟନ୍ତି । ଦ୍ୱିଷଦ୍ଭିଶ୍ଚାତିସନ୍ଧୀୟତେ । ତସ୍ମାଦୁତ୍ଥାନମାତ୍ମନଃ କୁର୍ବୀତ । ନାଳିକାଭିରହରଷ୍ଟଧା ରାତ୍ରିଂ ଚ ବିଭଜେତ୍ । ଛାୟାପ୍ରମାଣେନ ବା ତ୍ରିପୌରୁଷୀ ପୌରୁଷୀ ଚତୁରଙ୍ଗୁଳା ନଚ୍ଛାୟୋ ମଧ୍ୟାହ୍ନ ଇତି ଚତ୍ୱାରଃ ପୂର୍ବେ ଦିବସସ୍ୟାଷ୍ଟଭାଗାଃ । ତୈଃ

---

(୧) ରାଜା ଯଦି ଉତ୍ଥାନଶୀଳ ହୁଅନ୍ତି ତେବେ ଅମାତ୍ୟ ସମାହର୍ତ୍ତା, ସନ୍ନିଧାତା ପ୍ରଭୃତି ରାଜକର୍ମଚାରୀମାନେ ମଧ୍ୟ ତଦ୍ରୂପ ଆଚରଣ କରନ୍ତି । ରାଜା ପ୍ରମାଦୀ (ଅର୍ଥାତ୍ ଅସାବଧାନ) ହେଲେ କର୍ମଚାରୀମାନେ ମଧ୍ୟ ପ୍ରମାଦୀ ହୁଅନ୍ତି, ରାଜା କୌଣସି କାର୍ଯ୍ୟ ସକାଶେ ଉଦ୍ୟମ କଲେ ଏହି ଗଳିତ କର୍ମଚାରୀମାନେ ସେମାନଙ୍କ ଗଳିତ ଆଚରଣଦ୍ୱାରା ତାହା ନଷ୍ଟ କରିଦିଅନ୍ତି; ଏପରି କି ରାଜାଙ୍କ ସୁରାପାନାଦି କୁକାର୍ଯ୍ୟରେ ରତକରାଇ ଏହି କର୍ମଚାରୀମାନେ ଶତ୍ରୁରାଜା ସହିତ ସନ୍ଧିକରି ନିଜର ଲାଭ ଉଠାଇବା ସକାଶେ ସୁବିଧା କରିଥାନ୍ତି । ସୁତରାଂ ରାଜା ନିଜର ଉନ୍ନତିସକାଶେ ଦୈନନ୍ଦିନ କାର୍ଯ୍ୟକ୍ରମର ଏକ ସୁଚିନ୍ତିତ ନିର୍ଘଣ୍ଟ ପ୍ରସ୍ତୁତ କରିବେ ଏବଂ ଏହି କାର୍ଯ୍ୟ-ନିର୍ଘଣ୍ଟ ପ୍ରସ୍ତୁତ କରିବାପାଇଁ ଛାୟାମାପକ ଯନ୍ତ୍ରଦ୍ୱାରା ଦିବସକୁ ଆଠଭାଗ ଓ ରାତିକୁ ଆଠଭାଗରେ ବଣ୍ଟନ କରିବେ । ସୂର୍ଯ୍ୟୋଦୟ ସମୟରେ ଯେତେବେଳେ ମନୁଷ୍ୟର ଛାଇ ତିନିମଣିଷଲମ୍ବ ଥିବ, ସେହି ସମୟକୁ ପ୍ରଥମଭାଗ; ଯେତେବେଳେ ଏକମଣିଷଲମ୍ବ ଥିବ ସେହି ସମୟକୁ ଦ୍ୱିତୀୟଭାଗ; ଯେତେବେଳେ ଚାରିଅଙ୍ଗୁଳଲମ୍ବ ଥିବ ସେହି ସମୟକୁ ତୃତୀୟଭାଗ ଓ ମଧ୍ୟାହ୍ନକୁ ଚତୁର୍ଥଭାଗ କରିବେ । ଏହାପରି ଅପରାହ୍ନକୁ ଚାରିଭାଗ, ରାତିର ପ୍ରଥମାର୍ଦ୍ଧକୁ ଚାରିଭାଗ ଓ ଅପରାର୍ଦ୍ଧକୁ ଚାରିଭାଗ କରି

ପଶ୍ଚିମା ବ୍ୟାଖ୍ୟାତାଃ । (୨) ତତ୍ର ପୂର୍ବେ ଦିବସସ୍ୟାଷ୍ଟଭାଗେ ରକ୍ଷାବିଧାନମାୟବ୍ୟୟୌ ଚ ଶୃଣୁୟାତ୍ । ଦ୍ୱିତୀୟେ ପୌରଜାନପଦାନାଂ କାର୍ଯ୍ୟାଣି ପଶ୍ୟେତ୍ । ତୃତୀୟେ ସ୍ନାନଭୋଜନଂ ସେବେତ, ସ୍ୱାଧ୍ୟାୟଂ ଚ କୁର୍ବୀତ । ଚତୁର୍ଥେ ହିରଣ୍ୟପ୍ରତିଗ୍ରହମଧ୍ୟକ୍ଷ୍ୟାଂଶ୍ଚ କୁର୍ବୀତ । ପଞ୍ଚମେ ମନ୍ତ୍ରିପରିଷଦା ପତ୍ରସଂପ୍ରେଷଣେନ ମନ୍ତ୍ରୟେତ, ଚାରଗୁହ୍ୟବୋଧନୀୟାନି ଚ ବୁଧ୍ୟେତ । ଷଷ୍ଠେ ସ୍ୱୈରବିହାରଂ ମନ୍ତ୍ରଂ ବା ସେବେତ । ସପ୍ତମେ ହସ୍ତ୍ୟଶ୍ୱରଥାୟୁଧୀୟାନ୍ ପଶ୍ୟେତ୍ । ଅଷ୍ଟମେ ସେନାପତିସଖୋ ବିକ୍ରମଂ ଚିନ୍ତୟେତ୍ । ପ୍ରତିଷ୍ଠିତେଽହନି ସନ୍ଧ୍ୟାମୁପାସୀତ । (୩) ପ୍ରଥମେ ରାତ୍ରିଭାଗେ ଗୂଢ଼ପୁରୁଷାନ୍ ପଶ୍ୟେତ୍ । ଦ୍ୱିତୀୟେ ସ୍ନାନଭୋଜନଂ କୁର୍ବୀତ ସ୍ୱାଧ୍ୟାୟଂ ଚ । ତୃତୀୟେ ତୂର୍ଯ୍ୟ-

---

କାର୍ଯ୍ୟନିର୍ଘଣ୍ଟ ପ୍ରସ୍ତୁତ କରିବେ । (୨) ଦିବସର ପ୍ରଥମ ଅଂଶରେ ରାଜା ରାଜ୍ୟରକ୍ଷା ଓ ଆୟବ୍ୟୟ ବିଷୟରେ ବିଚାର କରିବେ । ଦ୍ୱିତୀୟ ଅଂଶରେ ପ୍ରଜାମାନଙ୍କର ଆପତ୍ତି ଅଭିଯୋଗ ଶ୍ରବଣ କରିବେ । ତୃତୀୟ ଅଂଶରେ ସ୍ନାନ ଭୋଜନ ଓ ବେଦପୁରାଣାଦି ପଠନ କରିବେ । ଚତୁର୍ଥ ଅଂଶରେ ରାଜସ୍ୱଗ୍ରହଣ ଓ କର୍ମଚାରୀମାନଙ୍କୁ ନିର୍ଦ୍ଦିଷ୍ଟ କାର୍ଯ୍ୟରେ ନିଯୁକ୍ତ କରିବେ । ପଞ୍ଚମ ଅଂଶରେ ମନ୍ତ୍ରିମାନଙ୍କ ସହିତ ପତ୍ରବିନିମୟଦ୍ୱାରା ରାଜ୍ୟର ହାଲଚାଲ ବୁଝିନେବେ ଏବଂ ଗୁପ୍ତଚରମାନଙ୍କଠାରୁ ଗୁପ୍ତସମ୍ବାଦମାନ ସଂଗ୍ରହ କରିବେ । ଷଷ୍ଠ ଅଂଶରେ ନିଜ ଇଚ୍ଛାଅନୁସାରେ ସ୍ୱଚ୍ଛନ୍ଦ ବିହାର କରିବେ କିମ୍ବା ଏକାକୀ ମନ୍ତ୍ରଣା କରିବେ । ସପ୍ତମ ଅଂଶରେ ହସ୍ତୀ, ଅଶ୍ୱ, ରଥ ଓ ଶସ୍ତ୍ରଧାରୀ ସୈନ୍ୟମାନଙ୍କର ରକ୍ଷଣାବେକ୍ଷଣରେ ତତ୍ପର ହେବେ । ଅଷ୍ଟମ ଅଂଶରେ ସେନାପତିମାନଙ୍କ ସହିତ ଯୁଦ୍ଧ ଓ ରାଜ୍ୟରକ୍ଷା ସମ୍ବନ୍ଧେ ଚିନ୍ତାକରିବେ । ଦିବସ ଶେଷହୋଇ ସନ୍ଧ୍ୟା ସମୟ ଉପସ୍ଥିତ ହେଲେ ରାଜା ସନ୍ଧ୍ୟୋପାସନାରେ ରତ ହୋଇ ଦିବସର କାର୍ଯ୍ୟକ୍ରମ ସମାପନ କରିବେ । (୩) ରାଜା ରାତ୍ରିର ପ୍ରଥମାଂଶରେ ଗୁପ୍ତଚରମାନଙ୍କଠାରୁ ଗୁପ୍ତସମ୍ବାଦ ଗ୍ରହଣ କରିବେ । ଦ୍ୱିତୀୟ ଅଂଶରେ ସ୍ନାନ ଭୋଜନ ଓ ବେଦପାଠ କରିବେ । ତୃତୀୟ ଅଂଶରେ ଗୀତ ବାଦ୍ୟ ନୃତ୍ୟାଦି ଉପଭୋଗ କରି ଅନ୍ତଃପୁରକୁ ତୂର୍ଯ୍ୟଘୋଷ ସହିତ ପ୍ରବେଶ କରି ଚତୁର୍ଥ ଓ ପଞ୍ଚମ ଅଂଶରେ ଶୟନ କରିବେ । ଷଷ୍ଠ ଅଂଶରେ

**ଘୋଷେଣ ସଂବୁଦ୍ଧଃ ଚତୁର୍ଥପଞ୍ଚମୌ ଶୟୀତ । ଷଷ୍ଠେ ତୂର୍ଯ୍ୟ-ଘୋଷେଣ ପ୍ରତିବୁଦ୍ଧଃ ଶାସ୍ତ୍ରମିତିକର୍ତ୍ତବ୍ୟତାଂ ଚ ଚିନ୍ତୟେତ୍ । ସପ୍ତମେ ମନ୍ତ୍ରମଧ୍ୟାସୀତ, ଗୂଢ଼ପୁରୁଷାଂଶ୍ଚ ପ୍ରେଷୟେତ୍ । ଅଷ୍ଟମେ ଋତ୍ୱିଗାଚାର୍ଯ୍ୟପୁରୋହିତସଖଃ ସ୍ୱସ୍ତ୍ୟୟନାନି ପ୍ରତିଗୃହ୍ଣୀୟାତ୍ । ଚିକିତ୍ସକ-ମାହାନସିକ-ମୌହୂର୍ତ୍ତିକାଂଶ୍ଚ ପଶ୍ୟେତ୍ । ସବତ୍ସାଂ ଧେନୁଂ ବୃଷଭଂ ଚ ପ୍ରଦକ୍ଷିଣୀକୃତ୍ୟୋପସ୍ଥାନଂ ଗଚ୍ଛେତ୍ । ଆତ୍ମବଲାନୁକୂଲ୍ୟେନ ବା ନିଶାହ-ର୍ଭାଗାନ୍ ପ୍ରବିଭଜ୍ୟ କାର୍ଯ୍ୟାଣି ସେବେତ । (୪) ଉପସ୍ଥାନଗତଃ କାର୍ଯ୍ୟାର୍ଥିନାମଦ୍ୱାରାସଙ୍ଗଂ କାରୟେତ୍ । ଦୁର୍ଦର୍ଶୋ ହି ରାଜା କାର୍ଯ୍ୟାକାର୍ଯ୍ୟ-ବିପର୍ଯ୍ୟାସମାସନ୍ନୈଃ କାର୍ଯ୍ୟତେ । ତେନ ପ୍ରକୃତିକୋପମରିବଶଂ ବା ଗଚ୍ଛେତ୍ । ତସ୍ମାଦ୍ ଦେବତାଶ୍ରମପାଷଣ୍ଡଶ୍ରୋତ୍ରିୟପଶୁପୁଣ୍ୟସ୍ଥାନାନାଂ**

---

ତୂର୍ଯ୍ୟନାଦ ଶ୍ରବଣପୂର୍ବକ ନିଦ୍ରା ତ୍ୟାଗକରି ନୀତିଶାସ୍ତ୍ର ଓ ଅସନ୍ନ ଦିବସର ଅବଶ୍ୟକୀୟ କର୍ତ୍ତବ୍ୟ ସମ୍ବନ୍ଧେ ବିଚାର କରିବେ । ସପ୍ତମ ଅଂଶରେ ମନ୍ତ୍ରଣା କରି ଗୁପ୍ତଚରମାନଙ୍କୁ ବିଭିନ୍ନ ସମ୍ବାଦ ଗୁପ୍ତରେ ସଂଗ୍ରହ କରିବାପାଇଁ ପ୍ରେରଣ କରିବେ । ଅଷ୍ଟମ ଅଂଶରେ ଋତ୍ୱିକ୍ ଆଚାର୍ଯ୍ୟ ପୁରୋହିତଙ୍କ ସହିତ ସ୍ୱସ୍ତିବାଚନ ଓ ପୁଣ୍ୟାହବାଚନ କରିବେ ଏବଂ ଚିକିତ୍ସକ, ପାଚକ ଓ ଜ୍ୟୋତିଷୀମାନଙ୍କ ସହିତ ଯଥାକ୍ରମେ ସ୍ୱାସ୍ଥ୍ୟ, ଖାଦ୍ୟ ଓ ଶୁଭାଶୁଭ ଲଗ୍ନ ବିଷୟରେ ବିଚାର କରିବେ । ପ୍ରାତଃକାଳ ଉପସ୍ଥିତ ହେଲେ ରାଜା ସବତ୍ସାଧେନୁ ଅର୍ଥାତ୍ ବାଛୁରି ସହିତ ଗାଈ ଓ ବୃଷଭକୁ ପ୍ରଦକ୍ଷିଣ କରି ଦରବାରରେ ପ୍ରବେଶ କରିବେ । ରାଜାଙ୍କର ଏ ଯେଉଁ ସାଧାରଣ ଦିନଚର୍ଯ୍ୟା ଓ ରାତ୍ରିଚର୍ଯ୍ୟାର ବିବରଣୀ ଦିଆଗଲା ସେଥିରେ ରାଜା ନିଜର ଆତ୍ମବଳ ଓ ଆବଶ୍ୟକତାନୁଯାୟୀ ପରିବର୍ତ୍ତନ ଓ ପରିବର୍ଦ୍ଧନ କରିପାରନ୍ତି । କିନ୍ତୁ ରାଜା ନିଜେ ରାଜକାର୍ଯ୍ୟର ପର୍ଯ୍ୟବେକ୍ଷଣ ତତ୍ପରତାର ସହିତ କରିବାକୁ କଦାପି ଭୁଲିବେ ନାହିଁ । (୪) ରାଜା ଦରବାରରେ ପ୍ରବେଶକରି ସିଂହଦ୍ୱାରରେ ଥିବା କାର୍ଯ୍ୟାର୍ଥିବୃନ୍ଦଙ୍କୁ (ଉପସ୍ଥିତ ପ୍ରଜାମାନଙ୍କୁ) ଅବାଧରେ ଦରବାରରେ ପ୍ରବେଶ କରିବାକୁ ଅନୁମତି ଦେବେ । ସେପରି ନକଲେ ନିକଟତମ କର୍ମଚାରୀମାନେ କାର୍ଯ୍ୟକୁ ଏପଟ ସେପଟ କରିଦେବା ଯୋଗୁଁ ପ୍ରଜାମାନେ କ୍ରୁଦ୍ଧ ହୋଇ ଶତ୍ରୁରାଜାଙ୍କ ବଶବର୍ତ୍ତୀ ହୋଇଯାଇପାରନ୍ତି । ସର୍ବକାର୍ଯ୍ୟ ଶେଷକରି ରାଜା ନିଜେ ଦେବାଳୟ, ମୁନିମାନଙ୍କ ଆଶ୍ରମ, ଦୁର୍ଗତିମାନଙ୍କ ବାସସ୍ଥାନ, ବ୍ରାହ୍ମଣଶାସନ,

ବାଳବୃଦ୍ଧବ୍ୟାଧିତବ୍ୟସନ୍ୟନାଥାନାଂ ସ୍ତ୍ରୀଣାଂ ଚ କ୍ରମେଣ କାର୍ଯ୍ୟାଣି ପଶ୍ୟେତ୍, କାର୍ଯ୍ୟଗୌରବାଦାତ୍ୟୟିକବଶେନ ବା ।

(୫) ସର୍ବମାତ୍ୟୟିକଂ କାର୍ଯ୍ୟଂ ଶୃଣୁୟାନ୍ନାତିପାତୟେତ୍ ।
କୃଚ୍ଛ୍ରସାଧ୍ୟମତିକ୍ରାନ୍ତମସାଧ୍ୟଂ ବା ବିଜାୟତେ ॥

(୬) ଅଗ୍ନ୍ୟଗାରଗତଃ କାର୍ଯ୍ୟଂ ପଶ୍ୟେଦ୍ ବୈଦ୍ୟତପସ୍ୱିନାମ୍ ।
ପୁରୋହିତାଚାର୍ଯ୍ୟ ସଖଃ ପ୍ରତ୍ୟୁତ୍ଥାୟାଭିବାଦ୍ୟ ଚ ॥

(୭) ତପସ୍ୱିନାଂ ତୁ କାର୍ଯ୍ୟାଣି ତ୍ରୈବିଦ୍ୟୈଃ ସହକାରୟେତ୍ ।
ମାୟାଯୋଗବିଦାଂ ଚୈବ ନ ସ୍ୱୟଂ କୋପକାରଣାତ୍ ॥

---

ବେଦଶାଳା, ପଶୁଶାଳା, ଧର୍ମଶାଳା ପ୍ରଭୃତି ପରିଦର୍ଶନ କରିବେ । ସେହିପରି ବାଳକ, ବୃଦ୍ଧ, ରୋଗୀ, ନିଶାଖୋର, ଅନାଥ ଓ ସ୍ତ୍ରୀମାନଙ୍କ କାର୍ଯ୍ୟ ରାଜା ସ୍ୱୟଂ କ୍ରମାନ୍ୱୟେ ପର୍ଯ୍ୟବେକ୍ଷଣ କରିବେ ଏବଂ କାର୍ଯ୍ୟର ଗୁରୁତା ଦୃଷ୍ଟିରୁ ବିଷୟ ଶ୍ରେଷ୍ଠ ହେଲେ ମଧ୍ୟ ନିଜର ନିର୍ଦ୍ଧାରିତ କାର୍ଯ୍ୟକ୍ରମକୁ ବଦଳାଇ ଉକ୍ତ କାର୍ଯ୍ୟ ସାଧନ କରିବେ । (୫) ରାଜା ଗୁରୁହେଉ କିମ୍ବା ଲଘୁହେଉ ଉପସ୍ଥିତ କାର୍ଯ୍ୟକୁ ଅବିଳମ୍ବେ ସାଧନ କରିବେ, କାରଣ ସହଜସାଧ୍ୟ କାମ ମଧ୍ୟ ହେଳାବଶତଃ ଅସାଧ୍ୟ ହୋଇଯାଏ । (୬, ୭) ରାଜା ପ୍ରଧାନ ପୁରୋହିତ ଓ ଆଚାର୍ଯ୍ୟଙ୍କ ସହିତ ଯଜ୍ଞଶାଳାରେ ରହି, କାର୍ଯ୍ୟାର୍ଥୀ ବୈଦ୍ୟ ଓ ତପସ୍ୱୀମାନଙ୍କୁ ଗାତ୍ରୋତ୍ଥାନପୂର୍ବକ ଅଭିବାଦନକରି ସେମାନଙ୍କ କାର୍ଯ୍ୟ ସାଧନ କରିବେ । ତପସ୍ୱିମାନଙ୍କର କାର୍ଯ୍ୟ ଋକ୍, ସାମ, ଯଜୁ ଏହି ତ୍ରିବେଦଜ୍ଞ ବ୍ରାହ୍ମଣମାନଙ୍କ ସହଯୋଗରେ ସାଧନ କରିବେ । ଯୋଗୀ ଓ ଗୁଣିଆମାନଙ୍କ ସହଯୋଗରେ ଐନ୍ଦ୍ରଜାଲିକ * ଏବଂ ବୈଜ୍ଞାନିକମାନଙ୍କ ବିଷୟ ବିବେଚନା କରିବେ, କାରଣ କେଉଁଠି କିଛି ତ୍ରୁଟି ରହିଲେ ଏମାନେ ରାଜାଙ୍କ ଉପରେ କ୍ରୁଦ୍ଧ ହୋଇ କିଛି ଅନିଷ୍ଟ ଘଟାଇ ପାରନ୍ତି । କିନ୍ତୁ ମନ୍ତ୍ରୀପ୍ରଭୃତି ସମସ୍ତେ ଥାଇ ଯେଉଁ କାର୍ଯ୍ୟ କରାଯାଏ, ସେଥିରେ ତପସ୍ୱୀ ଓ ବୈଜ୍ଞାନିକ ପ୍ରଭୃତିଙ୍କର ରାଜାଙ୍କପ୍ରତି

---

* ଐନ୍ଦ୍ରଜାଲିକ—Magician.

(୮) ରାଜ୍ଞୋ ହି ବ୍ରତମୁତ୍ଥାନଂ ଯଜ୍ଞଃ କାର୍ଯ୍ୟାନୁଶାସନମ୍ ।
ଦକ୍ଷିଣା ବୃତ୍ତିସାମ୍ୟଂ ଚ ଦୀକ୍ଷିତସ୍ୟାଭିଷେଚନମ୍ ॥
(୯) ପ୍ରଜାସୁଖେ ସୁଖଂ ରାଜ୍ଞଃ ପ୍ରଜାନାଂ ଚ ହିତେ ହିତମ୍ ।
ନାତ୍ମପ୍ରିୟଂ ହିତଂ ରାଜ୍ଞଃ ପ୍ରଜାନାଂ ତୁ ପ୍ରିୟଂ ହିତମ୍ ॥
(୧୦) ତସ୍ମାନ୍ନିତ୍ୟୋତ୍ଥିତୋ ରାଜା କୁର୍ଯ୍ୟାଦର୍ଥାନୁଶାସନମ୍ ।
ଅର୍ଥସ୍ୟ ମୂଳମୁତ୍ଥାନମନର୍ଥସ୍ୟ ବିପର୍ଯ୍ୟୟଃ ॥
(୧୧) ଅନୁତ୍ଥାନେ ଧ୍ରୁବୋ ନାଶଃ ପ୍ରାପ୍ତସ୍ୟାନାଗତସ୍ୟ ଚ ।
ପ୍ରାପ୍ୟତେ ଫଳମୁତ୍ଥାନାଲ୍ଲଭତେ ଚାର୍ଥସଂପଦଂ ॥

---

ଦୁଃଖୀ ରହେନାହିଁ । (୮, ୯) ରାଜାଙ୍କର ବ୍ରତ ହେଉଛି—ଉଦ୍ୟୋଗ, ଯଜ୍ଞାନୁଷ୍ଠାନ, ପ୍ରଜାଙ୍କ ଉନ୍ନତିକର କାର୍ଯ୍ୟର ସୁବ୍ୟବସ୍ଥା, ମୁକ୍ତହସ୍ତ ଦାନ, ପ୍ରଜାଙ୍କପ୍ରତି ସମଦୃଷ୍ଟି, ଶତ୍ରୁ ମିତ୍ର ଏବଂ ନିରପେକ୍ଷ ବ୍ୟକ୍ତିଙ୍କ ପ୍ରତି ଯଥାଯୋଗ୍ୟ ବ୍ୟବହାର, ଧର୍ମ୍ମଶାସ୍ତ୍ର ଅନୁସାରେ କାର୍ଯ୍ୟରେ ରତ ହୋଇ ଦୀକ୍ଷିତ ଅର୍ଥାତ୍ ବିଭିନ୍ନ ବିଦ୍ୟାରେ ବ୍ୟୁତ୍ପନ୍ନ ହୋଇଥିବା ଶିକ୍ଷିତବ୍ୟକ୍ତିମାନଙ୍କୁ ଯଥାଯୋଗ୍ୟ କାର୍ଯ୍ୟରେ ନିଯୁକ୍ତ କରିବା, ପ୍ରଜାଙ୍କ ସୁଖରେ ନିଜକୁ ସୁଖୀ ମନେକରିବା ଓ ପ୍ରଜାଙ୍କ ହିତକୁ ନିଜର ହିତ ବୋଲି ମନେକରିବା । ରାଜାଙ୍କର ପ୍ରିୟ ଓ ହିତକର କାର୍ଯ୍ୟ ହୋଇ ସ୍ୱତନ୍ତ୍ରଭାବେ କିଛି ନାହିଁ; ପ୍ରଜାଙ୍କର ପ୍ରିୟ ଓ ହିତକର କାର୍ଯ୍ୟ ହିଁ ରାଜାଙ୍କର ପ୍ରିୟ ଓ ହିତର କାରଣ । (୧୦, ୧୧) ଅତଏବ ରାଜା ନିତ୍ୟୋଦ୍ୟୋଗୀ ହୋଇ ଅର୍ଥାତ୍ ଉପର୍ଯ୍ୟୁକ୍ତ ବିଷୟଗୁଡ଼ିକୁ ମନେରଖି ନିତ୍ୟ ଉଦ୍ୟମଶୀଳ ହୋଇ ନୀତି ଅନୁସାରେ ରାଜ୍ୟପାଳନ କରିବେ । ଯେଉଁ ରାଜା ନୀତି ଅନୁସାରେ ଉଦ୍ୟୋଗ କରନ୍ତି ସେ ସମସ୍ତପ୍ରକାର ଅର୍ଥସିଦ୍ଧି ଲାଭ କରନ୍ତି ଏବଂ ଅନୀତିପରାୟଣ ରାଜା ଏହାର ବିପରୀତ ଫଳ ଭୋଗ କରିବାକୁ ବାଧ୍ୟ ହୁଅନ୍ତି । ଅନୁଦ୍ୟୋଗୀ ରାଜା ପାଇଥିବା ଓ ପାଇବାକୁ ଥିବା ସମସ୍ତ ବିଭବ ହରାଇ ବସନ୍ତି; ଉଦ୍ୟୋଗୀ ରାଜା ନୀତିପୂର୍ବକ ରାଜ୍ୟପାଳନ କଲେ ତାଙ୍କୁ ସମସ୍ତପ୍ରକାର ଫଳ, ଧନ ତଥା ଐଶ୍ୱର୍ଯ୍ୟ ଆଶାତୀତଭାବେ ପ୍ରାପ୍ତ ହୋଇଥାଏ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ଏକୋନବିଂଶୋଽଧ୍ୟାୟଃ—ରାଜପ୍ରଣିଧିଃ ।

# ବିଂଶୋଽଧ୍ୟାୟଃ

## ସପ୍ତଦଶ ପ୍ରକରଣମ୍—ନିଶାନ୍ତପ୍ରଣିଧିଃ

DUTY TOWARDS THE HAREM

( ରାଜଭବନ ସମ୍ବନ୍ଧୀୟ ଅନୁଷ୍ଠାନକୁ 'ନିଶାନ୍ତପ୍ରଣିଧି' କହନ୍ତି । ଏ ଅଧ୍ୟାୟରେ ଉକ୍ତ ବିଷୟର ଆଲୋଚନା କରାଯିବ । )

**(୧) ବାସ୍ତୁକପ୍ରଶସ୍ତେ ଦେଶେ ସପ୍ରାକାରପରିଖାଦ୍ୱାରମନେକକକ୍ଷ୍ୟାପରିଗତମନ୍ତଃପୁରଂ କାରୟେତ୍ । କୋଷଗୃହବିଧାନେନ ବା ମଧ୍ୟେ ବାସଗୃହଂ, ଗୂଢ଼ଭିତ୍ତିସଂଚାରଂ ମୋହନଗୃହଂ ତନ୍ମଧ୍ୟେ ବା ବାସଗୃହଂ, ଭୂମିଗୃହଂ ବା ଆସନ୍ନକାଷ୍ଠଚୈତ୍ୟଦେବତାପିଧାନଦ୍ୱାର-**

---

(୧) ରାଜା, ଗୃହନିର୍ମାଣବିଦ୍ୟାବିଶାରଦମାନଙ୍କଦ୍ୱାରା ପ୍ରଶଂସିତ ସ୍ଥାନରେ ପାଚେରି, ଜଳୀ, ଅନେକ ଦ୍ୱାର ଓ ବଖରାଯୁକ୍ତ ଅନ୍ତଃପୁର ନିର୍ମାଣ କରାଇବେ ଓ ସନ୍ନିଧାତୃନିଚୟ କର୍ମପ୍ରକରଣୋକ୍ତ କୋଷଗୃହ-ନିର୍ମାଣବିଧାନାନୁସାରେ ଅନ୍ତଃପୁର ମଧ୍ୟରେ ବାସଗୃହ ନିର୍ମାଣ କରାଇବେ । ଅଥବା ପାଚେରି ଭିତରେ ଗୁପ୍ତଭାବରେ ଯାତାୟାତ କରିବା ସକାଶେ ରାସ୍ତା ଥିବା (ଯେଉଁ ରାସ୍ତାକୁ ପରିଚିତ ବ୍ୟକ୍ତି ଭିନ୍ନ ଅନ୍ୟ କେହି ଜାଣି ପାରୁ ନଥିବେ) ବୃତ୍ତାକାର ଓ ଅପରିଚିତ ଲୋକଙ୍କ ମାର୍ଗ ଭ୍ରମଜନକ 'ମୋହନ' ନାମକ ଗୃହ ନିର୍ମାଣ କରାଇ ତନ୍ମଧ୍ୟରେ ବାସଗୃହ ନିର୍ମାଣ କରାଇବେ । ଅଥବା ଭୂମି ଭିତରେ ଏପରି ଏକ ଗୁପ୍ତଗୃହ ନିର୍ମାଣ କରାଇବେ ଯାହାର କି ଯାତାୟାତ ପଥ, ନିକଟବର୍ତ୍ତୀ କୌଣସି ଦେବମନ୍ଦିରର ଦୁର୍ଗାପ୍ରଭୃତି ଦେବତାମୂର୍ତ୍ତିପରି ଦେଖାଯାଉଥିବା ଲୌହ କିମ୍ବା କାଷ୍ଠନିର୍ମିତ କବାଟରେ ଆବୃତ ହୋଇଥିବ । ଅଧିକନ୍ତୁ ଏହି ଭୂମିଗୃହରେ ପ୍ରବେଶ କରିବାପାଇଁ ଅନେକଗୁଡ଼ିଏ ସୁଡ଼ଙ୍ଗ ମଧ୍ୟ ରଖାଯାଇଥିବ । ଏ ଗୃହର ଉପର ମହଲର ପାବଚ୍ଛଗୁଡ଼ିକ ଏପରି ବାଡ଼ଭିତରେ ନିର୍ମାଣ କରିବାକୁ ହେବ ଯେପରି କି ସାଧାରଣ ବ୍ୟକ୍ତି ତାହା ଦେଖିବାକୁ ସୁବିଧା ପାଇବନାହିଁ । ଅଥବା ଏଥିସକାଶେ ଏହି ଗୃହର କୌଣସି ଏକ ସ୍ତମ୍ଭରେ, ଗୁପ୍ତଭାବେ ଥିବା ବିବର ଭିତରେ ଯାତାୟାତ ପଥ ନିର୍ମାଣ କରିବାକୁ ହେବ । ବିପତ୍ତିରୁ

ମନେକସ୍ତୁ ରୁଂଗାସଂଗରମ୍ । ପ୍ରାସାଦଂ ବା ଗୂଢଭିତ୍ତିସୋପାନଂ, ସୁଷିରସ୍ତମ୍ଭପ୍ରବେଶାପସାରଂ ବା । ବାସଗୃହଂ ଯନ୍ତ୍ରବନ୍ଧତଳାବପାତଂ କାରୟେତ୍—ଆପତ୍ ପ୍ରତୀକାରାର୍ଥମ୍ । ଆପଦ୍ଧ ବା କାରୟେତ୍ । ଅତୋଽନ୍ୟଥା ବା ବିକଳ୍ପୟେତ୍ ସହାଧ୍ୟାୟିଭୟାତ୍ । (୨) ମାନୁଷେଣାଗ୍ନିନା ତ୍ରିରପସବ୍ୟଂ ପରିଗତମନ୍ତଃପୁରମଗ୍ନିରନ୍ୟୋନ ଦହତି, ନ ଚାସ୍ମିନ୍ନନ୍ୟୋଽଗ୍ନିର୍ଜ୍ୱଳତି, ବୈଦ୍ୟୁତେନ ଭସ୍ମନା ମୃତ୍ସଂଯୁକ୍ତେନ କରକବାରଣା ବଲିପ୍ତଂ ଚ । (୩) ଜୀବନ୍ତୀଶ୍ୱେତାମୁଷ୍କକପୁଷ୍ପବନ୍ଦାକାଭିରକ୍ଷୀବେ

---

ରକ୍ଷାପାଇବା ପାଇଁ ବାସଗୃହ ଏପରି ଏକ ଯନ୍ତ୍ରଉପରେ ନିର୍ମାଣ କରିବାକୁ ହେବ, ଯେପରି କି ଦରକାରବେଳେ ଯନ୍ତ୍ରଚାଳନା ଫଳରେ ବାସଗୃହଟି ପାତାଳରେ ପ୍ରବେଶକରି ଅଦୃଶ୍ୟ ହୋଇପାରୁଥିବ । ଯଦି ବାସଗୃହ ଏପରି ଆଗରୁ ପ୍ରସ୍ତୁତ କରାଯାଇ ନଥାଏ, ତେବେ ବିପତ୍ତିବେଳ ଉପସ୍ଥିତ ହେଲେ ଏହିପରି ବ୍ୟବସ୍ଥା କରିବାକୁ ହେବ । ଯେବେ ଶତ୍ରୁରାଜା ଏହି ଗୁପ୍ତଗୃହର ନିର୍ମାଣକୌଶଳ ଜାଣିଥିବାର ସନ୍ଦେହ ହୁଏ, ତେବେ ଉକ୍ତ ବାସଗୃହ-ନିର୍ମାଣପ୍ରଣାଳୀକୁ ସଦ୍ୟ ପରିବର୍ତ୍ତିତ କରି ଅନ୍ୟପ୍ରକାରର ଗୁପ୍ତଗୃହ ନିର୍ମାଣ କରିବାପାଇଁ ମଧ୍ୟ ବ୍ୟବସ୍ଥା କରିବେ । (୨) ବଜ୍ରଦ୍ୱାରା ନିହତ କିମ୍ବା ଶୂଳଦ୍ୱାରା ମାରିତ ମନୁଷ୍ୟର ଅସ୍ଥିରେ କଲ୍ମାଷବେଣୁର (ଚିତା ବାଉଁଶର) ଘର୍ଷଣରୁ ବାହାରିବା ଅଗ୍ନି ଧାରଣ କରି ଅଥର୍ବବେଦୋକ୍ତ ଅଗ୍ନିସ୍ତମ୍ଭକ ମନ୍ତ୍ରପାଠପୂର୍ବକ ରାଜଭବନକୁ ବାମଦିଗରୁ ଆରମ୍ଭ କରି (ବାମାବର୍ତ୍ତିରେ) ତିନିଥର ବୁଲିଲେ ଶତ୍ରୁକୃତ ଅଗ୍ନିସଂଯୋଗଦ୍ୱାରା ଅନ୍ତଃପୁର ଦଗ୍ଧ ହୁଏନାହିଁ । ବଜ୍ରଦ୍ୱାରା ଜଳିଯାଇଥିବା ଗଛର ଭସ୍ମ, କରକା ଜଳ ଓ ଉଇହୁଙ୍କାର ମାଟି ଏକତ୍ର ମିଶାଇ ଅନ୍ତଃପୁରରେ ଲେପନ କଲେ ଅନ୍ୟ ଅଗ୍ନିଦ୍ୱାରା ଅନ୍ତଃପୁର ଦଗ୍ଧ ହୁଏନାହିଁ । (୩) ଜୀବନ୍ତୀ (ଗୁଡ଼ୁଚୀ ବା ଗୁଳୁଚି, ଅନ୍ୟମତରେ ଜୀବନ୍ତୀ ଶାକ), ଶ୍ୱେତା (ଶଂଖିନୀ), ମୁଷ୍କକ (ଲୋଧ୍ରଭେଦ) ଓ .

---

(୨)—କରକବାରଣା—ମତାନ୍ତରେ କନକବାରଣୀ ଅର୍ଥାତ୍ ଦୁଦୁରଗଛର ସ୍ୱରସଦ୍ୱାରା ।

(୩)—ଜୀବନ୍ତୀ = ଗୁଡ଼ୁଚୀ—**Fæderia Fœtida.**

ଶ୍ୱେତା = ଶଂଖିନୀ—**Aconitum Ferox.**

ବନ୍ଦାକ = ମଦାଙ୍ଗ—**Epidendrum Tesselatum.**

ଅଶ୍ୱତ୍ଥ—**Ficus Religiosa.**

ଜାତସ୍ୟାଶ୍ୱତ୍ଥସ୍ୟ ପ୍ରତାନେନ ବା ଗୁପ୍ତଂ ସର୍ପା ବିଷାଣି ବା ନ ପ୍ରସହନ୍ତେ । ମାର୍ଜାରମୟୂରନକୁଳ ପୃଷତୋତ୍ସର୍ଗଃ ସର୍ପାନ୍ ଭକ୍ଷୟତି । ଶୁକଃ ଶାରିକା ଭୃଙ୍ଗରାଜୋ ବା ସର୍ପବିଷଶଂକାୟାଂ କ୍ରୋଶତି । କ୍ରୌଂଚୋ ବିଷାଭ୍ୟାଶେ ମାଦ୍ୟତି, ଗ୍ଲାୟତି ଜୀବଂଜୀବକଃ, ମ୍ରିୟତେ ମତ୍ତକୋକିଳଃ, ଚକୋରସ୍ୟାକ୍ଷିଣୀ ବିରଜ୍ୟେତେ । ଇତ୍ୟେବମ୍ ଅଗ୍ନିବିଷସର୍ପେଭ୍ୟଃ ପ୍ରତିକୁର୍ବୀତ । (୪) ପୃଷ୍ଠତଃ କକ୍ଷ୍ୟାବିଭାଗେ ସ୍ତ୍ରୀନିବେଶୋ ଗର୍ଭବ୍ୟାଧିବୈଦ୍ୟପ୍ରତ୍ୟାଖ୍ୟାତସଂସ୍ଥାବୃକ୍ଷୋଦକ-

---

ପୁଷ୍ପବନ୍ଦାକ (ଜଳଅର ଗଛଉପରେ ଉଠିଥିବା ମଦାଙ୍ଗ)ର ମୂଳ ଓ ପତ୍ରରେ ଗୁନ୍ଥା ହୋଇଥିବା ମାଳାଦ୍ୱାରା ଅନ୍ତଃପୁରକୁ ବେଷ୍ଟିତ କଲେ ଅଥବା ସଜନାଗଛରେ ଉଠିଥିବା ଅଶ୍ୱତ୍ଥ ବୃକ୍ଷର ପତ୍ରରେ ନିର୍ମିତ ହୋଇଥିବା ମାଳାକୁ ଅନ୍ତଃପୁରରେ ବେଷ୍ଟିତ କଲେ, ଅନ୍ତଃପୁରକୁ ସର୍ପାଦି ଜଙ୍ଗମ ବିଷ ଓ ମହୁରାପ୍ରଭୃତି ସ୍ଥାବର ବିଷର ବାଧା ରହେନାହିଁ । ମାର୍ଜାର (ବିରାଡ଼ି), ମୟୂର, ନେଉଳ ଓ ବିନ୍ଦୁମୃଗମାନଙ୍କୁ ଅବାଧରେ ଗୃହମଧ୍ୟରେ ପ୍ରବେଶ କରାଇଲେ ଏମାନେ ଗୃହମଧ୍ୟରେ ପ୍ରବେଶ କରିଥିବା ସର୍ପକୁ ଭକ୍ଷଣ କରନ୍ତି; ଶୁଆ, ଶାରି ଓ ଭୃଙ୍ଗରାଜ ପକ୍ଷୀମାନଙ୍କୁ ସର୍ପବିଷର ଅଶଂକା ହେଲେ (ଅର୍ଥାତ୍ ସର୍ପକୁ ଦେଖିବାମାତ୍ରେ କିମ୍ବା ବିଷମିଶ୍ରିତ ଖାଦ୍ୟପଦାର୍ଥ ଦେଖିବାମାତ୍ରେ) ଉଚ୍ଚସ୍ୱରରେ କ୍ରନ୍ଦନ କରନ୍ତି; କ୍ରୌଞ୍ଚପକ୍ଷୀ (ବକବିଶେଷ) ସର୍ପ କିମ୍ବା ବିଷମିଶ୍ରିତ ଖାଦ୍ୟପଦାର୍ଥ ଦେଖିବାମାତ୍ରେ ବିହ୍ୱଳିତ ହୋଇଯାଏ; ଜୀବଂଜୀବକ ପକ୍ଷୀ ସର୍ପ ଓ ବିଷମିଶ୍ରିତ ପଦାର୍ଥକୁ ଦେଖିଲେ କ୍ଷୀଣହର୍ଷ (ବିଷଣ୍ଣ) ହୋଇଯାଏ, ମତ୍ତକୋକିଳ ମରିଯାଏ ଓ ଚକୋର ପକ୍ଷୀର ଚକ୍ଷୁ ବିବର୍ଣ୍ଣ ହୋଇଯାଏ । ଏଣୁ ରାଜା ଉପର୍ଯ୍ୟୁକ୍ତ ଉପାୟଗୁଡ଼ିକ ସାହାଯ୍ୟରେ ବିଷ, ଅଗ୍ନି ଓ ସର୍ପଭୟର ପ୍ରତିକାର କରିବେ । (୪) ରାଜା ରାଜଗୃହର ପୃଷ୍ଠଭାଗରେ ରାଣୀମହଲ ନିର୍ମାଣ କରାଇବେ । ତା'ପଛରେ ଗର୍ଭିଣୀ ସ୍ତ୍ରୀମାନଙ୍କ ବିଶ୍ରାମଗୃହ, ତା'ପଛରେ ଚିକିତ୍ସାଗୃହ, ତା'ପଛରେ ବୈଦ୍ୟ

---

(୩)—ଭୃଙ୍ଗରାଜ = **Malabar bird.**

କ୍ରୌଂଚ = **Heron.**

ଜୀବଂଜୀବକ ଚକୋର = **Pheasant.**

ସ୍ଥାନଂ ଚ । ବହିଃ କନ୍ୟାକୁମାରପୁରଂ । * ପୁରସ୍ତାଦଲଂକାରଭୂମିଃ ମନ୍ତ୍ରଭୂମିରୁପସ୍ଥାନଂ କୁମାରାଧ୍ୟକ୍ଷସ୍ଥାନଂ ଚ । କକ୍ଷାନ୍ତରେଷ୍ୱନ୍ତର୍ବଂଶିକ-ସୈନ୍ୟଂ ତିଷ୍ଠେତ୍ । (୫) ଅନ୍ତର୍ଗୃହଗତଃ ସ୍ଥବିରସ୍ତ୍ରୀପରିଶୁଦ୍ଧାଂ ଦେବୀଂ ପଶ୍ୟେତ୍ । ନ କାଂଚିଦଭିଗଚ୍ଛେତ୍ । ଦେବୀଗୃହେ ଲୀନୋ ହି ଭ୍ରାତା ଭଦ୍ରସେନଂ ଜଘାନ, ମାତୁଃ ଶଯ୍ୟାନ୍ତର୍ଗତଶ୍ଚ ପୁତ୍ରଃ କାରୂଶମ୍ ।

---

ଘୋଡ଼ାଇଦେଇଥିବା ଅଟାଳିକାସଦୃଶ ଅର୍ଥାତ୍ କୁଷ୍ଠ ଯକ୍ଷ୍ମା ପ୍ରଭୃତି କୁତ୍ସିତ ଓ ମାରାତ୍ମକ ରୋଗିଣୀମାନଙ୍କ ରହିବା ଗୃହ, ତା'ପଛରେ ବା ଉକ୍ତଗୃହମାନଙ୍କର ଚତୁର୍ଦ୍ଦିଗରେ ମାଣ୍ଡଣାରେ ରଖାଯାଇଥିବା ପ୍ରସିଦ୍ଧ ଔଷଧିବୃକ୍ଷ ସ୍ଥାପନ, ବଗିଚା ଓ ଜଳାଶୟ ନିର୍ମ୍ମାଣର ବ୍ୟବସ୍ଥା କରାଇବେ । ରାଜଭବନର ବହିର୍ଦ୍ଦେଶରେ ରାଜକନ୍ୟା ଓ ରାଜକୁମାରମାନଙ୍କ ବାସଭବନ ନିର୍ମ୍ମାଣ କରାଇବେ । ଏହି ରାଜଭବନର ସମ୍ମୁଖରେ ସୁନ୍ଦର ଦୂର୍ବାଦଳ ଓ ବିବିଧ ଫଳପୁଷ୍ପଯୁକ୍ତ ଗୁଳ୍ମଲତାଦିରେ ଶୋଭିତ ଅଲଂକାରଭୂମି, ମନ୍ତ୍ରଣାଳୟ, ଦରବାର, ରାଜକୁମାର ଓ ବିଭିନ୍ନବିଭାଗର ଅଧ୍ୟକ୍ଷମାନଙ୍କ କାର୍ଯ୍ୟାଳୟ (ଅଫିସ) ରଖାଇବେ । ଏହି ଗୃହମାନଙ୍କ ମଧ୍ୟରେ ଥିବା ଖାଲିଜାଗାରେ ଅନ୍ତଃପୁର-ରକ୍ଷକ ସଶସ୍ତ୍ର ସୈନ୍ୟମାନେ ଅବସ୍ଥାନ କରିବେ । (୫) ରାଜା ନିଜ ବାସଭବନରେ ଅବସ୍ଥାନ କରି ବୃଦ୍ଧାପରିଚାରିକାଦ୍ୱାରା ପରିଶୁଦ୍ଧା (ଅର୍ଥାତ୍ ରାଣୀ ଗୁପ୍ତରେ ରାଜାଙ୍କର ଅନିଷ୍ଟ କରିବା ସକାଶେ ବିଷଶସ୍ତ୍ରାଦି ଧରିଛନ୍ତି କି ନାହିଁ ବୃଦ୍ଧାପରିଚାରିକାଦ୍ୱାରା ସେ ବିଷୟ ତଦନ୍ତ କରାଇ) ରାଣୀଙ୍କୁ ଡକାଇ ସମ୍ଭାଷଣ କରିବେ । ଏପରି ପରିଶୁଦ୍ଧା ନ ହୋଇଥିବା କୌଣସି ରାଣୀଙ୍କ ସହିତ ଆଳାପ କରିବାପାଇଁ ରାଜା ତାଙ୍କ ବାସଭବନକୁ ଯିବେ ନାହିଁ । ରାଣୀଙ୍କ ଗୃହକୁ ଗମନ କରି ସମ୍ଭାଷଣ କରିବା ଫଳରେ ଅତୀତରେ ରାଜାମାନଙ୍କୁ ଯେଉଁ ବିପତ୍ତି ଘଟିଥିଲା ତାର ଦୃଷ୍ଟାନ୍ତ ଏଠାରେ ଦିଆଯାଉଛି । ଇତିହାସରେ ବର୍ଣ୍ଣିତ ହୋଇଅଛି—କଳିଙ୍ଗରାଜ୍ୟାଧୀଶ୍ୱର ଭଦ୍ରସେନ ରାଜାଙ୍କ ଭାଇ ବୀରସେନ ରାଜମହିଷୀଙ୍କୁ ହାତ କରି ରାଜ୍ୟଲାଭ କରିବା କାମନାରେ ରାଣୀଙ୍କ ଗୃହରେ ଲୁଚିରହି ରାଜା ରାଣୀଙ୍କ ଭବନରେ ଉପସ୍ଥିତ ହେବାବେଳେ ତାଙ୍କୁ ହତ୍ୟା କରିଥିଲେ ।

---

* ଅଲଂକାରଭୂମି = Toilet ground.

ଲଜାନ୍ ମଧୁନେତି ବିଷେଣ ପର୍ଯ୍ୟସ୍ୟ ଦେବୀ କାଶିରାଜଂ, ✝ ବିଷଦିଗ୍ଧେନ ନୂପୁରେଣ ବୈରନ୍ତ୍ୟଂ, ମେଖଳାମଣିନା ସୌବୀରଂ, ଜାଲୂଥମାଦର୍ଶେନ, ବେଣ୍ୟାଂ ଗୂଢ଼ଂଶସ୍ତ୍ରଂକୃତ୍ୱା ଦେବୀ ବିଡ଼ୂରଥଂ ଜଘାନ । ତସ୍ମାଦେତାନ୍ୟାସ୍ପଦାନି ପରିହରେତ୍ । (୭) ମୁଣ୍ଡଜଟିଳକୁହକ-ପ୍ରତିସଂସର୍ଗଂ ବାହ୍ୟାଭିଶ୍ଚ ଦାସୀଭିଃ ପ୍ରତିଷେଧୟେତ୍ । ନ ଚୈନାଃ କୁଲ୍ୟାଃ ପଶ୍ୟେୟୁରନ୍ୟତ୍ର ଗର୍ଭବ୍ୟାଧିସଂସ୍ଥାଭ୍ୟଃ । ରୂପାଜୀବାଃ

---

କରୂଶଦେଶ ରାଜାଙ୍କ ପୁତ୍ର ନିଜ ମାତାଙ୍କ ପଲଙ୍କତଳେ ଲୁଚିରହି ନିଜ ପିତାଙ୍କୁ ହତ୍ୟା କରିଥିଲେ । କାଶିରାଜ ବୃଦ୍ଧାସ୍ତ୍ରୀଦ୍ୱାରା ଅପରିଶୋଧିତା ରାଣୀଙ୍କଠାରୁ ମଧୁମିଶ୍ରିତ ଲଜା (ଲିଆ) ନାମରେ ବିଷମିଶ୍ରିତ ଲଜା ଭକ୍ଷଣ କରି ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ । ଏହି କାଶିରାଜା ରାଣୀଙ୍କ କୌଣସି ବନ୍ଧୁଙ୍କୁ ଯୁଦ୍ଧରେ ପରାଜିତ କରିବାହେତୁ ଏହି ପରାଜିତ ବନ୍ଧୁଙ୍କ ନିର୍ଦ୍ଦେଶକ୍ରମେ ରାଣୀ ଏପରି କୁକର୍ମ କରିଥିଲେ । ବୈରନ୍ତ୍ୟ ନାମକ ବନବାସୀ ରାଜାଙ୍କ ରାଣୀ ସପତ୍ନୀମାନଙ୍କ ମିଥ୍ୟା ପ୍ରଶଂସା ଶୁଣିବାହେତୁ କ୍ରୋଧର ବଶବର୍ତ୍ତୀ ହୋଇ ସ୍ୱର୍ଣ୍ଣବେଧୀ ବିଷଲିପ୍ତ ନୂପୁର ପ୍ରହାରଦ୍ୱାରା କ୍ରୀଡ଼ା ସମୟରେ ସ୍ୱାମୀଙ୍କୁ ହତ୍ୟା କରିଥିଲେ । ସୌବୀର ଦେଶ ରାଜା ପରନ୍ତପଙ୍କ ରାଣୀ ରାଜାଙ୍କ କଟୁ କଥାରେ ଉତ୍ତ୍ୟକ୍ତ ହୋଇ ବିଷଲିପ୍ତ ମେଖଳାମଣିଦ୍ୱାରା (ଅଣ୍ଟାସୂତାରେ ଥିବା ମଣିଦ୍ୱାରା) ରାଜାଙ୍କୁ ହତ୍ୟା କରିଥିଲେ । ଅଯୋଧ୍ୟା ରାଜା ଜାଲୂଥ ଅନ୍ୟ ସ୍ତ୍ରୀ ସହବାସ କରିବା ଯୋଗୁଁ ଈର୍ଷାପରାୟଣା ରାଣୀ ତାଙ୍କୁ ଉଗ୍ର-ବିଷଲିପ୍ତ ଦର୍ପଣ ଦେଖାଇ ହତ୍ୟା କରିଥିଲେ ଏବଂ ବିଡ଼ୂରଥ ରାଜାଙ୍କ ରାଣୀ ନିଜ ବେଣୀରେ ଗୁପ୍ତ ଅସ୍ତ୍ର ରଖି ସ୍ୱାମୀଙ୍କୁ ତଦ୍ଦ୍ୱାରା ହତ୍ୟା କରିଥିଲେ । ଏଣୁ ରାଜା ସତର୍କତା ସହିତ ଏହି ସବୁ ବିପତ୍ତିମାନଙ୍କର କାରଣକୁ ପରିତ୍ୟାଗ କରିବେ । (୭) ରାଜା, ବୌଦ୍ଧଭିକ୍ଷୁ ପ୍ରଭୃତି ମୁଣ୍ଡିତକେଶ (ଲଣ୍ଡା) ସନ୍ନ୍ୟାସୀ, ଶୈବମତାବଲମ୍ବୀ ଜଟାଧାରୀ ଓ ବଞ୍ଚକମାନଙ୍କ ସହିତ ରାଣୀଙ୍କ ସମ୍ବନ୍ଧ ରଖାଇବେ ନାହିଁ ଏବଂ ବାହାରର ଦାସୀମାନେ ମଧ୍ୟ ରାଜମହିଷୀଙ୍କ ସହିତ ମିଶିବାପାଇଁ ସୁଯୋଗ ଦେବେ ନାହିଁ । ଏପରି କି 'କୁଲ୍ୟ' ଅର୍ଥାତ୍ ରାଣୀଙ୍କର ବାନ୍ଧବମାନେ ମଧ୍ୟ ରାଣୀଙ୍କୁ ଗର୍ଭାବସ୍ଥା ଓ ବ୍ୟାଧିତାବସ୍ଥା ବ୍ୟତୀତ ଅନ୍ୟ

---

✝ ସ୍ୱର୍ଣ୍ଣବେଧୀଗରଲୋପଲିପ୍ତେନ = ସ୍ୱର୍ଣ୍ଣମାନେ ସର୍ବାଙ୍ଗ ସଞ୍ଚାର କରିବା ବିଷଦ୍ୱାରା ଲିପ୍ତ ।

ସ୍ନାନପ୍ରଘର୍ଷଶୁଦ୍ଧଶରୀରାଃ ପରିବର୍ତ୍ତିତବସ୍ତ୍ରାଳଂକାରାଃ ପଶ୍ୟେୟୁଃ । ଆଶୀତିକାଃ ପୁରୁଷାଃ ପଞ୍ଚାଶତ୍କାଃ ସ୍ତ୍ରିୟୋ ବା ମାତାପିତୃବ୍ୟଂଜନାଃ ସ୍ଥବିରବର୍ଷବରାଭ୍ୟାଗାରିକାଶ୍ଚାବରୋଧାନାଂ ଶୌଚାଶୌଚଂ ବିଦ୍ୟୁଃ ସ୍ଥାପୟେୟୁଶ୍ଚ ସ୍ୱାମିହିତେ ।

(୭) ସ୍ୱଭୂମୌ ଚ ବସେତ୍ସର୍ବଃ ପରଭୂମୌ ନ ସଂଚରେତ୍ ।
ନ ଚ ବାହ୍ୟେନ ସଂସର୍ଗଂ କଶ୍ଚିଦାଭ୍ୟନ୍ତରୋ ବ୍ରଜେତ୍ ॥

(୮) ସର୍ବଂ ଚାବେକ୍ଷିତଂ ଦ୍ରବ୍ୟଂ ନିବଦ୍ଧାଗମନିର୍ଗମମ୍
ନିର୍ଗଚ୍ଛେଦଧିଗଚ୍ଛେଦ୍ ବା ମୁଦ୍ରାସଂକ୍ରାନ୍ତଭୂମିକମ୍ ।

—o—

କୌଣସି ସମୟରେ ଦେଖା କରିପାରିବେ ନାହିଁ । ରୂପାଜୀବା ଅର୍ଥାତ୍ ବେଶ୍ୟାମାନେ ସ୍ନାନମାର୍ଜନଦ୍ୱାରା ପରିଶୁଦ୍ଧା ଓ ନୂତନବସ୍ତ୍ର ଅଳଙ୍କାର ବିଭୂଷିତା ହୋଇ ରାଜାଙ୍କ ପରିଚର୍ଯ୍ୟା ସକାଶେ ଦର୍ଶନ କରିବେ । ମାତୃପିତୃ ସ୍ଥାନୀୟ ଅଶୀ ବର୍ଷର ବୃଦ୍ଧପୁରୁଷ ଓ ପଞ୍ଚାଶବର୍ଷର ବୃଦ୍ଧା ସ୍ତ୍ରୀ ମାତା ପିତା ପରି ରାଜରାଣୀମାନଙ୍କର ପବିତ୍ରତା ରକ୍ଷା କରିବେ; ତଥା ବୃଦ୍ଧ, ନପୁଂସକ ଓ କେବଳ ରାଜାଳୟରେ ପରିପାଳିତ ରାଜଗୃହ-ବ୍ୟବସ୍ଥାପକ କୁବ୍ଜ ବାମନ ପ୍ରଭୃତି ମଧ୍ୟ ରାଣୀମହଲର ରକ୍ଷାରେ ତତ୍ପର ହୋଇ ରାଣୀମାନଙ୍କ ସ୍ୱାମୀଙ୍କ ହିତସାଧନ ସକାଶେ ପ୍ରବର୍ତ୍ତିତ ହୋଇଥିବେ । (୭) ପୂର୍ବୋକ୍ତ ବ୍ୟକ୍ତିମାନେ ରାଣୀଙ୍କ ଅନ୍ତଃପୁରରେ ନିଜନିଜର ସୀମା ଭିତରେ ଅବସ୍ଥାନ କରିବେ । କେହି କାହାର ସ୍ଥାନକୁ ଯିବେ ନାହିଁ; ଭିତରର ଲୋକମାନେ ବାହାର ଲୋକମାନଙ୍କ ସହିତ ମଧ୍ୟ କଦାପି ସମ୍ପର୍କ ରଖିବେ ନାହିଁ । (୮) ଅନ୍ତଃପୁରରୁ ବାହାରକୁ ଓ ବାହାରୁ ଅନ୍ତଃପୁରକୁ ଆସୁଥିବା ପଦାର୍ଥମାନଙ୍କୁ ଉତ୍ତମଭାବେ ପରୀକ୍ଷା କରି ମୋହର (Seal) ଦେବା ପରେ ଉକ୍ତ ପଦାର୍ଥମାନଙ୍କୁ ଭିତରବାହାରକୁ ନିଆଆଣିର ବ୍ୟବସ୍ଥା କରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ବିଂଶୋଽଧ୍ୟାୟଃ—ନିଶାନ୍ତପ୍ରଣିଧିଃ ।

## ଏକବିଂଶୋଽଧ୍ୟାୟଃ

## ଅଷ୍ଟାଦଶ ପ୍ରକରଣମ୍—ଆତ୍ମରକ୍ଷିତକମ୍

PERSONAL SAFETY

( ରାଜାଙ୍କ ଆତ୍ମରକ୍ଷାର ବ୍ୟବସ୍ଥା )

(୧) ଶୟନାଦୁତ୍ଥିତଃ ସ୍ତ୍ରୀଗଣୈର୍ଧନ୍ୱିଭିଃ ପରିଗୃହ୍ୟେତ, ଦ୍ୱିତୀୟସ୍ୟାଂ କକ୍ଷାୟାଂ କଞ୍ଚୁକୋଷ୍ଣୀଷିଭିର୍ବର୍ଷବରାଭ୍ୟାଗାରିକୈଃ, ତୃତୀୟସ୍ୟାଂ କୁବ୍ଜବାମନକିରାତୈଃ, ଚତୁର୍ଥ୍ୟାଂ ମନ୍ତ୍ରିଭିଃ ସମ୍ବନ୍ଧିଭି ର୍ଦୌବାରିକୈଶ୍ଚ ପ୍ରାସପାଣିଭିଃ । (୨) ପିତୃପୈତାମହଂ ମହାସମ୍ବନ୍ଧାନୁବନ୍ଧଂ ଶିକ୍ଷିତମନୁରକ୍ତଂ କୃତକର୍ମାଣଂ ଜନମାସନ୍ନଂ କୁର୍ବୀତ, ନାନ୍ୟତୋଦେଶୀୟମକୃତାର୍ଥମାନଂ ସ୍ୱଦେଶୀୟଂ ବାପ୍ୟପକୃତ୍ୟୋପଗୃହୀତଂ । ଅନ୍ତର୍ବଂଶିକସୈନ୍ୟଂ ରାଜାନମନ୍ତଃପୁରଂ ଚ ରକ୍ଷେତ୍ । (୩) ଗୁପ୍ତେ ଦେଶେ ମାହାନସିକଃ ସର୍ବମାସ୍ୱାଦବାହୁଲ୍ୟେନ କର୍ମ

---

(୧) ରାଜା ଶୟନରୁ ଉଠି ଧନୁର୍ଦ୍ଧାରିଣୀସ୍ତ୍ରୀମାନଙ୍କଦ୍ୱାରା, ଦ୍ୱିତୀୟ କକ୍ଷାରେ (କୋଠରୀରେ) ସାଙ୍ଗ ଓ ପଗଡ଼ିଧାରୀ ନପୁଂସକ ଓ ରାଜଗୃହକାର୍ଯ୍ୟଚିନ୍ତକମାନଙ୍କଦ୍ୱାରା, ତୃତୀୟ କକ୍ଷାରେ କୁବ୍ଜ, ବାମନ ଓ କିରାତମାନଙ୍କଦ୍ୱାରା ଏବଂ ଚତୁର୍ଥ କକ୍ଷାରେ ମନ୍ତ୍ରୀ, ବିଶ୍ୱସ୍ତ ବ୍ୟକ୍ତି ଓ କୁନ୍ତଧାରୀ ଦୌବାରିକ (ଦ୍ୱାରୀ)ମାନଙ୍କଦ୍ୱାରା ପରିବୃତ ହୋଇ ଆତ୍ମରକ୍ଷାପାଇଁ ଯତ୍ନବାନ୍ ହେବେ । (୨) ପିତୃପିତାମହଙ୍କ ସମୟରୁ ଥିବା ନିକଟସମ୍ପର୍କୀୟ ସର୍ବବିଦ୍ୟାବିଶାରଦ ଅନୁରକ୍ତ ଓ ବିଶ୍ୱସ୍ତ ବ୍ୟକ୍ତିମାନଙ୍କୁ ରାଜା ନିଜର ଆତ୍ମରକ୍ଷକଭାବେ ନିଯୁକ୍ତ କରିବେ । ଧନ ସମ୍ମାନଦ୍ୱାରା ସନ୍ତୁଷ୍ଟ ନ ହୋଇଥିବା ବିଦେଶୀବ୍ୟକ୍ତିଙ୍କୁ ଏବଂ ଯେ ପ୍ରଥମେ ଅପକାର କରି ପରେ ଗୃହକର୍ମ ପାଇଛନ୍ତି, ଏପରି ସ୍ୱଦେଶୀ ବ୍ୟକ୍ତିଙ୍କୁ ରାଜା ଆତ୍ମରକ୍ଷକଭାବେ ନିଯୁକ୍ତ କରିବେ ନାହିଁ । ଭିତର ମହଲରେ ନିଯୁକ୍ତ ହୋଇଥିବା ସୈନ୍ୟମାନେ ରାଜାଙ୍କୁ ଏବଂ ଅନ୍ତଃପୁରକୁ ରକ୍ଷା କରିବେ । (୩) ରାଜାଙ୍କ ସୂପକାର ଅତ୍ୟନ୍ତ ସୁରକ୍ଷିତ ଗୁପ୍ତସ୍ଥାନରେ ଅତିଶୟ ସୁସ୍ୱାଦୁ ଖାଦ୍ୟପଦାର୍ଥ ରାଜାଙ୍କ ସକାଶେ ରନ୍ଧନ କରିବେ ଏବଂ

କାରୟେତ୍ । ତଦ୍ ରାଜା ତତୈବ ପ୍ରତଭୁଂଜୀତ ପୂର୍ବମଗ୍ନୟେ ବୟୋଭ୍ୟଶ୍ଚ ବଳଂ କୃତ୍ୱା । (୪) ଅଗ୍ନେର୍ଜ୍ୱାଳାଧୂମନୀଳତା ଶବ୍ଦ-ସ୍ଫୋଟନଂ ଚ ବିଷଯୁକ୍ତସ୍ୟ, ବୟସାଂ ବିପତ୍ତିଶ୍ଚ । ଅନ୍ନସ୍ୟୋଷ୍ମା ମୟୂର ଗ୍ରୀବାଭଃ ଶୈତ୍ୟମାଶୁ କ୍ଳିଷ୍ଟସ୍ୟେବ ବୈବର୍ଣ୍ୟଂ ସୋଦକତ୍ୱମକ୍ଳିନ୍ନତ୍ୱଂ ଚ । ବ୍ୟଞ୍ଜନାନାମାଶୁଶୁଷ୍କତ୍ୱଂ ଚ କ୍ୱାଥଃ ଶ୍ୟାମଫେନପଟଳବିଚ୍ଛିନ୍ନଭାବୋ ଗନ୍ଧସ୍ପର୍ଶରସବଧଶ୍ଚ । ଦ୍ରବେଷୁ ହୀନାତିରିକ୍ତଚ୍ଛାୟାଦର୍ଶନଂ ଫେନପଟଳ-ସୀମନ୍ତୋର୍ଦ୍ଧ୍ୱରାଜୀଦର୍ଶନଂ ଚ । ରସସ୍ୟମଧ୍ୟେ ନୀଳାରାଜୀ, ପୟସସ୍ତାମ୍ରା, ମଦ୍ୟତୋୟୟୋଃ କାଳୀ, ଦଧ୍ନଃ ଶ୍ୟାମା, ମଧୁନଃ ଶ୍ୱେତା ।

---

ରାଜା ଏହି ଅନ୍ନ ଅଗ୍ନିପୂଜା ଓ କାକବଳି ପ୍ରଦାନପୂର୍ବକ ଭୋଜନ କରିବେ । ଏହି ଅଗ୍ନିପୂଜା ଓ କାକବଳିର ଉଦ୍ଦେଶ୍ୟ ହେଉଛିଃ—(୪) ବିଷମିଶ୍ରିତ ଅନ୍ନ ଅଗ୍ନିରେ ନିକ୍ଷେପ କଲେ ସେଥିରୁ ବାହାରିବା ଧୂଆଁ ଓ ତାହାର ଶିଖା ନୀଳବର୍ଣ୍ଣ ଧାରଣ କରେ ଏବଂ ସେଥିରୁ ଚଡଚଡ ଶବ୍ଦ ଜାତ ହୁଏ; ବିଷଯୁକ୍ତ ଅନ୍ନ ଭକ୍ଷଣ କଲେ ବାୟସ ପ୍ରଭୃତି ପକ୍ଷିମାନଙ୍କର ମୃତ୍ୟୁ ହୁଏ; ଏହି ଅନ୍ନର ହାଉ ମୟୂରକଣ୍ଠର ବର୍ଣ୍ଣ ପରି ଦେଖାଯାଏ; ଅନ୍ନ ଶୀଘ୍ର ଶୀତଳ ହୋଇଯାଏ; ହାତରେ ଚକଟା ହୋଇଥିବା ପରି ବିବର୍ଣ୍ଣ ଦେଖାଯାଏ ଓ ଶୀଘ୍ର ପାଣିଫାଟିଲା ପରି ପାଣିଫାଟିଯାଏ; କେତେବେଳେ ମଧ୍ୟ ଭଲଭାବେ ପକ୍ୱ ନହୋଇ କଠିନ ହୋଇଯାଏ । ବିଷମିଶ୍ରିତ ବ୍ୟଞ୍ଜନ ଶୀଘ୍ର ଶୁଷ୍କ ହୋଇଯାଏ; ଏହାକୁ ଅଗ୍ନିରେ ବସାଇଲେ ସେଥିରୁ ଯେଉଁ ଶ୍ୟାମଳବର୍ଣ୍ଣ ଫେନ ବାହାରେ ତାହା ଏହି ବ୍ୟଞ୍ଜନଠାରୁ ପୃଥକ୍ ହୋଇଯାଏ ଏବଂ ଏହାର ଗନ୍ଧ, ସ୍ପର୍ଶ ଓ ରସ ବିନାଶପ୍ରାପ୍ତ ହୁଏ । ତରଳ ଖାଦ୍ୟପଦାର୍ଥ ବିଷମିଶ୍ରିତ ହେଲେ, ସେଥିରେ ମନୁଷ୍ୟର ଛାୟା ଭିନ୍ନ ଭିନ୍ନ ଆକାରରେ ଦେଖାଯାଏ, ଫେନ ଉଠେ, ପାଣି ଭିନ୍ନ ଓ ପଦାର୍ଥ ଭିନ୍ନ ଦେଖାଯାଏ ଏବଂ ତା'ଉପରେ ରେଖାଗୁଡ଼ିକ ସୀମନ୍ତ ଅର୍ଥାତ୍ ସ୍ତ୍ରୀମାନଙ୍କ ମୁଣ୍ଡର ସିନ୍ଥିପରି ଭାଗ ଭାଗ ହୋଇ ପ୍ରକାଶ ପାଏ । ଘୃତ, ତୈଳ ଓ ଗୁଡ଼ ବିଷମିଶ୍ରିତ ହେଲେ ସେଥିମଧ୍ୟରେ ନୀଳବର୍ଣ୍ଣ ଦାଗ, ଦୁଗ୍ଧ ବିଷମିଶ୍ରିତ ହେଲେ ଲୋହିତବର୍ଣ୍ଣ ଦାଗ, ମଦ୍ୟ ଓ ଜଳ ବିଷମିଶ୍ରିତ ହେଲେ କଳାବର୍ଣ୍ଣ ଦାଗ, ଦହି ବିଷମିଶ୍ରିତ ହେଲେ ଶ୍ୟାମଳବର୍ଣ୍ଣ ଦାଗ ଓ ମହୁ ବିଷମିଶ୍ରିତ ହେଲେ ସେଥିରେ ଶ୍ୱେତବର୍ଣ୍ଣ ଦାଗ ଦେଖାଯାଏ । ଆମ୍ବ ତାଳମ୍ବ ପ୍ରଭୃତି ଫଳ ବିଷମିଶ୍ରିତ ହେଲେ ଏହା ଶୀଘ୍ର ପଚି ପୋଚକା ହୋଇଯାଏ

ଦ୍ରବ୍ୟାଣାମାର୍ଦ୍ରାଣାମ୍-ଆଶୁପ୍ରମ୍ଳାନତ୍ୱମୁତ୍ପକ୍ୱସ୍ୱବଃ କ୍ୱାଥନୀଳଶ୍ୟାବତା ଚ । ଶୁଷ୍କାଣାମାଶୁଶାତନଂ ବୈବର୍ଣ୍ୟଂ ଚ । କଠିନାନାଂ ମୃଦୁତ୍ୱଂ ମୃଦୂନାଂ କଠିନତ୍ୱଂ ଚ । ତଦଭ୍ୟାଶେ କ୍ଷୁଦ୍ରସତ୍ତ୍ୱବଧଶ୍ଚ । ଆସ୍ତରଣ-ପ୍ରାବରଣାନାଂ ଶ୍ୟାମମଣ୍ଡଳତା ତନ୍ତୁରୋମପକ୍ଷ୍ମଶାତନଂ ଚ । ଲୋହମଣିମୟାନାଂ ପଙ୍କମଳୋପଦେହତା ସ୍ନେହରାଗଗୌରବ-ପ୍ରଭାବ ବର୍ଣ୍ଣସ୍ପର୍ଶବଧଶ୍ଚ । ଇତି ବିଷଯୁକ୍ତଲିଙ୍ଗାନି । (୫) ବିଷପ୍ରଦସ୍ୟତୁ ଶୁଷ୍କଶ୍ୟାବବକ୍ତ୍ରତା ବାକ୍‌ସଂଗଃ ସ୍ୱେଦୋ ବିଜୃମ୍ଭଣଂ ଚାତିମାତ୍ରଂ ବେପଥୁଃ ପ୍ରସ୍ଖଳନଂ ବାକ୍ୟବିପ୍ରେକ୍ଷଣମାବେଶଃ କର୍ମ୍ମଣି ସ୍ୱଭୂମୌ

---

ଏବଂ ସେଥିରୁ ଦୁର୍ଗନ୍ଧ ବାହାରେ । ଏହାର କ୍ୱାଥ (ସିଝାପାଣି) ନୀଳ ଓ କୃଷ୍ଣପୀତ ମିଶ୍ରିତ ବର୍ଣ୍ଣ ଦେଖାଯାଏ । ଶୁଷ୍କ ପଦାର୍ଥ ବିଷମିଶ୍ରିତ ହେଲେ ତାହା ଚୂର୍ଣ୍ଣୀଭୂତ ଓ ବିବର୍ଣ୍ଣ ହୋଇଯାଏ । କଠିନ ପଦାର୍ଥ ବିଷମିଶ୍ରିତ ହେଲେ ତାହା କୋମଳ ହୋଇଯାଏ ଏବଂ କୋମଳ ପଦାର୍ଥ ବିଷମିଶ୍ରିତ ହେଲେ ତାହା କଠିନ ହୋଇଯାଏ । ଏପରି କି ବିଷମିଶ୍ରିତ ଖାଦ୍ୟପଦାର୍ଥ ନିକଟରେ ଯାଉଥିବା ଜନ୍ତା ପିମ୍ପୁଡ଼ି ଇତ୍ୟାଦି କ୍ଷୁଦ୍ରଜନ୍ତୁମାନଙ୍କର ମଧ୍ୟ ବିଷପ୍ରଭାବରୁ ମୃତ୍ୟୁ ଘଟିଥାଏ । ଶଯ୍ୟା ଆସନ କମ୍ବଳ ପ୍ରଭୃତି, ତୁଳା, ଲୋମ ଓ କୋଷାରୁ ଜାତ ହେବା ସୂତାଦ୍ୱାରା ନିର୍ମିତ ପଦାର୍ଥ ବିଷସଂଯୁକ୍ତ ହେଲେ ତାହା ଶ୍ୟାମବର୍ଣ୍ଣ ମଣ୍ଡଳଯୁକ୍ତ ହୁଏ ଏବଂ ସେଥିରେ ଥିବା ତନ୍ତୁ, ଲୋମ ଓ ଝାଲରଗୁଡ଼ିକ ମିଳାଯାଇ ଝଡ଼ିପଡ଼େ । ସୁବର୍ଣ୍ଣ, ଲୌହ ଓ ମଣିନିର୍ମିତ ପାତ୍ରଗୁଡ଼ିକ ବିଷମିଶ୍ରିତ ହେଲେ ତାହା କର୍ଦ୍ଦମ (ପଙ୍କ, କାଦୁଅ) ଦ୍ୱାରା ଲିପ୍ତ ହେଲପରି ଦେଖାଯାଏ ଏବଂ ଏହି ପଦାର୍ଥମାନଙ୍କର ଚିକ୍କଣତା, ରଙ୍ଗ, ଗୁରୁତ୍ୱ, କାର୍ଯ୍ୟକାରଣୀ ଶକ୍ତି, ବର୍ଣ୍ଣ, କୋମଳ-କଠିନ-ଖର ପ୍ରଭୃତି ସ୍ପର୍ଶ ବିନଷ୍ଟ ହୋଇଯାଏ । ରାଜା ଏହିପରି ଭାବରେ ଅଗ୍ନି-ପୂଜାଦିଦ୍ୱାରା ବିଷଯୁକ୍ତ ପଦାର୍ଥମାନଙ୍କର ଲକ୍ଷଣ ଜାଣିବାକୁ ହେବ । (୫) ଅନ୍ନବ୍ୟଞ୍ଜନାଦିରେ ବିଷଦାନ କରିଥିବା ବ୍ୟକ୍ତିର ମୁଖ ଶୁଷ୍କ ଓ ଶ୍ୟାବ (କଳା ହଳଦିଆ ମିଶ୍ରିତ) ବର୍ଣ୍ଣ ଦେଖାଯାଏ; କଥା ଅଙ୍ଗଥଙ୍ଗ ହୋଇ ବାହାରେ; ଦେହରେ ଝାଳ, ହାଇ ଓ କମ୍ପ ଦେଖାଦିଏ; ଗମନ ବେଳେ ଗତିଭଙ୍ଗ ଓ ସମାନ ସ୍ଥାନରେ ମଧ୍ୟ ପଦସ୍ଖଳନ; ଯେକୌଣସି କଥା ଶୁଣିବାମାତ୍ରେ ଚକିତ ହୋଇ ସେଥିପ୍ରତି କାନ ଡେରିବା, ନିଜକୃ-

ଗ୍ଳାନବସ୍ଥାନମିତ । ତସ୍ମାଦସ୍ୟ ଜାଙ୍ଗଲୀବଦୋ ଭିଷଜଶ୍ଚାସନ୍ନାଃ ସ୍ୟୁଃ । (୭) ଭିଷଗ୍ ଭୈଷଜ୍ୟାଗାରଦାସ୍ୱାଦବଶୁଦ୍ଧମୌଷଧଂ ଗୃହୀତ୍ୱା ପାଚକ-ପେଷକାଭ୍ୟାମାତ୍ମନା ଚ ପ୍ରତସ୍ୱାଦ୍ୟ ରାଜ୍ଞେ ପ୍ରଯଚ୍ଛେତ୍ । ପାନଂ ପାନୀୟଂ ଚୌଷଧେନ ବ୍ୟାଖ୍ୟାତମ୍ । (୭) କଲ୍ପକପ୍ରସାଧକାଃ ସ୍ନାତଶୁଦ୍ଧ-ବସ୍ତ୍ରହସ୍ତାଃ ସମୁଦ୍ରମୁପକରଣମନ୍ତର୍ବଂଶିକହସ୍ତାଦାଦାୟ ପରିଚରେୟୁଃ । ସ୍ନାପକସଂବାହକାସ୍ତରକରଜକମାଳାକାରକର୍ମ ଦାସ୍ୟଃ କୁର୍ୟୁଃ, ତାଭି-ରଧିଷ୍ଠିତା ବା ଶିଳ୍ପିନଃ । ଆତ୍ମଚକ୍ଷୁଷି ନିବେଶ୍ୟ ବସ୍ତ୍ରମାଲ୍ୟଂ ଦଦ୍ୟୁଃ;

---

ମ୍ଳାନତା; ନିଜ ସ୍ଥାନରେ ସ୍ଥିର ହୋଇ ନ ରହିବା; ନିଜର କାର୍ଯ୍ୟ ସ୍ଥିରଭାବେ ନ କରିବା ଇତ୍ୟାଦି ଲକ୍ଷଣ ଦେଖାଯାଏ । ତେଣୁ ରାଜା ଏହି ବିଷଦାତାମାନଙ୍କଠାରୁ ଆତ୍ମରକ୍ଷା କରିବାପାଇଁ ବିଷବୈଦ୍ୟମାନଙ୍କୁ ଓ ଅଭିଜ୍ଞ ଚିକିତ୍ସକମାନଙ୍କୁ ନିକଟରେ ରଖି, ଭକ୍ଷ୍ୟପଦାର୍ଥର ପରୀକ୍ଷା କରାଇ ଭୋଜନ କରିବେ । (୭) ବୈଦ୍ୟ ଔଷଧାଳୟରୁ ଭଲଭାବେ ଚାଖାଯାଇଥିବା ବିଶୁଦ୍ଧ ଔଷଧ ରାଜାଙ୍କ ନିକଟକୁ ଆଣି, ଔଷଧ ପାକ କରିଥିବା ବ୍ୟକ୍ତି, ବଟାବଟି କରିଥିବା ବ୍ୟକ୍ତି ଏବଂ ନିଜେ ବୈଦ୍ୟ ରାଜାଙ୍କ ସମ୍ମୁଖରେ ଉକ୍ତ ଔଷଧ ପ୍ରଥମେ ସେବନ କଲାପରେ ରାଜାଙ୍କୁ ସେବନ ସକାଶେ ପ୍ରଦାନ କରିବେ । ଏପରି ମଦ୍ୟ ଓ ଅନ୍ୟାନ୍ୟ ପାନୀୟ-ମାନଙ୍କୁ ମଧ୍ୟ ନିଜେ ପାନକରିବା ପରେ ରାଜାଙ୍କୁ ପ୍ରଦାନ କରିବାକୁ ହେବ । (୭) ନାପିତ ଓ ବେଶକାରୀ ବ୍ୟକ୍ତିମାନେ ସ୍ନାନ ଓ ବିଶୁଦ୍ଧବସ୍ତ୍ର ପରିଧାନ କରି ହସ୍ତପ୍ରକ୍ଷାଳନ ପୂର୍ବକ ରାଜାଙ୍କ ସ୍ୱଚ୍ଛନ୍ଦ ମୁଦ୍ରାଙ୍କିତ (ସିଲ୍ ଦିଆଯାଇଥିବା) କ୍ଷୌର ଉପକରଣ ଓ ବସ୍ତ୍ରାଭରଣ ପ୍ରଭୃତି ପେଟିକା (କ୍ଷୌରପେଡ଼ି, ଲୁଗାପେଡ଼ି, ଅଳଙ୍କାରପେଡ଼ି) ଅନ୍ତଃପୁରରେ ନିଯୁକ୍ତ ଥିବା ସେବକଙ୍କ ହସ୍ତରୁ ନେଇ ରାଜାଙ୍କ ସେବାରେ ତତ୍ପର ହେବେ । ସ୍ନାନ, ପାଦସଂବାହନ (ଗୋଡ଼ଘଷା), ଶଯ୍ୟାସ୍ତରଣ (ଶେଯପକାଇବା), ବସ୍ତ୍ରପରିଷ୍କରଣ ଓ ମାଳାପ୍ରସ୍ତୁତ ପ୍ରଭୃତି କାର୍ଯ୍ୟ ଅନ୍ତଃପୁରରେ ଥିବା ବିଶ୍ୱସ୍ତ ଦାସୀମାନେ କରିବେ । ଯଦି ଦାସୀମାନେ ଉକ୍ତ କାର୍ଯ୍ୟ କରିବାକୁ ଅକ୍ଷମ ହେବେ, ତେବେ ସେହି ଅଭିଜ୍ଞ ଦାସୀମାନଙ୍କ ତତ୍ତ୍ୱାବଧାନରେ ଥିବା ସ୍ନାପକ, ବେଶକାର ଓ ମାଳାକାରାଦି ଶିଳ୍ପିମାନେ ଏହି କାର୍ଯ୍ୟ ସାଧନ କରିବେ । ରାଜାଙ୍କୁ ଅର୍ପଣ

ସ୍ନାନୀନୁଲେପନପ୍ରଘର୍ଷଚୂର୍ଣ୍ଣବାସସ୍ନାନୀୟାନି ଚ ସ୍ୱବକ୍ଷୋବାହୁଷୁ ଚ। ଏତେନ ପରସ୍ମାଦାଗତକଂ ଚ ବ୍ୟାଖ୍ୟାତମ୍ । (୮) କୁଶୀଲବାଃ ଶସ୍ତ୍ରାଗ୍ନିରସବର୍ଜଂ ନର୍ମୟେୟୁଃ। ଆତୋଦ୍ୟାନି ଚୈଷାମନ୍ତସ୍ତିଷ୍ଠେୟୁଃ, ଅଶ୍ୱରଥଦ୍ୱିପାଲଂକାରଶ୍ଚ । ମୌଳପୁରୁଷାଧିଷ୍ଠିତଂ ଯାନବାହନମାରୋହେତ୍, ନାବଂ ଚାପ୍ତନାବିକାଧିଷ୍ଠିତାମ୍ । ଅନ୍ୟନୌପ୍ରତିବଦ୍ଧାଂ ବାତବେଗବଶାଂ ଚ ନୋପେୟାତ୍ । ଉଦକାନ୍ତେ ସୈନ୍ୟମାସୀତ ।

କରିବା ସକାଶେ ଅଣାଯାଇଥିବା ବସ୍ତ୍ର, ଅଳଂକାର, ମାଲ୍ୟାଦି ସୌଖୀନ ପଦାର୍ଥଗୁଡ଼ିକୁ ଦାସୀମାନେ ପ୍ରଥମେ ନିଜଚକ୍ଷୁରେ ଲଗାଇ ରାଜାଙ୍କୁ ଅର୍ପଣ କରିବେ । ସ୍ନାନୋପଯୋଗୀ ସୁଗନ୍ଧ ଅମଲକୀ ପ୍ରଭୃତି ଦ୍ରବ୍ୟ, ଚନ୍ଦନ, ପଞ୍ଚକଷାୟ, ବସ୍ତ୍ରସୁବାସକ ଚୂର୍ଣ୍ଣ (ଚୂର୍ଣ୍ଣବାସ), ଶିରସୁବାସକ ଚୂର୍ଣ୍ଣ (ସ୍ନାନୀୟ ଚୂର୍ଣ୍ଣ) ଏ ସମସ୍ତ ପଦାର୍ଥ ଦାସୀମାନେ ପ୍ରଥମେ ନିଜ ବାହୁ ଓ ବକ୍ଷରେ ଲଗାଇ ରାଜାଙ୍କ ସମ୍ମୁଖରେ ବିଶୁଦ୍ଧତା ପ୍ରମାଣିତ କରିବା ପରେ (ରାଜାଙ୍କୁ) ଅର୍ପଣ କରିବେ । ଏପରି ବାହାରୁ ଅସିଥିବା ଦ୍ରବ୍ୟମାନଙ୍କୁ ମଧ୍ୟ ପରୀକ୍ଷାକରି ରାଜାଙ୍କୁ ଅର୍ପଣ କରିବାକୁ ହେବ । (୮) ରାଜାଙ୍କ ସମ୍ମୁଖରେ କୁଶୀଲବ ଅର୍ଥାତ୍ ଖେଳ, କସରତ, ସନ୍ତରଣ, ଅଭିନୟକାରୀମାନେ ଶସ୍ତ୍ର, ଅଗ୍ନି ଓ ବିଷବର୍ଜିତ ଅନ୍ୟ ସମସ୍ତପ୍ରକାର ସୌଖୀନ ଉପକରଣଦ୍ୱାରା ଖେଳ କସରତ ପ୍ରଭୃତି ଦେଖାଇବେ । ଏମାନଙ୍କର ବାଦ୍ୟପ୍ରଭୃତି ଉପକରଣ ରାଜଭବନ ମଧ୍ୟରେ ରଖିବାକୁ ହେବ । ଅଶ୍ୱ, ହସ୍ତୀ ଓ ରଥର ଅଳଙ୍କାରଗୁଡ଼ିକ ମଧ୍ୟ ରାଜଭବନ ମଧ୍ୟରେ ରଖିବାକୁ ହେବ । ଏ ସମସ୍ତ ସତର୍କତା କେବଳ ରାଜାଙ୍କୁ ବିଷପ୍ରୟୋଗ ଭୟରୁ ରକ୍ଷାକରିବା ସକାଶେ ଅବଲମ୍ବନ କରାଯାଏ । ରାଜା ହସ୍ତୀ, ଅଶ୍ୱ, ରଥ, ସବାରି ଇତ୍ୟାଦିରେ (ଯାନବାହନରେ) ପ୍ରଥମେ ବିଶ୍ୱାସୀ ଚାଳକ ଆରୋହଣ କଲା ପରେ ନିଜେ ସେଥିରେ ଆରୋହଣ କରିବେ ଏବଂ ନୌକାରେ ଆରୋହଣ କଲାବେଳେ ମଧ୍ୟ ବିଶ୍ୱସ୍ତ ଓ ଦକ୍ଷ ନାବିକର ତତ୍ତ୍ୱାବଧାନରେ ଆରୋହଣ କରିବେ; ଅନ୍ୟ କୌଣସି ନୌକା ସହିତ ବନ୍ଧାହୋଇଥିବା ନୌକା ଏବଂ ବାଆବତାଶୀ ପବନଦ୍ୱାରା ଚାଳିତ

(୮)—ଆତୋଦ୍ୟ—ବୀଣା, ମୃଦଙ୍ଗ, ବଂଶୀ, କରତାଳ—ଏ ସୁରବାଦ୍ୟର ସମଷ୍ଟିକୁ 'ଆତୋଦ୍ୟ' ବା 'Archestra' କହନ୍ତି ।

। ମତ୍ସ୍ୟଗ୍ରାହବିଶୁଦ୍ଧମବଗାହେତ । ବ୍ୟାଳଗ୍ରାହିପରିଶୁଦ୍ଧମୁଦ୍ୟାନଂ ଗଚ୍ଛେତ୍ । ଲୁବ୍ଧକୈଃ ଶ୍ୱଗଣିଭିରପାସ୍ତସ୍ତେନବ୍ୟାଳପରବାଧଭୟଂ ଚଳଲକ୍ଷ ପରିଚୟାର୍ଥଂ ମୃଗାରଣ୍ୟଂ ଗଚ୍ଛେତ୍ । (୯) ଆପ୍ତଶସ୍ତ୍ରଗ୍ରାହାଧିଷ୍ଠିତଃ ସିଦ୍ଧତାପସଂ ପଶ୍ୟେତ୍, ମନ୍ତ୍ରିପରିଷଦା ସାମନ୍ତଦୂତମ୍ । ସନ୍ନଦ୍ଧୋଽଶ୍ୱଂ ହସ୍ତିନଂ ରଥଂ ବାରୁଢ଼ଃ ସନ୍ନଦ୍ଧମନୀକଂ ଗଚ୍ଛେତ୍ । (୧୦) ନିର୍ଯାଣେଽଭିଯାନେ ଚ ରାଜମାର୍ଗମୁଭୟତଃ କୃତାରକ୍ଷଂ ଦଣ୍ଡିଭିରପାସ୍ତଶସ୍ତ୍ରହସ୍ତ

---

ଓ ନାବିକର ଅନାୟତ୍ତ ନୌକାରେ କଦାପି ଆରୋହଣ କରିବେ ନାହିଁ । ରାଜା ନୌକାଦ୍ୱାରା ନଦୀ ପାରହେବା ବେଳେ ନଦୀର ଦୁଇତୀରରେ ଆତ୍ମରକ୍ଷିସୈନ୍ୟ (ଅଙ୍ଗରକ୍ଷକ ସୈନ୍ୟ)ମାନେ ସତର୍କଭାବେ ରହିଥିବେ । ଧୀବରମାନଙ୍କ ଦ୍ୱାରା ପରିଶୋଧିତ ତିମି ଓ କୁମ୍ଭୀର ପ୍ରଭୃତି ହିଂସ୍ର ଜଳଜନ୍ତୁ-ରହିତ ଜଳରେ ସ୍ନାନସକାଶେ ପ୍ରବେଶ କରିବେ ଏବଂ ସାପୁଆମାନଙ୍କଦ୍ୱାରା ପରିଶୋଧିତ ଉଦ୍ୟାନ ମଧ୍ୟରେ ଭ୍ରମଣ ସକାଶେ ପ୍ରବେଶ କରିବେ । ଚଞ୍ଚଳ ଲକ୍ଷ୍ୟବେଧଶିକ୍ଷା ସକାଶେ ରାଜା ଶିକାରିକୁକ୍କୁରସମନ୍ୱିତ ବ୍ୟାଧମାନଙ୍କ ସହିତ ଚୋର, ବ୍ୟାଘ୍ର, ସିଂହପ୍ରଭୃତିଙ୍କ ଉପଦ୍ରବଶୂନ୍ୟ ଓ ବନଜନ୍ତୁପରିପୂର୍ଣ୍ଣ ଅରଣ୍ୟ ମଧ୍ୟରେ ମୃଗୟାର୍ଥେ ପ୍ରବେଶ କରିବେ । (୯) ପୂର୍ବେ ନ ଦେଖିଥିବା ସିଦ୍ଧସନ୍ନ୍ୟାସୀ ଓ ତପସ୍ୱୀମାନଙ୍କୁ ସାକ୍ଷାତ କରିବାକୁ ହେଲେ ରାଜା ବିଶ୍ୱସ୍ତ ଶସ୍ତ୍ରଧାରୀ ଅଙ୍ଗରକ୍ଷୀ (Bodyguard) ମାନଙ୍କ ସହିତ ଯାଇ ସାକ୍ଷାତ କରିବେ; ମନ୍ତ୍ରିପରିଷଦ ସହିତ ବିଦେଶୀ ରାଜଦୂତଙ୍କୁ ଦେଖାକରିବେ ଏବଂ ନିଜେ ପଗଡ଼ୀ, ସାଞ୍ଜୁ ଇତ୍ୟାଦି ଧାରଣ କରି ଯୁଦ୍ଧୋଚିତ ବେଶରେ ଅଶ୍ୱ, ହସ୍ତୀ ଓ ରଥ ଆରୋହଣ ପୂର୍ବକ ଯୁଦ୍ଧପାଇଁ ସଜ୍ଜିତହୋଇ ରହିଥିବା ସୈନ୍ୟମାନଙ୍କୁ ଦେଖିବାକୁ ଯିବେ । (୧୦) ରାଜା ନିଜର ରାଜଧାନୀରୁ ଅନ୍ୟ କୌଣସି ସ୍ଥାନକୁ ଗଲାବେଳେ ଓ କୌଣସି ସ୍ଥାନରୁ ରାଜଧାନୀକୁ ଫେରିବାବେଳେ, ରାଜମାର୍ଗର ଉଭୟପାର୍ଶ୍ୱରେ ଦଣ୍ଡଧାରୀ ପୁରୁଷମାନେ ଦଣ୍ଡାୟମାନହୋଇ ରାସ୍ତାରେ ଥିବା ଶସ୍ତ୍ରଧାରୀ ପୁରୁଷ, ସନ୍ନ୍ୟାସୀ ଓ ବିକଳାଙ୍ଗ ବ୍ୟକ୍ତିମାନଙ୍କୁ ରାସ୍ତାରୁ ଅପସାରିତ କରିବା ପରେ, ସେହି ମାର୍ଗରେ ଯାତ୍ରାକରିବେ । ଜନଗହଳ ମଧ୍ୟରେ ରାଜା କଦାପି ପ୍ରବେଶ କରିବେନାହିଁ । ରାଜା କୌଣସି ଦେବଯାତ୍ରା, ସଭାସମିତି, ବସନ୍ତାଦି

ପ୍ରବ୍ରଜିତବ୍ୟଂଗଂ ଗଚ୍ଛେତ୍ । ନ ପୁରୁଷସମ୍ବାଧମବଗାହେତ । ଯାତ୍ରା-ସମାଜୋତ୍ସବପ୍ରବହଣାନ ଚ ଦଶବର୍ଗିକାଧିଷ୍ଠିତାନ ଗଚ୍ଛେତ୍ ।

(୧୧) ଯଥା ଚ ଯୋଗପୁରୁଷୈରନ୍ୟାନ୍ ରାଜାଧିତିଷ୍ଠତି ।
ତଥାୟମନ୍ୟାବାଧେଭ୍ୟୋ ରକ୍ଷେଦାତ୍ମାନମାତ୍ମବାନ୍ ॥

---

ଉତ୍ସବ, ଉଦ୍ୟାନଭୋଜନ (Picnic) ଇତ୍ୟାଦିକୁ ଯିବାକୁ ହେଲେ ଦଶଜଣ ସେନାପତିଙ୍କ ସମଭିବ୍ୟାହାରରେ ଗମନ କରିବେ, ଏକାକୀ କଦାପି କୌଣସି ସ୍ଥାନକୁ ଗମନ କରିବେନାହିଁ । (୧୧) ବିଜୟାଭିଳାଷୀ ରାଜା ନିଜର କାପଟିକାଦି ଗୁପ୍ତଚରମାନଙ୍କଦ୍ୱାରା ଶତ୍ରୁରାଜାଙ୍କ ସମସ୍ତ କାର୍ଯ୍ୟରେ ବାଧା ସୃଷ୍ଟିକରିବେ ଏବଂ ସେହିପରି ଶତ୍ରୁପ୍ରଯୁକ୍ତ ଗୁପ୍ତଚରକର୍ତ୍ତୃକ ବାଧାବିଘ୍ନରୁ ନିଜକୁ ଓ ନିଜରାଜ୍ୟକୁ ରକ୍ଷାକରିବାପାଇଁ ଯତ୍ନବାନ୍ ହେବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ବିନୟାଧିକାରିକେ ପ୍ରଥମାଧିକରଣେ
ଏକବିଂଶୋଽଧ୍ୟାୟଃ—ଆତ୍ମରକ୍ଷିତକମ୍ ।

ଏତାବତା କୌଟଲୀୟାର୍ଥଶାସ୍ତ୍ରସ୍ୟ ବିନୟାଧିକାରିକଂ
ପ୍ରଥମାଧିକରଣଂ ସମାପ୍ତମ୍ ।



# କୌଟିଲ୍ୟ-ଅର୍ଥଶାସ୍ତ୍ରମ୍

## ★ ଅଧ୍ୟକ୍ଷପ୍ରଚାରଃ - ଦ୍ୱିତୀୟମଧିକରଣମ୍

### ପ୍ରଥମୋଽଧ୍ୟାୟଃ

### ଊନବିଂଶ ପ୍ରକରଣମ୍—❋ ଜନପଦନିବେଶଃ

### THE DUTY OF GOVERNMENT SUPERINTENDENTS

**( FORMATION OF VILLAGES )**

( ବସତିସ୍ଥାପନ ବିଧି ବା ସାମାଜିକ ମନୁଷ୍ୟ
ବାସୋପଯୋଗୀ ପୁରାତନ ଓ ନୂତନ ଗ୍ରାମନଗରାଦିର ରଚନା )

**(୧) ଭୂତପୂର୍ବମଭୂତପୂର୍ବଂ ବା ଜନପଦଂ ପରଦେଶାପବାହନେନ ସ୍ୱଦେଶାଭିଷ୍ୟନ୍ଦବମନେନ ବା ନିବେଶୟେତ୍ । (୨) ଶୂଦ୍ରକର୍ଷକପ୍ରାୟଂ**

(୧) ରାଜା ସ୍ୱଦେଶର ଗ୍ରାମନଗରାଦିରେ ଅତିବୃଦ୍ଧି ଯୋଗୁଁ ରୁଦ୍ଧଶୂନ୍ ହୋଇ ରହିଥିବା ଲୋକ ଓ ବିଦେଶରୁ ନିଜଦେଶ ସକାଶେ ଆବଶ୍ୟକ ହେଉଥିବା ଲୋକମାନଙ୍କୁ ନେଇ ପୁରାତନ ଭଗ୍ନପ୍ରାପ୍ତ ଗ୍ରାମନଗର କିମ୍ବା ବର୍ତ୍ତମାନ ଆବଶ୍ୟକ ହେଉଥିବା ଗ୍ରାମନଗରଗୁଡ଼ିକ ନିର୍ମାଣ କରାଇବେ । (୨) ଏହି ଗ୍ରାମଗୁଡ଼ିକୁ ଶୂଦ୍ର (ବଢ଼େଇ, ଲୋହରା, ଗଉଡ଼, ନାପିତ ଓ

---

★ ଯଥୋକ୍ତ ଗୁଣସମ୍ପନ୍ନ ରାଜା ସମସ୍ତ ରାଜକାର୍ଯ୍ୟ କାର୍ଯ୍ୟ ବିଭିନ୍ନ ବିଭାଗୀୟ ଅଧ୍ୟକ୍ଷମାନଙ୍କ ଦ୍ୱାରା ହିଁ ସମ୍ପାଦନ କରାଇ ଥା'ନ୍ତି । ଏହି ଅଧିକରଣରେ ସେହି ଅଧ୍ୟକ୍ଷମାନଙ୍କର ପ୍ରଧାନ ବ୍ୟାପାରଗୁଡ଼ିକ ବିଧିମତ ଆଲୋଚିତ ହୋଇଥିବା ଯୋଗୁଁ, ଏହାର ନାମ 'ଅଧ୍ୟକ୍ଷପ୍ରଚାର ଅଧିକରଣ' ରଖାଯାଇଛି ।

❋ ଜନଃ ଚତୁର୍ବର୍ଣ୍ଣାଶ୍ରମଜାତି ଲକ୍ଷଣଃ, ପଦଂ ତସ୍ୟ ସ୍ଥାନଂ ସ୍ଥାନୀୟ—ଦ୍ରୋଣମୁଖ-କାର୍ବଟିକ-ସଂଗ୍ରହଣ-ଗ୍ରାମାଦିକଂ, ତସ୍ୟ ନିବେଶଃ ରଚନାଦି ଅଭିଧୀୟତେ ଇତି ସୂତ୍ରାର୍ଥଃ ।

କୁଳଶତାବରଂ ପଞ୍ଚଶତକୁଳପରଂ ଗ୍ରାମଂ କ୍ରୋଶଦ୍ୱିକ୍ରୋଶସୀମାନମ-ନ୍ୟୋନ୍ୟାରକ୍ଷଂ ନିବେଶୟେତ୍ । ନଦୀଶୈଳବନଗୃଷ୍ଟିଦରୀସେତୁବନ୍ଧ-ଶାଲ୍ମଲୀଶମୀ କ୍ଷୀରବୃକ୍ଷାନନ୍ତେଷୁ ସୀମ୍ନାଂ ସ୍ଥାପୟେତ୍ । (୩) ଅଷ୍ଟଶତ-ଗ୍ରାମ୍ୟା ମଧ୍ୟେ ସ୍ଥାନୀୟଂ, ଚତୁଃଶତଗ୍ରାମ୍ୟା ଦ୍ରୋଣମୁଖଂ, ଦ୍ୱିଶତ-ଗ୍ରାମ୍ୟାଃ କାର୍ବଟିକଂ (ଖାର୍ବଟିକମିତିପାଠାନ୍ତରେ), ଦଶଗ୍ରାମୀସଂଗ୍ରହେଣ ସଂଗ୍ରହଣଂ ସ୍ଥାପୟେତ୍ । (୪) ଅନ୍ତେଷ୍ୱନ୍ତପାଲଦୁର୍ଗାଣି ଜନପଦ-ଦ୍ୱାରାଣ୍ୟନ୍ତପାଲାଧିଷ୍ଠିତାନି ସ୍ଥାପୟେତ୍ । ତେଷାମନ୍ତରାଣି

ଧୋବା ପ୍ରଭୃତି) ଓ କୃଷକବହୁଳ, ଅନ୍ୟୂନ ଏକଶତ ଓ ଅନଧିକ ପଞ୍ଚଶତ ଗୃହଯୁକ୍ତ, ଏକକ୍ରୋଶ କିମ୍ବା ଦୁଇକ୍ରୋଶ ସୀମା ସମନ୍ୱିତ ଏବଂ ପରସ୍ପର ସାହାଯ୍ୟକ୍ଷମ କରି (ଏକଗ୍ରାମର ଲୋକେ ଅନ୍ୟଗ୍ରାମ ଲୋକଙ୍କୁ ସଂପଦ ବିପଦରେ ଯେପରି ସାହାଯ୍ୟ କରିପାରିବେ ସେପରିଭାବେ ସଜାଇ) ନିର୍ମାଣ କରାଇବେ । ସୀମାରକ୍ଷା ସକାଶେ ଗ୍ରାମସୀମାନ୍ତରେ ନଦୀ, ପର୍ବତ (ପଥରଗଦା), ବନ, ଗୃଷ୍ଟି ( ବଦରୀନାମକ ଔଷଧିବୃକ୍ଷବିଶେଷ ), ଗହ୍ୱର, ସେତୁବନ୍ଧ, ଶିମୁଳିବୃକ୍ଷ, ଶମୀବୃକ୍ଷ ଏବଂ ବଟାଦି କ୍ଷୀରବୃକ୍ଷ ଯେପରି ରହେ ସେପରି ବ୍ୟବସ୍ଥା କରାଇବେ । (୩) ରାଜା ଅଠଶହ ଗ୍ରାମ ମଧ୍ୟରେ ଗୋଟିଏ 'ସ୍ଥାନୀୟ' (ମହାନଗରୀ) ବସାଇବେ, ଚାରିଶହ ଗ୍ରାମ ମଧ୍ୟରେ ଗୋଟିଏ 'ଦ୍ରୋଣମୁଖ' (ଅର୍ଥାତ୍ ମହାନଗରୀଠାରୁ କିଞ୍ଚିତ୍ ନ୍ୟୂନ ନଗର), ଦୁଇଶହ ଗ୍ରାମ ମଧ୍ୟରେ ଗୋଟିଏ 'ଖାର୍ବଟିକ' ବା 'ଟାଉନ୍' ଏବଂ ଦଶଗୋଟି ଗ୍ରାମ ମଧ୍ୟରେ ରାଜସ୍ୱ ପ୍ରଭୃତି ଆଦାୟ କରିବା କେନ୍ଦ୍ରସ୍ଥଳ ସ୍ୱରୂପ 'ସଂଗ୍ରହଣ' ନାମକ ଗୋଟିଏ ବସ୍ତି ବସାଇବେ । (୪) ଏହି ନୂତନବସତିମାନଙ୍କ ସୀମାରେ ସମସ୍ତ ଗ୍ରାମମାନଙ୍କ ପ୍ରବେଶମାର୍ଗ ସ୍ୱରୂପ 'ଅନ୍ତପାଳଦୁର୍ଗ'ଗୁଡ଼ିକୁ ନିର୍ମାଣ କରାଇ ସେଥିରେ * ଅନ୍ତପାଳ ନାମକ ଅଧ୍ୟକ୍ଷମାନଙ୍କୁ ନିଯୁକ୍ତ

(୨)—କ୍ରୋଶ = ୨,୨୫୦ ଗଜ । ଶାଲ୍ମଲୀ = Silk Cotton tree ।
ଶମୀ = Acacia Suma । ଗୃଷ୍ଟି = Bulbus plants ।
କ୍ଷୀରବୃକ୍ଷ = Milky trees ।

* ଅନ୍ତପାଳ = Boundary guard ।

* ବାଗୁରିକଶବରପୁଳିନ୍ଦଚଣ୍ଡାଳାରଣ୍ୟଚରା ରକ୍ଷେଯୁଃ । (୫) ଋତ୍ୱିଗାର୍ଯ୍ୟପୁରୋହିତଶ୍ରୋତ୍ରିୟେଭ୍ୟୋ ବ୍ରହ୍ମଦେୟାନ୍ୟଦଣ୍ଡକରାଣ୍ୟଭିରୂପଦାୟକାନି ପ୍ରଯଚ୍ଛେତ୍ । ଅଧ୍ୟକ୍ଷସଂଖ୍ୟାୟକାଦିଭ୍ୟୋ ଗୋପସ୍ଥାନିକାନୀକସ୍ଥଚିକିତ୍ସକାଶ୍ୱଦମକଜଂଘାକରିକେଭ୍ୟଶ୍ଚ ବିକ୍ରୟା-

---

କରିବେ ଏବଂ ଏହି ଅନ୍ତପାଳ ଦୁର୍ଗମାନଙ୍କ ବ୍ୟବଧାନସ୍ଥଳଗୁଡ଼ିକୁ (ଜଂଗଲ ଓ ମଫସଲ ଜାଗାଗୁଡ଼ିକୁ) ରକ୍ଷାକରିବା ସକାଶେ ବ୍ୟାଧ, କିରାତ, ପୁଳିନ୍ଦ, ଚଣ୍ଡାଳ ଓ ବନଚରମାନଙ୍କୁ ନିଯୁକ୍ତ କରିବେ । (୫) ରାଜା ନିଜର ଋତ୍ୱିକ୍, ଅଗ୍ରୀର୍ଯ, ପୁରୋହିତ ଓ ବେଦପାଠୀ ବ୍ରାହ୍ମଣମାନଙ୍କୁ ନିଷ୍କର ଓ ସର୍ବପ୍ରକାର ଦଣ୍ଡରହିତ ଉର୍ବରା ବ୍ରହ୍ମଦାୟ ଭୂମି ପ୍ରଦାନ କରିବେ, ଅର୍ଥାତ୍ ଏହି ବ୍ରହ୍ମଦାୟ ଭୂମିରେ ଯେତେପ୍ରକାର ଫସଲ ହେଲେ ମଧ୍ୟ ସେଥିରୁ ଷଷ୍ଠାଂଶ ରାଜଭାଗ ଗ୍ରହଣ କରିବେ ନାହିଁ ଏବଂ କୂପ, ଜଳାଶୟ, ନଦୀବନ୍ଧ ଇତ୍ୟାଦିରୁ ଏମାନେ ନିଜ ଭୂମିରେ ଜଳସେଚନ କଲେ ଜଳକର ନେବେ ନାହିଁ କିମ୍ବା ଦଣ୍ଡବିଧାନ କରିବେ ନାହିଁ । ଏହି ବ୍ରହ୍ମଦାୟ ଭୂମି ଉପରେ ବ୍ରାହ୍ମଣମାନଙ୍କର ବଂଶପରଂପରାକ୍ରମେ ଅଧିକାର ରହିବ । ବିଭିନ୍ନ ବିଭାଗର ଅଧ୍ୟକ୍ଷ, ଗଣନାକାରକ କର୍ମଚାରୀ, ଗୋପ (ଦଶଗୋଟି ଗ୍ରାମର ଅଧିକାରୀ), ସ୍ଥାନିକ (ନଗରର ଚତୁର୍ଥାଂଶାଧିକାରୀ), ଅନୀକସ୍ଥ (ହସ୍ତିଶିକ୍ଷକ), ବୈଦ୍ୟ, ଅଶ୍ୱଶିକ୍ଷକ ଓ ଜାଂଘିକ, ରନର୍ (Runner ବା ଠପାକାର) ମାନଙ୍କୁ ମଧ୍ୟ ରାଜା ଭୂମି ଦାନ କରିବେ । ଏହି ଭୂମି ଏମାନେ କେବଳ ଭୋଗକରିବେ ସିନା, ଦାନ, ବିକ୍ରୟ କିଂବା ବନ୍ଧକ କରିପାରିବେ ନାହିଁ ।

---

* ବାଗୁରିକ = ମୃଗବନ୍ଧନଜୀବୀ ବ୍ୟାଧ—Trap-keeper । ଶବର = ଶୂଦ୍ର ପୁରୁଷ ଓ ଭିଲ୍ଲ ସ୍ତ୍ରୀଠାରୁ ଜାତ ହେବା ସନ୍ତାନ—Archer । ପୁଳିନ୍ଦ = ଶୂଦ୍ର ପୁରୁଷ ଓ କିରାତ ସ୍ତ୍ରୀଠାରୁ ଜାତ ସନ୍ତାନ—Hunter । ଚଣ୍ଡାଳ = ଶ୍ମଶାନପାଳ ।

(୫)—ଦଣ୍ଡ = Fine । କର = Tax । ଅଧ୍ୟକ୍ଷ = Superintendent । ସଂଖ୍ୟାୟକ = Accountant । ଅନୀକସ୍ଥ = Veterinary Surgeon । ଜାଙ୍ଘିକ = Runner or Messenger, Elephant trainers ।

ଧାନବର୍ଜମ୍ । (୭) କରଦେଭ୍ୟଃ କୃତକ୍ଷେତ୍ରାଣ୍ୟେକପୁରୁଷିକାଣି ପ୍ରଯଚ୍ଛେତ୍ । ଅକୃତାନ କର୍ତ୍ତୃଭ୍ୟୋ ନାଦେୟାତ୍ । ଅକୃଷତାମାଚ୍ଛିଦ୍ୟାନ୍ୟେଭ୍ୟଃ ପ୍ରଯଚ୍ଛେତ୍ । ଗ୍ରାମ ଭୃତକବୈଦେହକା ବା କୃଷେୟୁଃ । ଅକୃଷନ୍ତୋଽବହୀନଂ ଦଦ୍ୟୁଃ । ଧାନ୍ୟପଶୁହିରଣ୍ୟୈଶ୍ଚୈନାନନୁଗୃହ୍ଣୀୟାତ୍ । ତାନ୍ୟନୁ ସୁଖେନ ଦଦ୍ୟୁଃ । (୭) ଅନୁଗ୍ରହପରିହାରୌ ଚୈଭ୍ୟଃ କୋଶବୃଦ୍ଧିକରୌ ଦଦ୍ୟାତ୍ । କୋଶୋପଘାତକୌ ବର୍ଜୟେତ୍ । ଅଲ୍ପକୋଶୋ ହି ରାଜା ପୌରଜାନ-

---

(୭) ରାଜା ରୀତିମତ ରାଜଭାଗ ଦେଉଥିବା କୃଷକମାନଙ୍କୁ ସେମାନେ ସୁଅଣ୍ଟ କରିଥିବା ବିଲ ଓ ପଦର ଏକପୁରୁଷ ପର୍ଯ୍ୟନ୍ତ ଭୋଗ କରିବାକୁ ଦେବେ । ସୁଅଣ୍ଟ ନ ହୋଇଥିବା ଭୂମିକୁ ଯେଉଁମାନେ ସୁଅଣ୍ଟ କରିବେ ସେହି ରାଜଭାଗଦାୟୀ କୃଷକମାନଙ୍କୁ ଉକ୍ତ ଭୂମିରୁ ଉଚ୍ଛେଦ କରିବେନାହିଁ । ଯେକୌଣସି କୃଷକ ଭୂମି ଉଠିଆ ନକରି ପଡ଼ିଆ ରଖିଲେ, ତା'ଠାରୁ ଉକ୍ତ ଭୂମି ଛଡ଼ାଇ ଅନ୍ୟ କୃଷକକୁ ଉଠିଆ କରିବାପାଇଁ ଦେବେ କିମ୍ବା ଗ୍ରାମାଧିକାରୀ ବା ବଣିକମାନଙ୍କଦ୍ୱାରା ଚଷାଇବେ । ଭୂମି ଗୃହକୁ ରଖି, ରୀତିମତ ଚୃଷ ନକରି ଫସଲ ନଷ୍ଟକରିବା କୃଷକ ପାଖପଡ଼ଶା ଶୀଦପ୍ରକାରେ ସଞ୍ଜା ଦେବେ । କୃଷକ କୃଷିଉପକରଣ ଓ ଲଗଲଗୁଡ଼ିପାଇଁ ଧନ ଖଟାଇବାକୁ ଅସମର୍ଥ ହେଲେ ରାଜା ତା'ଙ୍କୁ ଅବଶ୍ୟକୀୟ ହଳ, ବଳଦ ଓ ଟଙ୍କାପଇସା ସାହାଯ୍ୟ କରିବେ ଏବଂ ଫସଲ ଅଦାୟ ହେବା ପରେ କୃଷକ ନିଜର ଭୋଜନ, ବାହନ ଓ ଲଗୁଡ଼ିପାଇଁ ଅବଶ୍ୟକୀୟ ଦ୍ରବ୍ୟ ରଖି ମୁଖସୁବିଧାରେ ରାଜାଙ୍କର ଉକ୍ତ ସାହାଯ୍ୟ ଧନ ଅସ୍ତେ ଅସ୍ତେ ପରିଶୋଧ କରିବେ । (୭) ଏହି କୃଷକମାନଙ୍କର ସ୍ୱାସ୍ଥ୍ୟବୃଦ୍ଧି ସକାଶେ (ବିଶୁଦ୍ଧ ପାନୀୟ ଜଳ, ସଫାଇ, ଶୁଦ୍ଧବାୟୁ ଓ ପୁଷ୍ଟିକର ଖାଦ୍ୟସାମଗ୍ରୀ ସକାଶେ) ସାହାଯ୍ୟକରିବା ଧନକୁ 'ଅନୁଗ୍ରହ' ଏବଂ ସ୍ୱାସ୍ଥ୍ୟସିଦ୍ଧିପାଇଁ (ଚିକିତ୍ସାଳୟପ୍ରତିଷ୍ଠା, ଚିକିତ୍ସକନିଯୁକ୍ତି ଓ ଔଷଧପ୍ରସ୍ତୁତ ପାଇଁ) ସାହାଯ୍ୟ କରିବା ଧନକୁ 'ପରିହାର' କୁହାଯାଏ । ରାଜା ଏହି ସାହାଯ୍ୟଧନ ନିଜ ରାଜକୋଶର ବୃଦ୍ଧିକାରକ ହେବାପରି ଭାବରେ ଦେବେ, କୋଶର ଉପଘାତକ ଅନୁଗ୍ରହ ପରିହାର ବର୍ଜନ କରିବେ । କାରଣ, ଧନହୀନ ରାଜା ରାଜକୋଶ ପୂର୍ଣ୍ଣ କରିବାପାଇଁ ପ୍ରଜାମାନଙ୍କୁହିଁ ପୀଡ଼ା ଦେବାକୁ ବାଧ୍ୟ ହୁଅନ୍ତି ।

ପଦାନେବ ପ୍ରଯଚ୍ଛେତ । ନବେଶସମକାଳଂ ଯଥାଗତକଂ ବା ପରିହାରଂ ଦଦ୍ୟାତ୍ । ନବୃତ୍ତପରିହାରାନ୍ ପିତେବାନୁଗୃହ୍ଣୀୟାତ୍ । (୮) ଆକର କର୍ମ୍ମାନ୍ତଦ୍ରବ୍ୟହସ୍ତିବନବ୍ରଜବଣିକ୍‌ପଥପ୍ରଚାରାନ୍ ବାରିସ୍ଥଳପଥପଣ୍ୟ-ପତ୍ତନାନି ଚ ନିବେଶୟେତ୍ । (୯) ସହୋଦକମାହାର୍ଯ୍ୟୋଦକଂ ବା ସେତୁଂ ବନ୍ଧୟେତ୍ । ଅନ୍ୟେଷାଂ ବା ବଧ୍ନତାଂ ଭୂମିମାର୍ଗବୃକ୍ଷୋପ-କରଣାନୁଗ୍ରହଂ କୁର୍ଯ୍ୟାତ୍, ପୁଣ୍ୟସ୍ଥାନାରାମାଣାଂ ଚ । ସମ୍ଭୂୟ

ରାଜା ପୂର୍ବୋକ୍ତ ଗ୍ରାମନଗରମାନଙ୍କରେ ପ୍ରଥମେ ବାସକରିବା ଲୋକମାନେ ଥଇଥାନ ହେବାପର୍ଯ୍ୟନ୍ତ ସେମାନଙ୍କର ସ୍ୱାସ୍ଥ୍ୟସିଦ୍ଧିପାଇଁ ଏବଂ ପରେ ପରେ ଆସିବା ନବାଗତ ଲୋକଙ୍କ ଥଇଥାନ ଓ ସ୍ୱାସ୍ଥ୍ୟସିଦ୍ଧି ପାଇଁ ମଧ୍ୟ 'ପରିହାର' ଦେବେ ଏବଂ ଏହି ପରିହାରଧନ ପରିଶୋଧକମାନଙ୍କୁ ପିତା ଯେପରି ପୁତ୍ରକୁ ଅନୁଗ୍ରହ କରେ ସେପରି ସେମାନଙ୍କ ବୃଦ୍ଧିସକାଶେ ଅନୁଗ୍ରହ ଦ୍ରବ୍ୟ ପ୍ରଦାନପୂର୍ବକ ଉପକାର କରିବେ । (୮) ରାଜା ସୁନାରୁପା ପ୍ରଭୃତି ଖଣିଜ-ପଦାର୍ଥର ବ୍ୟବହାର (କ୍ରୟବିକ୍ରୟ) ସ୍ଥାନ, ଚନ୍ଦନ ପ୍ରଭୃତି ମୂଲ୍ୟବାନ୍ କାଷ୍ଠ ଓ ଗୁଗ୍‌ଗୁଲ, ଜଉ, ସଜଳସ, ହିଙ୍ଗୁ ପ୍ରଭୃତି ବୃକ୍ଷନିର୍ଯ୍ୟାସ (ଅଠା) ଉତ୍ପାଦନଯୋଗ୍ୟ ବନ, ହସ୍ତିବନ, ଗୋପାଳନ କେନ୍ଦ୍ର, ବାଣିଜ୍ୟପଥ, ଜଳପଥ ଓ ସ୍ଥଳପଥ (ସଡ଼କ) ଏବଂ ଉକ୍ତ ପଥମାନଙ୍କରେ ଯାନବାହନଦ୍ୱାରା ସରବରାହ କରାଯିବା ପଦାର୍ଥମାନଙ୍କ କ୍ରୟବିକ୍ରୟ କେନ୍ଦ୍ରମାନ (ବଜାରସମୂହ) ନିର୍ମ୍ମାଣ କରାଇବେ । (୯) ରାଜା ସହୋଦକ ଅର୍ଥାତ୍ ସର୍ବଦା ଯେଉଁଥିରେ ଜଳ ରହେ ଏମନ୍ତ ନଦୀ, ଝରଣା ଇତ୍ୟାଦିରେ ସେତୁ ବନ୍ଧନକରି କିମ୍ବା ବର୍ଷାଦ୍ୱାରା ପର୍ବତ ପାହାଡ଼ରୁ ଗଡ଼ୁଥିବା ଜଳକୁ ବନ୍ଧାଇ ରଖି, ଜଳସେଚନର ବ୍ୟବସ୍ଥା କରିବେ । ଯଦି ଅନ୍ୟକୌଣସି ଧର୍ମ୍ମପରାୟଣ ବ୍ୟକ୍ତି ଧର୍ମ୍ମାର୍ଥରେ ଏପରି ବନ୍ଧ ବନ୍ଧାଇବାକୁ ଇଚ୍ଛାକରନ୍ତି, ତେବେ ରାଜା ତାଙ୍କୁ ଭୂମି, ରାସ୍ତା, ବୃକ୍ଷାଦି ଅବଶ୍ୟକୀୟ ପଦାର୍ଥ ସାହାଯ୍ୟ କରିବାକୁ ହେବ । ଏହିପରି ପୁଣ୍ୟସ୍ଥାନ (ଦେବାଳୟ, ଧର୍ମ୍ମଶାଳା ପ୍ରଭୃତି) ଓ ଆରାମ (ବଗିଚା ପ୍ରଭୃତି ଫଳଫୁଲ ଉଦ୍ୟାନ) ନିର୍ମ୍ମାଣ କରିବାପାଇଁ କୌଣସି ଦାତା ଇଚ୍ଛାକଲେ ରାଜା ତାହାଙ୍କୁ ଯଥାଯୋଗ୍ୟ ସାହାଯ୍ୟ ପ୍ରଦାନ କରିବେ । ଯେଉଁ ସେତୁବନ୍ଧ

(୮)—ପଞ୍ଚନଂ ଶକଟୈ ର୍ଗମ୍ୟଂ ଘୋଟକୈ ର୍ନୌଭିରେବ ଚ । ଇତି ଯାଦବଃ ।

ସେତୁବନ୍ଧାଦପକ୍ରାମତଃ କର୍ମକରବଲୀବର୍ଦାଃ କର୍ମ କୁର୍ଯୁଃ ବ୍ୟୟକର୍ମଣି ଚ ଭାଗୀସ୍ୟାଦ୍, ନ ଚାଂଶଂ ଲଭେତ । (୧୦) ମତ୍ସ୍ୟପ୍ଳବହରିତପଣ୍ୟାନାଂ ସେତୁଷୁ ରାଜା ସ୍ୱାମ୍ୟଂ ଗଚ୍ଛେତ୍ । ଦାସାହିତକବନ୍ଧୂନଶୃଣ୍ୱତୋ ରାଜା ବିନୟଂ ଗ୍ରାହୟେତ୍ । ବାଳବୃଦ୍ଧବ୍ୟାଧିତବ୍ୟସନ୍ୟନାଥାଂଶ୍ଚ ରାଜା ବିଭୃୟାତ୍, ସ୍ତ୍ରିୟମପ୍ରଜାତାଂ ପ୍ରଜାତାୟାଶ୍ଚ .

---

ଦେଶ ଜନତାର ସମୂହ ଶ୍ରମରେ ନିର୍ମିତ ହୁଏ ଏବଂ ଏଥିରେ ଯେଉଁ ବ୍ୟକ୍ତି ସକ୍ରିୟ ଅଂଶ ଗ୍ରହଣ କରେ ନାହିଁ ଅର୍ଥାତ୍ ଆଳସ୍ୟବଶତଃ ଏଥିରେ ଯୋଗ ଦିଏନାହିଁ, ରାଜା ତା'ର ବଳଦ ଓ ନୌକରମାନଙ୍କୁ ବାଧକରି ଉକ୍ତ କାର୍ଯ୍ୟରେ ନିଯୁକ୍ତ କରାଇବେ ଏବଂ ଏଥିରେ ଯେଉଁ ଦେୟାଗୃନ୍ଦା ଇତ୍ୟାଦି ଲାଗିବ, ଏ ଅଳସୁଆ ବ୍ୟକ୍ତି ତାହା ମଧ୍ୟ ଦେବାକୁ ବାଧ ହେବ, ଅଥଚ ଏହି କାର୍ଯ୍ୟ ସାଧିତ ହେବା ପରେ ସେଥିରୁ ଯାହା ଲାଭହେବ ସେଥିରୁ ସେ ଭାଗ ପାଇବାପାଇଁ ଦାବୀ କରିପାରିବ ନାହିଁ ★ । (୧୦) ରାଜକୀୟ ଜଳଭଣ୍ଡାର, ଧାର୍ମିକବ୍ୟକ୍ତିକୃତ ଜଳଭଣ୍ଡାର ଓ ସର୍ବସାଧାରଣଙ୍କ ଶ୍ରମରେ ନିର୍ମିତ ହୋଇଥିବା ଜଳଭଣ୍ଡାରରୁ ଜାତହେବା ମାଛ ଏବଂ ହଂସ ପ୍ରଭୃତି ଜଳଚର ପକ୍ଷୀ, ପଦ୍ମମୃଣାଳ, ସିଂଘଡ଼ା ଇତ୍ୟାଦି ପଦାର୍ଥରେ ରାଜାଙ୍କର ସମ୍ପୂର୍ଣ୍ଣ ସ୍ୱତ୍ୱାଧିକାର ରହିବ । ଏହି ଜଳଭଣ୍ଡାର ଯାହାଙ୍କ ତତ୍ତ୍ୱାବଧାନରେ ରହିବ, ତାଙ୍କ ଆଦେଶକୁ ଅବଜ୍ଞା କରୁଥିବା ରାଜକୀୟ ଭୃତ୍ୟବର୍ଗ, ଶ୍ରମିକବର୍ଗ, ପୁତ୍ର ଭ୍ରାତାଦି ସ୍ୱଜନ, ବନ୍ଧୁବର୍ଗ ତଥା ଜନସାଧାରଣଙ୍କୁ ରାଜା ଶୃଙ୍ଖଳାରକ୍ଷା ସକାଶେ ବିଧିବଦ୍ଧ ଶିକ୍ଷା ପ୍ରଦାନ କରିବେ । ରାଜା ବାଳକ, ବୃଦ୍ଧ, ରୋଗୀ, ବିପଦ୍‌ଗ୍ରସ୍ତ ଓ ଅନାଥ ବ୍ୟକ୍ତିମାନଙ୍କ ଭରଣପୋଷଣର ବ୍ୟବସ୍ଥା କରିବେ । ସନ୍ତାନହୀନା ଅରକ୍ଷିତା ସ୍ତ୍ରୀ, ସନ୍ତାନଯୁକ୍ତା ଅନାଥା ସ୍ତ୍ରୀ ଓ ତାହାର ସନ୍ତାନମାନଙ୍କୁ ମଧ୍ୟ ରାଜା ରକ୍ଷାକରିବେ । କୌଣସି ଅରକ୍ଷ ନାବାଳକର ସମ୍ପତ୍ତି ନଷ୍ଟ ନହୋଇ ବୃଦ୍ଧିପ୍ରାପ୍ତ ହେବାର ବ୍ୟବସ୍ଥା ଗ୍ରାମର ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କଦ୍ୱାରା କରାଇ ସେହି ନାବାଳକ, ସାବାଳକ ଅର୍ଥାତ୍ ପ୍ରାପ୍ତବୟସ୍କ

---

★ ବିନା ଶ୍ରମରେ କୌଣସି ବ୍ୟକ୍ତି ଲଭ୍ୟାଂଶର ଭାଗିଦାର ହୋଇପାରିବେ ନାହିଁ ବୋଲି ଆଚାର୍ଯ୍ୟ ଚାଣକ୍ୟ କଠୋର ଓ ରୋକଠୋକ ଭାବରେ ଏହାର ସମାଧାନ କରି ଯାଇଛନ୍ତି । ଚାଣକ୍ୟସମ୍ମତ ସମାଜବାଦର ଏହା ଚୂଡ଼ାନ୍ତ ଆଦର୍ଶ ।

**ପୁତ୍ରାନ୍ । ବାଳଦ୍ରବ୍ୟଂ ଗ୍ରାମବୃଦ୍ଧା ବର୍ଦ୍ଧୟେୟୁରା ବ୍ୟବହାରପ୍ରାପଣାତ୍, ଦେବଦ୍ରବ୍ୟଂ ଚ । (୧୧) ଅପତ୍ୟଦାରାନ୍ ମାତାପିତରୌ ଭ୍ରାତୃନପ୍ରାପ୍ତ ବ୍ୟବହାରାନ୍ ଭଗିନୀଃକନ୍ୟା ବିଧବାଶ୍ଚାବିଭ୍ରତଃ ଶକ୍ତିମତୋ ଦ୍ୱାଦଶ-ପଣୋ ଦଣ୍ଡୋଽନ୍ୟତ୍ର ପତିତେଭ୍ୟଃ, ଅନ୍ୟତ୍ର ମାତୁଃ । (୧୨) ପୁତ୍ରଦାର ମପ୍ରତିବିଧାୟ ପ୍ରବ୍ରଜତଃ ପୂର୍ବଃ ସାହସଦଣ୍ଡଃ, ସ୍ତ୍ରିୟଂ ଚ ପ୍ରବ୍ରାଜୟତଃ । ଲୁପ୍ତବ୍ୟବାୟଃ ପ୍ରବ୍ରଜେଦାପୃଚ୍ଛ୍ୟ ଧର୍ମସ୍ଥାନ୍, ଅନ୍ୟଥା ନିୟମ୍ୟେତ ।**

---

(Major) ହେବା ପରେ ଉକ୍ତ ସମ୍ପତ୍ତି ତାଙ୍କୁ ଫେରାଇ ଦେବେ । ଦେବାଳୟ ସମ୍ପତ୍ତିର ସର୍ବଦା ଉତ୍ତରୋତ୍ତର ବୃଦ୍ଧିହେବାର ବ୍ୟବସ୍ଥା ମଧ୍ୟ ଉକ୍ତ ମାନ୍ୟଗଣ୍ୟ (ଗ୍ରାମବୃଦ୍ଧ) ବ୍ୟକ୍ତିଙ୍କ ଦ୍ୱାରା ରାଜା କରାଇବେ । (୧୧) ନିଜର ସନ୍ତାନ, ଭାର୍ଯ୍ୟା, ମାତାପିତା, ନାବାଳକ ଭାଇ, ଭଉଣୀ, ବିଧବା ଭଉଣୀ ଓ ଦୁହିତା—ଏମାନଙ୍କୁ ଯେଉଁ ଭରଣପୋଷଣସମର୍ଥ ଗୃହସ୍ୱାମୀ ପାଳନ ପୋଷଣ ନକରେ, ରାଜା ତାହାଙ୍କୁ ବାରପଣ (ତତ୍କାଳୀନ ଟଙ୍କା) ଜୋରିମାନା କରିବେ । ଏମାନଙ୍କ ମଧ୍ୟରୁ ଯଦି କେହି ପତିତ ହୋଇ ଘରୁ ବାହାରି ଯାଇଥାଏ ତେବେ ଗୃହସ୍ୱାମୀ ତାର ପାଳନ ପୋଷଣ ଭାର ଗ୍ରହଣ କରିବେ ନାହିଁ । କିନ୍ତୁ ମାତା ଯଦି ପତିତା ହୋଇଥାନ୍ତି, ତେବେ ପୁନ ତାଙ୍କର ପାଳନ ପୋଷଣ ଭାର ଗ୍ରହଣ କରିବାକୁ ହେବ । (୧୨) ଯେଉଁ ବ୍ୟକ୍ତି ପୁତ୍ର ଓ ଭାର୍ଯ୍ୟାର ପାଳନ ପୋଷଣ ବ୍ୟବସ୍ଥା ନକରି ସନ୍ନ୍ୟାସ ଗ୍ରହଣ ପୂର୍ବକ ଗୃହ ତ୍ୟାଗକରି ଚାଲିଯାଏ, ରାଜା ତାଙ୍କୁ *ପୂର୍ବସାହସ ଦଣ୍ଡ ଅର୍ଥାତ୍ ଦୁଇଶହ ପଚାଶେ ପଣ (ଟଙ୍କା) ଜୋରିମାନା କରିବେ । ସେହିପରି ଯେଉଁ ବ୍ୟକ୍ତି ସ୍ତ୍ରୀମାନଙ୍କୁ ସନ୍ନ୍ୟାସିନୀ ହେବାକୁ ବଢାଏ ତାହାଙ୍କୁ ମଧ୍ୟ ଏପରି ଦଣ୍ଡବିଧାନ କରିବାକୁ ହେବ । ଯେତେବେଳେ ମନୁଷ୍ୟର ମୈଥୁନଶକ୍ତି ନଷ୍ଟ ହୋଇଯାଏ, ସେତେବେଳେ ସେ ରାଜକୀୟ ଧର୍ମାଗୃହଙ୍କ ଅନୁମତି ନେଇ ନିଜର ସମ୍ପତ୍ତିକୁ ସନ୍ତାନମାନଙ୍କ ମଧ୍ୟରେ ଯଥାବିଧି ବଣ୍ଟନ ପୂର୍ବକ ସନ୍ନ୍ୟାସ

---

(୧୨) ଧର୍ମସ୍ଥ = **Judge.**

* ପଣାନାଂ ଦ୍ୱେଶତେ ସାର୍ଦ୍ଧେ ପ୍ରଥମଃ ସାହସଃ ସ୍ମୃତଃ । ଇତି ମନୁଃ ।
ପୂର୍ବସାହସଦଣ୍ଡ = ପ୍ରଥମସାହସଦଣ୍ଡଃ ।

(୧୬) ବାନପ୍ରସ୍ଥାଦନ୍ୟଃ ପ୍ରବ୍ରଜିତଭାବଃ, ସୁଜାତାଦନ୍ୟଃ ସଂଘଃ, ସମୁତ୍ଥାୟିକାଦନ୍ୟଃ ସମୟାନୁବନ୍ଧୋ ବା ନାସ୍ୟ ଜନପଦ-ମୁପନିବେଶେତ । (୧୪) ନ ଚ ତତ୍ରାରାମା ବିହାରାର୍ଥାଃ ଶାଳାଃ ସ୍ୟୁଃ । ନଟନର୍ତ୍ତନଗାୟନବାଦକବାଗ୍‌ଜୀବନକୁଶୀଲବା ବା ନ କର୍ମ୍ମବିଘ୍ନଂ କୁର୍ଯ୍ୟୁଃ, ନିରାଶ୍ରୟତ୍ୱାଦ୍ ଗ୍ରାମାଣାଂ, କ୍ଷେତ୍ରାଭିରତତ୍ୱାଚ୍ଚ ପୁରୁଷାଣାଂ କୋଶବିଷ୍ଟି ଦ୍ରବ୍ୟଧାନ୍ୟରସବୃଦ୍ଧିର୍ଭବତୀତି ।

(୧୫) ପରଚକ୍ରାଟବୀଗ୍ରସ୍ତଂ ବ୍ୟାଧି ଦୁର୍ଭିକ୍ଷପୀଡ଼ିତମ୍ ।
ଦେଶଂ ପରିହରେଦ୍ରାଜା ବ୍ୟୟକ୍ରୀଡ଼ାଶ୍ଚ ବାରୟେତ୍ ॥

---

ଗ୍ରହଣ କରିପାରିବ । ଏହି ନିୟମକୁ ଲଙ୍ଘନ କରିବା ବ୍ୟକ୍ତି କାରାଦଣ୍ଡରେ ଦଣ୍ଡିତ ହେବ । (୧୬) ବାନପ୍ରସ୍ଥ ବ୍ୟତୀତ ଅନ୍ୟକୌଣସି ସନ୍ନ୍ୟାସୀ, ରାଜ୍ୟସେବା ସକାଶେ ଗଢ଼ାଯାଇଥିବା ସଙ୍ଘ ବ୍ୟତୀତ ଅନ୍ୟ ବିପ୍ଳବୀ ସଙ୍ଘ, ରାଜା ଓ ପ୍ରଜାମାନଙ୍କର ସମୂହକଲ୍ୟାଣକର ଦଳ ବ୍ୟତୀତ ଅନ୍ୟ ଉପଦ୍ରବକାରୀ ଦଳମାନଙ୍କୁ ରାଜ୍ୟରେ ପ୍ରସାରଲାଭ କରିବାପାଇଁ ରାଜା ସୁବିଧା ଦେବେନାହିଁ । (୧୪) ରାଜା କୃଷକବହୁଳ ଗ୍ରାମମାନଙ୍କରେ ପ୍ରମୋଦଉଦ୍ୟାନ ଓ ପ୍ରେକ୍ଷାଳୟ (ରଙ୍ଗାଳୟ କିମ୍ବା ଆଖେଡ଼ାଶାଳ ଇତ୍ୟାଦି) ନିର୍ମାଣ କରାଇବେ ନାହିଁ । ନାଟୁଆ, ନାଚୁଣିଆ, ଗାୟକ, ବାଦକ (ବାଦ୍ୟବଜାଇବା ବ୍ୟକ୍ତି), ଗଳ୍ପସାଗର, ବିଦୂଷକ, ଅଭିନେତା ପ୍ରଭୃତି ଯେପରି କୃଷକର କାର୍ଯ୍ୟରେ ବାଧା ନ ଦିଅନ୍ତି ରାଜା ସେପରି ବ୍ୟବସ୍ଥା କରିବେ । ଗ୍ରାମମାନଙ୍କରେ ନାଟ୍ୟଶାଳା ପ୍ରଭୃତି ଭୋଗସାମଗ୍ରୀର ଉନ୍ନତି ହେଲେ, ପ୍ରତ୍ୟେକ ବ୍ୟକ୍ତି କୃଷି ଇତ୍ୟାଦି ଉତ୍ପାଦନ କାର୍ଯ୍ୟରେ ଅବହେଳା କରି ଏଥିରେ ମାତନ୍ତି । ତେଣୁ, ଏସବୁ ବିଳାସ ବ୍ୟସନର ସଂସ୍ଥା ବୃଦ୍ଧି ନହେବାପରି ଯତ୍ନ କଲେ ରାଜସ୍ୱ, ବେଠି, ଧାନ୍ୟ, ଇକ୍ଷୁ, ତୈଳବୀଜ, କାଷ୍ଠ, ଫଳ, ଶାକ ପ୍ରଭୃତି ପୁଷ୍ଟିକର ଖାଦ୍ୟଦ୍ରବ୍ୟ ରାଜ୍ୟରେ ପ୍ରଚୁରପରିମାଣରେ ଉତ୍ପନ୍ନ ହେବ । (୧୫) ଶତ୍ରୁର ଗୁପ୍ତଚରଦ୍ୱାରା ଗ୍ରସ୍ତ, ଆଟବିକ ଅର୍ଥାତ୍ ଭିଲ୍ଲ ପ୍ରଭୃତି ବନଚରମାନଙ୍କଦ୍ୱାରା ଉତ୍ପୀଡ଼ିତ, ବସନ୍ତ, ମହାମାରି, ବିସୂଚିକା ପ୍ରଭୃତି ବ୍ୟାଧି ଓ ଦୁର୍ଭିକ୍ଷପ୍ରପୀଡ଼ିତ ନିଜରାଜ୍ୟକୁ ରାଜା ଯତ୍ନପୂର୍ବକ ପ୍ରତିଷେଧକ ଉପାୟ ଅବଲମ୍ବନକରି ରକ୍ଷାକରିବେ ଏବଂ ପ୍ରଜାମାନଙ୍କର ବିଳାସ-

(୧୬) ଦଣ୍ଡବିଷ୍ଟିକରାବାଧୈ ରକ୍ଷେଦୁପହତାଂ କୃଷିମ୍ ।
ସ୍ତେନବ୍ୟାଳବିଷଗ୍ରାହୈର୍ବ୍ୟାଧିଭିଶ୍ଚ ପଶୁବ୍ରଜାନ୍ ॥

(୧୭) ବଲ୍ଲଭୈଃ କାର୍ମିକୈ ସ୍ତେନୈରନ୍ତପାଳୈଶ୍ଚ ପୀଡ଼ିତମ୍ ।
ଶୋଧୟେତ୍ ପଶୁସଂଘୈଶ୍ଚ କ୍ଷୀୟମାଣଂ ବଣିକ୍ପଥମ୍ ॥

(୧୮) ଏବଂଦ୍ରବ୍ୟଦ୍ୱିପବନଂ ସେତୁବନ୍ଧମଥାକରାନ୍ ।
ରକ୍ଷେତ୍ ପୂର୍ବକୃତାନ୍ ରାଜା ନବାଂଶ୍ଚାଭିପ୍ରବର୍ତ୍ତୟେତ୍ ॥

---

ପ୍ରିୟତାର ବୃଦ୍ଧିକାରକ ଓ ଅର୍ଥହାନିକାରକ ଖେଳ (ଜୁଆ, ସୁଳେଇ ଇତ୍ୟାଦି) ଗୁଡ଼ିକୁ ବାରଣ କରିବେ । (୧୬) ରାଜା କୃଷିର ଉନ୍ନତିସକାଶେ କୃଷକ-ମାନଙ୍କ ପ୍ରତି ଦଣ୍ଡ ଅର୍ଥାତ୍ ଜୋରିମାନା, ବେଠି, କରପୀଡ଼ା ଇତ୍ୟାଦି କୋହଳ କରିବେ; ଚୋର, ବ୍ୟାଘ୍ରାଦି ହିଂସ୍ରଜନ୍ତୁ, ବିଷଧର ସର୍ପାଦି ପ୍ରାଣୀ ଓ ବ୍ୟାଧିମାନଙ୍କ ଆକ୍ରମଣରୁ ଗୃହପାଳିତ ପଶୁମାନଙ୍କୁ ରକ୍ଷା କରିବାପାଇଁ ସର୍ବଦା ତତ୍ପର ହେବେ । (୧୭) ରାଜା ନିଜର ଅନୁଗ୍ରହପାତ୍ର ବ୍ୟକ୍ତି, କର ଆଦାୟ କରୁଥିବା କର୍ମଚାରୀ, ଚୋର, ସୀମାରକ୍ଷକ ଓ ବ୍ୟାଘ୍ରାଦି ହିଂସ୍ରପ୍ରାଣୀ-ମାନଙ୍କ ଦାଉରୁ ବାଣିଜ୍ୟପଥକୁ ରକ୍ଷାକରିବେ ଅର୍ଥାତ୍ ବଣିକମାନେ ଯେପରି ନିର୍ଭୟରେ ପଣ୍ୟପଦାର୍ଥ ରାଜ୍ୟକୁ ନିଅଣ କରିପାରିବେ, ରାଜା ସେପରି ନିଜରାଜ୍ୟ ସୀମାରେ ଥିବା ବାଣିଜ୍ୟପଥକୁ ଭୟଶୂନ୍ୟ କରି ରଖିବେ । (୧୮) ରାଜା ଏହିପରି କାଷ୍ଠାଦି ଦ୍ରବ୍ୟବନ, ହସ୍ତିବନ, ଜଳଭଣ୍ଡାର, ଖଣି ( ସୁନା ରୂପା ଇତ୍ୟାଦି ଧାତୁପଦାର୍ଥର ଖଣି ) ଗୁଡ଼ିକୁ ସୁରକ୍ଷିତ କରିବେ ଓ ନୂତନରେ ମଧ୍ୟ ଏପରି ବନ, ସେତୁବନ୍ଧ, ଖଣି ଇତ୍ୟାଦିର ପ୍ରବର୍ତ୍ତନ କରାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ପ୍ରଥମୋଽଧ୍ୟାୟଃ—ଜନପଦନିବେଶଃ । ଆଦିତୋ ଦ୍ୱାବିଂଶଃ ।

---

# ଦ୍ୱିତୀୟୋଽଧ୍ୟାୟଃ

## ବଂଶ ପ୍ରକରଣମ୍—ଭୂମିଚ୍ଛିଦ୍ରବିଧାନମ୍

## DIVISION OF LAND

ଏହି ଅଧ୍ୟାୟରେ ଅନାବାଦୀ ଜମିକୁ ଅବାଦଯୋଗ୍ୟ କରିବା ବିଷୟର ବିଚାର କରାଯିବ ।

**(୧) ଅକୃଷ୍ୟାୟାଂ ଭୂମୌ ପଶୁଭ୍ୟୋ ବିବୀତାନି ପ୍ରୟଚ୍ଛେତ୍ । ପ୍ରଦିଷ୍ଟାଭୟସ୍ଥାବରଜଙ୍ଗମାନି ଚ ବ୍ରାହ୍ମଣେଭ୍ୟୋ ବ୍ରହ୍ମସୋମାରଣ୍ୟାନି, ତପୋବନାନି ଚ ତପସ୍ୱିଭ୍ୟୋ ଗୋରୁତପରାଣି ପ୍ରୟଚ୍ଛେତ୍ । ତାବନ୍ମାତ୍ରମେକଦ୍ୱାରଂ ଖାତଗୁପ୍ତଂ ସ୍ୱାଦୁଫଳଗୁଲ୍ମଗୁଚ୍ଛମକଂଟକ-ଦ୍ରୁମମୁତ୍ତାନତୋୟାଶୟଂ ଦାନ୍ତମୃଗଚତୁଷ୍ପଦଂ ଭଗ୍ନନଖଦଂଷ୍ଟ୍ରବ୍ୟାଳଂ**

(୧) ରାଜା † କୃଷିର ଅଯୋଗ୍ୟ ବିସ୍ତୃତ ଜଙ୍ଗଲଭୂମି ମଧ୍ୟରେ ଗାଈ, ମଇଁଷି, ଛେଳି, ମେଣ୍ଢା ପ୍ରଭୃତି ଗୃହପାଳିତ ପଶୁମାନେ ତୃଣ, ଜଳ ଓ ବିଶ୍ରାମଗ୍ରହଣ କରିବା ସକାଶେ ଉପଯୋଗୀ ହେଉଥିବା ସ୍ଥାନକୁ ଗୋଚର ଭୂମିରୂପେ ଛାଡ଼ିଦେବେ । ବ୍ରାହ୍ମଣମାନଙ୍କୁ ବେଦାଧ୍ୟୟନ ଓ ସୋମଯାଗ ଅନୁଷ୍ଠାନ ସକାଶେ (ସୋମଲତାର ଉତ୍ପାଦନ ସକାଶେ ମଧ୍ୟ) ବିବିଧ ସ୍ୱାଦୁ ଫଳବନ୍ତ ବୃକ୍ଷଲତାକୀର୍ଣ୍ଣ ଓ ହରିଣ, ମୟୂର, ଶୁକ ଶାରିକା ପ୍ରଭୃତି ଅହିଂସ୍ର ପ୍ରାଣୀ ନିର୍ଭିକଭାବରେ ବିଚରଣ କରୁଥିବା, *'ଗୋରୁତ' ଅର୍ଥାତ୍ (ଗାଈ ବୋବାଇଲେ ଯେତେଦୂର ଶୁଣାଯିବ ସେତିକି ଲମ୍ବା ଚଉଡ଼ା ଥିବା ବା ଦୁଇକୋଶ ଲମ୍ବା ଚୌଡ଼ା ଥିବା) 'ଅଭୟ ବନ' ନାମକ ସ୍ଥାନ ଦାନକରିବେ ଏବଂ ତପସ୍ୱୀମାନଙ୍କୁ ମଧ୍ୟ ସେହି ଆକାରର 'ତପୋବନ' ଦାନକରିବେ । ଉପର୍ଯ୍ୟୁକ୍ତ ଲମ୍ବା ଚଉଡ଼ାର ଗୋଟିଏମାତ୍ର ପ୍ରବେଶମାର୍ଗ-ଯୁକ୍ତ, ଗଳୀଦ୍ୱାରା ବେଷ୍ଟିତ, ସ୍ୱାଦିଷ୍ଟଫଳବୃକ୍ଷ – ଲତାଗୁଳ୍ମପରିପୂର୍ଣ୍ଣ, କଂଟକହୀନ ବୃକ୍ଷ, ଅଳ୍ପ ଜଳପୂର୍ଣ୍ଣ ଅଗଭୀର ଜଳାଶୟ, ସୁନ୍ଦର ସୁନ୍ଦର

† ମାଲଗର୍ଭ ଶୈଳ ଶର୍କରିଲପ୍ରାୟ କୃଷିରହିତ ଭୂମିରେ ।

* ଗୋରୁତ = ଗବ୍ୟୂତ (ଦୁଇକୋଶ) ଗବ୍ୟୂତଃସ୍ତ୍ରୀ କୋଶଯୁଗଂ ଇତ୍ୟମରଃ ।

ମାର୍ଗାୟୁକହସ୍ତିହସ୍ତିନୀକଲଭଂ ମୃଗବନଂ ବିହାରାର୍ଥଂ ରାଜ୍ଞଃ କାରୟେତ୍ । (୨) ସର୍ବାତିଥିମୃଗଂ ପ୍ରତ୍ୟନ୍ତେ ଚାନ୍ୟନ୍ମୃଗବନଂ ଭୂମିବଶେନ ବା ନିବେଶୟେତ୍ । କୁପ୍ୟପ୍ରଦିଷ୍ଟାନାଂ ଚ ଦ୍ରବ୍ୟାଣାମେକୈକଶୋ ବା ବନଂ ନିବେଶୟେଦ୍, ଦ୍ରବ୍ୟବନକର୍ମାନ୍ତାନଟବୀଶ୍ଚ ଦ୍ରବ୍ୟ-ବନାପାଶ୍ରୟାଃ । (୩) ପ୍ରତ୍ୟନ୍ତେ ହସ୍ତିବନମଟବ୍ୟାରକ୍ଷଂ ନିବେଶୟେତ୍ । ନାଗବନାଧ୍ୟକ୍ଷଃ ପାର୍ବତଂ ନାଦେୟଂ ସାରସମାନୂପଂ ଚ ନାଗବନଂ ବିଦିତପର୍ଯ୍ୟନ୍ତପ୍ରବେଶନିଷ୍କସନଂ ନାଗବନପାଳୈଃ

ମୃଗାଦି ପ୍ରାଣୀ, ଭଗ୍ନନଖଦନ୍ତ ବ୍ୟାଘ୍ର ସର୍ପାଦି ହିଂସ୍ରଜନ୍ତୁ, ହସ୍ତି ହସ୍ତିନୀ ଓ ଓ ହସ୍ତିଶାବକଯୁକ୍ତ ଏକ ମୃଗବନ ଅର୍ଥାତ୍ 'ବିହାରବନ' ମଧ୍ୟ ନିର୍ମାଣ କରାଇବେ । (୨) ଏହି ବିହାରବନ ନିକଟରେ ବା ଅନ୍ୟକୌଣସି ମୃଗବନଯୋଗ୍ୟ ଭୂମିରେ ରାଜା ବାହାର ଦେଶର ଜଙ୍ଗଲରୁ ବ୍ୟାଧମାନଙ୍କ ଭୟରେ ପଳାଇ ଆସୁଥିବା ଆଶ୍ରୟାର୍ଥୀ (ମୃଗାଦି) ପଶୁମାନଙ୍କ ସକାଶେ ଅନ୍ୟ ମୃଗବନ ନିର୍ମାଣ କରାଇବେ । ଏହି ଅଧିକରଣରେ ଆଲୋଚିତ ହୋଇଥିବା 'କୁପ୍ୟାଧ୍ୟକ୍ଷ ପ୍ରକରଣୋକ୍ତ ଶାକ ତିନିଶାଦି ସାରଦାରୁବର୍ଗ (ଉତ୍କୃଷ୍ଟ ଉପକରଣାଦି ନିର୍ମାଣଯୋଗ୍ୟ କାଷ୍ଠବର୍ଗ), ଉଟଜ ଚିମିୟାଦି ବେଣୁବର୍ଗ (ବାଉଁଶସମୂହ) ଓ ମାଳତୀମୂର୍ବାଦି ବଲ୍କବର୍ଗ (ବକଳ ଥିବା ଗଛସମୂହ) ସକାଶେ ସ୍ୱତନ୍ତ୍ରଭାବେ ଗୋଟିଏ ଗୋଟିଏ ବନ ନିର୍ମାଣ କରାଇବେ । ବଣରେ କାମକରି ଜୀବିକାନିର୍ବାହ କରୁଥିବା ବଣୁଆମାନଙ୍କୁ ଏହି ବଣମାନଙ୍କର ରକ୍ଷଣାବେକ୍ଷଣ ସକାଶେ ନିଯୁକ୍ତ କରିବେ । (୩) ରାଜା ମନୁଷ୍ୟବସତି ନଥିବା ବିସ୍ତୀର୍ଣ୍ଣ ଜାଗାରେ ବନେଚର ଅର୍ଥାତ୍ ବନବାସୀ ମନୁଷ୍ୟମାନଙ୍କଦ୍ୱାରା ସୁରକ୍ଷିତ ହସ୍ତିବନ ନିର୍ମାଣ କରାଇବେ । ଏହି ହସ୍ତିବନର ଅଧ୍ୟକ୍ଷ ପର୍ବତ, ନଦୀତଟ, ସରୋବରାଦି ଜଳାଶୟ ନିକଟରେ ନିର୍ମାଣ କରାଯାଇଥିବା ହସ୍ତିବନକୁ ଏହି ବନର ସୀମା ଓ ପ୍ରବେଶ ନିର୍ଗମ ପଥକୁ (ଯିବା ଆସିବା ରାସ୍ତାକୁ) ଜାଣିଥିବା ବନରକ୍ଷକମାନଙ୍କଦ୍ୱାରା ପାଳନ କରାଇବେ । *ହସ୍ତିଘାତକ (ହାତୀଶିକାରୀ) କରାତ ଶବର ଓ

* ହାତୀଦାନ୍ତ ବିକ୍ରୟକରିବା ଲୋଭରେ ଶିକାରୀମାନେ ହାତୀ ଶିକାର କରନ୍ତି ।

ପାଳୟେତ୍ । ହସ୍ତିଘାତକଂ ହନ୍ୟୁଃ । ଦନ୍ତଯୁଗଂ ସ୍ୱୟଂ ମୃଗସ୍ୟା-ହରତଃ ସପାଦଚତୁଷ୍ପଣୋ ଲଭଃ । (୪) ନାଗବନପାଳା ହସ୍ତିପକ-ପାଦପାଶିକସୈମିକବନଚରକପାରିକର୍ମିକସଖା ହସ୍ତିମୂତ୍ରପୁରୀଷଚ୍ଛନ୍ନ-ଗନ୍ଧା ଭଲ୍ଲାତକୀଶାଖାପ୍ରଚ୍ଛନ୍ନାଃ ପଞ୍ଚଭିଃ ସପ୍ତଭିର୍ବା * ହସ୍ତିବନ୍ଧକୀଭିଃ ସହ ଚରନ୍ତଃ ଶଯ୍ୟାସ୍ଥାନପଦ୍ୟାଲଣ୍ଡକୂଳପାତୋଦ୍ଦେଶେନ ହସ୍ତିକୁଳପର୍ଯ୍ୟଗ୍ରଂ ବିଦ୍ୟୁଃ । (୫) ଯୂଥଚରମେକଚରଂ ନିର୍ଯୂଥଂ ଯୂଥପତିଂ ହସ୍ତିନଂ ବ୍ୟାଳଂ ମତ୍ତଂ ପୋତଂ † ବନ୍ଧମୁକ୍ତଂ ଚ ନିବନ୍ଧେନ ବିଦ୍ୟୁଃ । ଅନୀକସ୍ଥପ୍ରମାଣୈଃ ପ୍ରଶସ୍ତବ୍ୟଞ୍ଜନାଚାରାନ୍ ହସ୍ତିନୋ ଗୃହ୍ଣୀୟୁଃ । ହସ୍ତିପ୍ରଧାନୋ ହି ବିଜୟୋ ରାଜ୍ଞାଂ । ପରାନୀକବ୍ୟୂହଦୁର୍ଗ-

---

ପୁଳିନ୍ଦମାନେ ହସ୍ତିଶିକାର କରିବା ଜଣାଗଲେ ରାଜା ତାଙ୍କୁ ଜବଦ କରି ମରାଇଦେବେ । ଯେଉଁ ବ୍ୟକ୍ତି ନିଜେ ମରଯାଇଥିବା ହସ୍ତୀର ଦୁଇଗୋଟି ଦାନ୍ତ ଆଣି ରାଜାଙ୍କୁ ଭେଟିଦେବ, ରାଜା ତାକୁ ଚାରିପଣ ଏକପାଦ ସ୍ୱର୍ଣ୍ଣମୁଦ୍ରା ପାରିତୋଷିକ ଦେବେ । (୪) ହସ୍ତିର ମଳମୂତ୍ରର ଗନ୍ଧ ସାହାଯ୍ୟରେ ଅନ୍ୟଗନ୍ଧକୁ ନିବାରଣ କରୁଥିବା ଓ ଭାଲିଆ ଡାଳ ଘୋଡ଼ାଇ ହୋଇଥିବା ହସ୍ତିବନପାଳକ, ହାତୀମାହୁନ୍ତ, ହାତୀପାଦରେ ପାଶ ଲଗାଇବା ବ୍ୟକ୍ତି, ସୀମାରକ୍ଷକ ସୈନ୍ୟ, ବନଚର କିରାତାଦି ବ୍ୟକ୍ତି, ହସ୍ତିର ପରିଚର୍ଯ୍ୟାନିପୁଣ ବ୍ୟକ୍ତି ଓ ପାଞ୍ଚ ବା ସାତଗୋଟି ପୋଷା ମାଈ ହାତୀଙ୍କ ସହିତ ଭ୍ରମଣ କରି, ହାତୀର ଶୋଇବା ଓ ରହିବା ସ୍ଥାନ, ପାଦଚିହ୍ନ, ମଳ ଓ ଦନ୍ତରେ ତାଡ଼ନ କରୁଥିବା ନଦୀକୂଳ ଇତ୍ୟାଦି ସ୍ଥାନ ଦେଖି ହାତୀପଲର ଅନୁସନ୍ଧାନ କରିବେ । (୫) ଯୂଥ ସହିତ ବୁଲିବା ହସ୍ତୀ, ଏକାକୀ ବୁଲିବା ହସ୍ତୀ, ଯୂଥରୁ ବାହାରିପଡ଼ିଥିବା ହସ୍ତୀ, ହସ୍ତିଯୂଥପତି (ପ୍ରଧାନ ଦଳପତି ହସ୍ତୀ), କ୍ରୂରସ୍ୱଭାବ ହସ୍ତୀ, ମଦମତ୍ତ ହସ୍ତୀ, ଦଶବର୍ଷ ବୟସର ହସ୍ତିଶାବକ (ହାତିପିଲା) ଓ ବନ୍ଧନମୁକ୍ତ ହସ୍ତିମାନଙ୍କର ହିସାବ ରାଜା ନିଜର ହସ୍ତିପାଳକମାନଙ୍କଦ୍ୱାରା ହିସାବଖାତାରେ ଲେଖାଇବେ । ସେନା ମଧ୍ୟରେ ଥିବା ପ୍ରସିଦ୍ଧ ବୀରପୁରୁଷମାନଙ୍କ ନିର୍ବାଚନ ଅନୁସାରେ ଉତ୍ତମଲକ୍ଷଣଯୁକ୍ତ ହସ୍ତିମାନଙ୍କୁ ଧରିଆଣି ହସ୍ତିଶିକ୍ଷାବିଶାରଦମାନଙ୍କଦ୍ୱାରା

---

* 'ବନ୍ଧକୀ' ଖ, ପାଠଃ । † 'ବନ୍ଧମୁ' କ, ଗ ।

ସ୍କନ୍ଧାବାରପ୍ରମର୍ଦ୍ଦନା ହ୍ୟତିପ୍ରମାଣଶରୀରାଃ ପ୍ରାଣହରକର୍ମାଣୋ ହସ୍ତିନ ଇତି ।

(୭) କଳିଙ୍ଗାଙ୍ଗଗଜାଃ ଶ୍ରେଷ୍ଠାଃ ପ୍ରାଚ୍ୟାଶ୍ଚେଦିକରୂଶଜାଃ ।
ଦାଶାର୍ଣ୍ଣାଶ୍ଚାପରାନ୍ତାଶ୍ଚ ଦ୍ୱିପାନାଂ ମଧ୍ୟମା ମତାଃ ।
(୭) ସୌରାଷ୍ଟ୍ରିକାଃ * ପାଞ୍ଚନଦାସ୍ତେଷାଂ ପ୍ରତ୍ୟବରାଃ ସ୍ମୃତାଃ ।
ସର୍ବେଷାଂ କର୍ମଣାବୀର୍ଯ୍ୟଂ ଜବସ୍ତେଜଶ୍ଚ ବର୍ଦ୍ଧତେ ॥

—0—

ସେମାନଙ୍କୁ ଶିକ୍ଷାଦେବେ । ରାଜାମାନଙ୍କର ବିଜୟ ହସ୍ତିମାନଙ୍କ ଉପରେ ବହୁପରିମାଣରେ ନିର୍ଭର କରେ । କାରଣ, ହସ୍ତିମାନେ ବିଶାଳକାୟ ପ୍ରାଣୀ ହୋଇଥିବା ଯୋଗୁଁ ଶତ୍ରୁର ପ୍ରାଣନାଶକର କର୍ମ ଅର୍ଥାତ୍ ଶତ୍ରୁସୈନ୍ୟ, ଶତ୍ରୁବ୍ୟୂହ, ଶତ୍ରୁଦୁର୍ଗ, ଶତ୍ରୁର ସୈନ୍ୟଛାଉଣି ଇତ୍ୟାଦିର ଦଳନକାର୍ଯ୍ୟ ଅନାୟାସରେ କରିପାରନ୍ତି । ହସ୍ତୀ ବ୍ୟତୀତ ଅନ୍ୟ କୌଣସି ଜନ୍ତୁ ଏପରି କାର୍ଯ୍ୟ କରିପାରନ୍ତି ନାହିଁ । (୭, ୭) କଳିଙ୍ଗ, ଅଙ୍ଗ, ଚେଦୀ ଓ କରୂଶ ଦେଶୋତ୍ପନ୍ନ ହସ୍ତୀ ସର୍ବଶ୍ରେଷ୍ଠ, ଦଶାର୍ଣ୍ଣ ଏବଂ ପଶ୍ଚିମଦେଶୋତ୍ପନ୍ନ ହସ୍ତୀ ମଧ୍ୟମ ଏବଂ ସୌରାଷ୍ଟ୍ର ଓ ପଞ୍ଚନଦ (ପଞ୍ଜାବ) ଦେଶର ହସ୍ତୀ ସାଧାରଣ (ଅଧମ) ଅଟନ୍ତି । ହସ୍ତିମାନଙ୍କର ବଳ ଓ ବିକ୍ରମକୁ ଉତ୍ତମ ଶିକ୍ଷାଦ୍ୱାରା ବୃଦ୍ଧି କରାଯାଇଥାଏ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଦ୍ୱିତୀୟୋଽଧ୍ୟାୟଃ—ଭୂମିଚ୍ଛିଦ୍ରବିଧାନମ୍ ।

* 'ପାଞ୍ଚଜନାଃ' ଖ, ପାଠଃ ।

## ତୃତୀୟୋଽଧ୍ୟାୟଃ

## ଏକବିଂଶ ପ୍ରକରଣମ୍—ଦୁର୍ଗବିଧାନମ୍

## CONSTRUCTION OF FORTS

ଏ ଅଧ୍ୟାୟରେ ଦୁର୍ଗନିର୍ମ୍ମାଣବିଧି ବର୍ଣ୍ଣନା କରାଯିବ ।

(୧) ଚତୁର୍ଦ୍ଦିଶଂ ଜନପଦାନ୍ତେ ସାଂପରାୟିକଂ ଦୈବକୃତଂ ଦୁର୍ଗଂ କାରୟେତ୍, ଅନ୍ତର୍ଦ୍ଵୀପଂ ସ୍ଥଳଂ ବା ନିମ୍ନାବରୁଦ୍ଧମୌଦକଂ, ପ୍ରାସ୍ତରଂ ଗୁହାଂ ବା ପାର୍ବତଂ, ନିରୁଦକସ୍ତମ୍ବମିରିଣଂ ବା ଧାନ୍ୱନଂ, ଖଞ୍ଜନୋଦକଂ ସ୍ତମ୍ବଗହନଂ ବା ବନଦୁର୍ଗମ୍ । ତେଷାଂ ନଦୀପର୍ବତଦୁର୍ଗଂ ଜନପଦାରକ୍ଷସ୍ଥାନଂ, ଧାନ୍ୱନବନଦୁର୍ଗମଟବୀସ୍ଥାନମ୍ ଆପଦ୍ୟପସାରୋ ବା । (୨) ଜନପଦମଧ୍ୟେ ସମୁଦୟସ୍ଥାନଂ ସ୍ଥାନୀୟଂ ନିବେଶୟେତ୍ ବାସ୍ତୁକପ୍ରଶସ୍ତେ ଦେଶେ

---

(୧) ରାଜା ଜନପଦର ଚତୁଃସୀମାନ୍ତରେ ପ୍ରାକୃତିକ ବନପର୍ବତାଦି ବେଷ୍ଟିତ ଯୁଦ୍ଧୋଚିତ ଅର୍ଥାତ୍ ଶତ୍ରୁର ଆକ୍ରମଣରୁ ରକ୍ଷାପାଇବା ଓ ଶତ୍ରୁକୁ ସହଜରେ ଆକ୍ରମଣ କରିବାଯୋଗ୍ୟ ସ୍ଥାନରେ ଦୈବକୃତ ଦୁର୍ଗ ଅର୍ଥାତ୍ ପ୍ରାକୃତିକ ଦୁର୍ଗଗୁଡ଼ିକୁ ନିର୍ମାଣ କରାଇବେ । ଚତୁର୍ଦ୍ଦିଗ ନଦୀବେଷ୍ଟିତ ଦ୍ଵୀପ ମଧ୍ୟରେ କିମ୍ବା ବିରାଟ ସରୋବରବେଷ୍ଟିତ ଭୂଖଣ୍ଡରେ 'ଔଦକ' ନାମକ ଦୁର୍ଗ, ପର୍ବତ ଓ ପ୍ରସ୍ତରମୟ ବା ଗୁହାମଧ୍ୟଗତ ସ୍ଥାନରେ 'ପାର୍ବତ' ଦୁର୍ଗ, ଜଳ ଓ ତୃଣଶୂନ୍ୟ କିମ୍ବା ଊଷର ଅର୍ଥାତ୍ ଟାଙ୍ଗର ସ୍ଥାନରେ 'ଧାନ୍ୱନ' ଦୁର୍ଗ ଏବଂ ଚତୁର୍ଦ୍ଦିଗ ପଙ୍କିଳ ସ୍ଥଳବେଷ୍ଟିତ ଅର୍ଥାତ୍ ଯେଉଁଥିରେ ଗଲେ କାଦୁଅରେ ଗୋଡ଼ ଲଟକିଯାଏ ଏପରିସ୍ଥାନରେ ବା ଘଞ୍ଚ କଣ୍ଟାଲଟାଯୁକ୍ତ ସ୍ଥାନରେ 'ବନଦୁର୍ଗ' ନିର୍ମ୍ମାଣ କରାଇବେ । ଏମାନଙ୍କ ମଧ୍ୟରୁ ନଦୀ ଓ ପର୍ବତଦୁର୍ଗ ଦେଶରକ୍ଷା ପାଇଁ ଏବଂ ଧାନ୍ୱନ ଓ ବନଦୁର୍ଗ ଆତ୍ମରକ୍ଷା ପାଇଁ (ଆପଦ ସମୟରେ ନିଜେ ଓ ନିଜ ରାଜ୍ୟଲୋକଙ୍କୁ କୌଶଳକ୍ରମେ ଅପସାରିତ କରି ଗୋପନଭାବେ ରକ୍ଷାକରିବା ପାଇଁ) ବ୍ୟବହାର କରିବେ । (୨) ରାଜା ରାଜ୍ୟର କେନ୍ଦ୍ରସ୍ଥଳମାନଙ୍କରେ ଧନଉତ୍ପତ୍ତିକାରକ ବଡ଼ବଡ଼ ସହରମାନ ବସାଇବେ । ବାସ୍ତୁବିଦ୍ୟା(ଶିଳ୍ପଶାସ୍ତ୍ର)ବିଶାରଦ ଶିଳ୍ପିମାନେ

ନଦୀସଙ୍ଗମେ ହ୍ରଦସ୍ୟ ବା ଅବଶୋଷସ୍ୟାଙ୍କେ ସରସସ୍ତଟାକସ୍ୟ ବା ବୃତ୍ତଂ ଦୀର୍ଘଂ ଚତୁରଶ୍ରଂ ବା ବାସ୍ତୁକବଶେନ ପ୍ରଦକ୍ଷିଣୋଦକଂ ପଣ୍ୟପୁଟଭେଦନମଂସବାରପଥାଭ୍ୟାମୁପେତମ୍ । ତସ୍ୟ ପରିଖା ସ୍ତିସ୍ରୋ ଦଣ୍ଡାନ୍ତରାଃ କାରୟେତ୍ । ଚତୁର୍ଦ୍ଦଶ ଦ୍ୱାଦଶ ଦଶେତି ଦଣ୍ଡାନ୍ ବିସ୍ତୀର୍ଣ୍ଣାଃ ବିସ୍ତାରାଦବଗାଧାଃ ପାଦୋନମର୍ଦ୍ଧଂ ବା ତ୍ରିଭାଗମୂଳା ମୂଳେ ଚତୁରଶ୍ରାଃ ପାଷାଣୋପହିତାଃ ପାଷାଣେଷ୍ଟକାବଦ୍ଧପାର୍ଶ୍ୱା ବା ତୋୟାନ୍ତିକୀରାଗନ୍ତୁତୋୟପୂର୍ଣ୍ଣା ବା ସପରିବାହାଃ ପଦ୍ମଗ୍ରାହବତୀଃ । (୩) ଚତୁର୍ଦ୍ଦଣ୍ଡାବକୃଷ୍ଟଂ ପରିଖାୟାଃ ଷଡ୍‌ଦଣ୍ଡୋଚ୍ଛ୍ରିତମବରୁଦ୍ଧଂ ତଦ୍‌ଦ୍ୱିଗୁଣବିଷ୍କମ୍ଭଂ ଖାତାଦ୍ ବପ୍ରଂ କାରୟେଦ୍ ଊର୍ଦ୍ଧ୍ୱଚୟଂ ମଞ୍ଚପୃଷ୍ଠଂ

ଯେଉଁ ସ୍ଥାନରେ ସହର ବସାଇବା ପାଇଁ ନିର୍ଦ୍ଦେଶ ଦେବେ, ସେହି ସ୍ଥାନରେ ଏବଂ ନଦୀତଟ, ଅଶୁଷ୍କ ହ୍ରଦ ବା ସରୋବର ନିକଟରେ, ଭୂମିର ଭୌଗୋଳିକ ଅବସ୍ଥିତି ଅନୁସାରେ ବୃତ୍ତାକାର, ଦୀର୍ଘାକାର ଓ ଚତୁରସ୍ରାକାର, ଚତୁର୍ଦ୍ଦିଗରେ ନଦୀ କିମ୍ବା କୃତ୍ରିମ କେନାଲବେଷ୍ଟିତ ଏବଂ କ୍ରୟବାଣିଜ୍ୟ ସକାଶେ ଉପଯୁକ୍ତ ସ୍ଥଳପଥ ଓ ଜଳପଥଯୁକ୍ତ ବାଣିଜ୍ୟର କେନ୍ଦ୍ରସ୍ଥଳ ହୋଇଥିବା ସହରଗୁଡ଼ିକୁ ନିର୍ମାଣ କରାଇ ଏହାର ଚତୁର୍ଦ୍ଦିଗରେ ଏକଦଣ୍ଡ ବା ଚାରିହାତ ଅନ୍ତରରେ ଛପନ, ଅଠଚାଳିଶ ଓ ଚାଳିଶ ହାତ ଚଉଡ଼ା ଥିବା ତିନିଗୋଟି ଖାଇ (ଜଳୀ) ନିର୍ମାଣ କରାଇବେ । ଜଳୀର ଗଭୀର ଓସାରର ଚାରିଭାଗରୁ ତିନିଭାଗ କିମ୍ବା ଅର୍ଦ୍ଧଭାଗ ହେବା ଆବଶ୍ୟକ । ଏହି ଜଳୀର ତଳ-ଭାଗ ଉପରଭାଗ ଚଉଡ଼ାର ଏକତୃତୀୟାଂଶ ହେବା ଆବଶ୍ୟକ ଏବଂ ଏହାର ପାର୍ଶ୍ୱଗୁଡ଼ିକ କଠାପଥର ବା ଇଟାଦ୍ୱାରା ବନ୍ଧାହେବା ଆବଶ୍ୟକ । ଏହି ଜଳୀରେ ଜଳ ଝରି ଭର୍ତ୍ତି ହୋଇପାରିଲେ ଭଲ, ନଚେତ୍ ଏଥିରେ ଅନ୍ୟ ଜଳଭଣ୍ଡାର ବା ନଦୀପ୍ରଭୃତିରୁ ଜଳ ଆଣି ଭର୍ତ୍ତି କରିବାକୁ ହେବ । ଏଥିରେ ଜଳର ପ୍ରବେଶମାର୍ଗ ଓ ନିଃସରଣମାର୍ଗ ରହିବ ଏବଂ ଏହାର ଭିତରେ ସୁନ୍ଦର ଓ ବିବିଧବର୍ଣ୍ଣର ପଦ୍ମଫୁଲ ଓ ଭୟଙ୍କର କୁମ୍ଭୀରମାନେ ରହିବାର ବ୍ୟବସ୍ଥା କରିବାକୁ ହେବ । (୩) ଭିତର ପାଖ ଜଳୀର ଷୋହଳ ହାତ ଦୂରରେ ଚବିଶ ହାତ ଉଚ୍ଚ ଓ ଅଠଚାଳିଶ ହାତ ଚଉଡ଼ା ଥିବା ପ୍ରାକାର (ଆବରଣ,

(୨)—ଦଣ୍ଡ—୯୬ ଅଙ୍ଗୁଳରେ ୧ ହାତ ଓ ୪ ହାତରେ ୧ ଦଣ୍ଡ । **Dand = 6 feet.**

କୁମ୍ଭକୁକ୍ଷିକଂ ବା ହସ୍ତିଭିର୍ଗୋଭିଶ୍ଚ କ୍ଷୁଣ୍ଣଂ କଣ୍ଟକଗୁଲ୍ମବିଷବଲ୍ଲୀପ୍ରତାନବନ୍ତମ୍ । ପାଂସୁଶେଷେଣ ବାସ୍ତୁଚ୍ଛିଦ୍ରଂ ବା ପୂରୟେତ୍ । (୪) ବପ୍ରସ୍ୟୋପରି ପ୍ରାକାରଂ ବିଷ୍କମ୍ଭଦ୍ୱିଗୁଣୋତ୍ସେଧମୈଷ୍ଟକଂ ଦ୍ୱାଦଶହସ୍ତାଦୂର୍ଦ୍ଧ୍ୱମୋଜଂ ଯୁଗ୍ମଂ ବା ଆଚତୁର୍ବିଂଶତିହସ୍ତାଦିତି କାରୟେତ୍ । ରଥଚର୍ଯ୍ୟାସଂଚାରଂ ତାଳମୂଳମୁରଜକୈଃ କପିଶୀର୍ଷକୈ * ଶ୍ଚାଚିତାଗ୍ରଂ ପୃଥୁଶିଳାସଂହତଂ ବା ଶୈଳଂ କାରୟେଦ୍, ନତ୍ୱେବ

କାନ୍ତୁ) ନିର୍ମାଣ କରିବେ । ଏହି କାନ୍ତୁ ଖାଇ (ଜଲୀ) ମାନଙ୍କରୁ ଖୋଳା ହୋଇଥିବା ମାଟିରେ ତିଆର କରିବେ । ଏହା ସୁଦୃଢ଼ ହେବା ସକାଶେ ହାତୀ ଏବଂ ବଳଦମାନଙ୍କ ଦ୍ୱାରା କୁଦାଇବେ । ଏହି ପ୍ରାକାର (କ) 'ଊର୍ଦ୍ଧ୍ୱଚୟ', ଅର୍ଥାତ୍ ତଳଭାଗ ଓସାର ଓ ଉପରଭାଗ କମସଂକୋଚ; (ଖ) 'ମଞ୍ଚପୃଷ୍ଠ' ଅର୍ଥାତ୍ ତଳଉପର ସମାନ ଏବଂ (ଗ) 'କୁମ୍ଭକୁକ୍ଷିକ' ଅର୍ଥାତ୍ ମୃଦଙ୍ଗାକାରରେ ତିନିପ୍ରକାର କରାଯାଇପାରିବ । ଏହି ତିନିପ୍ରକାର ପ୍ରାକାର ମଧ୍ୟରୁ ଯେ କୌଣସି ଗୋଟିଏ ନିର୍ମାଣ କରି ତାହାକୁ କଣ୍ଟକବୃକ୍ଷ ଓ ବିଷଲତା ଗୁଳ୍ମାଦି ଦ୍ୱାରା ଆଚ୍ଛାଦିତ କରିବାକୁ ହେବ । ପ୍ରାଚୀର ନିର୍ମାଣରୁ ବଳକା ହେବା ଖାଇଖୋଳା ମାଟିରେ ବାସ୍ତୁ ମଧ୍ୟରେ ଥିବା ଅନ୍ୟାନ୍ୟ ଖାଲଖଣ୍ଡା ପୂର୍ଣ୍ଣ କରିବେ । (୪) ଏହି ମୃଣ୍ମୟ ପ୍ରାକାରର ଉପରଭାଗରେ ଓସାରଠାରୁ ଦ୍ୱିଗୁଣ ଉଚ୍ଚଥିବା ଓ ବାରହାତରୁ ଅଧିକ ଉଚ୍ଚ ହୋଇଥିବା ଗୋଟିଏ ଇଷ୍ଟକମୟ (ପୋଡ଼ାଇଟାରେ ତିଆରି) ପ୍ରାଚୀର ନିର୍ମାଣ କରାଇବେ । ଏହାର ଉଚ୍ଚତା ବାରହାତରୁ ଅଧିକ, ଓଜସଂଖ୍ୟକ ଅର୍ଥାତ୍ ବିଷମ ସଂଖ୍ୟାରେ (ତେର, ପନ୍ଦର, ସତର ଇତ୍ୟାଦି ଅସମାନ ସଂଖ୍ୟାରେ) ବା ଯୁଗ୍ମ ଅର୍ଥାତ୍ ସମସଂଖ୍ୟାରେ (ଚଉଦ, ଷୋହଳ, ଅଠର ଇତ୍ୟାଦି ସମାନ ସଂଖ୍ୟାରେ) ଚବିଶି ହାତ ପର୍ଯ୍ୟନ୍ତ କରିବାକୁ ହେବ । ଏ ପ୍ରାକାର ଉପରର ଚଉଡ଼ା ଏପରି ହେବା ଆବଶ୍ୟକ ଯାହା ଉପରେ କି ଗୋଟିଏ ରଥ ବିନାବାଧାରେ ଯାତାୟାତ କରିପାରିବ । ପ୍ରାକାରର ଅଗ୍ରଭାଗ ତାଳମୂଳାକାର, ମୃଦଙ୍ଗାକାର ବା ମର୍କଟମସ୍ତକାକାର କରି ଇଟା, ପଥର ଓ ଚୂନରେ କିମ୍ବା କେବଳ ପଥରରେ ନିର୍ମାଣ କରାଇବେ ସିନା ଅଳସିକ ଅଗ୍ନିଭୟ ଥିବା

* ଶ୍ଚାରଚ ଗ ପାଠଃ ।

କାଷ୍ଠମୟମ୍, ଅଗ୍ନିରବହିତୋ ହି ତସ୍ମିନ୍ ବସତି । (୫) ବିଷ୍କମ୍ଭଚତୁରଶ୍ରମଟ୍ଟାଳକମୁତ୍ସେଧସମାବକ୍ଷେପସୋପାନଂ କାରୟେତ୍, ତ୍ରିଂଶଦ୍ଦଣ୍ଡାନ୍ତରଂ ଚ । (୬) ଦ୍ୱୟୋରଟ୍ଟାଳକୟୋର୍ମଧ୍ୟେ ସହର୍ମ୍ୟଦ୍ୱିତଳାମଧ୍ୟର୍ଧାୟାମାଂ ପ୍ରତୋଳୀଂ କାରୟେତ୍ । ଅଟ୍ଟାଳକପ୍ରତୋଳୀମଧ୍ୟେ ତ୍ରିଧାନୁଷ୍କାଧିଷ୍ଠାନଂ ସପିଧାନଚ୍ଛିଦ୍ରଫଳକସଂହତମିନ୍ଦ୍ରକୋଶଂ କାରୟେତ୍ । (୭) ଅନ୍ତରେଷୁ ଦ୍ୱିହସ୍ତ-ବିଷ୍କମ୍ଭଂ ପାର୍ଶ୍ୱେ ଚତୁର୍ଗୁଣାୟାମମନୁପ୍ରାକାରମ୍ ଅଷ୍ଟହସ୍ତାୟତଂ ଦେବପଥଂ କାରୟେତ୍ । ଦଣ୍ଡାନ୍ତରା ଦ୍ୱିଦଣ୍ଡାନ୍ତରା ବାଚର୍ଯ୍ୟାଃ କାରୟେଦ୍ ଅଗ୍ରାହ୍ୟେ ଦେଶେ ପ୍ରଧାବିତକାଂ ନିଷ୍କୁହଦ୍ୱାରଂ ଚ । (୮) ବହିର୍ଜାନୁଭଞ୍ଜନୀ-

---

ଯୋଗୁଁ କାଠରେ କଦାପି କରାଇବେ ନାହିଁ । (୫) ଏହି ପ୍ରାକାର ଉପରେ ପ୍ରାକାରର ଓସାରର ଅନୁଯାୟୀ ପ୍ରତି ତିରିଶିଦଣ୍ଡ ବା ଏକଶତ କୋଡ଼ିଏ ହାତ ବ୍ୟବଧାନରେ ଉପରକୁ ସିଡ଼ିଥିବା ଗୋଟିଏ ଗୋଟିଏ ଅଟ୍ଟାଳିକା (ରଣଗୃହ) ନିର୍ମ୍ମାଣ କରାଇବେ । (୬) ଦୁଇ ଅଟ୍ଟାଳିକା ମଧ୍ୟରେ ପ୍ରାକାର ଓସାରର ଅଢ଼ାଇଗୁଣ ଉଚ୍ଚଥିବା ଦୋମହଲା ପ୍ରତୋଳୀ (ଗୃହବିଶେଷ) ନିର୍ମ୍ମାଣ କରାଇବେ । ଅଟ୍ଟାଳିକା ଓ ପ୍ରତୋଳୀ ମଧ୍ୟରେ ତିନିଜଣ ଧନୁର୍ଦ୍ଧାରୀ ବସିପାରିବା ଭଳି ଉପରେ ଘୋଡ଼ଣି ଥିବା ଓ ଚତୁର୍ଦ୍ଦିଗ ଅଳପ ଛିଦ୍ରରେ ଥିବା ଚିକ୍କଣ କାଠଫଳାବାଡ଼ରେ ବେଢ଼ାହୋଇଥିବା ଓ ତା' ମଧ୍ୟରେ ଗୋଟିଏ ଖଟ ଥିବା 'ଇନ୍ଦ୍ରକୋଶ' ନାମକ ସ୍ଥାନ ନିର୍ମ୍ମାଣ କରାଇବେ । (୭) ଅଟ୍ଟାଳୀ, ପ୍ରତୋଳୀ ଓ ଇନ୍ଦ୍ରକୋଶ ମଧ୍ୟରେ ଦୁଇହସ୍ତ ବିସ୍ତାର ଥିବା ଓ ପ୍ରାକାର ପାର୍ଶ୍ୱରେ ଅଠହାତ ଅୟୁତ ଥିବା ଦେବପଥ (ଗୁପ୍ତପଥ) ନିର୍ମ୍ମାଣ କରାଇବେ ଏବଂ ଚାରିହାତ କିମ୍ବା ଆଠହାତ ଅନ୍ତରରେ ଚଢ଼ିବା-ଓହ୍ଲାଇବା ପାଇଁ ସିଡ଼ି ନିର୍ମ୍ମାଣ କରାଇବେ । ଶତ୍ରୁର ବାଣ ପହଞ୍ଚିନପାରିବା ଭଳି ଜାଗାରେ ପ୍ରଧାବିତକା ଅର୍ଥାତ୍ ଯୋଦ୍ଧାମାନେ ସୁଖରେ ଆତ୍ମଗୋପନ କରିପାରୁଥିବା ଆବୃତ ଜାଗା ଏବଂ ତନ୍ମଧ୍ୟରେ ଶତ୍ରୁପକ୍ଷୀୟ ସୈନ୍ୟଙ୍କ ଚେଷ୍ଟା ଗୂଢ଼ଭାବରେ ଦେଖିପାରିବା ସକାଶେ ଗୁପ୍ତ କୋରଡ଼ ଓ ଝରକମାନ ରଖାଇବେ । (୮) ଜଳୀର ବାହାର ପ୍ରଦେଶରେ 'ଜାନୁଭଞ୍ଜନୀ' ନାମକ କାଷ୍ଠମୟ ଯନ୍ତ୍ରକୀଳକ ଅଣ୍ଟୁକାଠ ବା ଲୁହାରେ ତିଆରି ହୋଇଥିବା

ତ୍ରିଶୂଳପ୍ରକରକୂପକୂଟାବପାତକଣ୍ଟକପ୍ରତିସରାହିପୃଷ୍ଠତାଳପତ୍ରଶୃଙ୍ଗାଟକ ଶ୍ୱଦଂଷ୍ଟ୍ରାର୍ଗଳୋପସ୍କନ୍ଦନପାଦୁକାମ୍ବରୀଷୋଦପାନକୈଃ ଛନ୍ନପଥଂ କାରୟେତ୍ । (୯) ପ୍ରାକାରମୁଭୟତୋ ମଣ୍ଡପକମଧ୍ୟର୍ଧଦଣ୍ଡଂ କୃତ୍ୱା ପ୍ରତୋଲୀଷଟ୍ତଳାନ୍ତରଂ ଦ୍ୱାରଂ ନବେଶୟେତ୍ । ପଞ୍ଚଦଣ୍ଡାଦେକୋତ୍ତରବୃଦ୍ଧ୍ୟାଷ୍ଟଦଣ୍ଡାଦିତି ଚତୁରଶ୍ରମ୍ । ଦ୍ୱିଦଣ୍ଡଂ ବା । ଷଡ୍ଭାଗମାୟାମାଦଧିକମଷ୍ଟଭାଗଂ ବା । (୧୦) ପଞ୍ଚଦଶହସ୍ତାଦେକୋତ୍ତରମଷ୍ଟାଦଶହସ୍ତାଦିତି ତୁଲୋତ୍ସେଧଃ । ସ୍ତମ୍ଭସ୍ୟ ପରିକ୍ଷେପାଃ ଷଡ଼ାୟାମାଦ୍ୱିଗୁଣୋ ନଖାତଃ ଚୂଳିକାୟାଶ୍ଚତୁର୍ଭାଗଃ । ଆଦିତଳସ୍ୟ ପଞ୍ଚଭାଗାଃ

---

ତୀକ୍ଷ୍ଣାଗ୍ର ତ୍ରିଶୂଳସମୂହ, ଅନ୍ଧକୂପସମୂହ, ଲୁହାକଣ୍ଟା, ତୃଣାଚ୍ଛାଦିତଗର୍ତ୍ତ, କଣ୍ଟାଯୁକ୍ତ ଲୁହାତାର, ସାପକଣ୍ଟାପରି ହୋଇଥିବା ଲୁହା ଯନ୍ତ୍ର, ତାଳପତ୍ରାକାର ଲୌହମୟ ଶସ୍ତ୍ର (ଛେଲ), ଲୌହମୟ ତ୍ରିକୋଣାକାର ଯନ୍ତ୍ର, କୁକ୍କୁରଦାନ୍ତପରି ହୋଇଥିବା ଲୌହମୟ ଯନ୍ତ୍ର, ଅର୍ଗଳୀ ସଦୃଶ ବଡ଼ ବଡ଼ ଲୁହାଦଣ୍ଡା, ଗୋଡ଼ ଖସିଯିବାପରି ବଡ଼ ବଡ଼ କାଠଗଣ୍ଡି, ଗୋଟିଏ ପାଦ ପଡ଼ିବାଭଳି ଓ ପଡ଼ିଲାମାତ୍ରେ ପଶିଯିବାଭଳି ପଙ୍କପୂର୍ଣ୍ଣ ଗର୍ତ୍ତ, ଅଗ୍ନିଗର୍ଭ ଗର୍ତ୍ତ ଓ ଦୂଷିତ ଜଳପୂର୍ଣ୍ଣ ପୁଷ୍କରଣୀଦ୍ୱାରା ଅଚ୍ଛାଦିତ ହୋଇଥିବା ପଥ ନିର୍ମାଣ କରାଇବେ । (୯) **ଦ୍ୱାର ନିର୍ମାଣ ବିଧି:**—ପ୍ରାକାରର ଉଭୟପାର୍ଶ୍ୱରେ ଦେଢ଼ଦଣ୍ଡ ଅର୍ଥାତ୍ ଛ'ହାତ ଓସାର ଥିବା ଏକ ମଣ୍ଡପ ତିଆରି କରାଇବେ ଏବଂ ସେହି ମଣ୍ଡପର ଅଧାରଭୂତ ଛ'ଗୋଟି ତୋରଣସ୍ତମ୍ଭଯୁକ୍ତ ଏକ ପ୍ରବେଶଦ୍ୱାର କରାଇବେ । ଉକ୍ତ ଦ୍ୱାରର ବିସ୍ତାର ପାଞ୍ଚଦଣ୍ଡ (କୋଡ଼ିଏହାତ) ଠାରୁ ଛ, ସାତ ବା ଆଠଦଣ୍ଡ ପର୍ଯ୍ୟନ୍ତ କରିବାକୁ ହେବ । କୌଣସି କୌଣସି ଅର୍ଥଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କ ମତରେ ଦ୍ୱାରର ବିସ୍ତାର ଦୁଇଦଣ୍ଡ ମଧ୍ୟ କରାଯାଇପାରେ । ଅଥବା ଉପର୍ଯ୍ୟୁକ୍ତ ବିସ୍ତାରମାନଙ୍କର ଛ'ଗୁଣ ବା ଆଠଗୁଣ ଅଧିକା କରି ନିର୍ମାଣ କରାଯାଇପାରେ । (୧୦) ଉପର୍ଯ୍ୟୁକ୍ତ ମଣ୍ଡପର ସ୍ତମ୍ଭମାନଙ୍କର ଉଚ୍ଚତା ପନ୍ଦର, ଷୋହଳ, ସତର ବା ଅଠର ହାତ ରଖିବାକୁ ହେବ । ଏହି ସ୍ତମ୍ଭମାନଙ୍କର ଗୋଲେଇ ବା 'ବେଢ଼' ଉଚ୍ଚତାର ଛ'ଭାଗରୁ ଏକଭାଗ ଅର୍ଥାତ୍ ଉଚ୍ଚତା ପନ୍ଦରହାତ ହେଲେ ଗୋଲେଇ ଅଢ଼େଇହାତ ରଖିବାକୁ ହେବ । ଗୋଲେଇର ଦୁଇଗୁଣ ଭୂମିରେ ପୋତାହେବ ଏବଂ

ଶାଲ ବାପୀ ସୀମାଗୃହଂ ଚ । ଦଶଭାଗିକୌ ସମଭବାରଣୌ ଦ୍ୱୌ ପ୍ରଥମଦ୍ୱୌ ଅନ୍ତରମ୍ ଆଣିଃ । ହର୍ମ୍ମ୍ୟଂ ଚ ସମୁଚ୍ଛ୍ରୟାଦର୍ଧତଳଂ ସ୍ଥୂଣାବବନ୍ଧଶ୍ଚ । ଅର୍ଧବାସ୍ତୁକମୁତ୍ତମାଗାରଂ ତ୍ରିଭାଗାନ୍ତରଂ ବା, ଇଷ୍ଟକାବବନ୍ଧପାର୍ଶ୍ୱଂ, ବାମତଃ ପ୍ରଦକ୍ଷିଣସୋପାନଂ ଗୂଢ଼ଭିତ୍ତି ସୋପାନ ମିତରତଃ । (୧୧) ଦ୍ୱିହସ୍ତଂ ତୋରଣଶିରଃ, ତ୍ରିପଞ୍ଚଭାଗିକୌ ଦ୍ୱୌ କବାଟଯୋଗୌ, ଦ୍ୱୌ ଦ୍ୱୌ ପରଘୌ, ଅରତ୍ନିରିନ୍ଦ୍ରକୀଳଃ,

ସ୍ତମ୍ଭର ଚୂଲ ଗୋଲେଇର ଗୃହଗୁଣ ରଖିବାକୁ ହେବ । * ପ୍ରତୋଳୀ ଅର୍ଥାତ୍ ଉଚ୍ଚ ପ୍ରବେଶମାର୍ଗର ତଳମହଲକୁ ପାଞ୍ଚଭାଗ କରି ମଧ୍ୟଭାଗରେ ବାପୀ, ବାପୀର ଦୁଇପଟାରେ ଦୀର୍ଘ ଚତୁରସ୍ର ଦୁଇଗୋଟି ଶାଲ, ଦୁଇ ଶାଲର ଦୁଇପଖାରେ ଦୁଇଟି ସୀମାଗୃହ ଅର୍ଥାତ୍ ଗୃହକୋଣିଆ କୋଠରୀ ନିର୍ମ୍ମାଣ କରିବାକୁ ହେବ । ଏହି ଶାଲମାନଙ୍କର ଦଶମ ଭାଗରେ ଦୁଇଟି ପଥରର ହାତୀଠକାୟ ହସ୍ତୀ ଏବଂ ପ୍ରତ୍ୟେକ ହସ୍ତିପାଖରେ ଗୋଟିଏ ଲେଖାଏ ମଞ୍ଚାକାର ବୈଠକ ଜାଗା କରାଇବାକୁ ହେବ । ପ୍ରଥମ ତଳମହଲ ଉପରେ ଚନ୍ଦ୍ରଶାଳ ନାମକ ଦ୍ୱିତୀୟ ମହଲ ତଳ ମହଲର ଅଧେ ଉଚ୍ଚ କରି ନିର୍ମ୍ମାଣ କରିବାକୁ ହେବ ଏବଂ ତହିଁରେ ଛୋଟ ଛୋଟ ସ୍ଥୂଳାକାର ସ୍ତମ୍ଭମାନଙ୍କୁ ସନ୍ନିବଷ୍ଟ କରିବାକୁ ହେବ । ତୃତୀୟ ମହଲର ଉଚ୍ଚତା ଅର୍ଧବାସ୍ତୁକ ଅର୍ଥାତ୍ ଛ'ହାତ ବା ତଳମହଲ ଦ୍ୱାରର ଉଚ୍ଚତାର ତିନିଭାଗରୁ ଏକଭାଗ ରଖିବାକୁ ହେବ । ତଳମହଲରୁ ଉପରମହଲମାନଙ୍କୁ ଯିବାପାଇଁ ବାମଭାଗରୁ ଡାହାଣ ଦଗକୁ ମୋଡ଼ିହୋଇ ରହିଥିବା ଏବଂ ଦୁଇପଟାରେ ଇଟାବାଡ଼ ଥିବା ପ୍ରଦକ୍ଷିଣ ସୋପାନ ନିର୍ମ୍ମାଣ କରିବାକୁ ହେବ । ଦକ୍ଷିଣରୁ ବାମଦଗକୁ ମୋଡ଼ିହୋଇ ରହିଥିବା ଗୁପ୍ତସୋପାନ କାନ୍ଥଭିତରେ ନିର୍ମ୍ମାଣ କରାଇବାକୁ ହେବ । (୧୧) ତୋରଣଶିର ଅର୍ଥାତ୍ ଦ୍ୱାରର କପାଳୀ ଦୁଇହସ୍ତ ପ୍ରମାଣରେ କରିବେ । ଏହାର ତିନି ବା ପାଞ୍ଚଭାଗରେ ଦୁଇଗୋଟି କବାଟ କରିବେ ।

(୧୦)—ଏକବାସ୍ତୁ = ତିନିଦଣ୍ଡ ଅର୍ଥାତ୍ ବାରହାତ ।

* ରଥ୍ୟା ପ୍ରତୋଳୀ ବିଶିଖା ଇତ୍ୟମରଃ । ରଥ୍ୟା ଉଚ୍ଚ ପ୍ରବେଶମାର୍ଗ । ଆଣିଃ ଅକ୍ଷାଗ୍ର ଇଉପ୍ରତ୍ୟୟ । ଆଣିଃ-କାର୍ଯ୍ୟଃ । •

(୧୧)—ତୋରଣଶିର Ornamental Arches କପାଳୀ ।

ଅରତ୍ନି = ୨୪ ଆଙ୍ଗୁଳ ।

**ପଞ୍ଚହସ୍ତମଣିଦ୍ୱାରଂ, ଚତ୍ୱାରେ ହସ୍ତିପରଘାଃ । (୧୬) ନବେଶାର୍ଧଂ ହସ୍ତିନଖାଃ ମୁଖସମଃ । ସଂକ୍ରାମୋଽସଂହାର୍ଯ୍ୟୋ ବା ଭୂମିମୟୋ ବା ନରୁଦକେ । ପ୍ରାକାରସମଂ ମୁଖମବସ୍ଥାପ୍ୟ ତ୍ରିଭାଗଗୋଧାମୁଖଂ ଗୋପୁରଂ କାରୟେତ୍ । ପ୍ରାକାର ମଧ୍ୟେ କୃତ୍ୱା ବାପୀଂ ପୁଷ୍କରଣୀଦ୍ୱାରଂ, ଚତୁଶ୍ଶାଲମଧ୍ୟର୍ଧାନ୍ତରଣିକଂ କୁମାରୀପୁରଂ, ମୁଣ୍ଡହର୍ମ୍ୟଂ ଦ୍ୱିତଳଂ ମୁଣ୍ଡକଦ୍ୱାରଂ, ଭୂମିଦ୍ରବ୍ୟବଶେନ ବା । ତ୍ରିଭାଗାଧିକାୟାମା ଭଣ୍ଡବାହିନୀଃ କୁଲ୍ୟାଃ କାରୟେତ୍ ।**

କବାଟର ପଛରେ ଦୁଇ ଦୁଇଟି ଅର୍ଗଳ ଲଗାଇବେ । ଏକହାତର କୀଳଣି, ପାଞ୍ଚହାତର କ୍ଷୁଦ୍ରଦ୍ୱାର (ମଣିଦ୍ୱାର), ଚୁଆରଗୋଟି ହସ୍ତିପରଘ ଅର୍ଥାତ୍ ଗଜାର୍ଗଳ ଲଗାଇବେ । (୧୬) ଦୁର୍ଗରୁ ଓହ୍ଲାଇବା ସକାଶେ ଦ୍ୱାର ସମ୍ମୁଖ ଭାଗରେ ଦ୍ୱାର ବିସ୍ତାରର ଅଧେ ଉଚ୍ଚ ପ୍ରମାଣରେ ହସ୍ତିନଖ ସଦୃଶ କ୍ରମନିମ୍ନ ମାଟିଗଦା ଦ୍ୱାରର ଓସାର ଅନୁଯାୟୀ କରିବେ । ଏହି ହସ୍ତିନଖ ନିରୁଦକ (ନିର୍ଜଳ) ଜାଗାରେ ସଚଳ ଓ ଅଚଳଭାବେ ଅର୍ଥାତ୍ ମାଟିରେ ସଚଳ ଓ କାଠରେ ଅଚଳଭାବେ ନିର୍ମାଣ କରିବେ, ଯାହାକୁ କି କେହି ଭାଙ୍ଗିପାରିବେ ନାହିଁ । ଜଳ ନଥିବା ସ୍ଥାନରେ ଏହା କେବଳ ମାଟିରେ ତିଆରି କରିବା ଉଚିତ । ପାଚେରିର ଓସାର ସମାନ ନିଃସରଣପଥ ଅର୍ଥାତ୍ ବାହାରକୁ ଆସିବା ମାର୍ଗ ନିର୍ମାଣ କରି, ବିସ୍ତାରର ଏକତୃତୀୟାଂଶ ଗୋଧିମୁଖ ସଦୃଶ ଦ୍ୱାରଯୁକ୍ତ ପୁରଦ୍ୱାର (ଗୋପୁର) ନିର୍ମାଣ କରାଇବେ । ପ୍ରାକାର ମଝିରେ ବାମ୍ପୀ ତିଆରିକରି ସେଥିପାଇଁ ପୁଷ୍କରଣୀଦ୍ୱାର (ପାଣିଦ୍ୱାର) ନାମକ ଦ୍ୱାର ନିର୍ମାଣ କରାଇବେ । ପୁଣି ଗୋଟିକଠାରୁ ଅନ୍ୟଟି ଦେଢ଼ଗୁଣ ଓସାର ହୋଇଥିବା ଚତୁଃଶାଳ (ଚକବନ୍ଦୀ ଘର) ନିର୍ମାଣ କରି ତହିଁରେ କୁମାରୀପୁର ନାମକ ଦ୍ୱାର ନିର୍ମାଣ କରାଇବେ । ଦୁଇପୁରିଆ ଶିଖରହୀନ ଗୃହ (ମୁଣ୍ଡହର୍ମ୍ୟ ବା ଚବାଘର) ନିର୍ମାଣ କରି ତହିଁରେ ମୁଣ୍ଡନାମକ ଦ୍ୱାର ନିର୍ମାଣ କରାଇବେ । ସ୍ଥାନ ଓ ସମ୍ପତ୍ତି ଅନୁସାରେ ଏ ସମସ୍ତ ପ୍ରାକାର, ଶାଳ ଓ ଦ୍ୱାରାଦି ନିର୍ମାଣ କରାଇବେ । ଓସାରଠାରୁ ତିନିଗୁଣ ଲମ୍ବ ଥାଇ

(୧୬)—ହସ୍ତିନଖ=ଦୁର୍ଗାବତରଣାର୍ଥଃ କ୍ରମନିମ୍ନୋ ହସ୍ତିନଖାକାର ମୃତ୍କୂଟଃ । କୂଟଂପୁର୍ଦ୍ୱାରସ୍ଥ ଯଦ୍ଧସ୍ତିନଖସ୍ତସ୍ମିନ୍ନଥବିଷ୍ଟୂ—ଇତ୍ୟମରଃ ।

(୧୩) ତାସୁ ପାଷାଣକୁଦ୍ଦାଳକୁଠାରୀକାଣ୍ଡକଲ୍ପନାଃ ।
ମୁସୃଣ୍ଠିମୁଦ୍‌ଗର ଦଣ୍ଡଚକ୍ରଯନ୍ତ୍ରଶତଘ୍ନ୍ୟଃ ॥
(୧୪) କାର୍ଯ୍ୟାଃ କାର୍ମ୍ମାରିକାଃ ଶୂଳବେଧନାଗ୍ରାଶ୍ଚ ବେଣବଃ ।
ଉଷ୍ଟ୍ରଗ୍ରୀବ୍ୟୋଽଗ୍ନିସଂଯୋଗାଃ କୁପ୍ୟକଲ୍ପେ ଚ ଯୋ ବିଧିଃ ॥

---

ଯୁଦ୍ଧାଦର ଉପକରଣ ନେବାଆଣିବାପାଇଁ ଗୋଟିଏ କେନାଲ (କୃତ୍ରିମ ଜଳପ୍ରଣାଳୀ ବା କୁଲ୍ୟା) ମଧ୍ୟ ନିର୍ମ୍ମାଣ କରାଇବେ । (୧୩, ୧୪) ସେହି କେନାଲ ଭିତରେ ଦୁର୍ଗଭିତରକୁ ପଥର, କୁଦ୍ଦାଳ, କୁରାଢ଼ୀ, ଶର (ବାଣ), କଳ୍ପନା ଅର୍ଥାତ୍ ହସ୍ତିର ଉପକରଣ, ମୁସୃଣ୍ଠି (ଗଦା), ମୁଦ୍‌ଗର, ଦଣ୍ଡ (ଠେଙ୍ଗା) ବା ଫିଙ୍ଗିବା ଫାବଡ଼, ଚକ୍ର, ଜାମଦଗ୍ନ୍ୟ ଭୌମାଦ ଯନ୍ତ୍ର, ଶତଘ୍ନୀ (ତୋପ), କମାର ତିଆରକରିବା ଲୌହମୟ ତୋମର ପ୍ରଭୃତି ଅସ୍ତ୍ରସମୂହ, ଓଟବେକପରି ଦେଖାଯାଉଥିବା ଶସ୍ତ୍ର, ଶୂଳ, ଭଲ୍ଲ, ଖିଡ଼ସା, ଛେଲ, ଅଗ୍ନିସଂଯୋଗ ଦ୍ରବ୍ୟ ଅର୍ଥାତ୍ ଗୁଗ୍‌ଗୁଳ, ସର୍ଜରସ ପ୍ରଭୃତି ଅଗ୍ନିଗ୍ରାହକ ଧୂପଦ୍ରବ୍ୟ ବା କ୍ଷାର, ମନଃଶିଳ ପ୍ରଭୃତି ବିସ୍ଫୋରକ ଦ୍ରବ୍ୟ; କୁପ୍ୟାଧ୍ୟକ୍ଷ ପ୍ରକରଣୋକ୍ତ ଦ୍ରବ୍ୟସମୂହ (ଶାକତିନିଶାଦ ଦାରୁବର୍ଗ, ଉଟଜଶମିଧ୍ୟାଦ ବେଣୁ-ବର୍ଗ, ଚର୍ମ୍ମବସାର୍ଥେ ସଂଗ୍ରହ କରାଯିବା ଗୋଧାଦ ପ୍ରାଣୀବର୍ଗ) ନେଇ ସଂଚୟ କରି ରଖିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ତୃତୀୟୋଽଧ୍ୟାୟଃ—ଦୁର୍ଗବିଧାନମ୍ ।

---

# ଚତୁର୍ଥୋଽଧ୍ୟାୟଃ

## ଦ୍ୱାବିଂଶ ପ୍ରକରଣମ୍—ଦୁର୍ଗନିବେଶଃ

## BUILDINGS WITHIN THE FORT

ଦୁର୍ଗଭିତରେ ରାଜମାର୍ଗ, ରାଜଭବନ ଏବଂ ଅମାତ୍ୟମାନଙ୍କ ଭବନ କିପରି ନିର୍ମାଣ କରାଯିବ ଏହି ଅଧ୍ୟାୟରେ ତାହା ଆଲୋଚିତ ହେବ ।

**(୧) ତ୍ରୟଃ ପ୍ରାଚୀନା ରାଜମାର୍ଗାସ୍ତ୍ରୟ ଉଦୀଚୀନା ଇତି ବାସ୍ତୁବିଭାଗଃ । ସ ଦ୍ୱାଦଶଦ୍ୱାରୋ ଯୁକ୍ତୋଦକଭୂମିଛନ୍ନପଥଃ । (୨) ଚତୁର୍ଦ୍ଦଣ୍ଡାନ୍ତରା ରଥ୍ୟାଃ । ରାଜମାର୍ଗଦ୍ରୋଣମୁଖସ୍ଥାନୀୟରାଷ୍ଟ୍ର-ବିବୀତପଥାଃ ସଂଯାନୀୟବ୍ୟୂହଶ୍ମଶାନଗ୍ରାମପଥାଶ୍ଚାଷ୍ଟଦଣ୍ଡାଃ ଚତୁର୍ଦ୍ଦଣ୍ଡଃ**

---

(୧) ବାସ୍ତୁବିଦ୍ୟା ଅର୍ଥାତ୍ ଶିଳ୍ପଶାସ୍ତ୍ରବିଶାରଦମାନଙ୍କ ଦ୍ୱାରା ଦୁର୍ଗସ୍ଥାପନାପାଇଁ ବଛା ଯାଇଥିବା ସ୍ଥାନରେ ପୂର୍ବପଶ୍ଚିମ ତିନିଗୋଟି ଓ ଦକ୍ଷିଣଉତ୍ତର ତିନିଗୋଟି ଏପରି ଛ'ଗୋଟି ରାଜପଥ କରାଯିବ—ଏହା ଦୁର୍ଗସ୍ଥାପନାର ବାସ୍ତୁବିଭାଗ । ଏହି ରାଜପଥମାନଙ୍କର ପ୍ରତ୍ୟେକ ଦିଗରେ ତିନିଗୋଟି ହିସାବରେ ବାରଗୋଟି ଦ୍ୱାର ରଖାଯିବ ଏବଂ ଏହି ସ୍ଥାନରେ କୂପ, ପୁଷ୍କରିଣୀ ପ୍ରଭୃତି ଜଳାଶୟ, ଜଳନିର୍ଗମମାର୍ଗ (ଡ୍ରେନ୍)· ଓ ଗୁପ୍ତ ସୁରଙ୍ଗ ରହିବାର ମଧ୍ୟ ବ୍ୟବସ୍ଥା କରାଯିବ । (୨) ରଥ୍ୟା ଅର୍ଥାତ୍ ଗଳିସଡ଼କ (Link road) ଗୁଡ଼ିକ ଚାରିଦଣ୍ଡ ଅର୍ଥାତ୍ ଷୋହଳ ହାତ ରଖାଯିବ । ରାଜମାର୍ଗ, ଦ୍ରୋଣମୁଖପଥ (ଚାରିଶହ ଗ୍ରାମ ମଝିରେ ଥିବା ସହରକୁ ଦୁର୍ଗଠାରୁ ଯାଇଥିବା ପଥ), ସ୍ଥାନୀୟପଥ (ଆଠଶହ ଗ୍ରାମ ମଧ୍ୟରେ ଥିବା ବିରାଟ ନଗରକୁ ଦୁର୍ଗଠାରୁ ଯାଇଥିବା ପଥ), ରାଷ୍ଟ୍ରପଥ (ରାଜ୍ୟର ସମସ୍ତ ଜନବସତିକୁ ଯାଇଥିବା ପଥ), ବିବୀତପଥ (ନିର୍ଜନ ବନ ଓ ପଶୁଚାରଣ ସ୍ଥାନକୁ ଯାଇଥିବା ପଥ), ସଂଯାନୀୟ (ଯାନବାହନଦ୍ୱାରା ପଣ୍ୟ ପରିବହନ ପଥ), ବ୍ୟୂହପଥ (ଶତ୍ରୁର ଆକ୍ରମଣ ଓ ଅବରୋଧ ସମୟରେ ସୈନ୍ୟସମାବେଶ ସ୍ଥାନ ବା ମିଲିଟରି ଷ୍ଟେସନକୁ ଯିବାସକାଶେ ଦୁର୍ଗ

ସେତୁବନପଥଃ । ଦ୍ୱିଦଣ୍ଡୋ ହସ୍ତିକ୍ଷେତ୍ରପଥଃ । ପଞ୍ଚାରତ୍ନୟୋ ରଥପଥଶ୍ଚତ୍ୱାରଃ ପଶୁପଥୋ ଦ୍ୱୌ କ୍ଷୁଦ୍ରପଶୁମନୁଷ୍ୟପଥଃ । (୩) ପ୍ରବୀରେ ବାସ୍ତୁନି ରାଜନିବେଶଶ୍ଚାତୁର୍ବର୍ଣ୍ୟସମାଜୀବେ । ବାସ୍ତୁହୃଦୟାଦୁତ୍ତରେ ନବଭାଗେ ଯଥୋକ୍ତବିଧାନମନ୍ତଃପୁରଂ ପ୍ରାଙ୍ମୁଖମୁଦଙ୍ମୁଖଂ ବା କାରୟେତ୍ । (୪) ତସ୍ୟ ପୂର୍ବୋତ୍ତରଂ ଭାଗମାଚାର୍ୟପୁରୋହିତେଜ୍ୟାତୋୟସ୍ଥାନଂ ମନ୍ତ୍ରିଣଶ୍ଚାବସେୟୁଃ । ପୂର୍ବ-

---

ଯାତ୍ରେରଠାକୁ କରାଯାଇଥିବା ପଥ), ଶ୍ମଶାନପଥ, ଗ୍ରାମପଥ—ଏ ସମସ୍ତ ପଥର ବିସ୍ତାର ଅଠଦଣ୍ଡ (ବତିଶି ହାତ) ରଖାଯିବ । ସେତୁପଥ (ଜଳଭଣ୍ଡାର ଓ ଓ ତନ୍ନିକଟସ୍ଥ ଉଦ୍ୟାନ, ତୋଟା ଇତ୍ୟାଦି ସ୍ଥାନକୁ ଦୁର୍ଗଠାରୁ ଯାଉଥିବା ପଥ) ଓ ବନପଥର ବିସ୍ତାର ଚାରିଦଣ୍ଡ ଅର୍ଥାତ୍ ଷୋହଳ ହାତ; ହସ୍ତିକ୍ଷେତ୍ରପଥ (ହସ୍ତୀ ରହିବା ଜାଗାକୁ ଯାଉଥିବା ପଥ)ର ବିସ୍ତାର ଦୁଇଦଣ୍ଡ ଅର୍ଥାତ୍ ଅଠହାତ; ରଥପଥର ବିସ୍ତାର ପଞ୍ଚ ଅରତ୍ନି (ପ୍ରାୟ ପାଞ୍ଚହାତ ବା ସାଢ଼େ ସାତଫୁଟ); ପଶୁପଥ (ଗୋମହିଷାଦିଙ୍କ ଯାତାୟାତ ପଥ)ର ବିସ୍ତାର ଚାରିହାତ; ମନୁଷ୍ୟ ଓ ଛେଳିମେଣ୍ଢା ପ୍ରଭୃତି କ୍ଷୁଦ୍ରପଶୁଙ୍କ ଗମନପଥର ବିସ୍ତାର ପ୍ରାୟ ଦୁଇହାତ ରଖିବାକୁ ହେବ । (୩) ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ରମାନଙ୍କ ଜୀବିକାର୍ଜନ ସକାଶେ ଉପଯୁକ୍ତ ହୋଇଥିବା ବୀରପୁରୁଷ-ନିବାସଯୋଗ୍ୟ ସ୍ଥାନରେ ରାଜଭବନ ସ୍ଥାପନ କରିବାକୁ ହେବ । ବାସ୍ତୁହୃଦୟ ଅର୍ଥାତ୍ ବାସ୍ତୁର ମଧ୍ୟସ୍ଥଳରୁ ଉତ୍ତରଦିଗକୁ ଏକାଅଶୀ ପାଦ ମାପି ଓ ଏହାକୁ ସମାନ ନବଭାଗ କରି ଶେଷ ନ'ପାଦରେ ପୂର୍ବୋକ୍ତ ନିଶାନ୍ତପ୍ରଣିଧି ପ୍ରକରଣୋକ୍ତ ବିଧାନ ଅନୁସାରେ ପୂର୍ବମୁଖ ବା ଉତ୍ତରମୁଖ କରି ଅନ୍ତଃପୁର ନିର୍ମାଣ କରାଇବେ । (୪) ଅନ୍ତଃପୁରର ପୂର୍ବ-ଉତ୍ତର ଭାଗରେ ଆଚାର୍ଯ୍ୟ ଓ ପୁରୋହିତଙ୍କ ଯାଗଶାଳା, ସ୍ନାନପାନାଦି ସକାଶେ କୂପ, ପୁଷ୍କରିଣୀ ପ୍ରଭୃତି ଓ ମନ୍ତ୍ରୀମାନଙ୍କ ବାସଭବନ ନିର୍ମାଣ କରାଇବେ । ଅନ୍ତଃପୁରର ପୂର୍ବ-ଦକ୍ଷିଣ ଭାଗରେ ମହାନସ (ପାକଶାଳା), ହସ୍ତିଶାଳା (ହସ୍ତିପୃଷ୍ଠ ସଦୃଶ ସଭାଗୃହ) ଓ

---

(୨)—ଅରତ୍ନି = କନିଷ୍ଠାଙ୍ଗୁଳିଭିନ୍ନ ମୁଷ୍ଟି ।

ତସ୍ୟଜାନୁ ଦଦୈର୍ଘ୍ୟମୋ ଜଘ୍ନେଚୈନମରତ୍ନିକା । ଇତି ମହାଭାରତେ ।

**ଦକ୍ଷିଣଂ ଭଗଂ ମହାନସଂ ହସ୍ତିଶାଳା କୋଷ୍ଠାଗାରଂ ଚ । (୫) ତତଃ ପରଂ ଗନ୍ଧମାଲ୍ୟଧାନ୍ୟରସପଣ୍ୟାଃ ପ୍ରଧାନକାରବଃ କ୍ଷତ୍ରିୟାଶ୍ଚ ପୂର୍ବାଂ ଦଶମଧିବସେୟୁଃ । ଦକ୍ଷିଣପୂର୍ବଂ ଭଗଂ ଭଣ୍ଡାଗାରମକ୍ଷପଟଳଂ କର୍ମନିଷଦ୍ୟାଶ୍ଚ । ଦକ୍ଷିଣପଶ୍ଚିମଂ ଭଗଂ କୂପ୍ୟଗୃହମାୟୁଧାଗାରଂ ଚ । (୬) ତତଃ ପରଂ ନଗରଧାନ୍ୟ ବ୍ୟାବହାରିକକର୍ମାନ୍ତିକବଲାଧ୍ୟକ୍ଷାଃ ପକ୍ୱାନ୍ନସୁରାମାଂସପଣ୍ୟାଃ ରୂପାଜୀବାସ୍ତାଳାବଚରା ବୈଶ୍ୟାଶ୍ଚ ଦକ୍ଷିଣାଂଦଶମଧିବସେୟୁଃ । (୭) ପଶ୍ଚିମଦକ୍ଷିଣଂ ଭଗଂ ଖରୋଷ୍ଟ୍ର ଗୁପ୍ତିସ୍ଥାନଂ କର୍ମଗୃହଂ ଚ । ପଶ୍ଚିମୋତ୍ତରଂ ଭଗଂ ଯାନରଥଶାଲାଃ ।**

କୋଷ୍ଠାଗାର (ଭଣ୍ଡାରଘର) ନିର୍ମାଣ କରାଇବେ । (୫) ରାଜଭବନର ବାହାରେ ପୂର୍ବଦିଗରେ ସୁଗନ୍ଧଦ୍ରବ୍ୟ, ମାଳା, ଧାନ୍ୟ, ଗୋରସ, ଦ୍ରାକ୍ଷାରସ ପ୍ରଭୃତି ବିକ୍ରେତାମାନଙ୍କ ଦୋକାନ, ମୁଖ୍ୟଶିଳ୍ପୀ ଓ ବୀର କ୍ଷତ୍ରିୟ ସାମନ୍ତମାନଙ୍କୁ ରଖାଇବା ଗୃହ ନିର୍ମାଣ କରାଇବେ । ଦକ୍ଷିଣ-ପୂର୍ବ ଭାଗରେ ଭାଣ୍ଡାଗାର (ସରଘର), ଅକ୍ଷପଟଳ (ଟଙ୍କା ଆୟବ୍ୟୟର ଗଣନା ସ୍ଥାନ), କର୍ମନିଷଦ୍ୟା (ସୁନା, ରୂପା ପ୍ରଭୃତି ଅଳଂକାର ଗୃହ) କରାଇବେ । ଦକ୍ଷିଣ-ପଶ୍ଚିମ ଭାଗରେ କୁପ୍ୟଗୃହ (ସୁନା ରୂପା ଛଡ଼ା ଅନ୍ୟସମସ୍ତ ଧାତୁପଦାର୍ଥ ଗୃହ) ଓ ଆୟୁଧାଗାର ସ୍ଥାପନ କରାଇବେ । (୬) ତା'ପରେ ଦକ୍ଷିଣ ଦିଗରେ ନଗର ବ୍ୟାବହାରିକ (ନଅରଘରିଆ), ଧାନ୍ୟ ବ୍ୟାବହାରିକ (ଧାନବେପାରୀ), କାର୍ମାନ୍ତିକ (ଖଣିଜପଦାର୍ଥ ଅଧିକାରୀ), ବଳାଧ୍ୟକ୍ଷ (ସେନାଧ୍ୟକ୍ଷ), ଅନ୍ନ ଓ ମିଷ୍ଟାନ୍ନ (ଖଜା ପିଠା ମିଠାଇ) ବିକ୍ରେତା, ମଦ୍ୟ ବିକ୍ରେତା (ଶୁଣ୍ଡୀ), ମାଂସବିକ୍ରେତା (କଂସେଇ), ରୂପାଜୀବା (ବେଶ୍ୟା), ତାଳାବଚର (ନାଟୁଆ) ଓ ବୈଶ୍ୟମାନଙ୍କ ସକାଶେ ଗୃହ ନିର୍ମାଣ କରାଇବେ । (୭) ପଶ୍ଚିମ-ଦକ୍ଷିଣ ଭାଗରେ ଗଧ, ଓଟମାନଙ୍କ ବନ୍ଧନଗୃହ ଓ ବଢ଼େଇଶାଳ; ପଶ୍ଚିମ-ଉତ୍ତର ଭାଗରେ ଶିବିକା (ସବାରି) ପ୍ରଭୃତି ଯାନ ଓ ରଥଶାଳ; ତା'ପରେ ଊର୍ଣ୍ଣା (ଲୋମ), କପାସୂତା, ବାଉଁଶ, ଚମଡ଼ା, ବର୍ମ (କବଚ, ସାଂଜୁ) ଶସ୍ତ୍ରାବରଣ ଅର୍ଥାତ୍ ଶସ୍ତ୍ରମାନଙ୍କର ଖୋଳ, ଖାପ ତିଆରିକରିବା କାରିଗରମାନେ ରହିବାପାଇଁ ଗୃହ; ଶୂଦ୍ରମାନେ

(୬)—ତାଳାବଚରାଃ—ତାଳୈଃ କ୍ଷିପ୍ରତାଦଭିଃ ଅବ ଅଚକ୍ଷେପ୍ରାଃ ଚରାଃ ପାଦାଦି ଅବସ୍ଥିତ ସଣ୍ଗ୍ରେ ଯେଷାଂ ତେ—ଇତି ବ୍ୟାସବାକ୍ୟଂ । ନଟାଃ ।

ତତଃ ପରଂ ଊର୍ଣାସୂତ୍ରବେଣୁଚର୍ମବର୍ମଶସ୍ତ୍ରାବରଣକାରବଃ ଶୂଦ୍ରାଶ୍ଚ ପଶ୍ଚିମାଂ ଦିଶମଧିବସେୟୁଃ । ଉତ୍ତରପଶ୍ଚିମଂ ଭାଗଂ ପଣ୍ୟଭୈଷଜ୍ୟ-ଗୃହମ୍ ଉତ୍ତରପୂର୍ବଂ ଭାଗଂ କୋଶୋ ଗବାଶ୍ୱଂ ଚ । (୮) ତତଃ ପରଂ ନଗରରାଜଦେବତା ଲୋହମଣିକାରବୋ ବ୍ରାହ୍ମଣାଶ୍ଚୋତ୍ତରାଂ ଦିଶମଧିବସେୟୁଃ । ବାସ୍ତୁଚ୍ଛିଦ୍ରାନୁଶାଲେଷୁ ଶ୍ରେଣୀପ୍ରବହଣିକନିକାୟା ଆବସେୟୁଃ । (୯) ଅପରାଜିତାପ୍ରତିହତ ଜୟନ୍ତ ବୈଜୟନ୍ତ କୋଷ୍ଠକାନ୍ ଶିବବୈଶ୍ରବଣାଶ୍ୱିଶ୍ରୀମଦିରାଗୃହଂ ଚ ପୁରମଧ୍ୟେ କାରୟେତ୍ । କୋଷ୍ଠକାଳୟେଷୁ ଯଥୋଦ୍ଦେଶଂ ବାସ୍ତୁଦେବତାଃ ସ୍ଥାପୟେତ୍ । (୧୦) ବ୍ରାହ୍ମୈନ୍ଦ୍ରଯାମ୍ୟସୈନାପତ୍ୟାନି ଦ୍ୱାରାଣି । ବହିଃ ପରିଖାୟା

ରହିବା ଗୃହ; ଉତ୍ତର-ପଶ୍ଚିମ ଭାଗରେ ଦୋକାନ ଓ ଔଷଧାଳୟ ସ୍ଥାପନ କରାଇବେ । ଉତ୍ତର-ପୂର୍ବ ଭାଗରେ କୋଶ (ଧାନ୍ୟାଦି ସଂଗ୍ରହସ୍ଥାନ), ଗୋଶାଳ ଓ ଅଶ୍ୱଶାଳ ନିର୍ମାଣ କରାଇବେ । (୮) ତା'ପରେ ଉତ୍ତରଦିଗରେ ନଗର-ଦେବତା ମନ୍ଦିର, ରାଜକୁଳଦେବତା ମନ୍ଦିର, ଲୋହମଣିକାରୁ (ଲୋହରା, ବଣିଆ) ଓ ବ୍ରାହ୍ମଣମାନଙ୍କ ନିବାସ ଗୃହ; ବାସ୍ତୁଚ୍ଛିଦ୍ରାନୁଶାଳ (ବାସ୍ତୁର ଖାଲିସ୍ଥାନ) ମାନଙ୍କରେ ଧୋବା, ତନ୍ତୀ, ତୁଳାଭଣା ଓ ବିଦେଶାଗତ ବେପାରୀମାନଙ୍କୁ ନିବାସଗୃହ ଯୋଗାଇ ଦେବେ । (୯) ପୁରମଧ୍ୟରେ ଦୁର୍ଗା, ବିଷ୍ଣୁ, ସୁବ୍ରହ୍ମଣ୍ୟ, ଇନ୍ଦ୍ର, ଶିବ, କୁବେର, ଅଶ୍ୱିନୀକୁମାର, ଲକ୍ଷ୍ମୀ ଓ ମଦିରାଦେବୀଙ୍କ ମନ୍ଦିର ନିର୍ମାଣ କରାଇବେ । ଅନ୍ୟାନ୍ୟ କୋଠରୀମାନଙ୍କରେ ଯଥାବିଧି ବାସ୍ତୁଦେବତାମାନଙ୍କୁ ସ୍ଥାପନ କରାଇବେ । (୧୦) ପ୍ରତ୍ୟେକ ଦ୍ୱାରରେ ଅର୍ଥାତ୍ ପୂର୍ବଦ୍ୱାରରେ ଇନ୍ଦ୍ର, ଦକ୍ଷିଣଦ୍ୱାରରେ ଯମ, ପଶ୍ଚିମଦ୍ୱାରରେ କାର୍ତ୍ତିକେୟ ଓ ଉତ୍ତରଦ୍ୱାରରେ ବ୍ରହ୍ମା—ଏହି କ୍ରମରେ ଦ୍ୱାରପାଳ ଦେବତା-ମାନଙ୍କୁ ସ୍ଥାପନ କରାଇବେ । ପରିଖା (ଜାଲୀ) ବାହାରେ ଏକଶତଧନୁ

(୮)—ଶ୍ରେଣୀ = ରଜକ ତନ୍ତୁବାୟ ତୂଳବାୟାଦୟଃ । ପ୍ରବହଣିକାଃ = ବିଦେଶାଗତା ବଣିଜାଃ ।

(୯)—ଅପରାଜିତା = ଦୁର୍ଗା । ଅପ୍ରତିହତଃ = ବିଷ୍ଣୁଃ । ଜୟନ୍ତଃ = ସୁବ୍ରହ୍ମଣ୍ୟ । ବୈଜୟନ୍ତ = ଇନ୍ଦ୍ର । ଊର୍ଣାମେଷାଦି ଲୋମ୍ନି ସ୍ୟାତ୍ ଇତ୍ୟମରଃ ।

(୧୦)—ଚୈତ୍ୟ = ଯଜ୍ଞସ୍ଥାନ ଓ ଦେବତାବୃକ୍ଷ ।

ଧନୁଃଶତାବକୃଷ୍ଟାଶ୍ଚୈତ୍ୟପୁଣ୍ୟସ୍ଥାନବନସେତୁବନ୍ଧାଃ କାର୍ଯ୍ୟାଃ, ଯଥାଦଶଂ ଚ ଦଗ୍‌ଦେବତାଃ । (୧୧) ଉତ୍ତରଃ ପୂର୍ବୋ ବା ଶ୍ମଶାନବାଟଃ, ଦକ୍ଷିଣେନ ବର୍ଣ୍ଣୋତ୍ତମାନାମ୍ । ତସ୍ୟାତକ୍ରମେ ପୂର୍ବଃ ସାହସଦଣ୍ଡଃ । (୧୨) ପାଷଣ୍ଡଚଣ୍ଡାଳାନାଂ ଶ୍ମଶାନାନ୍ତେ ବାସଃ । କର୍ମାନ୍ତକ୍ଷେତ୍ର-ବଶେନ ବା କୁଟୁମ୍ବିନାଂ ସୀମାନଂ ସ୍ଥାପୟେତ୍ । ତେଷୁ ପୁଷ୍ପଫଳବାଟ-ଷଣ୍ଡକେଦାରାନ୍ ଧାନ୍ୟପଣ୍ୟନଚୟାଂଶ୍ଚଅନୁଜ୍ଞାତାଃ କୁର୍ଯୁଃ, ଦଶ-

(ଶ୍ହରଶ ହାତ) ଦୂରରେ ଯକ୍ଷସ୍ଥାନ, ତୀର୍ଥସ୍ଥାନ, ବଗିଚ୍ଚ, ତୋଟା, ସେତୁବନ୍ଧ ପ୍ରସ୍ତୁତ କରାଇବେ ଏବଂ ଯଥାଦଗରେ ଦଗ୍‌ଦେବତାମାନଙ୍କୁ ସ୍ଥାପନ କରାଇବେ । (୧୧) ନଗରର ଉତ୍ତର ବା ପୂର୍ବଦଗରେ ଶ୍ମଶାନ ସ୍ଥାନ କରାଇବେ; ଦକ୍ଷିଣ ଦଗରେ ଶୂଦ୍ରାଦଙ୍କର ଶ୍ମଶାନ ସ୍ଥାନ ନର୍ଦ୍ଦେଶ କରାଇବେ । କୌଣସି ବ୍ୟକ୍ତ ଏହ ନୟମ ଲଙ୍ଘନ କଲେ ତାକୁ ପୂର୍ବସାହସ ଦଣ୍ଡ ଅର୍ଥାତ୍ ଦୁଇଶହ ପଞ୍ଚାଶପଣ ଦଣ୍ଡବଧାନ କରବେ । (୧୨) ପାଷଣ୍ଡ (କାପାଳକ ପ୍ରଭୃତ) ଓ ଚଣ୍ଡାଳ (ପୁକ୍‌ସାଦ) ମାନଙ୍କର ଶ୍ମଶାନ ନକଟରେ ବାସସ୍ଥାନ ନର୍ଦ୍ଦେଶ କରାଇବେ । ଦୁର୍ଗ ବାହାରେ ନବାସକରବା ଯୋଗ୍ୟ କୁଟୁମ୍ବୀ ବ୍ୟକ୍ତମାନଙ୍କୁ ଯେଉଁ କାର୍ଯ୍ୟ ଯେଉଁ ବ୍ୟକ୍ତ କରବାକୁ ଉପଯୁକ୍ତ ତାଙ୍କୁ ସେପରି ସ୍ଥାନରେ ରଖାଇବେ । ଏମାନେ ରାଜାଙ୍କ ଆଦେଶ ଅନୁଯାୟୀ ସେହ ସେହ ସ୍ଥାନମାନଙ୍କରେ ଫଳବଗିଚ୍ଚ, ଫୁଲବଗିଚ୍ଚ, ପଦ୍ମବନ ଓ କେଦାର (ଧାନକଆରୀ) କର ସେଥିରୁ ଧାନ୍ୟ ଓ ବକ୍ରୟଯୋଗ୍ୟ ଫଳ ପରବା ଇତ୍ୟାଦ ପ୍ରଚୁର ପରମାଣରେ ଅଦାୟ କରବେ । ମଧ୍ୟମ ଧରଣର କୋଡ଼ିଏଗୋଟି ହଳରେ ଚାଷ ହୋଇପାରବାଭଳ ଭୂମି ସକାଶେ ଗୋଟିଏ ଗୋଟିଏ କୂଅ ଖୋଳାଇବେ ବା ପ୍ରତ୍ୟେକ ଦଶଟି ପରବାର ସକାଶେ ଗୋଟିଏ

(୧୧)—ବର୍ଣ୍ଣୋତ୍ତମାନାଂ = ବର୍ଣ୍ଣୋତ୍ତରାଣା—ଶୂଦ୍ରାଣାଂ (ବର୍ଣ୍ଣାଃ ଉତ୍ତମାଃ ଯେଭ୍ୟଃ ତେ ବର୍ଣ୍ଣୋତ୍ତମାଃ—ଶୂଦ୍ରାଃ) ।

(୧୨)—ଷଣ୍ଡ—'ମୃଣାଳବଷମବ୍‌ଜାଦ କଦମ୍ବେ ଷଣ୍ଡମସ୍ତ୍ରିୟାମ୍' ଇତ୍ୟମରଃ ।

* କୁଳୀବାଟଂ କୂପସ୍ଥାନମ୍ । (୨୩) ସର୍ବସ୍ନେହଧାନ୍ୟକ୍ଷାରଲବଣଭୈଷଜ୍ୟଶୁଷ୍କଶାକଯବସବଲ୍ଲୂରତୃଣକାଷ୍ଠଲୋହଚର୍ମାଙ୍ଗାର ସ୍ନାୟୁବିଷବିଷାଣବେଣୁବଲ୍କଳସାରଦାରୁପ୍ରହରଣାବରଣାଶ୍ମନିଚୟାନନେକବର୍ଷୋପଭୋଗସହାନ୍ କାରୟେତ୍ । ନବେନାନବଂ ଶୋଧୟେତ୍ । (୨୪) ହସ୍ତ୍ୟଶ୍ୱରଥପାଦାତମନେକମୁଖ୍ୟ ମବସ୍ଥାପୟେତ୍ । ଅନେକମୁଖ୍ୟଂ ହି ପରସ୍ପରଭୟାତ୍ ପରୋପଜାପଂ ନୋପୈତୀତି । ଏତେନାନ୍ତପାଳଦୁର୍ଗସଂସ୍କାରା ବ୍ୟାଖ୍ୟାତାଃ ।

(୨୫) ନ ଚ ବାହିରିକାନ୍ କୁର୍ଯ୍ୟାତ୍ ପୁରରାଷ୍ଟ୍ରୋପଘାତକାନ୍ ।
କ୍ଷିପେଜ୍ଜନପଦସ୍ୟାନ୍ତେ ସର୍ବାନ୍ ବା ଦାପୟେତ୍ କରାନ୍ ॥

---

ଗୋଟିଏ କୂଅ ଖୋଳାଇବେ । (୧୩) ଘୃତ, ତୈଳାଦି ସମସ୍ତପ୍ରକାର ସ୍ନେହ ପଦାର୍ଥ, ଧାନ ଗହମ ପ୍ରଭୃତି ଖାଦ୍ୟଶସ୍ୟ, କ୍ଷାର, ଲବଣ, ଔଷଧଯୋଗ୍ୟ ଦ୍ରବ୍ୟ, ଶୁଷ୍କଶାକ (ଶୁଖିଲା ପରିବା), ଘାଳ, ଶୁଖିଲାମାଂସ, ଘାସ, କାଠ, ଲୁହା, ଚମଡ଼ା, ଅଙ୍ଗାର, ବଧି (ସ୍ନାୟୁ), ବିଷ (ସର୍ପବିଷ ଓ ମହୁରି ପ୍ରଭୃତି ବିଷ), ସିଂଗ, ବାଉଁଶ, ବକଳ, ଚନ୍ଦନ, ସାଳୁଆ ଓ ଶିଶୁଆ ପ୍ରଭୃତି ମୂଲ୍ୟବାନ୍ କାଠ, ଶସ୍ତ୍ର, ଖୋଳ, ସାଂଜୁ ଓ ଗୃହୋପଯୋଗୀ ପଥର ଏକତ୍ର କରି ପ୍ରଚୁର ପରିମାଣରେ ସାଇତି ଅନେକବର୍ଷ ପର୍ଯ୍ୟନ୍ତ ଅଭାବ ନପଡ଼ିବାପରି ରଖିବେ । ନୂତନ ନୂତନ ପଦାର୍ଥ ସଂଗ୍ରହକରି ରଖି ପୁରାତନ ପଦାର୍ଥମାନଙ୍କୁ ବ୍ୟବହାରରେ ଲଗାଇଦେବେ । (୧୪) ହସ୍ତୀ, ଅଶ୍ୱ, ରଥ ଓ ପଦାତିକ ସୈନ୍ୟମାନଙ୍କୁ ଅନେକ ମୁଖ୍ୟ ଅଧିକାରୀମାନଙ୍କ ଅଧୀନରେ ରଖାଇବେ । ଅନେକ ଅଧିକାରୀ ହେଲେ ସେମାନେ ପରସ୍ପରକୁ ଭୟକରି ଶତ୍ରୁର ବଶବର୍ତ୍ତୀ ହୋଇପାରନ୍ତି ନାହିଁ । ଉପର୍ଯ୍ୟୁକ୍ତ ପୁରଦୁର୍ଗ ସଂସ୍କାର ବିଧିଅନୁସାରେ ଅନ୍ତପାଳ ଦୁର୍ଗ ସଂସ୍କାରର ବ୍ୟବସ୍ଥା ମଧ୍ୟ କରିବାକୁ ହେବ । (୧୫) ବାହାରର ନଟ, ନର୍ତ୍ତକ, ବଞ୍ଚକ (ଠକ), କିତବ (କପଟୀ)

---

* ଦଶାନାଂ କୁଲାନାଂ ସମାହାରଃ ଦଶକୁଲୀ, ମଧ୍ୟମହଲଦ୍ୱୟସ୍ୟ କର୍ଷଣୀୟା ଭୂମିଃ = କୁଲଂ ।

## ପଞ୍ଚମୋଽଧ୍ୟାୟଃ

## ତ୍ରୟୋବିଂଶ ପ୍ରକରଣମ୍—ସନ୍ନିଧାତୃନିଚୟ କର୍ମ୍ମ

## THE DUTIES OF THE CHAMBERLAIN

* ସନ୍ନିଧାତା ଅର୍ଥାତ୍ ଭଣ୍ଡାରଘରଅଙ୍କର ଦ୍ରବ୍ୟସଂଗ୍ରହ ଓ ରକ୍ଷଣକାର୍ଯ୍ୟର ବିଗ୍ରହ ।

(୧) ସନ୍ନିଧାତା କୋଶଗୃହଂ ପଣ୍ୟଗୃହଂ କୋଷ୍ଠାଗାରଂ କୁପ୍ୟଗୃହମାୟୁଧାଗାରଂ ବନ୍ଧନାଗାରଂ ଚ କାରୟେତ୍ । ଚତୁରଶ୍ରଂ

---

ବ୍ୟକ୍ତିମାନେ ରାଷ୍ଟ୍ରର ଘାତୁକ ଅଟନ୍ତି । ଏଣୁ ରାଜା ସେମାନଙ୍କୁ ରାଜ୍ୟରେ ରହିବାକୁ ସ୍ଥାନ ଦେବେନାହିଁ । ଯଦି ସ୍ଥାନଦେବାକୁ ଇଚ୍ଛାକରନ୍ତି ତେବେ ଦେଶଯୀମାରେ ସେମାନଙ୍କୁ ସ୍ଥାନଦେଇ ବାଧ୍ୟବାଧକଭାବେ ସେମାନଙ୍କଠାରୁ କର ଅଦାୟ କରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଚତୁର୍ଥୋଽଧ୍ୟାୟଃ—ଦୁର୍ଗନିବେଶଃ—ଆଦିତଃ ପଞ୍ଚବିଂଶଃ ।

---

(୧) ସନ୍ନିଧାତା (କୋଷାଧ୍ୟକ୍ଷ)—କୋଷଗୃହ (ରତ୍ନସୁବର୍ଣ୍ଣାଦି ସାଇତିବା ଗୃହ), ପଣ୍ୟଗୃହ (ବିକ୍ରୟଯୋଗ୍ୟ ପଦାର୍ଥ ରଖିବା ଗୃହ), କୋଷ୍ଠାଗାର (ଧାନ, ଗୃଡ଼ଳ, ଗହମ, ଘିଅ, ତେଲ୍ ପ୍ରଭୃତି ଖାଦ୍ୟପଦାର୍ଥ ରଖିବା ଗୃହ—ସରଘର), କୁପ୍ୟଗୃହ (ଚନ୍ଦନ, ଦେବଦାରୁ, ବାଉଁଶ ଇତ୍ୟାଦି ଉପଯୋଗୀ ବନଜାତ ପଦାର୍ଥ ରଖିବା ଗୃହ), ଅସ୍ତ୍ରାଗାର ଓ କାରାଗାର (Jail) ନିର୍ମାଣ କରାଇବେ ।

---

* ସନ୍ନିଧାତା—The Chamberlain (one who ever attends upon the king).

(୧)—କୋଶଗୃହ = Treasure-house; ପଣ୍ୟଗୃହ = Trading house; କୋଷ୍ଠାଗାର = Storehouse of grains; କୁପ୍ୟଗୃହ = Store house of forest produce; ଆୟୁଧାଗାର = Armoury; ବନ୍ଧନାଗାର = Jail.

ବାପୀମନୁଦକୋପସ୍ନେହାଂ ଖାନୟିତ୍ୱା ପୃଥୁଶିଳାଭିରୁଭୟତଃ ପାର୍ଶ୍ୱଂ ମୂଳଂ ଚ ପ୍ରଚତ୍ୟ ସାରଦାରୁପଞ୍ଜରଂ ଭୂମିସମଂ ତ୍ରିତଳମନେକବିଧାନଂ କୁଟ୍ଟିମଦେଶସ୍ଥାନତଳମେକଦ୍ୱାରଂ ଯନ୍ତ୍ରଯୁକ୍ତସୋପାନଂ ଦେବତା-ପିଧାନଂ ଭୂମିଗୃହଂ କାରୟେତ୍ । (୨) ତସ୍ୟୋପର୍ୟୁଭୟତୋନିଷେଧଂ ସପ୍ରଗ୍ରୀବମୈଷ୍ଟକଂ ଭଣ୍ଡବାହିନୀପରିକ୍ଷିପ୍ତଂ କୋଶଗୃହଂ କାରୟେତ୍ ପ୍ରାସାଦଂ ବା । ଜନପଦାନ୍ତେ ଧ୍ରୁବନିଧିମାପଦାର୍ଥମଭିତ୍ୟକ୍ତୈଃ

---

କୋଶଗୃହ ନିର୍ମ୍ମାଣବିଧି—ଜଳ ନ ଝରିବା ଓ ସନ୍ତସନ୍ତିଆ ନହେବା ବାପୀ ଆକାରର ଗୃହକୋଣିଆ ଗୋଟିଏ ଖାତ ଖୋଳାଇ, ଏହାର ତଳ ଓ ଦୁଇପଖା ବଡ଼ ବଡ଼ କଣ୍ଟାପଥରରେ ବନ୍ଧାଇବେ ଓ ଉତ୍ତମ କାଠପଟାରେ ପଞ୍ଜରୀ ଲଗାଇ ଭୂମିସମାନରୁ ତଳକୁ ତିନିପୁର କରି ନିର୍ମାଣ କରାଇବେ । ଏହି ତିନିପୁରର ପ୍ରତ୍ୟେକ ଭିତରେ ସୁନ୍ଦର ସୁନ୍ଦର ନାନାବିଧ କୋଠରୀ ନିର୍ମାଣ କରାଇବେ । ଏହି ତଳକୋଠିଯାକ ପୁର ଖୁବ୍ ମଜବୁତ୍‌ଭାବେ ଗଢ଼ିବାକୁ ହେବ ଏବଂ ତିନିପୁରକୁ ଯିବାସକାଶେ ଗୋଟିଏମାତ୍ର ଦ୍ୱାର ରହିବ । ଏଥିରେ ଯନ୍ତ୍ରଯୁକ୍ତ ସୋପାନ ଲଗାଇ ତିନିପୁରଯାକକୁ ଯିବାଆସିବାର ବ୍ୟବସ୍ଥା କରିବାକୁ ହେବ । ଏହି ତ୍ରିତଳ ଭୂମିଗୃହ ଦ୍ୱାରରେ ଦ୍ୱାରରକ୍ଷକ ଦେବତା ପ୍ରତିମା ଖୋଳାଯାଇଥିବା ଗୋଟିଏ କବାଟ ଲଗାଇବାକୁ ହେବ । ସନ୍ନିଧାତା ଏପରି ଗୋଟିଏ ଭୂମିଗୃହ ନିର୍ମାଣ କରାଇବେ ଯାହାକି ଲୋକଲୋଚନର ଅଗୋଚରରେ ଅତି ଗୁପ୍ତଗୃହ ରୂପେ ରାଜାଙ୍କ ବ୍ୟକ୍ତିଗତ ବ୍ୟବହାରରେ ଲାଗିପାରିବ । (୨) ସେହି ଭୂମିଗୃହର ଉପରଭାଗରେ ଭିତର ଓ ବାହାର ଦୁଇଦଗରୁ ଅର୍ଗଳଥିବା, ମୁଖଶାଳାଯୁକ୍ତ ହୋଇଥିବା, ଇଟାରେ ତିଆରି ହୋଇଥିବା, ଦ୍ରବ୍ୟରହିବା କୋଠରୀ ବା ଲୁହାପେଡ଼ି (Iron chest) ମାନଙ୍କ ଦ୍ୱାରା ବେଷ୍ଟିତ ହୋଇଥିବା କୋଶଗୃହ ବା ପ୍ରାସାଦ ନିର୍ମ୍ମାଣ କରାଇବେ । ବିପତ୍ତି କାଳରେ ଉପଯୋଗ କରିବା ଉଦ୍ଦେଶ୍ୟରେ ଏହି ଅକ୍ଷୟନିଧିଯୁକ୍ତ କୋଶଗୃହ ବା ପ୍ରାସାଦ ରାଜ୍ୟସୀମାନ୍ତରେ ବଧ୍ୟପୁରୁଷ (ନିକଟରେ ପ୍ରାଣଦଣ୍ଡ ଦେବା ସକାଶେ ରଖାଯାଇଥିବା ଅପରାଧୀ) ମାନଙ୍କ ଦ୍ୱାରା ଗୁପ୍ତଭାବେ ନିର୍ମ୍ମାଣ କରାଇ ନିର୍ମ୍ମାଣକାର୍ଯ୍ୟ ଶେଷହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ବଧ କରାଇଦେବେ । ଏପରି କରାଇବା ଫଳରେ ଏହି ଗୁପ୍ତନିଧି ସମସ୍ତଙ୍କର ଅବୋଧ ହୋଇ

**ପୁରୁଷୈଃ କାରୟେତ୍ । (୩) ପକ୍ୱେଷ୍ଟକାସ୍ତମ୍ଭଂ ଚତୁଃଶାଳମେକଦ୍ୱାର ମନେକସ୍ଥାନତଳଂ ବିବୃତସ୍ତମ୍ଭାପସାରମୁଭୟତଃ ପଣ୍ୟଗୃହଂ, କୋଷ୍ଠାଗାରଂ ଚ, ଦୀର୍ଘବହୁଳଶାଳଂ କକ୍ଷାବୃତକୁଡ୍ୟମନ୍ତଃକୁପ୍ୟଗୃହଂ, ତଦେବ ଭୂମିଗୃହଯୁକ୍ତମାୟୁଧାଗାରଂ, ପୃଥଗ୍ ଧର୍ମସ୍ଥୀୟଂ ମହାମାତ୍ରୀୟଂ ବିଭକ୍ତସ୍ତ୍ରୀପୁରୁଷସ୍ଥାନମପସାରତଃ ସୁଗୁପ୍ତକକ୍ଷ୍ୟଂ ବନ୍ଧନାଗାରଂ କାରୟେତ୍ । (୪) ସର୍ବେଷାଂ ଶାଲାଖାତୋଦପାନବର୍ଚ ସ୍ନାନଗୃହାଗ୍ନିବିଷ-ତ୍ରାଣମାର୍ଜାରନକୁଳାରକ୍ଷାଃ ସ୍ୱଦୈବପୂଜନଯୁକ୍ତାଃ କାରୟେତ୍ ।**

---

ରନ୍ତୁ । (୩) ପକ୍ୱ ଇଟ ଓ ପକ୍ୱଇଷ୍ଟକ ସ୍ତମ୍ଭଯୁକ୍ତ, ପରସ୍ପର ସମ୍ମୁଖୀନ ଚତୁର୍ଦ୍ଦିଗରେ ଅବସ୍ଥିତ ଚତୁଃଶାଳ ସମନ୍ୱିତ, ଏକଦ୍ୱାରବିଶିଷ୍ଟ ବହୁତ କୋଠରୀଯୁକ୍ତ, ସୁବିସ୍ତୃତ ସ୍ତମ୍ଭଯୁକ୍ତ ଗୃହସମ୍ମୁଖ ଦ୍ୱାର ପରିଶୋଭିତ ପଣ୍ୟଗୃହ ଓ କୋଷ୍ଠଗୃହ (ବିକ୍ରୟାଗାର, ଦୋକାନ ଓ ଶସ୍ୟଭଣ୍ଡାର), ବଡ଼ ବଡ଼ ଦୀର୍ଘ ଶାଳଯୁକ୍ତ କକ୍ଷା (ପ୍ରକୋଷ୍ଠ ବା କୋଠରୀ) ଦ୍ୱାରା ଆବୃତ କାନ୍ଥଥିବା କୁପ୍ୟଗୃହ (ଧାତୁ ସଂଚୟ ଗୃହ), ଉକ୍ତ ଆକାରବିଶିଷ୍ଟ ଭୂମିଗୃହଯୁକ୍ତ ଆୟୁଧଗୃହ (ଆୟୁଧାଗାର), * ଧର୍ମସ୍ଥ ଓ ମହାମାତ୍ରମାନଙ୍କଦ୍ୱାରା ଦଣ୍ଡିତ ହୋଇଥିବା ଅପରାଧିମାନଙ୍କ ସକାଶେ ଭିନ୍ନ ଭିନ୍ନ ହୋଇ ତିଆର ହୋଇଥିବା, ସ୍ତ୍ରୀ ପୁରୁଷଙ୍କ ସକାଶେ ସ୍ୱତନ୍ତ୍ରଭାବରେ ନିର୍ମାଣ କରାଯାଇଥିବା କୋଠରୀଯୁକ୍ତ ଏବଂ ଗୁପ୍ତରେ ପଳାଇଯିବାପାଇଁ ନିର୍ମିତ ହୋଇଥିବା କକ୍ଷସମନ୍ୱିତ ବନ୍ଧନଗୃହ (ବନ୍ଧନାଗାର) ନିର୍ମାଣ କରାଇବେ । (୪) ଉପର୍ଯ୍ୟୁକ୍ତ କୋଷଗୃହ, ପଣ୍ୟଗୃହ, କୋଷ୍ଠାଗାର, କୁପ୍ୟଗୃହ, ଆୟୁଧାଗାର ଓ ବନ୍ଧନାଗାରଗୁଡ଼ିକୁ ରାଜଭବନର ଅନ୍ୟାନ୍ୟ ଗୃହପରି ଶାଳ, ଖାତ, ପାଣିଯୁକ୍ତ କୂପ ଓ ସ୍ନାନାଗାର (Bath-room) ଯୁକ୍ତ, ଅଗ୍ନି ଓ ବିଷରୁ ରକ୍ଷାସକାଶେ ନିଶାନ୍ତପ୍ରଣିଧି ପ୍ରକରଣୋକ୍ତ ସମସ୍ତ ଉପାୟ ଏବଂ ମାର୍ଜାର, ନକୁଳ, ରକ୍ଷୀପୁରୁଷ ସମନ୍ୱିତକର ପ୍ରତ୍ୟେକ ଗୃହରକ୍ଷକ ଦେବତା ଅର୍ଥାତ୍ କୋଷଗୃହରେ କୁବେର, ପଣ୍ୟ ଓ କୋଷ୍ଠାଗାରରେ ଶ୍ରୀଦେବୀ, କୁପ୍ୟଗୃହରେ ବିଶ୍ୱକର୍ମା, ଆୟୁଧାଗାରରେ ଯମ ଓ ବନ୍ଧନାଗାରରେ ବରୁଣ ଦେବତାଙ୍କୁ

---

* ଧର୍ମସ୍ଥ = ବ୍ୟବହାରଦ୍ରଷ୍ଟା = ଜଜ୍ (Judge) । ମହାମାତ୍ର = ଅର୍ଥାଧିକାରୀ = କଲେକ୍ଟର ପ୍ରଭୃତି ।

**(୫) କୋଷ୍ଠାଗାରେ ବର୍ଷମାନମରତ୍ନିମୁଖଂ କୁଣ୍ଡଂ ସ୍ଥାପୟେତ୍ । ତଜ୍ଜାତକରଣାଧିଷ୍ଠିତଃ ପୁରାଣଂ ନବଂ ଚ ରତ୍ନଂ ସାରଂ ଫଲ୍ଗୁ କୁପ୍ୟଂ ବା ପ୍ରତିଗୃହ୍ଣୀୟାତ୍ । ତତ୍ର ରତ୍ନୋପଧାବୁତ୍ତମୋ ଦଣ୍ଡଃ କର୍ତ୍ତୁଃ କାରୟିତୁଶ୍ଚ, ସାରୋପଧୌ ମଧ୍ୟମଃ, ଫଲ୍‌ଗୁକୁପ୍ୟୋପଧୌ ତଚ୍ଚତାବଚ୍ଚଦଣ୍ଡଃ । (୬) ରୂପଦର୍ଶକବିଶୁଦ୍ଧଂ ହିରଣ୍ୟଂ ପ୍ରତିଗୃହ୍ଣୀୟାଦ୍, ଅଶୁଦ୍ଧଂ ଛେଦୟେତ୍ । ଆହର୍ତ୍ତୁଃ ପୂର୍ବଃ ସାହସଦଣ୍ଡଃ । ଶୁଦ୍ଧଂ ପୂର୍ଣ୍ଣ-**

ଯଥାବିଧିରେ ଅର୍ଚ୍ଚନା କରି ସ୍ଥାପନ କରାଇବେ । (୫) କୋଷ୍ଠାଗାରରେ ବର୍ଷାଜଳ ମାପିବାସକାଶେ ଏକ ଅରତ୍ନି (ଚବିଶ ଅଙ୍ଗୁଳ ଲମ୍ବା ଚଉଡ଼ା) ମୁହଁ ଥିବା ଗୋଟିଏ କୁଣ୍ଡ ସ୍ଥାପନ କରାଇବେ । ରତ୍ନାଦି ପଦାର୍ଥ ସଂଗ୍ରହ ବେଳେ ତାହା ପୁରାତନ କିମ୍ବା ନୂତନ, ଅସଲ୍ କିମ୍ବା ନକଲ୍ ଏହା ଜାଣିବା ସକାଶେ ସେହି ସେହି ପଦାର୍ଥମାନଙ୍କ ଅଭିଜ୍ଞବ୍ୟକ୍ତିମାନଙ୍କ ପାଖରେ ରହି ମଣିମୁକ୍ତାଦି ରତ୍ନ, ଚନ୍ଦନାଦି ସାରବସ୍ତୁ, ବିବିଧପ୍ରକାର ବସ୍ତ୍ର ଓ କାଠ, ଚମଡ଼ା, ବାଉଁଶ, ବକଳ ଇତ୍ୟାଦି ପଦାର୍ଥମାନଙ୍କୁ ସଂଗ୍ରହ କରିବେ । ଯେଉଁ ବ୍ୟକ୍ତି ଏହି କୋଷଗୃହରେ ନକଲ୍ ରତ୍ନ ରଖିଦେଇ ସେଠାରେ ରଖାଯାଇଥିବା ଅସଲ୍ ରତ୍ନକୁ ଛଳରେ ଅପହରଣ କରେ, ସେହି ଅପହରଣକାରୀ ଓ ଅପହରଣ ସକାଶେ ପ୍ରବର୍ତ୍ତାଇଥିବା କର୍ମ୍ମଚାରୀଙ୍କୁ ଉତ୍ତମ ସାହସଦଣ୍ଡରେ ଦଣ୍ଡିତ କରିବେ ଅର୍ଥାତ୍ ଏକସହସ୍ର ପଣ (ଏକହଜାର ଟଙ୍କା) ଜରିମାନା କରିବେ । ଚନ୍ଦନାଦି ସାରପଦାର୍ଥ ଅପହରଣ କଲେ ମଧ୍ୟମ ସାହସଦଣ୍ଡରେ ଦଣ୍ଡିତ କରିବେ ଅର୍ଥାତ୍ ପାଞ୍ଚଶହ ଟଙ୍କା ଜରିମାନା କରିବେ । ବସ୍ତ୍ରଚର୍ମ୍ମାଦି ଅପହରଣ କଲେ ସେ ପଦାର୍ଥର ଯେତିକି ମୂଲ୍ୟ ହେବ ସେତିକି ବା ସେହି ପଦାର୍ଥର ସମାନ ଆଉଗୋଟିଏ ପଦାର୍ଥ ଜରିମାନାରୂପେ ଦେବା ସକାଶେ ଆଦେଶ ଦେବେ । (୬) ସୁବର୍ଣ୍ଣପରୀକ୍ଷାକାରୀ ଅଧ୍ୟକ୍ଷଙ୍କଦ୍ୱାରା ଉତ୍ତମରୂପେ ପରୀକ୍ଷା କରାଇ ମୁଦ୍ରାଚିହ୍ନିତ ସୁବର୍ଣ୍ଣରୌପ୍ୟାଦି ମୂଲ୍ୟବାନ୍

(୫)—ବର୍ଷମାନ = **Rain-gauge**

(୬)—'ସାହସ'ର ଅର୍ଥ 'ଦଣ୍ଡ' । ସାହସଂ ତୁ ଦମୋଦଣ୍ଡଃ—ଇତ୍ୟମରଃ ।

ସାହସଶବ୍ଦସ୍ୟ ଦଣ୍ଡାର୍ଥକତ୍ୱେଽପି ପୁନର୍ଦଣ୍ଡଶବ୍ଦସ୍ୟ ଲିଖନଂ, ବିଶେଷ୍ୟସ୍ୟ ଦାର୍ଢ୍ୟାର୍ଥ ମିତି ସୂଚିତଂ ।

**ମଭିନବଂ ଚ ଧାନ୍ୟଂ ପ୍ରତିଗୃହ୍ଣୀୟାତ୍‌। ବିପର୍ଯୟେ ମୂଲଦ୍ୱିଗୁଣୋ ଦଣ୍ଡଃ। ତେନ ପଣ୍ୟଂ କୁପ୍ୟମାୟୁଧଂ ଚ ବ୍ୟାଖ୍ୟାତଂ। (୭) ସର୍ବାଧିକରଣେଷ୍ୟୁ ଯୁକ୍ତୋପଯୁକ୍ତତତ୍ପୁରୁଷାଣାଂ ପଣଦ୍ୱିପଣଚତୁଷ୍ପଣାଃ, ପରଂ ମପହାରେଷୁ ପୂର୍ବମଧ୍ୟମୋତ୍ତମବଧା ଦଣ୍ଡାଃ। (୮) କୋଶାଧିଷ୍ଠିତସ୍ୟ କୋଶାବଚ୍ଛେଦେ ଘାତଃ। ତଦ୍‌ୱୈୟାବୃତ୍ୟକାରାଣାମର୍ଧଦଣ୍ଡାଃ।**

---

ମୋହରମାନଙ୍କୁ (coins) ଗ୍ରହଣ କରିବେ ଏବଂ ଅଶୁଦ୍ଧ ଅର୍ଥାତ୍ କାଳ୍ପନିକ (counterfeit) ସୁବର୍ଣ୍ଣାଦିମାନଙ୍କୁ ଦୁଇଗଡ଼ କରି ଛେଦନ କରିବେ । ଏପରି କାଳ୍ପନିକ ମୁଦ୍ରା ଆଣିଥିବା ବ୍ୟକ୍ତିଙ୍କୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବେ ଅର୍ଥାତ୍ ଅଢ଼ାଇଶହ ଟଙ୍କା ଜରିମାନା କରିବେ । ଗୁଣ୍ଡ ଅଗାଡ଼ ନଥିବା, ଠିକ୍ ମାପଥିବା ନୂତନ ଧାନ୍ୟ ଅର୍ଥାତ୍ ଧାନ, ଗହମ, ବିରି ଇତ୍ୟାଦି ଖାଦ୍ୟଶସ୍ୟ ଗ୍ରହଣକରିବେ । ଯେଉଁ ବ୍ୟକ୍ତି ଏହାର ବିପରୀତ କରିବ ତାହାକୁ ସେହି ଦ୍ରବ୍ୟମୂଲ୍ୟର ଦୁଇଗୁଣ ଅର୍ଥଦଣ୍ଡ ବିଧାନ କରିବେ । ଏହି ନିୟମରେ ଅନ୍ୟ କିଣାବିକା ପଦାର୍ଥ (କାଠ, ଚମଡ଼ା, ଲୌହାଦି ଧାତୁ ଓ ଶସ୍ତ୍ର) ମାନଙ୍କର ମଧ୍ୟ ବ୍ୟବସ୍ଥା କରିବେ । (୭) ସମସ୍ତ ବିଭାଗର ମୁଖ୍ୟ କର୍ମଚାରୀ, କିରାଣୀ ଓ ଚାକରମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି ଉପର୍ଯ୍ୟୁକ୍ତ ପଦାର୍ଥ ଅପହରଣ କଲେ ରାଜା ପ୍ରଥମଥର ତାଙ୍କୁ ଏକପଣ (ଏକଟଙ୍କା), ଦୁଇପଣ ବା ଚାରିପଣ ଅର୍ଥଦଣ୍ଡ ବିଧାନ କରିବେ । ଏଥିରେ ନ ସୁଧୁରି ସେ ଦ୍ୱିତୀୟବାର ଏପରି କଲେ ପୂର୍ବସାହସଦଣ୍ଡ (ଅଢ଼ାଇଶହ ଟଙ୍କା ଅର୍ଥଦଣ୍ଡ), ତୃତୀୟବାର କଲେ ମଧ୍ୟମସାହସଦଣ୍ଡ (ପାଞ୍ଚଶହ ଟଙ୍କା ଅର୍ଥଦଣ୍ଡ), ଚତୁର୍ଥବାର କଲେ ଉତ୍ତମସାହସଦଣ୍ଡରେ ଦଣ୍ଡିତ (ଏକହଜାର ଟଙ୍କା ଜରିମାନା) କରିବେ । ଏଥିରେ ଯଦି ନ ସୁଧୁରେ ତେବେ ସେହି ଦୋଷୀ କର୍ମଚାରୀଙ୍କ ପ୍ରତି ପ୍ରାଣଦଣ୍ଡ ବିଧାନ କରିବେ । (୮) କୋଶାଧ୍ୟକ୍ଷ ଯଦି ସୁଡ଼ଙ୍ଗ ଇତ୍ୟାଦି କରାଇ କୋଶଗୃହରୁ ଧନ ଅପହରଣ କରନ୍ତି, ତେବେ ତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବାକୁ ହେବ । କିନ୍ତୁ ଏପରି କାର୍ଯ୍ୟ ଯଦି ଏହାଙ୍କ ଅଧୀନରେ ଥିବା ପରିଚାରକମାନେ କରନ୍ତି, ତେବେ ସେମାନଙ୍କୁ

---

(୭)—ଯୁକ୍ତ = Officer ଅଫିସର; ଉପଯୁକ୍ତ = Clerk ଗୁମାସ୍ତା ବା କିରାଣୀ; ତତ୍ପୁରୁଷ = Servant ଚାକର ।

* ପରିଭାଷଣମବଜ୍ଞାତେ । ଚୋରାଣାମଭିପ୍ରଧର୍ଷଣେ; ଚିତ୍ରୋଘାତଃ ।
ତସ୍ମାଦାପ୍ତପୁରୁଷାଧିଷ୍ଠିତଃ ସନ୍ନିଧାତା ନିଚୟାନନୁତିଷ୍ଠେତ୍ ।
(୯) ବାହ୍ୟମାଭ୍ୟନ୍ତରଂ ଚାୟଂ ବିଦ୍ୟାଦ୍ ବର୍ଷଶତାଦପି ।
ଯଥା ପୃଷ୍ଟୋ ନ ସଜ୍ଜେତ ବ୍ୟୟଶେଷଂ ଚ ଦର୍ଶୟେତ୍ ॥

---

ଏହାର ଅର୍ଦ୍ଧଦଣ୍ଡ ଅର୍ଥାତ୍ ଦରମାସ ଦେବାପାଏ ମାଡ଼ ଦେବାକୁ ହେବ । କୋଷାଧ୍ୟକ୍ଷଙ୍କ ଅଜାଣାରେ ଯଦି କୋଷ ଅପହୃତ ହୁଏ ତେବେ ତାଙ୍କୁ ନିନ୍ଦାଯୁକ୍ତ ଭର୍ତ୍ସନା କରିବାକୁ ହେବ । ଚୋରମାନେ ଯଦି ସିନ୍ଧିକରି କୋଶାଗାରରୁ ଧନ ଚୋରି କରନ୍ତି ତେବେ ତାଙ୍କୁ ଧରି ବିବିଧପ୍ରକାର ମାଡ଼ଦେଇ ମାରିଦେବାକୁ ହେବ । ତେଣୁ ଆପ୍ତପୁରୁଷ ଅର୍ଥାତ୍ ଯଥାର୍ଥବକ୍ତା ଅନୁଭବୀ ବ୍ୟକ୍ତିଙ୍କ ସହଯୋଗରେ ସନ୍ନିଧାତା ଭାଣ୍ଡାଗାରାଧ୍ୟକ୍ଷ (ଭଣ୍ଡାରଘରିଆ) ରାଜସ୍ୱସଂଗ୍ରହ କାର୍ଯ୍ୟରେ ତତ୍ପର ହେବେ । (୯) କୋଶାଧ୍ୟକ୍ଷ ରାଜ୍ୟରୁ ଓ ନଗରରୁ ହେବା ଆୟ ଏପରି ଜାଣିବାକୁ ଏବଂ ଲେଖିବାକୁ ହେବ—ଯେପରି କି ଶହେବର୍ଷର ହିସାବ ପଚାରିଲେ ମଧ୍ୟ ଜିହ୍ୱାଗ୍ରରେ ଥିବାପରି ସେ ନିଃସନ୍ଦେହରେ ତାହା କହିପାରିବେ ଏବଂ ବ୍ୟୟହେବା ପରେ ବଳିଥିବା ଧନ ଓ ତାର ହିସାବ ରାଜାଙ୍କୁ ପ୍ରତ୍ୟକ୍ଷରେ ଦେଖାଇ ନିଜର ସଚ୍ଚୋଟପଣକୁ ପ୍ରମାଣିତ କରିପାରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ପଞ୍ଚମୋଽଧ୍ୟାୟଃ ସନ୍ନିଧାତୃନିଚୟ କର୍ମ୍ମ । ଆଦିତଃ ଷଡ଼୍‌ବିଂଶଃ ।

---

* ପରିଭାଷଣ = ନିନ୍ଦାଯୁକ୍ତ ଭର୍ତ୍ସନା—ଲାଃ ସନିନ୍ଦାଉପାଲମ୍ଭସ୍ତୁ ତସ୍ୟାତ୍ପରିଭାଷଣଂ ଇତ୍ୟମରଃ ।
Censure.

# ଷଷ୍ଠୋଽଧ୍ୟାୟଃ

## ଚତୁର୍ବିଂଶ ପ୍ରକରଣମ୍—ସମାହର୍ତ୍ତୃସମୁଦୟପ୍ରସ୍ଥାପନମ୍

## THE BUSINESS OF COLLECTION OF REVENUE BY THE COLLECTOR GENERAL

ସମାହର୍ତ୍ତା ଅର୍ଥାତ୍ କଲେକ୍ଟର ଜେନେରଲଙ୍କ କାର୍ଯ୍ୟକ୍ରମର ବର୍ଣ୍ଣନ ।

* ସମାହର୍ତ୍ତା ଦୁର୍ଗଂ ରାଷ୍ଟ୍ରଂ ଖନିଂ ସେତୁଂ ବନଂ ବ୍ରଜଂ ବଣିକ୍‌ପଥଂ ଚାବେକ୍ଷେତ ।

(୧) ଶୁଲ୍କଂ ଦଣ୍ଡଃ ପୌତବଂ ନାଗରକୋ ଲକ୍ଷଣାଧ୍ୟକ୍ଷୋ ମୁଦ୍ରାଧ୍ୟକ୍ଷଃ ସୁରା ସୂନା ସୂତ୍ରଂ ତୈଳଂ ଘୃତଂ କ୍ଷାରଃ ସୌବର୍ଣ୍ଣିକଃ ପଣ୍ୟସଂସ୍ଥା ବେଶ୍ୟା ଦ୍ୟୂତଂ ବାସ୍ତୁକଂ † କାରୁଶିଳ୍ପିଗଣୋ

---

ସମାହର୍ତ୍ତା (କଲେକ୍ଟର୍ ଜେନେରଲ୍) ଦୁର୍ଗ, ରାଷ୍ଟ୍ର, ଖଣି, ସେତୁ, ବନ, ବ୍ରଜ ଓ ବଣିକ୍‌ପଥର ପରିଚାଳନା ବିଷୟର ତତ୍ତ୍ୱ ନେବେ । (୧) ଶୁଲ୍କ (ମହାସୁଲ), ଦଣ୍ଡ (ଜରିମାନା, ପ୍ରାଣଦଣ୍ଡ ପ୍ରଭୃତି), ପୌତବ (ମାପ ତୁଳ ଇତ୍ୟାଦିର ଉପକରଣ), ନାଗରକ (ନଗରାଧିକାରୀ), ଲକ୍ଷଣାଧ୍ୟକ୍ଷ (ଟଙ୍କଶାଳ ପରିଦର୍ଶକ,

---

* ସମାହର୍ତ୍ତା—Collector General, ରାଷ୍ଟ୍ର—Country part, ସେତୁ—Buildings and gardens, ବ୍ରଜ—Herds of cattle, ବଣିକ୍‌ପଥ—The roads of traffic, ଶୁଲ୍କ—Toll, ଦଣ୍ଡ—Fines, ତୁଲାମାନପୌତବ—Weights and measures, ନାଗରକ—Town clerk, ଲକ୍ଷଣାଧ୍ୟକ୍ଷ—The Superintendent of Coinage, ମୁଦ୍ରାଧ୍ୟକ୍ଷ—The Superintendent of Seals and Passports, ସୂନା—Slaughter of animals, କ୍ଷାର—Sugar, ବାସ୍ତୁକ—Building site, କାରୁ-ଶିଳ୍ପୀ—Artisans and Handicrafts men.

† କାରବଃ—ସ୍ଥୂଳଶିଳ୍ପକାରାଃ, ଶିଳ୍ପିନଃ ସୂକ୍ଷ୍ମଶିଳ୍ପକାରାଃ । ତକ୍ଷା ଚ ତନ୍ତୁବାୟଶ୍ଚ ନାପିତୋରଜକସ୍ତଥା ପଞ୍ଚମଶ୍ଚର୍ମ୍ମକାରଶ୍ଚ କାରବଃ ଶିଳ୍ପିନୋ ମତାଃ ।

ଦେବତାଧ୍ୟକ୍ଷୋ ଦ୍ୱାରବାହିରକାଦେୟଂ ଚ ଦୁର୍ଗମ୍ । (୬) ସୀତା ଭାଗୋ ବଳିଃ କରୋ ବଣିକ୍ ନଦୀପାଳସ୍ତରୋ ନାବଃ ପଟ୍ଟନଂ ବିବୀତଂ ବର୍ତ୍ତନୀ ରଜ୍ଜୁଶ୍ଚୋରରଜ୍ଜୁଶ୍ଚ ରାଷ୍ଟ୍ରମ୍ । (୩) ସୁବର୍ଣ୍ଣରଜତବଜ୍ରମଣିମୁକ୍ତାପ୍ରବାଳଶଙ୍ଖଲୋହଲବଣଭୂମିପ୍ରସ୍ତରରସଧାତବଃ ଖନିଃ ।

---

ଉଦ୍ୟାନ ଇତ୍ୟାଦି ଭୂମିସୀମା ଚହ୍ନଟକାରୀ କାନୁନଗୋ ପ୍ରଭୃତି), ମୁଦ୍ରାଧ୍ୟକ୍ଷ (ରାଜନାମାଙ୍କିତ ମୋହର ବା ସିଲ୍ ଓ ପାସ୍‌ପୋର୍ଟ ଦେବା ଅଧିକାରୀ), ସୁରା (ମଦ୍ୟାଧ୍ୟକ୍ଷ), ସୂନା (ଭକ୍ଷ୍ୟପ୍ରାଣିବଧ ସ୍ଥାନର ଅଧିକାରୀ), ସୂତ୍ର (ବୟନ ବିଭାଗର ଅଧ୍ୟକ୍ଷ), ତୈଳ, ଘୃତ ଓ ଗୁଡ଼ ବ୍ୟବସାୟୀ, ସୌବର୍ଣ୍ଣିକ (ସୁନାର ଓ ସୁନାବେପାରୀ), ପଣ୍ୟସଂସ୍ଥା (ଗୋଦାମ), ବେଶ୍ୟା, ଦ୍ୟୂତ (ଜୁଆଖେଳ), ବାସ୍ତୁକ (ଗୃହନିର୍ମାଣକାରୀ ବଢ଼େଇ ପ୍ରଭୃତି), କାରୁଶିଳ୍ପିଗଣ (ସ୍ଥୂଳ ଓ ସୂକ୍ଷ୍ମ କାର୍ଯ୍ୟ କରିବା ଶିଳ୍ପିଗଣ), ଦେବତାଧ୍ୟକ୍ଷ (ଦେବାଳୟ ତତ୍ତ୍ୱାବଧାରକ ଟ୍ରଷ୍ଟୀ), ଦ୍ୱାରବାହିରକ ଆଦେୟ (ଅର୍ଥାତ୍ ଗେଟପାସ ଓ ବାହାରୁ ଆସିଥିବା ନାଟ, ଡ୍ରାମା, ସର୍କସ୍ ପ୍ରଭୃତିରୁ ମିଳିବା ପାସ) ଏହି ବାଇଶିପ୍ରକାର ଉପାୟରୁ ଲବ୍ଧହେବା ଦ୍ରବ୍ୟକୁ 'ଦୁର୍ଗ' କୁହାଯାଏ । (୨) ସୀତା (କୃଷି), ଭାଗ (ପ୍ରଜାଙ୍କ ଆଦାୟର ଏକଷଷ୍ଠାଂଶ ରାଜଭାଗ), ବଳି (ରାଜପୁଷ୍ଟି ନିମିତ୍ତ ଉପହାର), କର (ଫଳ ପରିବା ଇତ୍ୟାଦିରୁ ଆଦାୟ ହେବା ରାଜସ୍ୱ ବା ଟାକ୍‌ସ୍), ବଣିକ୍‌ଠାରୁ ଆଦାୟ ହେବା କର, ନଦୀପାଳ (ତୀର୍ଥପଣ୍ଡାମାନଙ୍କଠାରୁ ଆଦାୟ ହେବା କର), ତର (ନଦୀ ପାରକରିବା ନାବିକଠାରୁ ଆଦାୟ ହେବା କର), ନାବ (ନୌବିଭାଗର ଅଧ୍ୟକ୍ଷଦ୍ୱାରା ଲବ୍ଧ ହେଉଥିବା କର), ପତ୍ତନ (ପାଟଣାରୁ ଲବ୍ଧ ହେବା କର), ବିବୀତ (ନିର୍ମିତକ୍ଷେତ୍ର ଓ ଗୋମହିଷାଦି ଯିବା ବନପଥ କର—ଚରିପାସ), ବର୍ତ୍ତିନୀ (ପଥକର-ରୋଡ଼୍‌ସେସ୍), ରଜ୍ଜୁ (ବିଷୟୀମାନଙ୍କଠାରୁ ଆଦାୟହେବା କର), ଚୋରରଜ୍ଜୁ (ଚୋରଧରିବା ବ୍ୟକ୍ତିକୁ ଦେବାସକାଶେ ଗ୍ରାମମାନଙ୍କରୁ ପୃଥକ୍‌ଭାବେ ଆଦାୟ ହେବା କର)—ଏ ତେରଗୋଟି ବିଷୟକୁ 'ରାଷ୍ଟ୍ର' କୁହାଯାଏ । (୩) ସୁନା, ରୁପା, ହୀରା, ମରକତାଦି ମଣି, ମୁକ୍ତା, ପୋହଳା, ଶଙ୍ଖ, ଲୁହା, ଲୁଣ, ମାଟି, ପଥର, ରସ (ପାରଦପ୍ରଭୃତି)—ଏଗୁଡ଼ିକ ଖଣିରୁ ଉତ୍ପନ୍ନ ହେଉଥିବା ହେତୁ 'ଖନି'ପଦବାଚ୍ୟ । (୪) ପୁଷ୍ପ (କୁଙ୍କୁମାଦି ଫୁଲବାଡ଼ି),

(୪) ପୁଷ୍ପଫଳବାଟଷଣ୍ଡ-କେଦାରମୂଳବାପାଃ ସେତୁଃ । (୫) ପଶୁମୃଗ-ଦ୍ରବ୍ୟହସ୍ତିବନ ପରିଗ୍ରହୋ ବନମ୍ । (୬) ଗୋମହିଷ ମଜାବିକଂ ଖରୋଷ୍ଟ୍ରମଶ୍ୱାଶ୍ୱତରଶ୍ଚ ବ୍ରଜଃ । (୭) ସ୍ଥଳପଥୋ ବାରିପଥଶ୍ଚ ବଣିକ୍‌ପଥଃ । (୮) ଇତ୍ୟାୟଶରୀରମ୍ । ମୂଳଂ, ଭାଗୋ, ବ୍ୟାଜୀ, ପରିଘଃ, କ୍ଳୃପ୍ତଂ, ରୂପିକମତ୍ୟୟଶ୍ଚାୟମୁଖମ୍ । (୯) ଦେବ ପିତୃ

---

ଫଳ (ଫଳମଫଳିବା ବଗିଚ୍ଚ), ବାଟ (ଅଙ୍ଗୁରବାଡ଼ ଓ ପାନବାଡ଼), ଷଣ୍ଡ (କଦଳୀ, ଗୁଆ, ନଡ଼ିଆ ବୋଇରେ), କେଦାର (ଧାନକିଆରି, ଗହମକିଆରି ପ୍ରଭୃତି), ମୂଳବାପ (ହଳଦୀ, ଅଦା, ପାଳୁଅ, କନ୍ଦମୂଳ ପ୍ରଭୃତି କନ୍ଦପଦାର୍ଥ)— ଏ ଛଅଗୋଟିକୁ 'ସେତୁ' କୁହାଯାଏ । (୫) ପଶୁ (ଗୋସଦୃଶ ମୃଗାଦି ବନ), ମୃଗ (ହରିଣ, ଝିଆଦି ପ୍ରଭୃତି ରହିବା ବନ), ଦ୍ରବ୍ୟ (କାଠ, ବାଉଁଶ, ଜଉ, ଶିଂଘ, ଚର୍ମ୍ମ, ନଖ, ଦନ୍ତ ପ୍ରଭୃତି ଉପଯୋଗୀ ଦ୍ରବ୍ୟ ଥିବା ବନ), ହସ୍ତୀ (ହାତୀ ଥିବା ବଣ)—'ବନ' ଅର୍ଥରେ ଏସମସ୍ତ ଗ୍ରହଣ କରିବାକୁ ହେବ । (୬) ଗାଈ, ମଇଁଷି, ଛେଳି, ମେଣ୍ଢା, ଗଧ, ଓଟ, ଘୋଡ଼ା, ଖଚର—ଏମାନେ ବ୍ରଜପଦବାଚ୍ୟ । (୭) ବ୍ୟବସାୟୋପଯୋଗୀ ସଡ଼କ (ରେଲ୍‌ଲାଇନ୍) ପ୍ରଭୃତି ସ୍ଥଳପଥ ଓ ସମୁଦ୍ର, ନଦୀ, କେନାଲ୍ ପ୍ରଭୃତି ଜଳପଥ 'ବଣିକ୍‌ପଥ' ପଦବାଚ୍ୟ । (୮) ଉକ୍ତ ସତଷଠୀ ପ୍ରକାରର ଦୁର୍ଗ ପ୍ରଭୃତି ସାତଗୋଟି ଜାଗା ରାଜାଙ୍କର ଧନାଗମର ସ୍ଥାନ । ମୂଳ (ଧାନ୍ୟ, ଫଳ ପ୍ରଭୃତି ବିକ୍ରୟଲବ୍ଧ ଧନ), ଭାଗ (ଅୟର ଛ'ଭାଗରୁ ଏକଭାଗ ବା ରାଜଭାଗ), ବ୍ୟାଜୀ (ବେପାରିମାନଙ୍କଠାରୁ ମିଳିବା ଧନ ବା ବ୍ୟବହାର ଲଭ୍ୟାଂଶର କୋଡ଼ିଏ ଭାଗରୁ ଏକଭାଗ), ପରିଘ (ନଦୀ ପାରହେବା ନୌକାର ଭଡ଼ା ବା ଅନ୍ୟମତରେ, ଅର୍ଥାତ୍ ଗଙ୍ଗାପ୍ରସାଦ ଶାସ୍ତ୍ରୀ, ହିନ୍ଦୀ ଅନୁବାଦକଙ୍କ ମତରେ, ବେଓ୍ୱାରିସ ସମ୍ପତ୍ତି), କ୍ଳୃପ୍ତ (ଅମୁକ ଗ୍ରାମରୁ ଏତେ ଧାନ ବା ଏତେ ଟଙ୍କା ଅଣାଯିବ ବୋଲି ନିର୍ଣ୍ଣୟ କରାଯାଇଥିବା ଯାହାକିଛି ଅଳ୍ପଧନ, ପେସ୍‌କସ୍), ରୂପିକ (ଲବଣାଧ୍ୟକ୍ଷ ଲବଣବିକ୍ରୟୀମାନଙ୍କଠାରୁ ଆଣିବା ଏକ ଅଷ୍ଟମାଂଶ ରାଜଭାଗ), ଅତ୍ୟୟ (ଜରିମାନା)—ଏସମସ୍ତଙ୍କୁ 'ଆୟମୁଖ' କୁହାଯାଏ । (୯) ଦେବପୂଜା, ପିତୃପୂଜା (ଶ୍ରାଦ୍ଧାଦି), ଦାନ, ସ୍ୱସ୍ତିବାଚନ (ଶାନ୍ତିକ ଓ ପୌଷ୍ଟିକ କର୍ମ୍ମାନୁଷ୍ଠାନ ସକାଶେ ପୁରୋହିତଙ୍କୁ ଦେବା ଦକ୍ଷିଣା), ଅନ୍ତଃପୁର (ପାଟରାଣୀ, ରାଜ-

ପୂଜାଦାନାର୍ଥଂ ସ୍ୱସ୍ତିବାଚନମନ୍ତଃପୁରଂ ମହାନସଂ ଦୂତପ୍ରାବର୍ତ୍ତିମଂ କୋଷ୍ଠାଗାରମାୟୁଧାଗାରଂ ପଣ୍ୟଗୃହଂ କୁପ୍ୟଗୃହଂ କର୍ମ୍ମାନ୍ତୋ ବିଷ୍ଟିଃ ପତ୍ତ୍ୟଶ୍ୱରଥଦ୍ୱିପପରିଗ୍ରହୋ ଗୋମଣ୍ଡଳଂ ପଶୁମୃଗପକ୍ଷିବ୍ୟାଳ-ବାଟାଃ କାଷ୍ଠତୃଣବାଟଶ୍ଚେତି ବ୍ୟୟଶରୀରମ୍ । (୧୦) ରାଜବର୍ଷଂ ମାସଃ ପକ୍ଷୋ ଦିବସଶ୍ଚ ବ୍ୟୁଷ୍ଟମ୍ । ବର୍ଷାହେମନ୍ତଗ୍ରୀଷ୍ମାଣାଂ ତୃତୀୟସପ୍ତମା-

---

ଭୋଗ୍ୟା ଅନ୍ୟ ସ୍ତ୍ରୀ ଏବଂ ରାଜକୁମାରମାନଙ୍କୁ ଦେବା ଧନ), ମହାନସ (ଖାଦ୍ୟଖର୍ଚ୍ଚ), ଦୂତପ୍ରାବର୍ତ୍ତିମ (ଦୂତ ପରରାଷ୍ଟ୍ରକୁ ଗଲାବେଳେ ନେବାର ରାସ୍ତାଖର୍ଚ୍ଚ), କୋଷ୍ଠାଗାର (ସଞ୍ଚୟଘର ଖର୍ଚ୍ଚ), ଆୟୁଧାଗାର ବା ଅସ୍ତ୍ରାଗାର ପାଇଁ ଦେବା ଖର୍ଚ୍ଚ, ପଣ୍ୟଗୃହ (ଗୋଦାମ ଓ ଦୋକାନ ନିର୍ମାଣ ଓ ମରାମତି ପାଇଁ ଦେବା ଧନ), କୁପ୍ୟଗୃହ (ବନଜାତ କାଷ୍ଠାଦିର ଆନୟନ, ଛେଦନ, ରକ୍ଷଣ, ରକ୍ଷାଗୃହ ଓ ବିକ୍ରୟଗୃହ ନିର୍ମ୍ମାଣ ବ୍ୟୟ), କର୍ମ୍ମାନ୍ତ (କୃଷି-କ୍ଷେତ୍ରାଦିରେ ହେବା ବ୍ୟୟ), ବିଷ୍ଟି (ବେଠିଆଙ୍କୁ ଦେବା ପଇସା), ପତ୍ତ୍ୟଶ୍ୱରଥ ଦ୍ୱିପପରିଗ୍ରହ (ରଥ, ଅଶ୍ୱ, ଗଜ, ପଦାତି ଚତୁର୍ବିଧାଙ୍ଗସେନା ସଙ୍କାଶେ କରାଯିବା ବ୍ୟୟ), ଗୋମଣ୍ଡଳ (ଗୋରୁ, ମଇଁଷି, ଛେଳି, ମେଣ୍ଢା ଇତ୍ୟାଦି ଗୃହପାଳିତ ପଶୁମାନଙ୍କ ସଙ୍କାଶେ ହେବା ବ୍ୟୟ), ପଶୁ, ମୃଗ, ପକ୍ଷୀ, ବ୍ୟାଳ, ବାଟ, (ବନ୍ୟପଶୁ, ହରିଣାଦି ମୃଗ, ଶୁକଶାରିକାଦି ପକ୍ଷୀ, ସିଂହ ବ୍ୟାଘ୍ରାଦି ହିଂସ୍ରଜନ୍ତୁମାନଙ୍କର ରକ୍ଷଣସ୍ଥାନ ଅର୍ଥାତ୍ ଚିଡ଼ିଆଖାନା [Zoo] ସଙ୍କାଶେ ହେବା ବ୍ୟୟ), କାଷ୍ଠତୃଣବାଟ (କାଠ, ନଡ଼ା, ପାଳ, ଘାସ ରକ୍ଷଣାବେକ୍ଷଣ ସଙ୍କାଶେ ହେବା ବ୍ୟୟ)—ଏହି ସମସ୍ତଙ୍କୁ 'ବ୍ୟୟଶରୀର' କୁହାଯାଏ । (୧୦) ରାଜବର୍ଷ (ରାଜାଙ୍କ ରାଜ୍ୟାଭିଷେକଦିନଠାରୁ ଆରମ୍ଭ ହେବା ବର୍ଷ) ମାସ, ପକ୍ଷ ଓ ଦିନକୁ 'ବ୍ୟୁଷ୍ଟ' କହନ୍ତି । ରାଜବର୍ଷକୁ ତିନିଭାଗରେ ବିଭକ୍ତ କରି ପ୍ରଥମଭାଗ (ସିଂହ, କନ୍ୟା, ତୁଳ, ବିଛା ଏ ଚାରିମାସ)କୁ ବର୍ଷାଋତୁ, ଦ୍ୱିତୀୟଭାଗ (ଧନୁ, ମକର, କୁମ୍ଭ, ମୀନ ଏ ଚାରିମାସ)କୁ ହେମନ୍ତଋତୁ, ତୃତୀୟଭାଗ (ମେଷ, ବୃଷ, ମିଥୁନ, କର୍କଟ ଏ ଚାରିମାସ)କୁ ଗ୍ରୀଷ୍ମଋତୁ ବୋଲି କହନ୍ତି । ପ୍ରତ୍ୟେକ ଋତୁରେ ଥିବା ଆଠ ଆଠ ପକ୍ଷ ମଧ୍ୟରୁ ତୃତୀୟପକ୍ଷ ଓ ସପ୍ତମପକ୍ଷରୁ ଏକ ଏକ ଦିନ ଊଣାକରି ଅର୍ଥାତ୍ ଚଉଦ ଦିନ ହିସାବରେ ଗଣନା କରିବାକୁ ହେବ ।

ଦିବସୋନାଃ ପକ୍ଷାଃ, ଶେଷାଃ ପୂର୍ଣ୍ଣାଃ । ପୃଥଗଧିମାସକ ଇତି କାଳଃ । (୧୧) * କରଣୀୟଂ ସିଦ୍ଧଂ ଶେଷମାୟବ୍ୟୟୌ ନୀବୀ ଚ । (୧୨) ସଂସ୍ଥାନଂ ପ୍ରଚାରଃ ଶରୀରାବସ୍ଥାପନମାଦାନଂ ସର୍ବସମୁଦୟପିଣ୍ଡଃ ସଂଜାତମେତତ୍ କରଣୀୟମ୍ । (୧୩) କୋଶାର୍ପିତଂ ରାଜହାରଃ

---

ଅନ୍ୟପକ୍ଷଗୁଡ଼ିକ ଠିକ୍ ପନ୍ଦରଦିନ ହିସାବରେ ଗଣନା କରିବାକୁ ହେବ । ଗୃହିମାନମାସର ଶୁକ୍ଳପ୍ରତିପଦାଠାରୁ ଆରମ୍ଭ କରି ଅମାବାସ୍ୟା ପର୍ଯ୍ୟନ୍ତ ଗୋଟିଏ ଅଧିମାସ ମାନିବାକୁ ହେବ । ଏହି ପ୍ରକାରେ ରାଜାଙ୍କର ସର୍ବପ୍ରକାର ଲେଖାଲେଖି ପାଇଁ ସମୟ ନିର୍ଦ୍ଦିଷ୍ଟ କରାଯାଇଛି । ଉଦାହରଣତଃ ଅମୁକ-ରାଜବର୍ଷେ, ଅମୁକମାସେ, ଅମୁକପକ୍ଷେ, ଅମୁକଦିବସେ, ଅମୁକଲୋକ ମୁଁ ନେବା ଏହି ଧନ ଅଜଦିନ ପୈଠ ଦେଲି—ଏପରି ହିସାବଖାତା ଇତ୍ୟାଦିରେ ଲେଖାଯାଏ । (୧୧) କରଣୀୟ, ସିଦ୍ଧ, ଶେଷ, ଆୟ, ବ୍ୟୟ, ନୀବୀ—ଏଛଗୋଟି ବିଷୟର ନିର୍ଦ୍ଦେଶ ଏଠାରେ କରାଯାଉଛି । (୧୨) କରଣୀୟ ଛ'ପ୍ରକାର—(କ) ସଂସ୍ଥାନ (ଅମୁକ ଗ୍ରାମରୁ ଏତିକି ଆଦାୟ ହେବ—ଏପରି କଳ୍ପନା) । (ଖ) ପ୍ରଚାର (ବିଭିନ୍ନ ଦେଶସମ୍ବନ୍ଧେ ଜ୍ଞାନ ଓ ଦୈନନ୍ଦିନ କାର୍ଯ୍ୟ ପର୍ଯ୍ୟବେକ୍ଷଣ) । (ଗ) ଶରୀରାବସ୍ଥାପନ (ଗ୍ରାମ ଓ ସହରମାନଙ୍କରୁ ବିଭିନ୍ନ ଦିଗରୁ ହେବା ଆଦାୟ ଧନର ଜ୍ଞାନ) । (ଘ) ଆଦାନ (ଯଥାସମୟରେ ଧାନ୍ୟ ସୁବର୍ଣ୍ଣାଦି ସଂଗ୍ରହ) । (ଙ) ସର୍ବସମୁଦୟ ପିଣ୍ଡ (ପ୍ରତି ଗ୍ରାମ ଓ ପ୍ରତି ନଗରରୁ ଆଦାୟ ହେବା ଧନର ନିଶ୍ଚିତ ପରିମାଣଜ୍ଞାନ) । (ଚ) ସଂଜାତ (ସର୍ବବିଧ ଆଦାୟ ଧନର ଜ୍ରୋକ୍ ଟୋଟାଲ୍ ହିସାବଜ୍ଞାନ) । ସମାହର୍ତ୍ତାଙ୍କ ଉକ୍ତ ଛ'ଗୋଟି କାର୍ଯ୍ୟ ଅବଶ୍ୟ କରଣୀୟ ହୋଇଥିବା ଯୋଗୁଁ ଏମାନଙ୍କୁ 'କରଣୀୟ' କୁହାଯାଏ । (୧୩) କୋଶାର୍ପିତ (ଭଣ୍ଡାରଘରିଆ ବା ଭଣ୍ଡାର-ରକ୍ଷକ ହସ୍ତରେ ଅର୍ପିତ ହେବା ଧନ), ରାଜହାର (ସମାହର୍ତ୍ତାଙ୍କଠାରୁ ରାଜା ନିଜର ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ନେବା ଧନ), ପୁରବ୍ୟୟ (ନଗରରେ ଶାଳନିର୍ମାଣାଦିକାର୍ଯ୍ୟରେ ବ୍ୟୟିତ ହେବା ଧନ)—ଏହି ତିନିଗୋଟିକୁ

---

* କରଣୀୟ—**Work in hand,** ସିଦ୍ଧ—**Work accomplished,** ଶେଷ—**Part of work in hand,** ଆୟ—**Receipts,** ବ୍ୟୟ—**Expenditure,** ନୀବୀ—**Net balance.**

ପୁରବ୍ୟୁଷ୍ଟ ପ୍ରବନ୍ଧଂ, ପରମସଂବତ୍ସରାନୁବୃତ୍ତଂ ଶାସନମୁକ୍ତଂ ମୁଖାଜ୍ଞପ୍ତଂ ଚାପାତନୀୟଂ, ଏତତ୍ ସିଦ୍ଧମ୍। (୧୪) ସିଦ୍ଧିପ୍ରକର୍ମଯୋଗଃ ଦଣ୍ଡଶେଷମାହାରଣୀୟଂ, ବଳାତ୍କୃତପ୍ରତିଷ୍ଟବ୍ଧମବସୃଷ୍ଟଂ ଚ ପ୍ରଶୋଧ୍ୟମ୍, ଏତଚ୍ଛେଷମସାରମଳ୍ପସାରଂ ଚ । (୧୫) ବର୍ତ୍ତମାନଃ

---

'ପ୍ରବନ୍ଧ' କୁହାଯାଏ । ପରମ ସମ୍ବତ୍ସରାନୁବୃତ୍ତ (ଅତୀତ ବର୍ଷମାନଙ୍କର ବାକି ରହି ଅସୁଲ ହୋଇନଥିବା ବାଇଦାଗଡ଼ା ଧନ), ଶାସନମୁକ୍ତ (କୌଣସି କାର୍ଯ୍ୟରେ ବ୍ୟୟହେବା ସକାଶେ ରାଜାଙ୍କଦ୍ୱାରା ମୌଖିକ ବା ଲିଖିତ ଆଦେଶ ଦିଆନଯାଇ ରଖାଯାଇଥିବା ଧନ), ମୁଖାଜ୍ଞପ୍ତ (କେବଳ ମୌଖିକ ଆଦେଶରେ ଖର୍ଚ୍ଚ କରାଯାଇଥିବା ଧନ)—ଏହି ତିନିଗୋଟିକୁ 'ଆପାତନୀୟ' କୁହାଯାଏ । ଉକ୍ତ ତିନିପ୍ରକାର 'ପ୍ରବନ୍ଧ' ଓ ତିନିପ୍ରକାର 'ଆପାତନୀୟ' ଏହି ଛ'ଗୋଟି ବିଷୟକୁ 'ସିଦ୍ଧ' କୁହାଯାଏ । (୧୪) ସିଦ୍ଧିପ୍ରକର୍ମ୍ମ ଯୋଗ (ଧାନ୍ୟାଦି ଫସଲ ପାଚିବା ସଙ୍ଗେ ସଙ୍ଗେ ତାକୁ ଜଗିରଖି ରାଜଭାଗ ଆଦାୟ କରିବା ଓ କର ସ୍ଥିର ହୋଇଥିବା ଭୂମିରୁ କର ସଂଗ୍ରହ ବ୍ୟବସ୍ଥା କରିବା), ଦଣ୍ଡଶେଷ (ଦେଶରକ୍ଷା ବିଭାଗ ବଜେଟରେ ସୈନ୍ୟ-ମାନଙ୍କ ସକାଶେ ଅଟକଳ କରାଯାଇଥିବା ଧନର ଅବଶିଷ୍ଟାଂଶ ଓ ଅର୍ଥଦଣ୍ଡରେ ଦଣ୍ଡିତ ବ୍ୟକ୍ତିଠାରେ ବାକିଥିବା ଜରିମାନା ଧନ)—ଉକ୍ତ ଦୁଇଟି ବିଷୟକୁ 'ଆହରଣୀୟ' କୁହାଯାଏ । ବଳାତ୍କୃତ (ରାଜାଙ୍କ ପ୍ରିୟପାତ୍ର-ରାଜକର୍ମ୍ମଚାରିଙ୍କ ସହିତ ସ୍ନେହ ସମ୍ବନ୍ଧ ଥିବା ଯୋଗୁଁ ରାଜସ୍ୱବାବଦକୁ ଦେବାକୁଥିବା ଧନ ନଦେଇ ରଖିଥିବା ବ୍ୟକ୍ତିଠାରେ ଥିବା ବାକି ଧନ—ଅପର ନାମ 'ପ୍ରତିସ୍ତବ୍ଧ'), ଅବସୃଷ୍ଟ (ନଗରର ବା ରାଜ୍ୟର କୌଣସି କୌଣସି ମୁଖ୍ୟବ୍ୟକ୍ତିମାନେ ଇଚ୍ଛାପୂର୍ବକ ଜାଣିଶୁଣି ଦେଇ ନକରିଥିବା ଧନ)—ଉକ୍ତ ଦୁଇଗୋଟି ବିଷୟକୁ 'ପ୍ରଶୋଧ୍ୟ' କୁହାଯାଏ । 'ଅସାର' (ଉପଯୁକ୍ତ ବ୍ୟୟ କରି ଲାଭ ନପାଇବା) ଓ 'ଅଳ୍ପସାର' ବହୁତ ବ୍ୟୟକରି ଅଳ୍ପଫଳ ପାଇବା) ବିଷୟକୁ 'ଶେଷ' କୁହାଯାଏ । (୧୫) * ଆୟ

---

(୧୪)—ଦଣ୍ଡ ଶବ୍ଦ ସୈନ୍ୟାର୍ଥକ (ପ୍ରକୃତିବିବେକ ଅଭିଧାନ) ।

* ଆୟ—Receipt, ବର୍ତ୍ତମାନ—Current, ପର୍ଯ୍ୟୁଷିତ—Last balance, ଅନ୍ୟଜାତ—Accidental (received from external source).

ପର୍ଯୁଷିତୋଽନ୍ୟଜାତଶ୍ଚାୟଃ । ଦିବସାନୁବୃତ୍ତୋ ବର୍ତ୍ତମାନଃ । ପରମ ସାଂବତ୍ସରିକଃ ପରପ୍ରଚାରସଂକ୍ରାନ୍ତୋ ବା ପର୍ଯୁଷିତଃ । ନଷ୍ଟପ୍ରସ୍ମୃତ-ମାୟୁକ୍ତଦଣ୍ଡଃ ପାର୍ଶ୍ୱଂପାରହୀଣିକମୌପାୟନିକଂ ଡମରଗତକସ୍ୱ-ମପୁତ୍ରକଂ ନିଧିଶ୍ଚାନ୍ୟଜାତଃ । ବିକ୍ଷେପବ୍ୟାଧିତାନ୍ତରାରମ୍ଭଶେଷଶ୍ଚ ବ୍ୟୟପ୍ରତ୍ୟାୟଃ । ବିକ୍ରୟେ ପଣ୍ୟାନାମର୍ଘବୃଦ୍ଧିରୁପଜା ମାନୋନ୍ମାନ

---

ତିନିପ୍ରକାର—ବର୍ତ୍ତମାନ, ପର୍ଯ୍ୟୁଷିତ ଓ ଅନ୍ୟଜାତ । ଦୈନନ୍ଦିନ ଆୟକୁ 'ବର୍ତ୍ତମାନ' ଆୟ, ଗତବର୍ଷରେ ଆଦାୟ ହେବାକୁ ଥିଲା ଅଥଚ ଚଳିତବର୍ଷ ଆଦାୟ କରାଗଲା—ଏପରି ଧନ ତଥା ଭୂତପୂର୍ବ ଅଧିକାରୀଙ୍କ ସମୟରେ ଆସିବାକୁ ଥିବା ଏବଂ ଶତ୍ରୁଠାରୁ ଆସିବାକୁ ଥିବା ଧନକୁ 'ପର୍ଯ୍ୟୁଷିତ ଆୟ' ଏବଂ 'ନଷ୍ଟପ୍ରସ୍ମୃତ' (ପାଶୋରିଯାଇ ବା ହଜିଯାଇ ପଛେ ମନେପଡ଼ି ମିଳିବା ଧନ), 'ଆୟୁକ୍ତଦଣ୍ଡ' (ଅପରାଧୀମାନଙ୍କଠାରୁ ଗ୍ରହଣ-କରାଯିବା ଧନ), 'ପାର୍ଶ୍ୱ' (କୌଣସି କୁଟିଳ ଉପାୟରେ ଲବ୍ଧ ହେବା ଧନ), 'ପରହୀଣିକ' (ଗାଈ ଗୋରୁ ପ୍ରଭୃତିଙ୍କଦ୍ୱାରା ନଷ୍ଟ ହୋଇଯାଇଥିବା ଶସ୍ୟର ଫଳ ଧନ), 'ଔପାୟନିକ' ( ଭେଟି ଧନ ), 'ଡମରଗତକ' (ଯୁଦ୍ଧଗୋଳ ସମୟରେ ଶତ୍ରୁସୈନ୍ୟଙ୍କଠାରୁ ଛଡ଼ାଇ ଆଣିବା ଧନ), 'ଅପୁତ୍ରକ' (ବେୱାରିସ ସମ୍ପତ୍ତି), 'ନିଧି' (ପୋତାଧନ)—ଏହି ଆଠପ୍ରକାର ଧନକୁ 'ଅନ୍ୟଜାତ ଆୟ' କୁହାଯାଏ । 'ବିକ୍ଷେପଶେଷ' (କୌଣସି ସାମାନ୍ୟକାର୍ଯ୍ୟ ସାଧନ ନିମନ୍ତେ ନିଯୁକ୍ତ ହୋଇଥିବା ସୈନ୍ୟଙ୍କପାଇଁ ଦିଆଯାଇଥିବା ଧନର ଖର୍ଚ୍ଚରୁ ବଳିଥିବା ଧନ), 'ବ୍ୟାଧିତଶେଷ' (ଔଷଧାଳୟକୁ ଦେଇଥିବା ଧନର ଖର୍ଚ୍ଚରୁ ବଳିଥିବା ଧନ), 'ଅନ୍ତରାରମ୍ଭ-ଶେଷ' (ଦୁର୍ଗ ପ୍ରାସାଦ ନିର୍ମାଣରୁ ବଳିଥିବା ଧନ)—ଏହି ତିନିପ୍ରକାର ଧନକୁ 'ବ୍ୟୟପ୍ରତ୍ୟାୟ' କୁହାଯାଏ । ଚଢ଼ାଦରରେ ବିକାହେବା ପଦାର୍ଥରୁ ଲାଭ ହେବା ଧନ, 'ଉପଜା' (ମନାକରାଯାଇଥିବା ପଦାର୍ଥ ବିକ୍ରୟ କରିଥିବା ବ୍ୟକ୍ତିଠାରୁ ଆଦାୟକରାଯିବା ଧନ), 'ମାନୋନ୍ମାନବିଶେଷ' (ଶିଖାରେ କଣି ବିକାରେ ବିକିବାରୁ ତହିଁରୁ ମିଳିବା ଲାଭଧନ), 'ବ୍ୟାଜୀ' (ଯେକୌଣସି ମାପ ଓ ତୁଳିଯୋଗ୍ୟ ପଦାର୍ଥର ଛିଗୁଡ଼ିପୂରଣ ନିମନ୍ତେ

ବିଶେଷୋ ବ୍ୟାଜୀ କ୍ରୟସଂଘର୍ଷେ ବା ବୃଦ୍ଧିରତ୍ୟାୟଃ । (୧୬) ନିତ୍ୟୋ ନିତ୍ୟୋତ୍ପାଦିକୋ ଲାଭୋ ଲାଭୋତ୍ପାଦିକ ଇତି ବ୍ୟୟଃ । ଦିବସାନୁବୃତ୍ତୋ ନିତ୍ୟଃ, ପକ୍ଷ ମାସ ସମ୍ବତ୍ସର ଲାଭୋଲାଭଃ । ତୟୋରୁତ୍ପନ୍ନୋ ନିତ୍ୟୋତ୍ପାଦିକୋ ଲାଭୋତ୍ପାଦିକ ଇତି । (୧୭) ବ୍ୟୟସଂଜାତାଦାୟବ୍ୟୟବିଶୁଦ୍ଧା ନୀବୀ ପ୍ରାପ୍ତା ଚାନୁବୃତ୍ତା ଚେତି ।

(୧୮) ଏବଂ କୁର୍ଯାତ୍ସମୁଦୟଂ ବୃଦ୍ଧିଂ ଚାୟସ୍ୟ ଦର୍ଶୟେତ୍ ।
ହ୍ରାସଂ ବ୍ୟୟସ୍ୟ ଚ ପ୍ରାଜ୍ଞଃ ସାଧୟେଚ୍ଚ ବିପର୍ଯୟମ୍ ॥

ଆଣିବା ମୂଳ ପଦାର୍ଥର କୋଡ଼ିଏଭାଗରୁ ଏକଭାଗ ଧନ), 'କ୍ରୟସଂଘର୍ଷ ବୃଦ୍ଧି' (ନିଲାମରୁ ବୃଦ୍ଧିପାଇ ଲାଭହେବା ଧନ)—ଏହି ପାଞ୍ଚପ୍ରକାର ଧନକୁ ମଧ୍ୟ 'ଆୟ' କୁହାଯାଏ । (୧୬) ନିତ୍ୟ, ନିତ୍ୟୋତ୍ପାଦକ, ଲାଭ ଓ ଲାଭୋତ୍ପାଦକ—ବ୍ୟୟ ଏପରି ଚାରିପ୍ରକାର । ଦୈନନ୍ଦିନ ବ୍ୟୟର ନାମ * ନିତ୍ୟବ୍ୟୟ । ଯାହା ପକ୍ଷ, ମାସ ଓ ବର୍ଷରେ ହେବା ଲାଭପାଇଁ ବ୍ୟୟ କରାଯାଏ ତାହାକୁ ଲାଭବ୍ୟୟ କୁହାଯାଏ । ଉକ୍ତ ଦୁଇପ୍ରକାର ନିର୍ଦ୍ଦିଷ୍ଟ ବ୍ୟୟ ବ୍ୟତୀତ ଯେଉଁ ଅତିରିକ୍ତ ବ୍ୟୟ କରାଯାଏ ତାହାକୁ ଯଥାକ୍ରମେ 'ନିତ୍ୟୋତ୍ପାଦକ' ଓ 'ଲାଭୋତ୍ପାଦକ' କୁହାଯାଏ । (୧୭) ସମସ୍ତ ପ୍ରକାର ଖର୍ଚ୍ଚରୁ ବଳକାଧନକୁ † 'ନୀବୀ' କୁହାଯାଏ । ଅର୍ଥାତ୍ ସର୍ବମୋଟ ଆୟରୁ ସର୍ବମୋଟ ବ୍ୟୟ କାଟିଦେଇ ଯେଉଁ ବଳକା ଶେଷଧନ ରହେ ତାହାକୁ 'ନୀବୀ' (ନିକର ଜମା) କୁହାଯାଏ । ଏହା 'ପ୍ରାପ୍ତ' ଓ 'ଅନୁବୃତ୍ତ' ନାମରେ ଦୁଇପ୍ରକାର । ଯାହା ରାଜକୋଷରେ ପ୍ରବେଶ କରିଛି, ତାହାର ନାମ 'ପ୍ରାପ୍ତ', ଯାହା ଅଦାୟ ହୋଇ ଆସିବାକୁ ଅଛି ବା ଆସୁଛି ତାହାର ନାମ 'ଅନୁବୃତ୍ତ' । (୧୮) ଅଭିଜ୍ଞ ସମାହର୍ତ୍ତା (କଲେକ୍ଟର୍ ଜେନେରାଲ୍) ଉକ୍ତ

* ନିତ୍ୟବ୍ୟୟ—Daily expenditure, ଲାଭବ୍ୟୟ—Profitable expenditure.

† ନୀବୀ—Net balance. ନିକରଭୂମିବାନୁପ୍ରବିଶ୍ୟ ନୀବୀଂ, ସାରମହତ୍ତାମାଦାୟ ନିରଗାଂ—ଇତି କୁମାରଃ ।

## ସପ୍ତମୋଽଧ୍ୟାୟଃ

### ପଞ୍ଚବିଂଶ ପ୍ରକରଣମ୍—ଅକ୍ଷପଟଲେ ଗାଣନିକ୍ୟାଧିକାରଃ

### THE BUSINESS OF KEEPING UP ACCOUNTS IN THE OFFICE OF ACCOUNTANTS.

* ଅକ୍ଷପଟଳ ଅର୍ଥାତ୍ ଗଣନାଯୋଗ୍ୟ ମୂଲ୍ୟବାନ୍ ମୁଦ୍ରାଦି ପଦାର୍ଥ-ମାନଙ୍କର ଗଣନା ଓ ପୁସ୍ତକରେ ଲେଖନକାର୍ଯ୍ୟ କରିବା ସ୍ଥାନରେ ନିଯୁକ୍ତ କର୍ମଚାରୀମାନଙ୍କ ମୁଖ୍ୟାଧିକାରୀ † ଅକ୍ଷପଟଳାଧ୍ୟକ୍ଷଙ୍କ କାର୍ଯ୍ୟକଳାପ ନିରୂପଣ ।

(୧) ଅକ୍ଷପଟଲମଧ୍ୟକ୍ଷଃ ପ୍ରାଙ୍ମୁଖମୁଦଙ୍ମୁଖଂ ବା ବିଭକ୍ତୋ-

---

ନିୟମରେ ଅପବୃଦ୍ଧି ଓ ବ୍ୟୟସଂକୋଚ କରି ଧନୋତ୍ପାଦନ କରିବେ । ଯଦି ଦୈବାତ୍ ବ୍ୟୟବୃଦ୍ଧି ଓ ଆୟସଂକୋଚ ଅବସ୍ଥା ପଡ଼ିଯାଏ ତେବେ ତାହାର ଭବିଷ୍ୟତରେ ଯେପରି କ୍ଷତିପୂରଣ କରାଯାଇପାରିବ ସେବିଷୟରେ ମଧ୍ୟ ଯୋଜନା ପ୍ରସ୍ତୁତ କରିବେ ।

ଇତି କୌଟଲ୍ୟସ୍ୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଷଷ୍ଠୋଽଧ୍ୟାୟଃ ।
ସମାହର୍ତ୍ତୃସମୁଦୟପ୍ରସ୍ଥାପନଂ । ଆଦିତଃ ସପ୍ତବିଂଶଃ ।

---

(୧) ଅକ୍ଷପଟଳର ଅଧ୍ୟକ୍ଷ ବିଧିପ୍ରକାରେ ତାଙ୍କ ଅଧୀନସ୍ଥ କର୍ମଚାରୀ-ମାନେ ସେମାନଙ୍କ ଅଫିସ କାର୍ଯ୍ୟ ସମ୍ପାଦନ କରିବା ସକାଶେ ଭିନ୍ନ ଭିନ୍ନ

---

* ଅକ୍ଷପଟଲଂ ଅକ୍ଷାଣାଂ ଦ୍ରବ୍ୟାଣାଂ ପଟଲେ—ଗଣନ ପୁସ୍ତକ ଲେଖନାଦି କର୍ମାନୁଷ୍ଠାନ-ଦେଶେ । ଗାଣନିକ୍ୟାଧିକାରଃ = ଗାଣନିକା ଗଣନନିଯୁକ୍ତାଃ ତେଷାଂ କର୍ମ ଗାଣନିକ୍ୟଂ ତସ୍ୟାଧିକାରଃ ପ୍ରସ୍ତାବଇହକ୍ରିୟତେ—ଇତି ସୂତ୍ରାର୍ଥଃ ।

† ଅକ୍ଷପଟଳାଧ୍ୟକ୍ଷ—The Superintendent of Accounts.

ପସ୍ଥାନଂ ନିବନ୍ଧପୁସ୍ତକସ୍ଥାନଂ କାରୟେତ୍ । (୨) ତତ୍ରାଧିକରଣାନାଂ ସଂଖ୍ୟାପ୍ରଚାରସଂଜାତାଗ୍ରଂ, କର୍ମାନ୍ତାନାଂ ଦ୍ରବ୍ୟପ୍ରୟୋଗେ ବୃଦ୍ଧିକ୍ଷୟ-ବ୍ୟୟପ୍ରୟାମବ୍ୟାଜୀଯୋଗସ୍ଥାନବେତନବିଷ୍ଟିପ୍ରମାଣଂ, ରତ୍ନସାରଫଲ୍‌ଗୁ କୁପ୍ୟାନାମର୍ଘପ୍ରତିବର୍ଣକ ପ୍ରତିମାନମାନୋନ୍ମାନଭାଣ୍ଡଂ, ଦେଶଗ୍ରାମଜାତି-କୁଳସଂଘାନାଂ ଧର୍ମବ୍ୟବହାର ଚରିତ୍ରସଂସ୍ଥାନଂ, ରାଜୋପଜୀବିନାଂ ପ୍ରଗ୍ରହପ୍ରଦେଶଭୋଗପରିହାରଭକ୍ତବେତନଲାଭଂ, ରାଜ୍ଞଶ୍ଚ ପତ୍ନୀପୁତ୍ରାଣାଂ ରତ୍ନଭୂମିଲାଭଂ ନିର୍ଦ୍ଦେଶୌତ୍ପାଦିକ ପ୍ରତୀକାରଲାଭଂ, ମିତ୍ରାମିତ୍ରାଣାଂ ଚ

---

ଭାବରେ ପୂର୍ବମୁଖ ବା ଉତ୍ତରମୁଖ କରି ଅଫିସଗୃହ ନିର୍ମାଣ କରାଇବେ । ଏହି ଅଫିସଗୃହଗୁଡ଼ିକରେ ଉତ୍ତମ, ମଧ୍ୟମ ଓ ସାମାନ୍ୟ କର୍ମଚାରୀମାନଙ୍କ ମର୍ଯ୍ୟାଦାନୁକ୍ରମେ ସ୍ଥାନ (Seats) ନିର୍ଦ୍ଦିଷ୍ଟ ହେବ ଏବଂ ଏଥିରେ ନିବନ୍ଧ ପୁସ୍ତକ ( ହିସାବ ବହି ) ଓ ରେକର୍ଡ଼ପତ୍ର ରଖିବା ସକାଶେ ଉପଯୁକ୍ତ ଅଲମାରୀ ଇତ୍ୟାଦି ରଖାଇବେ । (୨) ଅକ୍ଷପଟଲାଧ୍ୟକ୍ଷ ଅକ୍ଷପଟଳରେ ଥିବା ନିବନ୍ଧ ପୁସ୍ତକରେ ଦ୍ରବ୍ୟୋତ୍ପତ୍ତିସ୍ଥାନମାନଙ୍କର ସଂଖ୍ୟା, ବସ୍ତିମାନଙ୍କର ଓ ସମସ୍ତ ଉତ୍ପନ୍ନ ପଦାର୍ଥମାନଙ୍କର ସର୍ବମୋଟ ପରିମାଣ ଅର୍ଥାତ୍ ଏତେଗୋଟି ଦ୍ରବ୍ୟୋତ୍ପତ୍ତିସ୍ଥାନରୁ ଏତେ ଗୋଟି ବସ୍ତିରେ ପ୍ରତିବର୍ଷ ଏତେ ପରିମାଣରେ ଧନ ଉତ୍ପନ୍ନହୁଏ, ଏପରି ଲେଖାଇବେ । କର୍ମାନ୍ତ ( ବିଭିନ୍ନପ୍ରକାର ପଦାର୍ଥର ଖଣି), କୃଷିକ୍ଷେତ୍ର, ବ୍ୟାପାରକେନ୍ଦ୍ର ଓ ସ୍ୱର୍ଣ୍ଣରୌପ୍ୟାଦି ଅଳଂକାର ନିର୍ମାଣସ୍ଥାନମାନଙ୍କରେ ନିଯୁକ୍ତ ହୋଇଥିବା କର୍ମଚାରୀମାନଙ୍କ ଦାୟିତ୍ୱରେ ଲଗାଯାଇଥିବା ଧନରେ ହେବା ବୃଦ୍ଧି (କଳାନ୍ତର ବା ଲାଭ), କ୍ଷୟ (ମୂଳଇତ୍ୟାଦିରେ ହେବା କ୍ଷତି), ବ୍ୟୟ (ଧାନ୍ୟ ଓ ସ୍ୱର୍ଣ୍ଣମୁଦ୍ରାର ବ୍ୟୟ), ପ୍ରୟାମ ( ପକ୍ୱଧାନ୍ୟାଦି ଶସ୍ୟସମୂହ ), ବ୍ୟାଜୀ (ତୁଳ ଓ ମାପ-ସମ୍ବନ୍ଧୀୟ ଲାଭ), ଯୋଗ (ଭଲଜିନିଷରେ ଅସାରଜିନିଷ ମିଶ୍ରଣ), ସ୍ଥାନ (ଗ୍ରାମନଗରାଦି ସ୍ଥାନ), ବେତନ (ଦରମା), ବିଷ୍ଟି (ବେଠି)—ଏସମସ୍ତ ମଧ୍ୟ ନିବନ୍ଧପୁସ୍ତକରେ ଲେଖାଯିବ । ରତ୍ନ, ଚନ୍ଦନକାଷ୍ଠ ପ୍ରଭୃତି ସାରଦ୍ରବ୍ୟ, ବସ୍ତ୍ରପ୍ରଭୃତି ପରିଧେୟପଦାର୍ଥ, ଚମଡ଼ା ବାଉଁଶ ଇତ୍ୟାଦି ଉପଯୋଗୀ ପଦାର୍ଥମାନଙ୍କର ମୂଲ୍ୟ, ବର୍ଣ୍ଣ, ଗୁଣ, ମାପ, ତୁଳ, ଲମ୍ବା ଚଉଡ଼ା (Size),

**ସନ୍ଧିବିକ୍ରମପ୍ରଦାନାଦାନଂ ନିବନ୍ଧପୁସ୍ତକସ୍ଥଂ କାରୟେତ୍ । (୩) ତତଃ ସର୍ବାଧିକରଣାନାଂ କରଣୀୟଂ ସିଦ୍ଧଂ ଶେଷମାୟବ୍ୟୟୌ ନୀବୀମ୍-ଉପସ୍ଥାନଂ ପ୍ରଚାରଚରିତ୍ରସଂସ୍ଥାନଂ ଚ ନିବନ୍ଧେନ ପ୍ରୟଚ୍ଛେତ୍ ।**

ଉଚିତ ଓ ମୂଳଧନର ବିବରଣୀ ନିବନ୍ଧପୁସ୍ତକରେ ଲେଖିବାକୁ ହେବ । ଦେଶ, ଗ୍ରାମ, ଜାତି, କୁଳ (ଗୋତ୍ର) ଓ ସଂଘ (ଗୋଷ୍ଠୀ)—ଏମାନଙ୍କର ଧର୍ମ୍ମ, ଦାୟାଦ ଭାଗ ଓ ଚରିତ୍ର (ଶିଷ୍ଟାଚାର)ର ବିବରଣୀ ନିବନ୍ଧପୁସ୍ତକରେ ଲେଖିବାକୁ ହେବ । ରାଜୋପଜୀବୀ (ମନ୍ତ୍ରୀ ପୁରୋହିତ ପ୍ରଭୃତି)ଙ୍କର ପ୍ରଗ୍ରହ (ପୂଜାଅଭ୍ୟର୍ଥନା), ପ୍ରଦେଶ (ବାସସ୍ଥାନ **quarters** ), * ଭୋଗ ଉପାୟନ (ଭେଟି), ପରିହାର (କରଦାନରୁ ମୁକ୍ତି), ଭକ୍ତ (ଅଶ୍ୱ, ଗଜ, ପଦାତିମାନଙ୍କର ଭତ୍ତା), ବେତନ (ଦରମା) ଇତ୍ୟାଦି ବିଷୟ ନିବନ୍ଧ ପୁସ୍ତକରେ ଲେଖିବେ । ରାଜା, ରାଜପତ୍ନୀ ଓ ରାଜପୁତ୍ରଙ୍କ ହୀରା ରତ୍ନ ଓ ଭୂମିଲାଭ ତଥା ଏମାନଙ୍କ ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ନିର୍ଦ୍ଦିଷ୍ଟଭାବରେ ଦିଆଯାଇଥିବା ଧନ ବ୍ୟତୀତ ଅତିରିକ୍ତଭାବେ ଦିଆଯାଉଥିବା ଧନ, ଉତ୍ପାତରେ ଲବ୍ଧ ହେବା ଧନ, ରୋଗମୁକ୍ତିହେତୁକ ଧନ ଓ ଆଜ୍ଞାଭଙ୍ଗକାରୀ-ମାନଙ୍କ ଠାରୁ ଦଣ୍ଡଦ୍ୱାରା ଆଦାୟ ହେବା ଧନ ନିବନ୍ଧପୁସ୍ତକରେ ନମୋଦ କରିବେ । ମିତ୍ର ସହିତ ସନ୍ଧିକରି ପ୍ରଦାନ କରିଥିବା ଧନ ଓ ଶତ୍ରୁସହିତ ଯୁଦ୍ଧକରି ଛଡ଼ାଇ ଆଣିବା ଧନର ହିସାବ ମଧ୍ୟ ନିବନ୍ଧପୁସ୍ତକରେ ନମୋଦ କରିବେ । (୩) ତା'ପରେ ସମସ୍ତବିଭାଗୀୟ କର୍ମ୍ମଚାରୀ (କେବଳ ଧନାଦାୟ-କାରୀ କର୍ମ୍ମଚାରୀ) ମାନଙ୍କର କରଣୀୟ, ସିଦ୍ଧ, ଶେଷ, ଆୟ, ବ୍ୟୟ, ନୀବୀ ପ୍ରଭୃତି ପୂର୍ବାଧ୍ୟାୟବର୍ଣ୍ଣିତ ଛ'ଗୋଟି ବିଷୟ, କର୍ମ୍ମଚାରୀମାନଙ୍କ ଉପସ୍ଥାନ ସମୟ, ଏମାନଙ୍କର ଦେଶ, ସ୍ୱଭାବ, ପୂର୍ବସ୍ଥିତି ଅର୍ଥାତ୍ ପୂର୍ବରେ ବାସକରିଥିବା ସ୍ଥାନ ନିବନ୍ଧପୁସ୍ତକରେ ଅକ୍ଷପଟଳାଧ୍ୟକ୍ଷ ଲେଖାଇବେ । ଉତ୍ତମ, ମଧ୍ୟମ ଓ ଅଧମ ଅର୍ଥାତ୍ ନ୍ୟୂନକାର୍ଯ୍ୟମାନଙ୍କର ପର୍ଯ୍ୟବେକ୍ଷଣ ପାଇଁ ଯଥାକ୍ରମେ ଉତ୍ତମ, ମଧ୍ୟମ ଓ ନ୍ୟୂନ ଯୋଗ୍ୟତାସମ୍ପନ୍ନ କର୍ମ୍ମଚାରୀ-ମାନଙ୍କୁ ନିଯୁକ୍ତ କରିବେ—(ଉତ୍ତମ କାର୍ଯ୍ୟ—ଧନସଂଗ୍ରହ, ଭଣ୍ଡାର ଅଧିକାର-

*** ଭୋଗ=ଉପାୟନ (ଭେଟି) । ପରସ୍ପରେଣ ବିଜ୍ଞାତ ସ୍ତେଷୂପାୟନପାଣିଷୁ**
**—ଇତି ରଘୁବଂଶେ ।**
**ଉପାୟନମୁପଗ୍ରାହ୍ୟମୁପହାରସ୍ତଥୋପଦା—ଇତ୍ୟମରଃ ।**

ଉତ୍ତମମଧ୍ୟମାବରେଷୁ ଚ କର୍ମସୁ ତଜ୍ଜାତିକମଧ୍ୟକ୍ଷଂ କୁର୍ଯାତ୍, * ସାମୁଦାୟିକେଷ୍ୱବକ୍ଳୃପ୍ତିକଂ ଯମୁପହୃତ୍ୟ ନ ରାଜାନୁତପ୍ୟେତ । (୪) ସହଗ୍ରାହିଣଃ ପ୍ରତିଭୁବଃ କର୍ମୋପଜୀବିନଃ ପୁତ୍ରା ଭ୍ରାତରୋ ଭାର୍ଯା ଦୁହିତରୋ ଭୃତ୍ୟାଶ୍ଚାସ୍ୟ କର୍ମଚ୍ଛେଦଂ ବହେୟୁଃ । (୫) ତ୍ରିଶତଂ ଚତୁଃପଞ୍ଚାଶଚ୍ଚାହୋରାତ୍ରାଣାଂ କର୍ମସମ୍ବତ୍ସରଃ । ତମାଷାଢୀ

ଇତ୍ୟାଦି; ମଧ୍ୟମ କାର୍ଯ୍ୟ—କୋଷ୍ଠାଗାର, ଆୟୁଧାଗାର ନିୟନ୍ତ୍ରଣ ପ୍ରଭୃତି; ଅଧମ କାର୍ଯ୍ୟ—ମଦ୍ୟ ଓ କଂସେଇଖାନାର ଅଧ୍ୟକ୍ଷତା ଇତ୍ୟାଦି) । ଗୋଟିଏ କାର୍ଯ୍ୟରେ ନିଯୁକ୍ତ ହୋଇଥିବା ବହୁତ କର୍ମଚାରୀମାନଙ୍କ ମଧ୍ୟରେ ଦକ୍ଷ, ଗୁଣବାନ୍ ଓ କୀର୍ତ୍ତିମାନ୍ କର୍ମଚାରୀଙ୍କୁ ସେହି କାର୍ଯ୍ୟର ଅଧ୍ୟକ୍ଷ ପଦରେ ନିଯୁକ୍ତ କରିବେ । କିନ୍ତୁ ଉକ୍ତ ଗୁଣସମ୍ପନ୍ନ ବ୍ରାହ୍ମଣ, ଆତ୍ମବନ୍ଧୁ, ନିଜର ମହାସମ୍ବନ୍ଧୀୟ ବ୍ୟକ୍ତିମାନଙ୍କୁ ରାଜା ଅଧ୍ୟକ୍ଷ ପଦରେ ନିଯୁକ୍ତ କରିବେ ନାହିଁ । କାରଣ, ଅପରାଧ କଲେ ଯେଉଁ ଅଧ୍ୟକ୍ଷଙ୍କୁ ଦଣ୍ଡଦେଇ ସୁଦ୍ଧା ପଶ୍ଚାତ୍ତାପ କରିବା ସମ୍ଭାବନା ନଥିବ, ସେପରି ବ୍ୟକ୍ତିଙ୍କୁ ଅଧ୍ୟକ୍ଷ ପଦରେ ନିଯୁକ୍ତ କରିବା ଶ୍ରେୟସ୍କର । (୪) ଯଦି କୌଣସି ଅଧ୍ୟକ୍ଷ ରାଜକାର୍ଯ୍ୟ ବିନଷ୍ଟ କରି ଓ ଧନ ଆତ୍ମସାତ୍ କରି ଅନୁପସ୍ଥିତ ହୁଅନ୍ତି, ତେବେ ସେହି ଧନ (ଅପହୃତ ଧନ) ସେହି ଅଧ୍ୟକ୍ଷଙ୍କ ସହିତ ମିଶି ଅପହରଣ କରିଥିବା ବ୍ୟକ୍ତି, ପ୍ରତିଭୂ (ଜାମିନ), ତାଙ୍କ ଅଧୀନସ୍ଥ ସମ୍ପୃକ୍ତ କର୍ମଚାରୀ, ପୁତ୍ର, ଭ୍ରାତା, ଭାର୍ଯ୍ୟା, ଦୁହିତା ଓ ଭୃତ୍ୟମାନଙ୍କଠାରୁ ଯଥାକ୍ରମେ (ପ୍ରଥମେ ସାଥୀ ଅପହରଣକାରୀ ଠାରୁ) ଅସୁଲ କରିବେ । ତାଙ୍କଠାରୁ ଅସୁଲ ହୋଇ-ନପାରିଲେ, ଜାମିନଦାରଠାରୁ ଆରମ୍ଭକରି କ୍ରମରେ ଭୃତ୍ୟପର୍ଯ୍ୟନ୍ତ ଯାହାଠାରୁ ଅସୁଲ ହୋଇପାରିବ ତା'ଠାରୁ ଅସୁଲ କରିବେ; ଅର୍ଥାତ୍ ଅଧ୍ୟକ୍ଷ ଅପହୃତ ଧନର କ୍ଷତିପୂରଣ ସକାଶେ ଉପର୍ଯୁକ୍ତ ବ୍ୟକ୍ତିମାନେ ପୂର୍ବୋତ୍ତର କ୍ରମରେ ବାଧ୍ୟହେବେ । (୫) ତିନିଶହ ଚୌବନ ଦିନରେ ଏକ କର୍ମ-ସମ୍ବତ୍ସର ହୁଏ ଏବଂ ଏହାର ସମାପ୍ତି ଆଷାଢ଼ ପୌର୍ଣ୍ଣମୀରେ ହୁଏ । ଯେଉଁ

* ଅବକ୍ଳୃପ୍ତିକର୍ନାମ—ଅସାବଦ୍ୟଃ କର୍ମାଧ୍ୟକ୍ଷୟିତୁଂ କ୍ଷମଃ—ଇତି । ନୈପୁଣ୍ୟଗୁଣକୀର୍ତ୍ତି-ଉପାଲମ୍ଭମୂଳା ସମ୍ଭାବନା ସାସ୍ମିନ୍ନସ୍ତୀତି ଅବକ୍ଳୃପ୍ତିକଃ ତଂ ଅବକ୍ଳୃପ୍ତିକଂ—ଇତି ଗଣପତି ଶାସ୍ତ୍ରୀ ।

ପର୍ଯ୍ୟବସାନମୂନଂ ପୂର୍ଣଂ ବା ଦଦ୍ୟାତ୍ । କରଣାଧିଷ୍ଠିତମଧିମାସକଂ କୁର୍ଯ୍ୟାତ୍ । (୭) ଅପସର୍ପାଧିଷ୍ଠିତଂ ଚ ପ୍ରଚାରମ୍ । ପ୍ରଚାରଚରିତ୍ର ସଂସ୍ଥାନାନ୍ୟନୁପଲଭମାନୋ ହି ପ୍ରକୃତଃ ସମୁଦୟମଜ୍ଞାନେନ ପରିହାପୟତି, ଉତ୍ଥାନକ୍ଲେଶାସହତ୍ୱାଦାଲସ୍ୟେନ, ଶବ୍ଦାଦିଷ୍ୱିନ୍ଦ୍ରିୟାର୍ଥେଷୁ ପ୍ରମାଦେନ, ସଂକ୍ରୋଶାଧର୍ମାନର୍ଥଭୀରୁର୍ଭୟେନ, କାର୍ଯ୍ୟାର୍ଥିଷ୍ୱନୁଗ୍ରହବୁଦ୍ଧିଃ କାମେନ, ହିଂସାବୁଦ୍ଧିଃ କୋପେନ, ବିଦ୍ୟାଦ୍ରବ୍ୟବଲ୍ଲଭାପାଶ୍ରୟାଦ୍ ଦର୍ପେଣ, ତୁଲାମାନତର୍କଗଣିକାନ୍ତ-

---

କର୍ମ୍ମଗୃହୀମାନେ ପୂର୍ଣ୍ଣ ୩୫୪ ଦିନ କାର୍ଯ୍ୟକରିଛନ୍ତି ସେମାନଙ୍କୁ ପୂର୍ଣ୍ଣ ବେତନ ଓ ଯେଉଁ କର୍ମ୍ମଗୃହୀମାନେ ଯେତେ ଦିନ ଊଣା କାର୍ଯ୍ୟ କରିଛନ୍ତି, ହିସାବ ଅନୁସାରେ ସେମାନଙ୍କ ଅନୁପସ୍ଥିତ ଦିନର ଦରମାଟଙ୍କା କାଟି ବାକି ବେତନ ଦିଆଯିବ । ଅଧିମାସ (ମଳମାସ) ମଧ୍ୟ ଏହି ନିୟମରେ ଗଣାଯିବ ଏବଂ ମାସରେ କିଏ କେତେ ଦିନ କାର୍ଯ୍ୟ କରିଛନ୍ତି ତାହା ମଧ୍ୟ ଗଣକଦ୍ୱାରା ଗଣାଇ ରଖାଯିବ । (୬) ଅକ୍ଷପଟଳାଧ୍ୟକ୍ଷ ଦେଶକୁ ଗୁପ୍ତଚରଦ୍ୱାରା ପର୍ଯ୍ୟବେକ୍ଷିତ କରାଇବେ । ଦେଶର ବୃତ୍ତାନ୍ତ ଓ ତତ୍ପୂର୍ବ ପରିସ୍ଥିତି ଚରମାନଙ୍କ ସାହାଯ୍ୟରେ ଅବଗତ ନ ହୋଇଥିବା ଅଧ୍ୟକ୍ଷ ଅଜ୍ଞତାବଶତଃ ରାଜ୍ୟରୁ ହେବା ଧନୋତ୍ପତ୍ତିର ଅନ୍ତରାୟ ହୁଅନ୍ତି । ଉନ୍ନତିକର କାର୍ଯ୍ୟସାଧନ ସକାଶେ ଉଦ୍ୟମ-ଶ୍ରମକାତରତାଯୋଗୁଁ ଉପୁଜିବା ଆଳସ୍ୟ ହେତୁ; ଗୀତ, ବାଦ୍ୟ, ନୃତ୍ୟ, ପାନ, ଭୋଜନ ପ୍ରଭୃତି ବିଳାସିତାରେ ପ୍ରମାଦବଶତଃ (ଅସାବଧାନତାବଶତଃ) ଆସକ୍ତ ହେବା ହେତୁ; ନିନ୍ଦା, ଧର୍ମ୍ମହାନିଜନିତ ଅନର୍ଥଶଙ୍କାରୁ ଭୀତହେବା ଭୟହେତୁ; ପ୍ରିୟାପ୍ରୀତି ତୋଷଣ ପୋଷଣ କରିବା ପାଇଁ ଇଚ୍ଛା ଓ ଯତ୍ନ କରିବାହେତୁ; କ୍ରୋଧପରବଶ ହୋଇ ହତ୍ୟାଦି ନୃଶଂସ ଆଚରଣ କରିବା ହେତୁ; ବିଦ୍ୟା, ଧନ ଓ ରାଜାନୁଗ୍ରହଜନିତ ଗର୍ବହେତୁ; ଲୋଭପରବଶ ହୋଇ ମାପ, ତୁଳ ଊଣାଅଧିକ କରିବା ଓ ଟଙ୍କାପଇସା ହିସାବରେ ଗୋଲମାଲ କରି ଛଳନାକରିବା ହେତୁ, ଅର୍ଥାତ୍ ଅଜ୍ଞାନ, ଆଳସ୍ୟ, ପ୍ରମାଦ, ଭୟ, କାମନା, କ୍ରୋଧ, ଗର୍ବ, ଲୋଭ—ଏହି ଆଠଗୋଟି

ରେପଧାନାଲ୍ଲୋଭେନ । (୭) ତେଷାମାନୁପୂର୍ବ୍ୟା ଯାବାନର୍ଥୋ-ପଘାତଃ ତାବାନେକୋତ୍ତରୋ ଦଣ୍ଡ ଇତି ମାନବାଃ । ସର୍ବ-ତ୍ରାଷ୍ଟଗୁଣ ଇତି ପାରାଶରାଃ । ଦଶଗୁଣ ଇତି ବାର୍ହସ୍ପତ୍ୟାଃ । ବିଂଶତିଗୁଣ

---

ଦୋଷଯୁକ୍ତ ହେବାହେତୁ ଅଧ୍ୟକ୍ଷ ରାଜ୍ୟଆୟର କ୍ଷତିକାରକ ହୋଇଥାନ୍ତି । *

(୭) ସରକାରୀ ଧନ ହାନିକାରକ ଅଧ୍ୟକ୍ଷଙ୍କ ପ୍ରତି ହେବା ଦଣ୍ଡବିଧାନର ବିଚାର—ଯେଉଁ ଅଧ୍ୟକ୍ଷ ଉପର୍ଯ୍ୟୁକ୍ତ ଆଠପ୍ରକାର ଦୋଷମଧ୍ୟରୁ ପ୍ରଥମ ଅନୁକ୍ରମରେ ଅର୍ଥାତ୍ ଅଜ୍ଞାନ, ଆଳସ୍ୟ ଇତ୍ୟାଦି କ୍ରମରେ ଯେତେଗୋଟି ଦୋଷକରି ଯେତେ ଧନହାନି କରିଥାନ୍ତି. ସେ ହାନିକରିଥିବା ଧନର ତେତେଗୁଣ ଅଧିକ କ୍ଷତିପୂରଣ କରିବାକୁ ବାଧ୍ୟହେବେ । ମନୁଶିଷ୍ୟମାନେ ଏପରି ଦଣ୍ଡବିଧାନ କରିବାକୁ କହନ୍ତି । ପରାଶରଶିଷ୍ୟମାନେ ହାନିର ଆଠଗୁଣ, ବୃହସ୍ପତି ଶିଷ୍ୟମାନେ ଦଶଗୁଣ ଓ ଶୁକ୍ରଶିଷ୍ୟମାନେ କୋଡ଼ିଏ-

---

* The Government Officer, not caring to know the information gathered by espionage and neglecting to supervise the despatch of work in his own department as regulated, may occasion loss of revenue to the Government owing to his ignorance or idleness when he is too weak to endure the trouble of activity, or, due to inadvertance in perceiving sound and other objects of sense, or, by being timid when he is afraid of clamour, unrighteousness and untoward results or owing to selfish desire when he is favourably disposed towards them who are desirous to achieve their own selfish ends or by cruelty due to anger or by lack of dignity when he is surrounded by a host of learned and needy sycophants or by making use of false balance, false measures and false calculation owing to greediness.

ଇତ୍ୟେତୈଷାଣନଯାଃ । ଯଥାପରାଧମ୍ ଇତି କୌଟଲ୍ୟଃ । (୮) ଗାଣନକ୍ୟାନ୍ୟାଷାଢ଼ୀମାଗଚ୍ଛେୟୁଃ । ଆଗତାନାଂ ସମୁଦ୍ରପୁସ୍ତଭାଣ୍ଡ-ନୀବୀକାନାମେକତ୍ରାସମ୍ଭାଷାବରୋଧଂ କାରୟେତ୍ । ଆୟବ୍ୟୟ-ନୀବୀନାମଗ୍ରାଣି ଶ୍ରୁତ୍ୱା ନୀବୀମବହାରୟେତ୍ । ଯଚ୍ଚାଗ୍ରାଦାୟ-ସ୍ୟାନ୍ତରବର୍ଣେ ନୀବ୍ୟା ବର୍ଦ୍ଧେତ, ବ୍ୟୟସ୍ୟ ବା ଯତ୍-ପରିହାପୟେତ୍, ତଦଷ୍ଟଗୁଣମଧ୍ୟକ୍ଷଂ ଦାପୟେତ୍ । ବିପର୍ଯ୍ୟୟେ ତମେବପ୍ରତିସ୍ୟାତ୍ । (୯) ଯଥାକାଲମନାଗତାନାମପୁସ୍ତ-

---

ଗୁଣ ଦଣ୍ଡବିଧାନ କରିବାକୁ କହିଛନ୍ତି । କିନ୍ତୁ ଅାଚାର୍ଯ୍ୟ କୌଟଲ୍ୟ କହନ୍ତି ଯେଉଁ ଅଧ୍ୟକ୍ଷ ଯେତେ ମାତ୍ରାରେ ଦୋଷ କରିଥାନ୍ତି ସେ ତଦନୁରୂପ ଦଣ୍ଡ-ପାଇବା ବିଧିସଙ୍ଗତ । (୮) ଗଣନାକରିବା କର୍ମ୍ମଚାରୀମାନେ ଗଣନା ଦେଖିବା ସକାଶେ ବର୍ଷର ଆଷାଢ଼ମାସରେ ବଡ଼ କାର୍ଯ୍ୟାଳୟ (ହେଡ଼ଅଫିସ୍ ବା ଦପ୍ତର)କୁ ଯାଇ ହିସାବ ନିକାସ କରିବେ । ଉକ୍ତ ବିଭିନ୍ନ ଅଞ୍ଚଳର ଗାଣନିକ (**Accountant**) ମାନେ ଯେଉଁପର୍ଯ୍ୟନ୍ତ ନିଜନିଜର ହିସାବ ଖାତା, ପେଡ଼ି ଓ ବଳକା ଧନ (ଟଙ୍କାଥଳୀ)କୁ ମୋହର ଦିଆଇ ନଥିବେ ଅର୍ଥାତ୍ ଯେପର୍ଯ୍ୟନ୍ତ ଏମାନଙ୍କ ଲେଖା ଓ ଟଙ୍କା ଚେକ୍ କରାଯାଇ ସିଲ୍ ଦିଆଯାଇନାହିଁ, ସେପର୍ଯ୍ୟନ୍ତ ଏମାନେ ଯେପରି ପରସ୍ପର ବାର୍ତ୍ତାଳାପ (କଥୋପକଥନ) କରିପାରିବେ ନାହିଁ ସେପରି ଏମାନଙ୍କୁ ଅଲଗା ଅଲଗା ରଖାଇବା ବ୍ୟବସ୍ଥା କରାଇବେ । ମୋଟ ଆୟ, ମୋଟ ବ୍ୟୟ ଓ ମୋଟ ବଳକାଧନ ଉକ୍ତ ଗାଣନିକମାନଙ୍କଠାରୁ ଶ୍ରବଣ କରି ବଳକାଧନ ଗ୍ରହଣ କରିବେ । ଯେଉଁ ଗାଣନିକ ପୁସ୍ତକରେ ଲେଖାହୋଇଥିବା ଅପେକ୍ଷା ଆୟବ୍ୟୟ ଊଣାଅଧିକ କରି କହିଥିବେ, ତାହାଙ୍କଠାରୁ ,ଘାତ ହୋଇଥିବା ଧନର ଅଠଗୁଣ ଅଦାୟ କରିବାକୁ ହେବ ଅର୍ଥାତ୍ ଆୟ ଊଣା ଓ ବ୍ୟୟ ଅଧିକ କରି କହିବା ଅପରାଧ ଯୋଗୁଁ ସେ ଉପର୍ଯ୍ୟୁକ୍ତ ପ୍ରକାରେ ଅର୍ଥଦଣ୍ଡ ପାଇବେ । ନିର୍ଦ୍ଦିଷ୍ଟ ଆୟରୁ ଅଧିକ ଆୟ କରି ଓ ନିର୍ଦ୍ଦିଷ୍ଟ ବ୍ୟୟରୁ ନ୍ୟୂନ ବ୍ୟୟକରି ନିବନ୍ଧପୁସ୍ତକରେ ଅଧିକ ବଳକା ଦେଖାଇବା ଗାଣନିକଙ୍କୁ ପୁରସ୍କାର ଦିଆଯିବ । (୯) ଯେଉଁ କର୍ମ୍ମଚାରୀ ଯଥାକାଳରେ ରେଜିଷ୍ଟ୍ରପତ୍ର (ହିସାବ ଖାତା) ଓ ଅଦାୟଧନ ଦାଖଲ କରନ୍ତିନାହିଁ, ସେ ଦେବାକୁ-

ନୀବୀକାନାଂ ବା ଦେୟଦ୍ଦଶବନ୍ଧୋ ଦଣ୍ଡଃ । କାର୍ମିକେ ଚୋପସ୍ଥିତେ-କାରଣିକସ୍ୟାପ୍ରତିବଧ୍ନତଃ ପୂର୍ବଃ ସାହସଦଣ୍ଡଃ, ବିପର୍ଯ୍ୟୟେ କାର୍ମିକସ୍ୟ ଦ୍ୱିଗୁଣଃ । ପ୍ରଚାରସମଂ ମହାମାତ୍ରାଃ ସମଗ୍ରାଃ ଶ୍ରାବୟେୟୁ-ରବିଷମମାତ୍ରାଃ । ପୃଥଗ୍‌ଭୂତୋ ମିଥ୍ୟାବାଦୀ ଚୈଷାମୁତ୍ତମଦଣ୍ଡଂ ଦଦ୍ୟାତ୍ । (୧୦) ଅକୃତାହୋରୂପହରଂ ମାସମାକାଂକ୍ଷେତ । ମାସାଦୂର୍ଦ୍ଧ୍ୱଂ ମାସଦ୍ୱିଶତୋତ୍ତରଂ ଦଣ୍ଡଂ ଦଦ୍ୟାତ୍ । ଅଲ୍ପଶେଷ

---

ଥିବା ଧନର ଦଶଗୁଣ ଧନ ଦଣ୍ଡରୂପେ ତାଙ୍କଠାରୁ ଆଦାୟ କରିବେ । କର୍ମ୍ମଗୃହୀଗଣ ହିସାବପୁସ୍ତକ ଓ ଆଦାୟଧନ ଧରି ଉପସ୍ଥିତ ହେବା ସତ୍ତ୍ୱେ ଗାଣନିକାଧ୍ୟକ୍ଷ ( Superintendent of Accounts ) ଯଦି ସେହି ହିସାବପୁସ୍ତକ ଓ ଆଦାୟଧନ ତତ୍‌କ୍ଷଣାତ୍ ଗ୍ରହଣକରି ଚେକ୍ ନକରନ୍ତି, ତେବେ ସେ ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । କର୍ମ୍ମଗୃହୀଗଣ ଯଦି ଏହି ନିୟମର ବ୍ୟତିକ୍ରମ କରନ୍ତି ଅର୍ଥାତ୍ ଯଥାସମୟରେ ଉପସ୍ଥିତ ହୋଇ ରେକାର୍ଡ଼ପତ୍ର ଓ ଆଦାୟଧନ ଦାଖଲ ନକରନ୍ତି, ତେବେ ସେମାନେ ପୂର୍ବସାହସଦଣ୍ଡର ଦ୍ୱିଗୁଣ ଦଣ୍ଡରେ ଦଣ୍ଡିତ ହେବେ । 'ମହାମାତ୍ର' ଅର୍ଥାତ୍ ମନ୍ତ୍ରୀ ଓ କର୍ମ୍ମଗୃହୀଗଣ ପରସ୍ପର ଅନୁକୂଳ ହୋଇ (ହିସାବପତ୍ର ସମସ୍ତେ ସମାନଭାବରେ ବୁଝାବୁଝି ହୋଇ) ସମସ୍ତ ପ୍ରଜାବର୍ଗଙ୍କୁ ଆୟବ୍ୟୟ ଓ ବଳକାଧନର ବିସ୍ତୃତ ବିବରଣୀ ଶୁଣାଇ ଦେବେ । ଯେଉଁ ମହାମାତ୍ର ବା କର୍ମ୍ମଗୃହୀ ଉପର୍ଯ୍ୟୁକ୍ତ ନିୟମ ଲଙ୍ଘନ କରି ବାଦ ତର୍କ ଓ ମିଥ୍ୟାବାଦ କରନ୍ତି ତାଙ୍କୁ ଉତ୍ତମସାହସଦଣ୍ଡ ( ଏକସହସ୍ର ଟଙ୍କା ଜରିମାନା ) ବିଧାନ କରାଯିବ । (୧୦) ରାଜସ୍ୱ ଆଦାୟ କରିବାପାଇଁ ଯେଉଁ କର୍ମ୍ମଗୃହୀ ନିଯୁକ୍ତ ହୋଇଥାନ୍ତି ସେମାନେ ଯଦି ନିର୍ଦ୍ଦିଷ୍ଟ ସମୟରେ କର୍ତ୍ତବ୍ୟ ସଂପାଦନ କରିପାରନ୍ତି ନାହିଁ ତେବେ ସେମାନଙ୍କ ଅନୁରୋଧକ୍ରମେ ତାଙ୍କୁ ଏକମାସ ଅଧିକ ସମୟ ଦିଆଯାଇ ପାରିବ । ଏକମାସ ଅଧିକା ମିଆଦ ଦେବାସତ୍ତ୍ୱେ ଯଦି ସେମାନଙ୍କ ମଧ୍ୟରୁ କେହି ଉକ୍ତ ହିସାବଖାତାସହ ବଳକାଧନ ପେଠ ନକରନ୍ତି, ତେବେ ସେ ଯେତେ ମାସ ଏଥିପାଇଁ ଡେରି କରିବେ, ପ୍ରତି-ମାସରେ ଦୁଇଶତ ପଣ (ଟଙ୍କା) ହିସାବରେ ଉତ୍ତରୋତ୍ତର ବୃଦ୍ଧିହାରରେ ଅର୍ଥାତ୍ ଦ୍ୱିତୀୟମାସରେ ଦୁଇଶତ, ତୃତୀୟମାସରେ ଚାରିଶତ ଟଙ୍କା

ନୀବୀକଂ ପଞ୍ଚରାତ୍ରମାକାଂକ୍ଷେତ ତତଃ ପରମ୍ । (୧୧) କୋଶପୂର୍ବ-
ମହୋରୁପହରଂ ଧର୍ମବ୍ୟବହାରଚରିତ୍ରସଂସ୍ଥାନସଂକଳନ
ନିର୍ବର୍ତ୍ତନାନୁମାନଚାରପ୍ରୟୋଗୈରବେକ୍ଷେତ । ଦିବସପଞ୍ଚରାତ୍ର
ପକ୍ଷମାସଚାତୁର୍ମାସ୍ୟସମ୍ବତ୍ସରୈଶ୍ଚ ପ୍ରତିସମାନୟେତ୍ । ବ୍ୟୁଷ୍ଟ-
ଦେଶକାଳମୁଖୋତ୍ପତ୍ତ୍ୟନୁବୃତ୍ତି ପ୍ରମାଣଦାୟକଦାପକନିବନ୍ଧକପ୍ରତି-
ଗ୍ରାହକୈଶ୍ଚାୟଂ ସମାନୟେତ୍ । ବ୍ୟୁଷ୍ଟଦେଶକାଳମୁଖଲାଭ

---

କ୍ରମରେ ଜରିମାନା ଦେବାକୁ ବାଧ୍ୟ ହେବେ । ଯେଉଁ କର୍ମଚାରୀ ବଳକା-ଧନରୁ ଅଳ୍ପ କେତେକ ନୀବୀ କରିବାକୁ ଥିବ ତାଙ୍କୁ ଏକମାସ ଅଧିକା ସମୟ ଦେବାପରେ ମଧ୍ୟ ଆଉ ପାଞ୍ଚଦିନ ଅତିରିକ୍ତ ସମୟ ଦିଆଯିବ । ତା ସତ୍ତ୍ୱେ ସେ ଯଦି ଅବହେଳା କରନ୍ତି ତେବେ ସେ ଉପଯୁକ୍ତପ୍ରକାରେ ଦଣ୍ଡଭୋଗିବାକୁ ବାଧ୍ୟ ହେବେ । (୧୧) ସଂଗୃହୀତ ଧନ ଓ ହିସାବପତ୍ର ଉପଯୁକ୍ତ ସମୟରେ ଦାଖଲ କରିବା କର୍ମଚାରୀଙ୍କ ଧର୍ମ, ବ୍ୟବହାର (ପୂର୍ବେ ଏହାଙ୍କ ବ୍ୟବହାର କପରି ଥିଲା, ବର୍ତ୍ତମାନ କପରି ଅଛି ଇତ୍ୟାଦି), ଚରିତ୍ର (ଲୋକମର୍ଯ୍ୟାଦା), ସଂସ୍ଥାନ (ମୂଳସ୍ଥିତି), ସଂକଳନ (ସର୍ବଧନର ଏକତ୍ରୀକରଣ), ନିର୍ବର୍ତ୍ତନ (କାର୍ଯ୍ୟନିଷ୍ପତ୍ତି)କୁ ଅନୁମାନ ଓ ଚାର ଅର୍ଥାତ୍ ଗୁପ୍ତଚର ପ୍ରୟୋଗଦ୍ୱାରା ପରୀକ୍ଷା କରିବାକୁ ହେବ । ପ୍ରତିଦିନର ଆୟବ୍ୟୟ ଓ * ନୀବୀ (ବଳକା ମୂଳଧନ) ଗଣନା ଲେଖନ ପରିପାଟୀକ୍ରମେ ପ୍ରତି ପାଞ୍ଚଦିନରେ ମୋଟ କରି ଲେଖିବାକୁ ହେବ । ଏପରି କ୍ରମରେ ପାକ୍ଷିକ, ମାସିକ, ଚାତୁର୍ମାସ୍ୟ (ଚାରିମାସର) ଓ ବାର୍ଷିକ ହିସାବର ମୋଟ ଆୟବ୍ୟୟ ଓ ବଳକାଧନ ହିସାବପୁସ୍ତକରେ ଦର୍ଶାଇବାକୁ ହେବ । ଆୟବିବରଣୀ ଲେଖିବା ସମୟରେ 'ବ୍ୟୁଷ୍ଟ' (ରାଜବର୍ଷ, ମାସ, ପକ୍ଷ ଓ ଦିବସ), ଦେଶ, କାଳ, ଆୟମୁଖ, ଆୟଶରୀର, ଉତ୍ପତ୍ତି (ଆୟମୁଖ ଓ ଆୟଶରୀରରୁ ଜାତ ହେବା ଶୁଳ୍କାଦି), ଅନୁବୃତ୍ତି (ଏଣେତେଣେ ନେବା ପ୍ରମାଣ), ଦାୟକ (କରଦାତା), ଦାପକ (ଦିଆଇବା ଅଫିସର), ନିବନ୍ଧକ (ନିବନ୍ଧପୁସ୍ତକ ଲେଖକ), ପ୍ରତିଗ୍ରାହକ (ଗ୍ରହଣକର୍ତ୍ତା)—ଏମାନଙ୍କର ବିବରଣୀ ନିବନ୍ଧ-

---

* ନୀବୀ—Net balance.

**କାରଣଦେୟଯୋଗପରିମାଣାଜ୍ଞାପକୋଦ୍ଧାରକନିଧାତୃକପ୍ରତିଗ୍ରାହକୈଶ୍ଚ ବ୍ୟୟଂ ସମାନୟେତ୍ । ବ୍ୟୁଷ୍ଟଦେଶକାଳମୁଖାନୁବର୍ତ୍ତନରୂପଲକ୍ଷଣପରିମାଣନିକ୍ଷେପଭାଜନଗୋପାୟକୈଶ୍ଚ ନୀବୀଂ ସମାନୟେତ୍ । (୧୨) ରାଜାର୍ଥେ କାରଣିକସ୍ୟାପ୍ରତିବଧ୍ନତଃ ପ୍ରତିଷେଧୟତୋ ବାଜ୍ଞାଂ ନିବନ୍ଧାଦାୟବ୍ୟୟମନ୍ୟଥା ବାପି କଳ୍ପୟତଃ ପୂର୍ବଃ ସାହସଦଣ୍ଡଃ । (୧୩) କ୍ରମାବହୀନମୁତ୍କ୍ରମମବିଜ୍ଞାତଂ ପୁନରୁକ୍ତଂ ବା ବସ୍ତୁକମବଲିଖତୋ ଦ୍ୱାଦଶପଣୋ ଦଣ୍ଡଃ । ନୀବୀମବଲିଖତୋ ଦ୍ୱିଗୁଣଃ,**

---

ପୁସ୍ତକରେ ଲେଖାଇ ଆୟଗଣନା ସମ୍ପାଦନ କରିବାକୁ ହେବ । ବ୍ୟୁଷ୍ଟ (ପୂର୍ବୋକ୍ତ ରାଜବର୍ଷ ମାସାଦି), ଦେଶ, କାଳ, ବ୍ୟୟମୁଖ, ବ୍ୟୟଶରୀର, ପକ୍ଷ, ମାସ ଓ ସମ୍ବତ୍ସରରେ ହେବା ଲାଭ, କାରଣ, ଦେୟପଦାର୍ଥ, ଯୋଗ (ଭଲ ପଦାର୍ଥରେ ଖରାପ ପଦାର୍ଥ ମିଶାଇବା), ପରିମାଣ, ଆଜ୍ଞାପକ (ଆଜ୍ଞାଦେବା ବ୍ୟକ୍ତି), ଉଦ୍ଧାରକ (ଋଣଗ୍ରହଣ କରିବା ବ୍ୟକ୍ତି), ନିଧାତୃକ (ଭାଣ୍ଡାଗାରିକ—ଭଣ୍ଡାରଘରିଆ), ପ୍ରତିଗ୍ରାହକ (ବ୍ରାହ୍ମଣପ୍ରଭୃତି ପ୍ରତିଗ୍ରହ କରିବା ବ୍ୟକ୍ତି)—ଏମାନଙ୍କ ବିବରଣୀ ଦେଇ ବ୍ୟୟଗଣନା ସମ୍ପାଦନ କରିବାକୁ ହେବ । ବ୍ୟୁଷ୍ଟ, ଦେଶ, କାଳ, ନୀବୀମୁଖ, ଅନୁବର୍ତ୍ତନ, ଦ୍ରବ୍ୟର ସ୍ୱରୂପ, ଦ୍ରବ୍ୟର ଲକ୍ଷଣ (ଚିହ୍ନ), ପରିମାଣ ( ମାପ ଓ ଓଜନ ), ନିକ୍ଷେପଭାଜନ (ଦ୍ରବ୍ୟଘର), ଭାଣ୍ଡ (ପେଡ଼ି) ଓ ଏହାର ରକ୍ଷକ—ଏମାନଙ୍କ ବିବରଣୀ ଦେଇ ନୀବୀଗଣନା ସମ୍ପାଦନ କରିବାକୁ ହେବ । (୧୨) ଯେଉଁ ରାଜକର୍ମ୍ମଚାରୀ (କାରଣିକ) ରାଜକୋଷକୁ ଅର୍ପିବା ସୁବର୍ଣ୍ଣାଦି ଦ୍ରବ୍ୟକୁ ରେଜିଷ୍ଟ୍ରିଭୁକ୍ତ ନକରନ୍ତି ବା ରାଜାଜ୍ଞାକୁ ଅବଜ୍ଞା କରନ୍ତି ବା ନିବନ୍ଧପୁସ୍ତକର ନିୟମ ଲଙ୍ଘନକରି ଆୟବ୍ୟୟମାନଙ୍କୁ ଓଲଟ ପାଲଟ କରି ଲେଖନ୍ତି, ତାଙ୍କୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୩) ଯେଉଁ କର୍ମ୍ମଚାରୀ ଆୟବ୍ୟୟ ପ୍ରଭୃତି ଯଥାକ୍ରମରେ ନଲେଖି ଓଲଟ ପାଲଟ କରି ଲେଖନ୍ତି, ଜଣାନପଡ଼ିବାଭଳି ଲେଖନ୍ତି, ଲେଖିବା ପଦକୁ ପୁନର୍ବାର ଲେଖନ୍ତି, ତାଙ୍କୁ ବାରପଣ ଦଣ୍ଡବିଧାନ କରିବେ । ନୀବୀ (ଶେଷରହିଲା ଧନ)କୁ ପୁସ୍ତକଭୁକ୍ତ ନକରିଥିବା କର୍ମ୍ମଚାରୀଙ୍କୁ ଏହାର ଦୁଇଗୁଣ ଅର୍ଥାତ୍ ଚବିଶିପଣ ଦଣ୍ଡବିଧାନ କରିବେ; ନୀବୀଧନ ଆତ୍ମସାତ୍ କରିଥିବା କର୍ମ୍ମ-

**ଭକ୍ଷୟତୋଽଷ୍ଟଗୁଣଃ, ନାଶୟତଃ ପଞ୍ଚବନ୍ଧଃ ପ୍ରତିଦାନଂ ଚ । ମିଥ୍ୟାବାଦେସ୍ତେୟଦଣ୍ଡଃ । ପଶ୍ଚାତ୍ ପ୍ରତିଜ୍ଞାତେ ଦ୍ୱିଗୁଣଃ ପ୍ରସ୍ମୃତୋତ୍ପନ୍ନେ ଚ ।**

**(୧୪) ଅପରାଧଂ ସହେତାଲ୍ପଂ ତୁଷ୍ୟେଦଲ୍ପେଽପିଚୋଦୟେ, ମହୋପକାରଂ ଚାଧ୍ୟକ୍ଷଂ ପ୍ରଗ୍ରହେଣାଭିପୂଜୟେତ୍ ।**

---

ମୃତ୍ୟୁଙ୍କୁ ଅଠଗୁଣ ଦଣ୍ଡ ଅର୍ଥାତ୍ ମୂଳଧନ ଆଦାୟକରିବା ସଙ୍ଗେ ସଙ୍ଗେ ଛଅଗୁଣର ପଣ ଦଣ୍ଡବିଧାନ କରିବେ; ନଷ୍ଟନୀତିକମାନଙ୍କୁ ଦେଇ ନୀବୀଧନ ନଷ୍ଟ କରିଥିବା କର୍ମଚାରୀଙ୍କୁ ମୂଳଧନ ଅସୂଲ କରିବା ବାଦେ ଷାଠିଏ ପଣ ଦଣ୍ଡବିଧାନ କରିବେ । ମିଥ୍ୟାବାଦୀ କର୍ମଚାରୀଙ୍କୁ ଚୋରଦଣ୍ଡରେ ଦଣ୍ଡିତ କରିବେ; ହିସାବ ତଦନ୍ତକରିବା ସମୟରେ ଲେଖନଯୋଗ୍ୟ ବିଷୟକୁ ନଲେଖି ଛାଡ଼ିଦେଇଥିବା ଭୁଲ ଧରାପଡ଼ିଲେ ଏବଂ ଭୁଲିଯାଇଥିବା ପଦ ଧରାପଡ଼ିବା ପରେ ସ୍ମରଣ କଲେ ଉପରୁକ୍ତ କର୍ମଚାରୀଙ୍କୁ ପୂର୍ବୋକ୍ତ ଚୋର-ଦଣ୍ଡର ଦ୍ୱିଗୁଣ ଦଣ୍ଡବିଧାନ କରିବେ । (୧୪) ରାଜା ଅଧ୍ୟକ୍ଷଙ୍କର ଛୋଟ ଛୋଟ ଦୋଷଗୁଡ଼ିକୁ ସହ୍ୟକରିବେ । ଯଦି ଅଧ୍ୟକ୍ଷ ନିର୍ଦ୍ଦିଷ୍ଟ ଲାଭଠାରୁ କିଛି ଅଧିକ ଲାଭ କରିଥାନ୍ତି ତେବେ ତାଙ୍କୁ ପୁରସ୍କାର ଦାନ କରିବେ । ଯଦି ଅଧ୍ୟକ୍ଷ ମହୋପକାର କରିଥାନ୍ତି ତେବେ ତାଙ୍କୁ ଯାବଜ୍ଜୀବନ ନିକଟରେ ରଖି ଉତ୍ତମଭାବେ ସତ୍କାର କରୁଥିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ସପ୍ତମୋଽଧ୍ୟାୟଃ ଅକ୍ଷପଟଲେ ଗାଣନିକ୍ୟାଧିକାରଃ । ଆଦିତୋଽଷ୍ଟାବିଂଶଃ ।

—0—

# ଅଷ୍ଟମୋଽଧ୍ୟାୟଃ

## ଷଡ଼୍‌ବିଂଶ ପ୍ରକରଣମ୍

## ସମୁଦୟସ୍ୟ ଯୁକ୍ତାପହୃତସ୍ୟ ପ୍ରତ୍ୟାନୟନମ୍

**DETECTION OF WHAT IS EMBEZZLED BY GOVERNMENT SERVANTS OUT OF STATE REVENUE.**

ଅଧ୍ୟକ୍ଷମାନଙ୍କଦ୍ୱାରା ଅପହୃତ ହୋଇଥିବା ରାଜସ୍ୱଧନର ପୁନଃପ୍ରାପ୍ତି

(୧) କୋଶପୂର୍ବାଃ ସର୍ବାରମ୍ଭାଃ । ତସ୍ମାତ୍ ପୂର୍ବଂ କୋଶମବେକ୍ଷେତ । (୨) * ପ୍ରଚାରସମୃଦ୍ଧିଶ୍ଚରିତ୍ରାନୁଗ୍ରହଶ୍ଚୋର

(୧) ଧନ ସମସ୍ତ କାର୍ଯ୍ୟର ମୂଳ କାରଣ । ସ୍ୱରାଷ୍ଟ୍ର, ପରରାଷ୍ଟ୍ର, ଜନପଦ, ଯୁଦ୍ଧ, ସମାଧାନ ଇତ୍ୟାଦି ବିଷୟରେ ଧନର ଏକାନ୍ତ ଆବଶ୍ୟକତା ଥିବାହେତୁ ରାଜା ସର୍ବଦା କୋଷର ରକ୍ଷଣାବେକ୍ଷଣ ବିଷୟରେ ଯତ୍ନଶୀଳ ହେବା ଉଚିତ । (୨) ରାଷ୍ଟ୍ରୀୟ ସମ୍ପତ୍ତିର ଅଭିବୃଦ୍ଧି, ଦେଶାଗ୍ରର ଓ କୂଳାଗ୍ରର ପୂର୍ବସ୍ଥିତ ଅନୁକ୍ରମରେ ପରିପାଳନ, ଚୋରମାରଣ ଓ ସେମାନଙ୍କଠାରୁ ଧନ ଆନୟନ, ରାଜକର୍ମଚାରୀମାନଙ୍କ ରାଜସ୍ୱ ଅପହରଣ

* Public prosperity, Rewards for good conduct, Capture of thieves, Dispensing with (the service of too many) Government servants, Abundance of harvest, Prosperity of commerce, Absence of troubles and calamities, Diminution or remission of taxes and income in gold are all conducive to financial prosperity.

Abstraction, loan, trading, fabrication of accounts, causing the loss of revenue, self-enjoyment, barter and defalcation are the causes that lead to deplete the treasury.

ଗତେ୍ଵା ଯୁକ୍ତପ୍ରତିଷେଧଃ ସସ୍ୟସମ୍ପତ୍ ପଣ୍ୟବାହୁଲ୍ୟମୁପସର୍ଗ-ପ୍ରମୋକ୍ଷଃ ପରିହାରକ୍ଷୟୋ ହିରଣ୍ୟୋପାୟନମିତି କୋଶବୃଦ୍ଧିଃ । (୩) ପ୍ରତିବନ୍ଧଃ ପ୍ରୟୋଗୋ ବ୍ୟବହାରୋଽବସ୍ତାରଃ ପରିହାପଣ ମୁପଭୋଗଃ ପରିବର୍ତ୍ତନମପହାରଶ୍ଚେତି କୋଶକ୍ଷୟଃ । (୪) ସିଦ୍ଧୀନାମସାଧନମନବତାରଣମପ୍ରବେଶନଂ ବା ପ୍ରତିବନ୍ଧଃ । ତତ୍ର ଦଶବନ୍ଧୋ ଦଣ୍ଡଃ । କୋଶଦ୍ରବ୍ୟାଣାଂ ବୃଦ୍ଧିପ୍ରୟୋଗଃ ପ୍ରୟୋଗଃ । ପଣ୍ୟବ୍ୟବହାରେ ବ୍ୟବହାରଃ । ତତ୍ର ଫଳଦ୍ୱିଗୁଣୋ ଦଣ୍ଡଃ । ସିଦ୍ଧଂ କାଳମପ୍ରାପ୍ତଂ କରୋତ୍ୟପ୍ରାପ୍ତଂ ପ୍ରାପ୍ତଂ ବେତ୍ୟବସ୍ତାରଃ । ତତ୍ର ପଞ୍ଚବନ୍ଧୋ ଦଣ୍ଡଃ । କ୍ଳୃପ୍ତମାୟଂ ପରିହାପୟତି ବ୍ୟୟଂ ବା

---

ଏବଂ ଉତ୍କୋଚଗ୍ରହଣ (ଲାଞ୍ଚଖାଇବା) ନିମିତ୍ତକ ପ୍ରଜାପୀଡ଼ନରୁ ବାରଣ, ଶାଦ୍ୟଶସ୍ୟର ପ୍ରଚୁର ବୃଦ୍ଧି ବ୍ୟବସ୍ଥା, ଜଳଜାତ (ମାଛପ୍ରଭୃତି) ଓ ସ୍ଥଳଜାତ (ଧାନ୍ୟଫଳମୂଳାଦି) ବିକ୍ରେୟ ଦ୍ରବ୍ୟମାନଙ୍କର ବହୁଳ ଉତ୍ପତ୍ତି ସକାଶେ ଉପାୟ ଅବଲମ୍ବନ, ଅଗ୍ନି ଆଦି ଉତ୍ପାତରୁ ରାଜ୍ୟରକ୍ଷା, କରଛାଡ଼ବନ୍ଦ (ବିଭିନ୍ନ ବ୍ୟବସ୍ଥାକରି କରଆଦାୟ କରିବାପାଇଁ ଯତ୍ନ) ଓ ଦେଶବାସୀଙ୍କ-ଠାରୁ ଉପହାରସ୍ୱରୂପ ସ୍ୱର୍ଣ୍ଣମୁଦ୍ରାଦି ଗ୍ରହଣ ପ୍ରଭୃତି ନ'ଗୋଟି ବ୍ୟବସ୍ଥା-ଦ୍ୱାରା ରାଜକୋଶର ବୃଦ୍ଧି କରାଯାଏ । (୩) ପ୍ରତିବନ୍ଧ, ପ୍ରୟୋଗ, ବ୍ୟବହାର, ଅବସ୍ତାର, ପରିହାପଣ, ଉପଭୋଗ, ପରିବର୍ତ୍ତନ ଓ ଅପହାର—ଏ ଆଠ-ଗୋଟିକୁ କୋଶକ୍ଷୟର କାରଣ କୁହାଯାଏ । (୪) ଯେଉଁ ରାଜସ୍ୱ ପ୍ରଜାଙ୍କ ଉପରେ ବୃଦ୍ଧିପାଉଛି ଅଥଚ ଅସୁଲ ହୋଇପାରୁନାହିଁ ବା ଅସୁଲହୋଇ ସୁଦ୍ଧା ହସ୍ତଗତ ହୋଇପାରୁନାହିଁ ବା ରାଜକୋଷରେ ପହଞ୍ଚିପାରୁନାହିଁ, ତାହାକୁ 'ପ୍ରତିବନ୍ଧ' କହନ୍ତି । ଏପରି ପ୍ରତିବନ୍ଧ କରିବା ଅଧ୍ୟକ୍ଷଙ୍କୁ ଦଶଗୁଣ ଦଣ୍ଡବିଧାନ କରିବାକୁ ହେବ । ରାଜକୋଶଧନରେ ନିଜର ସ୍ୱତନ୍ତ୍ର ସାହୁକାରୀ ବ୍ୟବସାୟ ଚଳାଇ ଯେଉଁ ଅଧ୍ୟକ୍ଷ କଳନ୍ତର ଉଠାଇବା ପରେ ମୂଳଧନ ଯଥାତଥା ରାଜକୋଶରେ ରଖିଦିଅନ୍ତି, ତାଙ୍କର ଏହି କାର୍ଯ୍ୟକୁ 'ପ୍ରୟୋଗ' କହନ୍ତି । ରାଜକୋଷ ପଦାର୍ଥରେ ବ୍ୟକ୍ତିଗତ ବାଣିଜ୍ୟ କରିବାର ନାମ 'ବ୍ୟବହାର' । ଏ ଦୁଇପ୍ରକାର ଅପରାଧ କରିବା ଅଧ୍ୟକ୍ଷଙ୍କୁ ସେ ପାଇଥିବା ଧନର ଦ୍ୱିଗୁଣ ଦଣ୍ଡବିଧାନ କରିବାକୁ ହେବ । ଉତ୍କୋଚ

ବ୍ୟବର୍ଧ୍ୟତୀତ ପରିହାପଣମ୍ । ତତ୍ର ହୀନଚତୁର୍ଗୁଣୋ ଦଣ୍ଡଃ । ସ୍ୱୟମନ୍ୟୈର୍ବା ରାଜଦ୍ରବ୍ୟାଣାମୁପଭୋଜନମୁପଭୋଗଃ । ତତ୍ର ରତ୍ନୋପଭୋଗେ ଘାତଃ । ସାରୋପଭୋଗେ ମଧ୍ୟମଃ ସାହସଦଣ୍ଡଃ, ଫଲ୍‌ଗୁକୁପ୍ୟୋପଭୋଗେ ତଚ୍ଚ ତାବଚ୍ଚ ଦଣ୍ଡଃ । ରାଜଦ୍ରବ୍ୟାଣାମନ୍ୟଦ୍ରବ୍ୟେଣାଦାନଂ ପରିବର୍ତ୍ତନମ୍, ତଦ୍ ଉପଭୋଗେନ ବ୍ୟାଖ୍ୟାତମ୍ । ସିଦ୍ଧମାୟଂ ନ ପ୍ରବେଶୟତି, ନିବଦ୍ଧଂ ବ୍ୟୟଂ ନ ପ୍ରୟଚ୍ଛତି, ପ୍ରାପ୍ତାଂ ନୀବୀଂ ବିପ୍ରତିଜାନୀତ ଇତ୍ୟପହାରଃ । ତତ୍ର ଦ୍ୱାଦଶ-

---

(ଲାଞ୍ଚ) ପାଇବା ଆଶାରେ ଯେଉଁ କର୍ମ୍ମଚାରୀ ଯଥାସମୟରେ ରାଜସ୍ୱ ଆଦାୟ ନକରି କାଳକ୍ଷେପ କରନ୍ତି ଏବଂ କୌଣସି ପ୍ରଜାପ୍ରତି ଦ୍ୱେଷଭାବ ରଖି ଅଯଥାସମୟରେ ଅର୍ଥାତ୍ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଜବରଦସ୍ତି ରାଜସ୍ୱ ଆଦାୟ କରି ଆଣନ୍ତି, ସେହି କର୍ମ୍ମଚାରୀଙ୍କ ଏହି ଦ୍ୱିବିଧକାର୍ଯ୍ୟକୁ 'ଅବସ୍ତାର' କୁହାଯାଏ । ସେ ଏହି ଅପରାଧଯୋଗୁଁ ପାଞ୍ଚଗୁଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଯେଉଁ କର୍ମ୍ମଚାରୀ ନିର୍ଦ୍ଦିଷ୍ଟ ରାଜସ୍ୱଧନରୁ ଊଣା ଆଦାୟ କରନ୍ତି ଏବଂ ନିର୍ଦ୍ଦିଷ୍ଟ ଖର୍ଚ୍ଚରୁ ଅଧିକା ଖର୍ଚ୍ଚ କରନ୍ତି, ତାଙ୍କର ଏକାର୍ଯ୍ୟକୁ 'ପରିହାପଣ' କୁହାଯାଏ । ଏଥିସକାଶେ ଉକ୍ତ କର୍ମ୍ମଚାରୀଙ୍କୁ କ୍ଷତ କରିଥିବା ଧନର ଚାରିଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ରତ୍ନ ସାର ଫଲ୍‌ଗୁ କୁପ୍ୟ ପ୍ରଭୃତି ରାଜଦ୍ରବ୍ୟକୁ ନିଜେ ଉପଭୋଗ କରିବା ବା ଅନ୍ୟକୁ ଉପଭୋଗ କରାଇବାର ନାମ 'ଉପଭୋଗ' । ଏପରି କରିବା ଅଧ୍ୟକ୍ଷଙ୍କୁ ଯଥାକ୍ରମେ ରତ୍ନୋପଭୋଗରେ ପ୍ରାଣଦଣ୍ଡ, ଚନ୍ଦନାଦି ସାରବସ୍ତୁ ଉପଭୋଗରେ ମଧ୍ୟମସାହସଦଣ୍ଡ (ପାଞ୍ଚଶହ ଟଙ୍କା ଜୋରିମାନା), ବସ୍ତ୍ର ଓ ଚମଡ଼ାଦି ଦ୍ରବ୍ୟ (ଫଲ୍‌ଗୁ ଓ କୁପ୍ୟ) ଉପଭୋଗରେ ଦ୍ରବ୍ୟଆଦାୟ ଓ ଦ୍ରବ୍ୟର ମୂଲ୍ୟ ପରିମାଣ ଅର୍ଥଦଣ୍ଡବିଧାନ କରିବାକୁ ହେବ । ରାଜଦ୍ରବ୍ୟ ଅପହରଣ କରି ତା ସ୍ଥାନରେ ତଦ୍ରୂପ ଅନ୍ୟଦ୍ରବ୍ୟ ରଖିଦେବାକୁ 'ପରିବର୍ତ୍ତନ' କୁହାଯାଏ । ଏଥିରେ ଉପଯୁକ୍ତ ଉପଭୋଗ ଅପରାଧରେ ଯେଉଁ ଦଣ୍ଡବିଧାନ କରାଯାଇଛି ତଦ୍ରୂପ ଦଣ୍ଡବିଧାନ କରିବାକୁ ହେବ । ଆଦାୟଧନକୁ ହିସାବଖାତାରେ ନମୋଦ ନ କରିବା ଓ ପୁରସ୍କାର ପ୍ରଭୃତିରେ ବ୍ୟୟ କରିବାପାଇଁ ରାଜା ଆଦେଶଦେଇଥିବା ଧନ ହିସାବଖାତାରେ ଚଢ଼ାଇ

ଗୁଣୋ ଦଣ୍ଡଃ । (୫) ତେଷାଂ ହରଣୋପାୟାଶ୍ଚତ୍ୱାରିଂଶତ୍ ପୂର୍ବଂ ସିଦ୍ଧଂ ପଶ୍ଚାଦବତାରିତଂ, ପଶ୍ଚାତ୍ସିଦ୍ଧଂ ପୂର୍ବମବତାରିତଂ, ସାଧ୍ୟଂନସିଦ୍ଧମ୍, ଅସାଧ୍ୟଂସିଦ୍ଧଂ, ସିଦ୍ଧମସିଦ୍ଧଂକୃତମ୍, ଅସିଦ୍ଧଂ-ସିଦ୍ଧଂକୃତମ୍, ଅଲ୍ପସିଦ୍ଧଂବହୁକୃତଂ, ବହୁସିଦ୍ଧମଲ୍ପଂକୃତମ୍,

---

ପୁରସ୍କୃତ ବ୍ୟକ୍ତିଙ୍କୁ ନଦେବା ଓ ହସ୍ତଗତ ନୀବୀ ଅର୍ଥାତ୍ ଆୟବ୍ୟୟରୁ ବଳକା ହୋଇଥିବା ମୂଳଧନକୁ ଏପର୍ଯ୍ୟନ୍ତ ହସ୍ତଗତ ହୋଇନାହିଁ ବୋଲି କହିବାକୁ 'ଅପହାର' କୁହାଯାଏ । ଏଥିପାଇଁ ମୂଳଧନର ବାରଗୁଣ ଦଣ୍ଡ (ଅପହାରକଙ୍କୁ) ବିଧାନ କରିବାକୁ ହେବ । (୫) **ରାଜଦ୍ରବ୍ୟହରଣ ଉପାୟ ଚାଳିଶି ପ୍ରକାର**—(୧) ପୂର୍ବେ ଅଦାୟ ହୋଇଥିବା ରାଜସ୍ୱ ଧନ ପରେ ଲେଖାରେ ଲଗାଇବା (ପୂର୍ବଶସ୍ୟ ଅର୍ଥାତ୍ ଧାନରୁ ଅଦାୟ ହେବା କର ସହିତ ପଶ୍ଚିମଶସ୍ୟ-ଗହମରୁ ଅଦାୟହେବା କର ମିଶାଇ ଲେଖାରେ ନମୋଦ କରିବା । ଏଥିଦ୍ୱାରା ଅଧ୍ୟକ୍ଷ ମଧ୍ୟବର୍ତ୍ତୀକାଳରେ ଏହି ଧନ ଅସ୍ଥାୟୀ-ଭାବେ ହରଣ କରିଥିବା ପ୍ରମାଣିତ ହୁଏ); (୨) ପଛେ ଅଦାୟ ହେବାକୁ ଥିବା ଧନକୁ ଆଗେ ଲେଖାରେ ନମୋଦ କରିବା (ଧାନ ପରେ ଅଦାୟ ହେବାକୁ ଥିବା ଗହମର କର ପୂର୍ବ ଅଦାୟ କରି, ତହିଁରୁ କିୟଦଂଶ ଧାନରୁ ଅଦାୟ ହୋଇଥିବା ପୂର୍ବ କର ସହିତ ମିଶାଇ ଗହମର ସମସ୍ତ କର ଏତିକି ବୋଲି ଦେଖାଇବା ଓ ବଳକା ଧନ ଅପହରଣ କରିବା ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ); (୩) ଲାଞ୍ଚ ନେଇ ଅଦାୟ ହେବାକୁ ଥିବା ଧନ ଅଦାୟ ନ କରିବା; (୪) କୌଣସି କାଳେ କର ଦେଉନଥିବା ଦେବତା ବ୍ରାହ୍ମଣମାନଙ୍କଠାରୁ ଗୋପନରେ କର ଅଦାୟ କରି ଆତ୍ମସାତ୍ କରିବା; (୫) ପ୍ରଜାଠାରୁ କର ଅଦାୟ କରି ଅଦାୟ ହୋଇନାହିଁ ବୋଲି ଅର୍ଥାତ୍ ସେ ଦେଇନାହିଁ ବୋଲି କହି ଧନ ଆତ୍ମସାତ୍ କରିବା କିମ୍ବା ସମୁଦାୟ କର ଅଦାୟ କରି କିଛି ଅଦାୟ ହୋଇଛି ବୋଲି ମିଥ୍ୟାକଥା କହିବା; (୬) ଅସୁଲ ନକରି କରିଛି ବୋଲି କହିବା (ସମସ୍ତ କର ଅଦାୟ କରିବା ସମୟରେ ଲାଞ୍ଚଖାଇ କରଦାତାଠାରୁ ଅଧେ ଅସୁଲ କରି ପୂର୍ବ ଅଦାୟ ହେବାପରି ହିସାବ ଦେଖାଇ ସମୟକ୍ରମେ ଶେଷାର୍ଦ୍ଧ ଅସୁଲ କରିବା; (୭) ଅଳ୍ପ ଅଦାୟ କରି ବହୁତ ବୋଲି ଲେଖିବା; (୮) ବହୁତ ଅଦାୟ କରି ଅଳ୍ପ ଅଦାୟ

**ଅନ୍ୟତ୍ସିଦ୍ଧମନ୍ୟତ୍କୃତମ୍, ଅନ୍ୟତଃସିଦ୍ଧମନ୍ୟତଃକୃତଂ, ଦେୟ-ନଦତ୍ତମଦେୟଂଦତ୍ତଂ, କାଳେନଦତ୍ତମକାଳେଦତ୍ତମ୍, ଅଳ୍ପଂଦତ୍ତଂ ବହୁକୃତଂ, ବହୁଦତ୍ତମଳ୍ପଂକୃତମ୍, ଅନ୍ୟଦ୍ଦତ୍ତମନ୍ୟତ୍କୃତମ୍, ଅନ୍ୟତୋଦତ୍ତମନ୍ୟତଃକୃତଂ, ପ୍ରବିଷ୍ଟମପ୍ରବିଷ୍ଟଂକୃତମ୍, ଅପ୍ରବିଷ୍ଟଂ-ପ୍ରବିଷ୍ଟଂକୃତଂ, କୁପ୍ୟମଦତ୍ତମୂଲ୍ୟଂପ୍ରବିଷ୍ଟଂ, ଦତ୍ତମୂଲ୍ୟଂନପ୍ରବିଷ୍ଟଂ,**

---

ବୋଲି ଲେଖିବା; (୪୲) ଧାନକୁ କୋଦ ବା ଶୁଅଁ ବୋଲି ଅର୍ଥାତ୍ ମୂଲ୍ୟବାନ୍ ପଦାର୍ଥ ଆଦାୟ କରି ତା'ସ୍ଥାନରେ ମୂଲ୍ୟହୀନ ପଦାର୍ଥର ନାମ ଉଲ୍ଲେଖ କରିବା; (୪୳) ଜଣକଠାରୁ ଅସୁଲକରି ଅନ୍ୟଜଣକ ନାମ ଲେଖାରେ ନମୋଦ କରିବା; (୪୴) ଦେବାଯୋଗ୍ୟ ପଦାର୍ଥ ନଦେବା ଅର୍ଥାତ୍ କୌଣସି ବ୍ୟକ୍ତିଙ୍କୁ ରାଜାଜ୍ଞାପ୍ରକାରେ ଦେବାକୁଥିବା ସୁନାରୂପା ପ୍ରଭୃତି ମୂଲ୍ୟବାନ୍ ପଦାର୍ଥ ନଦେଇ, ତାଳମ୍ବରେ ତା'ବଦଳରେ ଲୁଗାପଟା ପ୍ରଭୃତି ସ୍ୱଳ୍ପମୂଲ୍ୟ ପଦାର୍ଥ ଦେବା; (୫) ଦେବା ସମୟରେ ନଦେଇ ଅନ୍ୟ ସମୟରେ ଦେବା ଅର୍ଥାତ୍ ଯଜ୍ଞାଦି ଧର୍ମକାର୍ଯ୍ୟ ସକାଶେ ରାଜା ଦାନକରିଥିବା ଧନକୁ ଠିକ୍ ସମୟରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ନଦେଇ ତାଙ୍କଠାରୁ କିଛି ଲାଞ୍ଚ ଗ୍ରହଣ କରି ଅନ୍ୟ ସମୟରେ ତାଙ୍କୁ ପୈଠ କରିବା; (୫୲) ଅଳ୍ପ ଦାନପଦାର୍ଥକୁ ବହୁତ କରି ଲେଖିଦେବା; (୫୳) ବହୁତ ଦାନପଦାର୍ଥକୁ ଅଳ୍ପକରି ଲେଖିଦେବା; (୫୴) ଗୋଟିଏ ପଦାର୍ଥ ଦତ୍ତହୋଇଥିବା ସ୍ଥଳେ ଅନ୍ୟ ପଦାର୍ଥ ଅର୍ଥାତ୍ ଧାନ ବଦଳରେ କୋଦ ଦେବା; (୬) ରାମକୁ ଦେବା ସକାଶେ ଆଦେଶ ଦେଇଥିବା ସ୍ଥଳେ ଶ୍ୟାମକୁ ଦେବା; (୬୲) ପ୍ରଜାଙ୍କଠାରୁ ରାଜସ୍ୱ ଆଦାୟ କରି ଆଦାୟ ହୋଇନାହିଁ ବୋଲି କହିବା; (୬୳) ଆଦାୟ ନ ହୋଇଥିବା ରାଜସ୍ୱ ଆଦାୟ ହୋଇଯାଇଛି ବୋଲି ପ୍ରଜାଠାରୁ ଲାଞ୍ଚଖାଇ ଲେଖିବା; (୬୴) ବସ୍ତ୍ରାଦି ପଦାର୍ଥ ଦୋକାନରୁ ବାକି ଆଣି, କିଛି ମୂଲ୍ୟ ପୈଠକରି ପୂରା ମୂଲ୍ୟ ପୈଠକଲାଭଳି ଲେଖିବା; (୬।) ଅଳ୍ପମୂଲ୍ୟ ପଦାର୍ଥକୁ ବହୁମୂଲ୍ୟ ପଦାର୍ଥସ୍ଥାନରେ ରଖି, ବହୁମୂଲ୍ୟ ପଦାର୍ଥକୁ ଅପହରଣ କରିବା ଉଦ୍ଦେଶରେ ବହୁମୂଲ୍ୟ ପଟ୍ଟବସ୍ତ୍ରାଦି ମୂଲ୍ୟକୁ ଅଳ୍ପକରି ପୁସ୍ତକରେ ଲେଖିବା; (୬।୲) ଏକକାଳୀନ ପୂରା ଆଦାୟ କରି ଭିନ୍ନ ଭିନ୍ନ ସମୟରେ ଭାଗ ଭାଗ ଆଦାୟ କଲାପରି ଲେଖିବା; (୬।୳) ବାଇଦା ବାଇଦାରେ ଆଦାୟକରି ଶେଷରେ

**ସଂକ୍ଷେପୋଽବକ୍ଷେପଃକୃତଃ, ଽବକ୍ଷେପଃ ସଂକ୍ଷେପୋ ବା, ମହାର୍ଘ-ମଲ୍ପାର୍ଘେଣ ପରିବର୍ତ୍ତିତମ୍, ଅଲ୍ପାର୍ଘଂ ମହାର୍ଘେଣ ବା, ସମାରୋପିତୋଽର୍ଘଃ, ପ୍ରତ୍ୟବରୋପିତୋ ବା, ସଂବତ୍ସରଃ ସମାରୋପିତାଃ, ପ୍ରତ୍ୟବରୋପିତା ବା, ସମ୍ବତ୍ସରେ ମାସ ବିଷମଃ କୃତଃ, ମାସୋ-**

---

ଏକକାଳୀନ ଅଦାୟ ହୋଇଥିବାର ଲେଖିବା; (୧୮) ମହାର୍ଘ ପଦାର୍ଥ ସ୍ଥାନରେ ଶସ୍ତା ପଦାର୍ଥ ରଖିଦେଇ ମହାର୍ଘ ପଦାର୍ଥ ଅପହରଣ କରିବା; (୧୯) ଶସ୍ତା ପଦାର୍ଥ ସ୍ଥାନରେ ମହାର୍ଘ ପଦାର୍ଥ ରଖିଦେଇ ଶସ୍ତା ପଦାର୍ଥ ନେଇଯିବା ଅର୍ଥାତ୍ ଦଶଟଙ୍କାର ସାଧାରଣ ଲୁଣ ସ୍ଥାନରେ ଦଶଟଙ୍କାର ସୈନ୍ଧବଲବଣ ରଖିଦେଇ ସାଧାରଣ ଲୁଣ ବିକ୍ରୟ କରିବାଦ୍ୱାରା ଲାଭ ଉଠାଇବା; (୧୯/) ପଦାର୍ଥମାନଙ୍କ ମୂଲ୍ୟ ବଢାଇଦେବା; (୧୯୵) ପଦାର୍ଥମାନଙ୍କ ମୂଲ୍ୟ ହ୍ରାସ କରିଦେବା; (୧୯୷) ଶ୍ରମିକମାନଙ୍କୁ ନିର୍ଦ୍ଦିଷ୍ଟ ଶ୍ରମଦିନର ମୂଲ୍ୟ ଦେଇ ଆଉ କେତେଦିନ ବଢାଇ ତା'ର ମୂଲ୍ୟ ଲେଖିଦେବା ଅର୍ଥାତ୍ ପାଞ୍ଚଦିନର ମୂଲ୍ୟ ଦେଇ ସାତଦିନର ମୂଲ୍ୟ ଦେଲାପରି ଲେଖିଦେବା; (୧୯) ସ୍ୱାମୀଙ୍କଠାରୁ ନିର୍ଦ୍ଦିଷ୍ଟ ଦିନ ସକାଶେ ମୂଲ୍ୟ ଗ୍ରହଣକରି ସେଥିରୁ ନ୍ୟୂନଦିନ ସକାଶେ ମୂଲ୍ୟ ପ୍ରାପ୍ତହେଲାପରି ଲେଖି ଲାଭ ଉଠାଇବା; (୧୯/) ବର୍ଷର ମାସଗୁଡ଼ିକୁ ଊଣା-ଅଧିକ କରିଦେବା ଅର୍ଥାତ୍ ଅଧିମାସ ନଥିବା ବର୍ଷକୁ ଅଧିମାସ ଥିବାପରି ଲେଖିବା; (୧୯୵) ଉକ୍ତପ୍ରକାରେ ମାସମଧ୍ୟର ଦିନଗୁଡ଼ିକୁ ବିଷମଭାବେ ଲେଖିବା; (୧୯୷) ଶ୍ରମିକମାନଙ୍କ ସଂଖ୍ୟା ଊଣାଅଧିକ କରି ଲେଖିବା ଅର୍ଥାତ୍ କୌଣସି ଅନୁପସ୍ଥିତ ଶ୍ରମିକର ଉପସ୍ଥିତି ମିଥ୍ୟାରେ ପକାଇ ଓ ତାର ଜାଲ ସ୍ୱାକ୍ଷରକରି ଟଙ୍କା ଆତ୍ମସାତ୍ କରିବା; (୨) ଅଦାୟକ୍ଷେତ୍ରର ନାମ ଅଦଳ ବଦଳ କରି ଓ ଅଦାୟ ଊଣାଅଧିକ ବୋଲି ବତାଇ ନିଜ ଲାଭ ଉଠାଇବା; (୨/) ଧର୍ମାର୍ଥରେ ମଞ୍ଜୁରୀ ଦିଆଯାଇଥିବା ଧନକୁ ଊଣାଅଧିକ ଭାବରେ ଦାନାର୍ହ ବ୍ୟକ୍ତିଙ୍କୁ ଦେଇ ତହିଁରୁ ଲାଭ ଉଠାଇବା; (୨୵) ଧନ ଅସୁଲର ନିୟମଭଙ୍ଗ କରିବା ଅର୍ଥାତ୍ କରନିର୍ଦ୍ଧାରଣ କରିବାବେଳେ କରଦାତା-ମାନଙ୍କଠାରୁ ଉତ୍କୋଚ ଗ୍ରହଣ କରି ସେମାନଙ୍କ ଉପରେ ଊଣା କର ଧାର୍ଯ୍ୟକରିବା; (୨୷) ସମୂହ ଅର୍ଥାତ୍ ଦଣ୍ଡଦାନ ବେଳେ କେତେକଙ୍କଠାରୁ ଉତ୍କୋଚ ଗ୍ରହଣକରି ସେମାନଙ୍କୁ ଛାଡ଼ିଦେଇ ଅନ୍ୟମାନଙ୍କୁ ଦଣ୍ଡିତ କରିବା; (୨।) ବର୍ଣ୍ଣମାନଙ୍କୁ ବିଷମଭାବେ କହିବା, ଅର୍ଥାତ୍ ନୌକାଦିରେ

ବ୍ୟବହାରବିଷମୋ ବା, ସମାଗମବିଷମଃ, ମୁଖବିଷମଃ, ଧାର୍ମିକବିଷମଃ, ନିର୍ବର୍ତ୍ତନବିଷମଃ, ପିଣ୍ଡବିଷମଃ, ବର୍ଣ୍ଣବିଷମଃ, ଅର୍ଘବିଷମଃ, ମାନବିଷମଃ, ମାପନବିଷମଃ, ଭାଜନବିଷମ ଇତି ହରଣୋପାୟାଃ । (୭) ତତ୍ରୋପଯୁକ୍ତନିଧାୟକନିବନ୍ଧକପ୍ରତିଗ୍ରାହକଦାୟକ ଦାପକମନ୍ତ୍ରିମନ୍ତ୍ରିବୈୟାବୃତ୍ତ୍ୟକରାନେକୈକଶୋଽନୁଯୁଞ୍ଜୀତ । ମିଥ୍ୟାବାଦେ ଚୈଷାଂ ଯୁକ୍ତସମୋ ଦଣ୍ଡଃ । ପ୍ରଚାରେ ଚ ବିଘୋଷୟେତ୍—ଅମୁନାପ୍ରକୃତେନୋପହତାଃ ପ୍ରଜ୍ଞାପୟନ୍ତ୍ୱିତି । ପ୍ରଜ୍ଞା-

---

ପାର କରିବା ସମୟରେ ବ୍ରାହ୍ମଣେତର ବ୍ୟକ୍ତିମାନଙ୍କୁ ପାର କରି ମଧ୍ୟ ବ୍ରାହ୍ମଣଙ୍କୁ ବିନାଶୁଳ୍କରେ ପାରକଲି ବୋଲି କହି ଅଦାୟ ଧନ ଆତ୍ମସାତ୍ କରିବା; (୨୧) ସ୍ଥାନଭେଦରେ ପଦାର୍ଥମାନଙ୍କ ମୂଲ୍ୟର ତାରତମ୍ୟ କରିବା; (୨୨) ତୁଳବିଷମ କରିବା ଅର୍ଥାତ୍ ଊଣା ବଟକରା ପକାଇ ତୌଲକରି ଦେଇ ମାପ୍ନଲି ବଟକରା ପକାଇଦେବା ପରି ଲେଖି ତହିଁରୁ ଲାଭ ଉଠାଇବା ଅଥବା ଶିଖାରେ କାଣି ବିକାରେ ଶକ ଲାଭ ଉଠାଇବା; (୨୩) ମାପରେ ଊଣାଅଧିକ କରି ଲାଭ ଉଠାଇବା; (୨୪) ଭାଜନ ବିଷମ ଅର୍ଥାତ୍ ଶହେମାଠିଆ ଘିଅ ଦେବାକୁ ଆଦେଶ ହୋଇଥିବା ସ୍ଥଳେ ଛୋଟ ମାଠିଆରେ ଘିଅ ଦେଇ ବଡ଼ମାଠିଆରେ ଦେବାପରି ଲେଖି ବଳକା ଘିଅ ଅପହରଣ କରିବା (ଏପରି ଚାଳିଶିପ୍ରକାର ଦ୍ରବ୍ୟାପହରଣ ଉପାୟ ଏଠାରେ ଲେଖାଗଲା) । (୭) ରାଜା ଯଦି କୌଣସି ରାଜକର୍ମଚାରୀ ଧନ ଅପହରଣ କରିବାର ଆଶଙ୍କା କରନ୍ତି, ତେବେ ସେ ପ୍ରଧାନାଧ୍ୟକ୍ଷ, ଭଣ୍ଡାରରକ୍ଷକ (ଭଣ୍ଡାରଘରିଆ ବା ଟ୍ରେଜରେର୍), ନିବନ୍ଧପୁସ୍ତକ ଲେଖକ, କରସଂଗ୍ରାହକ, କରଦାତା, କରଦିଆଇବା କର୍ମଚାରୀ (ରାଜପୁରୁଷ) ଅଧ୍ୟକ୍ଷଙ୍କ ପରାମର୍ଶଦାତା, ମନ୍ତ୍ରୀ ଅର୍ଥାତ୍ ଧୀସଚିବ ଓ ମନ୍ତ୍ରୀମାନଙ୍କ ଅଧୀନସ୍ଥ କର୍ମଚାରୀ (ନୌକରଚାକର)-ମାନଙ୍କୁ ବ୍ୟକ୍ତିଗତଭାବେ ସାକ୍ଷାତ୍କାର କରି ଅପହରଣ ବିଷୟରେ ପ୍ରଶ୍ନ କରିବେ—"ବୋଧହୁଏ ଅମୁକ ପଦାର୍ଥ ଅମୁକ କର୍ମଚାରୀ ନେଇଯାଇଛନ୍ତି, ନୁହେଁ ?" ଏପ୍ରକାରେ ପ୍ରଶ୍ନପୂର୍ବକ ତଦନ୍ତ କରିବା ଫଳରେ ଯଦି କେହି ଏମାନଙ୍କମଧ୍ୟରୁ ମିଥ୍ୟାକଥା କହନ୍ତି, ତେବେ ରାଜା ତାଙ୍କୁ ଉକ୍ତ ବିଷୟରେ ଅଧ୍ୟକ୍ଷଙ୍କୁ ଦଣ୍ଡଦେବାପରି ଦଣ୍ଡବିଧାନ କରିବେ ଏବଂ ରାଜ୍ୟର ଜନ-

ପଯୁ୍ୟତୋ ଯଥୋପଘାତଂ ଦାପୟେତ୍ । ଅନେକେଷୁ ଚାଭି-
ଯୋଗେଷ୍ୱପବ୍ୟୟମାନଃ ସକୃଦେବ ପରୋକ୍ତଃ ସର୍ବଂ ଭଜେତ ।
ବୈଷମ୍ୟେ ସର୍ବତ୍ରାନୁଯୋଗଂ ଦଦ୍ୟାତ୍ । ମହତ୍ୟର୍ଥାପହାରେ
ଚାଲ୍ପେନାପି ସିଦ୍ଧଃ ସର୍ବଂ ଭଜେତ । କୃତପ୍ରତିଘାତାବସ୍ଥଃ ସୂଚକୋ
ନିଷ୍ପନ୍ନାର୍ଥଃ ଷଷ୍ଠମଂଶଂ ଲଭେତ, ଦ୍ୱାଦଶମଂଶଂଭୃତକଃ । ପ୍ରଭୂତାଭି-

---

ସାଧାରଣଙ୍କ ମଧ୍ୟରେ ଡିଣ୍ଡିମବାଦନ ପୂର୍ବକ ଘୋଷଣା କରାଇଦେବେ, "ଅମୁକ କର୍ମଚାରୀ ଉତ୍କୋଚଗ୍ରହଣ କରି ପ୍ରଜାମାନଙ୍କୁ ପୀଡ଼ିତ କରୁଥିବା ଜଣାପଡ଼ୁଛି । ସୁତରାଂ ତାଙ୍କ ବିରୁଦ୍ଧରେ ଯାହାଙ୍କର ଯାହା ଅଭିଯୋଗ ଅଛି ତାହା ଲିଖିତ ବା ମୌଖିକଭାବେ ରାଜଦରବାରରେ ପ୍ରକାଶ କରନ୍ତୁ ।" ଏହି ଘୋଷଣା ଫଳରେ ଯେଉଁ ପ୍ରଜାମାନେ ଉକ୍ତ କର୍ମଚାରୀଙ୍କ ଦୁଷ୍କର୍ମ ବିଷୟରେ ପ୍ରମାଣ ସହିତ ଅଭିଯୋଗ କରିବେ, ତାଙ୍କୁ ଉକ୍ତ କର୍ମଚାରୀଙ୍କ ଠାରୁ ସେ ଆତ୍ମସାତ୍ କରିଥିବା ଧନ ଦିଆଇଦେବେ । ଯଦି ଏହି କର୍ମଚାରୀଙ୍କ ବିରୁଦ୍ଧରେ ଆସିଥିବା ଅଭିଯୋଗଗୁଡ଼ିକ ମଧ୍ୟରୁ କେତେଗୋଟି ପ୍ରମାଣ ଅଭାବରୁ ଅସିଦ୍ଧ ହୋଇ ଅଳ୍ପକେତୋଟି ଏପରିକି ଗୋଟିଏ ହେଲେ ମଧ୍ୟ ସିଦ୍ଧହୁଏ, ତେବେ ଏହି ମାମଲାରେ ଲାଗିବା ସମସ୍ତ ଖର୍ଚ୍ଚ ଉକ୍ତ କର୍ମଚାରୀଙ୍କ ଠାରୁ ଅଦାୟ କରିବେ ଏବଂ ତାଙ୍କ ବିରୁଦ୍ଧରେ ପ୍ରମାଣିତ ହୋଇଥିବା ଅଭିଯୁକ୍ତ ଧନ ଦାବୀଦାରଙ୍କୁ ଫେରସ୍ତ କରିବାପାଇଁ ଅଭିଯୁକ୍ତ କର୍ମଚାରୀଙ୍କୁ ଆଦେଶ ଦେବେ । ଯଦି ଅଭିଯୁକ୍ତ କର୍ମଚାରୀ ନିଜର ଦୋଷ ସ୍ୱୀକାର ନ କରନ୍ତି ଓ ତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗଗୁଡ଼ିକ ସିଦ୍ଧ କି ଅସିଦ୍ଧ ଜଣାପଡ଼ୁନାହିଁ, ତେବେ ପ୍ରତ୍ୟେକ ଅଭିଯୋଗର ତଦନ୍ତପାଇଁ ରାଜା ସାକ୍ଷୀମାନଙ୍କୁ ତଲବ କରିବେ । ଯଦି କୌଣସି କର୍ମଚାରୀଙ୍କ ବିରୁଦ୍ଧରେ ସୁନାରୂପାପ୍ରଭୃତି ବହୁତ ଧନ ଅପହରଣର ଅଭିଯୋଗ ହୁଏ ଓ ସେଥିରୁ ଯଦି ସେ କେତେକାଂଶ ନେଇଥିବାର ପ୍ରମାଣ ମିଳେ, ତେବେ ମଧ୍ୟ ସେହି କର୍ମଚାରୀଙ୍କଠାରୁ ସମସ୍ତ ଅଭିଯୁକ୍ତ ଧନ ଅଦାୟ କରିବାକୁ ହେବ । ଦୁର୍ନୀତି ନିବାରଣ ପାଇଁ କୌଣସି ବ୍ୟକ୍ତି ସ୍ୱେଚ୍ଛାପୂର୍ବକ ଯଦି କୌଣସି ଅପହରଣର ସୂଚନା ଦିଅନ୍ତି, ତେବେ ଉକ୍ତ ଧନ ଅସୁଲ ହେଲେ ଏହି ସୂଚକ ବ୍ୟକ୍ତିଙ୍କୁ ଅସୁଲ ଧନର ଛଅଭାଗରୁ ଏକଭାଗ ପୁରସ୍କାର ଦେବାକୁ ହେବ । ଏହି

ଯୋଗାଦଲ୍ପନିଷ୍ପତ୍ତୌ ନିଷ୍ପନ୍ନସ୍ୟାଂଶଂ ଲଭେତ । ଅନିଷ୍ପନ୍ନେ ଶାରୀରଂ ହୈରଣ୍ୟଂ ବା ଦଣ୍ଡଂ ଲଭେତ, ନ ଚାନୁଗ୍ରାହ୍ୟଃ ।

(୭) ନିଷ୍ପତ୍ତୌ ନିକ୍ଷିପେତ୍ ବାଦମାତ୍ମାନଂ ବାପହାରୟେତ୍ ।
ଅଭିଯୁକ୍ତୋପଜାପାତ୍ତୁ ସୂଚକୋ ବଧମାପ୍ନୁୟାତ୍ ॥

---

ସୂଚକବ୍ୟକ୍ତି ଯଦି ଭୃତକ ହୋଇଥାନ୍ତି ତେବେ ତାଙ୍କୁ ଅସୁଲ ହେବା ଧନର ବାରଭାଗରୁ ଏକଭାଗ ପୁରସ୍କାର ଦେବାକୁ ହେବ । ଅଭିଯୁକ୍ତ ଧନର ପୂରା ଅସୁଲ ହୋଇନପାରି କେତେକାଂଶ ଅସୁଲ ହେଲେ ଉକ୍ତ ସୂଚକବ୍ୟକ୍ତି-ମାନେ ଅସୁଲ ଅନୁପାତରେ ପୁରସ୍କାର ପାଇବେ । ଯଦି କୌଣସି ଦୁରଭିସନ୍ଧି ରଖି କୌଣସି ନିରପରାଧ କର୍ମଚାରୀଙ୍କ ବିରୁଦ୍ଧରେ ମିଥ୍ୟାଭିଯୋଗ ଅଣାଯାଇଥାଏ ଏବଂ ତାହା ଯଦି ସତ୍ୟ ବୋଲି ପ୍ରମାଣିତ ନହୁଏ, ତେବେ ଏହି ଅଭିଯୋଗର ସୂଚକ ଶାରୀରଦଣ୍ଡ (ଚାବୁକ ପ୍ରଭୃତି ପ୍ରହାର ଦଣ୍ଡ) ଓ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ସେ କଦାପି କ୍ଷମାର ପାତ୍ର ହୋଇ ପାରିବେ ନାହିଁ । (୭) ଅଭିଯୋଗ ବିଷୟ ସତ୍ୟ ବୋଲି ପ୍ରମାଣିତ ହେଲେ, ସୂଚକ ଆଉ ଅଭିଯୋଗ ନ କରି ଉକ୍ତ କାର୍ଯ୍ୟରୁ ଅଲଗା ହୋଇଯିବେ । କିନ୍ତୁ ନିଷ୍ପତ୍ତି ନହେଲେ ଅଭିଯୋଗ ବନ୍ଦ କରି ପାରିବେ ନାହିଁ କିମ୍ବା ନିଜେ ସେଥିରୁ ଅଲଗା ହୋଇପାରିବେ ନାହିଁ (ବିଖ୍ୟାତ ଅର୍ଥଶାସ୍ତ୍ର ପ୍ରଥମ ଟୀକାକାର ଭଟ୍ଟସ୍ୱାମୀଙ୍କ ମତରେ ଅଭିଯୋଗ ନିଷ୍ପନ୍ନ ହୋଇଗଲେ ସୂଚକ ଉକ୍ତ ସୂଚନାରୁ ଜାତ ନିନ୍ଦାବାଦକୁ ଅନ୍ୟଉପରେ ଆରୋପ କରିଦେବେ ଅର୍ଥାତ୍ ନିଜେ ପଣସ ଖାଇ ପରମୁଣ୍ଡରେ ଅଠା ବୋଳିଦେବେ ଅଥବା ଉକ୍ତ କାର୍ଯ୍ୟରେ ମୁଁ ସଂପୃକ୍ତ ନୁହେଁ ବୋଲି ପ୍ରଚାର କରିଦେବେ) । ଯଦି ଅପରାଧୀଠାରୁ ଲାଞ୍ଚଖାଇ କୌଣସି ସୂଚକ ଅପରାଧୀର ଅପରାଧକୁ ଗୁପ୍ତ କରିବା ପାଇଁ ଅଭିଯୋଗବିଷୟକୁ ବିଚାର ସମୟରେ ଅନ୍ୟପ୍ରକାରେ କହନ୍ତି, ତେବେ ରାଜା ତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେଽଷ୍ଟମୋଽଧ୍ୟାୟଃ ।
ସମୁଦ୍ରସ୍ୟ ଯୁକ୍ତାପହୃତସ୍ୟ ପ୍ରତ୍ୟାନୟନଂ । ଆଦିତଃ ଏକୋନତ୍ରିଂଶଃ ।

## ନବମୋଽଧ୍ୟାୟଃ

## ସପ୍ତବଂଶ ପ୍ରକରଣମ୍—ଉପଯୁକ୍ତ ପରୀକ୍ଷା

### EXAMINATION OF THE CONDUCT OF GOVERNMENT SERVANTS

( ସରକାରୀ କର୍ମଚାରୀଙ୍କ ଗୁଣଦୋଷ ପରୀକ୍ଷା ବା ଦୋଷଗବେଷଣା )

**(୧) ଅମାତ୍ୟସଂପଦୋପେତାଃ ସର୍ବାଧ୍ୟକ୍ଷାଃ ଶକ୍ତିତଃ କର୍ମସୁ ନିଯୋଜ୍ୟାଃ । କର୍ମସୁ ଚୈଷାଂ ନିତ୍ୟଂ ପରୀକ୍ଷାଂ କାରୟେତ୍ ଚିତ୍ତାନିତ୍ୟତ୍ୱାନ୍ମନୁଷ୍ୟାଣାମ୍ । ଅଶ୍ୱସଧର୍ମାଣୋ ହି ମନୁଷ୍ୟା ନିଯୁକ୍ତାଃ କର୍ମସୁ ବିକୁର୍ବତେ । ତସ୍ମାତ୍ କର୍ତ୍ତାରଂ କରଣଂ ଦେଶଂ କାଳଂ କାର୍ଯ୍ୟଂ**

---

(୧) ସମସ୍ତ ଅଧ୍ୟକ୍ଷ (ଯୁକ୍ତ ଓ ଉପଯୁକ୍ତ) ଅମାତ୍ୟ ଗୁଣସମ୍ପନ୍ନ ହେବା ଆବଶ୍ୟକ । ଏମାନଙ୍କ ଶକ୍ତି ଓ ଯୋଗ୍ୟତାନୁସାରେ ଏମାନଙ୍କୁ କର୍ମରେ ନିଯୁକ୍ତ କରିବାକୁ ହେବ । ଏମାନେ ସ୍ୱ ସ୍ୱ କାର୍ଯ୍ୟରେ ନିଯୁକ୍ତ ଥିବାଯାଏଁ ରାଜା ଏମାନଙ୍କ ଦୋଷଗବେଷଣା ସର୍ବଦା କରୁଥିବେ, କାରଣ ମନୁଷ୍ୟ-ମାନଙ୍କର ମନ ସର୍ବଦା ଅବ୍ୟବସ୍ଥିତ । ଆଜି ଠିକ୍ ଅଛି ତ, କାଲି ବିପରୀତ ଆକାର ଧାରଣ କରନ୍ତି । ତେଣୁ ମନୁଷ୍ୟର ସ୍ୱଭାବ ଅଶ୍ୱସଦୃଶ ବୋଲି ଶାସ୍ତ୍ରକାରମାନେ କହନ୍ତି । ଅଶ୍ୱ ରଥରେ ଯୋଗ୍ୟ ହୋଇଥିବା ବେଳେ ଯେପରି ସାଧୁଶୀଳପରି ଦେଖାଯାଉଥାଏ, ଅଥଚ ରଥରେ ଯୋଗ୍ୟ ହେବା ପରେ ନିଜର ଚଉବକାରର ପରିଚୟ ଦିଏ, ମନୁଷ୍ୟ ମଧ୍ୟ ସେପରି କାର୍ଯ୍ୟରେ ନିଯୁକ୍ତହେବା ଅଗରୁ ସାଧୁଶୀଳଭାବ ଦେଖାଇ କାର୍ଯ୍ୟରେ ନିଯୁକ୍ତ ହେବା ପରେ ନିଜର ସ୍ୱାଭାବିକ ଦୋଷଦୁର୍ବଳତାଦି ବିକୃତିର ପରିଚୟ ଦେଇଥାଏ । ଅତଏବ ରାଜା ସୁଚାରୁରୂପେ କାର୍ଯ୍ୟ ସମ୍ପାଦନ ପାଇଁ କର୍ତ୍ତା (ଅଧ୍ୟକ୍ଷ), କରଣ (କର୍ମଚାରୀମାନେ ଯେଉଁ ନିର୍ଦ୍ଦିଷ୍ଟ କର୍ମକ୍ଷେତ୍ରରେ କାମ କରୁଥିବେ ସେହି ଅନୁଷ୍ଠାନ ଓ ତତ୍ସମ୍ବନ୍ଧୀୟ ଉପକରଣ), ଦେଶ (ନଗରାଦି ସ୍ଥାନ), କାଳ (ଅହୋରାତ୍ର ବା ଦୁର୍ଭିକ୍ଷାଦି ସମୟ), କାର୍ଯ୍ୟ (କରଣୀୟ ବିଷୟ), ପ୍ରକ୍ଷେପ (ଦରମା), ଉଦୟ (ଲାଭ) ଇତ୍ୟାଦି ବିଷୟମାନଙ୍କରେ ନିଶ୍ଚିତଭାବେ

ପ୍ରକ୍ଷେପମୁଦୟଂ ଚୈଷୁ ବଦ୍ୟାତ୍ ତେ ଯଥାସଂଦେଶମସଂହତା-ଅବଗୃହୀତାଃ କର୍ମାଣି କୁର୍ଯୁଃ, ସଂହତା ଭକ୍ଷୟେୟୁଃ, ବିଗୃହୀତା ବିନାଶୟେୟୁଃ । (୨) ନ ଚାନବେଦ୍ୟ ଭର୍ତ୍ତୁଃ କଂଚଦାରମ୍ଭଂ କୁର୍ଯୁରନ୍ୟତ୍ରାପତ୍ ପ୍ରତୀକାରେଭ୍ୟଃ । ପ୍ରମାଦସ୍ଥାନେଷୁ ଚୈଷାମତ୍ୟୟଂ ସ୍ଥାପୟେଦ୍ ଦିବସବେତନବ୍ୟୟଦ୍ୱିଗୁଣମ୍ । ଯଶ୍ଚୈଷାଂ ଯଥାଦିଷ୍ଟମର୍ଥଂ ସବିଶେଷଂ ବା କରୋତି ସ ସ୍ଥାନମାନୌ ଲଭେତ । (୩) ଅଲ୍ପାୟତି ଶ୍ଚେନ୍ମହାବ୍ୟୟୋ ଭକ୍ଷୟତି । ବିପର୍ଯୟେ ଯଥାୟତିବ୍ୟୟଶ୍ଚ ନ ଭକ୍ଷୟତି

ଧ୍ୟାନଦେବେ । ଏହି ଅଧ୍ୟକ୍ଷମାନେ ସ୍ୱାମିଙ୍କ ଆଜ୍ଞାକୁ ଅବଜ୍ଞା ନକରି, ପରସ୍ପର ମିଳାମିଶା ନହୋଇ କିମ୍ବା ପରସ୍ପର ବିରୋଧ ଓ ଗୋଳମାଳ ନକରି କାମ କରିବା ଉଚିତ । ଏମାନେ ମେଳବାନ୍ଧିଲେ ରାଜା ଓ ପ୍ରଜାଙ୍କ ଧନ ଆତ୍ମସାତ୍ କରିଦେବେ ଏବଂ ପରସ୍ପର ଗୋଳମାଳକଲେ ରାଜା ଓ ପ୍ରଜାଙ୍କ କାର୍ଯ୍ୟ ବିନଷ୍ଟ କରିଦେବେ । (୨) ଅଧସ୍ତନ କର୍ମଚାରୀମାନେ ଅଗ୍ନି ଜଳାଦି ଆକସ୍ମିକ ବିପତ୍ତିର ପ୍ରତିକାର ବ୍ୟତୀତ ଅନ୍ୟ ଯେକୌଣସି କାର୍ଯ୍ୟ କରିବାକୁ ଗଲେ ଉପରସ୍ଥ ଅଧିକାରୀଙ୍କ ବିନାନୁମତିରେ କିଛି କରି ପାରିବେ ନାହିଁ । ଉକ୍ତ କର୍ମଚାରୀମାନେ ସ୍ୱ ସ୍ୱ ଦୈନନ୍ଦିନ କାର୍ଯ୍ୟ ଠିକମତ ସମ୍ପାଦନ ନକରି ମଦ୍ୟ ବେଶ୍ୟାଦି ବ୍ୟସନରେ ଆସକ୍ତ ହେଲେ, ସେମାନେ ଯେଉଁ ଧନ ଯାହା କ୍ଷତି କରିବେ ସେହି କ୍ଷତିଧନର ଦ୍ୱିଗୁଣ ଓ ସେମାନଙ୍କ ସେହି ଦିନର ଦରମାର ଦ୍ୱିଗୁଣ ଧନ ଜରିମାନା ଦେବେ । ଯେଉଁ କର୍ମଚାରୀ ଉପରସ୍ଥ ଅଧିକାରୀଙ୍କ ଆଜ୍ଞାନୁସାରେ କାମ କରନ୍ତି ବା ଆଜ୍ଞାଠାରୁ ଅଧିକ ଭଲକରି କାର୍ଯ୍ୟ ଦେଖାଇ ପାରନ୍ତି ତାଙ୍କର ପଦୋନ୍ନତି (ପ୍ରମୋସନ୍)ର ବ୍ୟବସ୍ଥା କରାଇବା ସଙ୍ଗେ ସଙ୍ଗେ ତାଙ୍କୁ ପୁରସ୍କାର ମିଳିବା ବ୍ୟବସ୍ଥା ମଧ୍ୟ କରାଇବାକୁ ହେବ । (୩) ଯେଉଁ କର୍ମଚାରୀ ଅଳ୍ପ ଆୟ ଓ ବହୁ ବ୍ୟୟ ଦେଖାନ୍ତି, ସେ ବରାବର ରାଜା-ପ୍ରଜାଙ୍କର ଧନ ଆତ୍ମସାତ୍ କରନ୍ତି । ଯେଉଁ କର୍ମଚାରୀ ବହୁତ ଆୟକରି ଅଳ୍ପ ବ୍ୟୟ ଦେଖାନ୍ତି ଏବଂ ଯେଉଁ କର୍ମଚାରୀ ଆୟ ଅନୁସାରେ ବ୍ୟୟ ଦେଖାନ୍ତି, ସେମାନେ ରାଜା ପ୍ରଜାଙ୍କର ଧନ ଆତ୍ମସାତ୍ କରନ୍ତି ନାହିଁ ବୋଲି ଆଚାର୍ଯ୍ୟମାନଙ୍କର ମତ । କିନ୍ତୁ କୌଟିଲ୍ୟ ଏଥିରେ ଏକମତ ନୁହନ୍ତି ।

ଇତ୍ୟାଗୃର୍ଯ୍ୟାଃ । ଅପସର୍ପଣୈବୋପଲଭ୍ୟତେ ଇତ କୌଟଲ୍ୟଃ । (୪) ଯଃ ସମୁଦୟଂ ପରିହାପୟତି ସ ରାଜାର୍ଥଂ ଭକ୍ଷୟତି । ସ ଚେଦ୍‌ ଜ୍ଞାନାଦିଭିଃ ପରିହାପୟତି ତଦେନଂ ଯଥାଗୁଣଂ ଦାପୟେତ୍ । (୫) ଯଃ ସମୁଦୟଂ ଦ୍ଵିଗୁଣମୁଦ୍‌ଭାବୟତି ସ ଜନପଦଂ ଭକ୍ଷୟତି ।

---

ତାଙ୍କ ମତରେ କର୍ମ୍ମଗୃସ୍ତ ରାଜସ୍ୱ ଅପହରଣ କରିବା ନକରିବା ବିଷୟ ଗୃଡ଼ଦ୍ୱାରା କେବଳ ଜାଣିବାକୁ ହେବ । (୪) ଯେଉଁ କର୍ମ୍ମଗୃସ୍ତ ନିର୍ଦ୍ଦିଷ୍ଟ ରାଜସ୍ୱରୁ ଊଣାକରି ଅଦାୟ ଦେଖାନ୍ତି, ସେ ବରାବର ରାଜସ୍ୱ ଆତ୍ମସାତ୍ କରନ୍ତି ବୋଲି ଜାଣିବାକୁ ହେବ । କିନ୍ତୁ ସେ ଯଦି ଅଜ୍ଞାନ, ଆଳସ୍ୟ, ଭୟ, ପ୍ରମାଦ (ଦ୍ୟୂତମଦ୍ୟବେଶ୍ୟାଦି), କାମ, କ୍ରୋଧ, ଗର୍ବ, ଲୋଭ ଇତ୍ୟାଦିର ବଶବର୍ତ୍ତୀ ହୋଇ ନ୍ୟୂନ ରାଜସ୍ୱ ଅଦାୟ କରନ୍ତି ଅର୍ଥାତ୍ ନିର୍ଦ୍ଦିଷ୍ଟ ରାଜସ୍ୱରୁ ଊଣାକରି ଅଦାୟ କରନ୍ତି, ତେବେ ତାଙ୍କଠାରୁ ଅପରାଧର ମାତ୍ରାନୁସାରେ କ୍ଷତିର ଏକଗୁଣ, ଦୁଇଗୁଣ, ତିନିଗୁଣ ବା ଅଧିକ ଗୁଣ ଧନ ଜରିମାନାରୂପେ ଅଦାୟ କରି ଅନ୍ୟବିଭାଗୀୟ କାର୍ଯ୍ୟରେ ତାଙ୍କୁ ନିଯୁକ୍ତ କରିବାକୁ ହେବ । (୫) ଯେଉଁ କର୍ମ୍ମଗୃସ୍ତ ନିର୍ଦ୍ଦିଷ୍ଟ ରାଜସ୍ୱକୁ ଦୁଇଗୁଣ କରି ପ୍ରଜାଙ୍କଠାରୁ ଅଦାୟ କରନ୍ତି, ସେ ରାଜ୍ୟର ରକ୍ତଶୋଷଣ କରନ୍ତି । ଯେଉଁ କର୍ମ୍ମଗୃସ୍ତ ଏପରି ନିର୍ଦ୍ଦିଷ୍ଟ ରାଜସ୍ୱରୁ ଅଧିକ ଧନ ପ୍ରଜାଙ୍କଠାରୁ ଅଦାୟ କରି ସମସ୍ତ ଧନ ରାଜାଙ୍କୁ ଦେଇଦିଅନ୍ତି ଏବଂ ଯଦି ଏହି ଅପରାଧ ଅଳ୍ପ ବୋଲି ବିବେଚିତ ହୁଏ, ତେବେ ତାଙ୍କୁ ପୁନର୍ବାର ଏପରି ନ କରିବା ପାଇଁ ରାଜା ସାବଧାନ କରାଇଦେବେ । ଯଦି ପ୍ରଜାଙ୍କୁ ଅକଥନୀୟ ଦୁଃଖଦେଇ କୌଣସି କର୍ମ୍ମଗୃସ୍ତ ନିର୍ଦ୍ଦିଷ୍ଟ ରାଜସ୍ୱର ଦୁଇଗୁଣ କିମ୍ବା ତିନିଗୁଣ ଧନ ଅଦାୟ କରି ପ୍ରଜାପୀଡ଼ାରୂପକ ଅପରାଧରେ ଅପରାଧୀ ହୁଅନ୍ତି ଅଥବା ଏପରି ଅତିରିକ୍ତ ଧନ ଅଦାୟ କରି ଆତ୍ମସାତ୍ କରନ୍ତି, ତେବେ ଅପରାଧର ମାତ୍ରାଅନୁସାରେ ତାଙ୍କୁ ଦଣ୍ଡିତ କରିବାକୁ ହେବ । (ଏସମ୍ବନ୍ଧରେ ଗଣପତି ଶାସ୍ତ୍ରୀଙ୍କ ଉକ୍ତି, ଯଥା—"ଯଥାଗ୍ନି କର୍ଷଣାତ୍ ପ୍ରାଣାଃ କ୍ଷୀୟନ୍ତେ ସର୍ବ ଦେହିନାମ୍ । ତଥା କୋଶା ନରେନ୍ଦ୍ରାଣାଂ କ୍ଷୀୟନ୍ତେ ରାଷ୍ଟ୍ର କର୍ଷଣାତ୍ ।" ଯେପରି ଅଗ୍ନି ଉଣା କରିଦେବା ଦ୍ୱାରା ସମସ୍ତ ପ୍ରାଣିମାନଙ୍କ ପ୍ରାଣଶକ୍ତି କ୍ଷୀଣ ହୋଇଯାଏ, ସେପରି ପ୍ରଜାଙ୍କଠାରୁ ଅତିରିକ୍ତ ଧନ ଅପହରଣ କରି ନେବା ଫଳରେ ପ୍ରଜାମାନେ ନିର୍ଦ୍ଧନ ଓ ପୀଡ଼ିତ ହୋଇ

ସ ଚେଦ୍ ରାଜାର୍ଥମୁପନୟତ୍ୟଲ୍ପାପରାଧେ ବାରୟିତବ୍ୟଃ, ମହତି-ଯଥାପରାଧଂ ଦଣ୍ଡୟିତବ୍ୟଃ । (୭) ଯଃ ସମୁଦୟଂ ବ୍ୟୟମୁପନୟତି ସ ପୁରୁଷକର୍ମାଣି ଭକ୍ଷୟତି । ସ କର୍ମଦିବସଦ୍ରବ୍ୟମୂଲ୍ୟପୁରୁଷ-ବେତନାପହାରେଷୁ ଯଥାପରାଧଂ ଦଣ୍ଡୟିତବ୍ୟଃ । (୭) ତସ୍ମାଦସ୍ୟ ଯୋ ଯସ୍ମିନ୍ନଧିକରଣେ ଶାସନସ୍ଥଃ ସ ତସ୍ୟ କର୍ମଣୋ ଯାଥାତଥ୍ୟ ମାୟବ୍ୟୟୌ ଚ ବ୍ୟାସସମାସାଭ୍ୟାମାଚକ୍ଷୀତ । (୮) ମୂଳହର ତାଦାତ୍ୱିକକଦର୍ଯ୍ୟାଂଶ୍ଚ ପ୍ରତିଷେଧୟେତ୍ । ଯଃ ପିତୃପୈତାମହ-

---

କୃଷିବାଣିଜ୍ୟାଦି କାର୍ଯ୍ୟ କରି ନ ପାରି ଅକର୍ମଣ୍ୟ ହୋଇ କ୍ଷୀଣ ହୋଇଯା'ନ୍ତି । ଏହା ଫଳରେ ରାଜକୋଷ ମଧ୍ୟ କ୍ଷୀଣ ହୋଇଯାଏ; ଅଧିକନ୍ତୁ ଉତ୍ପୀଡ଼ିତ ପ୍ରଜାଙ୍କ କ୍ଷୋଭ ଓ ଅସନ୍ତୋଷ ଯୋଗୁଁ ଦୈବୀବିପତ୍ତି, ସାଲ୍ମିକବିଦ୍ରୋହ, ଲୁଣ୍ଠିତରାଜ, ଅଗ୍ନ୍ୟୁତ୍ପାତ ଇତ୍ୟାଦିରେ ମଧ୍ୟ ରାଜକୋଷ କ୍ଷୟପ୍ରାପ୍ତ ହୋଇଥାଏ) । (୬) ଯେଉଁ କର୍ମଚାରୀ ରାଜ୍ୟର ହିତକର କାର୍ଯ୍ୟରେ ବ୍ୟୟିତ ହେବାକୁଥିବା ଧନ ବ୍ୟୟନକରି ରାଜକୋଷରେ ମିଶାଇଦିଅନ୍ତି, ସେ ଦେଶର ଉନ୍ନତିକର କାର୍ଯ୍ୟକୁ ନଷ୍ଟ କରିବା ସଙ୍ଗେ ସଙ୍ଗେ ଶ୍ରମିକମାନଙ୍କ ଅନ୍ନରେ ଧୂଳି ଦେଇଥାନ୍ତି । ସେହି କର୍ମଚାରୀ ଯେତେ ଦିନର କର୍ମ ନଷ୍ଟ କରିଥା'ନ୍ତି ଓ ଯେତେ ମୂଲ୍ୟର କର୍ମ ନଷ୍ଟ କରିଥା'ନ୍ତି ଓ ଶ୍ରମିକମାନଙ୍କୁ ଯେତେ ଦିନ କାମରେ ନ ଖଟାଇ ସେମାନଙ୍କ ଅନ୍ନକଷ୍ଟରେ ହିନ୍ତସନ୍ତ କରିଥାନ୍ତି,—ଏସମସ୍ତ ବିଷୟରେ ଯେତେ ଅପରାଧ ହୁଏ, ତଦନୁସାରେ ତାଙ୍କୁ ଦଣ୍ଡିତ କରିବାକୁ ହେବ । (୭) ଏଣୁ ଯେଉଁ ବ୍ୟକ୍ତି ଯେଉଁ ବିଭାଗର ଶ୍ରେଷ୍ଠ ସ୍ଥାନରେ ନିଯୁକ୍ତ ହୋଇଥିବେ, ସେ ସେହି ବିଭାଗୀୟ କାର୍ଯ୍ୟରେ ଯେଉଁଠି ଯେପରି ହୋଇଥିବା ଆୟବ୍ୟୟକୁ ସଂକ୍ଷିପ୍ତ ଓ ବିସ୍ତୃତ ଭାବରେ ରାଜାଙ୍କୁ ବୁଝାଇ ଦେଉଥିବେ । (୮) ରାଜା ରାଜକର୍ମଚାରୀମାନଙ୍କ ମଧ୍ୟରେ ଥିବା ମୂଳହର, ତାଦାତ୍ୱିକ ଓ କଦର୍ଯ୍ୟ ପୁରୁଷମାନଙ୍କୁ ମୂଳହରଣାଦି କାର୍ଯ୍ୟମାନଙ୍କରୁ ନିବାରଣ କରିବେ । **ମୂଳହରାଦିମାନଙ୍କ ଲକ୍ଷଣ**—ଯେଉଁ ବ୍ୟକ୍ତି ପିତୃପିତାମହଙ୍କ ଧନ ଅଯଥା ଅନ୍ୟାୟ କାର୍ଯ୍ୟରେ ନଷ୍ଟକରେ ତାକୁ 'ମୂଳହର'; ଯେଉଁ ବ୍ୟକ୍ତି ପ୍ରତିଦିନ ଅଦାୟକରିବା ଧନ କିଛି ବଳକା ନ ରଖି ଖର୍ଚ୍ଚ କରିଦିଏ ତାକୁ 'ତାଦାତ୍ୱିକ' ଏବଂ ଯେଉଁ ବ୍ୟକ୍ତି ନିଜ ପେଟ ତଣ୍ଡି ଓ ନୌକରଚାକରଙ୍କ ପେଟ କାଟି

ମର୍ଥମନବ୍ୟାପୟ୍ୟନ ଭକ୍ଷୟତ୍ତି ସ ମୂଲହରଃ । ଯୋ ଯଦ୍‌ଯଦୁତ୍ପଦ୍ୟତେ ତତ୍ତଦ୍ଭକ୍ଷୟତି ସ ତାଦାତ୍ୱିକଃ । ଯୋ ଭୃତ୍ୟାତ୍ମପୀଡ଼ାଭ୍ୟାମୁପଚିନୋତ୍ୟର୍ଥଂ ସ କଦର୍ଯ୍ୟଃ । ସ ପକ୍ଷବାଂଶ୍ଚେଦନାଦେୟଃ, ଅପକ୍ଷବାଂସ୍ତୁ ପର୍ଯ୍ୟାଦାତବ୍ୟଃ । (୯) ଯୋ ମହତ୍ୟର୍ଥସମୁଦୟେ ସ୍ଥିତଃ କଦର୍ଯ୍ୟଃ ସନ୍ନିଧତ୍ତେ, ଅବନଧତ୍ତେ, ଅବସ୍ରାବୟତି ବା—ସନ୍ନିଧତ୍ତେ ସ୍ୱବେଶ୍ମନି, ଅବନଧତ୍ତେ ପୌରଜାନପଦେଷୁ, ଅବସ୍ରାବୟତି ପରବିଷୟେ—ତସ୍ୟ ସତ୍ରୀ ମନ୍ତ୍ରିମିତ୍ରଭୃତ୍ୟବନ୍ଧୁପକ୍ଷମାଗତିଂ ଗତିଂ ଚ ଦ୍ରବ୍ୟାଣାମୁପଲଭେତ । (୧୦) ଯଶ୍ଚାସ୍ୟ ପରବିଷୟେ ସଂଚାରଂ କୁର୍ଯ୍ୟାତ୍ ତମନୁପ୍ରବିଶ୍ୟ ମନ୍ତ୍ରଂ

---

ଲୋଭବଶତଃ ଅଧିକଷ୍ଟରେ କେବଳ ଧନ ବୃଦ୍ଧି କରୁଥାଏ ତାକୁ 'କଦର୍ଯ୍ୟ' କହନ୍ତି । ଏମାନଙ୍କ ମଧ୍ୟରୁ ଯେକୌଣସି ବ୍ୟକ୍ତି ଯଦି ବନ୍ଧୁବାନ୍ଧବଙ୍କ ସହିତ ମେଳବାନ୍ଧି ଠାଣୁଆ ହୋଇଥାଏ, ତା'ଠାରୁ ସେ ଷଡ଼କରିଥିବା ଧନ ଅଦାୟ ନକରି କେବଳ ତାକୁ କାର୍ଯ୍ୟରୁ ଅନ୍ତର କରିଦେବେ । ଏହାର ବିପରୀତ ଅର୍ଥାତ୍ ଉକ୍ତ କର୍ମଚାରୀ କୌଣସି ଦଳଭୁକ୍ତ ନହୋଇ ଏକାକୀ ହୋଇଥିଲେ ତାହାଠାରୁ ସେ ଷଡ଼କରିଥିବା ଧନ ସମୂଳେ ଆଦାୟ କରିନେବେ । (୯) ଯେଉଁ କଦର୍ଯ୍ୟ ରାଜକର୍ମଚାରୀ ପ୍ରଚୁର ଧନ ସଂଗ୍ରହ କରି ନିଜଘରେ ଗାତଖୋଳି ପୋତିରଖେ ବା ରାଜ୍ୟର କୌଣସି ବିଶ୍ୱସ୍ତଲୋକ ପାଖରେ ଲୁଚାଇ ରଖେ କିମ୍ବା ରାଜାଙ୍କ ଶତ୍ରୁରାଜ୍ୟରେ ସାଉଖାତକୀ ଇତ୍ୟାଦି ବ୍ୟବସାୟରେ ଖଟାଏ, ରାଜାଙ୍କ ଗୁପ୍ତଚର ଉକ୍ତ କଦର୍ଯ୍ୟ କର୍ମଚାରୀର ଉପଦେଷ୍ଟା, ମିତ୍ର, ଭୃତ୍ୟ ଓ ବନ୍ଧୁବାନ୍ଧବ ତଥା ଉକ୍ତ ଧନର ଗୁପ୍ତ ଯାତାୟାତ ବିଷୟକୁ ଉତ୍ତମରୂପେ ଅନୁସନ୍ଧାନ କରିବେ । (୧୦) ଯେଉଁ ବ୍ୟକ୍ତି ଏହି କଦର୍ଯ୍ୟ କର୍ମଚାରୀର ଧନ ସଞ୍ଚାର (ଶତ୍ରୁଦେଶକୁ ଧନ ନିଆଅଣା କରିବା) କରୁଥାଏ, ରାଜଗୁପ୍ତଚର ତା'ସହିତ ମିଳାମିଶି ବିଶ୍ୱାସୀ ହୋଇ ତାର ଗତିବିଧିର ରହସ୍ୟ ଅବଗତ ହେବେ । ଉକ୍ତ ରହସ୍ୟ ଜଣାପଡ଼ିବା ପରେ ରାଜା ଏପରି ଗୋଟିଏ ଜାଲ ଚିଠି ଉକ୍ତ କଦର୍ଯ୍ୟ କର୍ମଚାରୀ ନିକଟକୁ ଶତ୍ରୁରାଜ୍ୟରୁ ଆସିଥିବାପରି ଲେଖାଇ, ଉକ୍ତ ଚିଠି ନିଜରାଜ୍ୟର ସୀମାରକ୍ଷକ ଶତ୍ରୁରାଜ୍ୟରୁ ଆସିଥିବା ବ୍ୟକ୍ତିଠାରୁ ପାଇ ରାଜାଙ୍କୁ ଦେବାପରି ବ୍ୟବସ୍ଥା କରାଇ, ଏହାଦ୍ୱାରା ଏହି କଦର୍ଯ୍ୟ କର୍ମଚାରୀ ଉପରେ ଅପରାଧ ଆରୋପକରି ତାକୁ ମରାଇଦେବେ ।

ବଦ୍ୟାତ୍ । ସୁବଦ୍ଧତେ ଶତ୍ରୁଶାସନାପଦେଶେନୈନଂ ଘାତୟେତ୍ । (୧୧) ତସ୍ମାଦସ୍ୟାଧ୍ୟକ୍ଷାଃ ସଂଖ୍ୟାୟକଲେଖକରୂପଦର୍ଶକ ନୀବୀଗ୍ରାହକୋତ୍ତରାଧ୍ୟକ୍ଷସଖାଃ କର୍ମାଣି କୁର୍ଯ୍ୟୁଃ । (୧୨) ଉତ୍ତରାଧ୍ୟକ୍ଷା ହସ୍ତ୍ୟଶ୍ୱରଥାରୋହାଃ । ତେଷାମନ୍ତେବାସିନଃ ଶିଳ୍ପଶୌଚଯୁକ୍ତାଃ ସଂଖ୍ୟାୟକାଦୀନାମପସର୍ପାଃ । ବହୁମୁଖ୍ୟମନିତ୍ୟଂ ଚାଧିକରଣଂ ସ୍ଥାପୟେତ୍ ।

---

ଉକ୍ତ ଚିଠିରେ ଲେଖାଥିବ—"ପଠାଇଥିବା ଧନ ମିଳିଲା, ଅବଶିଷ୍ଟ ଧନ ଶୀଘ୍ର ପଠାଇବାର ବ୍ୟବସ୍ଥା କର ।" (୧୧) ଉପରୋକ୍ତ କାରଣରୁ ଅର୍ଥାତ୍ ରାଜଦ୍ରବ୍ୟର ଅପହରଣରେ ଦଣ୍ଡବିଧାନର ବ୍ୟବସ୍ଥା ଥିବା ଯୋଗୁଁ ସବୁ ବିଭାଗର ଅଧ୍ୟକ୍ଷମାନେ ସଂଖ୍ୟାୟକ (ଗଣନାକାରୀ ଗୁମସ୍ତା), ଲେଖକ, ରୂପଦର୍ଶକ (ମୋହର ଲଗାଇବା କର୍ମଚାରୀ), ନୀବୀଗ୍ରାହକ (ବ୍ୟୟରୁ ବଳକା ହୋଇଥିବା ଧନ ଗ୍ରହଣ କରିବା ଅଧିକାରୀ), ଉତ୍ତରାଧ୍ୟକ୍ଷ (ମିଲିଟାରି ଅଫିସର ପ୍ରଭୃତି) ମାନଙ୍କ ସାହାଯ୍ୟରେ ରାଜକୀୟ ଧନ ସଂଗ୍ରହାଦି କାର୍ଯ୍ୟ ସୁଚାରୁରୂପେ ସଂପାଦନ କରିବେ । (୧୨) ଯେଉଁ ହସ୍ତ୍ୟାରୋହୀ, ଗଜାରୋହୀ ଓ ରଥାରୋହୀ ବୀରପୁରୁଷମାନେ ବୃଦ୍ଧାବସ୍ଥାଯୋଗୁଁ ଯୁଦ୍ଧ କରିବାକୁ ଅକ୍ଷମ ହୋଇଥାନ୍ତି, ସେମାନଙ୍କୁ ଉତ୍ତରାଧ୍ୟକ୍ଷ ପଦରେ ନିଯୁକ୍ତ କରିବା କର୍ତ୍ତବ୍ୟ । ଏମାନଙ୍କର ସବ୍‌କାର୍ଯ୍ୟ କୁଶଳ ଓ ଶୁଦ୍ଧ ସଚ୍ଚରିତ୍ର ଶିଷ୍ୟମାନଙ୍କୁ ଅଧ୍ୟକ୍ଷମାନେ ଉପରୋକ୍ତ ସଂଖ୍ୟାୟକ ପ୍ରଭୃତି କର୍ମଚାରୀମାନଙ୍କ ଗତିବିଧି ଲକ୍ଷ୍ୟ କରିବାପାଇଁ ଗୁପ୍ତଚର-ଭାବେ ନିଯୁକ୍ତ କରିବେ । ରାଜା ଉକ୍ତ କର୍ମସଂସ୍ଥାରେ ବହୁତଗୁଡ଼ିଏ ପ୍ରଧାନ କର୍ମଚାରୀ ନିଯୁକ୍ତ କରିବେ । ବହୁତ ପ୍ରଧାନ କର୍ମଚାରୀ ନିଯୁକ୍ତ ହେଲେ ସେମାନେ ପରସ୍ପରକୁ ଭୟ କରି ରାଜଧନ ଅପହରଣ କରନ୍ତି ନାହିଁ । ଏମାନଙ୍କୁ ଚିରଦିନ ଗୋଟିଏ ଜାଗାରେ ନ ରଖି ସମୟାନୁସାରେ ବଦଳି କରିବାର ବ୍ୟବସ୍ଥା ମଧ୍ୟ କରିବାକୁ ହେବ, କାରଣ ଗୋଟିଏ ଜାଗାରେ ଦୀର୍ଘକାଳ କୌଣସି କର୍ମଚାରୀ ରହିବା ଫଳରେ ପାଖପଡ଼ୋଶୀ କର୍ମଚାରୀ ଓ ନୌକର ଚାକରଙ୍କ ସହିତ ଆତ୍ମୀୟତା ସ୍ଥାପନ କରି ନିଜର ସମସ୍ତ ଦୋଷ ଘୋଡ଼ାଇବାର ବ୍ୟବସ୍ଥା କରନ୍ତି ଏବଂ ତାଙ୍କଦ୍ୱାରା ଶାସିତ ହେଉଥିବା ପ୍ରଜାମାନେ ମଧ୍ୟ ସେ କାଳେ ସେମାନଙ୍କର ଅପକାର କରିବେ ବୋଲି ଭୟକରି ଉକ୍ତ କର୍ମଚାରୀଙ୍କର କୌଣସି ଦୋଷ ଜାଣି ସୁଦ୍ଧା ପ୍ରକାଶ କରନ୍ତି ନାହିଁ ।

(୧୩) ଯଥା ହ୍ୟନାସ୍ୱାଦୟିତୁଂ ନ ଶକ୍ୟଂ
ଜିହ୍ୱାତଳସ୍ଥଂ ମଧୁ ବା ବିଷଂ ବା ।
ଅର୍ଥସ୍ତଥା ହ୍ୟର୍ଥଚରେଣ ରାଜ୍ଞଃ
ସ୍ୱଳ୍ପୋଽପ୍ୟନାସାଦୟିତୁଂ ନ ଶକ୍ୟଃ ॥

(୧୪) ମତ୍ସ୍ୟା ଯଥାନ୍ତଃସଲିଳେ ଚରନ୍ତୋ-
ଜ୍ଞାତୁଂ ନ ଶକ୍ୟାଃ ସଲିଳଂ ପିବନ୍ତଃ ।
ଯୁକ୍ତାସ୍ତଥା କାର୍ଯ୍ୟବିଧୌ ନିଯୁକ୍ତା
ଜ୍ଞାତୁଂ ନ ଶକ୍ୟା ଧନମାଦଦାନାଃ ॥

---

(୧୩) ଯେପରି ଜିଭ ଉପରେ ମହୁ କିମ୍ବା ମହୁରି ଯାହା ରଖିଲେ ତାହା ନିଶ୍ଚୟ ଗୃହୀ ହୋଇଯାଏ, ସେପରି ଟଙ୍କା ପଇସା କାରବାରରେ ଥିବା କର୍ମଚାରୀମାନେ ନିଶ୍ଚୟ ସେଥିରୁ କିଛି କିଛି ଅତ୍ମସାତ୍ କରିବେ, ଏଥିରେ ସନ୍ଦେହ ନାହିଁ । (ଏଠାରେ ମହୁ ଓ ମହୁରି ସହିତ ଧନ ଅତ୍ମସାତ୍ କରିବା ବିଷୟର ଯେଉଁ ତୁଳନା କରାଗଲା ତାର ତାତ୍ପର୍ଯ୍ୟ ଏହି—କିଏ କେଉଁଠି କିଛି ଟିକିଏ ଖାଇଗଲେ ତାକୁ ମହୁସହିତ ତୁଳନା କରାଯାଏ ଅର୍ଥାତ୍ ଧନ ତ ପ୍ରଲୋଭନୀୟ ଜିନିସ, ସେଥିରେ କାରବାର କରୁଥିବା ଲୋକ ନିଶ୍ଚୟ କେତେବେଳେ କ'ଣ ଟିକିଏ କରିଥାଏ, ତାହା ଧର୍ତ୍ତବ୍ୟ ନୁହେ । ଏହା ମହୁପରି ଟିକିଏ ଗୃହୀଦେବା ଜିନିସ, ପେଟପୂରା ନୁହେ, ଏଣୁ ଏହାର ପରିଣାମ ମାରାତ୍ମକ ନୁହେ । କିନ୍ତୁ ଯେଉଁ ଧନ ଦେବତା, ବ୍ରାହ୍ମଣ, ରାଜା, ଅସହାୟ, ଅନ୍ଧ, ଖଞ୍ଜ, କୁବ୍ଜ ଓ ସାମୂହିକ କଲ୍ୟାଣକର କାର୍ଯ୍ୟର ନିଜସ୍ୱ, ତାକୁ ଅତ୍ମସାତ୍ କଲେ ମହୁରି ଗୃହୀଲାପରି ସଦ୍ୟ ପ୍ରାଣନାଶକ ଓ ଭୟପ୍ରଦ ହୁଏ । ଅତଏବ ଗୃହୀକରିବା ବ୍ୟକ୍ତି ଓ ଯେକୌଣସି ଧନର ଜମାଦାର ଏହି ନିୟମ ପ୍ରତି ସର୍ବଦା ଧ୍ୟାନ ଦେବା ଅବଶ୍ୟକ) । (୧୪) ଯେପରି ପାଣି ଭିତରେ ଥିବା ମାଛର ପାଣିପିଇବା ଜାଣିହୁଏ ନାହିଁ, ସେପରି ଅର୍ଥସମ୍ବନ୍ଧୀୟ କାର୍ଯ୍ୟରେ ନିଯୁକ୍ତ ହୋଇଥିବା କର୍ମଚାରୀଙ୍କ ପଇସାଖାଇବା ମଧ୍ୟ ଜାଣିହୁଏ ନାହିଁ ।

(୧୫) ଅପି ଶକ୍ୟା ଗତର୍ଜ୍ଞାତୁଂ ପତତାଂ ଖେ ପତତ୍ରିଣାମ୍ ।
ନ ତୁ ପ୍ରଚ୍ଛନ୍ନଭାବାନାଂ ଯୁକ୍ତାନାଂ ଚରତାଂ ଗତିଃ ॥

(୧୬) ଆସ୍ରାବୟେଚ୍ଚୋପଚିତାନ୍ ବିପର୍ଯସ୍ୟେଚ୍ଚ କର୍ମସୁ ।
ଯଥା ନ ଭକ୍ଷୟନ୍ତ୍ୟର୍ଥଂ ଭକ୍ଷିତଂ ନିର୍ବମନ୍ତି ବା ॥

(୧୭) ନ ଭକ୍ଷୟନ୍ତି ଯେ ତ୍ୱର୍ଥାନ୍ ନ୍ୟାୟତୋ ବର୍ଧୟନ୍ତି ଚ ।
ନିତ୍ୟାଧିକାରାଃ କାର୍ଯାସ୍ତେ ରାଜ୍ଞଃ ପ୍ରିୟହିତେ ରତାଃ ॥

---

(୧୫) ବରଂ ଆକାଶରେ ଉଡ଼ିଯାଉଥିବା ପକ୍ଷୀର ଗତି ନିର୍ଣ୍ଣୟକରିବା ସମ୍ଭବ, କିନ୍ତୁ ଯୁକ୍ତ ଅର୍ଥାତ୍ କର୍ମଚାରୀଙ୍କ ଆଚରଣ ଓ ପ୍ରଚ୍ଛନ୍ନ ଗତିବିଧି ଜାଣିବା ସମ୍ଭବ ହୁଏ ନାହିଁ । (୧୬) ରାଜା ଯଦି କୌଣସି କର୍ମଚାରୀ ଧନ ଆତ୍ମସାତ୍ କରି ସମୃଦ୍ଧ ହେବା ବିଷୟ ଗୁପ୍ତଚରମାନଙ୍କ ଦ୍ୱାରା ଜାଣିପାରନ୍ତି, ତେବେ ତାଙ୍କଠାରୁ ଉକ୍ତ ଧନ ଆଦାୟ କରି ତାଙ୍କୁ ନିମ୍ନସ୍ତରକୁ ଖସାଇଦେବେ, ଯାହାଫଳରେ କି ସେ ଅଜ ଧନ ଅପହରଣ କରିବାର ସୁବିଧା ପାଇବେ ନାହିଁ ଏବଂ ଆତ୍ମସାତ୍ କରିଥିବା ଧନ ବାନ୍ତି କରି ପକାଇବେ ଅର୍ଥାତ୍ ବାଧ୍ୟହୋଇ ଫେରାଇ ଦେବେ । (୧୭) ଯେଉଁ ଅଫିସର (ଅଧ୍ୟକ୍ଷ ବା କର୍ମଚାରୀ) ରାଜାଙ୍କର ଓ ରାଜ୍ୟର ଧନ ଆତ୍ମସାତ୍ ନକରି ନ୍ୟାୟାନୁସାରେ ଅର୍ଥର ଅଭିବୃଦ୍ଧି କରନ୍ତି, ସେହି ପ୍ରିୟ ଓ ହିତକାରୀ ଅଫିସରଙ୍କୁ ରାଜା ପଦୋନ୍ନତି (ପ୍ରମୋସନ) ଦେଇ ତାଙ୍କ କାର୍ଯ୍ୟ ସ୍ଥିର (ପେରମେନେଣ୍ଟ) କରିଦେବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ନବମୋଽଧ୍ୟାୟଃ ।
ଉପଯୁକ୍ତ ପରୀକ୍ଷା—ଆଦିତଃ ତ୍ରିଂଶଃ ।

—0—

## ଦଶମୋଽଧ୍ୟାୟଃ

## ଅଷ୍ଟାବିଂଶ ପ୍ରକରଣମ୍—ଶାସନାଧିକାରଃ

## THE PROCEDURE OF FORMING ROYAL WRITS

### ରାଜ 'ଶାସନ' ଲିଖନ ବିଧି

( ରାଜା ତାମ୍ରପତ୍ର, ତାଳପତ୍ର, ଭୂର୍ଜପତ୍ର ଓ କାଗଜରେ ଯେଉଁ ଲିଖିତ ଆଦେଶ ଦିଅନ୍ତି ତାହାକୁ 'ରାଜଶାସନ' କୁହାଯାଏ । ତାହାର ଲିଖନ ବିଧି ଏ ଅଧ୍ୟାୟରେ କୁହାଯାଉଛି )

**(୧) ଶାସନେ ଶାସନମିତ୍ୟାଚକ୍ଷତେ । ଶାସନପ୍ରଧାନା ହି ରାଜାନଃ, ତନ୍ମୂଲତ୍ୱାତ୍ସନ୍ଧିବିଗ୍ରହୟୋଃ । ତସ୍ମାଦମାତ୍ୟସଂପଦୋପେତଃ ସର୍ବସମୟବିଦାଶୁଗ୍ରନ୍ଥଶ୍ଚାର୍ବକ୍ଷରୋ ଲେଖବାଚନସମର୍ଥୋ ଲେଖକଃ ସ୍ୟାତ୍ । ସୋଽବ୍ୟଗ୍ରମନା ରାଜ୍ଞଃ ସଂଦେଶଂ ଶ୍ରୁତ୍ୱା ନିଶ୍ଚିତାର୍ଥଂ ଲେଖଂ**

(୧) ରାଜାଙ୍କର ଲିଖିତ ଆଦେଶକୁ 'ଶାସନ' କହନ୍ତି । ରାଜାମାନେ 'ଶାସନ'ପ୍ରଧାନ ଅଟନ୍ତି । ଯେହେତୁ ଏମାନଙ୍କର ସମସ୍ତ ସନ୍ଧିବିଗ୍ରହାଦି କାର୍ଯ୍ୟ ଶାସନଦ୍ୱାରା ହିଁ ସଂପନ୍ନ ହୋଇଥାଏ । * ତେଣୁ ମନ୍ତ୍ରିପୁରୋହିତୋପଧି ପ୍ରକରଣୋକ୍ତ ଜାନପଦାଦି ଅମାତ୍ୟଗୁଣସମ୍ପନ୍ନ, ପ୍ରତ୍ୟେକ ବର୍ଣ୍ଣ ଓ ଆଶ୍ରମର ତଥା ଅନ୍ୟମାନଙ୍କର ଆଚାର ବ୍ୟବହାର ବିଷୟରେ ବିଶାରଦ, ଆଶୁଲେଖକ, ସୁନ୍ଦର ଅକ୍ଷର ଲେଖକ, ସ୍ପଷ୍ଟ ପାଠକ ଓ ଅନ୍ୟର ହସ୍ତାକ୍ଷର ପଠନସମର୍ଥ ବ୍ୟକ୍ତି ହିଁ 'ଶାସନ' ଲେଖିବାପାଇଁ ଉପଯୁକ୍ତ । ଏହି ଲେଖକ ଶାନ୍ତିପୂର୍ବକ ସ୍ଥିରଚିତ୍ତ ହୋଇ ରାଜାଙ୍କ ବାକ୍ୟର ଅର୍ଥକୁ ହୃଦୟଙ୍ଗମ କରି ନିର୍ଦ୍ଦୋଷ ଭାବପୂର୍ଣ୍ଣ † ସୁନ୍ଦର ଲେଖ ଲେଖିବେ । ଏହି ଲେଖରେ ରାଜାଙ୍କର ଦେଶ, ଐଶ୍ୱର୍ଯ୍ୟ,

* ଦୂତଦ୍ୱାରା ଯେଉଁ ମୌଖିକ ଆଦେଶ ରାଜାମାନେ ଦିଅନ୍ତି ତାହାକୁ ଶାସନ ବୋଲି ଆଚାର୍ଯ୍ୟମାନେ ଗ୍ରହଣ କରନାହାନ୍ତି । ଯେହେତୁ ଦୂତମାନେ ରାଜାଦେଶକୁ ଭୁଲି ଯିବା ଦ୍ୱାରା ବା ଅସାବଧାନତା ଦ୍ୱାରା ଅଥବା ବୁଦ୍ଧିମାନ୍ଦ୍ୟାଦି ଦ୍ୱାରା ଅନ୍ୟଥା ପ୍ରକାଶ କରିଦିଅନ୍ତି, ତଦ୍ଦ୍ୱାରା ସନ୍ଧିବିଗ୍ରହାଦି ରାଜକାର୍ଯ୍ୟ ନଷ୍ଟ ହୋଇଯାଏ । ଏଣୁ ରାଜାମାନେ ମୁଖ୍ୟ ମୁଖ୍ୟ ବିଷୟରେ ତାଳପତ୍ର ବା କାଗଜରେ ଲେଖି ଯେଉଁ ଆଦେଶ ବା ପରୱାନା ଦିଅନ୍ତି, ସେହି ଲିଖିତ ଆଦେଶକୁ ଶାସନ କୁହାଯାଏ ।

† ଅକ୍ଷର ଲେଖିବା ନିୟମ—ସମାନ ସମଶୀର୍ଷାଣି ଘନାନି ବିରଲାନି ଚ । ଅକ୍ଷରାଣି……।

ବଦଧ୍ୟାଦ୍, ଦେଶୈଶ୍ୱର୍ଯ୍ୟବଂଶନାମଧେୟୋପଗ୍ରମୀଶ୍ୱରସ୍ୟ, ଦେଶନାମଧେୟୋପଗ୍ରମନୀଶ୍ୱରସ୍ୟ ।

(୨) ଜାତିଂ କୁଳଂ ସ୍ଥାନବୟୁଶ୍ଚ ଚୁତାନ
କର୍ମର୍ଦ୍ଧିଶୀଳାନ୍ୟଥ ଦେଶକାଳୌ ।
ଯୌନାନୁବନ୍ଧଂ ଚ ସମୀକ୍ଷ୍ୟ କାର୍ଯ୍ୟେ
ଲେଖଂ ବଦଧ୍ୟାତ୍ ପୁରୁଷାନୁରୂପମ୍ ।।

(୩) ଅର୍ଥକ୍ରମଃ, ସମ୍ବନ୍ଧଃ, ପରିପୂର୍ଣ୍ଣତା, ମାଧୁର୍ଯ୍ୟମୌଦାର୍ଯ୍ୟଂ,

---

ବଂଶନାମ, ନିଜ ନାମ ଲେଖାହେବା ପରେ ଯାହାଙ୍କୁ ଏହି ଶାସନ (ଲେଖ) ପ୍ରଦାନ କରାଯିବ, ତାଙ୍କ ନିଜନାମ ଓ ଦେଶର ନାମ ଲେଖିବାକୁ ହେବ । ଶାସନ(ଲେଖ)ର ଉଦାହରଣ—ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀର ଶ୍ରୀ ବୀରାଧିବୀରବର ପ୍ରତାପ ଶ୍ରୀ ଶ୍ରୀ ଅମୁକଦେବ ଗଜପତିମହାରାଜାଙ୍କର ଅମୁକ ଦେଶୀୟ ଅମୁକ ନାମଧେୟ ବ୍ୟକ୍ତିଙ୍କୁ ଇତ୍ୟାଦି । (୨) ପ୍ରତ୍ୟେକ ରାଜଶାସନ ଲେଖିବା ବେଳେ ଲେଖକ, * ଜାତି (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ରାଦି), କୁଳ (ବଂଶ—ଭୋଜ, ଗଙ୍ଗ, ଚୌହାଣ ଇତ୍ୟାଦି), ସ୍ଥାନ (ସାମାଜିକାଦି ସ୍ଥିତିଗତ), ବୟସ (ଯୌବନ, ପ୍ରୌଢ଼ ଓ ବୃଦ୍ଧାଦି ବୟସ), ଶ୍ରୁତ (ଶାସ୍ତ୍ରଜ୍ଞାନ ବା ଯୋଗ୍ୟତା), କର୍ମ (ବୃତ୍ତି), ଋଦ୍ଧି (ସମ୍ପତ୍ତି), ଶୀଳ (ସ୍ୱଭାବ ଓ ସଦାଚାର), ଦେଶ (ନିବାସସ୍ଥାନ), କାଳ (ସମୟ), ଯୌନାନୁବନ୍ଧ (ବିବାହ ବା ରକ୍ତସମ୍ବନ୍ଧ)—ଏହି ଏଗାର ଗୋଟି ବିଷୟ ଉତ୍ତମଭାବେ ଆଲୋଚନା କରି ଯାହାଙ୍କପାଇଁ ଯେପରି ଲେଖାଯିବା ଉଚିତ ସେପରି ଲେଖ ଲେଖିବେ । (୩) † ଲେଖରେ—୧ ଅର୍ଥକ୍ରମ, ୨ ସମ୍ବନ୍ଧ, ୩ ପରିପୂର୍ଣ୍ଣତା, ୪ ମାଧୁର୍ଯ୍ୟ,

---

* ଜାତି = Caste; କୁଳ = Family; ସ୍ଥାନ = Social rank; ବୟସ = Age; ଶ୍ରୁତ = Learning; କର୍ମ = Occupation; ଋଦ୍ଧି = Property; ଶୀଳ = Character; ଯୌନାନୁବନ୍ଧ = Blood relationship.

† ଅର୍ଥକ୍ରମ = Arrangement of subject matter; ସମ୍ବନ୍ଧ = Relevancy; ପରିପୂର୍ଣ୍ଣତା = Completeness; ମାଧୁର୍ଯ୍ୟ = Sweetness; ଔଦାର୍ଯ୍ୟ = Dignity; ସ୍ପଷ୍ଟତା = Lucidity.

ସ୍ପଷ୍ଟତ୍ୱମିତି ଲେଖସଂପତ୍ । ତତ୍ର ଯଥାବଦନୁପୂର୍ବକ୍ରିୟା ପ୍ରଧାନସ୍ୟାର୍ଥସ୍ୟ ପୂର୍ବମଭିନିବେଶ ଇତ୍ୟର୍ଥସ୍ୟ କ୍ରମଃ । ପ୍ରସ୍ତୁତସ୍ୟାର୍ଥସ୍ୟାନୁପରୋଧାଦୁତ୍ତରସ୍ୟ ବିଧାନମାସମାପ୍ତେରିତି ସମ୍ବନ୍ଧଃ । ଅର୍ଥପଦାକ୍ଷରାଣାମନ୍ୟୂନାତିରିକ୍ତତା ହେତୂଦାହରଣଦୃଷ୍ଟାନ୍ତୈରର୍ଥୋପବର୍ଣ୍ଣନାଶ୍ରାନ୍ତପଦତେତି ପରିପୂର୍ଣ୍ଣତା । ସୁଖୋପନୀତଚାର୍ବର୍ଥଶବ୍ଦାଭିଧାନଂ ମାଧୁର୍ଯ୍ୟମ୍ । ଅଗ୍ରାମ୍ୟଶବ୍ଦାଭିଧାନମୌଦାର୍ଯ୍ୟମ୍ । ପ୍ରତୀତଶବ୍ଦପ୍ରୟୋଗଃ ସ୍ପଷ୍ଟତ୍ୱମିତି । (୪) ଅକାରାଦୟୋ ବର୍ଣ୍ଣାସ୍ତ୍ରିଷଷ୍ଟିଃ । ବର୍ଣ୍ଣସଂଘାତଃ ପଦମ୍ । ତଚ୍ଚତୁର୍ବିଧଂ ନାମାଖ୍ୟାତୋପସର୍ଗ-

---

୫ ଔଦାର୍ଯ୍ୟ, ୬ ସ୍ପଷ୍ଟତା ଏ ଛ'ଗୋଟି ଗୁଣ ରହିବାକୁ ହେବ । ପ୍ରଧାନ ବିଷୟକୁ ପ୍ରଥମେ ଲେଖି, ପରେ ଅନ୍ୟ ବିଷୟକୁ ଯଥାକ୍ରମେ ସଜାଇ ଲେଖିବାର ନାମ 'ଅର୍ଥ କ୍ରମ' । ପୂର୍ବାପର ସମ୍ବନ୍ଧ ରଖି ଆରମ୍ଭଠାରୁ ଶେଷପର୍ଯ୍ୟନ୍ତ କ୍ରମାନ୍ୱୟ ଲିଖନକୁ 'ସମ୍ବନ୍ଧ' କୁହାଯାଏ । ଅର୍ଥ, ପଦ, ଅକ୍ଷର ଏମାନଙ୍କ ନ୍ୟୂନତା ବା ଅଧିକତା ନ କରିବା; ହେତୁ, ଉଦାହରଣ, ଦୃଷ୍ଟାନ୍ତଦ୍ୱାରା ଅର୍ଥକୁ ସିଦ୍ଧ କରିବା ଏବଂ ଅର୍ଥ ପ୍ରତିପାଦନରେ କ୍ଲିଷ୍ଟ ବାକ୍ୟ ବ୍ୟବହାର ନ କରିବାକୁ 'ପରିପୂର୍ଣ୍ଣତା' କହନ୍ତି । ସରଳ ଓ ସୁନ୍ଦରାର୍ଥବୋଧକ ଶବ୍ଦ ପ୍ରୟୋଗକୁ 'ମାଧୁର୍ଯ୍ୟ', ଗାଉଁଲି ଶବ୍ଦ ପ୍ରୟୋଗ ନକରି ଲେଖିବାକୁ 'ଔଦାର୍ଯ୍ୟ' ଓ ଲୋକପ୍ରସିଦ୍ଧ ଅର୍ଥାତ୍ ଲୋକସାଧାରଣ ବୁଝିବା ଭଳି ଶବ୍ଦ ପ୍ରୟୋଗକୁ 'ସ୍ପଷ୍ଟତ୍ୱ' କୁହାଯାଏ । (୪) * ଅକାରାଦି ତେଷଠି ଅକ୍ଷରକୁ ବର୍ଣ୍ଣ କୁହାଯାଏ । ହ୍ରସ୍ୱ, ଦୀର୍ଘ, ପ୍ଳୁତ ଭେଦରେ ସ୍ୱରବର୍ଣ୍ଣ ବାଇଶି; କଠାରୁ ମପର୍ଯ୍ୟନ୍ତ ସ୍ପର୍ଶବର୍ଣ୍ଣ ପଚିଶି; ଯ ର ଲ ବ—ଏପରି ଅନ୍ତଃସ୍ଥବର୍ଣ୍ଣ ଚାରି; ଅନୁସ୍ୱାର, ବିସର୍ଗ, ଜିହ୍ୱାମୂଲୀୟ ଓ ଉପଧ୍ମାନୀୟ—ଏପରି ଅଯୋଗବାହ ଚାରି; ଯମାକ୍ଷର ଚାରି; ଶ ଷ ସ ହ ଏପରି ଉଷ୍ମବର୍ଣ୍ଣ ଚାରି; ମୋଟ ବର୍ଣ୍ଣ ତେଷଠି ।

---

* ସ୍ୱରାଃ ସ୍ୱରାଣାଂ ଦ୍ୱାବିଂଶତିଃ ... ଦୀର୍ଘାଃ ପ୍ରାଣାଂ ଶତାଷ୍ଟୌ ପଞ୍ଚହ୍ରସ୍ୱାଃ ପ୍ଳୁତାନବ ।
ଚତୁର୍ଧା ଚ ଯୋଗବାହୋ ଯମାନ୍ତସ୍ଥାଃ ପୃଥକ୍ ପୃଥକ୍ ॥
ବିଂଶତିଃ ପଞ୍ଚ ଚ ସ୍ପର୍ଶାସ୍ତ୍ରିଷଷ୍ଟିରେତି କୀର୍ତ୍ତିତାଃ । (ଇତି ବର୍ଣ୍ଣକାରିକା° ଟ° ଗୁଃ )
ବର୍ଣ୍ଣାଃ ପଦଂ ପ୍ରୟୋଗାର୍ହା ନନ୍ୱିତୈକାର୍ଥବୋଧକାଃ ।
( ଇତି ସାହିତ୍ୟଦର୍ପଣେ ପଦଲକ୍ଷଣମ୍ )

ନପାତାଶ୍ଚେତି । ତତ୍ର ନାମ ସତ୍ତ୍ୱାଭିଧାୟି । ଅବିଶିଷ୍ଟଲିଂଗମାଖ୍ୟାତଂ କ୍ରିୟାବାଚି । କ୍ରିୟାବିଶେଷକାଃ ପ୍ରାଦୟ ଉପସର୍ଗାଃ । ଅବ୍ୟୟାଶ୍ଚାଦୟୋ ନପାତାଃ । (୫) ପଦସମୂହୋ ବାକ୍ୟମର୍ଥପରିସମାପ୍ତୌ । ଏକପଦାବରସ୍ତ୍ରିପଦପରଃ ପରପଦାର୍ଥାନୁରୋଧେନ ବର୍ଗଃ କାର୍ଯ୍ୟଃ । ଲେଖପରିସଂହରଣାର୍ଥ ଇତିଶବ୍ଦୋ ବାଚକମସ୍ୟେତି ଚ ।

(୬) ନିନ୍ଦା ପ୍ରଶଂସା ପୃଚ୍ଛା ଚ ତଥାଖ୍ୟାନମଥାର୍ଥନା ।
ପ୍ରତ୍ୟାଖ୍ୟାନମୁପାଲମ୍ଭଃ ପ୍ରତିଷେଧୋଽଥ ଚୋଦନା ॥

---

ଏକାର୍ଥବୋଧକ ପ୍ରୟୋଗଯୋଗ୍ୟ ବର୍ଣ୍ଣସମୂହକୁ 'ପଦ' କୁହାଯାଏ । ନାମ, ଆଖ୍ୟାତ, ଉପସର୍ଗ ଓ ନିପାତ ଭେଦରେ ପଦ ଚାରିପ୍ରକାର । ଜାତି, ଗୁଣ ଓ ବସ୍ତୁର ନାମକୁ 'ନାମ'; ସ୍ତ୍ରୀଲିଙ୍ଗ, ପୁଂଲିଙ୍ଗ ଓ ନପୁଂସକ ଲିଙ୍ଗ ବିଶେଷ୍ୟଶୂନ୍ୟ କ୍ରିୟାବାଚକ ପଦକୁ 'ଆଖ୍ୟାତ'; କ୍ରିୟାର ପ୍ରକର୍ଷାଦି ବିଶେଷ ଅର୍ଥଉତ୍ପାଦକ ପ୍ର, ପରା, ଅପ, ସମାଦିକୁ 'ଉପସର୍ଗ' ଏବଂ ଚ, ବା ଇତ୍ୟାଦିକୁ 'ନିପାତ' କୁହାଯାଏ । (୫) ଅନ୍ୟୂନତୁଳ୍ୟ ସ୍ପଷ୍ଟାର୍ଥବୋଧକ ପଦସମୂହକୁ 'ବାକ୍ୟ'; ନିକଟତମ ପରବର୍ତ୍ତୀ ପଦର ଅର୍ଥାନୁସରଣ ପୂର୍ବକ ପୂର୍ବବର୍ତ୍ତୀ ସାମର୍ଥ୍ୟବନ୍ତ ଏକ ପଦରୁ ଅତି ଅଧିକରେ ତିନି ପଦ ପର୍ଯ୍ୟନ୍ତ ଅର୍ଥାତ୍ ଦୁଇ ବା ତିନି ପଦର ସମୂହକୁ 'ସମାସ' ବା 'ବର୍ଗ' କୁହାଯାଏ । ଲେଖ ପରିସମାପ୍ତି ପରେ ଇତି ଶବ୍ଦ ବା ବାଚକମସ୍ୟ ଶବ୍ଦକୁ ଲେଖିବାକୁ ହେବ, ଅର୍ଥାତ୍ ଲେଖ (ଶାସନ)ରେ ଲେଖାହେବା ବିଷୟ ଯଦି ସମ୍ପୂର୍ଣ୍ଣ ହୋଇଯାଇଥିବ ତେବେ ଲେଖଶେଷରେ ଇତି ଶବ୍ଦ ଯୋଗ କରିବାକୁ ହେବ । କିନ୍ତୁ ଲେଖର ବିଷୟ ଯଦି କିଛି ଅବଶିଷ୍ଟ ରହେ ତେବେ ଲେଖ ଶେଷରେ "ଏହି ଲେଖ ଧରିଥିବା ଲୋକର ମୁଖରୁ ବିଶେଷ ବିଷୟ ଶୁଣିବେ" ଏପରି ଲେଖିବାକୁ ହେବ । (୬) *ନିନ୍ଦା, ପ୍ରଶଂସା, ପ୍ରଶ୍ନ, ଆଖ୍ୟାନ, ଅର୍ଥନା,

---

*ନିନ୍ଦା = Calumination; ପ୍ରଶଂସା = Commendation; ପୃଚ୍ଛା = Inquiry; ଆଖ୍ୟାନ = Narration; ପ୍ରାର୍ଥନା = Request; ପ୍ରତ୍ୟାଖ୍ୟାନ = Refusal; ଉପାଲମ୍ଭ = Censure; ପ୍ରତିଷେଧ = Prohibition; ଚୋଦନା = Command; ସାନ୍ତ୍ୱନା = Conciliation; ଅଭ୍ୟବପତ୍ତି = Promise of help; ଭର୍ତ୍ସନା = Threat; ଅନୁନୟ = Persuasion —these are the thirteen purposes for which writs are issued.

ସାନ୍ତ୍ୱମଭ୍ୟବପତ୍ତିଶ୍ଚ ଭର୍ତ୍ସନାନୁନୟୌ ତଥା ।
ଏତେଷ୍ୱର୍ଥାଃ ପ୍ରବର୍ତ୍ତନ୍ତେ ତ୍ରୟୋଦଶସୁ ଲେଖଜାଃ ॥

(୭) ତତ୍ରାଭିଜନଶରୀରକର୍ମଣାଂ ଦୋଷବଚନଂ ନିନ୍ଦା । ଗୁଣବଚନମେତେଷାମେବ ପ୍ରଶଂସା । କଥମେତଦିତି ପୃଚ୍ଛା । ଏବମିତ୍ୟାଖ୍ୟାନମ୍ । ଦେହୀତ୍ୟର୍ଥନା । ନ ପ୍ରୟଚ୍ଛାମୀତି ପ୍ରତ୍ୟାଖ୍ୟାନମ୍ । ଅନନୁରୂପଂ ଭବତ ଇତ୍ୟୁପାଲମ୍ଭଃ । ମାକାର୍ଷୀରିତି ପ୍ରତିଷେଧଃ । ଇଦଂ କ୍ରିୟତାମିତି ଚୋଦନା । ଯୋଽହଂ ସୋ ଭବାନ୍; ମମ

---

ପ୍ରତ୍ୟାଖ୍ୟାନ, ଉପାଲମ୍ଭ, ପ୍ରତିଷେଧ, ଚୋଦନା, ସାନ୍ତ୍ୱନା, ଅଭ୍ୟବପତ୍ତି, ଭର୍ତ୍ସନା ଓ ଅନୁନୟ—ଏହି ତେରଗୋଟି ବିଷୟରେ ଲେଖାର ଅର୍ଥ ପ୍ରକାଶ ପାଇଥାଏ । (୭) ଜାତି, ଶରୀର ଓ କାର୍ଯ୍ୟର ଦୋଷ କଥନକୁ 'ନିନ୍ଦା' (ତମ ଜାତି ଓ ବଂଶ ଠକ ବା ମାରଣା ଇତ୍ୟାଦି 'ଜାତିନିନ୍ଦା'; ତୁମେ କୁଷ୍ଠରୋଗୀ, ଯକ୍ଷ୍ମାରୋଗୀ ଇତ୍ୟାଦି 'ଶରୀରନିନ୍ଦା'; ତୁମ୍ଭେ ସ୍ତ୍ରୀ-ବାଳକ-ଭ୍ରୂଣ କିମ୍ବା ଗୋବ୍ରାହ୍ମଣ ହତ୍ୟାକାରୀ ଇତ୍ୟାଦି 'କର୍ମନିନ୍ଦା')—ଏହି ତିନିପ୍ରକାର ନିନ୍ଦାର ବିପରୀତ ଅର୍ଥାତ୍ ଜାତି, ଶରୀର ଓ କାର୍ଯ୍ୟର ଗୁଣକଥନକୁ 'ପ୍ରଶଂସା'; କିପରି ଏହା କରିବି—ଏହାକୁ 'ପ୍ରଶ୍ନ'; ଏବିଷୟ ଏପରିଭାବେ କରିବା ଉଚିତ ଏପରି ଉପଦେଶ ବୁଦ୍ଧି କରିବାକୁ 'ଆଖ୍ୟାନ'; କିଛି ଦିଅନ୍ତୁ ବୋଲି ମାଗିବାକୁ 'ଅର୍ଥନା'; ମାଗିବା ପଦାର୍ଥକୁ ଦେଇ ପାରିବିନାହିଁ ବୋଲି କହିବାକୁ 'ପ୍ରତ୍ୟାଖ୍ୟାନ'; ଏହି କାର୍ଯ୍ୟ ତୁମଭଳି ଲୋକପକ୍ଷେ ସୁନ୍ଦର ହେଲା ନାହିଁ—ଏପରି କହିବାକୁ 'ଉପାଲମ୍ଭ'; ଏପରି ତୁମେ କର ନାହିଁ ବୋଲି ଅକାର୍ଯ୍ୟରୁ ନିବର୍ତ୍ତାଇବାକୁ 'ପ୍ରତିଷେଧ'; ତୁମ୍ଭେ ଏପରି କର ବୋଲି କହିବାକୁ 'ଚୋଦନା' (ପ୍ରେରଣା), * ମୁଁ ଯିଏ ଆପଣ ସିଏ, ମୋର ପଦାର୍ଥ ଯାହା ତାହା ଆପଣଙ୍କର—ଏପରି ବାକ୍ୟଭଙ୍ଗିଦ୍ୱାରା ଅନ୍ୟକୁ ନିଜପ୍ରତି

---

* ସାନ୍ତ୍ୱ ବିଷୟକ ମହାକବି ପ୍ରୟୋଗ, ଯଥା—

ସଖୀନିବପ୍ରୀତି ଯୁଜୋଽନୁଜୀବିନଃ ସମାନ ମାନାନ୍ ସୁହୃଦଶ୍ଚ ବନ୍ଧୁଭିଃ ।
ସ ସନ୍ତତଂ ଦର୍ଶୟତେ ଗତସ୍ମୟଃ କୃତାଧିପତ୍ୟାମିବ ସାଧୁବନ୍ଧୁତାମ୍ ॥
( ଇତି କିରାତାର୍ଜୁନୀୟେ ଭାରବିଃ )

ଯଦ୍‌ଦ୍ରବ୍ୟଂ ତଦ୍ ଭବତଃ ଇତ୍ୟୁପଗ୍ରହଃ ସାନ୍ତ୍ୱମ୍ । ବ୍ୟସନ-
ସାହାଯ୍ୟମଭ୍ୟବପତ୍ତିଃ । ସଦୋଷମାୟତିପ୍ରଦର୍ଶନମଭିଭର୍ତ୍ସନମ୍ ।
ଅନୁନୟସ୍ତ୍ରିବିଧୋଽର୍ଥକୃତାବତିକ୍ରମେ ପୁରୁଷାଦିବ୍ୟସନେ ଚେତି ।
(୮) ପ୍ରଜ୍ଞାପନାଜ୍ଞାପରିଦାନଲେଖାସ୍ତଥା ପରୀହାରନିସୃଷ୍ଟିଲେଖୌ ।
ପ୍ରାବୃତ୍ତିକଶ୍ଚ ପ୍ରତିଲେଖ ଏବ ସର୍ବତ୍ରଗଶ୍ଚେତି ହି ଶାସନାନି ॥
(୯) ଅନେନ ବିଜ୍ଞାପିତମେବମାହ ତଦ୍‌ଦୀୟତାଂଚେଦ୍ ଯଦି ତତ୍ତ୍ୱମସ୍ତି ।
ରାଜ୍ଞଃ ସମୀପେ ବରକାରମାହ ପ୍ରଜ୍ଞାପନୈଷା ବିବିଧୋପଦିଷ୍ଟା ॥

---

ଅନୁକୂଳ କରାଇବାକୁ 'ସାନ୍ତ୍ୱ' (ସାନ୍ତ୍ୱନା); ଶତ୍ରୁ ଉପଦ୍ରବ ଓ ଅଗ୍ନି-ଉତ୍ପାତାଦି ବ୍ୟସନ ସମୟରେ ସାହାଯ୍ୟ କରିବାକୁ 'ଅଭ୍ୟବପତ୍ତି'; ତୁମେ ଯଦି ଏପରି ନକର ତେବେ ତୁମକୁ ହତ୍ୟାକରିବ ବା କାରାଗୃହରେ ବନ୍ଦୀ କରିବ ଇତ୍ୟାଦି ଭବିଷ୍ୟତର ଅନର୍ଥ ଦୋଷଯୁକ୍ତ ଧମକବାକ୍ୟକୁ 'ଅଭିଭର୍ତ୍ସନ' କୁହାଯାଏ । 'ଅନୁନୟ' ତିନିପ୍ରକାର—କୌଣସି କାର୍ଯ୍ୟସିଦ୍ଧି ନିମିତ୍ତ ମିତ୍ର ବନ୍ଧୁଙ୍କ ନିକଟରେ କରାଯିବା ପ୍ରାର୍ଥନାକୁ ପ୍ରଥମ ଅନୁନୟ (ଅର୍ଥକୃତାନୁନୟ); ନିଜ କଥା ରକ୍ଷା ନହେବା ଯୋଗୁଁ କୁପିତ ହୋଇଥିବା ବ୍ୟକ୍ତିଙ୍କ କୋପଶାନ୍ତ ସକାଶେ କରାଯିବା ଅନୁନୟକୁ ଦ୍ୱିତୀୟ ଅନୁନୟ (ଅତିକ୍ରମାନୁନୟ); ଅବଶ୍ୟ ଅନୁଗ୍ରହଯୋଗ୍ୟ—ପିତା, ଭ୍ରାତା, ପୁତ୍ର, ମିତ୍ର ଓ ଅମାତ୍ୟଙ୍କ ପ୍ରାଣହାନିକର ବିପତ୍ତିରେ ମଧ୍ୟ କୌଣସି ପ୍ରକାର ସାହାଯ୍ୟ ନଦେଇ ନିଜର ଲୋଡ଼ାବେଳେ ଏମାନଙ୍କୁ ଡାକି ଯେଉଁ ଅନୁନୟ କରାଯାଏ ତାହାକୁ ତୃତୀୟ ଅନୁନୟ (ପୁରୁଷାଦିବ୍ୟସନ ଅନୁନୟ) କୁହାଯାଏ । (୮) ପ୍ରଜ୍ଞାପନ, ଆଜ୍ଞା, ପରିଦାନ, ପରିହାର, ନିସୃଷ୍ଟି, ପ୍ରାବୃତ୍ତିକ, ପ୍ରତିଲେଖ, ସର୍ବତ୍ରଗ—ଏପରି 'ଲେଖ' ଆଠପ୍ରକାର । (୯) ମହାମାତ୍ରାଦି ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ଆଗରେ ତାହାଙ୍କ ଗୁପ୍ତଚରମାନେ ଜଣାନ୍ତି—"ଆପଣଙ୍କ ବିରୁଦ୍ଧରେ ରାଜାଙ୍କ ନିକଟରେ କୌଣସି ବ୍ୟକ୍ତି ପ୍ରକାଶ କରିଛନ୍ତି, 'ଅମୁକ ମହାପାତ୍ର ଏତେ ପରିମାଣ ନିଧି (ପୋତାଧନ) ପ୍ରାପ୍ତହୋଇ ଆତ୍ମସାତ୍ କରିଛନ୍ତି'; ରାଜା ଏହା ଶୁଣି କହିଛନ୍ତି, 'ଉକ୍ତ ମହାପାତ୍ର ଯଦି ସ୍ୱଇଚ୍ଛାରେ ତାହା ମତେ ନ ଦିଅନ୍ତି ତେବେ ତାଙ୍କଠାରୁ ସେଧନର ଦୁଇଗୁଣ ଆଦାୟ କରାଯିବ' । ଏପରି ରାଜଶାସନ ପ୍ରକାଶପାଇଛି । ଆପଣ ଯଦି ପ୍ରକୃତରେ

(୧୦) ଭର୍ତ୍ତୁରାଜ୍ଞା ଭବେଦ୍ ଯତ୍ର ନିଗ୍ରହାନୁଗ୍ରହୌ ପ୍ରତି ।
ବିଶେଷେଣ ତୁ ଭୃତ୍ୟେଷୁ ତଦାଜ୍ଞା ଲେଖଲକ୍ଷଣମ୍ ॥
(୧୧) ଯଥାର୍ହଗୁଣସଂଯୁକ୍ତା ପୂଜା ଯତ୍ରୋପଲକ୍ଷ୍ୟ ତେ ।
ଅପ୍ୟାଧୌ ପରିଦାନେ ବା ଭବତସ୍ତାବୁପଗ୍ରହୌ ॥
(୧୨) ଜାତେର୍ବିଶେଷେଷୁ ପୁରେଷୁ ଚୈବ
ଗ୍ରାମେଷୁ ଦେଶେଷୁ ଚ ତେଷୁ ତେଷୁ ।

---

ତାହା ପାଇଛନ୍ତି, ତେବେ ରାଜାଙ୍କୁ ତାହା ସମର୍ପଣ କରିଦଅନ୍ତୁ ।" ଏହାକୁ ଶତ୍ରୁପକ୍ଷୀୟ ପ୍ରଜ୍ଞାପନା କହନ୍ତି । ସେପରି "ଆପଣ ଉତ୍ତମ କାର୍ଯ୍ୟ କରିଛନ୍ତି ବୋଲି ଅମୁକ ବ୍ୟକ୍ତି ରାଜାଙ୍କୁ ଜଣାଇଲେ" ଏପରି କହିବାକୁ 'ମିତ୍ରପକ୍ଷୀୟ ପ୍ରଜ୍ଞାପନା' କହନ୍ତି । ଏପରି ପ୍ରଜ୍ଞାପନା ଅନେକପ୍ରକାର । (୧୦) ସାଧାରଣତଃ ଯେକୌଣସି ଲୋକ ବିଷୟରେ ବିଶେଷତଃ ଭୃତ୍ୟମାନଙ୍କ ବିଷୟରେ ଯେଉଁ ପତ୍ରରେ ରାଜାଙ୍କର ନିଗ୍ରହ ବା ଅନୁଗ୍ରହ ଲେଖାହୋଇଥାଏ, ସେହି ଲେଖପତ୍ରକୁ 'ଆଜ୍ଞାଲେଖ' କହନ୍ତି । (୧୧) ଯେଉଁ ଲେଖରେ ପୂଜାସୂଚକ ଆଦର ସମ୍ମାନର ଭାଷା ଲେଖାଯାଏ, ତାହାକୁ 'ପରିଦାନ' କହନ୍ତି । ଏ ପତ୍ରରେ କୌଣସି ସମ୍ପର୍କୀୟ ବ୍ୟକ୍ତିଙ୍କ ମୃତ୍ୟୁରେ ସହାନୁଭୂତି ଦେଖାଇ ଲେଖାଥାଏ କିମ୍ବା କୌଣସି ଦୁଃଖଦୁର୍ଦ୍ଦଶାଗ୍ରସ୍ତ ଭୃତ୍ୟର ରକ୍ଷାନିମିତ୍ତ ଲେଖାଥାଏ । ଏ ଦୁଇପ୍ରକାର ଲେଖକୁ 'ଉପଗ୍ରହ ଲେଖ' କୁହାଯାଏ । (୧୨) ଜାତି, ପୁର, ଗ୍ରାମ ଓ ଦେଶବିଶେଷ ଉପରେ ରାଜାଙ୍କ ଆଜ୍ଞାପତ୍ରରେ ଯେଉଁ ଅନୁଗ୍ରହ ପ୍ରକାଶ ପାଇଥାଏ, ତାହାକୁ ତତ୍‌ବିଦମାନେ 'ପରିହାର' (**Remission** ରୂପକ ରାଜ-ଶାସନ) କହନ୍ତି । ଅମୁକ ବ୍ରାହ୍ମଣମାନଙ୍କଠାରୁ ଅମୁକ ସମୟର କର ଗ୍ରହଣ କରିବାକୁ ହେବ ନାହିଁ—ଏପରି ରାଜାଦେଶକୁ 'ଜାତିବିଶେଷ ଅନୁଗ୍ରହ'; ଅମୁକ ପୁରର ବଣିକମାନଙ୍କଠାରୁ ଅମୁକ ସମୟର ପଣ୍ୟଶୁଳ୍କ (**Sales tax**) ଗ୍ରହଣ କରିବାକୁ ହେବ ନାହିଁ—ଏପରି ରାଜାଦେଶକୁ 'ପୁରବିଶେଷ ଅନୁଗ୍ରହ'; ନୂତନରେ ଗ୍ରାମବାନ୍ଧି ବାସକରୁଥିବା କୁଟୁମ୍ବିମାନଙ୍କ ଠାରୁ ଏତେ ସମୟ ପର୍ଯ୍ୟନ୍ତ କର ଗ୍ରହଣ କରିବାକୁ ହେବ ନାହିଁ—ଏପରି ରାଜାଦେଶକୁ 'ଗ୍ରାମବିଶେଷ ଅନୁଗ୍ରହ'; ଅମୁକ ଅଞ୍ଚଳରୁ ରାଜସ୍ୱ ଏତେ-

ଅନୁଗ୍ରହୋ ଯୋ ନୃପତେର୍ନିର୍ଦ୍ଦେଶାତ୍
ତଜ୍ଜ୍ଞଃ ପରୀହାର ଇତ ବ୍ୟବସେଦ୍ ॥

(୧୩) ନୈସୃଷ୍ଟି ସ୍ଥାପନା କାର୍ଯ୍ୟକରଣେ ବଚନେ ତଥା ।
ଏଷ ବାଚକଲେଖଃସ୍ୟାଦ୍ଭବେନ୍ନୈସୃଷ୍ଟିକୋଽପି ବା ॥

(୧୪) ବିବିଧାଂ ଦୈବସଂଯୁକ୍ତାଂ ତତ୍ତ୍ୱଜାଂ ଚୈବ ମାନୁଷୀମ୍ ।
ଦ୍ୱିବିଧାଂ ତାଂ ବ୍ୟବସ୍ୟନ୍ତି ପ୍ରବୃତ୍ତିଂ ଶାସନଂ ପ୍ରତି ॥

(୧୫) ଦୃଷ୍ଟ୍ୱା ଲେଖଂ ଯଥାତତ୍ତ୍ୱଂ ତତଃ ପ୍ରତ୍ୟନୁଭାଷ୍ୟ ଚ ।
ପ୍ରତିଲେଖୋ ଭବେତ୍ କାର୍ଯ୍ୟୋ ଯଥା ରାଜବଚସ୍ତଥା ॥

---

କାଳଯାଏ ଅଣାଯିବ ନାହିଁ—ଏପରି ରାଜାଦେଶକୁ 'ଦେଶବିଶେଷ ଅନୁଗ୍ରହ' କୁହାଯାଏ । ଉପରୋକ୍ତ ସର୍ବବିଷୟକ ଅନୁଗ୍ରହ ତିନିପ୍ରକାର—କରଛାଡ଼-ରୂପକ ଅନୁଗ୍ରହ, ଧନଦାନରୂପକ ଅନୁଗ୍ରହ, କରଛାଡ଼ ଓ ଧନଦାନ ଏ ଉଭୟରୂପକ ଅନୁଗ୍ରହ । (୧୩) କୌଣସି କାର୍ଯ୍ୟ କରିବା ଓ କହିବା ବିଷୟରେ କୌଣସି ପ୍ରାମାଣିକ ଭଦ୍ରବ୍ୟକ୍ତି ଅମୁକ ବ୍ୟକ୍ତିଙ୍କ କାର୍ଯ୍ୟ ମୋର କାର୍ଯ୍ୟ ଓ ଅମୁକଙ୍କର ବଚନ ମୋର ବଚନ ବୋଲି କହି ଜାମିନ ପଡ଼ିବା ବିଷୟ ଯେଉଁ ଲେଖରେ ଥାଏ ତାହାକୁ 'ନୈସୃଷ୍ଟିକ ରାଜଶାସନ' କହନ୍ତି । ଏହା ଦୁଇପ୍ରକାର—ବ୍ୟକ୍ତିବିଶେଷର ବଚନକୁ ପ୍ରମାଣିତ କରିବା ପାଇଁ ପ୍ରାମାଣିକ ବ୍ୟକ୍ତି ଯେଉଁ ଜାମିନପତ୍ର ଲେଖନ୍ତି ତାହାକୁ 'ବାଚକ ନୈସୃଷ୍ଟିକ ଲେଖ' ଏବଂ ବ୍ୟକ୍ତିବିଶେଷର କାର୍ଯ୍ୟକୁ ପ୍ରମାଣିତ କରିବା ପାଇଁ ଯେଉଁ ଜାମିନପତ୍ର ଲେଖନ୍ତି ତାକୁ 'କର୍ମ ନୈସୃଷ୍ଟିକ ଲେଖ' କହନ୍ତି । (୧୪) ଦୈବକୃତ ଯଥାସମୟରେ ବୃଷ୍ଟିପାତ ଓ ସୁଭିକ୍ଷାଦି ଅନୁକୂଳ ଫଳସିଦ୍ଧି ସମ୍ବନ୍ଧୀୟ ଏବଂ ଅଗ୍ନି ଉତ୍ପାତ, ଝଡ଼ତୋଫାନ ଇତ୍ୟାଦି ଦୁର୍ଦ୍ଦୈବ ଫଳସିଦ୍ଧି ସମ୍ବନ୍ଧୀୟ ପ୍ରବୃତ୍ତି (ବୃତ୍ତାନ୍ତ ବା ସମାଚାର) ମନୁଷ୍ୟକୃତ ଶତ୍ରୁସଂହାରରୂପକ ଓ ପରରାଷ୍ଟ୍ରର ଚୋରର ଲୁଟିଆମାନଙ୍କ ଦ୍ୱାରା ନିଜରାଜ୍ୟର ଲୁଣ୍ଠନରୂପକ ସମାଚାର ଏବଂ ତତ୍ତ୍ୱଜ ( ଯଥାର୍ଥ ସମାଚାର )—ଏମାନଙ୍କର ଉପରୋକ୍ତ ଶୁଭାଶୁଭ ଦୁଇପ୍ରକାର ରାଜପ୍ରଚାରିତ ଲେଖା ଯେଉଁ ଲେଖପତ୍ରରେ ପ୍ରକାଶ ପାଏ, ତାକୁ 'ପ୍ରାବୃତ୍ତିକ' ଶାସନ କହନ୍ତି । (୧୫) ପାଠକ ପରପ୍ରେରିତ ଲେଖପତ୍ରକୁ ପ୍ରଥମେ ନିଜେ ଉତ୍ତମଭାବେ ପାଠକରି ପରେ ରାଜାଙ୍କ

(୧୬) ଯଚ୍ଚେଶ୍ବରଂଷ୍ଟାଧିକୃତାଂସ୍ତ ରଜା
ରକ୍ଷୋପକାରୌ ପଥିକାର୍ଥମାହ ।
ସର୍ବତ୍ରଗୋ ନାମ ଭବେତ୍ସମାର୍ଗେ
ଦେଶେ ଚ ସର୍ବତ୍ର ଚ ବେଦତବ୍ୟଃ ॥

(୧୭) ଉପାୟାଃ ସାମୋପପ୍ରଦାନଭେଦଦଣ୍ଡାଃ । ତତ୍ର ସାମ ପଞ୍ଚବିଧଂ—ଗୁଣସଂକୀର୍ତ୍ତନଂ, ସମ୍ବନ୍ଧୋପାଖ୍ୟାନଂ, ପରସ୍ପରୋପକାର-ସନ୍ଦର୍ଶନମାୟତିପ୍ରଦର୍ଶନମାତ୍ମୋପନିଧାନମିତି । ତତ୍ରାଭିଜନଶରୀର-

---

ସମ୍ମୁଖରେ ପାଠକରିବେ; ତା'ପରେ ରାଜା ଓ ଲେଖପାଠକ ଉଭୟେ ବିଚାର କରିବାପରେ ରାଜା ଯେପରି କହିବେ ତଦନୁସାରେ ଉକ୍ତ ପାଠକ ଲେଖ-ପତ୍ରରେ ଯେଉଁ ଉତ୍ତର ଲେଖନ୍ତି ତାକୁ 'ପ୍ରତିଲେଖ' କୁହାଯାଏ । (୧୬) ଯେଉଁ ଲେଖରେ ରାଜା ନିଜର ଦୁର୍ଗପାଳ, ରାଷ୍ଟ୍ରପାଳ, ଅନ୍ତପାଳ, ସମାହର୍ତ୍ତା, ପ୍ରଶାସ୍ତା ପ୍ରଭୃତି ଅଧିକାରୀମାନଙ୍କୁ ରାଜ୍ୟର ରାସ୍ତାଘାଟ, ପାନ୍ଥଶାଳା ଓ ଗ୍ରାମ-ମାନଙ୍କରେ ଧର୍ମାର୍ଥରେ ପଥିକମାନଙ୍କ ସତ୍କାର ସକାଶେ ଅନ୍ନ ପାନ ବସ୍ତ୍ର ଅଦ୍ୟାଦିର ବ୍ୟବସ୍ଥା ଲିଖିତଭାବେ ପ୍ରକାଶ କରଥାନ୍ତି ଏବଂ ଯେଉଁ ଲେଖ ପ୍ରଚାରପତ୍ର ଆକାରରେ ଦେଶର ଦର୍ଶନୀୟ ସ୍ଥାନମାନଙ୍କରେ ସର୍ବସାଧାରଣଙ୍କ ଅବଗତି ସକାଶେ ଲଟକାଇବାର ବ୍ୟବସ୍ଥା କରଥାନ୍ତି, ତାହାକୁ 'ସର୍ବତ୍ରଗ' ଲେଖ କହନ୍ତି । (୧୭) ପରବର୍ତ୍ତୀ ସୂତ୍ରରେ ଆଲୋଚିତ ହେବାକୁ ଥିବା ସନ୍ଧି ଓ ବିଗ୍ରହ (ସମାଧାନ ଓ ଯୁଦ୍ଧ) ଶାସନର ଅଧୀନ ଅଟେ । ସନ୍ଧି ଓ ବିଗ୍ରହ ଅନୁଷ୍ଠାନ ଉପାୟସାପେକ୍ଷ ହୋଇଥିବା ଯୋଗୁଁ ଶାସନଲେଖକ ଉପରୋକ୍ତ ଉପାୟ ଜ୍ଞାନରେ ବ୍ୟୁତ୍ପନ୍ନ (ଧୁରନ୍ଧର) ହୋଇଥିବା ଏକାନ୍ତ ଆବଶ୍ୟକ । ଅତଏବ ନିମ୍ନରେ ସାମାଦି ଉପାୟମାନଙ୍କର ବିବରଣୀ ଦିଆଗଲା ।

ସାମ, ଦାନ, ଭେଦ ଓ ଦଣ୍ଡ ଭେଦରେ ଉପାୟ ଚାରିପ୍ରକାର । ଏମଧ୍ୟରୁ ସାମ ପାଞ୍ଚପ୍ରକାର—ଗୁଣସଙ୍କୀର୍ତ୍ତନ, ସମ୍ବନ୍ଧୋପାଖ୍ୟାନ, ପରସ୍ପରୋପକାର-ସନ୍ଦର୍ଶନ, ଆୟତି ପ୍ରଦର୍ଶନ ଏବଂ ଆତ୍ମୋପନିଧାନ ।

**ଗୁଣ ସଂକୀର୍ତ୍ତନ**—କୁଳ, ଶରୀର, କର୍ମ, ସ୍ୱଭାବ, ଶାସ୍ତ୍ରଜ୍ଞାନ (ବିଦ୍ୱତ୍ତା), ରଥଗଜଅଶ୍ୱାଦି ଦ୍ରବ୍ୟ ତଥା ରୂପବୟସାଦି ଅବସ୍ଥାର ଗୁଣାଗୁଣ ଗ୍ରହଣ ଏବଂ ପ୍ରଶଂସା ଓ ସ୍ତୁତିକୁ 'ଗୁଣସଙ୍କୀର୍ତ୍ତନ' କୁହାଯାଏ ।

କର୍ମପ୍ରକୃତଶ୍ରୁତଦ୍ରବ୍ୟାଦୀନାଂ ଗୁଣାଗୁଣଗ୍ରହଣଂ ପ୍ରଶଂସା ସ୍ତୁତ 'ଗୁଣସଂକୀର୍ତ୍ତନମ୍' । ଜ୍ଞାତଯୌନମୌଖସ୍ରୌବକୁଳହୃଦୟମିତ୍ର-ସଂକୀର୍ତ୍ତନଂ ସମ୍ବନ୍ଧୋପାଖ୍ୟାନମ୍ । ସ୍ୱପକ୍ଷପରପକ୍ଷୟୋ-ରନ୍ୟୋନ୍ୟୋପକାରସଂକୀର୍ତ୍ତନଂ ପରସ୍ପରୋପକାରସନ୍ଦର୍ଶନମ୍ । ଅସ୍ମିନ୍ନେବଂ କୃତ ଇଦମାବୟୋର୍ଭବତୀତ୍ୟାଶାଜନନମାୟତ-ପ୍ରଦର୍ଶନମ୍। ଯୋଽହଂ ସ ଭବାନ୍, ଯନ୍ମମ ଦ୍ରବ୍ୟଂ ତଦ୍ଭବତା

---

**ସମ୍ବନ୍ଧୋପାଖ୍ୟାନ**—ଜ୍ଞାତ (ସମାନକୁଳଜାତ ସମ୍ବନ୍ଧ), ଯୌନ (ବିବାହ ସମ୍ବନ୍ଧ), ମୌଖ (ମୌଖିକ କଥାବାର୍ତ୍ତା ସମ୍ବନ୍ଧ ବା ଗୁରୁଶିଷ୍ୟ ସମ୍ବନ୍ଧ), ସ୍ରୌବ ('ସ୍ରୁବ' ନାମକ ହୋମ ଉପକରଣ ସମ୍ପର୍କରେ ଆସିବା ଯାଜ୍ୟଯାଜକ ଅର୍ଥାତ୍ ଯଜମାନ ପୁରୋହିତ ସମ୍ବନ୍ଧ), କୁଳ (ପୂର୍ବପୁରୁଷ ପରମ୍ପରା ବା ବଂଶ ପରମ୍ପରା), ହୃଦୟ (ହାର୍ଦ୍ଦିକ ସମ୍ବନ୍ଧ), ମିତ୍ର (ମୈତ୍ରୀଭାବ ସମ୍ବନ୍ଧ)—ଏହି ସାତଗୋଟି ବିଷୟକୁ 'ସମ୍ବନ୍ଧୋପାଖ୍ୟାନ' କୁହାଯାଏ ।

**ପରସ୍ପରୋପକାର ସଂଦର୍ଶନ**—ଶତ୍ରୁ ମିତ୍ର ଉଭୟଙ୍କର ପରସ୍ପର ଭେଦଶୂନ୍ୟ ପୂର୍ବକ ଉପକାର ବିଷୟ କଥନକୁ 'ପରସ୍ପରୋପକାର ସନ୍ଦର୍ଶନ' କୁହାଯାଏ ।

**ଆୟତ ପ୍ରଦର୍ଶନ**—ଏହି କାର୍ଯ୍ୟ ଏପରି କଲେ ଆମ୍ଭ ଦୁହିଙ୍କର ଭବିଷ୍ୟତରେ ଏପରି ଲାଭ ହେବ—ଏପରି ଆଶାଜନକ ବାକ୍ୟପ୍ରୟୋଗକୁ 'ଆୟତ ପ୍ରଦର୍ଶନ' କୁହାଯାଏ ।

**ଆତ୍ମୋପନିଧାନ**—ଆପଣ ଯିଏ ମୁଁ ସିଏ, ଆମେ ଦୁହେଁ ଏକପ୍ରାଣ, ମୋର ଯେଉଁ ଧନସମ୍ପତ୍ତି ଅଛି ସେସମସ୍ତ ଆପଣ ଆପଣାର ବୋଲି ଭାବି ନିଜ କାର୍ଯ୍ୟରେ ବିନିଯୋଗ କରନ୍ତୁ—ଏପରି କହିବାକୁ 'ଆତ୍ମୋପନିଧାନ' କୁହାଯାଏ ।

**ଉପପ୍ରଦାନ**—ଭୂମି ଓ ସୁବର୍ଣ୍ଣ ଦେଇ ଉପକାର କରିବାକୁ 'ଉପପ୍ରଦାନ' କୁହାଯାଏ ।

**ଭେଦ**—ଭୟ ଦେଖାଇବା ଓ ଗାଳିଦେବାକୁ 'ଭେଦ' କୁହାଯାଏ ଅର୍ଥାତ୍ ଦଳମଧ୍ୟରୁ ଜଣକୁ ତାର କୌଣସି ଦୋଷ ଦେଖାଇ ଡରାଇଦେବା ଦ୍ୱାରା ଦଳର ଅନ୍ୟମାନେ ନିଜ ମୁଣ୍ଡକୁ ଦୋଷ ଆସିବ ବୋଲି ଡରି

ସ୍ୱକୃତେଷ୍ୱେଷୁ ପ୍ରଯୋଜ୍ୟତାମ୍ ଇତ୍ୟାତ୍ମୋପକଧାନମିତି । ଉପପ୍ରଦାନ-ମର୍ଥୋପକାରଃ । ଶଙ୍କାଜନନଂ ନିର୍ଭର୍ତ୍ସନଂ ଚ ଭେଦଃ । ବଧଃ ପରକ୍ଳେଶୋଽର୍ଥହରଣଂ ଦଣ୍ଡ ଇତି । (୧୮) ଅକାନ୍ତିର୍ବ୍ୟାଘାତଃ ପୁନରୁକ୍ତମପଶବ୍ଦଃ ସଂପ୍ଲବ ଇତି ଲେଖଦୋଷାଃ । ତତ୍ର କାଳପତ୍ରକମ-ଚାରୁବିଷମବିରାଗାକ୍ଷରତ୍ୱମକାନ୍ତିଃ । ପୂର୍ବେଣ ପଶ୍ଚିମସ୍ୟାନୁପପତ୍ତି-ର୍ବ୍ୟାଘାତଃ । ଉକ୍ତସ୍ୟାବିଶେଷେଣ ଦ୍ୱିତୀୟମୁଚ୍ଚାରଣଂ ପୁନରୁକ୍ତମ୍ ।

---

ତାହାଠାରୁ ଅଲଗା ହୋଇଯିବା ଏକପ୍ରକାର ଭେଦ । 'ବଦ୍‌ମାସ, ତୁ ମୋ କଥା ଶୁଣୁନାହୁଁ, ତୋ'ର ଫଳ ଉତ୍ତରଦେବ'—ଏପରି ଭର୍ତ୍ସନା (ଅପକାର ବଚନ)କୁ ଦ୍ୱିତୀୟପ୍ରକାର ଭେଦ କୁହାଯାଏ ।

ଦଣ୍ଡ—ଫାଶି ପ୍ରଭୃତି ପ୍ରାଣଦଣ୍ଡ, ବନ୍ଧନ (ପ୍ରହାର ପ୍ରଭୃତି ପୀଡ଼ା-ଦାୟକ କାୟଦଣ୍ଡ), ଅର୍ଥଦଣ୍ଡ (ଜରିମାନା ବା ଲୁଟତରାଜ କରି ଧନ ହରଣ କରିବା)—ଏହି ତିନୋଟିକୁ 'ଦଣ୍ଡ' କୁହାଯାଏ ।

(୧୮) ଲେଖଗତ ଦୋଷ ପାଞ୍ଚପ୍ରକାର—ଅକାନ୍ତି, ବ୍ୟାଘାତ, ପୁନରୁକ୍ତି, ଅପଶବ୍ଦ ଓ ସଂପ୍ଲବ ।

କଳା ଓ ମଇଳା ତାଳପତ୍ର, ଭୂର୍ଜପତ୍ର ବା କାଗଜରେ ହୋଇଥିବା ଲେଖା; ଅସୁନ୍ଦର, ସାନବଡ଼ ଓ ବଙ୍କାଟଙ୍କା ଅକ୍ଷରଯୁକ୍ତ ପାଣିଆ କାଳିରେ ହୋଇଥିବା ଲେଖାକୁ 'ଅକାନ୍ତି' ନାମକ ଲେଖଦୋଷ କୁହାଯାଏ । ପୂର୍ବଲେଖା ସହିତ ପରଲେଖାର ବିରୋଧ ହେଲେ ତାହାକୁ 'ବ୍ୟାଘାତ' ନାମକ ଲେଖଦୋଷ କୁହାଯାଏ । ଥରେ ଲେଖାଥିବା ବିଷୟ ପୁନରପି ଲେଖାଗଲେ ତାହାକୁ 'ପୁନରୁକ୍ତ' ନାମକ ଲେଖଦୋଷ କୁହାଯାଏ । ସ୍ତ୍ରୀଲିଙ୍ଗ ଶବ୍ଦ ଲେଖାହେବା ସ୍ଥାନରେ ପୁଂଲିଙ୍ଗ ବା ନପୁଂସକ ଲିଙ୍ଗ ଶବ୍ଦ ପ୍ରୟୋଗ କରି ଲେଖିବା, ଏକବଚନ ଲେଖାହେବା ସ୍ଥାନରେ ଶବ୍ଦର ବହୁବଚନ ପ୍ରୟୋଗ କରି ଲେଖିବା, ବର୍ତ୍ତମାନ କାଳ ଲେଖାହେବା ସ୍ଥାନରେ ଭୂତ ବା ଭବିଷ୍ୟତ କାଳ ପ୍ରୟୋଗ କରି ଲେଖିବା ଏବଂ କର୍ମକାରକ ଲେଖାହେବା ସ୍ଥଳେ ସମ୍ପ୍ରଦାନାଦି କାରକ ପ୍ରୟୋଗ କରି ଲେଖିବାକୁ 'ଅପଶବ୍ଦ' ନାମକ ଦୋଷ କୁହାଯାଏ । ବିରାମ ନକରିବା

ଲିଙ୍ଗବଚନକାଳକାରକାଣାମନ୍ୟଥାପ୍ରୟୋଗୋଽପଶବ୍ଦଃ । ଅବର୍ଗେ ବର୍ଗକରଣଂ ବର୍ଗେଷ୍ୱବର୍ଗକ୍ରିୟା, ଗୁଣବିପର୍ଯ୍ୟାସଃ ସଂପ୍ଲବ ଇତି ।

(୧୯) ସର୍ବଶାସ୍ତ୍ରାଣ୍ୟନୁକ୍ରମ୍ୟ ପ୍ରୟୋଗମୁପଲଭ୍ୟ ଚ ।
କୌଟଲ୍ୟେନ ନରେନ୍ଦ୍ରାର୍ଥେ ଶାସନସ୍ୟ ବିଧିଃ କୃତଃ ॥



ସ୍ଥାନରେ ବିରାମ କରିବା ଏବଂ ବିରାମ କରିବା ସ୍ଥାନରେ ଅବିରାମ କରିବା ତଥା ଅର୍ଥକ୍ରମ ଅନୁସାରେ ଲେଖା ନ ଲେଖିବାକୁ 'ସଂପ୍ଲବ' ନାମକ ଦୋଷ କୁହାଯାଏ ।

(୧୯) ମହାମତି ଚାଣକ୍ୟ ବାର୍ହସ୍ପତ୍ୟାଦି ନିଖିଳ ଶାସ୍ତ୍ର ବିଚାର ପୂର୍ବକ ଏହି ଅର୍ଥଶାସ୍ତ୍ରର ପ୍ରୟୋଗଗୁଡ଼ିକୁ ଅନୁଭବ କରି ଜନନାୟକମାନଙ୍କ ସକାଶେ ଏହି ସମସ୍ତ ଶାସନର ବିଧି ଲେଖିଅଛନ୍ତି ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଦଶମୋଽଧ୍ୟାୟଃ ଶାସନାଧିକାରଃ । ଆଦିତଃ—ଏକତ୍ରିଂଶଃ ।



## ଏକାଦଶୋଽଧ୍ୟାୟଃ

## ଊନତ୍ରିଂଶ ପ୍ରକରଣମ୍—କୋଶପ୍ରବେଶ୍ୟ ରତ୍ନପରୀକ୍ଷା

## EXAMINATION OF GEMS THAT ARE TO BE ENTERED INTO THE TREASURY

[ ରାଜକୋଶ (ଭଣ୍ଡାରଘର)ରେ ପ୍ରବେଶଯୋଗ୍ୟ ମଣିମୁକ୍ତାଦି ରତ୍ନ, ପଟ୍ଟବସ୍ତ୍ରାଦି ଅନ୍ୟାନ୍ୟ ମୂଲ୍ୟବାନ୍ ଶ୍ରେଷ୍ଠ ପଦାର୍ଥ ଏବଂ ଚମ, ଶିଂଘ, ଦାନ୍ତ ଓ ବାଉଁଶ ପ୍ରଭୃତି ପଦାର୍ଥମାନଙ୍କର ପରୀକ୍ଷା ]

(୧) କୋଶାଧ୍ୟକ୍ଷଃ କୋଶପ୍ରବେଶ୍ୟଂ ରତ୍ନଂ ସାରଂ ଫଲ୍ଗୁ କୁପ୍ୟଂ ବା ତଜ୍ଜାତକରଣାଧିଷ୍ଠିତଃ ପ୍ରତିଗୃହ୍ଣୀୟାତ୍ । (୨) ତାମ୍ରପର୍ଣ୍ଣିକଂ, ପାଣ୍ଡ୍ୟକବାଟକଂ, ପାଶିକ୍ୟଂ, କୌଲେୟଂ, ଚୌର୍ଣ୍ଣେୟଂ, ମାହେନ୍ଦ୍ରଂ, କାର୍ଦମିକଂ, ସ୍ରୌତସୀୟଂ, ହ୍ରାଦୀୟଂ,

(୧) କୋଷାଧ୍ୟକ୍ଷ କୋଷପ୍ରବେଶଯୋଗ୍ୟ ମଣିମୁକ୍ତାଦି ରତ୍ନ, ଅଗୁରୁ-ଚନ୍ଦନାଦି ସାରବସ୍ତୁ, ପଟ୍ଟବସ୍ତ୍ର ଶାଲ୍ କମ୍ବଳାଦି ସୂତ୍ର ଓ ରୋମସମ୍ବନ୍ଧୀୟ ପଦାର୍ଥ, ଗୃହୋପଯୋଗୀ ଉତ୍ତମ କାଠ, ବାଉଁଶ, ହାତିଦାନ୍ତ, ଚମଡ଼ା, ଶିଂଗ, ବାଘନଖ ପ୍ରଭୃତି ପଦାର୍ଥଗୁଡ଼ିକୁ ସେହି ସେହି ପଦାର୍ଥ ସଂଗ୍ରହକାରିମାନଙ୍କ ଠାରୁ ଉକ୍ତ ପଦାର୍ଥମାନଙ୍କ * ବିଶେଷଜ୍ଞମାନଙ୍କ ଦ୍ୱାରା ପରୀକ୍ଷିତ କରାଇ ଗ୍ରହଣ କରିବେ । (୨) ତାମ୍ରପର୍ଣ୍ଣୀ ନାମକ ପାଣ୍ଡ୍ୟଦେଶପ୍ରସିଦ୍ଧ ନଦୀର ସମୁଦ୍ରସଙ୍ଗମ ସ୍ଥାନରେ ଉତ୍ପନ୍ନ ହେବା ମୁକ୍ତାକୁ 'ତାମ୍ରପର୍ଣ୍ଣିକ', ମଲୟ-କୋଟି ନାମକ ପାଣ୍ଡ୍ୟଦେଶୀୟ ପର୍ବତରୁ ଉତ୍ପନ୍ନ ହେବା ମୁକ୍ତାକୁ 'ପାଣ୍ଡ୍ୟ କବାଟକ', ପାଟଳୀପୁତ୍ର (ପାଟଣା)ର ନିକଟରେ ଥିବା ପାଶିକା ନଦୀରୁ ଉତ୍ପନ୍ନ ହେବା ମୁକ୍ତାକୁ 'ପାଶିକ୍ୟ', ସିଂହଳଦ୍ୱୀପ (Ceylon)ର ମୟୂର ନାମକ ଗ୍ରାମ ନିକଟରେ ଥିବା 'କୁଲା' ନାମକ ନଦୀରୁ ଉତ୍ପନ୍ନ ହେବା ମୁକ୍ତାକୁ 'କୌଳେୟ', କେରଳରାଜ୍ୟାନ୍ତର୍ଗତ ମୁରଚି ନାମକ ପତ୍ତନ (ପାଟଣା) ନିକଟରେ ଥିବା ଚୂର୍ଣ୍ଣୀ ନାମକ ନଦୀରୁ ଉତ୍ପନ୍ନ ହେବା ମୁକ୍ତାକୁ 'ଚୌର୍ଣ୍ଣେୟ',

* ରାଜାମାନଙ୍କ ନିକଟରେ ଉପରୋକ୍ତ ମଣିମୁକ୍ତାଦି ପଦାର୍ଥମାନଙ୍କୁ ଚିହ୍ନିବା ସକାଶେ ସେହି ଶାସ୍ତ୍ରରେ ନିପୁଣ ହୋଇଥିବା ବ୍ୟବହର୍ତ୍ତା ପଟ୍ଟନାୟକ (କାୟସ୍ଥମାନେ) ଅଛନ୍ତି ।

'ହୈମବତଂ ଚ ମୌକ୍ତିକମ୍ । ଶଂଖଃ ଶୁକ୍ତିଃ ପ୍ରକୀର୍ଣ୍ଣକଂ ଚ ଯୋନୟଃ । (୩) ମସୂରକଂ ତ୍ରିପୁଟକଂ କୂର୍ମକମର୍ଦ୍ଧଚନ୍ଦ୍ରକଂ କଞ୍ଚୁକତଂ ଯମକଂ କର୍ତ୍ତକଂ ଖରକଂ ସିକ୍ଥକଂ କାମଣ୍ଡଲୁକଂ ଶ୍ୟାବଂ ନୀଳଂ ଦୁର୍ବିଦ୍ଧଂ ଚାପ୍ରଶସ୍ତମ୍ । (୪) ସ୍ଥୂଳଂ ବୃତ୍ତଂ ନିସ୍ତଳଂ ଭ୍ରାଜିଷ୍ଣୁ,

---

ମହେନ୍ଦ୍ରପର୍ବତର ନିକଟବର୍ତ୍ତୀ ସମୁଦ୍ରରୁ ଉତ୍ପନ୍ନ ହେବା ମୁକ୍ତାକୁ 'ମାହେନ୍ଦ୍ର', ପାରସ୍ୟ ଦେଶର କର୍ଦ୍ଦମା ନାମକ ନଦୀରୁ ଉତ୍ପନ୍ନ ହେବା ମୁକ୍ତାକୁ 'କାର୍ଦ୍ଦମିକ', ବର୍ବରଦେଶୀୟ ସ୍ରୋତସୀ ନାମକ ନଦୀରୁ ଉତ୍ପନ୍ନ ହେବା ମୁକ୍ତାକୁ 'ସ୍ରୋତସୀୟ', ବର୍ବରକୂଳରେ ସମୁଦ୍ରର ଏକଦେଶରେ ଶ୍ରୀଘଣ୍ଟା ନାମକ ହ୍ରଦରୁ ଉତ୍ପନ୍ନ ହେବା ମୁକ୍ତାକୁ 'ହ୍ରାଦୀୟ' ଏବଂ ହିମାଳୟ ପର୍ବତରୁ ଉତ୍ପନ୍ନ ହେବା ମୁକ୍ତାକୁ 'ହୈମବତ' କହନ୍ତି । ଏପରି ମୁକ୍ତାର ଉତ୍ପତ୍ତିକ୍ଷେତ୍ର ଦଶପ୍ରକାର । ଶଙ୍ଖ, ସାମୁକା, ବରାହ ଓ ସିଂହର ଦନ୍ତ, ହସ୍ତିର କୁମ୍ଭସ୍ଥଳ, ବାଉଁଶ, ସର୍ପର ମସ୍ତକ—ଏସମସ୍ତ ମୁକ୍ତାର ଜନ୍ମସ୍ଥାନ' * । (୩) ମସୂରାକାର ତିନିକୋଣିଆ, ମତାନ୍ତରରେ ତ୍ରିପୁଟ ନାମକ ଧାନ୍ୟ ସଦୃଶ (ତିନିଗଣ୍ଠିଆ), କୂର୍ମପିଠିଆ, ଅର୍ଦ୍ଧଚନ୍ଦ୍ରାକାର, କାତିଯୁକ୍ତ, ଜାଆଁଳା କଠା (ଖଣ୍ଡିଆ), ଗଦଡ଼ା, ବିନ୍ଦୁଯୁକ୍ତ, କମଣ୍ଡଳୁ ଆକାର, ଶ୍ୟାବ (କଳା-ହଳଦିଆ ମିଶ୍ରିତ ବର୍ଣ୍ଣଯୁକ୍ତ), ନୀଳବର୍ଣ୍ଣ, ଅସ୍ଥାନରେ ବିନ୍ଧା ହୋଇଥିବା—ଏସବୁ ମୁକ୍ତା ଦୋଷଯୁକ୍ତ; ଏଣୁ ଏହା ବ୍ୟବହାରଯୋଗ୍ୟ-ନୁହେଁ । (୪) ସ୍ଥୂଳ (ମୋଟା), ବୃତ୍ତ (ସୁମଣ୍ଡଳାକାର-ଗୋଲ), ନିସ୍ତଳ

---

* କରକା ବାରିଧାରାଶ୍ଚ ମଳୟାଚ୍ଚନ୍ଦନୋଦକମ୍ ।
ଶଙ୍ଖଶୁକ୍ତିନିପୀତଂ ଯନ୍ମୌକ୍ତିକଂ ତତ୍ପ୍ରଜାୟତେ ॥

ସମୁଦ୍ରରେ ଥିବା ଜୀଅନ୍ତା ଶଙ୍ଖ ଓ ସାମୁକା ଯଦି କରକା ଜଳ, ମେଘ ଜଳ ଓ ମଳୟ ପର୍ବତର ଚନ୍ଦନଗନ୍ଧଯୁକ୍ତ ବାୟୁସହ ବର୍ଷାଜଳ (ବିଶେଷତଃ ସ୍ୱାତୀ ନକ୍ଷତ୍ରରେ) ପାନ କରନ୍ତି, ତେବେ ସେହି ଜଳ ତାଙ୍କ ପେଟରେ ମୁକ୍ତାରୂପେ ପରିଣତ ହୁଏ ।

କରୀନ୍ଦ୍ର ଜୀମୂତ ବରାହ ଶଙ୍ଖ ମତ୍ସ୍ୟାହିଶୁକ୍ତ୍ୟୁଦ୍ଭବ ବେଣୁଜାନି ।
ମୁକ୍ତାଫଲାନି ପ୍ରଥିତାନି ଲୋକେ ତେଷାଂ ତୁ ଶୁକ୍ତ୍ୟୁଦ୍ଭବ ମେବଭୂରି ॥
( ଇତି କୁମାରସମ୍ଭବ ଟୀକାୟାଂ ମଲ୍ଲିନାଥଃ )

ହସ୍ତୀ, ମେଘ, ବରାହ, ଶଙ୍ଖ, ମତ୍ସ୍ୟ, ସର୍ପ, ସାମୁକା—ଏମାନଙ୍କଠାରୁ ମୁକ୍ତା ଜାତହୁଏ କିନ୍ତୁ ଏମାନଙ୍କ ମଧ୍ୟରେ ସାମୁକାଠାରୁ ପ୍ରଚୁର ପରିମାଣରେ ମୁକ୍ତା ଉତ୍ପନ୍ନ ହୁଏ ।

ଶ୍ୱେତଂ ଗୁରୁ ସ୍ନିଗ୍ଧଂ ଦେଶବଦ୍ଧଂ ଚ ପ୍ରଶସ୍ତମ୍ । (୫) ଶୀର୍ଷକ-ମୁପଶୀର୍ଷକଂ ପ୍ରକାଣ୍ଡକମବଘାଟକଂ ତରଳପ୍ରତିବନ୍ଧଂ ଚେତି ଯଷ୍ଟି-ପ୍ରଭେଦାଃ । (୬) * ଯଷ୍ଟୀନାମଷ୍ଟସହସ୍ରମିନ୍ଦ୍ରଚ୍ଛନ୍ଦଃ । ତତୋଽର୍ଦ୍ଧଂ ବିଜୟଚ୍ଛନ୍ଦଃ । ଶତଂଦେବଚ୍ଛନ୍ଦଃ । ଚତୁଃଷଷ୍ଟିରର୍ଦ୍ଧହାରଃ । ଚତୁଷ୍-ପଞ୍ଚାଶଦ୍ ରଶ୍ମିକଳାପଃ । ଦ୍ୱାତ୍ରିଂଶଦ୍ ଗୁଚ୍ଛଃ । ସପ୍ତବିଂଶତି-ର୍ନକ୍ଷତ୍ରମାଳା । ଚତୁର୍ବିଂଶତିରର୍ଦ୍ଧଗୁଚ୍ଛଃ । ବିଂଶତିର୍ମାଣବକଃ । ତତୋଽର୍ଦ୍ଧ-ମର୍ଦ୍ଧମାଣବକଃ । ଏତ ଏବ ମଣିମଧ୍ୟାସ୍ତନ୍ମାଣବକା ଭବନ୍ତି । ଏକ-ଶୀର୍ଷକଃ ଶୁଦ୍ଧୋ ହାରଃ । ତଦ୍ୱଚ୍ଛେଷାଃ । ମଣିମଧ୍ୟୋଽର୍ଦ୍ଧମାଣବକ-

---

(ଢଳଢଳିଆ), ଭ୍ରାଜିଷ୍ଣୁ (ଚକଚକିଆ), ଶ୍ୱେତ, ଭାରି, ଚିକ୍କଣ ଓ ଉପଯୁକ୍ତ ସ୍ଥାନରେ ଫୋଡ଼ା ହୋଇଥିବା ମୁକ୍ତାକୁ ପ୍ରଶସ୍ତ ମୁକ୍ତା କୁହାଯାଏ । (୫) ମଝିରେ ଗୋଟିଏ ବଡ଼ମୁକ୍ତା ଓ ଦୁଇପଟରେ ଛୋଟ ଛୋଟ ମୁକ୍ତା ଗୁନ୍ଥାଯାଇଥିବା ମୁକ୍ତାମାଳାକୁ 'ଶୀର୍ଷକ'; ମଝିରେ ଗୋଟିଏ ବଡ଼ ଓ ତାର ଦୁଇପଟରେ ଦୁଇଟି ଛୋଟ ଏପରି କ୍ରମରେ ଗୁନ୍ଥାଯାଇଥିବା ମୁକ୍ତାମାଳାକୁ 'ଉପଶୀର୍ଷକ'; ମଝିରେ ଗୋଟିଏ ବଡ଼ ଏବଂ ଦୁଇପଟରେ ଦୁଇଟି ଲେଖାଏଁ ଛୋଟ ମୁକ୍ତା ଗୁନ୍ଥାଯାଇଥିବା ମୁକ୍ତାମାଳାକୁ 'ପ୍ରକାଣ୍ଡକ'; ମଝିରେ ଗୋଟିଏ ବଡ଼ମୁକ୍ତା ଏବଂ ତାର ଦୁଇପଟରେ କ୍ରମସୂକ୍ଷ୍ମ ଭାବରେ ଗୁନ୍ଥାଯାଇଥିବା ମୁକ୍ତାମାଳାକୁ 'ଅବଘାଟକ' ଏବଂ ସବୁ ସମାନଭାବରେ ଗୁନ୍ଥାଯାଇଥିବା ମୁକ୍ତାମାଳାକୁ 'ତରଳ ପ୍ରତିବନ୍ଧ' କୁହାଯାଏ । ଏପରି ମୁକ୍ତାମାଳ ସୋରିର ପ୍ରଭେଦ ଏଠାରେ ଲେଖାଗଲା । (୬) ଏକହଜାର ଆଠ ସୋରି ଥିବା ମୁକ୍ତାହାରକୁ 'ଇନ୍ଦ୍ରଚ୍ଛନ୍ଦ'; ପାଞ୍ଚଶହ ଚାରି ସୋରି ଥିବା ମୁକ୍ତାହାରକୁ 'ବିଜୟଚ୍ଛନ୍ଦ'; ଶହେ ସୋରି ଥିବା ମୁକ୍ତାହାରକୁ 'ଦେବଚ୍ଛନ୍ଦ'; ଚୌଷଠି ସୋରି ଥିବା ମୁକ୍ତାହାରକୁ 'ଅର୍ଦ୍ଧହାର'; ଚଉବନ ସୋରି ଥିବା ମୁକ୍ତାହାରକୁ 'ରଶ୍ମିକଳାପ'; ବତିଶି ସୋରି ଥିବା ମୁକ୍ତାହାରକୁ 'ଗୁଚ୍ଛ'; ଚବିଶି ସୋରି ଥିବା ମୁକ୍ତାହାରକୁ 'ଅର୍ଦ୍ଧଗୁଚ୍ଛ'; କୋଡ଼ିଏ ସୋରି ଥିବା ମୁକ୍ତାହାରକୁ 'ମାଣବକ' ଏବଂ ଦଶଗୋଟି ସୋରି ଥିବା ମୁକ୍ତାହାରକୁ 'ଅର୍ଦ୍ଧମାଣବକ'

---

* ମୁକ୍ତାଯଷ୍ଟି = ମୁକ୍ତାମାଳୀ ସୋରି ।

ସ୍ୱିଫଳକଃ ଫଳକହାରଃ ପଞ୍ଚଫଳକୋ ବା । ସୂତ୍ରମେକାବଳୀ ଶୁଦ୍ଧା । ସୈବ ମଣିମଧ୍ୟା ଯଷ୍ଟିଃ । ହେମମଣିଚିତ୍ରା ରତ୍ନାବଳୀ । ହେମମଣିମୁକ୍ତାନ୍ତରୋଽପବର୍ତ୍ତକଃ । ସୁବର୍ଣ୍ଣସୂତ୍ରାନ୍ତରଂ ସୋପାନକମ୍ । ମଣିମଧ୍ୟଂ ବା ମଣିସୋପାନକମ୍ । ତେନ ଶିରୋହସ୍ତପାଦକଟୀ-

---

କହନ୍ତି । ଏହି ମୁକ୍ତାହାରମାନଙ୍କ ମଧ୍ୟରେ ଗୋଟିଏ ଗୋଟିଏ ମାଣିକ୍ୟ ଲଗାଇ ଏହିଗୁଡ଼ିକୁ ଯଥାକ୍ରମେ 'ଇନ୍ଦ୍ରଚ୍ଛନ୍ଦମାଣବକ', 'ବିଜୟଚ୍ଛନ୍ଦମାଣବକ' ଇତ୍ୟାଦି ନାମରେ ଅଭିହିତ କରାଯାଏ । ସବୁ ସୋର ଏକାଠେ ହୋଇ ବେକର ପଛପଟରେ ଗୋଟିବାନ୍ଧି ରହିଲେ ତାକୁ 'ଏକଶୀର୍ଷକ' ଶୁଦ୍ଧହାର କୁହାଯାଏ । ଏହିପ୍ରକାରେ ଇନ୍ଦ୍ରଚ୍ଛନ୍ଦଶୀର୍ଷକ ଶୁଦ୍ଧହାରାଦିକୁ ବୁଝିବାକୁ ହେବ । ମରକତାଦି ମଣିଖଚିତ ତିନି ବା ପାଞ୍ଚଗୋଟି ସ୍ୱର୍ଣ୍ଣଫଳକଯୁକ୍ତ ଦଶସୋରିଆ ଅର୍ଦ୍ଧମାଣବକ ନାମକ ମୁକ୍ତାହାରକୁ 'ଫଳକହାର' କୁହାଯାଏ । କେବଳ ଏକସୋରିଆ ମୁକ୍ତାମାଳାକୁ 'ଶୁଦ୍ଧ ଏକାବଳୀ'; ମଣିଯୁକ୍ତ ଏକାବଳୀ ମୁକ୍ତାମାଳାକୁ 'ଯଷ୍ଟି'; ସୁବର୍ଣ୍ଣପ୍ରଚୁର ମଣିଯୁକ୍ତ ବିଚିତ୍ର ମୁକ୍ତାମାଳାକୁ 'ରତ୍ନାବଳୀ' କୁହାଯାଏ । ପ୍ରଥମେ ସ୍ୱର୍ଣ୍ଣକଣ୍ଠୀ, ତା'ପରେ ପଦ୍ମରାଗାଦି ରତ୍ନ, ତା'ପରେ ମୁକ୍ତା ଏପରି କ୍ରମରେ ଗୁନ୍ଥାଯାଇଥିବା ମାଳାକୁ 'ଅପବର୍ତ୍ତକ'; ସୁନାସୂତାରେ ଗୁନ୍ଥାଯାଇଥିବା ସ୍ୱର୍ଣ୍ଣଫଳକମୟ ମୁକ୍ତାମାଳାକୁ 'ସୋପାନକ' ଏବଂ ମଣିମଧ୍ୟ ସୁବର୍ଣ୍ଣଫଳକମୟ ମୁକ୍ତାମାଳାକୁ 'ମଣିସୋପାନକ' କୁହାଯାଏ । ଏହିପରି ଶିର, ହସ୍ତ, ପାଦ ଓ କଟିରେ ବ୍ୟବହାର କରାଯାଉଥିବା ବିଭିନ୍ନ ପ୍ରକାର କଳାପ ( ଏକସୋରିଆ ) ଓ ଜାଳକ (ବହୁସୋରିଆ) ମୁକ୍ତାଳଂକାରର ଭେଦ ଜାଣିବାକୁ ହେବ ।

ଇତି ମୌକ୍ତିକ ପ୍ରକରଣମ୍ ।

---

ଅଷ୍ଟୌଗୁଣା ସ୍ତ୍ରିଧାଯୋନିର୍ଦଶସମ୍ପତ୍ତି ଭୂମୟଃ ।
ଚତ୍ୱାଦର୍ଶୈବମୁକ୍ତାନାଂ ଦୋଷାହାରଶ୍ଚ ବଂଶତଃ ॥ ( ଇତି ଭଟ୍ଟସ୍ୱାମିନ୍ )

ଅର୍ଥ—ମୁକ୍ତାମାନଙ୍କର ଗୁଣ ଆଠ, ଉତ୍ପତ୍ତିସ୍ଥାନ ତିନି, ଶୋଭାସମ୍ପଦ ସ୍ଥାନ ଦଶ, ଦୋଷ ଏବଂ ହାର କୋଡ଼ିଏ ପ୍ରକାର ।

କଳାପକାଳକବକଲ୍ପାବ୍ୟାଖ୍ୟାତାଃ । (୭) ମଣିଃ କୌଟୋ ମାଳେୟକଃ ପାରସମୁଦ୍ରକଶ୍ଚ । ସୌଗନ୍ଧିକଃ ପଦ୍ମରାଗଃ ଅନବଦ୍ୟରାଗଃ ପାରିଜାତପୁଷ୍ପକଃ ବାଳସୂର୍ଯ୍ୟକଃ । (୮) ବୈଡ଼ୂର୍ଯ୍ୟଃ—ଉତ୍ପଳବର୍ଣ୍ଣଃ ଶିରୀଷପୁଷ୍ପକ ଉଦକବର୍ଣ୍ଣୋ ବଂଶରାଗଃ, ଶୁକପତ୍ରବର୍ଣ୍ଣଃ ପୁଷ୍ୟରାଗୋ ଗୋମୂତ୍ରକୋ ଗୋମେଦକଃ । ନୀଳାବଳୀୟ ଇନ୍ଦ୍ରନୀଳଃ କଳାୟ-

(୭) ମଳୟସାଗର ନିକଟବର୍ତ୍ତୀ କୋଟ ନାମକ ସ୍ଥାନରୁ ଜାତହେବା ମଣିର ନାମ 'କୌଟ'; ମଳୟପର୍ବତର ଏକଦେଶରୁ ଅର୍ଥାତ୍ କର୍ଣ୍ଣିବନ ନାମକ ମାଳରୁ ଜାତହେବା ମଣିର ନାମ 'ମାଳେୟକ'; ସିଂହଳଦ୍ୱୀପରେ ଥିବା ରୋହଣ ପର୍ବତରୁ ଜାତ ମଣିକୁ 'ପାରସମୁଦ୍ରକ' କୁହାଯାଏ । ପ୍ରାୟଶଃ ସ୍ଫଟିକ, ବୈଡ଼ୂର୍ଯ୍ୟ, ମରକତ ପ୍ରଭୃତି ମଣିମାନେ ବନ୍ଧ୍ୟ, ବଦୂର, ଦର୍ଦ୍ଦର, ମଳୟ ପ୍ରଭୃତି ସ୍ଥାନମାନଙ୍କରୁ ଉତ୍ପନ୍ନ ହୁଅନ୍ତି ।

(ବନ୍ଧ୍ୟୋ ବଦୂରଶୈଳୋ ମଳୟୋ ବନ୍ଧ୍ୟୋପଲଙ୍ଘଣୋଦ୍ଦେଶଃ ।
ସ୍ତ୍ରୀରାଜ୍ୟଂ ଚେତ୍ପୁନସ୍ତସ୍ୟାକରଭୂମୟୋଽଭିହିତାଃ ।)

ମଣି ପାଞ୍ଚପ୍ରକାର—ଅଳ୍ପନୀଳ ଓ ରକ୍ତବର୍ଣ୍ଣ ମଣିକୁ 'ସୌଗନ୍ଧିକ'; ରକ୍ତପଦ୍ମବର୍ଣ୍ଣ ମଣିକୁ 'ପଦ୍ମରାଗ'; କୁଙ୍କୁମବର୍ଣ୍ଣ ମଣିକୁ 'ଅନବଦ୍ୟରାଗ'; ପାରିଜାତକୁସୁମବର୍ଣ୍ଣ ମଣିକୁ 'ପାରିଜାତପୁଷ୍ପକ' ଓ ଉଦୟମାନ ବାଳସୂର୍ଯ୍ୟ-ସଦୃଶବର୍ଣ୍ଣ ମଣିକୁ 'ବାଳସୂର୍ଯ୍ୟକ' କୁହାଯାଏ । (୮) ବୈଡ଼ୂର୍ଯ୍ୟ ଆଠପ୍ରକାର—* ଉତ୍ପଳବର୍ଣ୍ଣ (ରଙ୍ଗକଇଁ ବା ନୀଳକଇଁବର୍ଣ୍ଣ), ଶିରୀଷପୁଷ୍ପକ (ଶିରୀଷ-ପୁଷ୍ପପରି ବର୍ଣ୍ଣ), ଉଦକବର୍ଣ୍ଣ (ଜଳପରି ସ୍ୱଚ୍ଛବର୍ଣ୍ଣ), ବଂଶରାଗ (ବାଉଁଶପତ୍ରପରି ନୀଳବର୍ଣ୍ଣ), ଶୁକପତ୍ରବର୍ଣ୍ଣ (ଶୁଆପକ୍ଷିଆ), ପୁଷ୍ୟରାଗ (ହରିଦ୍ରାବର୍ଣ୍ଣ), ଗୋମୂତ୍ରକ (ଗୋମୂତ୍ରସଦୃଶ ବର୍ଣ୍ଣ), ଗୋମେଦକ (ଗୋରଚନାବର୍ଣ୍ଣ) । ଇନ୍ଦ୍ରନୀଳମଣି ଆଠପ୍ରକାର—ନୀଳବର୍ଣ୍ଣ ଦାଗଥିବା ଶୁକ୍ଳବର୍ଣ୍ଣ ଇନ୍ଦ୍ରନୀଳ

* ଉତ୍ପଳବର୍ଣ୍ଣ ଶବ୍ଦକୁ ଗଣପତିଶାସ୍ତ୍ରୀ କୋକନଦଶୋଣ ବୋଲି ଲେଖିଛନ୍ତି । ପ୍ରକୃତିବାଦ ଅଭିଧାନରେ ଏହାର ଅର୍ଥ ନୀଳପଦ୍ମବର୍ଣ୍ଣ ଓ କୁଡ଼ବୃକ୍ଷବର୍ଣ୍ଣ ବୋଲି ଲେଖାଯାଇଛି । ଏ ସମ୍ବନ୍ଧେ ମହାକବି କାଳିଦାସ 'କୁମାରସମ୍ଭବ'ରେ ଲେଖିଛନ୍ତି 'କପୋଳସଂସର୍ପିଶିଖଃ ସ ତସ୍ୟା ମୁହୂର୍ତ୍ତକର୍ଣ୍ଣୋତ୍ପଳତାଂ ପ୍ରପେଦେ' । ଏଣୁ ଉତ୍ପଳବର୍ଣ୍ଣର ଦୁଇପ୍ରକାର ଅର୍ଥ ଲେଖାଗଲା ।

ପୁଷ୍ପକୋ ମହାନୀଳୋ ଜାମ୍ବୁବାଭୋ ଜୀମୂତପ୍ରଭୋ ନନ୍ଦକଃ ସ୍ରବନ୍ମଧ୍ୟଃ । ଶୁଦ୍ଧସ୍ଫଟିକଃ ମୂଳାଟବର୍ଣ୍ଣଃ ଶୀତବୃଷ୍ଟିଃ ସୂର୍ଯ୍ୟକାନ୍ତ-ଶ୍ଚେତିମଣୟଃ । (୯) ଷଡ଼ଶ୍ରଶ୍ଚତୁରସ୍ରୋ ବୃତ୍ତୋ ବା, ତୀବ୍ରରାଗଃ ସଂସ୍ଥାନବାନଚ୍ଛଃ ସ୍ନିଗ୍ଧୋ ଗୁରୁରର୍ଚ୍ଚିଷ୍ମାନନ୍ତର୍ଗତପ୍ରଭଃ ପ୍ରଭାନୁଲେପୀ ଚେତି ମଣିଗୁଣାଃ । (୧୦) * ମନ୍ଦରାଗପ୍ରଭଃ ସଶର୍କରଃ ପୁଷ୍ପଚ୍ଛିଦ୍ରଃ ଖଣ୍ଡୋ ଦୁର୍ବିଦ୍ଧୋ ଲେଖାକୀର୍ଣ୍ଣ ଇତି ଦୋଷାଃ । (୧୧) ବିମଳକଃ ସସ୍ୟକୋଽଞ୍ଜନମୂଳକଃ ପିତ୍ତକଃ ସୁଲଭକୋ ଲୋହିତାକ୍ଷୋ

---

ମଣିକୁ 'ନୀଳାବଳୀୟ'; ମୟୂରପିଚ୍ଛସମାନବର୍ଣ୍ଣ ଇନ୍ଦ୍ରନୀଳମଣିକୁ 'ଇନ୍ଦ୍ରନୀଳ'; କଳାୟପୁଷ୍ପକ (କଳାୟଧାନ୍ୟ, ଚଣାପୁଷ୍ପସମବର୍ଣ୍ଣ ); ମହାନୀଳ (ଭ୍ରମରବର୍ଣ୍ଣ); ଜାମ୍ବୁବାଭ (ଜାମକୋଳିଆବର୍ଣ୍ଣ); ଜୀମୂତପ୍ରଭ (ମେଘବର୍ଣ୍ଣ); ନନ୍ଦକ (ଭିତରେ ଶୁକ୍ଳ, ବାହାର ନୀଳ); ସ୍ରବନ୍ମଧ୍ୟ (ଜଳସ୍ରାବବାପରି ଭିତରୁ କିରଣ ଦେଉଥିବା) । ଶୁଦ୍ଧ ସ୍ଫଟିକ ମଣି ଚାରିପ୍ରକାର—ଶୁଦ୍ଧ ସ୍ଫଟିକ (ଅତ୍ୟନ୍ତ ଶୁକ୍ଳବର୍ଣ୍ଣ), ମୂଳାଟବର୍ଣ୍ଣ (ଦହିପାଣିପରି ବର୍ଣ୍ଣ), ଶୀତବୃଷ୍ଟି (ଚନ୍ଦ୍ରକାନ୍ତ ଅର୍ଥାତ୍ ଚନ୍ଦ୍ରକିରଣ ସ୍ପର୍ଶରେ ଯେଉଁ ସ୍ଫଟିକମଣିରୁ ଜଳସ୍ରାବ ହୁଏ), ସୂର୍ଯ୍ୟକାନ୍ତ (ସୂର୍ଯ୍ୟକିରଣ ସ୍ପର୍ଶରେ ଯେ ଅଗ୍ନି ଉଦ୍‌ଗାର କରେ) । (୯) ଷଟ୍‌କୋଣ, ଚତୁରସ୍ର, ଗୋଲ, ଗାଢ଼ରଙ୍ଗ, ଅଳଂକାରଯୋଗ୍ୟ, ନିର୍ମଳ, ଚିକ୍‌କଣ, ଭାରି, ଦୀପ୍ତିମନ୍ତ, ଅନ୍ତଃସ୍ଥଳରେ ତରଳପ୍ରଭାଯୁକ୍ତ ହେବା, ନିଜପ୍ରଭାରେ ଅନ୍ୟକୁ ଅଲେକିତ କରିବା—ଏସମସ୍ତ ଉତ୍ତମ ମଣିମାନଙ୍କ ଗୁଣ । (୧୦) ତେଜହୀନ, ଛୋଟ ଛୋଟ ଦାନାଯୁକ୍ତ, ବିନ୍ଦୁଯୁକ୍ତ, ଖଣ୍ଡିଆ, ଅସ୍ଥାନରେ ବିଦ୍ଧ ହୋଇଥିବା ଓ ଗାରଗାରିଆ ହୋଇଥିବା—ଏସମସ୍ତ ମଣିର ଦୋଷ । (୧୧) ବିମଳକ (ଶ୍ୱେତହରିତ୍‌ବର୍ଣ୍ଣ), ସସ୍ୟକ (ନୀଳ), ଅଞ୍ଜନମୂଳକ (ନୀଳ-ଶ୍ୟାମ), ପିତ୍ତକ (ଗୋପିତ୍ତ ବା ଗୋରୋଚନା ବର୍ଣ୍ଣ), ସୁଲଭକ (ଶୁକ୍ଳ ବା ସହଜଲଭ୍ୟ), ଲୋହିତାକ୍ଷ (ଚାରିପଟ ରଙ୍ଗ, ମଧ୍ୟଭାଗ ଶୁକ୍ଳ),

---

* ପୁଷ୍ପଚ୍ଛିଦ୍ରୋଽଥଦୁର୍ବିଦ୍ଧଃ ଶର୍କରାଳୁଗତସ୍ତଥା ।
ମନ୍ଦରାଗପ୍ରଭଶ୍ଚୈବ ଜାତଭେଦାଃ ପ୍ରକୀର୍ତ୍ତିତାଃ । ୧ ।
ପ୍ରାନ୍ତସ୍ଥ ବାମକୃଷ୍ଣସ୍ଥ ବଲତାପସ୍ୟ (କ) ଶାନ୍ତଃ ।
ସ୍ଫଟିକସ୍ଥ ବଣୀର୍ଣ୍ଣସ୍ୟ ନ ହ୍ୟ ଶାସ୍ତ୍ରେ ପ୍ରଶସ୍ୟତେ । ୨ । ( ବାର୍ହସ୍ପତ୍ୟ ନୀତଶାସ୍ତ୍ର )

**ମୃଗାଶ୍ମକୋ ଜ୍ୟୋତୀରସକୋ ମୈଲେୟକ ଅହିଚ୍ଛତ୍ରକଃ କୂର୍ପଃ ପ୍ରତିକୂର୍ପଃ ସୁଗନ୍ଧିକୂର୍ପଃ କ୍ଷୀରପକଃ ଶୁକ୍ତିଚୂର୍ଣ୍ଣକଃ ଶିଳାପ୍ରବାଳକଃ ପୁଳକଃ ଶୁକ୍ଳପୁଳକଃ ଇତ୍ୟନ୍ତରଜାତୟଃ । ଶେଷାଃ କାଚମଣୟଃ । (୧୨) ସଭାରାଷ୍ଟ୍ରକଂ ମଧ୍ୟମରାଷ୍ଟ୍ରକଂ କାସ୍ତୀରରାଷ୍ଟ୍ରକଂ ଶ୍ରୀକଟନକଂ ମଣିମନ୍ତକମିନ୍ଦ୍ରବାନକଂ ଚ ବଜ୍ରମ୍ । (୧୩) ଖନିଃ ସ୍ରୋତଃ ପ୍ରକୀର୍ଣ୍ଣକଂ**

---

ମୃଗାଶ୍ମକ (ଶୁକ୍ଳ-କୃଷ୍ଣମିଶ୍ରିତ ବର୍ଣ୍ଣ), ଜ୍ୟୋତୀରସକ (ଶୁକ୍ଳ-ରକ୍ତମିଶ୍ରିତ ବର୍ଣ୍ଣ), ମୈଳେୟକ (ହିଙ୍ଗୁଳବର୍ଣ୍ଣ), ଅହିଚ୍ଛତ୍ରକ (ଅହିଛତ୍ରକ ରାଜ୍ୟାଲବ୍ଧ ବା ମାଟିଆବର୍ଣ୍ଣ), କୂର୍ପ (ଖଦଡ଼ା), ପ୍ରତିକୂର୍ପ (ମହଣସଦୃଶ ବର୍ଣ୍ଣ), ସୁଗନ୍ଧିକୂର୍ପ (ମୁଗପର ବର୍ଣ୍ଣ), କ୍ଷୀରପକ (ଦୁଗ୍ଧପର ବର୍ଣ୍ଣ), ଶୁକ୍ତିଚୂର୍ଣ୍ଣକ (ସିପଚୂନପର ବର୍ଣ୍ଣ), ଶିଳାପ୍ରବାଳକ (ପୋହଳା ବର୍ଣ୍ଣ), ପୁଳକ (କୃଷ୍ଣଗର୍ଭ), ଶୁକ୍ଳପୁଳକ (ଶ୍ୱେତଗର୍ଭ)—ଏମାନେ ମଧ୍ୟ ବିଭିନ୍ନଜାତୀୟ ମଣି ଅଟନ୍ତି; ଏତଦ୍‌ଭିନ୍ନ ମଣିମାନଙ୍କୁ କାଚମଣି (ଅଧମ ମଣି) କୁହାଯାଏ * । (୧୨) ଏଠାରେ ହୀରାର ଖଣି, କାରଣ, ବର୍ଣ୍ଣ, ଗୁଣ ଓ ଦୋଷ ବର୍ଣ୍ଣନା କରାଯାଉଛି । ସଭାରାଷ୍ଟ୍ରକ (ବିଦର୍ଭଦେଶଜାତ), ମଧ୍ୟମରାଷ୍ଟ୍ରକ (କୋଶଳଦେଶଜାତ), କାସ୍ତୀରରାଷ୍ଟ୍ରକ (କାଶୀର ଚତୁର୍ଦ୍ଦିଗସ୍ଥ ଅଞ୍ଚଳଜାତ), ଶ୍ରୀକଟନକ (ଶ୍ରୀକଟନକ ପର୍ବତଜାତ ବା ବେଦୋତ୍କଟ ପର୍ବତଜାତ), ମଣିମନ୍ତକ (ଉତ୍ତରାପଥବର୍ତ୍ତୀ ମଣିମନ୍ତକପର୍ବତୋତ୍ପନ୍ନ), ଇନ୍ଦ୍ରବାନକ (କଳିଙ୍ଗଦେଶଜାତ)—ଏପରି ସଭାରାଷ୍ଟ୍ରକ ପ୍ରଭୃତି ଛଅଗୋଟି ଜାଗାରେ ହୀରାର ଖଣି ଥାଏ । ଏତଦ୍‌ଭିନ୍ନ ଅନ୍ୟସ୍ଥାନରେ ମଧ୍ୟ ହୀରାର ଖଣି ଥାଇପାରେ । (ଖ୍ରୀଷ୍ଟପୂର୍ବ ୩୦୦ ଶତାବ୍ଦୀ ପୂର୍ବେ ଭାରତରେ ଏହି ଛଅଗୋଟି ପ୍ରସିଦ୍ଧ ହୀରାଖଣି ଅବସ୍ଥିତ ହୋଇଥିଲା । ଏତଦ୍‌ଭିନ୍ନ ଶବରୁ ନିମ୍ନଲିଖିତ ସ୍ଥାନମାନଙ୍କରେ ମଧ୍ୟ ହୀରାଖଣି ଥିବାର ଜଣାଯାଏ—ମଗଧ, କଳିଙ୍ଗ, ସୂର୍ପକ, ଜଳଦସ୍ଥାସା, ପୌଣ୍ଡ୍ରକ, ବର୍ବର, ତ୍ରିପୁରା, ସହ୍ୟ, ବିନ୍ଧ୍ୟ, ବନାରସ ନିକଟସ୍ଥ ପର୍ବତ, ବେଦୋତ୍କଟ ପର୍ବତ, କେରଳ, ବିଦର୍ଭ ପ୍ରଭୃତି । (୧୩) ଖଣି, ନଦୀସ୍ରୋତ ଓ ହାତଦାନ୍ତର

---

* ପଞ୍ଚବିଂଶତି ଭେଦାନାଂ ଗୁଣାସ୍ତ୍ୱେକାଦଶଃ ସ୍ମୃତାଃ ।
ସପ୍ତଦୋଷା ମଣୀନାଂ ତୁ ଦଶାଷ୍ଟୌ ଚ ବିଜାତୟଃ ॥ ଇତି ସଂଗ୍ରହାତ୍ ।

ଚ ଯୋନୟଃ । (୧୪) ମାର୍ଜାରାକ୍ଷକଂ ଚ ଶିରୀଷପୁଷ୍ପକଂ ଗୋମୂତ୍ରକଂ ଗୋମେଦକଂ ଶୁଦ୍ଧସ୍ଫଟିକଂ ମୂଳାଟୀପୁଷ୍ପକବର୍ଣଂ ମଣିବର୍ଣ୍ଣାନା-ମନ୍ୟତମବର୍ଣ୍ଣମିତି ବଜ୍ରବର୍ଣ୍ଣାଃ । (୧୫) ସ୍ଥୂଳଂ ସ୍ନିଗ୍ଧଂ ଗୁରୁ ପ୍ରହାରସହଂ ସମକୋଟିକଂ ଭାଜନଲେଖି * ତର୍କୁଭ୍ରାମି ଭ୍ରାଜିଷ୍ଣୁ ଚ ପ୍ରଶସ୍ତମ୍ । ନଷ୍ଟକୋଣଂ ନିରଶ୍ରି ପାର୍ଶ୍ୱାପବୃତ୍ତଂ ଚ ଅପ୍ରଶସ୍ତମ୍ § ।

---

ମୂଳସ୍ଥାନ ହୀରାର ଉତ୍ପତ୍ତିସ୍ଥଳ । (୧୪) ବିରାଡ଼ିଆଖିପରି ବର୍ଣ୍ଣ, ଶିରୀଷପୁଷ୍ପ-ସଦୃଶ ବର୍ଣ୍ଣ, ଗୋମୂତ୍ରସଦୃଶ ବର୍ଣ୍ଣ, ଗୋରୋଚନାସମାନ ବର୍ଣ୍ଣ, ଶୁଦ୍ଧସ୍ଫଟିକ ବର୍ଣ୍ଣ, ଚହ୍ଲାପରି ବର୍ଣ୍ଣ, ମାଳତୀଫୁଲପରି ବର୍ଣ୍ଣ, ମଣିବର୍ଣ୍ଣମାନଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ମଣିବର୍ଣ୍ଣର ସମାନ ବର୍ଣ୍ଣ, ଏପରି ବିଭିନ୍ନ ବର୍ଣ୍ଣର ହୀରକ ଦେଖାଯାଏ । (୧୫) ସ୍ଥୂଳ (ମୋଟା), ଚିକ୍କଣ, ଭାରି, ଅଣ୍ଡମାଡ଼ସହିବା ଯୋଗ୍ୟ, ସମକୋଣ, ଭାଜନଲେଖି (କାଂସ୍ୟପାତ୍ରରେ ଜଳ ରଖି ତହିଁରେ ହୀରାକୁ ପକାଇ ହଲାଇଲେ ଉକ୍ତ ପାତ୍ରରେ ଦାଗ ହୋଇଯାଏ), ଟାକୁଡ଼ିପରି ଭ୍ରମଣଶୀଳ, ଅତିଶୟ ଦୀପ୍ତିଯୁକ୍ତ ହୀରା ପ୍ରଶସ୍ତ ଏବଂ କୋଣହୀନ (ଶିଖରହୀନ), ନିରଶ୍ରି † ଧାରହୀନ, ପାର୍ଶ୍ୱାପବୃତ୍ତ (ଏକପଟ ଖରାପ ବା ବଙ୍କା ହୋଇଯାଇଥିବା) ହୀରା ଅପ୍ରଶସ୍ତ ଅଟେ ।

---

* ତର୍କୁ = ସୂତ୍ର ନିର୍ମାଣ ଯନ୍ତ୍ର ( ଟାକୁଡ଼ି spindle ) ।

§ ତର୍କୁଭ୍ରାମି ସ୍ନିଗ୍ଧଂ ସମକୋଟି ମହଦ୍‌ଗୁରୁ ପ୍ରହାରସହମ୍ ।
ତମଥ ଚ ଭାଜନ ଲେଖି ପ୍ରଶସ୍ତତଲାଂ ବଜ୍ରମୁଦ୍ଦିଷ୍ଟମ୍ ॥
କ୍ଷିପ୍ତମଗ୍ନୌ ତଯଦ୍‌ବଜ୍ରଂ ବର୍ଣ୍ଣାନ୍ୟତ୍ୱଂ ନ ଗଚ୍ଛତି ।
ଶାଣେ ବା ଘୃଷ୍ୟମାଣଂ ଚ ନିକଷେଣ ବିରଜ୍ୟତେ ॥
ବୃତ୍ତିକେ ରକ୍ଷିତଂ ଯଚ୍ଚ ବିପତ୍ତିଂ ନୈବ ଗଚ୍ଛତି ।
ଧାରା ବର୍ଣ୍ଣ ସମାଯୁକ୍ତଂ ବଦ୍ଧରଶ୍ମି ସମନ୍ୱିତମ୍ ॥
ଗୁରୁ ସ୍ନେହଯୁତଂ ଚୈବ ଗୁଣୈରେଭିଃ ସମନ୍ୱିତମ୍ ।
ଏତଦ୍ ବିଶିଷ୍ଟଂ ବଜ୍ରାଣାଂ ରତ୍ନାଧିପତି କୀର୍ତ୍ତିତମ୍ ॥
ନଷ୍ଟକୋଣଂ ନିରଶ୍ରୀକଂ ପାର୍ଶ୍ୱଜାତଂ ଚ ବର୍ଜୟେତ୍ ।
ବିରୂପାନ୍ ମନ୍ଦରାଗାଂଶ୍ଚ ନଷ୍ଟପ୍ରଭାନ୍ ଦୂରଦର୍ଶନାନ୍ ॥
ଦଗ୍ଧାଂ ଶ୍ୱୋଦ୍‌ଗାରଣଶ୍ଚୈବ ବଜ୍ରାନ୍ ଶତ୍ରୁଷୁ ନିକ୍ଷିପେତ୍ ॥

† ବୃତ୍ରସ୍ୟ ହନ୍ତୁଃ କୁଲିଶଂ କୁଣ୍ଠିତା ଶ୍ରୀରିବ ଲକ୍ଷ୍ୟତେ । ଇତି କୁମାରସମ୍ଭବଃ ।

**(୧୬) ପ୍ରବାଳକମ୍ ଆଳକନ୍ଦକଂ ବୈବର୍ଣ୍ଣିକଂ ଚ ରକ୍ତଂ ପଦ୍ମରାଗଂ ଚ କରଟଗର୍ଭିଣିକାବର୍ଜମିତି । (୧୭) ଚନ୍ଦନଂ—ସାତନଂ ରକ୍ତଂ ଭୂମିଗନ୍ଧି । ଗୋଶୀର୍ଷକଂ କାଳତାମ୍ରଂ ମତ୍ସ୍ୟଗନ୍ଧି । ହରିଚନ୍ଦନଂ ଶୁକପତ୍ରବର୍ଣ୍ଣମାମ୍ରଗନ୍ଧି । ତାର୍ଣସଂ ଚ । ଗ୍ରାମେରୁକଂ ରକ୍ତଂ ରକ୍ତକାଳଂ ବା ବସ୍ତମୂତ୍ରଗନ୍ଧି । ଦୈବସଭେୟଂ ରକ୍ତଂ ପଦ୍ମଗନ୍ଧି । ଜାବକଂ**

ଏଠାରେ ମଣିର ବର୍ଗର ଶେଷ ହେଲା । (୧୬) ବର୍ବର ନଦୀର ମୁହାଣ-ପାଖରେ ଥିବା ଅଲକନ୍ଦ ନାମକ ସ୍ଥାନରେ ଜାତହେବା ପୋହଳାକୁ 'ଆଲକନ୍ଦକ' ଓ ବିବର୍ଣ୍ଣ ନାମକ ଯବନଦ୍ୱୀପ (ୟୁନାନ) ସ୍ଥିତ ସମୁଦ୍ରର ଏକସ୍ଥାନରେ ଜାତହେବା ପୋହଳାକୁ ବୈବର୍ଣ୍ଣିକ କହନ୍ତି । ପୋହଳା ଏପରି ଦୁଇସ୍ଥାନରୁ ଜାତହୁଏ । ରକ୍ତ ଓ ପଦ୍ମରାଗ ଅର୍ଥାତ୍ ପଦ୍ମଫୁଲପରି ରଙ୍ଗ ଭେଦରେ ପୋହଳାର ବର୍ଣ୍ଣ ଦୁଇପ୍ରକାର । କରଟ (କୃମିଭକ୍ଷିତ) ଓ ଗର୍ଭିଣିକା (ପେଟୁଆ)—ଏ ଦୁଇପ୍ରକାର ଦୋଷଯୁକ୍ତ ପୋହଳାଛଡ଼ା ଅନ୍ୟ ସମସ୍ତ ପ୍ରକାର ପୋହଳା ଉପାଦେୟ । ଏଠାରେ ପୋହଳା ବିଷୟ ଶେଷ ହେଲା । (୧୭) ଏଠାରେ ଚନ୍ଦନର ସାତନ ପ୍ରଭୃତି ଷୋହଳଗୋଟି ଉତ୍ପତ୍ତି ସ୍ଥାନ, ଲାଲ ପ୍ରଭୃତି ନ'ପ୍ରକାର ବର୍ଣ୍ଣ, ଭୂମିଗନ୍ଧ ପ୍ରଭୃତି ଛ'ପ୍ରକାର ଗନ୍ଧ ଓ ଲଘୁତ୍ୱାଦି ଏକାଦଶ ଗୁଣ ବର୍ଣ୍ଣନା କରାଯାଉଛି । * ସାତନ ଚନ୍ଦନ (ସାତନଦେଶଜାତ ଚନ୍ଦନ) ରକ୍ତବର୍ଣ୍ଣ ଓ ସଦ୍ୟ ବର୍ଷାଜଳସିକ୍ତ ଭୂମିଜାତ ଗନ୍ଧପରି ଗନ୍ଧଯୁକ୍ତ । ଗୋଶୀର୍ଷକ ଚନ୍ଦନ (ଗୋଶୀର୍ଷକ ଦେଶଜାତ ଚନ୍ଦନ) କୃଷ୍ଣତାମ୍ରବର୍ଣ୍ଣ ଓ ମତ୍ସ୍ୟଗନ୍ଧଯୁକ୍ତ । (ରଙ୍ଗକଣୟର ଫୁଲପରି ଗନ୍ଧଯୁକ୍ତ—ଭଟ୍ଟସ୍ୱାମିନ୍) । ହରିଚନ୍ଦନ (ହରିଚନ୍ଦନ ଦେଶଜାତ ଚନ୍ଦନ) ଶୁକପକ୍ଷସଦୃଶ ବର୍ଣ୍ଣଯୁକ୍ତ ଓ ପାଚିଲାଆମ୍ବପରି ଗନ୍ଧଯୁକ୍ତ । ତାର୍ଣସ ଚନ୍ଦନ (ତୃଣସ ନାମକ ନଦୀନିକଟଜାତ ଚନ୍ଦନ) ମଧ୍ୟ ହରିଚନ୍ଦନପରି; ଏହା ଅଳ୍ପ ଅମ୍ଳଗନ୍ଧଯୁକ୍ତ । ଗ୍ରାମେରୁକ ଚନ୍ଦନ (ଗ୍ରାମେରୁକ ଦେଶଜାତ ଚନ୍ଦନ) ରକ୍ତବର୍ଣ୍ଣ ବା

* ସାତନ ପ୍ରଭୃତି ଚନ୍ଦନର ଉତ୍ପତ୍ତିସ୍ଥଳ ଷୋହଳ ମଧ୍ୟରୁ ଯାବକ, ଜୋଙ୍ଗକ ଓ ତୌରୂପ କାମରୂପଜାତ ଓ ଅନ୍ୟ ତେରଟି ମଳୟ ପର୍ବତର ଏକାଂଶରେ ଜାତ ହୁଅନ୍ତି ।

"ଷଡ୍‌ଗନ୍ଧା ନବଧା ବର୍ଣ୍ଣା ଗୁଣାଶ୍ଚୈକାଦଶ ସ୍ମୃତାଃ ।
ଚନ୍ଦନାନାଂ ସମାସେନ ଷୋଡ଼ଶୋତ୍ପତ୍ତି ଭୂମୟଃ ॥"

ତି । ଜୋଂଗକଂ ରକ୍ତଂ ରକ୍ତକାଳଂ ବା ସ୍ନିଗ୍ଧମ୍ । ତୌରୂପଂ ଚ । ମାଳେୟକଂ ପାଣ୍ଡୁରକ୍ତମ୍ । କୁଚନ୍ଦନଂ କାଳବର୍ଣ୍ଣକଂ ଗୋମୂତ୍ର-ଗନ୍ଧି । କାଳପର୍ବତକଂ ରୂକ୍ଷମଗୁରୁକାଳଂ ରକ୍ତଂ ରକ୍ତକାଳଂ ବା । କୋଶକାରପର୍ବତକଂ କାଳଂ କାଳଚିତ୍ରଂ ବା । ଶୀତୋଦକୀୟଂ ପଦ୍ମାଭଂ କାଳସ୍ନିଗ୍ଧଂ ବା । ନାଗପର୍ବତକଂ ରୂକ୍ଷଂ ଶୈବଳବର୍ଣ୍ଣଂ ବା । ଶାକଳଂ କପିଳମିତି । ଲଘୁ ସ୍ନିଗ୍ଧମଶ୍ୟାନଂ ସର୍ପିଃ ସ୍ନେହଲେପି ଗନ୍ଧସୁଖଂ ତ୍ୱଗନୁସାର୍ଯନୁଲ୍ବଣ ମବିରାଗ୍ୟୁଷ୍ଣସହଂ

---

ରକ୍ତକୃଷ୍ଣ, ଛାଗମୂତ୍ର (ଛେଳିମୂତ୍ର) ପରି ଗନ୍ଧଯୁକ୍ତ (ମତାନ୍ତରେ କସ୍ତୁରୀ ମୃଗର ମୂତ୍ରପରି ଗନ୍ଧଯୁକ୍ତ) । ଦୈବସଭେୟ ଚନ୍ଦନ (ଦେବସଭାଜାତ ଚନ୍ଦନ) ରକ୍ତବର୍ଣ୍ଣ ଏବଂ ପଦ୍ମଫୁଲପରି ଗନ୍ଧଯୁକ୍ତ । ଜାବକ ଚନ୍ଦନ (ଜାବକ ନାମକ କାମରୂପ ଦେଶଜ ଚନ୍ଦନ) ଏହିପରି ହୋଇଥାଏ । ଜୋଙ୍ଗକ ଚନ୍ଦନ (ଜୋଙ୍ଗକ ନାମକ କାମରୂପ ଦେଶଜାତ ଚନ୍ଦନ) ରକ୍ତବର୍ଣ୍ଣ ବା ରକ୍ତକୃଷ୍ଣମିଶ୍ରିତ ବର୍ଣ୍ଣ, ଚିକ୍କଣ ଓ ପଦ୍ମଗନ୍ଧଯୁକ୍ତ । ତୌରୂପ ଚନ୍ଦନ (ତୌରୂପ ନାମକ କାମରୂପ ଦେଶଜ ଚନ୍ଦନ) ମଧ୍ୟ ଜୋଙ୍ଗକ ଚନ୍ଦନ ସମାନ । ମାଳେୟକ ଚନ୍ଦନ (ମାଳଜାତ ଚନ୍ଦନ) ପାଣ୍ଡୁରକ୍ତମିଶ୍ରିତ ବର୍ଣ୍ଣ ଓ ପଦ୍ମଗନ୍ଧଯୁକ୍ତ । କୁଚନ୍ଦନ (କୁଚନ୍ଦନ ଦେଶଜ ଚନ୍ଦନ) କୃଷ୍ଣବର୍ଣ୍ଣ ଓ ଗୋମୂତ୍ରଗନ୍ଧଯୁକ୍ତ (ଗୋମୂତ୍ର ପରିଣାମରେ ସୁଗନ୍ଧ ହୁଏ—ଗଣପତି ଶାସ୍ତ୍ରୀ), ମତାନ୍ତରେ ନୀଳୋତ୍ପଳଗନ୍ଧଯୁକ୍ତ । କାଳପର୍ବତକ ଚନ୍ଦନ (କାଳପର୍ବତ ଦେଶଜାତ ଚନ୍ଦନ) ରୂକ୍ଷ, ଅଗୁରୁ ଚନ୍ଦନ ସଦୃଶ କୃଷ୍ଣବର୍ଣ୍ଣ, ରକ୍ତବର୍ଣ୍ଣ ବା କୃଷ୍ଣରକ୍ତମିଶ୍ରିତ ବର୍ଣ୍ଣ । ଏହା ମଧ୍ୟ ଗୋମୂତ୍ରଗନ୍ଧଯୁକ୍ତ । କୋଶକାର ପର୍ବତକ ଚନ୍ଦନ (କୋଶକାର ପର୍ବତଜାତ ଚନ୍ଦନ) କୃଷ୍ଣବର୍ଣ୍ଣ, କୃଷ୍ଣଚିତ୍ର-ମିଶ୍ରିତ ବର୍ଣ୍ଣ (କାଣ୍ଟିକାଚିତ୍ରିଆ ବର୍ଣ୍ଣ) । ଏହା ମଧ୍ୟ ଗୋମୂତ୍ରଗନ୍ଧୀ । ଶୀତୋଦକୀୟ ଚନ୍ଦନ (ଶୀତୋଦକ ଦେଶଜାତ ଚନ୍ଦନ) ପଦ୍ମବର୍ଣ୍ଣ, କୃଷ୍ଣ ଓ ଚିକ୍କଣ ଚନ୍ଦନ । ଏହାର ଗନ୍ଧ ମଧ୍ୟ ଗୋମୂତ୍ରପରି । ନାଗପର୍ବତକ ଚନ୍ଦନ (ନାଗପର୍ବତଜାତ ଚନ୍ଦନ) ରୂକ୍ଷ (ଖରଖରିଆ), ଶୈବାଳ ଅର୍ଥାତ୍ ଶିଆଳିପରି ବର୍ଣ୍ଣ । ଏହା ମଧ୍ୟ ଗୋମୂତ୍ରଗନ୍ଧୀ । ଶାକଳ ଚନ୍ଦନ (ଶାକଳଦେଶଜାତ ଚନ୍ଦନ) କପିଳବର୍ଣ୍ଣ ଅର୍ଥାତ୍ କଳାହଳଦିଆମିଶ୍ରିତ ବର୍ଣ୍ଣଯୁକ୍ତ ଓ ଗୋମୂତ୍ର-

ଦାହଗ୍ରାହି ସୁଖସ୍ପର୍ଶନମିତି ଚନ୍ଦନଗୁଣାଃ । (୧୮) ଅଗୁରୁ—ଜୋଂଗକଂ କାଳଂ କାଳଚିତ୍ରଂ ମଣ୍ଡଳଚିତ୍ରଂ ବା । ଶ୍ୟାମଂ ଦୋଙ୍ଗକମ୍ । ପାରସମୁଦ୍ରକଂ ଚିତ୍ରରୂପମ୍ । ଉଶୀରଗନ୍ଧି ନବମାଲିକାଗନ୍ଧି ବେତି । ଗୁରୁ ସ୍ନିଗ୍ଧଂ ପେଶଲଗନ୍ଧି ନିର୍ହାରି ଅଗ୍ନିସହମସଂପ୍ଲୁତଧୂମଂ

---

ଗନ୍ଧୀ । ଲଘୁ, ଚିକ୍କଣ, ଅଶ୍ୟାନ (ବିଳମ୍ବରେ ଶୁଷ୍କହେବା), ଘିଅପରି ଚିକ୍କଣ ହୋଇଥିବା, ଦେହରେ ଲେପି ହୋଇ ରହୁଥିବା, ସୁଖକର ଗନ୍ଧଜନକ, ଚର୍ମରେ ପ୍ରବେଶପୂର୍ବକ ସୁଖୋତ୍ପାଦକ, ଫଟାଫଟା ନହେବା, ଅନ୍ୟପଦାର୍ଥ ସହିତ ମିଶିଲେ ମଧ୍ୟ ନିଜର ବାସନା ନଛାଡ଼ିବା, ଗର୍ମ୍ମ-ସହନଶୀଳ, ଦାହଗ୍ରାହୀ ଅର୍ଥାତ୍ ସନ୍ତାପହର, ସୁଖସ୍ପର୍ଶନ ଅର୍ଥାତ୍ ଛୁଇଁଲେ ଲହୁଣିପରି କୋମଳ ଓ ଚିକ୍କଣ ଲାଗିବା—ଏସମସ୍ତ ଉତ୍ତମ ଚନ୍ଦନର ଗୁଣ । (୧୮) ଜୋଙ୍ଗକ ନାମକ କାମରୂପଦେଶଜାତ ଅଗୁରୁ ତିନିପ୍ରକାର—କୃଷ୍ଣବର୍ଣ୍ଣ, କୃଷ୍ଣଗୌରରେଖାମିଶ୍ରିତ ବର୍ଣ୍ଣ ଓ କୃଷ୍ଣଗୌରବିନ୍ଦୁଚିତ ବର୍ଣ୍ଣ । ଜୋଙ୍ଗକ ନାମକ କାମରୂପ (ଆସାମ) ଦେଶଜାତ ଅଗୁରୁ ଶ୍ୟାମବର୍ଣ୍ଣ ଅର୍ଥାତ୍ କୃଷ୍ଣବର୍ଣ୍ଣ । ସିଂହଳଦ୍ୱୀପଜାତ ପାରସମୁଦ୍ରକ ନାମକ ଅଗୁରୁ ଚିତ୍ରବର୍ଣ୍ଣ, ଅର୍ଥାତ୍ ନାନାବର୍ଣ୍ଣ । ଏମାନଙ୍କର ସୁଗନ୍ଧ ଉଶୀରବେଣା (ଗନ୍ଧବେଣା) ଓ ନବମାଳିକା (ନିଆଳିଫୁଲ)ପରି ହୋଇଥାଏ । ଭାରି, ଚିକ୍କଣ, ପେଶଲଗନ୍ଧୀ ଅର୍ଥାତ୍ ହୃଦୟଆହ୍ଲାଦକ ସୁଗନ୍ଧଯୁକ୍ତ, ବହୁଦୂର-ପ୍ରସୃତ ଗନ୍ଧଯୁକ୍ତ, ଅଗ୍ନିସହନଶୀଳ (ଅଗ୍ନିରେ ପକାଇଲେ ହଠାତ୍ ନ ପୋଡ଼ିଯିବା) ଅସଂପ୍ଲୁତଧୂମ ଅର୍ଥାତ୍ ଅବ୍ୟାକୁଳକର ଧୂମଯୁକ୍ତ (ଆନନ୍ଦ-ଦାୟକ ଧୂମଯୁକ୍ତ), ସମଗନ୍ଧ (ଆଦ୍ୟ ମଧ୍ୟ ଓ ଶେଷଭାଗରେ ସମାନ ଗନ୍ଧଯୁକ୍ତ), ବସ୍ତ୍ରାଦଦ୍ୱାରା ବିମର୍ଦ୍ଦନପୂର୍ବକ ପୋଛିଲେ ମଧ୍ୟ ଯାହାର ସୌରଭ କ୍ଷୟ ହୁଏନାହିଁ * (ଶ୍ୟାମଶାସ୍ତ୍ରୀଙ୍କ ମତରେ ଯାହାକୁ ପୋଛିଲେ ମଧ୍ୟ

---

(୧୮) ଉତ୍ପତ୍ତିଭୂମସ୍ତ୍ରିଧା କୃଷ୍ଣୋବର୍ଣ୍ଣଃ ପ୍ରଧାନତଃ ।
ଦ୍ୱାବେବା ଗୁରୁଣୋ ଗନ୍ଧୌ ଗୁଣାସ୍ତସ୍ୟାଷ୍ଟ କୀର୍ତ୍ତିତାଃ ।

* And is so adhesive to the skin as not to be removable by rubbing.

**ସମଗନ୍ଧଂ ବିମର୍ଦସହମିତ୍ୟଗୁରୁଗୁଣାଃ । (୧୯) ତୈଳପର୍ଣ୍ଣିକଂ—ଅଶୋକଗ୍ରାମିକଂ ମାଂସବର୍ଣ୍ଣଂ ପଦ୍ମଗନ୍ଧି । ଜୋଂଗକଂ ରକ୍ତପୀତକମୁତ୍ପଳଗନ୍ଧି ଗୋମୂତ୍ରଗନ୍ଧି ବା । ଗ୍ରାମେରୁକଂ ସ୍ନିଗ୍ଧଂ ଗୋମୂତ୍ରଗନ୍ଧି । ସୌବର୍ଣ୍ଣକୁଡ୍ୟକଂ ରକ୍ତପୀତଂ ମାତୁଲୁଙ୍ଗଗନ୍ଧି । ପୂର୍ଣ୍ଣକଦ୍ୱୀପକଂ ପଦ୍ମଗନ୍ଧି ନବନୀତଗନ୍ଧି ଚେତି । (୨୦) ଭଦ୍ରଶ୍ରୀୟଂ—ପାରଲୌହିତ୍ୟକଂ ଜାତୀବର୍ଣ୍ଣମ୍ । ଆନ୍ତରବତ୍ୟମୁଶୀରବର୍ଣ୍ଣମ୍ । ଉଭୟଂ କୁଷ୍ଠଗନ୍ଧି ଚେତି । (୨୧) କାଲେୟକଃ—ସ୍ୱର୍ଣ୍ଣଭୂମିଜଃ**

---

ଦେହରୁ ଛାଡ଼େ ନାହିଁ)—ଏପରି ଅଗୁରୁ ଉତ୍ତମ ଗୁଣଯୁକ୍ତ ବୋଲି ବିବେଚିତ ହୁଏ । (୧୯) ତୈଳପର୍ଣ୍ଣି ନାମକ ସୁଗନ୍ଧଦ୍ରବ୍ୟ (ହରିଚନ୍ଦନ ଭେଦ) କାମରୂପ ମଧ୍ୟବର୍ତ୍ତୀ ଅଶୋକଗ୍ରାମସଂଭୂତ, ମାଂସବର୍ଣ୍ଣ ଅର୍ଥାତ୍ ହରିଣମାଂସ ବର୍ଣ୍ଣ ଓ ପଦ୍ମଗନ୍ଧୀ; ଜୋଙ୍ଗକ (କାମରୂପସ୍ଥ ଜୋଙ୍ଗକ ସ୍ଥାନୋତ୍ପନ୍ନ) ତୈଳପର୍ଣ୍ଣିକ ରକ୍ତପୀତ ଅର୍ଥାତ୍ ମନଃଶିଳା ବର୍ଣ୍ଣ, ପଦ୍ମ ବା ଗୋମୂତ୍ରଗନ୍ଧୀ; ଗ୍ରାମେରୁକ (କାମରୂପ ମଧ୍ୟସ୍ଥିତ ଗ୍ରାମେରୁ ନାମକ ଗ୍ରାମରେ ଜାତହେବା); ତୈଳପର୍ଣ୍ଣିକ ସ୍ନିଗ୍ଧ (ଚିକ୍କଣ), ଗୋମୂତ୍ରଗନ୍ଧୀ ଓ ଜୋଙ୍ଗକପରି ମନଃଶିଳା ବର୍ଣ୍ଣ; ସୌବର୍ଣ୍ଣକୁଡ୍ୟକ (କାମରୂପସ୍ଥ ସୁବର୍ଣ୍ଣକୁଡ୍ୟ ନାମକ ଗ୍ରାମରେ ଉତ୍ପନ୍ନ ହେବା) ତୈଳପର୍ଣ୍ଣିକ ରକ୍ତପୀତବର୍ଣ୍ଣ (ଲାଲ-ହଳଦିଆ ମିଶାମିଶି-ବର୍ଣ୍ଣ), ମାତୁଳୁଙ୍ଗଗନ୍ଧୀ; ପୂର୍ଣ୍ଣକଦ୍ୱୀପକ (କାମରୂପସ୍ଥ ପୂର୍ଣ୍ଣକଦ୍ୱୀପ ସମୁତ୍ପନ୍ନ ହେବା) ତୈଳପର୍ଣ୍ଣିକ ରକ୍ତପୀତବର୍ଣ୍ଣ, ପଦ୍ମପୁଷ୍ପଗନ୍ଧୀ ବା ନବନୀତଗନ୍ଧୀ (ଲହୁଣୀପରି ସୁଗନ୍ଧୀ) ଅଟେ । (୨୦) * ଭଦ୍ରଶ୍ରୀୟ ନାମକ ଚନ୍ଦନଭେଦ କାମରୂପସ୍ଥ ଲୌହିତ୍ୟା ନାମକ ନଦୀର ଅପରପାର୍ଶ୍ୱରେ ଉତ୍ପନ୍ନ ହୁଏ ଏବଂ ଏହାର ବର୍ଣ୍ଣ ଜାଈଫୁଲପରି । କାମରୂପସ୍ଥ ଅନ୍ତରବତୀ ନଦୀତୀରଜାତ ଭଦ୍ରଶ୍ରୀୟ ନାମକ ଚନ୍ଦନଭେଦ ଉଶୀରବର୍ଣ୍ଣ । ଏ ଦୁହିଙ୍କର ଗନ୍ଧ କୁଡ଼ର ଗନ୍ଧପରି । (୨୧) କାଲେୟକ (କାଲେୟକ ନାମକ ସୁଗନ୍ଧ କାଷ୍ଠବିଶେଷ)

---

* ଭଦ୍ରଶ୍ରୀ ଶବ୍ଦର ଅର୍ଥ ନାନାପ୍ରକାର ଦେଖାଯାଏ । ଯଥା—କେଚିତ୍ କର୍ପୂରମିତ୍ୟାହୁସ୍ତକ୍କୋଲମିତି ଚାପରେ । ଶ୍ରୀବାସକଂ ତଥା କେଚିତ୍ କେଚିଲ୍ଲୋହିତଚନ୍ଦନମ୍ । ଅର୍ଥାତ୍ ଭଦ୍ରଶ୍ରୀକୁ କୌଣସିମାନେ କର୍ପୂର, କକ୍କୋଲ (ଶୀତଲାମରିଚ) କିମ୍ବା ଶ୍ରୀବାସ ଓ କେହି କେହି ରକ୍ତଚନ୍ଦନ ବୋଲି କହନ୍ତି ।

ସ୍ନିଗ୍ଧପୀତକଃ । ଔତ୍ତରପର୍ବତକୋ ରକ୍ତପୀତକଃ । ଇତି ସାରାଃ । ପିଣ୍ଡକ୍ୱାଥଧୂମସହମବିରାଗି ଯୋଗାନୁବିଧାୟି ଚ । ଚନ୍ଦନାଗୁରୁବଚ୍ଚ ତେଷାଂ ଗୁଣାଃ । (୨୨) କାନ୍ତନାବକଂ ପ୍ରୈୟକଂ ଚୌତ୍ତର ପର୍ବତକଂ ଚର୍ମ୍ମ । କାନ୍ତନାବକଂ ମୟୂରଗ୍ରୀବାଭମ୍ । ପ୍ରୈୟକଂ ନୀଳପୀତଂ ଶ୍ୱେତଂ ଲେଖାବିନ୍ଦୁଚିତ୍ରମ୍ । ତଦୁଭୟମଷ୍ଟାଂ ଗୁଳାୟାମମ୍ * । (୨୩) ବିସୀ ମହାବିସୀ ଚ ଦ୍ୱାଦଶଗ୍ରାମୀୟେ ।

---

ସୁବର୍ଣ୍ଣଭୂମି ଅର୍ଥାତ୍ ବର୍ମଦେଶଜାତ, ଚିକ୍କଣ, ହଳଦିବର୍ଣ୍ଣ । ଔତ୍ତର-ପର୍ବତକ (ହିମାଳୟଜାତ କାଲେୟକ ନାମକ ସୁଗନ୍ଧ କାଷ୍ଠ) ଓ ରକ୍ତପୀତ-ବର୍ଣ୍ଣ (ମନଃଶିଳାବର୍ଣ୍ଣ) । ଏଠାରେ ଚନ୍ଦନଠାରୁ ଆରମ୍ଭ କରି କାଲେୟକ ପର୍ଯ୍ୟନ୍ତ ସମସ୍ତ ସାର ପଦାର୍ଥମାନଙ୍କର ନିରୂପଣ ଶେଷହେଲା ।

ଏହାପରେ ତୈଳପର୍ଣ୍ଣିକ, ଭଦ୍ରଶ୍ରୀୟ, କାଲେୟକ—ଏମାନଙ୍କର ଗୁଣ ବର୍ଣ୍ଣନା କରାଯାଉଛି । ଘଷିକରି ଗୁଳାକରିବା, ସିଝାଇବା, ଧୂପ-କାର୍ଯ୍ୟରେ ବ୍ୟବହାର କରିବାରେ ସୁଗନ୍ଧର କୌଣସି ପରିବର୍ତ୍ତନ ନହେବା, ଅନ୍ୟପଦାର୍ଥ ସହିତ ମିଶିଲେ ମଧ୍ୟ କୌଣସି କାଳରେ ନିଜର ସୁଗନ୍ଧ ନଛାଡ଼ି ଅବିକୃତ ହୋଇ ରହିବା, ଅନ୍ୟ ସୁଗନ୍ଧ ପଦାର୍ଥ ସହ ମିଶିଲେ ମଧ୍ୟ ନିଜ ସୁଗନ୍ଧ ସହିତ ସେହି ପଦାର୍ଥର ସୁଗନ୍ଧକୁ ଅନୁକୂଳ କରାଇବା—ଏଗୁଡ଼ିକ ତୈଳପର୍ଣ୍ଣିକ ପ୍ରଭୃତି ତିନିଗୋଟି ସୁଗନ୍ଧ କାଷ୍ଠର ଗୁଣ । ବିଶେଷତଃ ଚନ୍ଦନ ଓ ଅଗୁରୁର ଗୁଣପରି ଏମାନଙ୍କର ମଧ୍ୟ ଗୁଣ ଥାଏ ।

ଇତି ସାର ନିରୂପଣମ୍ ।

(୨୨) ହିମାଳୟ ପର୍ବତ ନିକଟସ୍ଥ କାନ୍ତନବନ ଓ ପ୍ରୈୟକ ନାମକ ସ୍ଥାନଜାତ ଚମଡ଼ାକୁ ଯଥାକ୍ରମେ 'କାନ୍ତନାବକ' ଓ 'ପ୍ରୈୟକ' କୁହାଯାଏ । କାନ୍ତନାବକ ମୟୂରକଣ୍ଠବର୍ଣ୍ଣ ଏବଂ ପ୍ରୈୟକ ନୀଳପୀତ, ଶ୍ୱେତବର୍ଣ୍ଣ ରେଖା ଓ ବିନ୍ଦୁଦ୍ୱାରା ଚିହ୍ନିତ । ଏ ଦୁଇପ୍ରକାର ଚମଡ଼ାର ବିସ୍ତାର ଅଠ ଅଙ୍ଗୁଳ । (୨୩) ହିମାଳୟସ୍ଥ ଦ୍ୱାଦଶ ମ୍ଲେଚ୍ଛଗ୍ରାମଜାତ ପୀଡ଼ୟା ଏଣ୍ଡାପରି ଅସ୍ଥିର

---

* ଆୟାମ ବିସ୍ତାର ଓ ଦୀର୍ଘତା । ତେନୋଦାଗ୍ରୀଂ ଦଶମନୁଚରେ ଦ୍ରୀର୍ଯଗାୟାମଶୋଭି । ଇତି ମେଘଦୂତେ ।

ଆୟାମ—Long.

ଅବ୍ୟକ୍ତରୂପା ଦୁହିଲକା ଶତ୍ରା ବା ବସୀ । ପରୁଷା ଶ୍ୱେତପ୍ରାୟା ମହାବସୀ । ଦ୍ୱାଦଶାଙ୍ଗୁଳାୟାମମୁଭୟମ୍ । (୨୪) ଶ୍ୟାମିକା, କାଳକା, କଦଳୀ, ଚନ୍ଦ୍ରୋତ୍ତରା, ଶାକୁଳା, ଚାରୋହଜାଃ । କପିଳା ବନ୍ଦୁଚିତ୍ରା ବା ଶ୍ୟାମିକା । କାଳକା କପିଳା କପୋତବର୍ଣ୍ଣା ବା । ତଦୁଭୟ ମଷ୍ଟାଙ୍ଗୁଳାୟାମମ୍ । ପରୁଷା କଦଳୀ ହସ୍ତାୟତା ସୈବ ଚନ୍ଦ୍ରଚିତ୍ରା ଚନ୍ଦ୍ରୋତ୍ତରା । କଦଳୀତ୍ରିଭାଗା ଶାକୁଳା କୋଠ-ମଣ୍ଡଳଚିତ୍ରା କୃତକର୍ଣ୍ଣିକାଜିନଚିତ୍ରା ଚେତି । (୨୫) ସାମୂରଂ ଚୀନସୀ ସାମୂଳୀ ଚ ବାହ୍ଲବେୟାଃ । ଷଟ୍ତ୍ରିଂଶଦଙ୍ଗୁଳ ମଂଜନବର୍ଣ୍ଣଂ ସାମୂରମ୍ । ଚୀନସୀ ରକ୍ତକାଳୀ ପାଣ୍ଡୁକାଳୀ ବା । ସାମୂଳୀ

---

ନାନା ଚିହ୍ନବିଚିହ୍ନ ବର୍ଣ୍ଣଯୁକ୍ତ, ଲୋମଯୁକ୍ତ ଚମଡ଼ାକୁ 'ବସୀ' ଏବଂ କଠୋର ଓ ଖରସ୍ପର୍ଶ ଶ୍ୱେତବର୍ଣ୍ଣ ଚମଡ଼ାକୁ 'ମହାବସୀ' କହନ୍ତି । ଏ ଦୁଇ ଚମଡ଼ାର ବିସ୍ତାର ବାର ଅଙ୍ଗୁଳ । (୨୪) ଆରୋହ ନାମକ ହିମାଳୟ ଅଞ୍ଚଳରୁ ଜାତହେବା ଶ୍ୟାମିକା, କାଳକା, କଦଳୀ, ଚନ୍ଦ୍ରୋତ୍ତରା ଓ ଶାକୁଳା ନାମକ ଚମଡ଼ାମାନଙ୍କର ସ୍ୱରୂପ ନିମ୍ନରେ ଲେଖାଗଲା । 'ଶ୍ୟାମିକା' କପିଳବର୍ଣ୍ଣ ଅର୍ଥାତ୍ କୃଷ୍ଣମିଶ୍ରିତ ପୀତବର୍ଣ୍ଣ ଓ ବିନ୍ଦୁଚିହ୍ନଯୁକ୍ତ; 'କାଳକା' ପୀତକୃଷ୍ଣବର୍ଣ୍ଣ ବା କପୋତବର୍ଣ୍ଣ । ଏ ଦୁଇପ୍ରକାର ଚମଡ଼ାର ବିସ୍ତାର ଆଠ ଅଙ୍ଗୁଳ । 'କଦଳୀ' କଠୋର, ଖରଖରଆ, ଏକହସ୍ତ ଲମ୍ବା ଅଟେ । ଏହାର ବର୍ଣ୍ଣ କାଳକା ଚମଡ଼ାପରି ଏବଂ ଏହି ଚମଡ଼ା ଯଦି ଚନ୍ଦ୍ରାକାର ମଣ୍ଡଳ ଚିହ୍ନଯୁକ୍ତ ହୋଇଥାଏ ତେବେ ତାହାକୁ 'ଚନ୍ଦ୍ରୋତ୍ତରା' କୁହାଯାଏ । ଏହାର ବିସ୍ତାର ମଧ୍ୟ ଏକହସ୍ତ । 'ଶାକୁଳା'ର ବିସ୍ତାର 'କଦଳୀ'ର ବିସ୍ତାରର ତିନିଗୁଣ ଅର୍ଥାତ୍ ତିନିହାତ (ଅନ୍ୟ ମତରେ ଏକହସ୍ତର ତିନିଭାଗରୁ ଭାଗେ ଅର୍ଥାତ୍ ଆଠ ଅଙ୍ଗୁଳ), ରକ୍ତବର୍ଣ୍ଣ ମଣ୍ଡଳଯୁକ୍ତ ଓ କୃତବର୍ଣ୍ଣିକ ମୃଗସଦୃଶ ଚିହ୍ନବିଚିହ୍ନ ଚର୍ମଗ୍ରନ୍ଥିଯୁକ୍ତ ଅଟେ । (୨୫) ହିମାଳୟର ବାହ୍ଲବ ନାମକ ଅଞ୍ଚଳରେ ସାମୂର, ଚୀନସୀ ଓ ସାମୂଳୀ ନାମକ ତିନିପ୍ରକାର ଚମଡ଼ା ମିଳେ । ଅଞ୍ଜନବର୍ଣ୍ଣ (କଳା), ଛତିଶ ଅଙ୍ଗୁଳ ବିସ୍ତାର ଥିବା ଚମଡ଼ାକୁ 'ସାମୂର', ରକ୍ତକୃଷ୍ଣମିଶ୍ରିତ ବର୍ଣ୍ଣ ବା ଶୁଭ୍ରକୃଷ୍ଣମିଶ୍ରିତ ବର୍ଣ୍ଣ ମତାନ୍ତରେ ହରିଦ୍ରା-କୃଷ୍ଣମିଶ୍ରିତ ବର୍ଣ୍ଣ ଚମଡ଼ାକୁ 'ଚୀନସୀ' ଏବଂ ଗହମବର୍ଣ୍ଣ ଚମଡ଼ାକୁ

ଗୋଧୂମବର୍ଣେତି । (୨୭) ସାତନା ନଲତୂଳା ବୃତ୍ତପୁଚ୍ଛା ଚୌଦ୍ରାଃ । ସାତନା କୃଷ୍ଣା, ନଲତୂଳା ନଲତୂଳବର୍ଣା, କପିଳା ବୃତ୍ତପୁଚ୍ଛା ଚ । ଇତି ଚର୍ମଜାତୟଃ । ଚର୍ମଣାଂ ମୃଦୁସ୍ନିଗ୍ଧଂ ବହୁଳରୋମ ଚ ଶ୍ରେଷ୍ଠମ୍ । (୨୭) ଶୁଦ୍ଧଂ ଶୁଦ୍ଧରକ୍ତଂ ପକ୍ଷରକ୍ତଂ ଚ ଆବିକମ୍ । ଖଚିତଂ ବାନଚିତ୍ରଂ ଖଣ୍ଡସଂଘାତ୍ୟଂ ତନ୍ତୁବିଚ୍ଛିନ୍ନଂ ଚ । କମ୍ବଳଃ କୌଚପକଃ କଳମିତିକା ସୌମିତିକା ତୁରଗାସ୍ତରଣଂ ବର୍ଣକଂ ତଳିଚ୍ଛକଂ ବାରବାଣଃ ପରିସ୍ତୋମଃ ସମନ୍ତଭଦ୍ରକଂ ଚ

---

'ସାମୂଲୀ' କହନ୍ତି । ଏଠାରେ ମୂଷିକାଦି ସ୍ଥଳଚର ଜନ୍ତୁମାନଙ୍କ ଚମଡ଼ାର ବିବରଣୀ ଶେଷ ହେଲା ।

(୨୭) ବର୍ତ୍ତମାନ ଜଳଚର ଜନ୍ତୁମାନଙ୍କ ଚମଡ଼ାର ବିବରଣୀ ସମ୍ବନ୍ଧରେ ଦିଆଯାଉଛି । ଭଦ୍ର (ଜଳମାର୍ଜ୍ଜାର)ର ଚର୍ମ ତିନିପ୍ରକାର—ସାତିନା, ନଳତୂଲା ଓ ବୃତ୍ତପୁଚ୍ଛା । ସାତିନାର ବର୍ଣ୍ଣ କଳା, ନଳତୂଲାର ବର୍ଣ୍ଣ ଚଢ଼ଅତୁଲାର ବର୍ଣ୍ଣପରି ଓ ବୃତ୍ତପୁଚ୍ଛାର ବର୍ଣ୍ଣ ହରିଦ୍ରା-କୃଷ୍ଣମିଶ୍ରିତ ବର୍ଣ୍ଣ (କପିଳବର୍ଣ୍ଣ) ଅଟେ । ଏପରି ନାନାଜାତି ଚମଡ଼ାମାନଙ୍କର ବିବରଣ ଏଠାରେ ଶେଷହେଲା । କୋମଳ, ଚିକ୍କଣ, ବହୁଳ ରୋମଯୁକ୍ତ ଚମଡ଼ାକୁ ଉତ୍ତମ ଚମଡ଼ା କହନ୍ତି । (୨୭) ଅବିକ (ମେଷଲୋମଜାତ ବସ୍ତ୍ର)ର ବର୍ଣ୍ଣ ତିନିପ୍ରକାର—ଶୁକ୍ଳ, ବିଶୁଦ୍ଧ ଲାଲ ଓ ଫାକୁଣ୍ଡିଆ । କ୍ରିୟାଭେଦରେ ଏହି ଊର୍ଣ୍ଣା (ମେଷଲୋମଜାତ ବସ୍ତ୍ରାଦି ପଦାର୍ଥ) ଚାରିପ୍ରକାର—ଖଚିତ, ବାନଚିତ୍ର, ଖଣ୍ଡସଂଘାତ୍ୟ ଓ ତନ୍ତୁବିଚ୍ଛିନ୍ନ । ସୂଚୀକର୍ମ କାର୍ଯ୍ୟଯୁକ୍ତ ଊନବସ୍ତ୍ରକୁ 'ଖଚିତ', ସୂଚୀକର୍ମ କାର୍ଯ୍ୟଦ୍ୱାରା ଚିତ୍ରବିଚିତ୍ର ହୋଇଥିବା ଊନବସ୍ତ୍ର (ଶାଲ୍ ଦୋଶାଲ୍ ପ୍ରଭୃତି)କୁ 'ବାନଚିତ୍ର', ସୂଚୀକର୍ମ କାର୍ଯ୍ୟଯୁକ୍ତ ବହୁଖଣ୍ଡ ମିଶ୍ରଣରେ ତିଆରି ହୋଇଥିବା ଊନବସ୍ତ୍ରକୁ 'ଖଣ୍ଡସଂଘାତ୍ୟ' ଏବଂ ଜାଲିଜାଲିଆ ଊନବସ୍ତ୍ରକୁ 'ତନ୍ତୁବିଚ୍ଛିନ୍ନ' କହନ୍ତି ।

ଊର୍ଣ୍ଣା (ଊନ) ବସ୍ତ୍ର ଦଶପ୍ରକାର—କମ୍ବଳ, କୌଚପକ ବା କୌଚପକ (ବଣୁଆମାନେ ମୁଣ୍ଡରେ ବ୍ୟବହାର କରିବା ରୋମଟୋପୀ ବା କମ୍ବଳ ଚଦର), କଳମିତିକା (ହାତୀ ଉପରେ ପକାଇବା କମ୍ବଳ 'ଝୁଲଣି'), ସୌମିତିକା (ହାଉଦାରେ ପକାଇବା କମ୍ବଳ), ତୁରଗା-

ଆବକମ୍ । ପିଚ୍ଛିଳମାର୍ଦ୍ରମିବ ଚ ସୂକ୍ଷ୍ମଂ ମୃଦୁ ଚ ଶ୍ରେଷ୍ଠମ୍ । (୨୮) ଅଷ୍ଟପ୍ଲୋତସଂଘାତ୍ୟା କୃଷ୍ଣା ଭିଂଗିସୀ ବର୍ଷବାରଣମ୍, ଅପସାରକ ଇତ ନୈପାଳକମ୍ । (୨୯) ସଂପୁଟିକା ଚତୁରଶ୍ରିକା ଲମ୍ବରା କଟବାନକଂ ପ୍ରାବରକଃ ସତ୍ତଲିକେତି ମୃଗରୋମ । (୩୦) ବାଙ୍ଗକଂ ଶ୍ୱେତଂ ସ୍ନିଗ୍ଧଂ ଦୁକୂଳଂ, ପୌଣ୍ଡ୍ରକଂ ଶ୍ୟାମଂ ମଣିସ୍ନିଗ୍ଧଂ, ସୌବର୍ଣ୍ଣକୁଡ୍ୟକଂ ସୂର୍ଯ୍ୟବର୍ଣ୍ଣମ୍ । ମଣିସ୍ନିଗ୍ଧୋଦକବାନଂ

---

ସ୍ତରଣ (ଘୋଡ଼ା ଉପରେ ପକାଇବା କମ୍ବଳ 'ଜିନ'), ବର୍ଣ୍ଣକ (ବନାତ), ତଳିଚ୍ଛକ (ଶେଯତଳେ ପକାଇବା କମ୍ବଳ), ବାରବାଣ (ଯାଞ୍ଜୁ କୋଟ), ପରିସ୍ତୋମ (ବିସ୍ତାର ଚିତ୍ରଥିବା ଓ ପକାଇ ବସିବା ବଡ଼ଚିତ୍ର କମ୍ବଳ), ସମନ୍ତଭଦ୍ରକ (ହାତୀର ପୃଷ୍ଠଦେଶ ଓ କଂଧ ଅଚ୍ଛାଦନ କରିବା କମ୍ବଳ ବିଶେଷ) । ଏଗୁଡ଼ିକ ମେଣ୍ଢାରୋମରେ ତିଆରି ହୋଇଥିବା ପଦାର୍ଥ । ପିଚ୍ଛିଳ (ହାତ ଦେଲମାତ୍ରେ ଯହିଁରୁ ହାତ ଖସିପଡ଼େ), ଆର୍ଦ୍ର (ଓଦା-ହୋଇଥିବାପରି ଦେଖାଯାଉଥାଏ ମାତ୍ର ଓଦା ନୁହେ), ସୂକ୍ଷ୍ମ (ପତଳା fine), ମୃଦୁ (କୋମଳ)—ଏ ଗୁଣପ୍ରକାର ଊନବସ୍ତ୍ର ଶ୍ରେଷ୍ଠ ଅଟେ । (୨୮) ଆଠଖଣ୍ଡ ଏକତ୍ର ଯୋଡ଼ା ଯାଇଥିବା ମେଷରୋମନିର୍ମିତ ବର୍ଷାରୁ ରକ୍ଷାପାଇବା ପାଇଁ ତିଆରି ହୋଇଥିବା କୃଷ୍ଣବର୍ଣ୍ଣ କମ୍ବଳକୁ 'ଭିଂଗିସୀ' ଓ ତମ୍ବୁରେ ବ୍ୟବହାର କରିପିବା କାଣ୍ଡପଟକୁ 'ଅପସାରକ' କହନ୍ତି । ଏହି ଦୁଇପ୍ରକାର ରୋମଜାତ ପଦାର୍ଥ ନେପାଳରେ ପ୍ରସ୍ତୁତ ହୁଏ । (୨୯) ଛପ୍ରକାର ମୃଗରୋମ-ଜାତ ବ୍ୟବହାର୍ଯ୍ୟ ବସ୍ତ୍ରାଦି ପଦାର୍ଥ—ସମ୍ପୁଟିକା (ଜଂଘିଆ), ଚତୁରଶ୍ରିକା (ଚ'ଅଙ୍ଗୁଳ କାନ୍ଥ ଓ ମୁହଁଥିବା ଗୁଦର ବା ବେଢ଼ାଣି), ଲମ୍ବରା (ଶେଜମରି ଓ ଉପରଣି ବସ୍ତ୍ର ବା କାଟେଣି curtain), କଟବାନକ (ଉପରୋକ୍ତ ପଦାର୍ଥର ମୋଟା ରକମ), ପ୍ରାବରକ (ମୁହଁକାନ୍ଥଥିବା ଅଙ୍ଗାବରଣ ରୋମ ବସ୍ତ୍ର), ସତ୍ତଲିକା (ସେତରଞ୍ଜି ଓ ତଳେପକାଇ ବସିବା ଖରଡ଼ି ପ୍ରଭୃତି) । ଏହାସବୁ ମୃଗରୋମରେ ନିର୍ମିତ ହୋଇଥାଏ । (୩୦) ବାଙ୍ଗକ (ବଂଗଦେଶ-ଜାତ ଚିକ୍କଣ ଓ ଶ୍ୱେତବର୍ଣ୍ଣ ପଟ୍ଟବସ୍ତ୍ର), ପୌଣ୍ଡ୍ରକ (ପୁଣ୍ଡ୍ରଦେଶଜାତ ମରକତମଣି ସଦୃଶ ଶ୍ୟାମବର୍ଣ୍ଣ ଚିକ୍କଣ ପଟ୍ଟବସ୍ତ୍ର), ସୌବର୍ଣ୍ଣକୁଡ୍ୟକ (କାମରୂପସ୍ଥ ସୁବର୍ଣ୍ଣକୁଡ୍ୟ ନାମକ ସ୍ଥାନଜାତ ଉଦୟସୂର୍ଯ୍ୟର ସଦୃଶ ବର୍ଣ୍ଣ

ଦକବାନଂ ଚତୁରସ୍ରବାନଂ ବ୍ୟାମିଶ୍ରବାନଂ ଚ । ଏତେଷାମେକାଂ-ଶୁକମଧ୍ୟର୍ଦ୍ଧଦ୍ୱିତ୍ରିଚତୁରଂଶୁକମିତ । ତେନ କାଶିକଂ ପୌଣ୍ଡ୍ରକଂ ଚ କ୍ଷୌମଂ ବ୍ୟାଖ୍ୟାତମ୍ । (୩୧) ମାଗଧିକା ପୌଣ୍ଡ୍ରିକା ସୌବର୍ଣ୍ଣକୁଡ୍ୟକା ଚ ପତ୍ରୋର୍ଣ୍ଣାଃ । ନାଗବୃକ୍ଷୋ ଲକୁଚେ ବକୁଳୋ-ବଟଶ୍ଚ ଯୋନୟଃ । ପୀତକା ନାଗବୃକ୍ଷିକା, ଗୋଧୂମବର୍ଣ୍ଣା ଲୈକୁଚୀ, ଶ୍ୱେତା ବାକୁଳୀ, ଶେଷା ନବନୀତବର୍ଣ୍ଣା । ତାସାଂ ସୌବର୍ଣ୍ଣକୁଡ୍ୟକା ଶ୍ରେଷ୍ଠା । ତୟା କୌଶେୟଂ ଚୀନପଟ୍ଟାଶ୍ଚ ଚୀନଭୂମିଜା ବ୍ୟାଖ୍ୟାତାଃ । ମାଧୁରମାପରାନ୍ତକଂ କାଲିଂଗକଂ

---

ପଟ୍ଟବସ୍ତ୍ର) । ଏପ୍ରମସ୍ତ ପଟ୍ଟବସ୍ତ୍ରର ବୁଣା ଚାରିପ୍ରକାର—ମଣିସ୍ନିଗ୍ଧୋଦକ-ବାନ (ବସ୍ତ୍ରର ସାଧନ ଦ୍ରବ୍ୟକୁ ପାଣିରେ ବୁଡ଼ାଇ, କଣରେ ଘଷି, ଗୁଡ଼ିଦାଗରେ ଫୁଲଫୁଟା ବୁଣା), ଚତୁରସ୍ରବାନ (ଚୌଘଣ୍ଟି-ଏକ୍ଲୀ ସୂତାବୁଣା), ବ୍ୟାମିଶ୍ରବାନ (କପାସୂତା ଓ ପାଟସୂତାର ଦୋଘଣ୍ଟି ବୁଣା) । ଏହି ବସ୍ତ୍ରଗୁଡ଼ିକ ଏକଖିଅ, ଦୋଖିଅ, ତିନିଖିଅ ଓ ଚାରିଖିଅ ହୋଇ ବୁଣାଯାଏ । ଏପରି କାଶୀରେ ଓ ପୌଣ୍ଡ୍ରଦେଶରେ ପ୍ରସ୍ତୁତହେବା ପଟ୍ଟବସ୍ତ୍ରର ବୁଣାଇ ବିଷୟ ଜାଣିବାକୁ ହେବ । (୩୧) ମାଗଧିକା, ପୌଣ୍ଡ୍ରିକା ଓ ସୌବର୍ଣ୍ଣକୁଡ୍ୟକା—ଏ ତିନିପ୍ରକାର କୋଷାରୁ ଜାତହେବା ସୂତା ଅଟେ । ନାଗେଶ୍ୱର, କେନ୍ଦୁ (ଲକୁଚ), ବଉଳ ଓ ବଟଗଛର ପତ୍ର ଏହାର ଉତ୍ପତ୍ତିସ୍ଥଳ । ନାଗେଶ୍ୱରବୃକ୍ଷ ପତ୍ରରୁ ଜାତହେବା କୋଷାସୂତା ହଳଦୀବର୍ଣ୍ଣ; କେନ୍ଦୁବୃକ୍ଷର ପତ୍ରରୁ ଜାତହେବା କୋଷାସୂତା ଗହମବର୍ଣ୍ଣ; ବଉଳଗଛର ପତ୍ରରୁ ଜାତହେବା କୋଷାସୂତା ଶ୍ୱେତବର୍ଣ୍ଣ ଏବଂ ବଟାଦି ଅନ୍ୟବୃକ୍ଷର ପତ୍ରରୁ ଜାତହେବା କୋଷାସୂତା ଲହୁଣୀବର୍ଣ୍ଣ । ଏମାନଙ୍କ ମଧ୍ୟରେ ସୁବର୍ଣ୍ଣକୁଡ୍ୟ ଦେଶୋତ୍ପନ୍ନ କୋଷାସୂତା ଶ୍ରେଷ୍ଠ । ଏପରି କୌଷେୟ (କୋଷାସୂତାରେ ତିଆରି ହେବା ପଟ୍ଟବସ୍ତ୍ର) ଓ ଚୀନଦେଶୀୟ ପଟ୍ଟବସ୍ତ୍ର-ମାନଙ୍କର ଉତ୍ପତ୍ତିସ୍ଥାନ ଏବଂ ବର୍ଣ୍ଣ ଜାଣିବାକୁ ହେବ ।

କାର୍ପାସିକ (କପାସୂତା) ତିଆରି ବସ୍ତ୍ରମାନଙ୍କ ମଧ୍ୟରେ ମାଧୁର

କାଶିକଂ ବାଙ୍ଗକଂ ବାତ୍ସକଂ ମାହିଷକଂ ଚ କାର୍ପାସିକଂ ଶ୍ରେଷ୍ଠମିତି ।

* (୩୨) ଅତଃ ପରେଷାଂ ରତ୍ନାନାଂ ପ୍ରମାଣଂ ମୂଲ୍ୟଲକ୍ଷଣମ୍ ।
ଜାତିଂ ରୂପଂ ଚ ଜାନୀୟାନ୍ନିଧାନଂ ନବକର୍ମ ଚ ॥

---

(ମଧୁରା ନାମକ ପାଣ୍ଡ୍ୟ ରାଜଧାନୀ—ଆଧୁନିକ ମଦୁରା), ଅପରାନ୍ତକ (କୋଙ୍କଣ), କଳିଙ୍ଗ, କାଶୀ, ବଙ୍ଗ, ବତ୍ସ ଓ ମହିଷକ ଦେଶଜାତ କାର୍ପାସବସ୍ତ୍ର ଶ୍ରେଷ୍ଠ ଅଟେ ।

(୩୨) ଉପରୋକ୍ତ ରତ୍ନାଦି ପଦାର୍ଥର ପ୍ରମାଣ, ମୂଲ୍ୟ, ଲକ୍ଷଣ, ଜାତି, ରୂପ, ଖଣି (ଉତ୍ପତ୍ତିସ୍ଥାନ) ଏବଂ ଏମାନଙ୍କର ଶୋଧନ, ଘର୍ଷଣ, ବେଧନ ପ୍ରଭୃତି ନୂତନ ସଂସ୍କାରକୁ କୋଶାଧ୍ୟକ୍ଷ ଜାଣିବାକୁ ହେବ ।

---

* ମୂଲ୍ୟଲକ୍ଷଣଂ, ଯଥା :—

ଦ୍ୱେ ଶତେ ଯଦ୍ ଧୃତଂ ରତ୍ନଂ ତଣ୍ଡୁଲାନାଂ ପ୍ରମାଣତଃ ।
ଶତଦ୍ୱୟଂ ସହସ୍ରାଣାଂ ତସ୍ୟ ମୂଲ୍ୟଂ ପ୍ରକୀର୍ତ୍ତିତମ୍ ॥

ଶୁଦ୍ଧମଣିର ଲକ୍ଷଣ, ଯଥା :—

କ୍ଷୀରକୁମ୍ଭେ ମଣିଃ କ୍ଷିପ୍ତୋ ଯୋ ରଂଜୟତି ତେଜସା ।
ଶୁକ୍ଳତ୍ୱଂ ଦ୍ୱେକ୍ଷ୍ୟତୋ ଯାତି ତଂ ଶୁଦ୍ଧମିତି ନିର୍ଦ୍ଦିଶେତ୍ ॥

ପୁରାଣପ୍ରତିସଂସ୍କାର, ଯଥା :—

ଅତିବେଗାଦସଂବେଗାଦ୍ ଧୂମାଗ୍ନି ସ୍ୱେଦଘର୍ଷଣାତ୍ ।
ଭୂମ୍ୟମ୍ଳଲବଣୈଶ୍ଚାପି ମୁକ୍ତାବର୍ଣ୍ଣୌ ବିରଜ୍ୟତେ ॥

ମୌକ୍ତିକଂ ମଣୟୋ ବଜ୍ରଂ ପ୍ରବାଳଂ ଚ ସମାସତଃ ।
ରତ୍ନଂ ଚତୁର୍ବିଧଂ ପ୍ରୋକ୍ତଂ ସାରାଃ ପଞ୍ଚବିଧା ମତାଃ ॥

ଚନ୍ଦନାଗୁରୁଣୀ ଶ୍ରେଷ୍ଠେ ମଧ୍ୟମଂ ତୈଳପାର୍ଣିକମ୍ ।
ଭଦ୍ରଶ୍ରୀୟଂ ଚ ଜାନୀୟାତ୍ କାଲେୟକମଥେତରତ୍ ॥

ଚର୍ମାଣ୍ୟମୃଗରୋମାଣି ଦୁକୂଲଂ କ୍ଷୌମଜାତୟଃ ।
କର୍ପାସିକଂ ଚ ପତ୍ରୋର୍ଣଂ କୌଶେୟଂ ଫଲ୍‌ଗୁ ଗୃହ୍ଣାତି ଧା ॥

କୁପ୍ୟଂ କୁପ୍ୟାଧ୍ୟକ୍ଷ ପ୍ରୋକ୍ତମିତ୍ୟତ ନୋଦିତମ୍ ।
ମୁକ୍ତାଫଲାଦ୍ୟଶେଷାସ୍ତୁ ଭେଦାଃ ସପ୍ତଦଶୋଦିତାଃ ॥

(ଭଟ୍ଟସ୍ୱାମିନ୍ ସଂସଗ୍ରହାଃ) ।

(୩୩) ପୁରାଣପ୍ରଡସଂସ୍କାରଂ କର୍ମଗୁହ୍ୟମୁପସ୍କରାନ୍ ।
ଦେଶକାଳପରିଭୋଗଂ ହ୍ରଂସ୍ରାଣାଂ ଚ ପ୍ରତକ୍ରିୟାମ୍ ॥

## ଦ୍ୱାଦଶୋଽଧ୍ୟାୟଃ

## ତ୍ରିଂଶ ପ୍ରକରଣମ୍—ଆକର କର୍ମାନ୍ତ ପ୍ରବର୍ତ୍ତନମ୍

## CONDUCTING MINING OPERATION AND MANUFACTURE

(ସୁବର୍ଣ୍ଣାଦ ଉତ୍ପତ୍ତି ସ୍ଥାନର ଅନୁକୂଳ ହେବା କାର୍ଯ୍ୟାନୁଷ୍ଠାନ ଅର୍ଥାତ୍ ଖଣିକାର୍ଯ୍ୟ ଅନୁଷ୍ଠାନ ।)

(୧) ଆକରାଧ୍ୟକ୍ଷଃ ଶୁଲ୍ବଧାତୁଶାସ୍ତ୍ରରସପାକମଣିରାଗଜ୍ଞ- ସ୍ତଜ୍ଜସଖୋ ବା ତଜ୍ଜାତକର୍ମକରୋପକରଣସଂପନ୍ନଃ କଟ-

---

(୩୩) ପୁରାତନ ରତ୍ନର ପ୍ରତସଂସ୍କାର ରତ୍ନମାନଙ୍କ ଗୋପନପ୍ରକାର (ନକଲପ୍ରକାର) ଉପସ୍କର ରତ୍ନମାନଙ୍କୁ ସାଫ କରିବା ଉପକରଣ, ଦେଶ କାଳ ଅନୁସାରେ ଏମାନଙ୍କ ଉପଭୋଗ, ସୂଚିକାଦ ବସ୍ତ୍ରଶତ୍ରୁମାନଙ୍କ ପ୍ରତକାରକୁ ମଧ୍ୟ କୋଶାଧ୍ୟକ୍ଷ ଜାଣିବାକୁ ହେବ ।

ଇତ କୌଟଲୀୟସ୍ୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଏକାଦଶୋଽଧ୍ୟାୟଃ । କୋଶପ୍ରବେଶ୍ୟ ରତ୍ନପରୀକ୍ଷା— ଆଦତୋ ଦ୍ୱାତ୍ରିଂଶଃ ।

(୧) ଅକରାଧ୍ୟକ୍ଷ ଶୁଲ୍ବଶାସ୍ତ୍ର ('ଶାକଲ' ପ୍ରଭୃତ ଭୂମିବଜ୍ଞାନଶାସ୍ତ୍ର ଅଥବା ତାମ୍ର, ରଜତ [ରୂପା], ସୁବର୍ଣ୍ଣ ପ୍ରଭୃତର ଉତ୍ପତ୍ତିବଜ୍ଞାନଶାସ୍ତ୍ର), ଧାତୁଶାସ୍ତ୍ର (ପାରଦ, ଗନ୍ଧକ, ସାଜୀକ୍ଷାର ପ୍ରଭୃତର ସତ୍ତ୍ୱପାତନ ଉପଦେଶକ ଧାତୁ କୌଟଲ୍ୟାଦ ଶାସ୍ତ୍ର), ରସଶାସ୍ତ୍ର (ରସବନ୍ଧବଜ୍ଞ, ନରସୋପନିଷତ୍), ପାକଶାସ୍ତ୍ର (ସୁବର୍ଣ୍ଣ ରଜତାଦର ବର୍ଣ୍ଣୋତ୍କର୍ଷକାରକ ପୁଟପାକ ପ୍ରଭୃତ ଅଗ୍ନିପାକ କ୍ରିୟାବୋଧକ ଶାସ୍ତ୍ର) ଓ ମଣିରାଗ ଶାସ୍ତ୍ର (ମଣିମାନଙ୍କର

ମୂଷାଂଗାରଭସ୍ମଲିଂଗଂ ବାକରଂ ଭୂତପୂର୍ବମଭୂତପୂର୍ବଂ ବା ଭୂମିପ୍ରସ୍ତର-ରସଧାତୁମତ୍ୟର୍ଥବର୍ଣଗୌରବମୁଗ୍ରଗନ୍ଧରସଂ ପରୀକ୍ଷେତ । (୨) ପର୍ବତାନାମଭିଜ୍ଞାତୋଦ୍ଦେଶାନାଂ ବିଳଗୁହୋପତ୍ୟକାଳୟନ ଗୂଢ଼ଖାତେଷ୍ୱନ୍ତଃପ୍ରସ୍ୟନ୍ଦିନୋ ଜମ୍ବୂଚୂତତାଳଫଳପକ୍ୱହରିଦ୍ରାଭେଦ-ହରତାଳକ୍ଷୌଦ୍ରହିଙ୍ଗୁଳକପୁଣ୍ଡରୀକଶୁକମୟୂରପତ୍ରବର୍ଣାଃ ସବର୍ଣୋ-ଦକୌଷଧିପର୍ଯନ୍ତାଃ ଚିକ୍କଣା ବିଶଦା ଭାରବନ୍ତଶ୍ଚ ରସାଃ କାଞ୍ଚନିକାଃ । (୩) ଅପ୍ସୁ ନିଷ୍ଠ୍ୟୂତାସ୍ତୈଳବଦ୍ୱିସର୍ପିଣଃ ପଙ୍କମଳଗ୍ରାହିଣଶ୍ଚ

ବର୍ଣ୍ଣଭେଦବୋଧକ ଶାସ୍ତ୍ର) ବିଶାରଦ, ଉକ୍ତ ଶାସ୍ତ୍ରମାନଙ୍କରେ ଅଭିଜ୍ଞତା ଲାଭ କରିଥିବା ବିଶେଷଜ୍ଞମାନଙ୍କ ସହାୟତାପ୍ରାପ୍ତ ଏବଂ ଖନିକାର୍ଯ୍ୟ ସଂପାଦନ ସକାଶେ ଅଭ୍ୟସ୍ତ ହୋଇଥିବା କର୍ମଗୃହୀ, ଶ୍ରମିକ ଓ ଉକ୍ତ କାର୍ଯ୍ୟ କରିବାପାଇଁ ଆବଶ୍ୟକୀୟ ଖଣତି, ଭସ୍ତ୍ରା (ଭାତି ବା ଜନ୍ତି), ସଣ୍ଡାସି, କୋଡ଼ି, ସାବଳ, କୁଦ୍ଦାଳ ପ୍ରଭୃତି ଉପକରଣ ସାହାଯ୍ୟରେ ଲୌହମଳ, ଧାତୁ ତରଳାଇବା ହାଣ୍ଡି, ଅଙ୍ଗାର, ପାଉଁଶଯୁକ୍ତ ସ୍ଥାନରେ ପୁରାତନ ଖଣି ଏବଂ ଚକଚକିଆ ମାଟି, ପଥର ଓ ରସଧାତୁଥିବା ସ୍ଥାନର ବର୍ଣ୍ଣ, ଗୁରୁତା (ଭାର) ଓ ଉଗ୍ରଗନ୍ଧକୁ ପରୀକ୍ଷାକରି ଏଠାରେ (ନୂତନ) ଖଣି ଅଛି ବୋଲି ସ୍ଥିର କରିବେ । (୨) ପୂର୍ବପରୀକ୍ଷକମାନେ ଯେଉଁସବୁ ପର୍ବତମାନଙ୍କରେ ଖଣିର ଅନୁସନ୍ଧାନ କରିଥିଲେ ସେହି ପର୍ବତମାନଙ୍କର ବିଭିନ୍ନ ଜାଗାରେ ଥିବା ବିଲ, ଗୁହା, ଉପତ୍ୟକା (ପର୍ବତ ନିକଟ ଭୂମି), ଲୟନ (ଘରପରି ଖୋଲା ହୋଇଥିବା ପଥରଗୁମ୍ଫା), ଗୂଢ଼ ଖାତ (ଗୁପ୍ତ ଗାତ)—ଏ ପାଞ୍ଚ ସ୍ଥାନ ମଧ୍ୟରୁ ଝରୁଥିବା ଜାମ୍ବୁ (ମହୁଆ), ଆମ୍ବ, ତାଳ, ପାଚିଲାହଳଦୀ, ହରିତାଳ, ମହୁ, ହିଙ୍ଗୁଳ, ଶୁକ୍ଳପଦ୍ମ, ଶୁଆପକ୍ଷି ଓ ମୟୂରପକ୍ଷି ସଦୃଶ ବର୍ଣ୍ଣଯୁକ୍ତ ହୋଇଥିବା, ଝରଣର ପାର୍ଶ୍ୱଗୁଡ଼ିକ ସୁବର୍ଣ୍ଣବର୍ଣ୍ଣ ଦେଖାଯାଉଥିବା, ଚିକ୍କଣ, ନିର୍ମଳ ଓ ଭାରି ହୋଇଥିବା ଜଳ ସୁବର୍ଣ୍ଣଖଣିର ସୂଚକ ଅଟେ । (୩) ଯଦି ଉପରୋକ୍ତ ଝରଣ ଜଳ ଅନ୍ୟ କୌଣସି ଗୋଳିଆ ଜଳରେ ମିଶାଯାଏ ତେବେ ତାହା ପାଣିରେ ତୈଳବିନ୍ଦୁ ପରି ବିସ୍ତୃତ ହୋଇଯାଏ ଏବଂ କାଦୁଅପରି ଜଳକୁ ସଫାକରି ତାର ମଇଳାକୁ ତଳକୁ ନେଇଯାଏ । ଶତେ ପଳ

ତାମ୍ରରୂପ୍ୟୟୋଃ ଶତାଦୁପର ବେଦ୍ଧାରଃ । (୪) ତତ୍ପ୍ରତରୂପକ ମୁଗ୍ରଗନ୍ଧରସଂ ଶିଳାଜତୁ ବିଦ୍ୟାତ୍ । (୫) ପୀତକାସ୍ତାମ୍ରକା-ସ୍ତାମ୍ରପୀତକା ବା ଭୂମିପ୍ରସ୍ତରଧାତବୋ ଭିନ୍ନା ନୀଳରାଜୀମନ୍ତୋ ମୁଦ୍‌ଗମାଷକୃସରବର୍ଣା ବା ଦଧିବିନ୍ଦୁପିଣ୍ଡଚିତ୍ରା ହରିଦ୍ରାହରୀତକୀ-ପଦ୍ମପତ୍ରଶୈବଳଯକୃତ୍ପ୍ଲୀହାନବଦ୍ୟବର୍ଣା ଭିନ୍ନାଶ୍ଚୁଞ୍ଚୁବାଳୁକା-ଲେଖାବିନ୍ଦୁସ୍ୱସ୍ତିକବନ୍ତଃ ସଗୁଳିକା ଅର୍ଚିଷ୍ମନ୍ତସ୍ତାପ୍ୟମାନା ନ ଭିଦ୍ୟନ୍ତେ ବହୁଫେନଧୂମାଶ୍ଚ ସୁବର୍ଣଧାତବଃ ପ୍ରତୀବାପାର୍ଥା-

---

ତମ୍ବା କମ୍ବା ରୁପାରେ ଏକପଲ ଏହି ଜଲକୁ ବେଧଶାସ୍ତ୍ର ନିୟମରେ ପକାଇଲେ ଉକ୍ତ ତମ୍ବା କମ୍ବା ରୁପାକୁ ସୁବର୍ଣ୍ଣବର୍ଣ୍ଣ ପ୍ରଦାନ କରେ । (୪) ଏହି ଜଳ ସଦୃଶ, ଉଗ୍ରଗନ୍ଧଯୁକ୍ତ ଓ ଉଗ୍ର-କଟୁ-ତିକ୍ତ ଆସ୍ୱାଦଯୁକ୍ତ ରସପଦାର୍ଥ ଉପରୋକ୍ତ ବିଲ ଗୁହା ଇତ୍ୟାଦିରୁ ଝରୁଥିଲେ ସେଥିରେ ଶିଳାଜତୁ ଅର୍ଥାତ୍ ସ୍ୱର୍ଣ୍ଣଶିଳାଜତୁ ଅଛି ବୋଲି ଜାଣିବାକୁ ହେବ । (୫) ଉପରୋକ୍ତ ଗୁହା ଇତ୍ୟାଦିରେ ଥିବା ସ୍ୱର୍ଣ୍ଣଧାତୁମିଶ୍ରିତ ମୃତ୍ତିକାଖଣ୍ଡ ଏବଂ ପ୍ରସ୍ତରଖଣ୍ଡ କେବଳ ହଳଦୀବର୍ଣ୍ଣ, ତାମ୍ରବର୍ଣ୍ଣ ବା ରକ୍ତପୀତମିଶ୍ରିତ ବର୍ଣ୍ଣ ଅଟେ । ଏଗୁଡ଼ିକୁ ଭାଙ୍ଗିଲେ ଭିତରେ ନୀଳବର୍ଣ୍ଣ ରେଖା କମ୍ବା ମୁଗ, ବିରି ଓ ତିଳଦୁଗ୍ଧମିଶ୍ରିତ ଅନ୍ନ (କ୍ଷୀରରେ ପାକକରାଯାଇଥିବା ଖେସାଙ୍କିରପରି ବର୍ଣ୍ଣ) ଅଥବା ଦହିପିଣ୍ଡୁଳାମାନଙ୍କରେ ରଚିତ ହେଲାପରି ବର୍ଣ୍ଣ ବା ହଳଦୀ, ହରଡ଼ା, ପଦ୍ମପତ୍ର, ଶିଅଳ, କାଳିଜ ଓ ପ୍ଲୀହାପରି ନିର୍ଦୋଷବର୍ଣ୍ଣ ଦେଖାଗଲେ, ବିଶେଷତଃ ଉକ୍ତ ଧାତୁମିଶ୍ରିତ ମୃତ୍ତିକା ବା ପ୍ରସ୍ତରପିଣ୍ଡକୁ ଭାଙ୍ଗିଲେ ତା'ଭିତରେ ଚନ୍ଦ୍ରିକା (ଚୁଞ୍ଚୁବାଲୁକା) ବା ସୁନାବାଲିପରି, ସ୍ୱର୍ଣ୍ଣବର୍ଣ୍ଣରେଖା କମ୍ବା ସ୍ୱର୍ଣ୍ଣବର୍ଣ୍ଣ ସ୍ୱସ୍ତିକ ଆକାର ରେଖା (卐), ଅଥବା ସୁନାଗୁଳି ଆକାରର ଚକ୍‌କା ଓ ସୁବର୍ଣ୍ଣପରି ଆଭା ଦେଖାଯାଏ । ଏହି ଧାତୁମିଶ୍ରିତ ମୃତ୍ତିକା ଓ ପ୍ରସ୍ତରଖଣ୍ଡକୁ ନିଆଁରେ ତତାଇଲେ ତାହା ଖଣ୍ଡ ଖଣ୍ଡ ନ ହୋଇ ସେଥିରୁ ପ୍ରଚୁର ଫେନ ଓ ଧୂମ ନିର୍ଗତ ହୁଏ । ଏହି ଧାତୁମିଶ୍ରିତ ମୃତ୍ତିକା ଓ ପ୍ରସ୍ତରପିଣ୍ଡକୁ ଗୁଣ୍ଡକରି ତରଳାହୋଇଥିବା ତମ୍ବା ଓ ରୁପାରେ ନିକ୍ଷେପ କଲେ ଉକ୍ତ ତମ୍ବା ଓ ରୁପା ସୁବର୍ଣ୍ଣଧାତୁରେ ପରିଣତ ହୁଏ ।

ସ୍ତାମ୍ରରୂପ୍ୟବେଧନାଃ । (୭) ଶଙ୍ଖକର୍ପୂରସ୍ଫଟିକନବନୀତକପୋତ-ପାରାବତବିମଳକମୟୂରଗ୍ରୀବାବର୍ଣ୍ଣାଃ ସସ୍ୟକଗୋମେଦକଗୁଡ଼-ମତ୍ସ୍ୟଣ୍ଡିକାବର୍ଣ୍ଣାଃ * କୋବିଦାରପଦ୍ମପାଟଳୀକଳାୟ କ୍ଷୌମାତସୀ-ପୁଷ୍ପବର୍ଣ୍ଣାଃ ସସୀସାଃ ସାଞ୍ଜନା ବିସ୍ରା ଭିନ୍ନାଃ ଶ୍ୱେତାଭାଃ କୃଷ୍ଣାଃ କୃଷ୍ଣାଭାଃ ଶ୍ୱେତାଃ ସର୍ବେ ବା ଲେଖାବିନ୍ଦୁଚିତ୍ରା ମୃଦବୋ ଧ୍ମାୟମାନା ନ ସ୍ଫୁଟନ୍ତି ବହୁଫେନଧୂମାଶ୍ଚ ରୂପ୍ୟଧାତବଃ । (୭) ସର୍ବଧାତୂନାଂ ଗୌରବବୃଦ୍ଧୌ ସତ୍ତ୍ୱବୃଦ୍ଧିଃ । ତେଷାମଶୁଦ୍ଧା

(୭) ଯେଉଁ ଧାତୁମିଶ୍ରିତ ମୃତ୍ତିକାପିଣ୍ଡ ଶଙ୍ଖ, କର୍ପୂର, ସ୍ଫଟିକ, ନବନୀତ (ନହୁଣୀ), କପୋତ (ବନ୍ୟକଳରବ ବା ବଣକାବିଡା), ପାରାବତ (ପାରା), ବିମଳକ (ଶ୍ୱେତରକ୍ତବର୍ଣ୍ଣ ମଣିବିଶେଷ) ଓ ମୟୂରଗ୍ରୀବା ବର୍ଣ୍ଣ; ସସ୍ୟକ (ନୀଳମଣି), ଗୋମେଦକ (ମଣିବିଶେଷ), ଗୁଡ଼ (ପିଣ୍ଡଶର୍କରା) ଓ ମିଶ୍ରିବର୍ଣ୍ଣ ଏବଂ କାଞ୍ଚଣ, ପଦ୍ମ, ପାଟଳୀ, କଳାୟ (ସତାନକ), କ୍ଷୌମ (କ୍ଷୁମାଭେଦ) ଓ ଅତସୀପୁଷ୍ପ ବର୍ଣ୍ଣବିଶିଷ୍ଟ, ସୀସାଧାତୁଯୁକ୍ତ, ଶ୍ୱେତାଞ୍ଜନଯୁକ୍ତ, ଦୁର୍ଗନ୍ଧ, ଭାଙ୍ଗିଦେଲେ ଶ୍ୱେତାଭ କୃଷ୍ଣ (ମଧ୍ୟରେ କୃଷ୍ଣବର୍ଣ୍ଣ ଓ ସବୁଜ ଶୁକ୍ଳ) ବର୍ଣ୍ଣ, କୃଷ୍ଣାଭ ଶ୍ୱେତ (ମଧ୍ୟରେ ଶୁକ୍ଳବର୍ଣ୍ଣ ଓ ସବୁଜ କୃଷ୍ଣ) ବର୍ଣ୍ଣ ଅଥବା ଉପରୋକ୍ତ ଶଙ୍ଖାଦି ଅଷ୍ଟାଦଶ ପଦାର୍ଥ ବର୍ଣ୍ଣର ମିଶ୍ରିତବର୍ଣ୍ଣବିଶିଷ୍ଟ ରେଖା ଓ ବିନ୍ଦୁଦ୍ୱାରା ଚିହ୍ନିତ ହେବାପରି ଦେଖାଯାଏ; କୋମଳ ଅଗ୍ନିଦ୍ୱାରା ଉତ୍ତପ୍ତ କଲେ ମଧ୍ୟ ଯେ ଭାଙ୍ଗେନାହିଁ ଅଥଚ ଯହିଁରୁ ବହୁତ ଫେନ ଏବଂ ଧୂମ ବାହାରେ, ସେଥିରେ ରୂପ୍ୟଧାତୁ ଅଛି ବୋଲି ଜାଣିବେ ଏବଂ ଏପରି ଧାତୁମିଶ୍ରିତ ମୃତ୍ତିକାଥିବା ସ୍ଥାନରେ ରୂପାଖଣି ଅଛି ବୋଲି ଜାଣିବେ । (୭) ଯେଉଁ ଧାତୁମୟ ମୃତ୍ତିକାପିଣ୍ଡ ଯେତେ ପରିମାଣରେ ଅଧିକ ଭାରି ଥାଏ, ସେଥିରେ ସେତେ ପରିମାଣରେ ଅଧିକ ଧାତୁଭାଗ ଅଛି ବୋଲି ଜାଣିବାକୁ ହେବ । ଏହି ଧାତୁପିଣ୍ଡମାନଙ୍କ ମଧ୍ୟରେ ଯେଉଁ ଅଶୁଦ୍ଧ ଓ ମୂଢ଼ଗର୍ଭ (ଦୋଷଯୁକ୍ତ

* କୋବିଦାର-କାଞ୍ଚଣ—Bauhnia Variegata; ପାଟଳୀ—Bignonia Suoveolens; କଳାୟ—A kind of phraseolus; କ୍ଷୌମ—Flax; ଅତସୀ—Dinum Usitatissimum or Linum Usiffaissimum; ଅଞ୍ଜନ—Lead, Iron; ଗୋମେଦକ—Agate.

ମୂଢ଼ଗର୍ଭା ବା ତୀକ୍ଷ୍ଣମୂତ୍ରକ୍ଷାରଭାବିତା * ରାଜବୃକ୍ଷବଟପୀଲୁଗୋପିତ୍ତରୋଚନାମହିଷଖରକରଭମୂତ୍ରଲଣ୍ଡପିଣ୍ଡବଦ୍ଧାସ୍ତତ୍ପ୍ରତୀବାପାସ୍ତଦବଲେପା ବା ବିଶୁଦ୍ଧାଃ ସ୍ରବନ୍ତି । ଯବମାଷତିଲପଲାଶପୀଲୁକ୍ଷାରୈର୍ଗୋକ୍ଷୀରଜକ୍ଷୀରୈର୍ବା କଦଳୀବଜ୍ରକନ୍ଦପ୍ରତୀବାପୋମାର୍ଦ୍ଦବକରଃ ।

(୮) ମଧୁ ମଧୁକମଜାପୟଃ ସତୈଳଂ ଘୃତଗୁଡ଼କିଣ୍ୱଯୁତଂ ସକନ୍ଦଳୀକମ୍ । ଯଦପି ଶତସହସ୍ରଧା ବିଭିନ୍ନଂ ଭବତି ମୃଦୁ ତ୍ରିଭିରେବ

---

ହୋଇଥିବା ଯୋଗୁଁ ଯାହାର ଧାତୁସାର ଥିବା ଜଣାଯାଏ ନାହିଁ) ବା ମଳପୂର୍ଣ୍ଣ ପିଣ୍ଡ ଥାଏ ତାହାକୁ ତୀକ୍ଷ୍ଣମୂତ୍ର (ମନୁଷ୍ୟମୂତ୍ର ବା ହସ୍ତୀ, ଅଶ୍ୱ, ଗୋ, ଗର୍ଦ୍ଦଭ ଓ ଉଷ୍ଟ୍ରମୂତ୍ର), ତୀକ୍ଷ୍ଣକ୍ଷାର (ସିଜୁ, କଦଳୀପତ୍ର ଓ ଅପାମାର୍ଗକ୍ଷାର)ରେ ଭାବନା ଦେଇ (ବତୁରାଇ ଓ ଶୁଖାଇ) ସୁନାରି, ବଟ, ପୀଲୁ (ଗୁଡ଼ଫଳୀ ଗଛ), ଗୋପିତ୍ତ ଓ ଗୋରୋଚନାକୁ ମଇଁଷି, ଗଧ ଓ ଓଟପିଲର ମଳମୂତ୍ରରେ ବାଟି ଉପରୋକ୍ତ ତୀକ୍ଷ୍ଣମୂତ୍ରାଦିରେ ବତୁରାହୋଇ ଶୁଖାହୋଇଥିବା ଧାତୁ-ମୃତ୍ତିକା ଚୂର୍ଣ୍ଣକୁ ଏହି କଳ୍କ (ବଟା) ସହିତ ମିଶାଇ ଗୁଳା ବାନ୍ଧିଲେ ବା ସୁନାରିଗଛ ପ୍ରଭୃତିର ଚୂର୍ଣ୍ଣ ଏଥିରେ ମିଶାଇଲେ ଅଥବା ଉପରୋକ୍ତ ମହିଷାଦି ମୂତ୍ରରେ ବଟା ହୋଇଥିବା ଏହି ସୁନାରି ପ୍ରଭୃତି ଗଛର କଳ୍କ ଉକ୍ତ ଶୁଦ୍ଧ ଧାତୁପିଣ୍ଡରେ ଲେପନ କରି ଦ୍ରବୀଭୂତ କଲେ ଧାତୁପିଣ୍ଡ ଦ୍ରବ୍ୟାନ୍ତର ସଂସର୍ଗଜଦୋଷ ନିର୍ମୁକ୍ତ ହୋଇ ବିଶୁଦ୍ଧ ହେବାଦ୍ୱାରା ତହିଁରୁ ଶୁଦ୍ଧଧାତୁସତ୍ତ୍ୱ ନିର୍ଗତ ହୁଏ । ଯବଧାନ, ବିରି, ରାଶି (ତିଳ), ପଲାଶ ଓ ଗୁଡ଼ଫଳର କ୍ଷାରକୁ ଗାଈ କିମ୍ବା ଛେଳିକ୍ଷୀରରେ କଦଳୀକନ୍ଦା ଓ ବଣଓଲ ସହିତ ବାଟି ଶୁଦ୍ଧଧାତୁରେ ଲେପନ କଲେ ଏହି ବିଶୁଦ୍ଧ ଧାତୁ କୋମଳ ହୋଇଯାଏ । (୮) ମହୁ, ଯାଠିମହୁ, ଛେଳିକ୍ଷୀର, ତେଲ, ଘିଅ, ଗୁଡ଼, ସୁରାବୀଜ (କିଣ୍ୱ), କନ୍ଦଳୀ (ମାଣକନ୍ଦା ଓ କଦଳୀକନ୍ଦା)ର

---

* ଆରଗ୍ୱଧେ ରାଜବୃକ୍ଷ ଶମ୍ପାକଚତୁରଙ୍ଗୁଳାଃ । ଇତ୍ୟମରଃ ।

ମତାନ୍ତରରେ ଶତସହସ୍ର ପ୍ରହାରରେ ଯେଉଁ ଧାତୁ ଖଣ୍ଡ ଖଣ୍ଡ ହୋଇନଥାଏ ତାହା ଉକ୍ତ କଳ୍କରେ ତିନିଥର ଭାବିତ ହେଲେ ନରମ ହୋଇଯାଏ ।

ରାଜବୃକ୍ଷ=ସୁନାରି ଗଛ—Clitoria Ternacia; ବଟ—Ficus Indica; ପୀଲୁ=ଗୁଡ଼ଫଳୀ—Carnea Arboria; ମଧୂକ=ଯାଠିମଧୁ—Bassia Latifolia; କିଣ୍ୱ=ସୁରାବୀଜ—Yeast, Ferment.

ତନ୍ନିକ୍ଷେପୈଃ । (୯) ଗୋଦନ୍ତଶୃଙ୍ଗପ୍ରତୀବାପୋ ମୃଦୁସ୍ତମ୍ଭନଃ । (୧୦) ଖରକଃ ସ୍ନିଗ୍ଧୋ ମୃଦୁଶ୍ଚ ପ୍ରସ୍ତରଧାତୁର୍ଭୂମିଭାଗୋ ବା ପିଙ୍ଗଳୋ ହରିତଃ ପାଟଳୋ ଲୋହିତୋ ବା ତାମ୍ରଧାତୁଃ । କାକମେଚକଃ କପୋତରୋଚନାବର୍ଣଃ ଶ୍ୱେତରାଜିନଦ୍ଧୋ ବା ବସ୍ରଃ ସୀସଧାତୁଃ । ଉଷରକର୍ବୁରଃ ପକ୍ୱଲୋଷ୍ଟବର୍ଣୋ ବା ତ୍ରପୁଧାତୁଃ । କୁରୁମ୍ବଃ ପାଣ୍ଡୁରୋହିତଃ ସିନ୍ଧୁବାରପୁଷ୍ପବର୍ଣୋ ବା ତୀକ୍ଷ୍ଣଧାତୁଃ । କାକାଣ୍ଡଭୁଜପତ୍ରବର୍ଣୋ ବା ବୈକୃନ୍ତକଧାତୁଃ ।

---

ମିଳିତ କଲ୍କ ସହିତ ତିନଥର ଦ୍ରବିତ ହେଲେ, ଯେଉଁ ଧାତୁଖଣ୍ଡ ନାନାପ୍ରକାର କାଠିନ୍ୟଯୁକ୍ତ ହୋଇଥାଏ, ତାହା ମଧ୍ୟ କୋମଳ ହୋଇଯାଏ । (୯) ଗୋଦନ୍ତ ଓ ଗୋଶୃଙ୍ଗର ଚୂର୍ଣ୍ଣ ଦ୍ରୁତସୁବର୍ଣ୍ଣାଦିରେ (ମହୁ, ଯଠିମଧୁ ପ୍ରଭୃତିରେ ଦ୍ରବ ହୋଇଯାଇଥିବା ସୁବର୍ଣ୍ଣାଦି ଧାତୁରେ) ନିକ୍ଷେପକଲେ ତାହାର କୋମଳତା ନଷ୍ଟହୋଇ କଠିନତା ଜାତହୁଏ ।

ଇତି ସ୍ୱର୍ଣ୍ଣରୂପ୍ୟଧାତୁ ପ୍ରକରଣମ୍ ।

(୧୦) ଯେଉଁ ସ୍ଥାନରେ ଭାରି, ଚିକ୍କଣ ଓ କୋମଳ ଧାତୁ ପାଷାଣ ବା ଧାତୁମୃତ୍ତିକା ଦେଖାଯାଏ ଏବଂ ଏହାର ବର୍ଣ୍ଣ ଯଦି ପିଙ୍ଗଳ (ନୀଳପୀତମିଶ୍ରିତ ବର୍ଣ୍ଣ), ହରିତ୍ (ସବୁଜ), ପାଟଳ (ଶ୍ୱେତରକ୍ତମିଶ୍ରିତ ବର୍ଣ୍ଣ) ଅଥବା ଲୋହିତ ବର୍ଣ୍ଣ (ଗାଢ଼ରଙ୍ଗ) ଦେଖାଯାଏ, ତେବେ ସେହିସ୍ଥାନରେ ତାମ୍ରଧାତୁ ଖଣି ଅଛି ବୋଲି ଜାଣିବେ । ଯେଉଁ ସ୍ଥାନ କାକପରି କୃଷ୍ଣବର୍ଣ୍ଣ, କପୋତ ଓ ଗୋରୋଚନା ବର୍ଣ୍ଣ, ଧବଳରେଖାବହୁଳ ଓ ଦୁର୍ଗନ୍ଧଯୁକ୍ତ, ସେଠାରେ ସୀସାଧାତୁ ଖଣି ଅଛି ବୋଲି ଜାଣିବେ । ଯେଉଁ ସ୍ଥାନ ଉଷରକର୍ବୁର (ଖାରଭୂମିପରି ଚିକ୍‌ଚିକ୍) ଓ ପାଚିଲା ଇଟାପରି ବର୍ଣ୍ଣ ଦେଖାଯାଏ, ସେଠାରେ * ତ୍ରପୁଧାତୁ ଅର୍ଥାତ୍ ରଙ୍ଗ (ଟିଣ) ଧାତୁ ଖଣି ଅଛି ବୋଲି ଜାଣିବେ । ଯେଉଁ ସ୍ଥାନର ଭୂମି ଚିକ୍କଣ ପଥରପରି ବର୍ଣ୍ଣ ବା କମଳା ବର୍ଣ୍ଣ, ଶ୍ୱେତରକ୍ତ ବର୍ଣ୍ଣ ବା ବେଗୁନିଆଁ (ନିର୍ଗୁଣ୍ଡି) ଫୁଲବର୍ଣ୍ଣ ଦେଖାଯାଏ, ସେଠାରେ ତୀକ୍ଷ୍ଣଲୋହ ଧାତୁ ଅଛି ବୋଲି ଜାଣିବେ । କୁଆଡ଼ିମ୍ବ ବା

---

* ତ୍ରପୁ ତାମ୍ରୟୋଃ ସଂଯୋଗେ ଧାତ୍ୱନ୍ତରସ୍ୟ କାଂସ୍ୟସ୍ୟୋତ୍ପତ୍ତିଃ । ତ୍ରପୁ—Tin.

**ଅଚ୍ଛଃ ସ୍ନିଗ୍ଧଃ ସପ୍ରଭେ ଘୋଷବାନ୍ ଶୀତତୀବ୍ରସ୍ତନୁରାଗଶ୍ଚ ମଣିଧାତୁଃ । (୧୧) ଧାତୁସମୁତ୍ଥଂ ତଜ୍ଜାତକର୍ମାନ୍ତେଷୁ ପ୍ରଯୋଜୟେତ୍ । (୧୨) କୃତଭାଣ୍ଡବ୍ୟବହାରମେକମୁଖମ୍, ଅତ୍ୟୟଂ, ଚାନ୍ୟତ୍ରକର୍ତ୍ତୃକ୍ରେତୃ ବିକ୍ରେତୃଣାଂ ସ୍ଥାପୟେତ୍ । ଆକରିକମପହରନ୍ତମଷ୍ଟଗୁଣଂ ଦାପୟେଦନ୍ୟତ୍ର ରତ୍ନେଭ୍ୟଃ । ସ୍ତେନମନିସୃଷ୍ଟୋ-**

ଭୂର୍ଜପତ୍ରବର୍ଣ୍ଣର ଭୂମିରେ ବୈକୃନ୍ତକ ନାମକ ଲୌହଧାତୁ ଅଛି ବୋଲି ଜାଣିବେ ।

ଅଚ୍ଛ (ଯେଉଁଥିରେ ପ୍ରତିବିମ୍ବ ପ୍ରତିଫଳିତ ହୁଏ), ଚିକ୍କଣ, ପ୍ରଭାଯୁକ୍ତ, ଘୋଷବାନ୍ (ଅଗ୍ନିସଂଯୋଗରେ କିମ୍ବା ପଥରଖଣ୍ଡ ଲୌହଖଣ୍ଡ ପ୍ରହାରରେ ପ୍ରବଳ ଶବ୍ଦକାରକ), ଅତ୍ୟନ୍ତଶୀତଳ (ଅଗ୍ନିରୁ ବାହାର କରିବା ସଙ୍ଗେ ସଙ୍ଗେ ଶୀତଳ ହୋଇଯିବା), ଅଳ୍ପରଙ୍ଗ (ଫାଙ୍କୁଣିଆ ବର୍ଣ୍ଣ) ଭୂମିରେ ମଣିଧାତୁ ଅଛି ବୋଲି ଜାଣିବେ * । (୧୧) ଧାତୁମାନଙ୍କରୁ ଜାତହେବା ଧନକୁ ସ୍ୱର୍ଣ୍ଣରୂପ୍ୟାଦିଖଣିମାନଙ୍କ ଅବସ୍ଥାଗ୍ରାଦ କାର୍ଯ୍ୟରେ ବିନିଯୋଗ କରିବେ । (୧୨) ସଗୃହୀତ ସ୍ୱର୍ଣ୍ଣାଦି ଧାତୁପଦାର୍ଥ ଏକତ୍ରିତ କରି ଗୋଟିଏ ସ୍ଥାନରେ ବିକ୍ରୟ କରିବେ । ଅନ୍ୟ ଜାଗାରେ ଯଦି କେହି ରାଜାଙ୍କ ଅଜଣାରେ ସୁବର୍ଣ୍ଣାଦି ଅଦାୟ କରିବେ, କିଣିବେ ବା ବିକିବେ, ତେବେ ସେମାନଙ୍କୁ ରାଜା ଉକ୍ତ କିଣାବିକା ହେବା ସ୍ୱର୍ଣ୍ଣାଦି ଦ୍ରବ୍ୟର ମୂଲ୍ୟ ଅନୁସାରେ ଦଣ୍ଡବିଧାନ କରିବେ । ଖଣିକାର୍ଯ୍ୟରେ ନିଯୁକ୍ତ ହୋଇଥିବା କର୍ମଚାରୀ ଓ ଶ୍ରମିକମାନେ ଯଦି ରତ୍ନବ୍ୟତୀତ ଅନ୍ୟ ଖଣିଜପଦାର୍ଥ ଅପହରଣ କରି ଧରାପଡ଼ନ୍ତି, ତେବେ ରାଜା ତାଙ୍କଠାରୁ ଅପହୃତ ପଦାର୍ଥମୂଲ୍ୟର ଆଠଗୁଣ ଧନ ଅର୍ଥଦଣ୍ଡରୂପେ ଅଦାୟ କରିବେ । ଖଣି କର୍ମଚାରୀ ବା ଯେ କୌଣସି ବ୍ୟକ୍ତି ଯଦି ଖନିଜପଦାର୍ଥ ଗୋପନରେ ବା ରାଜାନୁମତି ନଥାଇ (ଲାଇସେନ୍ସ୍ ନଥାଇ) ଖନିଜପଦାର୍ଥ ଅଦାୟ କରି ବିକ୍ରୟ କରିବାଦ୍ୱାରା ଜୀବିକା ନିର୍ବାହ କରେ, ତେବେ ରାଜା ତାହାଙ୍କୁ ବନ୍ଦୀକରି ସେହି ଖଣିକାର୍ଯ୍ୟରେ ହିଁ ଖଟାଇବେ । ମହାଅପରାଧୀ ବ୍ୟକ୍ତିଙ୍କୁ ମଧ୍ୟ (ଯେଉଁ ବ୍ୟକ୍ତି

* କନକଂ ରୂପ୍ୟଂ ତାମ୍ରଂ ସୀସଂ ତ୍ରପୁ ତୀକ୍ଷ୍ଣକଂ ଚ ବୈକୃନ୍ତମ୍ ।
ମଣୟୋଽଷ୍ଟୌ ନିର୍ଦ୍ଦିଷ୍ଟା ଅଷ୍ଟାନାଂ ଧାତବୋଽପ୍ୟଷ୍ଟୌ ॥

ପଜୀବନଂ ଚ ବଦ୍ଧ୍ୱା କର୍ମକାରୟେଦ୍, ଦଣ୍ଡୋପକାରଣଂ ଚ । (୧୩) ବ୍ୟୟକ୍ରିୟାଭାରିକ ମାକରଂ ଭାଗେନ ପ୍ରକ୍ରୟେଣ ବା ଦଦ୍ୟାତ୍, ଲଘବକମାତ୍ମନା କାରୟେତ୍ । ଲୋହାଧ୍ୟକ୍ଷଃ ତାମ୍ରସୀସ-ତ୍ରପୁବୈକୃନ୍ତକାରକୂଟବୃତ୍ତକଂସତାଳଲୋହକର୍ମାନ୍ତାନ୍ କାରୟେତ୍, ଲୋହଭାଣ୍ଡବ୍ୟବହାରଂ ଚ । ଲକ୍ଷଣାଧ୍ୟକ୍ଷଃ ଚତୁର୍ଭାଗତାମ୍ରଂ ରୂପ୍ୟରୂପଂ ତୀକ୍ଷ୍ଣତ୍ରପୁସୀସାଞ୍ଜନାନାମନ୍ୟତମମାଷବୀଜଯୁକ୍ତଂ କାରୟେତ୍ପଣମ୍, ଅର୍ଦ୍ଧପଣଂ ପାଦମଷ୍ଟଭାଗମିତି । ପାଦାଜୀବଂ ତାମ୍ରରୂପଂ

---

ଗୁରୁତର ଅପରାଧ ଯୋଗୁଁ ପ୍ରାଣଦଣ୍ଡ ପାଇବା ଉଚିତ ଥିଲା) ପ୍ରାଣଦଣ୍ଡ କିମ୍ବା କଠିନ ପ୍ରହାରାଦି ଦଣ୍ଡ ବଦଳେ ଉପକାରପୂର୍ବକ ଅର୍ଥଦଣ୍ଡରେ ଦଣ୍ଡିତ କରି ତାଙ୍କୁ ମଧ୍ୟ ଖଣିକାର୍ଯ୍ୟରେ ଖଟାଇବେ । (୧୩) ଗୁରୁତର ବ୍ୟୟସାଧ୍ୟ ଓ ଗୁରୁତର ପ୍ରଯତ୍ନସାଧ୍ୟ ଖଣିକୁ ବ୍ୟୟ ଓ ଲଭ୍ୟରେ ଭାଗ ରଖି ଅନ୍ୟବ୍ୟକ୍ତିଙ୍କ ଭାଗକୁ ଦେଇଦେବେ କିମ୍ବା ନିର୍ଦ୍ଦିଷ୍ଟ ଖନିଜପଦାର୍ଥ ଅର୍ଥାତ୍ ସୁବର୍ଣ୍ଣ ପ୍ରଭୃତି ଗୁରୁଧନ ରାଜାଙ୍କୁ ଦେବାପାଇଁ ସର୍ତ୍ତ କରି ଅନ୍ୟ କାହାକୁ ଖଣି ଗୁତ୍ତାକୁ ଦେଇଦେବେ । ଯଦି ଅଳ୍ପବ୍ୟୟ ଓ ଅଳ୍ପପରିଶ୍ରମରେ କୌଣସି ଖଣିକାର୍ଯ୍ୟ ସାଧିତ ହେବାର ସମ୍ଭାବନା ଥାଏ, ତେବେ ତାହା ଚଳା ନିଜେ କରାଇବେ ।

ଲୋହାଧ୍ୟକ୍ଷ ଅର୍ଥାତ୍ ତାମ୍ରପ୍ରଭୃତି ସ୍ୱଳ୍ପମୂଲ୍ୟ ଧାତୁର ଅଧିକାରୀ ତମ୍ବା, ସୀସା, ରଙ୍ଗ (ଟିନ), ବୈକୃନ୍ତକ ଲୋହ, ଆରକୂଟ (ପିତ୍ତଳ), ବୃତ୍ତଲୋହ (ମୁଣ୍ଡଲୋହ), କଂସା, ତାଳ (ଘଣ୍ଟି, ଝାଞ୍ଜ, ଖୁରି ଇତ୍ୟାଦି ବାଦ୍ୟୋପଯୋଗୀ କାଂସ୍ୟବିଶେଷ) ଓ କାଳାୟସ (ଇସ୍ପାତ) ଦ୍ୱାରା ପ୍ରସ୍ତୁତ ବାସନ ପ୍ରଭୃତି ପଦାର୍ଥମାନଙ୍କର କ୍ରୟବିକ୍ରୟାଦି ବ୍ୟବହାର କରାଇବେ । * ଲକ୍ଷଣାଧ୍ୟକ୍ଷ ଅର୍ଥାତ୍ ପଣ, ମସା, ଅଣି ପ୍ରଭୃତି ନିର୍ମ୍ମାଣ କରାଇବା ଅଧିକାରୀ ଷୋହଳ ମସାରେ ଗୋଟିଏ ପଣମୁଦ୍ରା ବା ଟଙ୍କା ନିର୍ମ୍ମାଣ କରାଇବେ । ଏଥିରେ ରୂପା ଏଗାର ମସା, ତମ୍ବା ଚାରି ମସା ଓ ତୀକ୍ଷ୍ଣଲୋହ, ରଙ୍ଗ, ସୀଂସା ବା କୃଷ୍ଣଲୋହ, ଏମଧ୍ୟରୁ ଯେକୌଣସି ଗୋଟିକରୁ ଏକମସା

---

* ଲକ୍ଷଣାଧ୍ୟକ୍ଷଃ—ପଣମାଷକାଦିରୂପନିର୍ମାଣଂ; ତଦଧ୍ୟକ୍ଷଃ = ଟଂକଶାଳାଧ୍ୟକ୍ଷଃ—The Superintendent of mint.

ମାଷକମର୍ଦ୍ଧମାଷକଂ କାକଣିମର୍ଦ୍ଧକାକଣିମିତି । (୧୪) ରୂପଦର୍ଶକଃ ପଣଯାତ୍ରାଂ ବ୍ୟବହାରିକୀଂ କୋଶପ୍ରବେଶ୍ୟାଂ ଚ ସ୍ଥାପୟେତ୍ । ରୂପିକମଷ୍ଟକଂଶତଂ, ପଞ୍ଚକଂ ଶତଂ ବ୍ୟାଜୀଂ, ପାରୀକ୍ଷିକମଷ୍ଟ-

ରହିବ । ଏହି ନିୟମରେ ଅର୍ଦ୍ଧପଣ (ଅଧୁଲି), ପାଦପଣ (ଶୁକି) ଓ ଅଷ୍ଟମାଂଶ (ଦୋଅଣି) ଇତ୍ୟାଦି ତିଆରି କରାଇବେ । ରୌପ୍ୟ ପଣମୁଦ୍ରାର ଷୋହଳଭାଗରୁ ଏକଭାଗ ମୂଲ୍ୟକୁ ସମାନ ହେବା ଅର୍ଥାତ୍ ଏକ ଶୁକିର ମୂଲ୍ୟକୁ ସମାନ ହେବା ତାମ୍ରମୁଦ୍ରା ମଧ୍ୟ ପ୍ରସ୍ତୁତ କରାଇବେ । ଏହାର ନାମ 'ମାଷକ' । ଏଥିରେ ଏଗାରମସା ତମ୍ବା, ଚାରିମସା ରୂପା ଓ ଏକମସା ଲୁହା ରହିବ । ଏହି ନିୟମରେ ଅର୍ଦ୍ଧମାଷକ (ଦୋଅଣି), କାକଣି (ଅଣି) ଓ ଅର୍ଦ୍ଧକାକଣି (ଦୋପାଖ୍ଯା) ମଧ୍ୟ ନିର୍ମ୍ମାଣ କରାଇବେ * । (ଏକ ମସା = ପାଞ୍ଚ ରତି ବା ପନ୍ଦରଟି ମୋଟାଧାନ ବା କୋଡ଼ିଏଟି ସରୁଧାନର ଓଜନ) । (୧୪) ରୂପଦର୍ଶକ ଅର୍ଥାତ୍ ଟଙ୍କା ପଇସା ଇତ୍ୟାଦି ମୁଦ୍ରାର ପରୀକ୍ଷକ (କର୍ମ୍ମଚାରୀ) ମୁଦ୍ରା ଆଦାନ, ପ୍ରଦାନ ଓ ସଞ୍ଚୟର ସୁବ୍ୟବସ୍ଥା କରିବେ । ଅର୍ଥାତ୍ ଉକ୍ତ କର୍ମ୍ମଚାରୀ ସଂଗୃହୀତ ମୁଦ୍ରାର ସାରାସାର ବିଭାଗ କରି ସାର-ମୁଦ୍ରାକୁ ରାଜକୋଷରେ ସଂଚୟ କରାଇବେ ଓ ଅନ୍ୟ ମୁଦ୍ରାଗୁଡ଼ିକୁ ଆଦାନପ୍ରଦାନରୂପକ ବ୍ୟବହାରରେ ବିନିଯୋଗ କରିବେ ।

ଶତକଡ଼ା ଆଠପଣ ରାଜସ୍ୱକୁ 'ରୂପିକ', ଶତକଡ଼ା ପାଞ୍ଚପଣ ରାଜସ୍ୱକୁ 'ବ୍ୟାଜୀ' ଏବଂ ଶହେପଣରେ ଅଷ୍ଟମାଂଶ ଅର୍ଥାତ୍ ଏକଶତ ପଣର ଆଠଭାଗରୁ ଏକଭାଗ ରାଜସ୍ୱକୁ 'ପରୀକ୍ଷିକ' କୁହାଯାଏ । କର୍ମ୍ମକାର (ଶ୍ରମିକ) ମାନଙ୍କ ମଜୁରିକୁ 'ରୂପିକ', ରାଜାଙ୍କ ବ୍ୟକ୍ତିଗତ ଖର୍ଚ୍ଚ ସକାଶେ ଦିଆଯିବା ଧନକୁ 'ବ୍ୟାଜୀ' ଓ ପରୀକ୍ଷକ ପ୍ରଭୃତି କର୍ମ୍ମଚାରୀମାନଙ୍କ ଦରମା ଓ ଭତ୍ତା ସକାଶେ ରଖାଯିବା ଧନକୁ 'ପରୀକ୍ଷିକ' କୁହାଯାଏ । ଯେଉଁମାନଙ୍କୁ ଏହି ମୁଦ୍ରାନିର୍ମ୍ମାଣ କରିବା, ନେବା ଦେବା ଓ ପରୀକ୍ଷା କରିବାପାଇଁ ନିଯୁକ୍ତ କରି ଯାଇଥାଏ, ସେମାନେ ନିର୍ଦ୍ଦିଷ୍ଟ ସଂଖ୍ୟାରୁ ଅଧିକ ନିର୍ମ୍ମାଣ କରିବା, ନେବା ଦେବା ଇତ୍ୟାଦି କାର୍ଯ୍ୟ କଲେ ସେମାନଙ୍କୁ ପଚିଶିପଣ

* ଖ୍ରୀଷ୍ଟୀୟ ବିଂଶ ଶତାବ୍ଦୀର ମଧ୍ୟଭାଗପର୍ଯ୍ୟନ୍ତ ରୂପାଶୁକି, ଖପରଶୁକି, ରୂପାଦୋଅଣି, ଖପର ଦୋଅଣି ଓ ଖପର ଅଣି, ତମ୍ବା ଦୋପାଖ୍ଯାର ପ୍ରଚଳନ ଥିଲା ।

ସ୍ୱର୍ଣିକଂ ଶତମ୍ । ପଞ୍ଚବିଂଶତିପଣମତ୍ୟୟଂ ଚାନ୍ୟତ୍ର କର୍ତୃକ୍ରେତୃ-ବିକ୍ରେତୃପରୀକ୍ଷିତୃଭ୍ୟଃ । (୧୫) ଖନ୍ୟଧ୍ୟକ୍ଷଃ ଶଙ୍ଖ ବଜ୍ର ମଣିମୁକ୍ତାପ୍ରବାଳକ୍ଷାର କର୍ମ୍ମାନ୍ତାନ୍ କାରୟେତ୍ ପଣନବ୍ୟବହାରଂ ଚ । (୧୬) ଲବଣାଧ୍ୟକ୍ଷଃ ପାକମୁକ୍ତଂ ଲବଣଭାଗଂ ପ୍ରକ୍ରୟଂ ଚ ଯଥାକାଳଂ ସଂଗୃହ୍ଣୀୟାଦ୍, ବିକ୍ରୟାଚ୍ଚ ମୂଲ୍ୟଂ ରୂପଂ ବ୍ୟାଜୀଂ ଚ । ଆଗନ୍ତୁଲବଣଂ ଷଡ୍ଭାଗଂ ଦଦ୍ୟାତ୍ । ଦତ୍ତଭାଗବିଭାଗସ୍ୟ ବିକ୍ରୟଃ । ପଞ୍ଚକଂ ଶତଂ ବ୍ୟାଜୀଂ, ରୂପଂ, ରୂପିକଂ ଚ । କ୍ରେତା-ଶୁଲ୍କଂ, ରାଜପଣ୍ୟଚ୍ଛେଦାନୁରୂପଂ ଚ * ବୈଧରଣଂ ଦଦ୍ୟାତ୍ ।

ଅର୍ଥଦଣ୍ଡ ବିଧାନ କରିବାକୁ ହେବ । ଏମାନଙ୍କ ବ୍ୟତୀତ ଅନ୍ୟ କେହି ଏପରି ଜାଲମୁଦ୍ରାର ନିର୍ମାଣ, ଆଦାନ ପ୍ରଦାନ ଇତ୍ୟାଦି କରିବାର ଧରା ପଡ଼ିଲେ ତାକୁ ଧରି ତାର ଦୋଷ ଅନୁସାରେ ରାଜଦଣ୍ଡ ବିଧାନ କରିବାକୁ ହେବ । (୧୫) ସ୍ୱର୍ଣ୍ଣରତ୍ନାଦି ଖଣିର ଅଧ୍ୟକ୍ଷ, ଶଙ୍ଖର ପାଠନ ଘର୍ଷଣାଦି କ୍ରିୟା; ହୀରା, ମଣି, ମୁକ୍ତା, ପୋହଳା ପ୍ରଭୃତିର ଖନନ, ଶୋଧନ ଓ ରଞ୍ଜନାଦି କ୍ରିୟା ଏବଂ ସୈନ୍ଧବ, ଯବକ୍ଷାର ପ୍ରଭୃତି କ୍ଷାରପଦାର୍ଥମାନଙ୍କର ଉତ୍ପାଦନାଦି କ୍ରିୟା ସମ୍ପାଦନ କରାଇ କ୍ରୟବିକ୍ରୟାଦି ବ୍ୟବହାର କରାଇବେ । (୧୬) ଲବଣାଧ୍ୟକ୍ଷ, ପାଗହୋଇ ଠିକ୍ ହୋଇଥିବା ଲୁଣ, ଭାଗକୁ ଦିଆଯାଇଥିବା ଖଣିର ରାଜଭାଗ, ଗୁତ୍ତାକୁ ଦିଆଯାଇଥିବା ଖଣିରୁ ମିଳୁଥିବା ଲୁଣ ଯଥାକାଳରେ ସଂଗ୍ରହ କରିବେ । ଏହି ସଂଗୃହୀତ ଲବଣ ବିକ୍ରୟରୁ ମୂଲ୍ୟ ଗ୍ରହଣ କରିବା ସଙ୍ଗେ ସଙ୍ଗେ 'ରୂପ' ଅର୍ଥାତ୍ ପରୀକ୍ଷାକରିବା କର୍ମ୍ମଚାରୀ-ମାନଙ୍କ ପ୍ରାପ୍ୟ (ମୂଲ୍ୟର ଆଠଭାଗରୁ ଏକଭାଗ) ଓ 'ଦ୍ୟାଜୀ' ଅର୍ଥାତ୍ ଶତକଡ଼ା ପାଞ୍ଚପଣ ଲାଭ ମଧ୍ୟ ସଂଗ୍ରହ କରିବେ । ରାଜ୍ୟବାହାରୁ ଆସିଥିବା ଲବଣ ବ୍ୟବସାୟୀ ସେ ଆଣିଥିବା ଲବଣର ଛ'ଭାଗରୁ ଏକଭାଗ ରାଜାଙ୍କୁ ଦେବା ସଙ୍ଗେ ସଙ୍ଗେ 'ମାନବ୍ୟାଜୀ' ଅର୍ଥାତ୍ ମାପ ଭରୁଡ଼ି ବା 'ମାପୁଣି ବ୍ୟାଜୀ' ଅର୍ଥାତ୍ ଲଭ୍ୟାଂଶର ଶତକଡ଼ା ପାଞ୍ଚପଣ, 'ରୂପ' ଅର୍ଥାତ୍ ଲଭ୍ୟାଂଶର ପ୍ରତି ଶହେପଣର ଆଠଭାଗରୁ ଏକଭାଗ, 'ରୂପିକ' ଅର୍ଥାତ୍ ଲଭ୍ୟାଂଶର ଶତକଡ଼ା ଆଠପଣ ମଧ୍ୟ ରାଜାଙ୍କୁ ଦେଇ ସେହି ରାଜ୍ୟରେ ନିଜର ଲବଣ ବ୍ୟବସାୟ ଚଳାଇବେ ।

* ବୈଧରଣ = କ୍ଷତିପୂରଣ—Coinpensation.

ଅନ୍ୟତ୍ରକ୍ରେତା ଷଟ୍‌କ୍ତତମତ୍ୟଯ୍ୟଂ ଚ । ବିଲବଣମୁତ୍ତମଂ ଦଣ୍ଡଂ ଦଦ୍ୟାତ୍, ଅନସୃଷ୍ଟୋପଜୀବୀ ଚ ଅନ୍ୟତ୍ର ବାନପ୍ରସ୍ଥେଭ୍ୟଃ । ଶ୍ରୋତ୍ରିୟାସ୍ତପସ୍ୱିନୋ ବିଷ୍ଟୟଶ୍ଚ ଭକ୍ତଲବଣଂ ହରେୟୁଃ । ଅତୋଽନ୍ୟୋ ଲବଣ କ୍ଷାରବର୍ଗଃ ଶୁଳ୍କଂ ଦଦ୍ୟାତ୍ ।

(୧୭) ଏବଂ ମୂଲ୍ୟଂ ଚ ବିଭାଗଂ ଚ ବ୍ୟାଜୀଂ ପରିଘମତ୍ୟୟମ୍ ।
ଶୁଳ୍କଂ ବୈଧରଣଂ ଦଣ୍ଡଂ ରୂପଂ ରୂପିକମେବ ଚ ॥

(୧୮) ଖନିଭ୍ୟୋ ଦ୍ୱାଦଶବିଧଂ ଧାତୁଂ ପଣ୍ୟଂ ଚ ସଂହରେତ୍ ।
ଏବଂ ସର୍ବେଷୁ ପଣ୍ୟେଷୁ ସ୍ଥାପୟେନ୍ମୁଖସଂଗ୍ରହମ୍ ॥

---

ଏହାଙ୍କଠାରୁ ଯେଉଁ ସ୍ଥାନୀୟ ବ୍ୟବହାରୀମାନେ ଲବଣ କ୍ରୟ କରିବେ ସେମାନେ କ୍ରୟଶୁଳ୍କ ଦେବା ସଙ୍ଗେ ସଙ୍ଗେ ଏହାଦ୍ୱାରା ରାଜାଙ୍କ ବ୍ୟବସାୟର ଯେଉଁ କ୍ଷତି ହେବ ତାହା ପୂରଣ କରିବାକୁ ମଧ୍ୟ ବାଧ୍ୟ ହେବେ । ରାଜାଙ୍କ ବ୍ୟବସାୟ କେନ୍ଦ୍ର ଥାଇ ଥାଇ ଅନ୍ୟ କୌଣସି ଗୁପ୍ତ ଲବଣବିକ୍ରୟ କେନ୍ଦ୍ରରୁ ଯଦି କୌଣସି ବ୍ୟକ୍ତି ଲବଣ କ୍ରୟକରେ ତେବେ ସେହି କ୍ରେତାଙ୍କୁ ଛ'ଶହ ପଣ (ଛ'ଶହ ଟଙ୍କା) ଜରିମାନା କରାଯିବ ।

ମାଟିମିଶ୍ରିତ ଲବଣ ବିକ୍ରେତାକୁ ରାଜା ଉତ୍ତମସାହସଦଣ୍ଡ ପ୍ରଦାନ କରିବେ ଏବଂ ବାନପ୍ରସ୍ଥ ବ୍ୟତୀତ ଅନ୍ୟ ଯେକୌଣସି ବ୍ୟକ୍ତି ଯଦି ରାଜାଙ୍କ ଅନୁମତି (ଲାଇସେନ୍‌ସ୍) ନଥାଇ ଲବଣ ଉତ୍ପାଦନ କରି ବିକ୍ରୟ କରେ, ତେବେ ରାଜା ତାକୁ ମଧ୍ୟ ଉତ୍ତମସାହସଦଣ୍ଡରେ ଦଣ୍ଡିତ କରିବେ । ବେଦପାଠୀ ବ୍ରାହ୍ମଣ, ତପସ୍ୱୀ, ବିଷ୍ଟି (ବେଠିଆ), ନିଜର ଖାଦ୍ୟ ପଦାର୍ଥରେ ବ୍ୟବହାର ସକାଶେ ଯେତିକି ଦରକାର ସେତିକି ଲବଣ ରାଜାଙ୍କ ବିନାନୁମତିରେ ବିନାଶୁଳ୍କରେ ନେଇପାରିବେ । ଏମାନଙ୍କ ବ୍ୟତୀତ ଅନ୍ୟ ଯେଉଁ ବ୍ୟକ୍ତି ଲବଣବର୍ଗ ଅର୍ଥାତ୍ ସୈନ୍ଧବ, ସାମୁଦ୍ର, ବିଟ୍, ସୌବର୍ଚଳ, ଯବକ୍ଷାର ଓ ଉଦ୍ଭିଜ୍ଜ ଲବଣ ଏବଂ କ୍ଷାରବର୍ଗ ଅର୍ଥାତ୍ ଫେଣା, ଗୁଡ଼, ଖଣ୍ଡ, ନବାତ, ମିଶ୍ରି, ସାକର ପ୍ରଭୃତି ପଦାର୍ଥ ପ୍ରସ୍ତୁତ କରିବା ଇଚ୍ଛା କରିବେ, ସେ ସେଥିପାଇଁ ରାଜାଙ୍କୁ କେବଳ କର ଦେଇ (ବ୍ୟାଜୀ, ରୂପ, ରୂପିକ ନଦେଇ) ସେହି ବ୍ୟବସାୟ କରିବେ । (୧୭,୧୮) ଏହିପରି

(୧୯) ଆକରପ୍ରଭବଃ କୋଶଃ କୋଶାଦ୍-ଦଣ୍ଡଃ ପ୍ରଜାୟତେ ।
ପୃଥିବୀ କୋଶଦଣ୍ଡାଭ୍ୟାଂ ପ୍ରାପ୍ୟତେ କୋଶଭୂଷଣା ॥

---

ଖଣିର ଅଧ୍ୟକ୍ଷ ଖଣିମାନଙ୍କରୁ * ମୂଲ୍ୟ, ବିଭାଗ (ଛଭାଗରୁ ଏକଭାଗ 'ରାଜସ୍ୱ'), ବ୍ୟାଜୀ (ଶତକଡ଼ା ପାଞ୍ଚ ଲାଭ), ପରଘ (ପରୀକ୍ଷକ ଇତ୍ୟାଦିଙ୍କ ପ୍ରାପ୍ୟ ଧନ), ଅତ୍ୟୟ (ଆଗରୁ ସ୍ଥିରକରି ଶୁଣାଇ ଦିଆଯାଇଥିବା ଦଣ୍ଡିତ ଧନ), ଶୁଲ୍କ (କର), ବୈଧରଣ (କ୍ଷତିପୂରଣ), ଦଣ୍ଡ (ଅର୍ଥଦଣ୍ଡ, କ୍ଳେଶ ବା ପ୍ରହାରଦଣ୍ଡ ଓ ପ୍ରାଣଦଣ୍ଡ), ରୂପ (ରୂପାମୁଦ୍ରା ଓ ତାମ୍ରମୁଦ୍ରା), ରୂପିକ (ଶତକଡ଼ା ଆଠପଣ), ଧାତୁ (ସୁନାରୁପା ପ୍ରଭୃତି ଧାତୁ), ପଣ୍ୟ (ବିକ୍ରୟଯୋଗ୍ୟ ପଦାର୍ଥ) ସଂଗ୍ରହ କରିବେ ଏବଂ ସମସ୍ତ ପଣ୍ୟ ପଦାର୍ଥ-ମାନଙ୍କ ମଧ୍ୟରୁ ସାରପଦାର୍ଥଗୁଡ଼ିକୁ ସଂଗ୍ରହ କରି ସ୍ଥାପନ କରିବେ । ରାଜା ଖଣି ଓ ଖଣିଜାତ ପଦାର୍ଥର ବ୍ୟବହାର ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଜାରି କରିବେ । (୧୯) ରାଜକୋଷର ଉନ୍ନତି ପ୍ରାୟଶଃ ଖଣିଉପରେ ହିଁ ନିର୍ଭର କରେ । କୋଷ ସମୃଦ୍ଧ ହେଲେ ସେଥିରୁ ବଳ ଅର୍ଥାତ୍ ଜନବଳ ବୃଦ୍ଧିହୁଏ ଏବଂ କୋଷଦଣ୍ଡଯୁକ୍ତ ରାଜା (ଧନବଳ ଓ ଜନବଳଯୁକ୍ତ ରାଜା) ଅକ୍ଳେଶରେ କୋଷଭୂଷଣା ପୃଥିବୀକୁ ଜୟ କରିପାରନ୍ତି ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଦ୍ୱାଦଶୋଽଧ୍ୟାୟଃ—ଆକରକର୍ମ୍ମାନ୍ତପ୍ରବର୍ତ୍ତନମ୍—ଆଦିତସ୍ତ୍ରୟସ୍ତ୍ରିଂଶଃ ।

---

* ମୂଲ୍ୟ = Value of the output; ବିଭାଗ = The share of the output; ବ୍ୟାଜୀ = The premium of five per cent; ପରଘ = Testing charges of coins; ଅତ୍ୟୟ = Fine previously announced; ଶୁଲ୍କ = Toll; ବୈଧରଣ = Compensation for loss entailed on the king's commerce; ଦଣ୍ଡ = Fines to be determined in proportion to the gravity of crimes; ରୂପ = Coinage; ରୂପିକ = The premium of eight per cent.

# ତ୍ରୟୋଦଶାଧ୍ୟାୟଃ

## ଏକବିଂଶ ପ୍ରକରଣମ୍—ଅକ୍ଷଶାଲାୟାଂ ସୁବର୍ଣ୍ଣାଧ୍ୟକ୍ଷଃ

## SUPERINTENDENT OF GOLD IN THE GOLDSMITH'S OFFICE

( ଅକ୍ଷଶାଲା ଅର୍ଥାତ୍ ସୁବର୍ଣ୍ଣ ରୌପ୍ୟାଦି ନିର୍ମାଣଶାଳାରେ ନିଯୁକ୍ତ ହୋଇଥିବା ସୁବର୍ଣ୍ଣାଧ୍ୟକ୍ଷ ସୁବର୍ଣ୍ଣାଦି ପଦାର୍ଥର ଜାତି, ଗୁଣ, ଶୋଧନ, ଅବସ୍ଥାନ, ବର୍ଣ୍ଣ, ଦୋଷପରୀକ୍ଷା ଇତ୍ୟାଦି ବିଷୟ ଦାୟିତ୍ୱ ସହ ନିରୀକ୍ଷଣ କରିବା ବିଷୟର ବିଚାର । )

(୧) ସୁବର୍ଣ୍ଣାଧ୍ୟକ୍ଷଃ ସୁବର୍ଣ୍ଣରଜତକର୍ମ୍ମାନ୍ତାନାମସମ୍ବନ୍ଧାବେଶନ-ଚତୁଶ୍ଶାଳାମେକଦ୍ୱାରମକ୍ଷଶାଳାଂ କାରୟେତ୍ । ✽ ବିଶିଖାମଧ୍ୟେ ସୌବର୍ଣ୍ଣିକଂ ଶିଳ୍ପବନ୍ତମଭିଜାତଂ ପ୍ରାତ୍ୟୟିକଂ ଚ ସ୍ଥାପୟେତ୍ ।

---

(୧) ସୁବର୍ଣ୍ଣାଧ୍ୟକ୍ଷ ସୁବର୍ଣ୍ଣରଜତ ପ୍ରଭୃତିର ଅଳଙ୍କାର ନିର୍ମ୍ମାଣ ସକାଶେ ଚାରିଦିଗେ ପାଚେରି ଘେରି ହୋଇଥିବା ଜାଗାରେ ପ୍ରତ୍ୟେକ ଦିଗରେ ପରସ୍ପର ଅସଂଲଗ୍ନ ଭାବରେ ଚାରି ଚାରି ବଖରା ଥିବା ଓ ପ୍ରତ୍ୟେକରେ ଗୋଟିଏ ଲେଖେ ଦ୍ୱାର ଥିବା ଅକ୍ଷଶାଳା ଅର୍ଥାତ୍ ସୁବର୍ଣ୍ଣରଜତାଦି ଅଳଙ୍କାର ନିର୍ମ୍ମାଣଶାଳା ତିଆର କରାଇବେ । ଉକ୍ତ ଅକ୍ଷଶାଳାହତାମଧ୍ୟରେ ପ୍ରବେଶ କରିବାପାଇଁ ଅକ୍ଷଶାଳାର ଚତୁର୍ଦ୍ଦିଗରେ ଘେରି ହୋଇଥିବା ଉପରୋକ୍ତ ପାଚେରୀକାନ୍ଥରେ ଗୋଟିଏ ମାତ୍ର ଦ୍ୱାର ରହିବ । ବିଶିଖା ଅର୍ଥାତ୍ ଏ ଅକ୍ଷଶାଳାର କେନ୍ଦ୍ରରେ ଥିବା ଉଚ୍ଚ ରାଜପଥ ମଧ୍ୟରେ ଶିଳ୍ପଶାସ୍ତ୍ରଜ୍ଞ, କୁଳୀନ, ପ୍ରାତ୍ୟୟିକ ଅର୍ଥାତ୍ ଛଳପରୀକ୍ଷା ଦ୍ୱାରା ପରୀକ୍ଷିତ ହୋଇ ଶୁଦ୍ଧ ହୋଇଥିବା ସୌବର୍ଣ୍ଣିକ (ପୁର ଓ ରାଜ୍ୟବାସୀଙ୍କ ସ୍ୱର୍ଣ୍ଣ ଓ ରଜତ ନିର୍ମ୍ମାଣକାରୀ ସୁବର୍ଣ୍ଣବ୍ୟବହାରାଧିକାରୀ)ଙ୍କୁ ସ୍ଥାପନ କରାଇବେ ।

---

✽ ବିଶିଖା—High Road.

(୨) * ଜାମ୍ବୂନଦଂ ଶାତକୁମ୍ଭଂ ହାଟକଂ ବୈଣବଂ ଶୃଙ୍ଗିଶୁକ୍ତିଜଂ, ଜାତରୂପଂ ରସବିଦ୍ଧମାକରୋଦ୍‌ଗତଂ ଚ ସୁବର୍ଣମ୍ । କିଞ୍ଜଲ୍କ-ବର୍ଣଂ ମୃଦୁ ସ୍ନିଗ୍ଧମନାଦ ଭ୍ରାଜିଷ୍ଣୁ ଚ ଶ୍ରେଷ୍ଠଂ, ରକ୍ତପୀତକଂ ମଧ୍ୟମଂ, ରକ୍ତମବରଂ ଶ୍ରେଷ୍ଠାନାମ୍ । ପାଣ୍ଡୁଶ୍ୱେତଂ ଚାପ୍ରାପ୍ତକମ୍ । ତଦ୍ ୟେ ନା ପ୍ରାପ୍ତକଂ ତଚ୍ଚତୁର୍ଗୁଣେନ ସୀସେନ ଶୋଧୟେତ୍,

---

(୨) * ମେରୁପର୍ବତର ଜମ୍ବୂନଦୀଜାତ ଜମ୍ବୁଫଳରସବର୍ଣ୍ଣ ସୁବର୍ଣ୍ଣକୁ 'ଜାମ୍ବୂନଦ', ଶତକୁମ୍ଭ ପର୍ବତଜାତ, ପଦ୍ମକେଶରବର୍ଣ୍ଣ ସୁବର୍ଣ୍ଣକୁ 'ଶାତକୁମ୍ଭ', ହାଟକ ନାମକ ଖଣିରୁ ଜାତ ହଳଦିଆ ଦାସକେରଣ୍ଡା ଫୁଲ ବର୍ଣ୍ଣ ସୁବର୍ଣ୍ଣକୁ 'ହାଟକ', ବେଣୁପର୍ବତଜାତ † କର୍ଣ୍ଣିକାର ଅର୍ଥାତ୍ କନିୟରଫୁଲବର୍ଣ୍ଣ ବା ସୂର୍ଯ୍ୟଭକ୍ତା ଫୁଲବର୍ଣ୍ଣ ସୁବର୍ଣ୍ଣକୁ 'ବୈଣବ' ଓ ସୁବର୍ଣ୍ଣମୟ ଭୂମିଜାତ ମନଃଶିଳାବର୍ଣ୍ଣ ସୁବର୍ଣ୍ଣକୁ 'ଶୃଙ୍ଗିଶୁକ୍ତିଜ' କହନ୍ତି । ସ୍ୱତଃସିଦ୍ଧ (ଖାଣ୍ଟି) ସୁବର୍ଣ୍ଣକୁ ଅର୍ଥାତ୍ ସ୍ୱରୂପଧାରଣ କରି ବାହାରିବା ସୁବର୍ଣ୍ଣକୁ 'ଜାତରୂପ', ପାରଦାଦି ରସ ସଂଯୋଗରେ ଉତ୍ପନ୍ନ ହେବା ସୁବର୍ଣ୍ଣକୁ 'ରସବିଦ୍ଧ' ଓ ଖଣିର ମୃତ୍ପିଣ୍ଡ ଓ ପାଷାଣରୁ ରାସାୟନିକ ପ୍ରକ୍ରିୟାରେ ଉତ୍ପନ୍ନ ହେବା ସୁବର୍ଣ୍ଣକୁ 'ଆକରୋଦ୍‌ଗତ' କହନ୍ତି । (କୃତ୍ରିମ ରାସାୟନିକ ଉପାୟରେ ଉଦ୍ଭାବିତ ସୁବର୍ଣ୍ଣକୁ 'ରାସାୟନିକ ସୁବର୍ଣ୍ଣ' ବା କେମିକଲ୍ ଗୋଲ୍ଡ୍ କହନ୍ତି ।) ପଦ୍ମକେଶର ସଦୃଶ ବର୍ଣ୍ଣବିଶିଷ୍ଟ, ମୃଦୁ (ତପ୍ତ ହେଉ ବା ଅତପ୍ତ ହେଉ ସର୍ବାବସ୍ଥାରେ ନରମ), ସ୍ନିଗ୍ଧ (ଖରଖରିଆ ନ ହୋଇ ଚିକ୍‌କଣ ହୋଇଥିବା), ଅନାଦ (ନାଦରହିତ) ଓ ଭ୍ରାଜିଷ୍ଣୁ (ଭାସ୍ୱର ଅର୍ଥାତ୍ ଝକଝକ ଦେଖାଯିବା) ସୁବର୍ଣ୍ଣ ସର୍ବଶ୍ରେଷ୍ଠ, ରକ୍ତପୀତବର୍ଣ୍ଣ ସୁବର୍ଣ୍ଣ ମଧ୍ୟମ ଓ ରକ୍ତବର୍ଣ୍ଣ ସୁବର୍ଣ୍ଣ ସାଧାରଣ ସୁବର୍ଣ୍ଣ ଅଟେ । ଅର୍ଥାତ୍ ଉତ୍ତମକୋଟୀର ସୁବର୍ଣ୍ଣ ମଧ୍ୟରେ ଏହା ତୃତୀୟ ଶ୍ରେଣୀର ସୁବର୍ଣ୍ଣ ଅଟେ ।

---

*ହେମ୍ନଃ ପଞ୍ଚପ୍ରକାରସ୍ୟ ଜିଯୋନେଃ ପଞ୍ଚବର୍ଣ୍ଣକାଃ ।
ଜମ୍ବୂକୋକନଦାମ୍ଲାନ କର୍ଣ୍ଣିକାର ମନଃଶିଳାଃ ॥

* ମେରୁଃ ସୁମେରୁର୍ହେମାଦ୍ରି ରତ୍ନସାନୁଃ ସୁରାଳୟଃ । ଇତ୍ୟମରଃ ।

† ବର୍ଣ୍ଣପ୍ରକର୍ଷେ ସତି କର୍ଣ୍ଣିକାରଂ ଦୁନୋତି ନିର୍ଗନ୍ଧତୟାସ୍ମ ଚେତଃ ।

ସୀସାନ୍ୱୟେନ ଭିଦ୍ୟମାନଂ ଶୁଷ୍କପଟଲୈର୍ଧ୍ମାପୟେତ୍, ରୁକ୍ଷତ୍ୱାଦ୍ ଭିଦ୍ୟମାନଂ ତୈଳଗୋମୟେ ନିଷେଚୟେତ୍ । ଆକରୋଦ୍‌ଗତଂ ସୀସାନ୍ୱୟେନ ଭିଦ୍ୟମାନଂ ପାକପତ୍ତ୍ରାଣି କୃତ୍ୱା ଗଣ୍ଡିକାସୁ କୁଟ୍ଟୟେତ୍, କଦଳୀବଜ୍ରକନ୍ଦକଳ୍କେ ବା ନିଷେଚୟେତ୍ । (୩) ତୁତ୍ଥୋଦ୍-

---

ଅନ୍ୟଦ୍ରବ୍ୟ ସମିଶ୍ରଣ ଯୋଗୁଁ ଶୁଦ୍ଧବର୍ଣ୍ଣ ଧାରଣ ନକରି ପାଣ୍ଡୁ (ଶୁକ୍ଳପୀତମିଶ୍ରିତ ବର୍ଣ୍ଣ) ବା ଶ୍ୱେତବର୍ଣ୍ଣ ଧାରଣ କରିଥିବା ଅଶୁଦ୍ଧ ସୁବର୍ଣ୍ଣକୁ 'ଅପ୍ରାପ୍ତକ' କୁହାଯାଏ । ଏଥିରେ ଯେତିକି ପରିମାଣ ଅଶୁଦ୍ଧ ପଦାର୍ଥ ମିଶିଥିବାର ପରୀକ୍ଷାଦ୍ୱାରା ଜଣାଯିବ, ସେହି ଅଶୁଦ୍ଧ ପଦାର୍ଥର ଚାରିଗୁଣ ସୀସା ଏହି ଅପ୍ରାପ୍ତକ ନାମକ ସୁବର୍ଣ୍ଣରେ ସଂଯୋଗ କରି ଅଗ୍ନିରେ ଶୋଧନ କରିବେ । ଯଦି ସୀସା ଯୋଗରେ ସୁନା ଫଟା ଫଟା ହୋଇଯାଏ ତେବେ ତାକୁ ବଣଘସି ନିଆଁରେ ଫୁଙ୍କିବେ (ଘସିନିଆଁରେ ତତାଇବେ) । ଏପରି କରିବା ସତ୍ତ୍ୱେ ଯଦି ଫଟା ଫଟା ହୁଏ ତେବେ ତାକୁ ଅଗ୍ନିରୁ ଆଣି ତେଲ ଓ ଗୋବରରେ ବାରମ୍ବାର ନିକ୍ଷେପ କରିବେ ।

ଆକରୋଦ୍‌ଗତ ସୁବର୍ଣ୍ଣ ଅର୍ଥାତ୍ ଖଣିରୁ ଜାତହେବା ସୁବର୍ଣ୍ଣ ଯଦି ସୀସା ଯୋଗରେ ଫଟା ଫଟା ହୁଏ ତେବେ ତାକୁ ପାତଳା ପତ୍ରୀ କରି ଉପରେ କନାଗୁଡ଼ାଇ ଗଣ୍ଡିକା ✲ ଅର୍ଥାତ୍ ଲୋହ ଓ ହାତୁଡ଼ିରେ ପିଟିଦେବ ବା କାଠମୁଣ୍ଡାରେ ପିଟିବେ କିମ୍ବା ପଥର ଶିଳରେ ରଖି ଶିଳଗୁଡ଼ାରେ ପିଟି ଠିକ୍ କରିବେ ଅଥବା ଏହି ପତଳା ସୁନାପତ୍ରୀକୁ ଏପରି ପିଟାକୁଟା ନକରି ଉକ୍ତପ୍ରକାର ✝ କଦଳୀ ଅର୍ଥାତ୍ ଭୂଇଁକଦଳୀ ଓ * ବଜ୍ରକନ୍ଦ ଅର୍ଥାତ୍ ଶାକକେନ୍ଦାର କଳ୍କ (କଟା)ରେ ବାରମ୍ବାର ନିକ୍ଷେପ କରି ଶୁଦ୍ଧ କରିବେ । (୩)

---

✲ ଗଣ୍ଡିକା = ଶ୍ଳୋଟପଥର । ଗନ୍ଧମାଦନପାର୍ଶ୍ୱେ ତୁ ପରେତ୍ୱପରଗଣ୍ଡିକାଃ । ଇତି ରାମାୟଣେ ।
କାଠପାଦୁରଣୀ, ଲୋହ, ହାତୁଡ଼ି ।

✝ କନ୍ଦଳୀ = ଜମ୍ବୁକୁଞ୍ଜେ... ଇତି ମେଘଦୂତେ ।
କନ୍ଦଳୀ ଭୂକନ୍ଦଳୀ ଇତି ଟୀକାୟାଂ ମଲ୍ଲୀନାଥଃ ।
ଅନ୍ୟମତରେ ଛତୁ = Mushroom.

* ପ୍ରକୃତିବିବେକ ଅଭିଧାନରେ ବଜ୍ରକନ୍ଦର ଅର୍ଥ ସାକରକନ୍ଦାଆଳୁ ବୋଲି ଲେଖାଅଛି । ଏହାର ପ୍ରକୃତ ଅର୍ଥ ସ୍ୱର୍ଣ୍ଣଶୋଧନକାରୀଙ୍କଠାରୁ ପାଠକମାନେ ବୁଝିନେବେ । ବଜ୍ର = ଶ୍ରୀବେର, କନ୍ଦ = ପଦ୍ମକନ୍ଦ (ଗଣପତି) ।

ଗତଂ ଗୌଡ଼କଂ କାମ୍ବୁକଂ ଚାକ୍ରବାଳକଂ ଚ ରୂପ୍ୟମ୍ । ଶ୍ୱେତଂ ସ୍ନିଗ୍ଧଂ ମୃଦୁ ଚ ଶ୍ରେଷ୍ଠମ୍ । ବିପର୍ଯ୍ୟୟେ ସ୍ଫୋଟନଂ ଚ ଦୁଷ୍ଟମ୍। ତତ୍ ସୀସଚତୁର୍ଭାଗେନ ଶୋଧୟେତ୍ । ଉଦ୍ଗତଚୂଳକମଚ୍ଛଂ ଭ୍ରାଜିଷ୍ଣୁ ଦଧିବର୍ଣ୍ଣଂ ଚ ଶୁଦ୍ଧମ୍ । (୪) ଶୁଦ୍ଧସ୍ୟୈକୋ ହାରିଦ୍ରସ୍ୟ ସୁବର୍ଣ୍ଣୋ ବର୍ଣ୍ଣକଃ । ତତଃ ଶୁଲ୍ବକାକଣ୍ୟୁତ୍ତରାପସାରିତା ଆ ଚତୁଃସୀମାନ୍ତାଦିତି ଷୋଡ଼ଶ ବର୍ଣ୍ଣକାଃ । ସୁବର୍ଣ୍ଣଂ ପୂର୍ବଂ ନିକଷ୍ୟ ପଶ୍ଚାତ୍ ବର୍ଣ୍ଣିକାଂ ନିକଷୟେତ୍ । ସମରାଗଲେଖମନିମ୍ନୋନ୍ନତେ ଦେଶେ ନିକଷିତମ୍ । ପରିମୃଦିତଂ ପରିଲୀଢ଼ଂ ନଖାନ୍ତରାଦ୍ ବା

---

ତୁତ୍ଥ ନାମକ ପର୍ବତରୁ ଜାତ ବା ମୟୂରଗିରିଆ ପର୍ବତରୁ ଜାତ କାଇଁଫୁଲବର୍ଣ୍ଣର ରୂପାକୁ 'ତୁତ୍ଥୋଦ୍ଗତ', କାମରୂପ (ଆସାମ) ଓ ଗୌଡ଼ (ବଙ୍ଗପ୍ରଦେଶ) ଦେଶଜାତ ତଗରଫୁଲବର୍ଣ୍ଣର ରୂପାକୁ 'ଗୌଡ଼କ', କମ୍ବୁ ନାମକ ପର୍ବତରୁ ଜାତ ରୂପାକୁ 'କାମ୍ବୁକ' ଓ ଚକ୍ରବାଳ ନାମକ ଖଣିରୁ ଜାତହେବା କୁନ୍ଦଫୁଲବର୍ଣ୍ଣର ରୂପାକୁ 'ଚାକ୍ରବାଳକ' କୁହାଯାଏ । ଶ୍ୱେତ, ଚିକ୍କଣ ଓ କୋମଳ ରୂପା ଶ୍ରେଷ୍ଠ ଓ ଏହାର ବିପରୀତ ଅର୍ଥାତ୍ କୃଷ୍ଣ, ରୁକ୍ଷ, କଠିନ, ବିଶେଷତଃ ସ୍ଫୋଟନ (ଫଟା ଫଟା ହୋଇଥିବା ରୂପା) ଦୋଷଯୁକ୍ତ ଅଟେ । ଦୂଷିତ ଓ ଅଶୁଦ୍ଧ ରୂପାକୁ ଏହାର ଚାରିଗୁଣ ସୀସାଦ୍ୱାରା ଶୋଧିତ କରିବେ । ଶୁଦ୍ଧି କରିବା ସମୟରେ ଯଦି ଏହି ଅଶୁଦ୍ଧ ରୂପାରୁ ବୁରୁବୁରି ଉଠେ ଏବଂ ଏହା ସ୍ୱଚ୍ଛ, ଦୀପ୍ତିମାନ୍ ଓ ଦଧିବର୍ଣ୍ଣ (ଦହିପରି ବର୍ଣ୍ଣ) ଦେଖାଯାଏ, ତେବେ ଏହା ଶୁଦ୍ଧ ହେଲା ବୋଲି ଜାଣିବାକୁ ହେବ । (୪) ଶୁଦ୍ଧ ହରିଦ୍ରାବର୍ଣ୍ଣ (ହଳଦୀକୁ ଭାଙ୍ଗିଦେଲେ ସେମଧ୍ୟରେ ଦେଖାଯିବା ତେଜୀୟାନ୍ ପୀତବର୍ଣ୍ଣ ସଦୃଶ ବର୍ଣ୍ଣ) ଯୁକ୍ତ ସୁବର୍ଣ୍ଣର ଶୋହଳ ମଷାରେ ଗୋଟିଏ ଶୁଦ୍ଧ 'ବର୍ଣ୍ଣକ' ହୁଏ । ଏହି ବର୍ଣ୍ଣକରୁ ଏକମଷାର ଚାରିଭାଗରୁ ଏକଭାଗ ସୁନା ବାହାରକରି ସେଥିରେ ସେହି ପରିମାଣ ତମ୍ବା ମିଶ୍ରଣ କରିବେ । ଏହି ନିୟମରେ ଶୋହଳଭାଗ ପର୍ଯ୍ୟନ୍ତ ତମ୍ବା ମିଶାଇଲେ ଶୋହଳ ପ୍ରକାର ବର୍ଣ୍ଣକ ହୁଏ ଏବଂ ଶୁଦ୍ଧ ସୁବର୍ଣ୍ଣର ବର୍ଣ୍ଣକକୁ ମିଶାଇ ସର୍ବମୋଟ ସତର ପ୍ରକାର ବର୍ଣ୍ଣକ ହୁଏ । (ଶୋହଳ ମଷା ଓଜନ ଶୁଦ୍ଧ ସୁବର୍ଣ୍ଣରେ ଚାରିମଷା ଅର୍ଥାତ୍ ଶୋହଳ ତାମ୍ରକାକଣି ପର୍ଯ୍ୟନ୍ତ ତମ୍ବା କ୍ରମରେ ମିଶାଯାଇ

ତୈରବକେଣାବଚୂର୍ଣିତମୁପଧିଂ ବଦ୍ଧ୍ୟାତ୍ । ଜାତହିଙ୍ଗୁଳକେନ ପୁଷ୍ପକାସୀସେନ ବା ଗୋମୂତ୍ରସ୍ୱବତେନ ଦଗ୍ଧେନାଗ୍ରହସ୍ତେନ ସଂସୃଷ୍ଟଂ ସୁବର୍ଣଂ ଶ୍ୱେତୀଭବତ । ସତକସରଃ ସ୍ନିଗ୍ଧୋ ମୃଦୁର୍ଭ୍ରାଜିଷ୍ଣୁଶ୍ଚ ନକଷରାଗଃ ଶ୍ରେଷ୍ଠଃ । (୫) କାଳଙ୍ଗକସ୍ତାପୀ-

---

ଷୋହଳ ପ୍ରକାର ବର୍ଣ୍ଣକ କରାଯାଏ ।) ଏକମଷାର ଗୁରୁଭାଗରୁ ଏକଭାଗ ସହିତ ଏକ ତମ୍ବାର 'କାକଣି' ନାମକ ମୁଦ୍ରା ସମାନ ଅଟେ । କଷଟିପଥରରେ ଅସଲ ସୁନାକୁ କଷି ପରେ ତା'ପାଖରେ ବର୍ଣ୍ଣକକୁ ପରୀକ୍ଷା ସକାଶେ କଷିବାକୁ ହେବ । କଷଟିପଥରର ଉଚ୍ଚନୀଚ ନଥାଇ ସମାନଥିବା ଜାଗାରେ ଘର୍ଷଣ କଲେ ଶୁଦ୍ଧ ସୁବର୍ଣ୍ଣ ଓ ବର୍ଣ୍ଣକର ନିଜର ପ୍ରକୃତ ବର୍ଣ୍ଣଯୁକ୍ତ ରେଖା ସ୍ପଷ୍ଟ ଜଣାଯାଏ । ଏପରି କରିବା ନ୍ୟାୟସଙ୍ଗତ । ସୁବର୍ଣ୍ଣବିକ୍ରେତା ନିଜର ବର୍ଣ୍ଣକ ସୁବର୍ଣ୍ଣର ଉତ୍କର୍ଷ ଦେଖାଇବା ପାଇଁ ବର୍ଣ୍ଣକକୁ କଷଟିପଥରରେ ଅଣ୍ଟାକରି ରଗଡ଼ି ଘଷିବା, କ୍ରେତା ଉକ୍ତ ସୁବର୍ଣ୍ଣର ନିକୃଷ୍ଟତା ପ୍ରତିପାଦନ କରିବା ପାଇଁ ଉଣ୍ଡାସରେ ଘଷିବା ଏବଂ ବିକ୍ରେତା କିମ୍ବା ତାଙ୍କ ସପକ୍ଷ ହୋଇଥିବା ସୁନାରି ପ୍ରଭୃତି ଅନ୍ୟ କୌଣସି ବ୍ୟକ୍ତି ନଖରେ ହଳଦୀବର୍ଣ୍ଣର କୌଣସି ଚୂର୍ଣ୍ଣ ରଖି କଷଟିପଥରରେ ନିଜର ବର୍ଣ୍ଣକ ସୁବର୍ଣ୍ଣକୁ ଘଷିବାବେଳେ ତହିଁରେ କୌଶଳକ୍ରମେ ଉକ୍ତ ଚୂର୍ଣ୍ଣକୁ ନିକ୍ଷେପକରି ନିଜ ବର୍ଣ୍ଣକ ସୁବର୍ଣ୍ଣର ଉତ୍କର୍ଷ ଦେଖାଇବାକୁ ସୁବର୍ଣ୍ଣର କୃତ୍ରିମ ପରୀକ୍ଷା ବା ଛଳପରୀକ୍ଷା କରନ୍ତି । ଗୋମୂତ୍ରରେ ବତୁରିହୋଇଥିବା ଜାତହିଙ୍ଗୁଳକ (ହଂସପାଦ ହିଙ୍ଗୁଳ) କିମ୍ବା ପୁଷ୍ପକାସୀସ (କଷ୍ଟିତ୍ ପୀତବର୍ଣ୍ଣ ହରତାଳ) ଅଙ୍ଗୁଳି ଅଗ୍ରରେ ବୋଳି ସୁବର୍ଣ୍ଣକୁ ସ୍ପର୍ଶକଲେ ତାହା ଫାକୁଣ୍ଡିଆ ହୋଇଯାଏ । ନାଗେଶ୍ୱରପୁଷ୍ପ ସଦୃଶ ହାରିଦ୍ରାବର୍ଣ୍ଣ ଅଥବା ଏହି ବର୍ଣ୍ଣର ଘନ ରେଖାବଶିଷ୍ଟ ଚିକ୍କଣ, ମୃଦୁ, ମନୋହର ଓ ତେଜୀୟାନ୍ ବା ଚମକଦାର କଷଟିପଥରରେ ଦେଖାଯିବା ରେଖାର ବର୍ଣ୍ଣକୁ ଉତ୍ତମ ସୁବର୍ଣ୍ଣର 'ରେଖାରାଗ' ବୋଲି ଜାଣିବାକୁ ହେବ । (୫) ମୁଦ୍ଗବର୍ଣ୍ଣବିଶିଷ୍ଟ କଳିଙ୍ଗ ଦେଶଜ କଷଟିପଥର ଓ * ଅରଟ୍ଟ

---

* ଆରଟ୍ଟ = ଆରବ୍ଧ ।

ପଞ୍ଚନଦ୍ୟୋବହନ୍ତ୍ୟେଣ ଯତ ନିଃସୃତ ପର୍ବତାତ୍ ।
ଆରଟ୍ଟାନାମବାହ୍ଲିକା ନତେଷ୍ୱାର୍ଯୋ ଦ୍ୟହଂ ବସେତ୍ ॥ ଇତି ମହାଭାରତେ ।

ଅରଟ୍ଟକୁ କେହି କେହି 'ପଂଜାବ' କହନ୍ତି ।

ପାଷାଣୋ ବା ମୁଦ୍‌ଗବର୍ଣୋ ନିକଷଃ ଶ୍ରେଷ୍ଠଃ । ସମରାଗୀ ବିକ୍ରୟକ୍ରୟହିତଃ । ହସ୍ତିଚ୍ଛବିକଃ ସହରିତଃ ପ୍ରତିରାଗୀ ବିକ୍ରୟହିତଃ । ସ୍ଥିରଃ ପରୁଷୋ ବିଷମବର୍ଣଶ୍ଚା ପ୍ରତିରାଗୀ କ୍ରୟହିତଃ । ଛେଦଶ୍ଚିକ୍‌କଣଃ ସମବର୍ଣଃ ଶ୍ଳକ୍ଷ୍‌ଣୋ ମୃଦୁର୍ଭ୍ରାଜିଷ୍ଣୁଶ୍ଚ ଶ୍ରେଷ୍ଠଃ । ତାପୋ ବହିରନ୍ତଶ୍ଚ ସମଃ କିଂଜଲ୍‌କବର୍ଣଃ କୁରୁଣ୍ଟକପୁଷ୍ପବର୍ଣୋ ବା ଶ୍ରେଷ୍ଠଃ । ଶ୍ୟାବୋ ନୀଳଶ୍ଚାପ୍ରାପ୍ତକଃ । ତୁଲାପ୍ରତିମାନଂ ପୌତବାଧ୍ୟକ୍ଷେ ବକ୍ଷ୍ୟାମଃ । ତେନୋପଦେଶେନ ରୂପ୍ୟସୁବର୍ଣଂ

---

ଦେଶଜ ତାପୀ ନାମକ ନଦୀରୁ ଜାତ କଷଟିପଥର ଶ୍ରେଷ୍ଠ ଅଟେ । ଯେଉଁ କଷଟିପଥରରେ ସବୁଅବସ୍ଥାରେ ସମାନ ବର୍ଣ୍ଣବିଶିଷ୍ଟ ରେଖା ପଡେ ତାହା କିଣିବା ଓ ବିକିବା ଦୁଇଲୋକଙ୍କ ପକ୍ଷେ ସୁବିଧାଜନକ ! ଯେଉଁ କଷଟିପଥର ହାତୀଚମପରି ଖରସ୍ପର୍ଶ ଓ ଶୁଷ୍କ, ସବୁଜବର୍ଣ୍ଣ, ସୁବର୍ଣ୍ଣ ଯେତେ ନିକୃଷ୍ଟ ହୋଇଥିଲେ ମଧ୍ୟ ଯହିଁରେ ଘଷିଲେ ଉତ୍ତମ ସୁବର୍ଣ୍ଣର ରେଖାପରି ରେଖାପଡ଼େ, ତାହା ବିକେତାମାନଙ୍କ ପକ୍ଷେ ଉପକାରକ । * ସ୍ଥିର (ଦୃଢ଼), ପରୁଷ (କର୍କଶ), ବିଷମବର୍ଣ୍ଣ (ନାନାବର୍ଣ୍ଣ) ଓ ଯେଉଁ କଷଟିପଥରରେ ଉତ୍ତମ ସୁବର୍ଣ୍ଣର ରେଖା ମଧ୍ୟ ହୀନ ସୁବର୍ଣ୍ଣର ରେଖାପରି ଦେଖାଯାଏ, ତାହା କେତାମାନଙ୍କର ଉପକାରକ । ଛେଦ (କଟାହୋଇଥିବା) ସୁନାଖଣ୍ଡ ଯଦି ଚିକ୍‌କଣ, ସମାନବର୍ଣ୍ଣ (ବାହାର ଭିତର ସମାନବର୍ଣ୍ଣ), ମସୃଣ, କୋମଳ ଓ ତେଜସ୍ୱାନ୍ ଦେଖାଯାଉଥାଏ, ତେବେ ତାହାକୁ ଉତ୍ତମ ସୁବର୍ଣ୍ଣଖଣ୍ଡ ବୋଲି ବୁଝିବାକୁ ହେବ । ଯେଉଁ ସୁବର୍ଣ୍ଣଖଣ୍ଡକୁ ପୋଡ଼ିଲେ ବାହାର ଭିତର ସମାନବର୍ଣ୍ଣ ଦେଖାଯାଏ ଓ ପଦ୍ମକେଶର ବା ହଳଦିଆ ଦାସକେରଣ୍ଡାଫୁଲବର୍ଣ୍ଣ ଦେଖାଯାଏ ଅଥବା ହଳଦିଆ ଇଟାଲାଫୁଲବର୍ଣ୍ଣ ଦେଖାଯାଏ ତେବେ ତାହାକୁ ଉତ୍ତମ ସୁବର୍ଣ୍ଣ ବୋଲି ବୁଝିବାକୁ ହେବ । ଯେଉଁ ସୁବର୍ଣ୍ଣକୁ ପୋଡ଼ିଲେ ଧୂମ୍ର ଓ ନୀଳବର୍ଣ୍ଣ ଦେଖାଯାଏ ସେହି ସୁବର୍ଣ୍ଣକୁ 'ଅପ୍ରାପ୍ତକ' ଅର୍ଥାତ୍ ଅଶୁଦ୍ଧ ସୁବର୍ଣ୍ଣ ବୋଲି ବୁଝିବାକୁ ହେବ । ତୁଳିବାର ନିୟମ ପ୍ରମାଣ ପୌତବାଧ୍ୟକ୍ଷ ପ୍ରକରଣରେ କୁହାଯିବ ।

---

* ସ୍ଥିର = Hard; ପରୁଷ = Durable; ବିଷମବର୍ଣ୍ଣ = Of uneven colour.

ଦଦ୍ୟାଦାଦଦୀତ ଚ । (୭) ଅକ୍ଷଶାଳାମନାୟୁକ୍ତୋ ନୋପ-ଗଚ୍ଛେତ୍ । ଅଭିଗଚ୍ଛନ୍ ଉଚ୍ଛେଦ୍ୟଃ । ଆୟୁକ୍ତୋ ବା ସରୂପ୍ୟ-ସୁବର୍ଣ୍ଣସ୍ତେନୈବ ଜୀୟେତ । ବିଚିତବସ୍ତ୍ରହସ୍ତଗୁହ୍ୟାଃ କାଞ୍ଚନ ପୃଷତତ୍ୱଷ୍ଟୃତପନୀୟକାରବୋ * ଧ୍ମାୟକଚରକପାଂଶୁଧାବକାଃ ପ୍ରବଶେୟୁର୍ନିଷ୍କସେୟୁଶ୍ଚ । ସର୍ବଂ ଚୈଷାମୁପକରଣମନିଷ୍ଠିତାଶ୍ଚ ପ୍ରୟୋଗାସ୍ତତ୍ରୈବାବତିଷ୍ଠେରନ୍ । ଗୃହୀତଂ ସୁବର୍ଣ୍ଣଂ ଧୃତଂ ଚ ପ୍ରୟୋଗଂ କରଣମଧ୍ୟେ ଦଦ୍ୟାତ୍ । ସାୟଂ ପ୍ରାତଶ୍ଚ ଲକ୍ଷିତଂ

---

ସେଥିରେ ଲେଖାଯାଇଥିବା ନିୟମ ଓ ଉପଦେଶ ଅନୁସାରେ ସୁନା ଓ ରୂପା ଆଦାନପ୍ରଦାନର ବ୍ୟବହାର କରିବେ । (୭) ଅକ୍ଷଶାଳାରେ ନିଯୁକ୍ତ ହୋଇଥିବା କର୍ମଗୃହୀ ଛଡ଼ା ଅନ୍ୟ କୌଣସି ବ୍ୟକ୍ତି ଅକ୍ଷଶାଳାରେ ଅଧ୍ୟକ୍ଷଙ୍କ ବିନାନୁମତିରେ ପ୍ରବେଶ କରିପାରିବେ ନାହିଁ । କେହି ଯଦି ଉକ୍ତ ଅକ୍ଷଶାଳାରେ ବାରଣକରିବା ସତ୍ତ୍ୱେ ପ୍ରବେଶ କରେ ତେବେ ଅଧ୍ୟକ୍ଷ ତାର ସର୍ବସ୍ୱ ଛଡ଼ାଇ ତାହାକୁ ସେଠାରୁ ତଡ଼ିଦେବେ । ଯଦି ଅକ୍ଷଶାଳାର କୌଣସି କର୍ମଗୃହୀ କିମ୍ବା ଆଦେଶ ପାଇ ଅକ୍ଷଶାଳାରେ ପ୍ରବେଶ କରିଥିବା କୌଣସି ବ୍ୟକ୍ତି ଅକ୍ଷଶାଳାରୁ ସୁନା କିମ୍ବା ରୂପା ଚୋରିକରି ନେଉଥିବାବେଳେ ଧରାପଡ଼େ, ତେବେ ତା'ଠାରୁ ସେହି ଧନ ଜବତ କଲାପରେ ସେ ଯେତିକି ସୁନା ବା ରୂପା ଚୋରିକରିଥିବ ଆଉ ସେତିକି ସୁନା ବା ରୂପା ସେହିବ୍ୟକ୍ତିଠାରୁ ଜରିମାନା ସ୍ୱରୂପ ଅସୁଲ କରିବାକୁ ହେବ । ଉପରୋକ୍ତନିୟମାନୁସାରେ ସୁବର୍ଣ୍ଣ ତିଆରି କରିବା ଶିଳ୍ପୀ, ସୁନାରୂପାର ଛୋଟ ଛୋଟ ଗୁଳି (କଣ୍ଠୀ ପ୍ରଭୃତି) ତିଆରି କରିବା ଶିଳ୍ପୀ, ସୁନାରୂପାର ପଟା ଓ ପାତ ତିଆରି କରିବା ଶିଳ୍ପୀ, ନାନାପ୍ରକାର ସୁନା ରୂପା ଅଳଙ୍କାର ତିଆରିକରିବା ଶିଳ୍ପୀ, ଜନ୍ତ ବା ଭାତିଚାଳକ (ଭସ୍ତ୍ରାଚାଳକ), ପରିଚାରକ ଓ ଧୂଳିପାଉଁଶ ଧୋଇ ସୁନା ବାହାରକରିବା ବ୍ୟକ୍ତିମାନଙ୍କର ବସ୍ତ୍ର, ହସ୍ତ ଓ ଗୁହ୍ୟ (ଗୁପ୍ତସ୍ଥାନମାନଙ୍କୁ) ପରୀକ୍ଷାକରି ସେମାନଙ୍କୁ ଅକ୍ଷଶାଳାରେ ପ୍ରବେଶ କରିବା ଓ ବାହାରିବାର ବ୍ୟବସ୍ଥା କରିବାକୁ ହେବ । ଏମାନେ ସୁନା ଚୋରିକରି ନେଇଛନ୍ତି କି ନା ଏ

---

* ଧ୍ମାୟକ – Blowers ଜନ୍ତ ଚଳାଇବା ବ୍ୟକ୍ତି ।

କର୍ତ୍ତୃକାରୟିତୃମୁଦ୍ରାଭ୍ୟାଂ ନଦଧ୍ୟାତ୍ । (୭) କ୍ଷେପଣୋ ଗୁଣଃ କ୍ଷୁଦ୍ରକମିତ କର୍ମାଣି । କ୍ଷେପଣଃ କାଚାର୍ପଣାଦୀନି । ଗୁଣଃ ସୂତ୍ରବାନାଦୀନି । ଘନଂ ସୁଷିରଂ ପୃଷତାଦ୍ୟୁକ୍ତଂ କ୍ଷୁଦ୍ରକମିତ । ଅର୍ପୟେତ୍ କାଚକର୍ମଣଃ ପଞ୍ଚଭାଗଂ କାଞ୍ଚନଂ ଦଶଭାଗଂ କଟୁମାନମ୍ । ତାମ୍ରପାଦଯୁକ୍ତଂ ରୂପ୍ୟଂ ରୂପ୍ୟପାଦଯୁକ୍ତଂ ବା ସୁବର୍ଣ୍ଣଂ ସଂସ୍କୃତକଂ

---

ଅଣଙ୍କାରେ ଏପରି ପରୀକ୍ଷାର ବ୍ୟବସ୍ଥା କରାଯାଏ । ଉପରୋକ୍ତ ବ୍ୟକ୍ତିମାନେ ବ୍ୟବହାର କରୁଥିବା ଉପକରଣ ଓ ଅସମ୍ପୂର୍ଣ୍ଣ ଅଳଂକାରାଦି ପଦାର୍ଥ ସେହି ସେହି ନିର୍ମାଣ ସ୍ଥାନରେ ରଖିବାକୁ ହେବ, ବାହାରକୁ ନେବାକୁ ହେବନାହିଁ । ସୁବର୍ଣ୍ଣାଧ୍ୟକ୍ଷ ଭଣ୍ଡାରଘରୁ ଅଣିଥିବା ସୁନା ଓ ସେଥିରେ ତିଆରି ହୋଇଥିବା ଅଳଙ୍କାରକୁ କରଣମାନଙ୍କ ସମ୍ମୁଖରେ ତୁଳି, ଗଣି ଉକ୍ତ କରଣମାନଙ୍କ ଖାତାରେ ଚଢ଼ାଇ ଭଣ୍ଡାରରକ୍ଷକଙ୍କୁ ଫେରାଇ ଦେବେ । ସକାଳେ ଓ ସନ୍ଧ୍ୟାରେ ଅର୍ଥାତ୍ ଦୈନିକ କାର୍ଯ୍ୟର ଆରମ୍ଭ ଓ ଶେଷରେ ଉକ୍ତ ସୁବର୍ଣ୍ଣାଦି ଅଳଙ୍କାରପଦାର୍ଥମାନଙ୍କୁ ସୁବର୍ଣ୍ଣାଧ୍ୟକ୍ଷ ଓ ସ୍ୱର୍ଣ୍ଣକାରଙ୍କ ମୁଦ୍ରାଙ୍କିତ କରି କରଣମାନଙ୍କ ସମ୍ମୁଖରେ ରଖିଦେବାକୁ ହେବ । (୭) ଅକ୍ଷଶାଳାରେ କ୍ଷେପଣ, ଗୁଣ, କ୍ଷୁଦ୍ରକ ଏପରି ତିନିପ୍ରକାର କାର୍ଯ୍ୟ କରାଯାଏ । ସୁବର୍ଣ୍ଣ ଅଳଙ୍କାର ବା ସୁବର୍ଣ୍ଣପାତ୍ରାଦିରେ ମଣି ପ୍ରଭୃତି ରତ୍ନ ବସାଇବାକୁ 'କ୍ଷେପଣ', ସୂତାରେ ଅଳଙ୍କାରକୁ ଗୁନ୍ଥିବା କିମ୍ବା ସୁବର୍ଣ୍ଣ-ସୂତ୍ରରେ ଅଳଙ୍କାର (କଟିମେଖଳା, କଟିସୂତ୍ର ଇତ୍ୟାଦି) ନିର୍ମାଣ କରିବାକୁ 'ଗୁଣ' ଓ ଘନ (ନିଦା ଅଳଙ୍କାର ମୁଦି ପ୍ରଭୃତି) ସୁଷିର (ପୋଲ୍‌-ଜଉଦିଆ କଣ୍ଠକ କୁଣ୍ଡଳ ପ୍ରଭୃତି ଅଳଙ୍କାର) ଓ ପୃଷତାଦିଯୁକ୍ତ (ସରୁଦାଗୁଡ଼ି ପ୍ରଭୃତି) ଅଳଙ୍କାରବିଶେଷକୁ 'କ୍ଷୁଦ୍ରକ' କୁହାଯାଏ । କୌଣସି ଅଳଙ୍କାରରେ ହୀରା, ନୀଳା, ମୋତି, ମାଣିକ୍ୟ ଓ ବୈଦୂର୍ଯ୍ୟ ପ୍ରଭୃତି ମଣି ସଂଯୋଗ କରିବାକୁ ହେଲେ ଅର୍ଥାତ୍ ପଥର ବସାଇବାକୁ ହେଲେ, ମଣିର ଏକପଞ୍ଚମାଂଶ ସୁବର୍ଣ୍ଣ (କାଞ୍ଚନ) ପଥର ବସାଇବା ଅଳଙ୍କାର ଖୋପରେ ଭର୍ତ୍ତିକରିବେ ଏବଂ ମଣିର ଏକଦଶମାଂଶ କାଞ୍ଚନ ବସାଯିବା ମଣିର ଦୃଢ଼ତା ସମ୍ପାଦନ ପାଇଁ ତାର ଚତୁର୍ଦ୍ଦିଗରେ ଛଡ଼ଣି କରି କୁନ୍ଦନକାର୍ଯ୍ୟରେ ବ୍ୟବହାର କରିବେ । ଯେଉଁ ସୁନା ଅଳଙ୍କାରରେ ମଣି ବସାଯିବ ସେହି ଅଳଙ୍କାରର

ତସ୍ମାଦ୍ରକ୍ଷେତ୍ । ପୃଷତକାଚକର୍ମଣଃ ତ୍ରୟୋ ହି ଭାଗାଃ ପରଭାଣ୍ଡଂ ଦ୍ୱୌ ବାସ୍ତୁକମ୍ । ଚତ୍ୱାରୋ ବା ବାସ୍ତୁକଂ ତ୍ରୟଃ ପରଭାଣ୍ଡମ୍ । (୮) ତ୍ୱଷ୍ଟୃକର୍ମଣଃ । ଶୁଲ୍ବଭାଣ୍ଡଂ ସମସୁବର୍ଣ୍ଣେନ ସଂଯୂହୟେତ୍ । ରୂପ୍ୟଭାଣ୍ଡଂ ଘନଂ ଘନସୁଷିରଂ ବା ସୁବର୍ଣ୍ଣାର୍ଦ୍ଧେନ ଅବଲେପ-ୟେତ୍ । ଚତୁର୍ଭାଗସୁବର୍ଣ୍ଣଂ ବାଲୁକାହିଂଗୁଳକସ୍ୟ ରସେନ ଚୂର୍ଣ୍ଣେନ

ସୁନାରେ ସ୍ୱର୍ଣ୍ଣକାର (ସୁନାରି) ମାନେ ଚାରିଭାଗରୁ ଏକଭାଗ ରୁପା ମିଶାଇ ସେତିକ ପରିମାଣର ସୁନା ନେଇଯାନ୍ତି ଏବଂ ରୁପାଅଳଙ୍କାରରୁ ଏକ-ଚତୁର୍ଥାଂଶ ରୁପା ନେଇଯାଇ ସେଥିରେ ସେତିକ ପରିମାଣ ତମ୍ବା ମଧ୍ୟ ମିଶାଇ ଦିଅନ୍ତି । ଏପରି କରି ମଧ୍ୟ ଯେଉଁ ସୁନା ଓ ରୁପାର ଅଳଙ୍କାରରେ ରୁପା ଓ ତମ୍ବା ମିଶାନ୍ତି, ସେହି ଅଳଙ୍କାରକୁ ଏପରି ରଙ୍ଗାଇ ଦିଅନ୍ତି ଯେ ତାହା ଶୁଦ୍ଧ ସୁନା ଓ ଶୁଦ୍ଧ ରୁପାପରି ତେଜୀୟାନ୍ ଦେଖାଯାଏ । ଏଣୁ ଅକ୍ଷଶାଳାଧ୍ୟକ୍ଷ ଏଥିପ୍ରତି ସାବଧାନ ରହିବେ । ପୁଞ୍ଜିପଥରବସା ଅଳଙ୍କାର ପାଇଁ ଆବଶ୍ୟକ ହେବା ସୁବର୍ଣ୍ଣର ପାଞ୍ଚଭାଗରୁ ତିନିଭାଗରେ ପଥରବସାଯିବା ସକାଶେ ଚାରିକୋଣିଆଁ, ଛ'କୋଣିଆଁ, ଚକା ବା ପଦ୍ମ ସ୍ୱସ୍ତିକାକାର ମନମୁତାବକ ନକ୍ସାର * ପରିଭାଣ୍ଡ (ଯାହା ଉପରେ ପଥର ବସାଯାଏ) ଏବଂ ବଳକା ଦୁଇଭାଗ ସୁନାରେ ଅଳଙ୍କାରର ବାସ୍ତୁକ ଅର୍ଥାତ୍ ଏହି ପରିଭାଣ୍ଡକୁ ଧାରଣ କରିବାର 'ପୀଠ' ନିର୍ମାଣ କରିବେ । ଅଥବା ମୋଟା ପଥର ବସାଇବା ଅଳଙ୍କାର ପାଇଁ ଯେଉଁ ସୁନା ଆବଶ୍ୟକ ତାର ସାତଭାଗରୁ ଚାରିଭାଗରେ ବାସ୍ତୁକ ଏବଂ ତିନିଭାଗରେ ପରିଭାଣ୍ଡ ନିର୍ମାଣ କରିବାକୁ ହେବ । (୮) ତମ୍ବା ଓ ରୁପାର ଖାଡ଼ି, ପର୍ଦ୍ଦା ଇତ୍ୟାଦିରେ ସୁନାପର୍ଦ୍ଦା ଚଢ଼ାଇବା କାର୍ଯ୍ୟକୁ 'ତ୍ୱଷ୍ଟୃକର୍ମ' କୁହାଯାଏ । ସୁନାଖଡ଼ୁ ପ୍ରଭୃତି ଅଳଙ୍କାର ତିଆରି କରିବାକୁ ହେଲେ ନିଦା-ତମ୍ବାଖାଡ଼ି ଉପରେ ଏହାର ସମପରିମାଣ ସୁନାପର୍ଦ୍ଦା ଚଢ଼ାଇବାକୁ ହେବ । କଙ୍କଣ, ମୁଦି, ଥାଳି, କଳଶ, ଝରି ପ୍ରଭୃତି ରୁପା ଅଳଙ୍କାର, ବାସନ ଇତ୍ୟାଦିରେ ତାର ଅର୍ଦ୍ଧପରିମାଣ ଖୁବ୍ ପାତଳା ସୁନାପର୍ଦ୍ଦା ସେଥିରେ ଲେପିଲ୍ପରି ଲଗାଇଦେବାକୁ ହେବ ଏବଂ ତମ୍ବା କିମ୍ବା ରୁପା ଅଳଙ୍କାର ବା ତମ୍ବା, ରୁପା ପାତ୍ରମାନଙ୍କରେ ଉକ୍ତ ପଦାର୍ଥର

* ପରିଭାଣ୍ଡ = ପଦ୍ମ ସ୍ୱସ୍ତିକାଦି ଆକାରର ଠୁଲୀ; ବାସ୍ତୁକ = ଆଧାର—Bottom.

ବା ବାସଯେତ୍ । (୯) ତପନୀୟଂ ଜ୍ୟେଷ୍ଠଂ ସୁବର୍ଣଂ ସୁରାଗଂ, ସମସୀସାତିକ୍ରାନ୍ତଂ ପାକପତ୍ରପକ୍ୱଂ ସୈନ୍ଧବିକୟୋଜ୍ଜ୍ୱାଳିତଂ ନୀଲପୀତଶ୍ୱେତହରିତଶୁକପୋତବର୍ଣାନାଂ ପ୍ରକୃତିର୍ଭବତି । ତୀକ୍ଷ୍ଣଂ ଚାସ୍ୟ ମୟୂରଗ୍ରୀବାଭଂ ଶ୍ୱେତଭଂଗଂ ଚିମିଚିମାୟିତଂ ପୀତଚୂର୍ଣିତଂ କାକଣିକଃ ସୁବର୍ଣରାଗଃ । (୧୦) ତାରମୁପଶୁଦ୍ଧଂ ବା । ଅସ୍ଥିତୁତ୍ଥେ ଚତୁଃ, ସମସୀସେ ଚତୁଃ, ଶୁଷ୍କତୁତ୍ଥେ ଚତୁଃ,

---

ଗୁରଭାଗରୁ ଏକଭାଗ ସୁନାକୁ ହିଙ୍ଗୁଳ ଓ ବାଲୁକାର ଚୂର୍ଣ୍ଣ ଏବଂ ପାରଦ ସଂଯୋଗରେ ଦ୍ରବ କରାଇ ତାକୁ ସେହି ଅଳଙ୍କାର ଓ ପାତ୍ରମାନଙ୍କ ଉପରେ ଚଢ଼ାଇବାକୁ ହେବ । ଏହାକୁ 'ସୁନାପାଣି ଚଢ଼ାଇବା' କହନ୍ତି । (୯) ତପନୀୟ ଅର୍ଥାତ୍ ଅଳଙ୍କାରନିର୍ମାଣଯୋଗ୍ୟ ସୁବର୍ଣ୍ଣ ଉତ୍ତମ ଓ ପଦ୍ମକେଶର ବର୍ଣ୍ଣ, ତେଜୋମୟ (ଚକ୍‌ଚକିଆ), ମନୋହର କାନ୍ତିବିଶିଷ୍ଟ ଏବଂ ନୀଳପୀତାଦି ପଞ୍ଚବର୍ଣ୍ଣର କାରଣ ଅଟେ । ଅଶୁଦ୍ଧ ସୁବର୍ଣ୍ଣକୁ ସମପରିମାଣ ସୀସାରେ ଶୋଧିତ କରିବାପରେ ତାକୁ ପାତଳା ପତ୍ରୀକରି ବଣଘସି-ନିଆଁରେ ପୋଡ଼ି ସୈନ୍ଧବମୃତ୍ତିକା ଦ୍ୱାରା (ସୈନ୍ଧବଲବଣ ମିଶ୍ରିତ ମୃତ୍ତିକା ଦ୍ୱାରା) ଉଜ୍ଜ୍ୱଳ କଲେ ତାହା ମଧ୍ୟ ଉତ୍ତମତା ପ୍ରାପ୍ତହୁଏ ଏବଂ କ୍ରମଶଃ ନୀଳ, ପୀତ, ଶ୍ୱେତ, ହରିତ (ସବୁଜ) ଶୁକପକ୍ଷ ଓ କପୋତବର୍ଣ୍ଣର କାରଣ ହୋଇଥାଏ । ଏହି ତପନୀୟ ସୁବର୍ଣ୍ଣର ଶୋହଳ ମସାରେ ଏକଚତୁର୍ଥାଂଶ ମୟୂରକଣ୍ଠ-ବର୍ଣ୍ଣ, ଭାଙ୍ଗିଲେ ଶ୍ୱେତବର୍ଣ୍ଣ ଓ ଅତ୍ୟନ୍ତ କାନ୍ତିଯୁକ୍ତ 'ତୀକ୍ଷ୍ଣ' ନାମକ ଲୌହ-ଧାତୁମୟ ପଦାର୍ଥକୁ (ମୟୂରଗିରିଆ ବା **Copper-sulphate**) ଗୁଣ୍ଡ଼କରି ଉକ୍ତ ସୁବର୍ଣ୍ଣରେ ବିଧିମତ ଯୋଗକରି ଶୁଦ୍ଧକଲେ ତହିଁରୁ ଉତ୍ତମ ବର୍ଣ୍ଣ ବାହାରେ ଓ ତାହା ଅତିଶୟ ରମଣୀୟ ଦେଖାଯାଏ । (୧୦) ଅତ୍ୟନ୍ତ ଶୁଦ୍ଧ ରୌପ୍ୟ ମଧ୍ୟ ନୀଳାଦି ପଞ୍ଚବର୍ଣ୍ଣର କାରଣ ଅଟେ । ଅଶୁଦ୍ଧ ରୌପ୍ୟ (ରୂପା)କୁ ହାଡ଼ଗୁଣ୍ଡମିଶା ମାଟିରେ ତିଆରି ହୋଇଥିବା 'ତୁତ୍ଥ' ଅର୍ଥାତ୍ 'କୋଇ'ରେ ଚାରିଥର, ସମପରିମାଣ ସୀସାମିଶ୍ରିତ ମାଟିକୋଇରେ ଚାରିଥର, କଠିନ ବାଲୁକାମୟ ମାଟିକୋଇରେ ଚାରିଥର, କେବଳ ମାଟିକୋଇରେ ତିନିଥର ଏବଂ ଗୋବରମିଶା ମାଟିରେ ତିଆରି କୋଇରେ ଦୁଇଥର, ଏପରି ସତର ଥର ଅଉଟାଇ ସୈନ୍ଧବଲବଣଯୁକ୍ତ ମୃତ୍ତିକାରେ ଉଜ୍ଜ୍ୱଳ

କପାଳେଭିର୍ଗୋମୟେର୍ଦ୍ଧ୍ମଃ, ଏବଂ ସପ୍ତଦଶତୁତ୍ଥାଭକ୍ରାନ୍ତଂ ସୈନ୍ଧବକୟୋଜ୍ଜ୍ୱଳିତମ୍ । ଏତସ୍ମାତ୍କାକଣ୍ୟୁତ୍ତରାପସାରିତା । ଆ ଦ୍ୱିମାଷାଦିତି ସୁବର୍ଣ୍ଣେ ଦେୟଂ, ପଶ୍ଚାଦ୍ ରାଗଯୋଗଃ । ଶ୍ୱେତତାରଂ ଭବତି । (୧୧) ତ୍ରୟୋଂଽଶାସ୍ତପନୀୟସ୍ୟ ଦ୍ୱାତ୍ରିଂଶଦ୍ଭାଗଶ୍ୱେତତାରମୂର୍ଚ୍ଛିତଂ ତତ୍ ଶ୍ୱେତଲୋହିତକଂ ଭବତି । ତାମ୍ରଂ ପୀତକଂ କରୋତି । (୧୨) ତପନୀୟମୁଜ୍ଜ୍ୱାଲ୍ୟ ରାଗତ୍ରିଭାଗଂ ଦଦ୍ୟାତ୍ । ପୀତରାଗଂ ଭବତି । ଶ୍ୱେତତାରଭାଗୌ ଦ୍ୱାବେକସ୍ତପନୀୟସ୍ୟ ମୁଦ୍ଗବର୍ଣ୍ଣଂ କରୋତି । କାଳାୟସସ୍ୟାର୍ଦ୍ଧଭାଗାଭ୍ୟକ୍ତଂ

---

କରି ସାଣବାଲିରେ ଘଷିଲେ ଶୁଦ୍ଧହୁଏ । ଏହି ଶୁଦ୍ଧରୂପାରୁ ଏକ କାକଣି ଅର୍ଥାତ୍ ଏକମସାର ଚୂରଭାଗରୁ ଏକଭାଗ ଶୁଦ୍ଧ ସୁବର୍ଣ୍ଣରେ ମିଶାଇ ସେଥିରୁ ସେତିକି ପ୍ରମାଣ ସୁବର୍ଣ୍ଣ ବାହାର କରାଯାଏ । ଏପରି ଅଠ କାକଣି ପର୍ଯ୍ୟନ୍ତ ଅଶୁଦ୍ଧ ରୌପ୍ୟ ଅଶୁଦ୍ଧ ସୁବର୍ଣ୍ଣରେ ମିଶାଇ ତହିଁରେ ଉପରୋକ୍ତ ସ୍ୱର୍ଣ୍ଣ-ରଞ୍ଜକପଦାର୍ଥ ଯୋଗକଲେ ଅଳ୍ପ ଶ୍ୱେତବର୍ଣ୍ଣ ଶ୍ୱେତତାର ନାମକ ସୁବର୍ଣ୍ଣ ପ୍ରସ୍ତୁତ ହୁଏ । (ଉକ୍ତ ରୌପ୍ୟମିଶ୍ରିତ ସୁବର୍ଣ୍ଣର ଶ୍ୱେତଗୁଣ ନାଶକରି ପ୍ରକୃତ ସ୍ୱର୍ଣ୍ଣବର୍ଣ୍ଣ କରିବାକୁ ଏହି ରଞ୍ଜକ ଦିଅନ୍ତି) । (୧୧) ସାମାନ୍ୟ ସୁବର୍ଣ୍ଣକୁ ବତିଶି ଭାଗକରି ସେଥିରୁ ତିନିଭାଗ ବାହାର କରିବା ପରେ ସେଥିରେ ଶୁଦ୍ଧ ତପନୀୟ ସୁବର୍ଣ୍ଣ ତିନିଭାଗ ମିଶାଇବ । ପରେ ଏଥିସହିତ ବତିଶିଭାଗ ଶ୍ୱେତତାର ଯୋଗକରି ଉପରୋକ୍ତ ବିଧିରେ ଅଉଟାଇଲେ ଏହା ଶ୍ୱେତଲୋହିତ ମିଶ୍ରିତବର୍ଣ୍ଣ ଧାରଣ କରେ ଏବଂ ଶ୍ୱେତତାର ବଦଳରେ ଶ୍ୱେତତାର ସମପରିମିତ ତାମ୍ର ଯୋଗକରି ପୂର୍ବନିୟମରେ ଅଉଟାଇଲେ ଏହା ପୀତବର୍ଣ୍ଣ ଧାରଣ କରେ * । (୧୨) ତପନୀୟ ସୁବର୍ଣ୍ଣକୁ ସୈନ୍ଧବଲବଣଯୁକ୍ତ ମୃତ୍ତିକାଦ୍ୱାରା ଉଜ୍ଜ୍ୱଳକରି ତହିଁରେ ତିନିଭାଗ ତମ୍ବା ମିଶାଇ ଅଉଟାଇଲେ ତାହା ରକ୍ତପୀତ ବର୍ଣ୍ଣ ଧାରଣ କରେ ।

---

* ମତାନ୍ତରେ—ତପନୀୟ ସୁବର୍ଣ୍ଣ ତିନିଭାଗ ଓ ଶୁଦ୍ଧ ରୌପ୍ୟ ବତିଶିଭାଗ ଏକତ୍ର ମିଶ୍ରିତ କରି ଆଉଟାଇଲେ ତାହା ଶ୍ୱେତଲୋହିତବର୍ଣ୍ଣ ଧାରଣ କରେ ଏବଂ ବତିଶିଭାଗ ତମ୍ବାରେ ତିନିଭାଗ ଶୁଦ୍ଧ ସୁବର୍ଣ୍ଣ ମିଶାଇ ଆଉଟାଇଲେ ତାହା ପୀତରକ୍ତବର୍ଣ୍ଣ ଧାରଣ କରେ ।

କୃଷ୍ଣଂ ଭବତି । ପ୍ରତିଲେପିନା ରସେନ ଦ୍ୱିଗୁଣାଭ୍ୟକ୍ତଂ ତପନୀୟଂ ଶୁକପତ୍ରବର୍ଣ୍ଣଂ ଭବତି । ତସ୍ୟାରମ୍ଭେ ରାଗବିଶେଷେଷୁ ପ୍ରତିବର୍ଣ୍ଣିକାଂ ଗୃହ୍ଣୀୟାତ୍ । (୧୩) ତୀକ୍ଷ୍ଣ ତାମ୍ର ସଂସ୍କାରଂ ଚ ବୁଧ୍ୟେତ । ତସ୍ମାଦ୍ ବଜ୍ରମଣିମୁକ୍ତାପ୍ରବାଳରୂପାଣାମପନେୟିମାନଂ ଚ ରୂପ୍ୟସୁବର୍ଣ୍ଣଭାଣ୍ଡବନ୍ଧପ୍ରମାଣାନି ଚେତି ।

(୧୪) ସମରାଗଂ ସମଦ୍ୱନ୍ଦ୍ୱମସକ୍ତପୃଷତଂ ସ୍ଥିରମ୍ ।
ସୁପ୍ରମୃଷ୍ଟମସଂପୀତଂ ବିଭକ୍ତଂ ଧାରଣେ ସୁଖମ୍ ॥

---

ଶ୍ୱେତତାର ରୂପା ଦୁଇଭାଗ ଏକଭାଗ ସୁବର୍ଣ୍ଣରେ ମିଶାଇ ଅଉଟାଇଲେ ତାହା ମୁଦ୍‌ଗବର୍ଣ୍ଣ ଧାରଣ କରେ (ମୁଗପରି ବର୍ଣ୍ଣ ଧାରଣ କରେ) ।

କାଳାୟସ ଲୌହର ଛ'ଭାଗରୁ ଏକଭାଗ ଅର୍ଥାତ୍ ବତିଶିଭାଗ ସୁବର୍ଣ୍ଣକୁ ଅର୍ଦ୍ଧଭାଗ କାଳାୟସ ବା ତୀକ୍ଷ୍‌ଣଲୋହ ଦ୍ରବରେ ଅନୁଲିପ୍ତ କଲେ ତାହା କୃଷ୍ଣବର୍ଣ୍ଣ ଧାରଣ କରେ । (ରଞ୍ଜକାର୍ଥ ତୀକ୍ଷ୍ଣ ତିନିଭାଗ ବୋଲି ପୂର୍ବେ କୁହାଯାଇଛି, ଏଥିର ଅର୍ଦ୍ଧଭାଗ ଅର୍ଥାତ୍ ଛ'ଭାଗରୁ ଏକଭାଗ) ପାରଦଯୁକ୍ତ କାଳାୟସ ଦ୍ରବରେ ତପନୀୟ ସୁବର୍ଣ୍ଣକୁ ଦୁଇଥର ଅନୁଲିପ୍ତ କଲେ ତାହା ଶୁକପକ୍ଷବର୍ଣ୍ଣ ଧାରଣ କରେ । ଅତଏବ ଏସମସ୍ତ ପ୍ରକାର ସୁବର୍ଣ୍ଣକୁ ଅଳଙ୍କାର ପ୍ରସ୍ତୁତରେ ବିନିଯୋଗ କରିବାପୂର୍ବରୁ ତାକୁ କଷଟିପଥରରେ କଷି ଅସଲ ନକଲର ତାରତମ୍ୟ ଜାଣିବାକୁ ହେବ । (୧୩) ରୂପା ଓ ସୁନାକୁ ରଙ୍ଗାଇବା ପାଇଁ ଦରକାର ହେବା ତୀକ୍ଷ୍‌ଣଲୌହ ଓ ତାମ୍ରର ଶୋଧନ ଓ ବ୍ୟବହାର ପ୍ରକ୍ରିୟା ଧାତୁଶୋଧନ ଶାସ୍ତ୍ରରୁ ଜାଣିବାକୁ ହେବ । ସୁବର୍ଣ୍ଣ ରଜତ ଇତ୍ୟାଦିର ଅସଲ ନକଲ ଜାଣିବା ପାଇଁ ଯେଉଁ ଉପାୟ ଅବଲମ୍ବନ କରାଯାଏ, ସେହି ଉପାୟ ଅବଲମ୍ବନ କରି ହୀରା, ମଣି, ମୁକ୍ତା, ପ୍ରବାଳ ଇତ୍ୟାଦିର ଅପନେୟିମାନ ଅର୍ଥାତ୍ ଅସଲ ସ୍ଥାନରେ ନକଲ ରଖି ସୁନାରି ଯେଉଁ ଗୋଲବାଜୀ କରେ ଏବଂ ଅଳଙ୍କାରରେ ମଣିମୁକ୍ତା ବସାଇବା ପାଇଁ ଯେଉଁ ଖୋପ ବା ଚୂଳି କରାଯାଏ, ସେବିଷୟରେ ମଧ୍ୟ ସୁନାରି ଯେଉଁ କାରସାଦି କରେ ତାହା ଜାଣିବାକୁ ସୁବର୍ଣ୍ଣାଧ୍ୟକ୍ଷ ସତର୍କ ରହିବାକୁ ହେବ । (୧୪,୧୫) ତପନୀୟ ଅର୍ଥାତ୍ ଅଳଙ୍କାର କରିବାପାଇଁ ଉପଯୁକ୍ତ ସୁବର୍ଣ୍ଣର ଗୁଣ ଚଉଦପ୍ରକାର । ଯଥା—ଏକଯୋଡ଼ି ଅଳଙ୍କାରର ଏକାପରି ବର୍ଣ୍ଣ,

(୧୫) ଅଭିନୀତଂ ପ୍ରସ୍ୟୁକ୍ତଂ ସଂସ୍ଥାନମଧୁରଂ ସମମ୍ ।
ମନୋନେତ୍ରାଭିରାମଂ ଚ ତପନୀୟ ଗୁଣାଃ ସ୍ମୃତାଃ ॥

---

ଏକାପରି ମାପ, ତୁଳ, ପୋଡ଼କଣ ଓ ଗୁଟିକାଶୂନ୍ୟ (ଚିକ୍କଣ) ହୋଇଥିବା ଅଭଳ ବା ଉତ୍ତମଭାବରେ ନିର୍ମିତ ହୋଇଥିବା ଗୋଟିଏ ଅଳଙ୍କାରରେ ଯେଉଁପରି ଡାଳୀ, ଫୁଲ୍ ଓ ପଥରବସା ହୋଇଥାଏ, ଅନ୍ୟଟିରେ ମଧ୍ୟ ଠିକ୍ ସେପରି ଡାଳୀ, ଫୁଲ, ପଥରବସାଇବା, ଉତ୍ତମଭାବରେ ଉଜ୍ଜ୍ୱଳ କରାଯାଇଥିବା, ନକଲ୍ ରଙ୍ଗ ଚଢ଼ାହୋଇ ନଥିବା ବା ମିଶାମିଶି ହୋଇନଥିବା, ବର୍ଣ୍ଣ ବଢ଼ାଇବା ସକାଶେ ରଙ୍ଗପାଣି ଡିଆ ହୋଇନଥିବା, ଡାଳୀ କଣ୍ଟାଳନ ସ୍ପଷ୍ଟ ଦେଖାଯାଉଥିବା, ଧାରଣ କରିବା ବେଳେ ସୁଖକର ବୋଧ ହେଉଥିବା, ସ୍ପଷ୍ଟ ଜ୍ୟୋତି ବିକାରଣ କରୁଥିବା, ଦୀପ୍ତିମାନ ଦେଖାଯାଉଥିବା, ମନୋହର ଆକାର ଧାରଣ କରିଥିବା, ପୋଲଢୋଲା ହୋଇନଥିବା, ମନୋହର ଓ ନେତ୍ରପ୍ରୀତିଜନକ ହୋଇଥିବା—ଏ ତେରଗୋଟି ଗୁଣ ଶୁଦ୍ଧ ସୁବର୍ଣ୍ଣାଳଙ୍କାରର ଅଟେ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ତ୍ରୟୋଦଶୋଽଧ୍ୟାୟଃ—ଅକ୍ଷଶାଳାୟାଂ ସୁବର୍ଣ୍ଣାଧ୍ୟକ୍ଷଃ—ଆଦିତଶ୍ଚତୁସ୍ତ୍ରିଂଶଃ ।

---

# ଚତୁର୍ଦ୍ଦଶାଧ୍ୟାୟଃ

## ଦ୍ୱାତ୍ରିଂଶ ପ୍ରକରଣମ୍—ବିଶିଖାୟାଂ ସୌବର୍ଣିକ ପ୍ରଚାରଃ

## THE DUTIES OF THE STATE GOLDSMITH IN THE HIGH ROAD

( ସୁନାବଜାରରେ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା ସୁନାବେପାରୀଙ୍କ ବ୍ୟାପାର )

**(୧) ସୌବର୍ଣିକଃ ପୌରଜାନପଦାନାଂ ରୂପ୍ୟସୁବର୍ଣ-ମାବେଶନଭିଃ କାରୟେତ୍ । ନିର୍ଦ୍ଦିଷ୍ଟକାଳକାର୍ଯ୍ୟଂ ଚ କର୍ମ କୁର୍ଯୁଃ, ଅନିର୍ଦ୍ଦିଷ୍ଟକାଳଂ କାର୍ଯ୍ୟାପଦେଶମ୍ । (୨) କାଳାତିପାତନେ ପାଦହୀନଂ ବେତନଂ ତଦ୍‌ଦ୍ୱିଗୁଣଶ୍ଚ ଦଣ୍ଡଃ । କାର୍ଯ୍ୟସ୍ୟାନ୍ୟଥା-**

---

(୧) ସୌବର୍ଣିକ ଅର୍ଥାତ୍ ରାଜକୀୟ ସୁବର୍ଣ୍ଣ ବ୍ୟବହାରୀ ପୁରବାସୀ ଏବଂ ଦେଶବାସୀଙ୍କର ସୁବର୍ଣ୍ଣ ଓ ରୌପ୍ୟ ଶିଳ୍ପକାର୍ଯ୍ୟମାନଙ୍କୁ ଅର୍ଥାତ୍ ସୁବର୍ଣ୍ଣାଦି ଅଳଙ୍କାର ଏବଂ ରୌପ୍ୟ ଅଳଙ୍କାର, ବାସନ ପ୍ରଭୃତି ପଦାର୍ଥମାନଙ୍କୁ ଶିଳ୍ପଶାଳାରେ ନିଯୁକ୍ତଥିବା ସୁନାରି ଓ ଶିଳ୍ପୀମାନଙ୍କ ଦ୍ୱାରା ନିର୍ମାଣ କରାଇବେ । ଉକ୍ତ ଅଳଙ୍କାରାଦି ନିର୍ମାଣ କରିବା ସକାଶେ ସୁନା ରୁପାର ଶିଳ୍ପୀମାନେ 'ଏତିକି ଦିନ ମଧ୍ୟରେ ଅମୁକ ଅଳଙ୍କାର ବା ବାସନ ପ୍ରଭୃତି ପଦାର୍ଥ ଏତିକି ବେତନ ନେଇ ତିଆରିକରି ଦେଇଦେବୁ'—ଏପରି ନିଶ୍ଚିତ କରି ଶିଳ୍ପକାର୍ଯ୍ୟମାନଙ୍କୁ କରିବେ । ଶିଳ୍ପକାର୍ଯ୍ୟର ଗୁରୁତା ଦୃଷ୍ଟିରେ ଅର୍ଥାତ୍ ମୂଲ୍ୟବାନ ସୂକ୍ଷ୍ମ ଶିଳ୍ପକଳାଯୁକ୍ତ ଅଳଂକାରାଦି ନିର୍ମାଣ ବିଷୟରେ ନିର୍ଦ୍ଦିଷ୍ଟ ସମୟ ନକହି ଶିଳ୍ପକାର୍ଯ୍ୟ କରିବେ । (୨) ଶିଳ୍ପକାର ନିର୍ଦ୍ଦିଷ୍ଟ ସମୟରେ ଅଳଙ୍କାରାଦି ନଦେଇ ଅନ୍ୟ ସମୟରେ ଦେବି ବୋଲି କହି କାଳହରଣ କଲେ ନିର୍ଦ୍ଦିଷ୍ଟ ବେତନ (ମଜୁରି)ର ଏକଚତୁର୍ଥାଂଶ ନ୍ୟୂନ ମଜୁରି ପାଇବା ସଙ୍ଗେ ସଙ୍ଗେ ଏହାର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଅର୍ଥାତ୍ ଏକଟଙ୍କା ମଜୁରି ନିର୍ଦ୍ଦିଷ୍ଟ ହୋଇଥିବା ସ୍ଥଳେ ଚାରିଅଣା ନ୍ୟୂନ ଓ ଅଠଅଣା ଅର୍ଥଦଣ୍ଡ ଏପରି ମୋଟ ବାରଅଣା ହରାଇ ଚାରିଅଣା ମାତ୍ର ମଜୁରି ପାଇବେ । ନିର୍ଦ୍ଦିଷ୍ଟ କାର୍ଯ୍ୟର ଅନ୍ୟଥାଚରଣ କଲେ ଅର୍ଥାତ୍

**କରଣେ ବେତନନାଶଃ ତଦ୍ଵିଗୁଣଶ୍ଚ ଦଣ୍ଡଃ । (୩) ଯଥାବର୍ଣ୍ଣ ପ୍ରମାଣଂ ନିକ୍ଷେପଂ ଗୃହ୍ଣୀୟୁଃ ତଥାବିଧମେବାର୍ପୟେୟୁଃ, କାଳାନ୍ତରାଦପି ଚ ତଥାବିଧମେବ ପ୍ରତିଗୃହ୍ଣୀୟୁରନ୍ୟତ୍ର କ୍ଷୀଣ ପରିଶୀର୍ଣ୍ଣାଭ୍ୟାମ୍ । (୪) ଆବେଶନିଭିଃ ସୁବର୍ଣ୍ଣପୁଦ୍ଗଲଲକ୍ଷଣ-ପ୍ରୟୋଗେଷୁ ତତ୍ତ୍ଵଜ୍ଞାନୀୟାତ୍ । ତପ୍ତକଲଧୌତକୟୋଃ କାକଣୀକଃ**

କଙ୍କଣ ଗଢ଼ିବାକୁ ନେଇ କୁଣ୍ଡଳ ଗଢ଼ିଲେ, ସମସ୍ତ ମଜୁରି ହରାଇବା ସଙ୍ଗେ ସଙ୍ଗେ ମଜୁରିର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ * । (୩) ଶିଳ୍ପୀମାନେ ଯେପରି ବର୍ଣ୍ଣର ଓ ଯେତିକି ପରିମାଣର ସୁନା ବା ରୂପା ଅଳଙ୍କାର, ବାସନ ପ୍ରଭୃତି ନିର୍ମ୍ମାଣ କରିବା ସକାଶେ ନେଇଥିବେ, ଫେରାଇବା ବେଳେ ସେପରି ବର୍ଣ୍ଣ ଓ ସେତିକି ଓଜନର ଅଳଙ୍କାର ବା ବାସନ ପ୍ରଭୃତି ଗଠିତ ପଦାର୍ଥ ଫେରାଇବେ । ଶିଳ୍ପକାରର ଦୀର୍ଘପ୍ରବାସ ବା ଅକାଳମୃତ୍ୟୁ ହେଲେ ତାର ପୁତ୍ରାଦିଙ୍କଠାରୁ ସେହିପରି ବର୍ଣ୍ଣ ଓ ଓଜନର ସୁନାରୂପା ଗ୍ରହଣ କରିବାକୁ ହେବ । କିନ୍ତୁ ଏହି ବିଳମ୍ବପାଇଁ ଅଧିକ ବର୍ଣ୍ଣ ବା ଓଜନର ସୁନାରୂପା ଗ୍ରହଣ କିମ୍ବା ସେଥିପାଇଁ ଅର୍ଥଦଣ୍ଡର ବ୍ୟବସ୍ଥା କରାଯାଇ ପାରିବ ନାହିଁ । ଅନ୍ୟ ମତରେ ଉପରୋକ୍ତ କାଳାତିକ୍ରମ ଘଟଣାରେ ଯେପରି ମୁଣ୍ଡାସୁନା ବା ରୂପା ଶିଳ୍ପକାରଙ୍କୁ ଦିଆଯାଇଥାଏ, ସେପରି ଅଗଢ଼ା ମୁଣ୍ଡା ସୁନାରୂପା ତାହାଙ୍କଠାରୁ ଫେରସ୍ତ ଅଣିବାକୁ ହେବ । ମାତ୍ର ଗଢ଼ାଯାଇଥିବା ଅଳଙ୍କାର ଓ ବାସନ ପ୍ରଭୃତି ପଦାର୍ଥକୁ ଯଦି ଶିଳ୍ପକାର ନିଜେ ବ୍ୟବହାର କରି ଘଷିଆ ବା ଗଣ୍ଡିଆ କରି ଦେଇଥାଏ, ତେବେ ତାହା ଗ୍ରହଣ ନକରି ସେଥିପାଇଁ ଉପଯୁକ୍ତ ଦଣ୍ଡର ବ୍ୟବସ୍ଥା କରିବାକୁ ହେବ । (୪) ସୌବର୍ଣ୍ଣିକ, ନିଜ ରାଜ୍ୟରେ ଥିବା ସ୍ଵର୍ଣ୍ଣରୌପ୍ୟ ଶିଳ୍ପୀମାନଙ୍କର ସ୍ଵବର୍ଣ୍ଣର ଉତ୍କର୍ଷ, ଅଳଙ୍କାର ଓ ଝରି ପ୍ରଭୃତି ବାସନ, ମୁଦ୍ରା (ଛାପ) ଇତ୍ୟାଦି ବିଷୟରେ ଥିବା କୃତ୍ରିମ କୌଶଳକୁ ତଦ୍‌ବିଦ ଶିଳ୍ପୀମାନଙ୍କଦ୍ଵାରା ଜାଣିବାକୁ ହେବ । ଅଳଙ୍କାରାଦି ନିର୍ମାଣ କରିବା

* ସାଧାରଣ ଶିଳ୍ପୀମାନଙ୍କୁ ଯେପରି ଦଣ୍ଡ ଦେବାର ବ୍ୟବସ୍ଥା କଣ୍ଟକଶୋଧନ ନାମକ ଆଗାମୀ ଅଧିକରଣରେ ବର୍ଣ୍ଣନା କରାଯାଇଛି, ସୁବର୍ଣ୍ଣ-ରୌପ୍ୟ-ଶିଳ୍ପୀମାନଙ୍କ ଦଣ୍ଡବିଧାନର ବ୍ୟବସ୍ଥା ତା ଅପେକ୍ଷା ଭିନ୍ନପ୍ରକାର । ଏଥିରେ ଶାସକ ନିଜେ ସ୍ଵର୍ଣ୍ଣ-ଶିଳ୍ପକାରଙ୍କୁ ଦଣ୍ଡ ନ ଦେଇ ସୌବର୍ଣ୍ଣିକଙ୍କ ସାହାଯ୍ୟରେ ଦଣ୍ଡ ଦେଇଥାନ୍ତି ।

ସୁବର୍ଣେ କ୍ଷୟୋ ଦେୟଃ । ତୀକ୍ଷ୍ଣକାକଣୀ ରୂପ୍ୟଦ୍ୱିଗୁଣା ରାଗପ୍ରକ୍ଷେପସ୍ତସ୍ୟ ଷଡ଼୍ଭାଗଃ କ୍ଷୟଃ । (୫) ବର୍ଣ୍ଣହୀନେ ମାଷାବରେ ପୂର୍ବଃ ସାହସଦଣ୍ଡଃ, ପ୍ରମାଣହୀନେ ମଧ୍ୟମଃ, ତୁଲାପ୍ରତିମାନୋ-ପଧାବୁତ୍ତମଃ, କୃତଭାଣ୍ଡୋପଧୌ ଚ । (୬) ସୌବର୍ଣିକେନା-ଦୃଷ୍ଟମନ୍ୟତ୍ର ବା ପ୍ରୟୋଗଂ କାରୟତୋ ଦ୍ୱାଦଶପଣୋ ଦଣ୍ଡଃ,

---

ସକାଶେ ସ୍ୱର୍ଣ୍ଣକାରକୁ ଦିଆଯାଇଥିବା ସୁବର୍ଣ୍ଣ ଓ ରୌପ୍ୟର ଷୋହଳ ମସାରେ ଏକ କାକଣି ଅର୍ଥାତ୍ ଏକମସାର ଚାରିଭାଗରୁ ଏକଭାଗ ସ୍ୱର୍ଣ୍ଣକାରକୁ ଛୁଟ ଦେବାକୁ ହେବ । କାଳାୟସ ଏକ କାକଣି ଓ ରୌପ୍ୟ ଦୁଇ କାକଣି ଷୋହଳ ମସା ସୁବର୍ଣ୍ଣରେ ବର୍ଣ୍ଣୋତ୍କର୍ଷ ସକାଶେ ପ୍ରକ୍ଷେପ କରିବାକୁ ହେବ । ଏତଦ୍‌ସ୍ଥଳେ ଅର୍ଦ୍ଧକାକଣି ଛୁଟ ସ୍ୱର୍ଣ୍ଣକାରକୁ ଦେବାକୁ ହେବ । ଅର୍ଥାତ୍ ପ୍ରକ୍ଷିପ୍ତ ହୋଇଥିବା କାଳାୟସ ଏକ କାକଣି ଓ ରୌପ୍ୟ ଦୁଇ କାକଣି ଏପରି ମୋଟ ତିନି କାକଣିର ଛ'ଭାଗରୁ ଏକଭାଗ ବା ଅର୍ଦ୍ଧକାକଣି ସ୍ୱର୍ଣ୍ଣକାରକୁ ଛୁଟ ଦେବାକୁ ହେବ । (୫) ସ୍ୱର୍ଣ୍ଣଶିଳ୍ପୀ ଏକମସା ସ୍ୱର୍ଣ୍ଣମୁଦ୍ରାର ବର୍ଣ୍ଣ ହାନିକଲେ ସେ ପ୍ରଥମସାହସଦଣ୍ଡ (୨୫୦ ମୁଦ୍ରା); ଏହି ମୁଦ୍ରାକୁ ତୁଳରେ ଊଣାକଲେ ମଧ୍ୟମସାହସଦଣ୍ଡ (୫୦୦ ଟଙ୍କା); ଏକମହା ଓଜନର ସୁବର୍ଣ୍ଣ ଅପସାର କରି ତୁଳରେ ଛଳନା କଲେ ଉତ୍ତମସାହସଦଣ୍ଡ (୧୦୦୦ ଟଙ୍କା) ଓ ମଣି ମୁକ୍ତା ବସାଇବା ପାଇଁ କରାଯାଇଥିବା ଖୋପ ବା ଠୁଲିରେ ଛଳନା କଲେ ଉତ୍ତମସାହସଦଣ୍ଡରେ ଦଣ୍ଡିତ ହେବେ । (୬) ସୌବର୍ଣ୍ଣିକଙ୍କ ଅଜଣାରେ କୌଣସି ବ୍ୟକ୍ତି ଯଦି ଶିଳ୍ପଶାଳାରେ ସ୍ୱର୍ଣ୍ଣରୌପ୍ୟର ଅଳଙ୍କାର, ବାସନ ଓ ମୁଦ୍ରା ନିର୍ମାଣ କରାଏ, କିମ୍ବା ସୌବର୍ଣ୍ଣିକଙ୍କୁ ଶିଳ୍ପଶାଳାରେ କାର୍ଯ୍ୟ କରାଇବାକୁ ଜଣାଇ ଅନ୍ୟସ୍ଥାନରେ ଉକ୍ତ ପଦାର୍ଥ ନିର୍ମାଣ କରାଏ, ତେବେ କରାଇବା ବ୍ୟକ୍ତିଙ୍କୁ ବାରପଣ (ବାରଟଙ୍କା) ଓ ଶିଳ୍ପୀଙ୍କୁ ଏହାର ଦୁଇଗୁଣ ଅର୍ଥାତ୍ ଚବିଶିପଣ (ଚବିଶି ଟଙ୍କା) ଅର୍ଥଦଣ୍ଡ ଦିଆଯିବ । ଅପସାର ଅର୍ଥାତ୍ ନିଜକୁ ନିର୍ଦ୍ଦୋଷୀ ସାବ୍ୟସ୍ତ କରିପାରିଲେ ମଧ୍ୟ ସୌବର୍ଣ୍ଣିକଙ୍କ ନିୟମ ଲଙ୍ଘନ କରିଥିବା ଯୋଗୁଁ ଉପରୋକ୍ତ କାର୍ଯ୍ୟ କରାଇବା ଓ କରିବା ବ୍ୟକ୍ତି ଏହି ଦଣ୍ଡ ପାଇବାକୁ ବାଧ୍ୟ ହେବେ । ନିଜକୁ ନିର୍ଦ୍ଦୋଷୀ ସାବ୍ୟସ୍ତ କରିନପାରିବା ପକ୍ଷକୁ ଉକ୍ତ

କର୍ତୁର୍ଦ୍ୱିଗୁଣଃ, ସାପସାରଶ୍ଚେତ୍ । ଅନପସାରଃ କଣ୍ଟକଶୋଧନାୟ ନୀୟେତ । କର୍ତୁଃଶ୍ଚ ଦ୍ୱିଶତୋ ଦଣ୍ଡଃ ପଣଚ୍ଛେଦନଂ ବା । (୭) ତୁଳାପ୍ରତିମାନଭାଣ୍ଡଂ ପୌତବହସ୍ତାତ୍ କ୍ରୀଣୀୟୁଃ । ଅନ୍ୟଥା ଦ୍ୱାଦଶପଣୋ ଦଣ୍ଡଃ । (୮) * ଘନଂ ଘନସୁଷିରଂ ସଂୟୂହ୍ୟ-ମବଲେପ୍ୟଂ ସଂଘାତ୍ୟଂ ବାସିତକଂ ଚ କାରୁକର୍ମ । (୯) ତୁଳାବିଷମମପସାରଣଂ ବିସ୍ରାବଣଂ ପେଟକଃ ପିଙ୍କଶ୍ଚେତି ହରଣୋପାୟାଃ । (୧୦) ସନ୍ନାମିନ୍ୟୁତ୍କୀର୍ଣିକା ଭିନ୍ନମସ୍ତକୋପକଣ୍ଠୀ

କାର୍ଯ୍ୟ କରାଇବା ବ୍ୟକ୍ତିଙ୍କୁ କଣ୍ଟକଶୋଧନ ଅଧିକରଣୋକ୍ତ 'ବାକ୍ୟ-କର୍ମାନୁଯୋଗ' ପ୍ରକରଣର ବ୍ୟବସ୍ଥା ପ୍ରକାରେ ପ୍ରଦେଷ୍ଟାଙ୍କ ନିକଟରେ ମକଦ୍ଦମା ଦାଏରକରି ଦଣ୍ଡବିଧାନ କରାଯିବ ଏବଂ ଏହି ଦୋଷ କରିଥିବା ବ୍ୟକ୍ତିଙ୍କୁ ଦୁଇଶତ ଟଙ୍କା ଜରିମାନା କରାଯିବ । ଜରିମାନା ନ ଦେଇପାରିଲେ ଦୋଷୀର ପଞ୍ଚାଙ୍ଗୁଳି ଛେଦନ କରାଯିବ । (୭) ତୁଳ ଓ ମାପସକାଶେ ସରକାରଙ୍କଦ୍ୱାରା ନିଯୁକ୍ତ ପୌତବାଧ୍ୟକ୍ଷ (ତୁଳମାପନିର୍ଣ୍ଣାୟକ)ଙ୍କଠାରୁ ବଟକରା ଓ ନଉତି, ଗଉଣି, ଅଡ଼ା ପ୍ରଭୃତି କ୍ରୟ କରିବାକୁ ହେବ । ସେପରି ନକରି ନିଜଇଚ୍ଛାରେ କୌଣସି ବ୍ୟକ୍ତି ଏହି ପଦାର୍ଥ ନିର୍ମାଣ କଲେ ବା ଅନ୍ୟଠାରୁ କ୍ରୟ କଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୮) କାରୁକାର୍ଯ୍ୟ ଛ'ପ୍ରକାର । ଯଥା—ଘନ ଅର୍ଥାତ୍ ମୁଦ୍ରା ପ୍ରଭୃତି ନିଦାକାମ, ଘନସୁଷିର ଅର୍ଥାତ୍ ଝରା ପ୍ରଭୃତି ବାସନ, ସଂୟୂହ୍ୟ ଅର୍ଥାତ୍ ମୋଟାପତ୍ରୀରେ ହେବା କାମ, ଅବଲେପ୍ୟ ଅର୍ଥାତ୍ ପତଳାପତ୍ରୀରେ ହେବା କାମ, ସଂଘାତ୍ୟ ଅର୍ଥାତ୍ ଅଣ୍ଟାସୂତା ପ୍ରଭୃତି, ବାସିତକ ଅର୍ଥାତ୍ ସୁନାପାଣି ଚଢ଼ାଇବା କାମ । (୯) ସ୍ୱର୍ଣ୍ଣରୌପ୍ୟାଦି ଦ୍ରବ୍ୟାପହରଣର ଉପାୟ ପାଞ୍ଚପ୍ରକାର । ଯଥା—ତୁଳାବିଷମ, ଅପସାରଣ, ବିସ୍ରାବଣ, ପେଟକ ଓ ପିଂକ । (୧୦) ଦୁଷ୍ଟତୁଳା

* ଘନ—Compact work. ଘନସୁଷିର—Compact and hollow work. ସଂୟୂହ୍ୟ—Soldering. ଅବଲେପ୍ୟ—Amalgamation. ସଂଘାତ୍ୟ—Enclosing. ବାସିତକ—Gilding. ତୁଳାବିଷମ—False balance. ଅପସାରଣ—Removal. ବିସ୍ରାବଣ—Dropping. ପେଟକ—Folding. ପିଙ୍କ—Confounding.

**କୁଶିକ୍ୟା ସକଟୁକକ୍ଷ୍ୟା ପାରବେଲ୍ଲ୍ୟଯୁସ୍କାନ୍ତା ଚ ଦୁଷ୍ଟତୁଳାଃ ।**
**(୧୧) ରୂପ୍ୟସ୍ୟ ଦ୍ୱୌ ଭାଗାବେକଃ ଶୁଲ୍ୱସ୍ୟ ତ୍ରିପୁଟକମ୍ ।**
**ତେନାକରୋଦ୍‌ଗତମପସାର୍ଯତେ ତତ୍ ତ୍ରିପୁଟକାପସାରିତଂ,**
**ଶୁଲ୍ୱେନ ଶୁଲ୍ୱାପସାରିତଂ, ବେଲ୍ଲକେନ ବେଲ୍ଲକାପସାରିତଂ,**

---

ଅର୍ଥାତ୍ ଖରାପ ନିକିତିର ଲକ୍ଷଣ । ଯଥା—ସନ୍ନାମିନୀ (ମୃଦୁଲୌହନିର୍ମିତ ତରାଜୁର ହାଲୁକାକଣ୍ଟା ଯାହାକି ଅଙ୍ଗୁଳି ହଲାଇଲେ ହାଲିଯାଏ ଏବଂ ତୌଲ କରିବା ବ୍ୟକ୍ତିର ଇଚ୍ଛାମୁତାବକ ଲଇଁଯିବାପରି ତିଆରି ହୋଇଥାଏ), ଉତ୍କର୍ଣ୍ଣିକା (ଲୁହାଗୁଣ୍ଡ ଓ ପାରଦ ପ୍ରଭୃତି ଭାରି ପଦାର୍ଥ ପରଳରେ ରହିବାସକାଶେ ଖୋଲ ଥିବା ନିକି), ଭିନ୍ନମସ୍ତକା (ତରାଜୁକଣ୍ଟାର ଅଗ୍ରଭାଗ ଜଣାନପଡ଼ିବା ଭଳି ଦ୍ୱିଭାଗ ହୋଇଥିବା ବା ଭାଙ୍ଗିଯାଇଥିବା ନିକି, ଯାହାର ଉକ୍ତ କଣ୍ଟାକୁ ପବନ ବହୁଥିବା ଦିଗକୁ ସଜାଇ ରଖିଲେ ନଇଁଯାଏ), ଉପକଣ୍ଠୀ (ଗଣ୍ଠିଗଣ୍ଠିଆ), କୁଶିକ୍ୟା (ପରଳର ଆକାର କଦର୍ଯ୍ୟ ହୋଇଥିବା), ସକଟୁକକ୍ଷ୍ୟା (ଖରାପ ଶିକୁଳି ବା ସୂତାରେ ଦୋଳ ହୋଇଥିବା), ପାରିବେଲ୍ଲୀ (ସବୁଦା ହାଲୁଥିବା) ଓ ଅୟସ୍କାନ୍ତା (ଅୟସ୍କାନ୍ତ ଲୌହରେ ନିର୍ମିତ ହୋଇଥିବା ଚୁମ୍ବକଯୁକ୍ତ ତରାଜୁ) ଏପରି ଆଠପ୍ରକାର ଖରାପ ତରାଜୁଦ୍ୱାରା ସୁବର୍ଣ୍ଣାଦି ପଦାର୍ଥ ଅପହରଣ କରାଯାଏ । (୧୧) ମୂଲ୍ୟବାନ୍ ଶୁଦ୍ଧ ସୁବର୍ଣ୍ଣରେ ଯେଉଁ ଅସାର ଓ ହୀନମୂଲ୍ୟର ତାମ୍ର, ରୌପ୍ୟ ଓ ଲୌହ ମିଶ୍ରଣ କରି ଅଉଟାଯାଏ ସେହି ମିଶ୍ରିତ ସୁବର୍ଣ୍ଣକୁ 'ଅପଦ୍ରବ୍ୟ' କୁହାଯାଏ । ହୀନମୂଲ୍ୟ ଧାତୁ ମିଶ୍ରିତ କରି ତତପରିମାଣ ଶୁଦ୍ଧ ସୁବର୍ଣ୍ଣ ସେଥିରୁ କାଢ଼ିନେବା କାର୍ଯ୍ୟକୁ 'ଅପସାରଣ' କୁହାଯାଏ । ପୂର୍ବୋକ୍ତ ଅପଦ୍ରବ୍ୟ ଚାରିପ୍ରକାର । ଯଥା— ଦୁଇଭାଗ ରୂପାରେ ଏକଭାଗ ତମ୍ବା ମିଶାଇଲେ ଯେଉଁ ରୂପା ତିଆରି ହୁଏ ତାହାକୁ 'ତ୍ରିପୁଟକ' କହନ୍ତି । ଏହାକୁ ମିଶାଇ ଏହାରି ପରିମାଣ ଶୁଦ୍ଧ ସୁବର୍ଣ୍ଣ ବାହାର କରିବା ପରେ ଯେଉଁ ତ୍ରିପୁଟକମିଶ୍ରିତ ସୁବର୍ଣ୍ଣ ପ୍ରସ୍ତୁତ ହୁଏ ତାହାକୁ 'ତ୍ରିପୁଟକାପସାରିତ ପ୍ରଥମ ଅପଦ୍ରବ୍ୟ' କହନ୍ତି । ମିଶ୍ରଣକାରୀ ଶିଳ୍ପୀମାନେ ସୁନାର ପ୍ରକୃତ ରୂପ ଏପରି ବୋଲି ଛଳନାକରି ଶୁଦ୍ଧ ସୁବର୍ଣ୍ଣ ଅପହରଣ କରିଥାନ୍ତି । ଏହାପରି କେବଳ ତାମ୍ରମିଶ୍ରିତ ସୁବର୍ଣ୍ଣକୁ 'ଶୁଲ୍ୱାପସାରିତ ଦ୍ୱିତୀୟ ଅପଦ୍ରବ୍ୟ' କହନ୍ତି । ସମଭାଗ ରୂପା ଓ ଲୁହା ମିଶ୍ରଣରେ ପ୍ରସ୍ତୁତ

ଶୁଲ୍ବାର୍ଧସାରେଣ ହେମ୍ନା ହେମାପସାରିତମ୍ । (୧୨) ମୂକମୂଷା ପୂତିକିଟ୍ଟଃ କରଟକମୁଖଂ ନାଳୀ ସଂଦଂଶୋ ଜୋଂଗନୀ ସୁବର୍ଚିକା ଲବଣଂ ତଦେବ ସୁବର୍ଣମିତ୍ୟପସାରଣମାର୍ଗାଃ । ପୂର୍ବପ୍ରଣିହିତା ବା ପିଣ୍ଡବାଲୁକା ମୂଷାଭେଦାଦଗ୍ନିଷ୍ଠା ଉଦ୍ଧ୍ରିୟନ୍ତେ ।

---

ଧାତୁପଦାର୍ଥକୁ 'ବେଲ୍ଲକ' କହନ୍ତି । ଏହାକୁ ମିଶାଇ ଶୁଦ୍ଧ ସୁବର୍ଣ୍ଣ ଅପସାରଣ କରାଗଲେ ଯେଉଁ ସୁବର୍ଣ୍ଣ ପ୍ରସ୍ତୁତ ହୁଏ ତାହାକୁ 'ବେଲ୍ଲକାପସାରିତ ତୃତୀୟ ଅପଦ୍ରବ୍ୟ' ଏବଂ ଏକଭାଗ ସୁବର୍ଣ୍ଣ ସହିତ ଏକଭାଗ ତାମ୍ର ମିଶ୍ରଣ କରି ଏହି ମିଶ୍ରିତ ଧାତୁପଦାର୍ଥ ସଂଯୋଗ କରି ଶୁଦ୍ଧ ସୁବର୍ଣ୍ଣ ଅପହରଣ କଲେ ଯେଉଁ ସୁବର୍ଣ୍ଣ ପ୍ରସ୍ତୁତ ହୁଏ, ତାହାକୁ 'ହେମାପସାରିତ ଚତୁର୍ଥ ଅପଦ୍ରବ୍ୟ' କହନ୍ତି । (୧୨) ଅପସାରଣବିଧି, ଯଥା—ମୂକମୂଷା ଅର୍ଥାତ୍ ଉହ୍ମେଇ ଭିତରେ ଲୁଚାଇ ରଖାଯାଇଥିବା ଓ ଅଧେ ଘୋଡ଼ଣୀ ଥିବା ସୁନା ତରଳାଇବା ପାତ୍ର ବା କୋଇ, ଲୌହମଳ, କତୁରୀ, ଲୁହାନଳୀ, ଲୁହାଖୋଡ଼ୀ, ସଣ୍ଡାସୀ, ଟାଙ୍ଗଣା (ସୋହାଗା), ଲୁଣ ଓ 'ଏହିପରି ସୁନା ଏକା ଖଣିରୁ ବାହାରୁଛି' ଏପରି ମିଥ୍ୟାପ୍ରଚାର ସାହାଯ୍ୟରେ ସୁନାରିମାନେ ସୁନା ଚୋରାନ୍ତି । (ଖଣିଜ ଉତ୍ତମ ଶୁଦ୍ଧ ସୁବର୍ଣ୍ଣକୁ ମୂକମୂଷାରେ ଅର୍ଥାତ୍ କୌଶଳମୟ କୋଇରେ ଅଉଟାଇବା ବେଳେ ସ୍ୱର୍ଣ୍ଣକାରମାନେ ସେଥିରୁ ଲୌହମଳ ବା ମଇଳା ବାହାରକରିବା ବାହାନାରେ ଓ ଟାଙ୍ଗଣା, ଲବଣ ଇତ୍ୟାଦି ପଦାର୍ଥ ନିକ୍ଷେପ କରିବା ବାହାନାରେ ପୂର୍ବୋକ୍ତ ନିପୁଟକାଦି ଅପଦ୍ରବ୍ୟ ପ୍ରକ୍ଷେପ କରି ସଣ୍ଡାସୀ ପ୍ରଭୃତି ଦ୍ୱାରା ଶୁଦ୍ଧ ସୁବର୍ଣ୍ଣ ଅପହରଣ କରନ୍ତି । ଅଥବା ସୁନା, ରୂପା ଓ ତମ୍ବା ଅଳଙ୍କାର ନିର୍ମାଣ ବେଳେ ଘର୍ଷଣ କରିବାରେ ଯେଉଁ ରେଣୁ ବାହାରିଥାଏ ସେସମସ୍ତକୁ ଅଳ୍ପପରିମାଣ ସୁନା ସହିତ ଅଉଟାଇ କରାଯାଇଥିବା ଗୁଟିକାକୁ 'ପିଣ୍ଡବାଲୁକା' କହନ୍ତି । ସ୍ୱର୍ଣ୍ଣକାରମାନେ ଏହି ପିଣ୍ଡବାଲୁକାକୁ ପ୍ରଥମେ ଗୁପ୍ତରେ ଉହ୍ମେଇ ଭିତରେ ରଖି ତା'ଉପରେ ଶୁଦ୍ଧ ସୁବର୍ଣ୍ଣ ଅଉଟାଇବାର କୋଇ ରଖି ସୁନା ଅଉଟାନ୍ତି । ଯେତେ ପରିମାଣ ପିଣ୍ଡବାଲୁକା ଉହ୍ମେଇ ଭିତରେ ରଖାଯାଇଥାଏ ସେହି ଓଜନର ଶୁଦ୍ଧ ସୁବର୍ଣ୍ଣ ଅପହରଣ କରି ଉକ୍ତ କୋଇକୁ କୌଶଳରେ ଭାଙ୍ଗି ଅବଶିଷ୍ଟ ଅଉଟା ସୁନାକୁ ଉହ୍ମେଇ ଭିତରେ ପକାଇଦେବା ପରେ ସୁନା ଦେଇଥିବା ବ୍ୟକ୍ତିଙ୍କ ସମକ୍ଷରେ କୋଇ ଭାଙ୍ଗିଯିବାର କଷ୍ଟ ଦୁଃଖ ପ୍ରକାଶ କରି ଉକ୍ତ ପିଣ୍ଡବାଲୁକା ଓ ତଳିଯାଇଥିବା

(୧୩) ପଶ୍ଚାଦ୍‌ବନ୍ଧନେ ଆଚତକପତ୍ରପରୀକ୍ଷାସ୍ୱଂ ବା ରୂପ୍ୟରୂପେଣ ପରିବର୍ତ୍ତନଂ ବସ୍ରାବଣମ୍, ପିଣ୍ଡବାଲୁକାନାଂ ଲୋହପିଣ୍ଡ-ବାଲୁକାଭିର୍ବା । (୧୪) ଗାଢ଼ଶ୍ଚାଭ୍ୟୁଦ୍ଧାର୍ଯଶ୍ଚ ପେଟକଃ ସଂଯୂହ୍ୟାବ-ଲେପ୍ୟସଂଘାତ୍ୟେଷୁ କ୍ରିୟତେ । ସୀସରୂପଂ ସୁବର୍ଣପତ୍ରେଣାବଲପ୍ତ-ମଭ୍ୟନ୍ତରମଷ୍ଟକେନ ବଦ୍ଧଂ ଗାଢ଼ପେଟକଃ । ସ ଏବ ପଟଲସଂପୁଟେଷ୍ୱଭ୍ୟୁଦ୍ଧାର୍ଯଃ । ପତ୍ରମାଶ୍ଳିଷ୍ଟଂ ଯମକପତ୍ରଂ ବା ବଲେପ୍ୟେଷୁ କ୍ରିୟତେ । ଶୁଲ୍ୱଂ ତାରଂ ବା ଗର୍ଭଃ ପତ୍ରାଣାମ୍ ।

---

ସୁନା ସବୁ ଏକାଠେ କରି ପୁଣି ଅଜାଡ଼ି ଦିଅନ୍ତି । (୧୩) ପ୍ରଥମେ ତିଆରି ହୋଇଥିବା ସୁବର୍ଣ୍ଣପଟୀ ଇତ୍ୟାଦି ପଦାର୍ଥରେ ପଛେ ରୌପ୍ୟାଦି ପଦାର୍ଥ ମିଶାଇବାକୁ ହେଲେ ପ୍ରଚୁର ପରିମାଣରେ ଗଢ଼ାହୋଇଥିବା ସୁବର୍ଣ୍ଣପଟୀ-ମାନଙ୍କର ପରୀକ୍ଷାକରିବା ପ୍ରସଙ୍ଗରେ ଅଜାଡ଼ିବା ବେଳେ ସେଥିରେ ରୌପ୍ୟପଟୀ ମିଶାଇ ସୁବର୍ଣ୍ଣପଟୀ ବଦଳାଇବାକୁ 'ବସ୍ରାବଣ' କୁହାଯାଏ । ସୁବର୍ଣ୍ଣଖଣିଜାତ ସୁବର୍ଣ୍ଣପିଣ୍ଡବାଲୁକାମାନଙ୍କୁ ଅଜାଡ଼ିବା ବେଳେ ଲୁହା-ଖଣିଜାତ ଲୌହପିଣ୍ଡବାଲୁକା ବଦଳାଇ ସୁବର୍ଣ୍ଣପିଣ୍ଡବାଲୁକା ଅପହରଣ କରିବାକୁ ମଧ୍ୟ 'ବସ୍ରାବଣ' କୁହାଯାଏ । (୧୪) ପେଟକପ୍ରକାର, ଯଥା— ସଂଯୂହ୍ୟ ଅର୍ଥାତ୍ ଗାଢ଼ପଟୀ ଯୋଡ଼ିବା, ଅବଲେପ୍ୟ ଅର୍ଥାତ୍ ପତଳାପଟୀ ଚଢ଼ାଇବା ଏବଂ ସଂଘାତ୍ୟ ଅର୍ଥାତ୍ କଡ଼ିମାନଙ୍କୁ ଯୋଡ଼ିବା କାର୍ଯ୍ୟରେ ସ୍ୱର୍ଣ୍ଣକାରମାନେ 'ପେଟକ' ନାମକ ଅପହରଣ କାର୍ଯ୍ୟ କରିଥାନ୍ତି । ଏହି ପେଟକ ଗାଢ଼ ଓ ଅଭ୍ୟୁଦ୍ଧାର୍ଯ୍ୟ ଭେଦରେ ଦୁଇପ୍ରକାର । କୌଣସି ପୋଲ ସୁନା ଅଳଙ୍କାର ତିଆରି କରିବା ବେଳେ ସ୍ୱର୍ଣ୍ଣକାରମାନେ ନିର୍ଦ୍ଦିଷ୍ଟ ସୁବର୍ଣ୍ଣରୁ କେତେକାଂଶ ଅପହରଣ କରି ଅପହୃତ ସୁବର୍ଣ୍ଣର ସମପରିମାଣ ସୀସାପଟୀ ସୁନାପଟୀରେ କାଇଁଚଅଠା ଦ୍ୱାରା ଯୋଡ଼ି ମୁଦା ଓ ପୋଲ ଅଳଙ୍କାର ତିଆରି କରିଥାନ୍ତି । ଏଥିରେ ସୁନାପଟୀ ଉପରେ ରହେ ଓ ସୀସାପଟୀ ସେଭିତରେ ଲଗି ରହିଥିବା ଯୋଗୁଁ କେହି ଜାଣିପାରନ୍ତି ନାହିଁ । ଏହାକୁ 'ଗାଢ଼ ପେଟକ' କହନ୍ତି ଏବଂ କାଇଁଚଅଠା ଇତ୍ୟାଦିରେ ନ ଯୋଡ଼ି ଦରକାର ହେଲେ ବାହାର କରିପାରିବା ପରି କେବଳ ଦୁଇଟି ପଟୀ ଯୋଡ଼ିବାକୁ 'ଅଭ୍ୟୁଦ୍ଧାର୍ଯ୍ୟ ପେଟକ' କହନ୍ତି । ସୁନାପଟୀର ଗୋଟିଏ

ସଂଘାତେ୍ୟଷୁ କ୍ରିୟତେ ଶୁଲ୍ବରୂପଂ ସୁବର୍ଣପତ୍ତସଂହତଂ ପ୍ରମୃଷ୍ଟଂ ସୁପାର୍ଶ୍ୱମ୍ । ତଦେବ ଯମକପତ୍ତସଂହତଂ ପ୍ରମୃଷ୍ଟମ୍ । ତାମ୍ରତାରଂ ରୂପଂ ଚେ୍ତରବର୍ଣକଃ । (୧୫) ତଦୁଭୟଂ ତାପନକଷାଭ୍ୟାଂ ନିଃଶବ୍ଦୋଲ୍ଲେଖନାଭ୍ୟାଂ ବା ବିଦ୍ୟାତ୍ । ଅଭ୍ୟୁଦ୍ଧାର୍ଯଂ ବଦରାମ୍ଳେ ଲବଣୋଦକେ ବା ସାଦୟନ୍ତୀ । ଇତି ପେଟକଃ । (୧୬) ଘନସୁଷିରେ ବା ରୂପେ ସୁବର୍ଣମୃନ୍ମାଳୁକାହିଙ୍ଗୁଳୁକକଳ୍କୋ ବା ତପ୍ତୋଽବତିଷ୍ଠତେ । ଦୃଢ଼ବାସ୍ତୁକେ ବା ରୂପେ ବାଲୁକାମିଶ୍ର-

---

ପଖାରେ ଅନ୍ୟ ଧାତୁପଟୀ (ତମ୍ବା ବା ରୂପାପଟୀ) ଯୋଡ଼ିବା ଏବଂ ରୂପା ବା ତମ୍ବାପଟୀର ଉଭୟ ପାର୍ଶ୍ୱରେ ସୁନାପଟୀ ଯୋଡ଼ି ପଟୀମାନଙ୍କୁ ପିଟାଇଲାପରି ଗୋଟିଏ ପଟୀ କରିଦେବାକୁ 'ଅବଲେପ୍ୟ ପେଟକ' କହନ୍ତି । ସୁନାକଡ଼ି କରିବାବେଳେ ପ୍ରଥମେ ତମ୍ବା ଚୂଲି ତିଆରି କରି ତାର ପିଠିରେ ସୁନାପଟୀ ଘଷିଣି କରି ଓ ଉଜ୍ଜ୍ୱଳକରି ଦୁଇଟି ଏକଫାଳିଆ ଚୋଲି ଯୋଡ଼ି ପୋଲା ମୁକ୍ତା ବା କଡ଼ି କରାଯାଇଥାଏ ଏବଂ ଉକ୍ତ ତମ୍ବାଚୂଲିର ଦୁଇପଖାରେ ଉଜ୍ଜ୍ୱଳ କରାଯାଇଥିବା ସୁନାପଟୀ ଘଷିଣି କରି ପୋଲା ମୁକ୍ତା ବା କଡ଼ି କରାଯାଇଥାଏ । ଏହି ଦୁଇପ୍ରକାର 'ସାଂଘାତ୍ୟ' ନାମକ ପେଟକ ପ୍ରକ୍ରିୟାକୁ 'ପ୍ରମୃଷ୍ଟ' କୁହାଯାଏ । କେହି କେହି ପ୍ରଥମ ପ୍ରକାରକୁ 'ସୁପାର୍ଶ୍ୱ' ଓ ଦ୍ୱିତୀୟ ପ୍ରକାରକୁ 'ପ୍ରମୃଷ୍ଟ' କହିଥାନ୍ତି । ସୁନାଖଡ଼ୁ, କଂକଣ, ବାଜୁବନ୍ଧ ଇତ୍ୟାଦିକୁ ମଧ୍ୟ ଏହି ନିୟମରେ କରନ୍ତି । ଏହି ପ୍ରକ୍ରିୟାରେ ଲୌହପଟୀରେ ତାମ୍ର ଏବଂ ରୌପ୍ୟ-ପଟୀ ପ୍ରଭୃତି ଯୋଡ଼ିବାକୁ ମଧ୍ୟ ପେଟକ କୁହାଯାଏ । (୧୫) ଗାଢ଼ପେଟକ ଓ ଅଭ୍ୟୁଦ୍ଧାର୍ଯପେଟକ ଅଳଙ୍କାର ଓ ବାସନ ଇତ୍ୟାଦିକୁ ପୋଡ଼ିବା ଓ କଷଟି-ପଥରରେ କଷିବାଦ୍ୱାରା କିମ୍ବା ନିଃଶବ୍ଦଚ୍ଛେଦନ (କାଟିବା ବେଳେ ଶବ୍ଦ ନହେବା) ଦ୍ୱାରା ବା ତୀଂଫଣମୂନରେ ଖୋଳି ଗାର କରିବାଦ୍ୱାରା ଏହାକୁ ପରୀକ୍ଷା କରି କୃତ୍ରିମତା ଜାଣିବାକୁ ହୁଏ । ଅଭ୍ୟୁଦ୍ଧାର୍ଯପେଟକ ଅଳଙ୍କାର ଓ ବାସନ ପ୍ରଭୃତିକୁ ଅମ୍ଳ-ବରକୋଳି ରସ କିମ୍ବା ଲବଣଜଳରେ ଉତ୍ତମଭାବେ ବୁଡ଼ାଇ ବତୁରାଇଲେ ତାର ବର୍ଣ୍ଣ ଲାଲ ହୋଇଯାଏ । ଏଠାରେ ପେଟକର ବିବରଣ ଶେଷହେଲା । (୧୬) ପିଙ୍କ ଅର୍ଥାତ୍ ସୁବର୍ଣ୍ଣାଦି ଅଳଙ୍କାରରେ କାଚ, ଅଭ୍ର ପ୍ରଭୃତିକୁ ଅଠା ବା ଜଉଦ୍ୱାରା ଲଗାଇ ସେଥିରୁ ସୁବର୍ଣ୍ଣ ଅପହରଣ

**କଟୁଗାନ୍ଧାରପଙ୍କୋ ବା ତପ୍ତୋଽବଷ୍ଟଭ୍ୟତେ । ତୟୋସ୍ତାପନମବଧ୍ୱଂସନଂ ବା ଶୁଦ୍ଧିଃ । ସପରିସ୍ୱଣ୍ଡେ ବା ରୂପେ ଲବଣମୁଲ୍କୟା କଟୁଶର୍କରୟା ତପ୍ତମବଷ୍ଟଭ୍ୟତେ । ତସ୍ୟ କ୍ୱାଥନଂ ଶୁଦ୍ଧିଃ । ଅଭ୍ରପଟଳମଷ୍ଟକେନ ଦ୍ୱିଗୁଣବାସୁକେ ବା ରୂପେ ବଧ୍ୟତେ । ତସ୍ୟାପିହିତକାଚକସ୍ୟୋଦକେ ନିମଜ୍ଜତ ଏକଦେଶଃ ସୀଦତି । ପଟଳାନ୍ତରେଷୁ ବା ସୂଚ୍ୟା ଭିଦ୍ୟତେ । ମଣୟୋ**

---

କରିନେବା ବାଧି, ଯଥା—ଦୃଢ଼ପଣୀରେ ଛଅର ହୋଇଥିବା କଂକଣ ପ୍ରଭୃତି ଅଳଙ୍କାର ଭିତରେ ସୁନାମାଟି, ସ୍ୱର୍ଣ୍ଣମାକ୍ଷିକ ଓ ହିଙ୍ଗୁଳର କଳ୍କ (ବଟା) ଛଡାଇ ଭରିକରିଦେଲେ ତାହା ତହିଁରେ ଲାଗିଯିବା ହେତୁ ସ୍ୱର୍ଣ୍ଣକାରମାନେ ଏପରି କରି ଉପରୋକ୍ତ ଅଳଙ୍କାରରୁ ଏହି ସଂଯୁକ୍ତ ପଦାର୍ଥର ସମପରିମାଣ ସୁନା ଅପହରଣ କରନ୍ତି । ଦୃଢ଼ପୀଠବନ୍ଧ ଅଳଙ୍କାର ଅର୍ଥାତ୍ ବହୁତ ସୁନାବେଠି ଥିବା ପଦକ ଓ ହରିଡ଼ାମାଳା ପ୍ରଭୃତିରେ ଗଣିରୁ କାଟହୋଇଥିବା ସୁନା, ରୂପା ଓ ତମ୍ବା ମୁଣ୍ଡା ଘଷିବାରେ ଯେଉଁ ରେଣୁ ବାହାରେ ତାକୁ ଅଜଣାଇ କରାଯାଇଥିବା 'ପିଣ୍ଡବାଲୁକା'କୁ ଲାଜସହିତ ବା ହିଙ୍ଗୁଳସହିତ ଛଡାଇ ପାଗକରି ଭରିତ କଲେ ତାହା ସେଥିରେ ସଂଲଗ୍ନ ହୋଇ ରହେ । ଏହାକୁ 'ଦୃଢ଼ବାସୁକ' କହନ୍ତି । ଘନସୁଷିର ଓ ଦୃଢ଼ବାସୁକ ପିଙ୍କର ପରିଶୁଦ୍ଧି ସଙ୍କାଶେ ଅର୍ଥାତ୍ ଏହି କୃତ୍ରିମତାର ଅବଗତି ସଙ୍କାଶେ ଉକ୍ତ ଅଳଙ୍କାରଗୁଡ଼ିକୁ ପୋଡ଼ି ଲୋହିରେ ରଖି ହାତୁଡ଼ିରେ ପିଟିବାକୁ ହେବ । ଏପରି କଲେ ତା'ଭିତରେ ଥିବା ବାଲୁକା, ଲାଜ ପ୍ରଭୃତି ବହିର୍ଗତ ହୁଏ । କଣ୍ଠରେ ବନ୍ଧାହେବା ବଟଫଳ ପ୍ରଭୃତି ଗଣ୍ଠିଥିବା ଅଳଙ୍କାରରେ କଟୁଶର୍କରା ଅର୍ଥାତ୍ କାଙ୍କଡ଼ାମାଟି ସହ ଲବଣକୁ ନିଆଁରେ ଛଡାଇ ଭର୍ତ୍ତି କରିଦେଲେ ତହିଁରେ ଲାଗିଯାଏ । ତାର ପରୀକ୍ଷାପାଇଁ ବରକୋଳିର କ୍ୱାଥ ବା ଫିଟାପାଣିରେ ଏହାକୁ ଅଜଣାଯାଏ । ଅଭ୍ରପଟଳ ଅର୍ଥାତ୍ କାଚମଣିକୁ ଦୁଇଗୁଣ ପିଢ଼ିଥିବା ପଥରବସା ଅଳଙ୍କାର ଭିତରେ ଲାଜ ବା ଅଠାଦ୍ୱାରା ଲଗାଇ ତା'ଉପରେ ଉପଯୁକ୍ତ ମଣି ବସାଯାଇଥାଏ । ଏହି କୃତ୍ରିମତା ଜାଣିବା ପାଇଁ ଏହାକୁ ବରକୋଳକ୍ୱାଥରେ ବୁଡ଼ାଇଲେ ଏହି ଅଳଙ୍କାରର ଅଭ୍ରପଟଳଯୁକ୍ତ ଭାଗଟି ନ ବୁଡ଼ି ପ୍ରକୃତ ମଣିଥିବା ଅଂଶଟି

ରୂପ୍ୟଂ ସୁବର୍ଣଂ ବା ଘନସୁଷିରଣାଂ ପିଙ୍କଃ । ତସ୍ୟ ତାପନ-ମବଧ୍ୱଂସନଂ ବା ଶୁଦ୍ଧିଃ । ଇତି ପିଙ୍କଃ । ତସ୍ମାଦ୍ ବଜ୍ରମଣିମୁକ୍ତା-ପ୍ରବାଳ ରୂପାଣାଂ ଜାତିରୂପବର୍ଣପ୍ରମାଣପୁଦ୍‌ଗଲଲକ୍ଷଣାନ୍ୟୁପଲଭେତ । (୧୭) କୃତଭାଣ୍ଡପରୀକ୍ଷାୟାଂ ପୁରାଣଭାଣ୍ଡପ୍ରତିସଂସ୍କାରେ ବା ଚତ୍ୱାରୋ ହରଣୋପାୟାଃ । ପରିକୁଟ୍ଟନମବଚ୍ଛେଦନମୁଲ୍ଲେଖନଂ ପରିମର୍ଦ୍ଦନଂ ବା । ପେଟକାପଦେଶେନ ପୃଷତଂ ଗୁଣଂ ପିଟକାଂ ବା ଯତ୍ ପରିଶାତୟନ୍ତି ତତ୍ ପରିକୁଟ୍ଟନମ୍ । ଯଦ୍ ଦ୍ୱିଗୁଣବାସ୍ତୁକାନାଂ ବା ରୂପେ ସୀସରୂପଂ ପ୍ରକ୍ଷିପ୍ୟ ଅଭ୍ୟନ୍ତରମବଚ୍ଛିନ୍ଦନ୍ତି ତଦବ-ଚ୍ଛେଦନମ୍ । ଯଦ୍ ଘନାନାଂ ତୀକ୍ଷ୍ଣେନୋଲ୍ଲିଖନ୍ତି ତଦୁଲ୍ଲେଖନମ୍ । ହରିତାଳମନଃଶିଳାହିଙ୍ଗୁଳକଚୂର୍ଣାନାମନ୍ୟତମେନ କୁରୁବିନ୍ଦଚୂର୍ଣେନ

ବୁଡ଼ିଯିବାର ଦେଖାଯାଏ । ଅଥବା ତୀକ୍ଷ୍ଣସୂଚୀ ଦ୍ୱାରା ଏ ଅଳଙ୍କାରକୁ ଭେଦ କଲେ ଅଭ୍ରପଟଳ ବା ତାମ୍ରପଟଳ, ଯାହାକି ପ୍ରସ୍ତ ପ୍ରସ୍ତ ହୋଇ ଉତ୍ତମ ମଣିର ଅଧୋଭାଗରେ ଅଳଙ୍କାର ଭିତରେ ରଖାଯାଇଥାଏ, ତାହା ସହଜରେ ବାହାରିଯିବା ଦ୍ୱାରା କୃତ୍ରିମତା ପ୍ରମାଣିତ ହୋଇଯାଏ । ସୁନା ଓ ରୁପାର ପୋଲ ଅଳଙ୍କାରରେ ଜଉ ବା ଅଠାଦ୍ୱାରା କାଚ, ଅଭ୍ର-ପିଣ୍ଡବାଲୁକା ଇତ୍ୟାଦି ଯୋଗକରି କୃତ୍ରିମରେ ସୁବର୍ଣ୍ଣ ଅପହରଣ କରିବାକୁ 'ପିଙ୍କ' କୁହାଯାଏ । ଏହାକୁ ପୋଡ଼ି ଭାଙ୍ଗିଦେଲେ ଏହାର ଶୁଦ୍ଧି ଓ ଅଶୁଦ୍ଧି ଅର୍ଥାତ୍ ଅସଲ ନକଲ କଥା ଜଣାପଡ଼େ । ଏଠାରେ ପିଙ୍କର ବିଚାର ଶେଷ ହେଲା । ଅତଏବ ଏସବୁ ବିଷୟ ବିଚାର କରି ହୀରା, ମଣି, ମୁକ୍ତା ଓ ପ୍ରବାଳଯୋଗ୍ୟର ଜାତି, ରୂପ, ବର୍ଣ୍ଣ, ଓଜନ, ଆଭରଣ ଓ ଲକ୍ଷଣକୁ ଜାଣିବାକୁ ହେବ । (୧୭) ଏଠାରେ ପୁରାତନ ଅଳଙ୍କାର ମରାମତି କରିବା ସମୟରେ ଚାରିପ୍ରକାର ସୁବର୍ଣ୍ଣହରଣର ବିଧି ବିଚାର କରାଯାଉଅଛି । ପରିକୁଟ୍ଟନ, ଅବଚ୍ଛେଦନ, ଉଲ୍ଲେଖନ ଓ ପରିମର୍ଦ୍ଦନ ଏପରି ଚାରିପ୍ରକାର ଉପାୟରେ ଶିଳ୍ପୀମାନେ ପୁରାତନ ଅଳଙ୍କାରରୁ ସୁବର୍ଣ୍ଣ ହରଣ କରି ନେଇଥାନ୍ତି । ପୂର୍ବୋକ୍ତ ପେଟକର ପରୀକ୍ଷାଛଳରେ କ୍ଷୁଦ୍ରଘାଗୁଡ଼ି, ତାରଗୁଣା ଓ ପାତିଆ ଇତ୍ୟାଦି ଛିଣ୍ଡାଇ ନେଇଯିବାକୁ 'ପରିକୁଟ୍ଟନ', ଦୁଇ ପଟିଥିବା ବା ବହୁପଟିଥିବା ଅଳଙ୍କାରର ଭିତର ପ୍ରସ୍ତରୁ କିଛି ଅଂଶ

ବା ବସ୍ତ୍ରଂ ସଂଯୂହ୍ୟ ଯତ୍ପରମୃଦ୍ନନ୍ତି ତତ୍ ପରମର୍ଦ୍ଦନମ୍ । ତେନ ସୌବର୍ଣଖଚିତାନ ଖଣ୍ଡାନ କ୍ଷୀୟନ୍ତେ । ନ ଚୈଷାଂ କଂଶଦବରୁଗ୍‌ଣଂ ଭବତ । (୧୮) ଭଗ୍ନଖଣ୍ଡଘୃଷ୍ଟାନାଂ ସଂଯୂହ୍ୟାନାଂ ସଦୃଶେନାନୁମାନଂ କୁର୍ଯ୍ୟାତ୍ । ଅବଲେପ୍ୟାନାଂ ଯାବଦୁତ୍ପାଟିତଂ ତାବଦୁତ୍ପାଟ୍ୟାନୁମାନଂ କୁର୍ଯ୍ୟାତ୍ । ବରୂପାଣାଂ ବା । ତାପନମୁଦକପେଷଣଂ ଚ ବହୁଶଃ

---

ବାହାର କର ଓ ସେଥିରେ ସୁନାପାଣି ଢଳାହୋଇଥିବା ସୀସାପତ୍ରୀ ଲଗାଇ-ଦେବାକୁ 'ଅବଚ୍ଛେଦନ', ତୀକ୍ଷ୍ଣଧାର ଶସ୍ତ୍ରରେ ସୁନାକୁ ବାମିନେବାକୁ 'ଉଲ୍ଲେଖନ' ଏବଂ ହରିତାଳ, ମନଃଶିଳା, ହିଙ୍ଗୁଳ ଓ କୁରୁବିନ୍ଦ ନାମକ ପାଷାଣଚୂର୍ଣ୍ଣ ସହିତ ବସ୍ତ୍ରଦ୍ୱାରା ଅଳଙ୍କାରକୁ ଘଷି ସୁବର୍ଣ୍ଣରେଣୁ ବାହାର କର ନେବାକୁ 'ପରିମର୍ଦ୍ଦନ' କୁହାଯାଏ । ଏହାକୁ ଅଳଙ୍କାର ନଭାଙ୍ଗି ସୁବର୍ଣ୍ଣ ଅପହରଣ କରିବାର ଉପାୟ କୁହାଯାଏ । (୧୮) ସୁବର୍ଣ୍ଣଶିଳ୍ପୀ କର୍ତ୍ତୃକ ପୁରୁଣା ଅଳଙ୍କାରମାନଙ୍କର କିଛି ଅଂଶ (ଧାଗୁଡ଼ି ଇତ୍ୟାଦି) ଭାଙ୍ଗି, ଛିଣ୍ଡାଇ ଓ ଘର୍ଷଣ କର ସୁବର୍ଣ୍ଣ ଅପହରଣ କରାଯାଇଥିବା ବିଷୟ ଜାଣିବା ପାଇଁ ଉକ୍ତ ଅଳଙ୍କାରରେ ଥିବା ଅନ୍ୟ ଧାଗୁଡ଼ି, ଗୁଣା, ପାତଅ ପ୍ରଭୃତିର ବର୍ଣ୍ଣ ଓ ଆକୃତିକୁ ସୂକ୍ଷ୍ମ ଦୃଷ୍ଟିରେ ତୁଳନା କର ତଫାତ୍ ଜାଣିବାକୁ ହେବ । ପତଳାପତ୍ରୀ ଥିବା ଅଳଙ୍କାରରୁ ସ୍ୱର୍ଣ୍ଣକାର ଯେତିକି ଆକାରର ପତ୍ରୀ କାଟି ନେଇ କୃତ୍ରିମ ପତ୍ରୀ ଲଗାଇ ଦେଇଥିବ, ସେତିକି ଆକାରର ସୁନାପତ୍ରୀ ସେହି ଅଳଙ୍କାରରୁ କାଟିନେଇ ତୁଳ, ପୋଡ଼, କଷ କରିବାଦ୍ୱାରା ନେଇଥିବା ପତ୍ରୀର ପ୍ରମାଣ, ସ୍ୱରୂପ ଇତ୍ୟାଦି ଜାଣିବାକୁ ହେବ । କୌଣସି ଅଳଙ୍କାରର ବହୁ ଜାଗାରୁ ସୁବର୍ଣ୍ଣ ବାହାର କରନେଇ ଓ ତହିଁରେ କୃତ୍ରିମ ଧାତୁ ଲଗାଇ ବିରୂପ କରାଯାଇଥିଲେ ତାହାକୁ ତତାଇ, କଷକର ସେହି ଅଳଙ୍କାରରେ କେତେ କୃତ୍ରିମତା ଅଛି ତାହା ଜାଣିବାକୁ ହେବ । ପତ୍ରୀ କର ନିଆଁରେ ବାରମ୍ବାର ନପାଡ଼, ବାରମ୍ବାର ତପ୍ତ ବଦରାମ୍ଳ କ୍ୱାଥରେ ପ୍ରକ୍ଷେପ କର ଲୌହଉପରେ ହାତୁଡ଼ିଦ୍ୱାରା ବାରମ୍ବାର ପିଟିଲେ ଯେତେ ପରିମାଣରେ ବିବର୍ଣ୍ଣତା ଦେଖାଯିବ, ଏଥିରେ ସେତିକି ପ୍ରମାଣର କୃତ୍ରିମତା ଅଛି ବୋଲି ଜାଣିବାକୁ ହେବ । (ସ୍ୱର୍ଣ୍ଣକାର ଏପରି କଲେ ତାଙ୍କୁ ପୂର୍ବ-

କୁର୍ଯ୍ୟାତ୍ । (୧୯) ଅବକ୍ଷେପଃ ପ୍ରତିମାନମଗ୍ନିର୍ଗଣ୍ଡିକା ଭଣ୍ଡିକାଧି-କରଣୀ ପିଞ୍ଛଃ ସୂତ୍ରଂ ଚେଲ୍ଲମ୍ ବୋଲ୍ଲନଂ ଶିର ଉତ୍ସଙ୍ଗୋ ମକ୍ଷିକା ସ୍ୱକାୟେକ୍ଷା ଦୃତିରୁଦକଶରାବମଗ୍ନିଷ୍ଠମିତି କାଚଂ ବିଦ୍ୟାତ୍ । (୨୦) ରାଜତାନାଂ ବିସ୍ରଂ ମଳଗ୍ରାହୀ ପରୁଷଂ ପ୍ରସ୍ତୀତଂ ବିବର୍ଣ୍ଣଂ ବା ଦୁଷ୍ଟମିତି ବିଦ୍ୟାତ୍ ।

---

ସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ) । (୧୯) ସୁବର୍ଣ୍ଣ ଅପହରଣର ଉପାୟ ଓ ଉପକରଣ ସତର ପ୍ରକାର । ଯଥା—ଅବକ୍ଷେପ (ହସ୍ତକୌଶଳ ଦ୍ୱାରା ସାରଦ୍ରବ୍ୟ ଅପହରଣ ପୂର୍ବକ ଅପଦ୍ରବ୍ୟର ପ୍ରକ୍ଷେପ), ପ୍ରତିମାନ (ବଦଳ), ଅଗ୍ନି (ଅଗ୍ନି ମଧ୍ୟରେ ସୁନା ଅଉଟାଇବା ସମୟେ ଅନ୍ୟ ଧାତୁ ରଖିଦେଇ ସୁବର୍ଣ୍ଣ ଅପହରଣ), ଗଣ୍ଡିକା (**Anvil** କାଷ୍ଠାଧିକରଣୀ), ଭଣ୍ଡିକା (ତରଳ ସୁବର୍ଣ୍ଣ ନିକ୍ଷେପ ପାତ୍ର), ଅଧିକରଣୀ (ସୁବର୍ଣ୍ଣ ରଖିବା ପାଇଁ ନିର୍ମିତ ଲୌହପାତ୍ର), ପିଞ୍ଛ (ମୟୂରପିଞ୍ଛ), ସୂତ୍ର (ନିକ୍ତିର ସୁତା), ଚେଲ୍ଲ (ବସ୍ତ୍ର), ବୋଲ୍ଲନ (ଦେଖୁଥିବା ବ୍ୟକ୍ତିର ମନ ଭୁଲାଇ ତାର ଦୃଷ୍ଟି ଅନ୍ୟ ଆଡ଼େ ଫେରାଇବା ସକାଶେ ସୁନାରି କରିବା ବାକ୍‌ଚାତୁରୀ)*, ଶିର (ମୁଣ୍ଡକୁଣ୍ଡା), ଉତ୍ସଙ୍ଗ (କୋଡ଼ସନ୍ଧି ଓ ମଳଦ୍ୱାର), ମକ୍ଷିକା (ମାଛି ଅଡ଼ାଇବା ଛଳରେ ସୁବର୍ଣ୍ଣ ପ୍ରକ୍ଷେପ), ସ୍ୱକାୟେକ୍ଷା (ଝାଳପୋଛିବା ବାହାନାରେ ସ୍ୱଦେହରେ ସୁବର୍ଣ୍ଣ ଗୋପନ), ଦୃତି (ଭୃତି=ଜନ୍ତ ଓ ଫୁଙ୍କାନଳୀ), ଉଦକଶରାବ (ଜଳକୁଣ୍ଡ), ଅଗ୍ନିଷ୍ଠ (ଉହ୍ମେଇ ବା ଉହ୍ମେଇରେ ସୁନାଅଉଟା ଅଗରୁ ପକାଯାଇଥିବା ଅପଦ୍ରବ୍ୟ) । (୨୦) ୧-ବିସ୍ର (ସୁନାରୁପା ଇତ୍ୟାଦିରେ ଦୋଷଲକ୍ଷଣ ପାଞ୍ଚପ୍ରକାର । ଯଥା—ସୀସାମିଶାଇବା ଯୋଗୁଁ ଜାତହେବା ଆମିଷଗନ୍ଧ), ୨-ମଳଗ୍ରାହୀ (ମଳିନ), ୩-ପରୁଷ (ଖରସ୍ପର୍ଶ ବା ଖଦଡ଼ା), ୪-ପ୍ରସ୍ତୀତ (କଠିନ), ୫-ବିବର୍ଣ୍ଣ (ଅପଦ୍ରବ୍ୟମିଶ୍ରଣଜନିତ କାନ୍ତିହୀନତା)—ଏ ପାଞ୍ଚପ୍ରକାର ଦୋଷଚିହ୍ନ ଦେଖାଯାଏ ।

---

* ଚେଲ୍ଲବୋଲ୍ଲନ=ଖଦିରସ୍ୱାମୀଙ୍କ ଇତି ପାଠାନ୍ତର ।

(୨୧) ଏବଂ ନବଂ ଚ ଜୀର୍ଣଂ ଚ ବିରୂପଂ ଚାପି ଭଣ୍ଡକମ୍ ।
ପରୀକ୍ଷେତାତ୍ୟୟଂ ଚୈଷାଂ ଯଥୋଦ୍ଦିଷ୍ଟଂ ପ୍ରକଲ୍ପୟେତ୍ ॥ *

---

(୨୧) ଏପରି ନୂତନ ଓ ପୁରାତନ ସୁନାରୂପାର ବିରୂପ ଅଳଙ୍କାରକୁ ପରୀକ୍ଷା କରି ରାଜା ଏମାନଙ୍କ ବିଷୟରେ ବିହିତ ହେବା ଦଣ୍ଡବିଧାନ କରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଚତୁର୍ଦ୍ଦଶୋଽଧ୍ୟାୟଃ ।
ବିଶିଖାୟାଂ ସୌବର୍ଣିକ ପ୍ରଚାରଃ—ଆଦିତଃ ପଞ୍ଚତ୍ରିଂଶଃ ।

---

* ଅଗ୍ରେବ୍ର ଶ୍ବୋରଧର୍ମାଣୋ ବଣିଜଃ କାରବସ୍ତଥା ।
ତସ୍ମାଦେଷୁ ନ ବିଶ୍ୱାସଃ କର୍ତ୍ତବ୍ୟୋଭୂତମିଚ୍ଛତା ॥
ପ୍ରକାଶତସ୍କରାନେତାନ୍ ପରଦ୍ରବ୍ୟାପହାରିଣଃ ।
ଶିଳ୍ପିନୋବଣିଜଶ୍ଚୈବ ରାଜାଦଣ୍ଡେନ ବାରୟେତ୍ ॥ ବାର୍ହସ୍ପତ୍ୟ ନୀତିଶାସ୍ତ୍ର ।

## ପଞ୍ଚଦଶୋଽଧ୍ୟାୟଃ

### ତ୍ରୟସ୍ତ୍ରିଂଶ ପ୍ରକରଣମ୍—କୋଷ୍ଠାଗାରାଧ୍ୟକ୍ଷଃ

### THE SUPERINTENDENT OF STOREHOUSE

(କୋଷ୍ଠ ଅର୍ଥାତ୍ ଉଦର, ଏହାର ପୋଷଣ ସକାଶେ ଆବଶ୍ୟକ ହେବା ଧାନ୍ୟ, ସ୍ନେହ, କ୍ଷାର ଓ ଲବଣ ପ୍ରଭୃତି ପଦାର୍ଥମାନଙ୍କ ସଂଗ୍ରହ ଓ ସଂଗୋପନ ସ୍ଥାନର ଅଧ୍ୟକ୍ଷଙ୍କ ବ୍ୟାପାର ।)

**(୧) କୋଷ୍ଠାଗାରାଧ୍ୟକ୍ଷଃ ସୀତାରାଷ୍ଟ୍ରକ୍ରୟିମପରିବର୍ତ୍ତକ-ପ୍ରାମିତ୍ୟକାପମିତ୍ୟକସିଂହନିକାନ୍ୟଜାତବ୍ୟୟପ୍ରତ୍ୟାୟୋପସ୍ଥାନାନ୍ୟୁପ-ଲଭେତ୍ । (୨) ସୀତାଧ୍ୟକ୍ଷୋପନୀତଃ ସସ୍ୟବର୍ଣକଃ ସୀତା । ପିଣ୍ଡକରଃ, ଷଡ୍ଭାଗଃ, ସେନାଭକ୍ତଂ, ବଳିଃ, କରଃ, ଉତ୍ସଙ୍ଗଃ, ପାର୍ଶ୍ୱଂ, ପାରିହୀଣିକମ୍, ଔପାୟନିକଂ, କୌଷ୍ଠେୟକଂ ଚ**

(୧) କୋଷ୍ଠାଗାରାଧ୍ୟକ୍ଷ ସୀତା, ରାଷ୍ଟ୍ର, କ୍ରୟିମ, ପରିବର୍ତ୍ତିକ, ପ୍ରାମିତ୍ୟକ, ଅପମିତ୍ୟକ, ସିଂହନିକା, ଅନ୍ୟଜାତ, ବ୍ୟୟପ୍ରତ୍ୟାୟ ଓ ଉପସ୍ଥାନ— ଏ ଦଶଗୋଟି ପଦାର୍ଥର ଚିନ୍ତା କରିବାକୁ ହେବ । * (୨) ସୀତାଧ୍ୟକ୍ଷ ଅର୍ଥାତ୍ ଶସ୍ୟମାନଙ୍କର ଅଧ୍ୟକ୍ଷ ଯେଉଁ ବିଭିନ୍ନ ପ୍ରକାର କୃଷିଜାତ ପଦାର୍ଥ ରାଜକୋଷରେ ପ୍ରବେଶ କରାନ୍ତି ତାହାର ନାମ 'ସୀତା' (କୋଷ୍ଠାଗାରାଧ୍ୟକ୍ଷ ସେହି ପଦାର୍ଥକୁ ଭଲଭାବେ ତଦନ୍ତକରି କୋଷ୍ଠାଗାରରେ ସ୍ଥାପନ କରିବେ) । ପିଣ୍ଡକର (ଗ୍ରାମମାନଙ୍କ ଉପରେ ଧାର୍ଯ୍ୟହୋଇଥିବା କର), ଷଡ୍ଭାଗ (ମନୁପ୍ରବର୍ତ୍ତିତ ଆୟର ଷଷ୍ଠାଂଶ ରାଜଭାଗ), ସେନାଭକ୍ତ (ସୈନ୍ୟ-ସକାଶେ ଆଦାୟହେବା ଚାନ୍ଦା ବା କର), ବଳି (ରାଜଭାଗରୁ ଅତିରିକ୍ତ ରାଜଦେୟ), କର (ଜଳକର, ଫଳକର ପ୍ରଭୃତି), ଉତ୍ସଙ୍ଗ (ଉତ୍ସବ ସମୟରେ ପ୍ରଜାମାନେ ଦେବା ପଦାର୍ଥ), ପାର୍ଶ୍ୱ (ଜରୁରୀ ଅବସ୍ଥାରେ ଅତିରିକ୍ତଭାବେ ସଂଗ୍ରହ କରାଯିବା ପଦାର୍ଥ), ପାରିହୀଣିକ (ପଶୁମାନେ ନଷ୍ଟକରିଥିବା ଶସ୍ୟର ସଞ୍ଚାରୁ ଆଦାୟ ହେବା ଧନ), ଔପାୟନିକ

* ସୀତା=Agricultural Produce.

ରାଷ୍ଟ୍ରମ୍ । ଧାନ୍ୟମୂଲ୍ୟଂ କୋଶନିର୍ହାରଃ ପ୍ରୟୋଗପ୍ରତ୍ୟାଦାନଂ ଚ କ୍ରୟିମମ୍ । ସସ୍ୟବର୍ଣାନାମର୍ଘାନ୍ତରେଣବିନମୟଃ ପରିବର୍ତ୍ତକଃ । ସସ୍ୟଯାଚନମନ୍ୟତଃ ପ୍ରାମିତ୍ୟକମ୍ । ତଦେବ ପ୍ରତିଦାନାର୍ଥମାପମିତ୍ୟକମ୍ । କୁଟ୍ଟକରୋଚକସକ୍ତୁଶୁକ୍ତପିଷ୍ଟକର୍ମ୍ମ ତଜ୍ଜୀବନେଷୁ ତୈଳପୀଡ଼ନମୌରଭ୍ରଚାକ୍ରିକେଷ୍ୱିକ୍ଷୂଣାଂ ଚ କ୍ଷାରକର୍ମ୍ମ ସିଂହନିକା । ନଷ୍ଟପ୍ରସ୍ମୃତାଦିରନ୍ୟଜାତଃ । ବିକ୍ଷେପବ୍ୟାଧିତାନ୍ତରାରମ୍ଭଶେଷଂ ଚ

---

(ଭେଟି), କୌଷ୍ଠେୟକ (ଗଛ ମାଛ କର)—ଏହି ଦଶବିଧ ଆୟର ନାମ 'ରାଷ୍ଟ୍ର'; ଧାନ୍ୟମୂଲ୍ୟ (ଧାନ୍ୟବିକ୍ରୟଲବ୍ଧ ଧନ), କୋଷନିର୍ହାର (ରାଜକୋଷରୁ ଟଙ୍କାଦେଇ ଧାନ୍ୟକ୍ରୟରୁ ହେବା ଲଭ), ପ୍ରୟୋଗ ପ୍ରତ୍ୟାଦାନ (ଲଗାଣପାଇଁ ଋଣ ଦେଇଥିବା ଧାନର କଳାନ୍ତର ସହ ଅଦାୟ)—ଏ ତିନିପ୍ରକାର ଆୟର ନାମ 'କ୍ରୟିମ'; ଗୋଟିଏ ପ୍ରକାର ଶସ୍ୟ ଦେଇ ଅନ୍ୟ ଗୋଟିଏ ପ୍ରକାର ଶସ୍ୟ ବଦଳାଇବାର ନାମ 'ପରିବର୍ତ୍ତକ'; ମିତ୍ର ପ୍ରଭୃତିଙ୍କଠାରୁ ନେଇ ଆସିବା ଶସ୍ୟାଦି ପଦାର୍ଥ, ଯାହାକି ଆଉ ଫେରାଇବାକୁ ପଡ଼େନାହିଁ, ତାହାର ନାମ 'ପ୍ରାମିତ୍ୟକ'; ଅନ୍ୟଠାରୁ ମୂଳକଳାନ୍ତର ଦେବା ସକାଶେ ଚୁକ୍ତିକରି ଆଣିବା ଶସ୍ୟାଦିକୁ 'ଆପମିତ୍ୟକ'; କୁଟ୍ଟକ (କୁଟାଳି), ରୋଚକ (ଭଜାଳି), ସକ୍ତୁ (ଲିଆ ମୁଢ଼ି ପ୍ରଭୃତି), ଶୁକ୍ତ (ଶିର୍କା ପ୍ରଭୃତି) ଓ ପିଷ୍ଟକର୍ମ ଅର୍ଥାତ୍ ବରି, ଗହମ ପ୍ରଭୃତିର ପେଷଣ କାର୍ଯ୍ୟ କରି ଜୀବିକା ନିର୍ବାହ କରୁଥିବା ବ୍ୟକ୍ତିମାନଙ୍କଠାରୁ ଏବଂ ତେଲି, ଲୋମବସ୍ତ୍ର ବ୍ୟବସାୟୀ, ତନ୍ତୀ ପ୍ରଭୃତି, କୁମ୍ଭାର ଓ ଗୁଡ଼ିଆମାନଙ୍କଠାରୁ ଅଦାୟହେବା ରାଜସ୍ୱର ନାମ 'ସିଂହନିକା'; ନଷ୍ଟ ହୋଇଯାଇଥିବା ଓ ପାଶୋରି ଯାଇଥିବା ଧନକୁ ସ୍ମରଣ କରି ପୁଣି ସଂଗ୍ରହ କରିବାର ନାମ 'ଅନ୍ୟଜାତ'; ବିକ୍ଷେପଶେଷ (ସୈନ୍ୟଖର୍ଚ୍ଚରୁ ବଳିବା ଧନ), ବ୍ୟାଧିତାବଶିଷ୍ଟ (ଚିକିତ୍ସାଳୟର ଖର୍ଚ୍ଚରୁ ବଳକା ହେବା ଧନ) ଓ ଅନ୍ତରାରମ୍ଭଶେଷ (ଦୁର୍ଗ ପାଚେରି ଇତ୍ୟାଦି ନିର୍ମାଣ ଓ ମରାମତି ପାଇଁ ନିର୍ଦ୍ଦିଷ୍ଟ ଧନର ଖର୍ଚ୍ଚଯାଇ ବଳକା ଧନ)ର ନାମ 'ବ୍ୟୟପ୍ରତ୍ୟାୟ' ଏବଂ ତୁଲାମାନାନ୍ତର (ଅଧିକ ତୁଲ-ମାପରେ କିଣି ଊଣା ତୁଲ-ମାପରେ ବିକିବା ଯୋଗୁଁ ମିଳିଥିବା ଲଭ ଧନ), ହସ୍ତପୂରଣ (ଧାନ୍ୟାଦି ଶସ୍ୟ ମାପିବା ସମୟରେ ଯତ୍ନପୂର୍ବକ ଅଡ଼ା, ଗଉଣି ଓ ନଉତିର ମୁହଁଧରି

ବ୍ୟୁଷ୍ଟପ୍ରତ୍ୟାୟଃ । ତୁଲାମାନାନ୍ତରଂ ହସ୍ତପୂରଣମୁତ୍କରୋ ବ୍ୟାଜୀ-ପର୍ୟୁଷିତଂ ପ୍ରାର୍ଜିତଂ ଚୋପସ୍ଥାନମିତି । (ଗ) ଧାନ୍ୟ ସ୍ନେହକ୍ଷାର-ଲବଣାନାମ୍ । ଧାନ୍ୟକଳ୍ପଂ ସୀତାଧ୍ୟକ୍ଷେ ବକ୍ଷ୍ୟାମଃ । ସର୍ପିସ୍ତୈଳ-ବସାମଜ୍ଜାନଃ ସ୍ନେହାଃ । ଫାଂଣିତଗୁଡ଼ମତ୍ସ୍ୟଣ୍ଡିକାଖଣ୍ଡଶର୍କରାଃ କ୍ଷାରବର୍ଗଃ । ସୈନ୍ଧବସାମୁଦ୍ରବିଡ଼ଯବକ୍ଷାରସୌବର୍ଚଳୋଦ୍ଭେଦଜା ଲବଣବର୍ଗଃ । କ୍ଷୌଦ୍ରଂମାର୍ଦ୍ଵୀକଂ ଚ ମଧୁ । ଇକ୍ଷୁରସଗୁଳ-ମଧୁଫାଂଣିତଜାମ୍ବବପନସାନାମନ୍ୟତମୋ ମେଷଶୃଙ୍ଗୀପିପ୍ପଳୀ-କ୍ୱାଥାଭିଷୁତୋ ମାସିକଃ ଷାଣ୍ମାସିକଃ ସାମ୍ବତ୍ସରିକୋ ବା ଚିର୍ଭିଟୋର୍ବାରୁକେକ୍ଷୁକାଣ୍ଡାମ୍ରଫଳାମଳକାବସୁତଃ ଶୁଦ୍ଧୋ ବା

---

ମାପିବାରେ ହେବା ଅତିରିକ୍ତ ଲଭ), ଉତ୍କର (ଧାନ୍ୟାଦିର ମାପ ବେଳେ ମାପର ପରିମାଣ ଜାଣିବାପାଇଁ ଥୁଆହେବା ମୁଠି ବା ଅଞ୍ଜୁଳି), ବ୍ୟାଜୀ (ଭାଗୁଡ଼ ପୂରଣ ପାଇଁ ମପାହେବା ଧାନ୍ୟାଦିର ଶୋହଳ ଭାଗରୁ ଏକଭାଗ ବା କୋଡ଼ିଏ ଭାଗରୁ ଏକଭାଗ ନିଆଯିବା ଅଧିକ ଅଂଶ), ପର୍ଯ୍ୟୁଷିତ (ଗତବର୍ଷମାନଙ୍କର ରହଣି ଧନ) ଓ ପ୍ରାର୍ଜିତ ( ନିଜ ଚତୁରତାରେ ଅଦାୟ କରିବା ଧନ)ର ନାମ 'ଉପସ୍ଥାନ' ଅଟେ । (ଗ) ଧାନ୍ୟବର୍ଗ, ସ୍ନେହବର୍ଗ, କ୍ଷାରବର୍ଗ ଓ ଲବଣବର୍ଗର ବିସ୍ତୃତ ଏଠାରେ କରାଯାଉଛି । ଧାନ୍ୟବିଷୟର ଆଲୋଚନା ସୀତାଧ୍ୟକ୍ଷ ପ୍ରକରଣରେ କରାଯିବ ।

ଘିଅ, ତେଲ, ବସା ଓ ମଜ୍ଜା ଏ ଚାରିଗୋଟି ପଦାର୍ଥକୁ 'ସ୍ନେହବର୍ଗ'; ଫାଂଣିତ ଅର୍ଥାତ୍ ନବାତ, ଫେଣା, ଗୁଡ଼, ମିସିରି, ଖଣ୍ଡସାକର ଇତ୍ୟାଦି ପଦାର୍ଥକୁ 'କ୍ଷାରବର୍ଗ'; ସୈନ୍ଧବ, ସାମୁଦ୍ର (ସମୁଦ୍ରପାଣିରୁ ଅଦାୟ ହେବା ଲବଣ), ବିଟଲବଣ, ଯବକ୍ଷାର, ସାଚିକ୍ଷାର (ସୌବର୍ଚ ଲବଣ) ଓ ଉଦ୍ଭିଜ୍ଜ ଲବଣ ଅର୍ଥାତ୍ ଦ୍ରାକ୍ଷାଦି ପଦାର୍ଥରୁ ବାହାରିବା ଲବଣ ବା ଜଷରମୃତ୍ତିକା ପ୍ରଭୃତିରୁ ଜାତ ଲବଣକୁ 'ଲବଣବର୍ଗ'; ମହୁମାଛି ସଞ୍ଚୟ କରିଥିବା ମଧୁ ଓ ଦ୍ରାକ୍ଷାପ୍ରଭୃତି ଫଳରସରେ ପ୍ରସ୍ତୁତ ହୋଇଥିବା ମଧୁକୁ 'ମଧୁବର୍ଗ'; ଆଖୁରସ, ଗୁଡ଼, ମହୁ, ନବାତ, ଜାମୁଫଳରସ ଓ ପଣସଫଳରସ ମଧ୍ୟରୁ ଯେକୌଣସି ଗୋଟିକରେ ମେଷଶୃଙ୍ଗୀ (ମେଣ୍ଢାସିଂଘା ନାମକ ଔଷଧି, ମାନ ମେଣ୍ଢାସିଂଘା

ଶୁକ୍ତବର୍ଗଃ । ବୃକ୍ଷାମ୍ଲକରମର୍ଦାମ୍ରବିଦଳାମଳକମାତୁଲୁଂଗକୋଳବଦରସୌବୀରକପରୁଷକାଦିଃ ଫଳାମ୍ଲବର୍ଗଃ । ଦଧିଧାନ୍ୟାମ୍ଲାଦିର୍ଦ୍ରବାମ୍ଲବର୍ଗଃ । ପିପଳୀମରୀଚଶୃଂଗବେରାଜାଜୀକିରାତତିକ୍ତଗୌରସର୍ଷପକୁସ୍ତୁମ୍ବୁରୁଚୋରକଦମନକମରୁବକଶିଗ୍ରୁକାଣ୍ଡାଦିଃ କଟୁକବର୍ଗଃ । ଶୁଷ୍କମତ୍ସ୍ୟମାଂସକନ୍ଦମୂଳଫଳଶାକାଦି ଚ ଶାକବର୍ଗଃ । (୪) ତତୋଽର୍ଧମାପଦର୍ଥଂ ଜାନପଦାନାଂ ସ୍ଥାପୟେତ୍ । ଅର୍ଧମୁପଯୁଞ୍ଜୀତ ।

* ମହୁଗ୍‌ ଗୁଡ଼େ) ଓ ପିପ୍‌ପଳୀକ୍ୱାଥ ମିଶ୍ରିତ କରି ଏକମାସ, ଛ'ମାସ କିମ୍ବା ଏକବର୍ଷ ପର୍ଯ୍ୟନ୍ତ ରଖିବାପରେ ସେଥିରେ ଚଭିଠ (ମିଠାତରଭୁଜ), ଉର୍ବାରୁକ (ପାଚିଲା କାକୁଡ଼ି), ଅଖୁଦଣ୍ଡା, ପାଚିଲାଆମ୍ବ ଓ ଅଁଳାରସ ଭିନ୍ନ ଭିନ୍ନ ଭାବେ ମିଶାଇଲେ ଏହାକୁ ଶୁକ୍ତବର୍ଗ (ଆସବବର୍ଗ); ତିନ୍ତୁଳି, କରନ୍ଦାକୋଳି ବା ପାଣିଅଁଳା ଫଳ † କରମର୍ଦ, ଆମ୍ବ, ଅଁଳା, ଡାଳିମ୍ବ, ମାତୁଳଙ୍ଗ, କୋଳ (କ୍ଷୁଦ୍ର ବରକୋଳି), ବଦର (ବଡ଼ ବରକୋଳି), ସୌବୀରକ (ସୁସ୍ୱାଦୁ ବରକୋଳି), ପରୁଷକ (ଫଳସାଫଳ), ଠେଙ୍ଗା, ଲେମ୍ବୁ, ଜମ୍ବୀର ଇତ୍ୟାଦି ଫଳସମୂହକୁ 'ଫଳାମ୍ଲବର୍ଗ' ଏବଂ ଦହି, କାଞ୍ଜିପାଣି, ଚଲ୍ଲା ଇତ୍ୟାଦି ପାଣିଆ ଅମ୍ଳିଳ ପଦାର୍ଥକୁ 'ଦ୍ରବାମ୍ଲବର୍ଗ'; ପିପ୍‌ପଳୀ, ପାଣିପିପ୍‌ପଳୀ ଓ ଗଜପିପ୍‌ପଳୀ, ଗୋଲମରିଚ, ଅଦା, ଜିରା, ଚିରେଇତା, ଧୋବସୋରିଷ, ଧନିଆଁ, ପିଣ୍ଡିଶାଗ (ଚୋରକ), ଦମନକ (କାନ୍ତା), * ମରୁବକ (ମୟୂରଶିଖା), ସଜନାଶାଗ ଇତ୍ୟାଦି କଟୁ ପଦାର୍ଥକୁ 'କଟୁକବର୍ଗ'; ଶୁଖୁଆ, ଶୁଷ୍କମାଂସ, ସାରୁ, ଅଳୁ, କନ୍ଦମୂଳ, କରବା, ପିଠଳ, ସାକରକନ୍ଦା ଇତ୍ୟାଦି ମୂଳ; ବାଇଗଣ, କଦଳୀ, ଜହ୍ନି, ଭେଣ୍ଡି, ବୋଇତାଳୁ, କଖାରୁ, ଲାଉ, କଲରା ଇତ୍ୟାଦି ଫଳ ଓ ନାନାବିଧ ଶାଗ ଇତ୍ୟାଦିକୁ 'ଶାକବର୍ଗ' ଅର୍ଥାତ୍ ପରିବାବର୍ଗ କୁହାଯାଏ । (୪) ଉପରୋକ୍ତ ସ୍ନେହବର୍ଗଠାରୁ ଶାକବର୍ଗ ପର୍ଯ୍ୟନ୍ତ ସମସ୍ତ ପଦାର୍ଥ ସଂଗ୍ରହ କରି ରାଜା ସେଥିରୁ ଅର୍ଦ୍ଧଭାଗ ପ୍ରଜାମାନଙ୍କୁ ଦୁର୍ଭିକ୍ଷାଦି ଆପଦରୁ ବଞ୍ଚାଇବାପାଇଁ ସଞ୍ଚୟକରି ଅପର ଅର୍ଦ୍ଧଭାଗ ନିଜକାର୍ଯ୍ୟରେ ବିନିଯୋଗ କରିବେ ଏବଂ ନୂତନ ପଦାର୍ଥ ସଞ୍ଚୟ କରି

* ମେଷଶୃଙ୍ଗୀ = ଉତୁରୁଲୀ ।

† କୃଷ୍ଣପାକଫଳାବିଗ୍ନ ସୁଷେଣାଃ କରମର୍ଦକେ ଇତ୍ୟମରଃ ।

* ମରୁବକ = ଗନ୍ଧତୁଳସୀ ।

ନବେନବନବଂ ଶୋଧୟେତ୍ । (୫) କ୍ଷୁଣ୍ଣଘୃଷ୍ଟପିଷ୍ଟଭୃଷ୍ଟାନା- ମାର୍ଦ୍ରଶୁଷ୍କସିଦ୍ଧାନାଂ ଚ ଧାନ୍ୟାନାଂ ବୃଦ୍ଧିକ୍ଷୟପ୍ରମାଣାନ ପ୍ରତ୍ୟକ୍ଷୀ- କୁର୍ବୀତ । କୋଦ୍ରବବ୍ରୀହୀଣାମର୍ଦ୍ଧଂ ସାରଃ, ଶାଲୀନାମଷ୍ଟଭାଗୋନଃ, ତ୍ରିଭାଗୋନୋ ବରକାଣାମ୍ । ପ୍ରିୟଙ୍ଗୂଣାମର୍ଦ୍ଧଂ ସାରୋ ନବଭାଗ ବୃଦ୍ଧିଶ୍ଚ । ଉଦାରକସ୍ତୁଲ୍ୟଃ । ଯବା ଗୋଧୂମାଶ୍ଚ କ୍ଷୁଣ୍ଣାଃ । ତିଲା ଯବା ମୁଦ୍‌ଗମାଷାଶ୍ଚ ଘୃଷ୍ଟାଃ । ପଞ୍ଚଭାଗବୃଦ୍ଧିର୍ଗୋଧୂମଃ

ପୂର୍ବୋକ୍ତ ପଦାର୍ଥମାନଙ୍କୁ କାର୍ଯ୍ୟରେ ଲଗାଇଦେବେ । (୫) କୋଷ୍ଠାଗାରାଧ୍ୟକ୍ଷ, କୁଟା, ଘୋସା, ଘୋରା, ପେଷା, ଭଜା, ଓଦା, ଶୁଖା ଓ ରନ୍ଧାହେବା ଧାନ୍ୟାଦି ଖାଦ୍ୟପଦାର୍ଥମାନଙ୍କର ବୃଦ୍ଧି ଓ କ୍ଷୟ ବିଷୟ ସେହି ସେହି କାର୍ଯ୍ୟ କରୁଥିବା କୁଟାଳୀ, ଖୋସାଳୀ, ଭଜାଳୀ ଇତ୍ୟାଦିଙ୍କ ନିକଟକୁ ଯାଇ କାର୍ଯ୍ୟ କରିବେ ବା ପ୍ରତ୍ୟକ୍ଷ କରିବେ । କୋଦ ଓ ଧାନରୁ ଅଧେ ସାର (ଚାଉଳ), ଅଧେ କୁଣ୍ଡା; ସରୁଧାନମାନଙ୍କର ଆଠଭାଗରୁ ଏକଭାଗ ଊଣାଥାଇ ଅଧଭାଗ ଚାଉଳ (ସାର) * ବରକ ନାମକ ଧାନ୍ୟବିଶେଷର ତିନିଭାଗରୁ ଦୁଇଭାଗ ଚାଉଳ (ସାର); ପ୍ରିୟଙ୍ଗୁ ଅର୍ଥାତ୍ କାଙ୍ଗୁ ଧାନ୍ୟର ନ'ଭାଗରୁ ଏକଭାଗ ଅଧିକ ଥାଇ ଅର୍ଦ୍ଧଭାଗ ଅର୍ଥାତ୍ ଆଠଅଡ଼ା କାଙ୍ଗୁରେ ପାଞ୍ଚଅଡ଼ା ଚାଉଳ; ଉଦାରକ † (ବୃଦ୍ଧିକୋଳକ)ର ଉଆକୁଟାରେ କାଙ୍ଗୁ ସମାନ ଚାଉଳ ଏବଂ ଉସୁନା କୁଟାରେ ସମାନକୁ ସମାନ ଚାଉଳ ଏବଂ ଯବଧାନ ଓ ଗହମକୁ ବତୁରାଇ କୁଟିଲେ ସମାନକୁ ସମାନ ସାର ହୁଏ । ତିଳ, ଯବ, ମୁଗ ଓ ବିରି ଚୁରିଦେଲେ ସମାନ ସାର ହୁଏ । ଅର୍ଥାତ୍ ଚୂରା ନହେବା ସମୟରେ ଯେତିକି ପ୍ରମାଣ ଥାଏ, ଚୂରିଲେ ମଧ୍ୟ ଚୋପାସହି ସେତିକି ପ୍ରମାଣ ରହେ । ଯବଧାନ ଓ ଗହମ ଭାଜିଲେ ପାଞ୍ଚଭାଗ ବୃଦ୍ଧିପାଏ । କଳାୟଚମସୀ (ମଟର ଓ ବାଲଚଣାର ଚୂନା) ଚାରିଭାଗରେ ତିନିଭାଗ ଚୂନା ହୁଏ । ମୁଗ ଓ ବିରି ପେଷାହେଲେ ଅଠଭାଗରୁ ଏକଭାଗ କମିଯାଏ ।

* ଅଷ୍ଟଭାଗୋନଃ ପ୍ରକୃତ୍ୟଷ୍ଟମାଂଶନ୍ୟୂନଃ, ଅର୍ଦ୍ଧଂ ସାରଃ । ଇତି ବର୍ତ୍ତତେ ।
ତେନଶାଲୀନାଂ ପ୍ରସ୍ଥାଷ୍ଟକସ୍ୟ ପ୍ରସ୍ଥତ୍ରୟଂ ସାରୋ ଭବତି ॥
(ଆଠଅଡ଼ା ସରୁଧାନ କୁଟିଲେ ତିନି ଅଡ଼ା ଚାଉଳ ବାହାରେ—ଗଣପତିଶାସ୍ତ୍ରୀ) ।

† ଉଦାରକକୁ ମୋଟା ଧାନ ବୋଲି କେହି କେହି କହନ୍ତି । ଏଥିରୁ ଅର୍ଦ୍ଧଭାଗ ଚାଉଳ ହୁଏ ।

ଶକ୍ତୁବଚ୍ଚ । ପାଦୋନା କଳାୟଚମସୀ । ମୁଦ୍‌ଗମାଷାଣାମର୍ଦ୍ଧ-ପାଦୋନା । ଶୈମ୍ବ୍ୟାନାମର୍ଦ୍ଧସାରଃ । ତ୍ରିଭାଗୋନୋ ମସୂରାଣାମ୍ । ପିଷ୍ଟମାମଂ କୁଲ୍ମାଷଶ୍ଚାଧ୍ୟର୍ଦ୍ଧଗୁଣାଃ । ଦ୍ୱିଗୁଣୋଯାବକଃ । ପୁଲାକଃ ପିଷ୍ଟଂ ଚ ସିଦ୍ଧମ୍ । କୋଦ୍ରବବରକୋଦାରକପ୍ରିୟଙ୍ଗୂଣାଂ ତ୍ରିଗୁଣମନ୍ନଂ ଚତୁର୍ଗୁଣଂ ବ୍ରୀହୀଣାମ୍ । ପଞ୍ଚଗୁଣଂ ଶାଲୀନାମ୍ । ତିମିତମପରାନ୍ନଂ ଦ୍ୱିଗୁଣମର୍ଦ୍ଧାଧିକଂ * ବିରୂଢ଼ାନାମ୍ । ପଞ୍ଚଭାଗବୃଦ୍ଧି-ର୍ଭୃଷ୍ଟାନାମ୍ । କଳାୟୋ ଦ୍ୱିଗୁଣଃ, ଲଜା ଭରୁଜାଶ୍ଚ । (୬) ଷଟ୍‌କଂ ତୈଳମତସୀନାମ୍ । ନିମ୍ବକୁଶାମ୍ରକପିତ୍ଥାଦୀନାଂ

---

ଶିମ୍ବଜାତୀୟ ପଦାର୍ଥ ଅର୍ଥାତ୍ କୋଳଥ, ବାଇଲ, ଝଂଠା ଇତ୍ୟାଦିଙ୍କର ଚୋପାସହିତ ସାର ଅର୍ଦ୍ଧଭାଗ ହୁଏ । ମସୂରଚଣା ଚୂରିଲେ ସାର ତିନିଭାଗରୁ ଦୁଇଭାଗ ହୁଏ । କଞ୍ଚାରେ ଗହମ ଓ ମୂଗ ପ୍ରଭୃତି ପେଷିଦେଲେ ତାହା ଦେଢ଼ଗୁଣ ହୁଏ । ଯବଧାନ ଚାଉଳ ଚୂନାକଲେ ଦୁଇଗୁଣ ହୁଏ । ଯବଧାନ ଚାଉଳକୁ ଓ ସୁଜିକୁ ଅଧରନ୍ଧା କଲେ ଓ ଗହମଚୂନାକୁ ରାନ୍ଧିଲେ ଦ୍ୱିଗୁଣ ହୁଏ । କୋଦ, ବରକ, ଉଦାରକ, ପ୍ରିୟଙ୍ଗୁ ପୂର୍ବୋକ୍ତ ଏହି ଚାରିପଦାର୍ଥକୁ ରାନ୍ଧିଲେ ତିନିଗୁଣ, ଚାଉଳକୁ ରାନ୍ଧିଲେ ଚାରିଗୁଣ ଓ ଶାଳୀ-ଧାନର ଚାଉଳକୁ ରାନ୍ଧିଲେ ପାଞ୍ଚଗୁଣ ହୁଏ । ସଦ୍ୟ କଟା ହୋଇଥିବା ଧାନର ଚାଉଳ ଓ ଅପକ୍ୱ ଧାନର ଚାଉଳକୁ ରାନ୍ଧିଲେ ତାହା ଦୁଇଗୁଣ ଏବଂ ଗଜା ହୋଇଯାଇଥିବା ବ୍ରୀହ୍ୟାଦିର ଚାଉଳ ରାନ୍ଧିଲେ ତାହା ଅଢ଼ାଇଗୁଣ ହୁଏ । ପକ୍ଷାନ୍ତରେ ଓଦା ହୋଇଯାଇଥିବା ଚଣା ପ୍ରଭୃତି ପଦାର୍ଥକୁ ରାନ୍ଧିଲେ ତାହା ଦ୍ୱିଗୁଣ ହୁଏ ଓ ଅଙ୍କୁରିତ ଚଣା ପ୍ରଭୃତିକୁ ରାନ୍ଧିଲେ ତାହା ତିନିଗୁଣ ହୁଏ । ଉପରୋକ୍ତ ଶସ୍ୟର ଭଜାଚାଉଳମାନଙ୍କୁ ରାନ୍ଧିଲେ ପାଞ୍ଚଭାଗରୁ ଏକଭାଗ ବୃଦ୍ଧିପାଏ ଅର୍ଥାତ୍ ପାଞ୍ଚଭାଗ ପଦାର୍ଥ ରାନ୍ଧିଦେଲେ ଛ'ଭାଗ ହୋଇଯାଏ । ଚଣା ଭଜାଙ୍କର ରାନ୍ଧିଲେ ଦୁଇଗୁଣ, ଭଜାଚାଉଳ ଓ ଭଜା ଯବଧାନଚାଉଳ ରାନ୍ଧିଲେ ଦୁଇଗୁଣ ହୋଇଯାଏ । (୬) ଅତସୀଚଣାକୁ

---

* ବିରୂଢ଼ାନାମ୍ । ବିରୂଢ଼—ବି ଉପସର୍ଗ ରୁହ୍ ବୀଜ ଜନ୍ମନ ପ୍ରାଦୁର୍ଭାବେ ଧାତୁରୁ କ୍ତପ୍ରତ୍ୟୟ ହେଲେ ବିରୂଢ଼ ହୁଏ । ବିରୂଢ଼ାନାଂ ସଦ୍ୟଃ କରସରସିଜସ୍ପର୍ଶ କୁତୁକାଦିତ ବିଦଗ୍ଧମାଧବେ ।

ପଞ୍ଚଷଗଃ । ଚତୁର୍ଭାଗିକାସ୍ତିଲକୁସୁମ୍ଭମଧୂକେଙ୍ଗୁଦୀସ୍ନେହାଃ । (୭) କାର୍ପାସକ୍ଷୌମାଣାଂ ପଞ୍ଚ ପଳେପଳସୂତ୍ରମ୍ । (୮) ପଞ୍ଚଦ୍ରୋଣେ ଶାଲୀନାଂ ଦ୍ୱାଦଶାଢ଼କଂ ତଣ୍ଡୁଳାନାଂ କଲଭଭୋଜନମ୍, ଏକାଦଶକଂ ବ୍ୟାଳାନାଂ, ଦଶକମୌପବାହ୍ୟାନାଂ, ନବକଂସାନ୍ନାହ୍ୟାନାମ୍, ଅଷ୍ଟକଂ ପତ୍ତୀନାଂ, ସପ୍ତକଂ ମୁଖ୍ୟାନାଂ, ଷଟ୍କଂ ଦେବୀ-କୁମାରଣାମ୍, ପଞ୍ଚକଂ ରାଜ୍ଞାମ୍ । ଅଖଣ୍ଡପରିଶୁଦ୍ଧାନାଂ ବା ତଣ୍ଡୁଳାନାଂ ପ୍ରସ୍ଥଃ । (୯) ଚତୁର୍ଭାଗଃ ସୂପଃ, ସୂପଷୋଡ଼ଶୋ

---

ପେଡ଼ିଲେ ଛ'ଭାଗରୁ ଏକଭାଗ ତେଲ; ନିମ୍ବବୀଜ, କୁଶାମ୍ର (ଅମ୍ବକୋଇଲି ବା କଷି ଶୁଷ୍କ ଅମ୍ବ), ଇଙ୍ଗୁଠମଞ୍ଜୀ ଓ ଜଡ଼ାମଞ୍ଜୀ ଇତ୍ୟାଦିରୁ ମାଞ୍ଚଭାଗରୁ ଏକଭାଗ ତେଲ ଓ ତିଳ (ରାଶି), କୁସୁମଫଳ, ମହୁଲଫଳ, (ଟୋଲ) ଇଙ୍ଗୁଦୀଫଳ (ପୋଇଗୁନ୍ଧିଆ ଫଳ)ର ଚାରିଭାଗରୁ ଏକଭାଗ ତେଲ ବାହାରେ । (୭) କପା, ରେଶମ ଓ ବକଳରୁ ପାଞ୍ଚପଳରେ ଏକପଳ ସୂତା ବାହାରେ । (୮) ପାଞ୍ଚଦ୍ରୋଣ (କୋଡ଼ିଏ ଆଢ଼କ) ଶାଳୀଧାନ୍ୟକୁ ଏପରି କୁଟି ପାଛୁଡ଼ି ଠିକ୍ କରିବାକୁ ହେବ, ଯେଉଁଥିରୁ କି ବାର ଆଢ଼କ ଚାଉଳ ବାହାରିବ । ଏହି ଚାଉଳ ପିଲହାତୀମାନଙ୍କ ଭୋଜନ ସକାଶେ ବନ୍ଦୋବସ୍ତ କରାଯାଏ । ପାଞ୍ଚଦ୍ରୋଣ ଶାଳୀଧାନ୍ୟକୁ ଏହି ନିୟମରେ କୁଟି ଏଗାର ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ଦୁଷ୍ଟ ହାତୀର ଖାଦ୍ୟ ସକାଶେ, ଦଶ ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ରାଜାଙ୍କ ଯାନ ହେବା ହାତୀର ଖାଦ୍ୟ ସକାଶେ, ନ'ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ଯୁଦ୍ଧହାତୀର ଖାଦ୍ୟ ସକାଶେ, ଆଠ ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ପାଦାତିକ ସୈନ୍ୟମାନଙ୍କ ଖାଦ୍ୟ ସକାଶେ, ସାତ ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ମୁଖ୍ୟଯୋଦ୍ଧାମାନଙ୍କ ଖାଦ୍ୟ ସକାଶେ, ଛ'ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ରାଣୀ ଓ ରାଜକୁମାରମାନଙ୍କ ଖାଦ୍ୟ ସକାଶେ ଏବଂ ପାଞ୍ଚ ଆଢ଼କ ଚାଉଳ ଅବଶିଷ୍ଟ ରହିଲେ ଏହା ରାଜାମାନଙ୍କ ଭୋଜନ ସକାଶେ ବନ୍ଦୋବସ୍ତ କରାଯାଏ । ଖୁଦ କଣ୍ଡି ନଥିବା, ଗୋଟି-ବଛା ହୋଇଥିବା, ଅଣିଏ ଥର କଣ୍ଡା ହୋଇଥିବା ବିଶୁଦ୍ଧ ମଞ୍ଜି ଚାଉଳ ରାଜାମାନଙ୍କ ଭୋଜନ କାର୍ଯ୍ୟରେ ବନ୍ଦୋବସ୍ତ କରାଯାଏ । (୯) ଏକପ୍ରସ୍ଥ

ଲବଣସ୍ୟାଂଶଃ, ଚତୁର୍ଭାଗଃ ସର୍ପିଷଃ ତୈଳସ୍ୟ ବା, ଏକମାର୍ଯ୍ୟଭକ୍ତମ୍ । ପ୍ରସ୍ଥ ଷଡ଼୍ଭାଗଃ ସୂପଃ, ଅର୍ଦ୍ଧସ୍ନେହମବରାଣାମ୍, ପାଦୋନଂ ସ୍ତ୍ରୀଣାମ୍ । ଅର୍ଦ୍ଧଂ ବାଳାନାମ୍ । (୧୦) ମାଂସପଳବିଂଶତ୍ୟା ସ୍ନେହାର୍ଦ୍ଧକୁଡ଼ୁବଃ, ପଳକୋଲବଣସ୍ୟାଂଶଃ, କ୍ଷାରପଳଯୋଗଃ, ଦ୍ୱିଧରଣିକଃ କଟୁକଯୋଗଃ, ଦଧ୍ନଶ୍ଚାର୍ଦ୍ଧପ୍ରସ୍ଥଃ । (୧୧) ତେନୋତ୍ତରଂ ବ୍ୟାଖ୍ୟାତମ୍ । ଶାକାନାମଧ୍ୟର୍ଦ୍ଧଗୁଣଃ, ଶୁଷ୍କାଣାଂଦ୍ୱିଗୁଣଃ, ସ ଚୈବ ଯୋଗଃ । (୧୨) ହସ୍ତ୍ୟଶ୍ୱୟୋସ୍ତଦଧ୍ୟକ୍ଷେ ବିଧାପ୍ରମାଣଂ ବକ୍ଷ୍ୟାମଃ । ବଳୀବର୍ଦ୍ଦାନାଂ ମାଷଦ୍ରୋଣଂ ଯବାନାଂ ବା ପୁଲାକଃ ।

---

(ଏକସେର) ଚାଉଳ, ଏହାର ଚତୁର୍ଥାଂଶ ଡାଲି, ଡାଲିର ଷୋହଳଭାଗରୁ ଏକଭାଗ ଲବଣ ଏବଂ ଚାରିଭାଗରୁ ଏକଭାଗ ଘିଅ ବା ତେଲ—ଏହା ମଧ୍ୟମ କୋଟିର (ସାଧାରଣ ଭଦ୍ରବ୍ୟକ୍ତିର) ପୁରୁଷବ୍ୟକ୍ତିଙ୍କ ଏକଥରର ଖାଦ୍ୟ ଅଟେ । ଏକପ୍ରସ୍ଥ ଚାଉଳ, ଏହାର ଛ'ଭାଗରୁ ଭାଗେ ଡାଲି, ଡାଲିର ଅଧେ ଘିଅ କିମ୍ବା ତେଲ ସାଧାରଣ ମନୁଷ୍ୟର (ପୁରୁଷବ୍ୟକ୍ତିର) ଏକଥରର ଖାଦ୍ୟ ଅଟେ । ଏଥିରୁ ଚତୁର୍ଥାଂଶ ଊଣାକରି ସ୍ତ୍ରୀମାନଙ୍କ ଏବଂ ଅଧେ ଊଣାକରି ବାଳକମାନଙ୍କ ଏକଥରର ଭୋଜନ ସକାଶେ ବ୍ୟବସ୍ଥା କରିବାକୁ ହେବ । (୧୦) କୋଡ଼ିଏ ପଳ ମାଂସ ସକାଶେ ସ୍ନେହ ଅର୍ଥାତ୍ ଘୃତ କିମ୍ବା ତୈଳ ଅର୍ଦ୍ଧକୁଡ଼ୁବ (ପ୍ରସ୍ଥର ଆଠଭାଗରୁ ଭାଗେ), ଲବଣ ଏକପଳ (ଲବଣାଭାବେ) କ୍ଷାରଲବଣ ଏକପଳ ବା ଚିନି ଏକପଳ, ଅଦା ମରିଚ ପ୍ରଭୃତି ମସଲାଦ୍ରବ୍ୟ ଦୁଇଧରଣ ଏବଂ ଦହି ଅର୍ଦ୍ଧପ୍ରସ୍ଥ ଯୋଗ କରିବାକୁ ହେବ । (୧୧) ଉପରୋକ୍ତ ମାଂସ ପାକନିୟମରେ ଅଧିକ ମାଂସରେ ଅଧିକ ପଦାର୍ଥ ଯୋଗକରି ପାକ କରିବାକୁ ହେବ । କୋଡ଼ିଏ ପଳ ଶାକ (ପରିବା)ରେ ମାଂସପାକପାଇଁ ବ୍ୟବହୃତ ହୋଇଥିବା ଘିଅ, ତେଲ, ଲୁଣ, ମିଠା ଓ ମସଲା ଇତ୍ୟାଦିର ଦେଢ଼ଗୁଣ ଯୋଗକରି ପାକ କରିବାକୁ ହେବ ଏବଂ ଶୁଷ୍କମାଂସରେ ଉକ୍ତ କଞ୍ଚାମାଂସପାକର ଘିଅ, ମସଲା ଇତ୍ୟାଦି ଦୁଇଗୁଣ ଯୋଗକରି ପାକ କରିବାକୁ ହେବ । (୧୨) ହସ୍ତୀ ଓ ଅଶ୍ୱମାନଙ୍କର ଭୋଜନ ତଣ୍ଡୁଳାଦିର ପରିମାଣ ସେହି ସେହି ଅଧ୍ୟକ୍ଷ ପ୍ରକରଣରେ କୁହାଯିବ । ବଳଦମାନଙ୍କ ପାଇଁ ଏକଦ୍ରୋଣ ଦରହିଙ୍ଖା ବିରି କିମ୍ବା ଏକଦ୍ରୋଣ ଦରସିଝା

ଶେଷମଶ୍ୱବଧାନମ୍ । ବିଶେଷୋ—ଘାଣପିଣ୍ୟାକତୁଲା କଣକୁଣ୍ଡକଂ ଦଶାଢ଼କଂ ବା । ଦ୍ୱିଗୁଣଂ ମହିଷୋଷ୍ଟ୍ରାଣାମ୍ । ଅର୍ଧଦ୍ରୋଣଂ ଖରପୃଷତରୋହିତାନାମ୍ । ଆଢ଼କମେଣକୁରଙ୍ଗାଣାମ୍ । ଅର୍ଧାଢ଼କମଜୈଳକବରାହାଣାଂ ଦ୍ୱିଗୁଣଂ ବା କଣକୁଣ୍ଡକମ୍ । ପ୍ରସ୍ଥୌଦନଃ ଶୁନାମ୍ । ହଂସକ୍ରୌଞ୍ଚମୟୂରାଣାମର୍ଧପ୍ରସ୍ଥଃ । ଶେଷାଣାମତୋ * ମୃଗପଶୁପକ୍ଷିବ୍ୟାଳାନାମେକଭକ୍ତାଦନୁମାନଂ ଗ୍ରାହୟେତ୍ । (୧୩) ଅଙ୍ଗାରାଂସ୍ତୁଷାନ୍ ଲୋହକର୍ମାନ୍ତଭିତ୍ତିଲେପ୍ୟାନାଂ ହାରୟେତ୍ ।

ଯବଧାନ ଗୁଡ଼ଳ ଏକଥରର ଖାଦ୍ୟପାଇଁ ବ୍ୟବସ୍ଥା କରିବାକୁ ହେବ ଏବଂ ଅନ୍ୟାନ୍ୟ ବିଷୟ ଅଶ୍ୱମାନଙ୍କ ପାଳନ ପୋଷଣ ବ୍ୟବସ୍ଥାପରି ଜାଣିବାକୁ ହେବ । ବିଶେଷତଃ ଘାଣି ପିଡ଼ିଆ ଶହେପଲ କିମ୍ବା ଖୁଦକୁଣ୍ଡା ଦଶଆଢ଼କ ବଳଦର ଗୋଟିଏଥରର ଖାଦ୍ୟପାଇଁ ବ୍ୟବସ୍ଥା କରିବାକୁ ହେବ । ମହିଷ ଓ ଓଟମାନଙ୍କ ସକାଶେ ବଳଦକୁ ଦିଆଯିବା ଖାଦ୍ୟର ଦୁଇଗୁଣ ପରିମାଣ ଦେବାକୁ ହେବ । ଗଧ, ପୃଷତ ଅର୍ଥାତ୍ ବିନ୍ଦୁଚିହ୍ନମୃଗ, ରୋହିତମୃଗ ଏମାନଙ୍କର ଏକଥର ଖାଦ୍ୟପାଇଁ ଅର୍ଦ୍ଧଦ୍ରୋଣ; ହରିଣ, କୁଟୁରି ବା କୁରଙ୍ଗମାନଙ୍କ ଏକଥର ଖାଦ୍ୟପାଇଁ ଏକଆଢ଼କ (ଚାରିପ୍ରସ୍ଥ), ଛେଳି, ମେଣ୍ଢା ଓ ବରାହମାନଙ୍କ ଏକଥର ଖାଦ୍ୟପାଇଁ ଅର୍ଦ୍ଧଆଢ଼କ ଦରସିଝା ବିରି କିମ୍ବା ଯବଧାନ ଗୁଡ଼ଳ ନଚେତ୍ ଖୁଦକୁଣ୍ଡା ଏକଆଢ଼କ, କୁକୁରମାନଙ୍କ ଏକଥର ଖାଦ୍ୟପାଇଁ ଏକପ୍ରସ୍ଥ ଭାତ (ଏକସେର), ହଂସ, କ୍ରୌଞ୍ଚ (ବକ) ଓ ମୟୂରମାନଙ୍କ ଏକଥର ଖାଦ୍ୟପାଇଁ ଅର୍ଦ୍ଧପ୍ରସ୍ଥ (ଅଧସେର) ଦରସିଝା ଗୁଡ଼ଳ ବା ଭାତ, ଅନ୍ୟାନ୍ୟ ମୃଗ, ପଶୁ, ପକ୍ଷୀ ଓ ସରୀସୃପାଦି ହିଂସ୍ରଜନ୍ତୁମାନଙ୍କୁ ଥରେ ସେମାନଙ୍କ ଉପଯୁକ୍ତ ଖାଦ୍ୟ ଖୁଆଇ ସେମାନଙ୍କର ଖାଦ୍ୟ ପରିମାଣ ଠଉରାଇ ଜାଣିବାକୁ ହେବ । (୧୩) ରନ୍ଧାଶାଳର ଅଙ୍ଗାର ଏବଂ ଧାନକୁଟାରୁ ବାହାରିଥିବା ତୁଷକୁ ଯଥାକ୍ରମେ ଲୌହକାର୍ଯ୍ୟ ଓ ଲେପାଲେପି କାର୍ଯ୍ୟପାଇଁ ସଞ୍ଚୟ କରି ରଖିବେ । (ଅଙ୍ଗାର ସଞ୍ଚୟ କରିବା ସଙ୍ଗେ ସଙ୍ଗେ ବିଲଗୁଡ଼ିକୁ ଉର୍ବର କରିବା ସକାଶେ ପାଉଁଶ ମଧ୍ୟ ସଂଗ୍ରହ

* ମୃଗ = ବନ୍ୟପଶୁ—**Beasts.** ପଶୁ = ଗ୍ରାମ୍ୟପଶୁ—**Cattle.**

କଣିକାଃ ଦାସକର୍ମ୍ମକରସୂପକାରାଣାମ୍ । ଅତୋଽନ୍ୟଦୌଦନକାପୂପିକେଭ୍ୟଃ ପ୍ରଯଚ୍ଛେତ୍ । (୧୪) ତୁଲାମାନଭାଣ୍ଡଂ ରୋଚନୀଦୃଷନ୍ମୁଷଳୋଲୂଖଳକୁଟ୍ଟକରୋଚକଯନ୍ତ୍ରପତ୍ରକଶୂର୍ପଚାଲନକାକଣ୍ଡୋଲୀପିଟକସମ୍ମାର୍ଜନ୍ୟଶ୍ଚୋପକରଣାନି । (୧୫) ମାର୍ଜକାରକ୍ଷକଧାରକମାୟକମାପକଦାୟକଦାପକଶଳାକାପ୍ରତିଗ୍ରାହକଦାସ କର୍ମ୍ମକରବର୍ଗଶ୍ଚ ବିଷ୍ଟିଃ ।

(୧୬) ଉଚ୍ଚୈର୍ଧାନ୍ୟସ୍ୟ ନିକ୍ଷେପୋ ମୂତାଃ କ୍ଷାରସ୍ୟ ସଂହତାଃ ।
ମୃତ୍କାଷ୍ଠକୋଷ୍ଠାଃ ସ୍ନେହସ୍ୟ ପୃଥିବୀ ଲବଣସ୍ୟ ଚ ॥

କରିବେ ।) ଅଥବା ଅଙ୍ଗାର ନେଉଥିବାମାନଙ୍କୁ ଓ ଚମ୍ପୁ ଲେସାଲେସି କରିବା ଲୋକଙ୍କୁ ଦେଇଦେବେ । ଖୁଦ ଗୃହକର, ନୌକର ଓ ସୂପକାର (ସୁଆର) ମାନଙ୍କୁ ଦେଇଦେବେ ଏବଂ ଏଥିରୁ ବଳିବା ପଦାର୍ଥ ସାଧାରଣ ରାନ୍ଧୁଣିଆ ଓ ପିଠା କରିବା ବ୍ୟକ୍ତିଙ୍କୁ ଦେଇଦେବେ । (୧୪) ତରା, ମାପଭାଣ୍ଡ, ବଟକରା, ଅଡ଼ା, ଗଉଣି, ଘୋରଣା, ପେଷଣା, ହେମଦସ୍ତା, ଢ଼ିଙ୍କି, ରେଚକ *, କାଠପିଢ଼ା, କୁଲା, ଚାଲୁଣି, ଟୋକେଇ, ସର୍କପେଡ଼ି (ପେଟାରିକା) ଓ ଝାଡ଼ୁଣୀ ଇତ୍ୟାଦି ରୋଷେଇ ସକାଶେ ଅତ୍ୟାବଶ୍ୟକୀୟ ଉପକରଣ ଅଟନ୍ତି । (୧୫) ଝାଡ଼ୁଦାର, କୋଷ୍ଠାଗାର ରକ୍ଷକ, ତୁଳାଳି, ମାପିବା ବ୍ୟକ୍ତି, ମପାଇବା ବ୍ୟକ୍ତି, ଭଣ୍ଡାରକୁ ସାମାନ ଦେବା ବ୍ୟକ୍ତି ଓ ଦିଆଇବା ବ୍ୟକ୍ତି, କାଠବୋଝ ବୋହିବା ବ୍ୟକ୍ତି, ଗୃହକର ଓ ମୂଲିଆମାନଙ୍କୁ 'ବିଷ୍ଟି' କୁହାଯାଏ । (୧୬) କୋଷ୍ଠାଗାରାଧ୍ୟକ୍ଷ ଧାନ୍ୟାଦି ଶସ୍ୟପଦାର୍ଥକୁ ଉଚ୍ଚସ୍ଥାନରେ, ଗୁଡ଼, ନବାତ, ଚିନି ଇତ୍ୟାଦିକୁ ଘାସ ବା ପାଳମଲା ଉପରେ, ତେଲ, ଘିଅ, ମହୁ ପ୍ରଭୃତି ସ୍ନେହ ପଦାର୍ଥଗୁଡ଼ିକୁ ମାଟି କିମ୍ବା କାଷ୍ଠପାତ୍ରରେ ଏବଂ ଲବଣକୁ ମାଟିପାତ୍ରରେ ସଞ୍ଚୟ କରି ରଖାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ପଞ୍ଚଦଶୋଽଧ୍ୟାୟଃ
କୋଷ୍ଠାଗାରାଧ୍ୟକ୍ଷଃ—ଆଦିତଃ ଷଟ୍ତ୍ରିଂଶଃ ।

* ରେଚକଯନ୍ତ୍ର ତିନିପ୍ରକାର—ମନୁଷ୍ୟଚାଳିତ, ବଳଦଚାଳିତ ଓ ଜଳଚାଳିତ । ଚାଉଳକୁ ଖୁଦ କରିବା ଯନ୍ତ୍ରବିଶେଷ ।

## ଷୋଡ଼ଶୋଽଧ୍ୟାୟଃ

### ଚତୁସ୍ତ୍ରିଂଶ ପ୍ରକରଣମ୍—ପଣ୍ୟାଧ୍ୟକ୍ଷଃ

### THE SUPERINTENDENT OF COMMERCE

( ବିକ୍ରୟଯୋଗ୍ୟ ରାଜକୀୟ ଦ୍ରବ୍ୟମାନଙ୍କର କ୍ରୟବିକ୍ରୟ ସକାଶେ ନିଯୁକ୍ତ ହୋଇଥିବା ଅଧ୍ୟକ୍ଷଙ୍କ ବ୍ୟାପାର )

**(୧) ପଣ୍ୟାଧ୍ୟକ୍ଷଃ ସ୍ଥଳଜଳଜାନାଂ ନାନାବିଧାନାଂ ପଣ୍ୟାନାଂ ସ୍ଥଳପଥବାରିପଥୋପଯାତାନାଂ ସାରଫଲ୍ଗ୍ୱର୍ଘାନ୍ତରଂ ପ୍ରିୟାପ୍ରିୟତାଂ ଚ ବିଦ୍ୟାତ୍ । ତଥା ବିକ୍ଷେପସଂକ୍ଷେପକ୍ରୟବିକ୍ରୟପ୍ରୟୋଗକାଳାନ୍ । (୨) ଯଚ୍ଚ ପଣ୍ୟଂ ପ୍ରଚୁରଂ ସ୍ୟାତ୍ ତଦେକୀକୃତ୍ୟାର୍ଘମାରୋପୟେତ୍ । ପ୍ରାପ୍ତେଽର୍ଘେ ବାର୍ଘାନ୍ତରଂ କାରୟେତ୍ (୩) ସ୍ୱଭୂମିଜାନାଂ**

---

(୧) ପଣ୍ୟାଧ୍ୟକ୍ଷ ସ୍ଥଳଜାତ କୁଙ୍କୁମ, କସ୍ତୁରୀ, ଗୋରୋଚନା ଓ ଜଳଜାତ ମୁକ୍ତା, ପ୍ରବାଳାଦି ସ୍ଥଳପଥ ଓ ଜଳପଥରେ ଆମଦାନି ଓ ରପ୍ତାନି ହେଉଥିବା ନାନାବିଧ ପଣ୍ୟପଦାର୍ଥମାନଙ୍କ ମଧ୍ୟରେ ସାର ଅର୍ଥାତ୍ ବହୁମୂଲ୍ୟ ପଦାର୍ଥ ଓ ଫଲ୍ଗୁ ଅର୍ଥାତ୍ ଅଲ୍ପମୂଲ୍ୟ ପଦାର୍ଥର ମୂଲ୍ୟ ତାରତମ୍ୟ, ପଣ୍ୟପଦାର୍ଥମାନଙ୍କ ପ୍ରତି ଲୋକମାନଙ୍କର ଆଗ୍ରହ ଥିବା ଓ ଆଗ୍ରହ ନଥିବା ଅର୍ଥାତ୍ ଶୀଘ୍ର ବିକ୍ରୟହେବା, ନହେବା ବିଷୟକୁ ଜାଣିବା ସଙ୍ଗେ ସଙ୍ଗେ ଗ୍ରାହକମାନଙ୍କ ଗୃହ୍‌ଦା ଓ ପଡ଼ପଡ଼ାଣି ଇତ୍ୟାଦି ସମୟରେ ଆବଶ୍ୟକମତେ ଅଳ୍ପ ଥିବା ପଦାର୍ଥକୁ ବେଶି ସଂଗ୍ରହ କରିବା ଓ ବେଶି ଜମାଥିବା ପଦାର୍ଥକୁ କମ୍ କରିଦେବା ଓ କେଉଁ ସମୟେ କେଉଁ ପଦାର୍ଥ କିଣିବା ଆବଶ୍ୟକ, କେଉଁ ସମୟରେ କେଉଁ ପଦାର୍ଥ ବିକ୍ରୟ କରିବା ଆବଶ୍ୟକ ଏସମସ୍ତ ବିଷୟ ଜାଣିବାକୁ ହେବ । (୨) ଯେଉଁ ପଣ୍ୟ-ପଦାର୍ଥ ବେଶି ପରିମାଣରେ ଥାଏ ତାହାକୁ ଏକତ୍ରିତ କରି ପଣ୍ୟାଧ୍ୟକ୍ଷ ନିଜର ବ୍ୟାପାରକୌଶଳଦ୍ୱାରା ଏହାର ମୂଲ୍ୟ ବଢ଼ାଇ ବିକ୍ରୟ କରିବା ପରେ ଚଢ଼ାମୂଲ୍ୟରୁ କିଛି ଊଣାକରି ବିକ୍ରୟ କରାଇବେ । (୩) ରାଜା ନିଜଦେଶରେ ଜାତହୋଇଥିବା ପଣ୍ୟପଦାର୍ଥମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ

ସ୍ୱଜପଣ୍ୟାନାମେକମୁଖଂ ବ୍ୟବହାରଂ ସ୍ଥାପୟେତ୍, ପରଭୂମିଜାନାମନେକମୁଖମ୍ । ଉଭୟଂ ଚ ପ୍ରଜାନାମନୁଗ୍ରହେଣ ବିକ୍ରାପୟେତ୍ । ସ୍ଥୂଳମପି ଚ ଲାଭଂ ପ୍ରଜାନାମୌପଘାତିକଂ ବାରୟେତ୍ । ଅଜସ୍ରପଣ୍ୟାନାଂ କାଳୋପରୋଧଂ ସଂକୁଳଦୋଷଂ ବା ନୋତ୍ପାଦୟେତ୍ । ବହୁମୁଖଂ ବା ସ୍ୱଜପଣ୍ୟଂ ବୈଦେହକାଃ କୃତାର୍ଘଂ ବିକ୍ରୀଣୀରନ୍ । ଛେଦାନୁରୂପଂ ଚ ବୈଧରଣଂ ଦଦ୍ୟୁଃ । (୪) ଷୋଡ଼ଶଭାଗୋ ମାନବ୍ୟାଜୀ । ବିଂଶତିଭାଗସ୍ତୁଲାମାନମ୍ ।

---

ସ୍ଥାନରେ ରଖାଇ ବିକ୍ରୟ କରାଇବେ ଏବଂ ପରଦେଶମାନଙ୍କରୁ ଆମଦାନି ହୋଇଥିବା ପଣ୍ୟପଦାର୍ଥମାନଙ୍କୁ ପୃଥକ୍ ପୃଥକ୍ ସ୍ଥାନରେ ରଖାଇ ବିକ୍ରୟ କରାଇବେ । ଏ ଦୁଇପ୍ରକାର ପଣ୍ୟପଦାର୍ଥ ବିକିବା ଓ କିଣାଇବା ବେଳେ ପଣ୍ୟାଧ୍ୟକ୍ଷ କ୍ରେତା( ଗ୍ରାହକ )ମାନଙ୍କ ପୀଡ଼ା ନ ହେଲପରି ବ୍ୟବସ୍ଥା କରିବେ । ଲାଭ ବେଶି ହେବାଦ୍ୱାରା ଗ୍ରାହକମାନଙ୍କର ପୀଡ଼ା ହେଲେ ତାହା ବାରଣ କରିଦେବେ ଅର୍ଥାତ୍ ଦରଦାମ୍ ଊଣା କରିଦେବେ । ଯେତେବେଳେ ବିକାହେବା ପଣ୍ୟପଦାର୍ଥ ଅର୍ଥାତ୍ କ୍ଷୀର, ଦହି, ମାଛ, ପରିବା ଇତ୍ୟାଦିକୁ ବିକ୍ରୟ କରିବାରେ ବିଳମ୍ବ କରିବେ ନାହିଁ କିମ୍ବା ଉକ୍ତ ପଦାର୍ଥ ଗଚ୍ଛିତଥିବା ସତ୍ତ୍ୱେ ଅଧିକ ପଦାର୍ଥ ଆଣି ବିକ୍ରୟ କରିବାକୁ ସୁବିଧା ଦେବେ ନାହିଁ । ନିର୍ଦ୍ଧାରିତ ମୂଲ୍ୟ ରାଜକୀୟ ପଣ୍ୟପଦାର୍ଥକୁ ବେପାରୀମାନେ ନେଇ ବହୁ ଜାଗାରେ ବିକ୍ରୟ କରିବେ ଅର୍ଥାତ୍ ନିର୍ଦ୍ଧାରିତ ଦରରେ (Fixed rate)ରେ ବିକ୍ରୟ କରିବେ । ଏଥିରେ ହେବା ଭାଗୁଡ଼ି ବା ମୂଲ୍ୟହାନି ସର୍କାରେ ବେପାରୀମାନେ * 'ବୈଧରଣ' ନାମକ କ୍ଷତିପୂରକ 'କର' ଦେବେ । (୪) ମାନବ୍ୟାଜୀ ଅର୍ଥାତ୍ ବେପାରୀମାନେ ମାପକରି ବିକିବା ଜିନିଷର ଶୋହଳଭାଗରୁ ଏକଭାଗ, ତୁଳାମାନ ଅର୍ଥାତ୍ ତୁଳକରି ବିକିବା ଜିନିଷର କୋଡ଼ିଏଭାଗରୁ ଏକଭାଗ ଓ ଗଣତି କରି ବିକିବା ଜିନିଷ ଅର୍ଥାତ୍ ଗୁଆ, ନଡ଼ିଆ, ଅମ୍ବ, ଲେମ୍ବୁ ଇତ୍ୟାଦିର ଏଗାରଭାଗରୁ ଏକଭାଗ ରାଜାଙ୍କୁ ଦିଆଯାଏ । କୌଣସି-

---

* ବୈଧରଣ—Compensation.

ଗଣ୍ୟପଣ୍ୟାନାମେକାଦଶଵଗଃ । (୫) ପରଭୂମିଜଂ ପଣ୍ୟମନୁ-ଗ୍ରହେଣାବାହୟେତ୍ । ନାବକସାର୍ଥବାହେଭ୍ୟଶ୍ଚ ପରହାରମାୟୁକ୍ତ କ୍ଷମଂ ଦଦ୍ୟାତ୍ । ଅନଭିଯୋଗଶ୍ଚାର୍ଥେଷ୍ୱାଗନ୍ତୂନାମନ୍ୟତ୍ର ସଭ୍ୟୋପକାରିଭ୍ୟଃ । (୬) ପଣ୍ୟାଧିଷ୍ଠାତାରଃ ପଣ୍ୟମୂଲ୍ୟମେକମୁଖଂ କାଷ୍ଠଦ୍ରୋଣ୍ୟାମେକଚ୍ଛିଦ୍ରାପିଧାନାୟାଂ ନିଦଧ୍ୟୁଃ । ଅହ୍ନଶ୍ଚାଷ୍ଟମେ ଭାଗେ ପଣ୍ୟାଧ୍ୟକ୍ଷସ୍ୟାର୍ପୟେୟୁଃ—ଇଦଂ ବିକ୍ରୀତମିଦଂ ଶେଷମିତି । ତୁଲାମାନଭାଣ୍ଡକଂ ଚାର୍ପୟେୟୁଃ । ଇତି ସ୍ୱବିଷୟେ ବ୍ୟାଖ୍ୟାତମ୍ । (୭) ପରବିଷୟେ ତୁ—ପଣ୍ୟପ୍ରତିପଣ୍ୟୟୋରର୍ଘଂ ମୂଲ୍ୟଂ ଚ

---

ମାନଙ୍କ ମତରେ ଏହି ସମସ୍ତ 'ବ୍ୟାଜୀ' କଣିବା ବ୍ୟକ୍ତିଙ୍କ ଦିଆଯାଏ । (୫) ବିଦେଶରେ ଉତ୍ପନ୍ନ ହେବା ପଣ୍ୟଦ୍ରବ୍ୟ ଆମଦାନି କରିବା ବେଳେ ପଣ୍ୟାଧ୍ୟକ୍ଷ ସେହି ଦେଶର ଅନ୍ତପାଳ, ଆଟବିକ ଓ ରାଜବଲ୍ଲଭମାନଙ୍କଠାରୁ ଉପୁଜିବା ଉପଦ୍ରବ ନିବାରଣ କରି ସେହି ପଣ୍ୟଦ୍ରବ୍ୟର ବ୍ୟାପାରୀମାନଙ୍କ ଠାରୁ ବ୍ୟାଜୀ ମୋକ୍ଷ କରି ଅଣାଇବେ (ସେମାନଙ୍କଠାରୁ ପଣ୍ୟକର ଗ୍ରହଣ ନ କରି ସେମାନେ ସ୍ୱଚ୍ଛନ୍ଦରେ ବ୍ୟାପାର ଚଳାଇବା ବ୍ୟବସ୍ଥା କରାଇବେ) । ବିଦେଶୀ ବ୍ୟାପାରୀମାନେ କୌଣସିପ୍ରକାର ଋଣ ଗ୍ରହଣ କରିବାକୁ ହେଲେ ସେମାନଙ୍କ ଉପରେ କୌଣସି ଅଭିଯୋଗ ନ ଆସିବା ଭଳି ବ୍ୟବସ୍ଥା କରିବାକୁ ହେବ । କିନ୍ତୁ ସ୍ୱଦେଶରେ ଥିବା ଏ ବେପାରୀମାନଙ୍କର ଗୁମସ୍ତା, ଏଜେଣ୍ଟ ଓ ଅଂଶୀଦାରମାନଙ୍କଠାରୁ ଆଇନ ଅନୁସାରେ ସରତପତ୍ର ଲେଖାଇ ସେମାନଙ୍କୁ ଋଣ ଦେବାର ବ୍ୟବସ୍ଥା କରିବାକୁ ହେବ । (୬) ରାଜକୀୟ ପଣ୍ୟପଦାର୍ଥ ବିକ୍ରେତାମାନେ ପଣ୍ୟପଦାର୍ଥ ବିକ୍ରୟରୁ ମିଳିଥିବା ଧନ ଏକତ୍ରିତ କରି ଉପରେ ଟଙ୍କାପଇସା ଗଳେଇବା ପାଇଁ ଛିଦ୍ରଥିବା କାଠସିନ୍ଦୁକରେ ରଖିବେ ଏବଂ ଦିନର ଶେଷଭାଗରେ ବା ବେଭାର ଶେଷ ହେଲା ପରେ ପଣ୍ୟାଧ୍ୟକ୍ଷଙ୍କୁ ଅର୍ପଣ କରିଦେବେ । ପରେ ଏତିକ ପଦାର୍ଥ ବିକାହେଲା, ଏତିକ ପଦାର୍ଥ ବଳକା ଅଛି—ଏହା ବୁଝାଇ ତରାଜୁ, ଅଡ଼ା, ଗଉଣି ପ୍ରଭୃତି ମଧ୍ୟ ଅର୍ପଣ କରିଦେବେ । ଏହାପରି ସ୍ୱଦେଶରେ ହେବା କ୍ରୟବିକ୍ରୟ ନିୟମର ବ୍ୟାଖ୍ୟାନ କରାଗଲା । (୭) ରାଜକୀୟ ପଣ୍ୟପଦାର୍ଥ ପରଦେଶକୁ ବିକ୍ରୟ ସକାଶେ ପଠାଇବାକୁ ହେଲେ ପଣ୍ୟାଧ୍ୟକ୍ଷ ପ୍ରଥମେ ନିଜଦେଶର

ଆଗମଯ୍ୟ ଶୁଲ୍କବର୍ତନ୍ୟାତିବାହିକଗୁଲ୍ମତରଦେୟଭକ୍ତଭାଟକବ୍ୟୟ-ଶୁଦ୍ଧମୁଦୟଂ ପଶ୍ୟେତ୍ । ଅସତ୍ୟୁଦୟେ ଭାଣ୍ଡନିର୍ବହଣେନ ପଣ୍ୟପ୍ରତିପଣ୍ୟାର୍ଘେଣ ବା ଲାଭଂ ପଶ୍ୟେତ୍ । ତତଃ ସାରପାଦେନ ସ୍ଥଳବ୍ୟବହାରମଧ୍ୱନା କ୍ଷେମେଣ ପ୍ରଯୋଜୟେତ୍ । ଅଟବ୍ୟନ୍ତପାଳ-ପୁରରାଷ୍ଟ୍ରମୁଖ୍ୟୈଶ୍ଚ ପ୍ରତିସଂସର୍ଗଂ ଗଚ୍ଛେଦନୁଗ୍ରହାର୍ଥମ୍ । (୮)

ପଣ୍ୟପଦାର୍ଥ ଓ ପରଦେଶର ପଣ୍ୟପଦାର୍ଥର ମୂଲ୍ୟ ତାରତମ୍ୟ ଅବଗତ ହେବାପରେ ଅର୍ଥାତ୍ ସମମୂଲ୍ୟ, ବିଷମମୂଲ୍ୟ, ନ୍ୟୂନମୂଲ୍ୟ ଓ ଅନ୍ୟାନ୍ୟ ଉପକରଣମାନଙ୍କ ମୂଲ୍ୟ ବିଷୟ ଅବଗତ ହେବା ପରେ * ଶୁଲ୍କ (କର), ବର୍ତିନୀଦେୟ (ଅନ୍ତପାଳଦେୟ), ଅତିବାହିକଦେୟ (ରାସ୍ତାରେ ସାହାଯ୍ୟ କରିଥିବା ଶସ୍ତ୍ରଧାରୀ ଜଗୁଆଳିମାନଙ୍କ ଦେୟ), ଗୁଲ୍ମଦେୟ (ଜଙ୍ଗଲରେ ଥିବା ରକ୍ଷକମାନଙ୍କ ଦେୟ), ତରଦେୟ (ନାବିକମାନଙ୍କ ଦେୟ ବା ନୌକାକର), ଭକ୍ତ (ନୌକର ଓ ବଳଦ, ଓଟ, ଘୋଡ଼ା, ମେଣ୍ଢା, ଗଧ ଇତ୍ୟାଦିଙ୍କ ଭତ୍ତା), ଭାଟକ (ଭଡ଼ା) ଇତ୍ୟାଦି ବ୍ୟୟ ବିଷୟ ହିସାବକରି 'ଲାଭ'ର ବିଚାର କରିବେ । ଏପରି କରିବାରେ ଯଦି ଲାଭ ଦେଖାନଯାଏ ତେବେ ସେଠାରେ କେତେ ଧନ ଅପେକ୍ଷା କଲେ ଲାଭ ହେବ କିମ୍ବା ନିଜ ଜିନିଷ ବଦଳ ଦେଇ ପରଦେଶର ଜିନିଷ ଗ୍ରହଣ କଲେ ଲାଭ ହେବ—ଏହା ମଧ୍ୟ ବିଚାର କରି ଲାଭ ହେବାର ଦେଖାଗଲେ ଅନୁମାନିକ ଲାଭର ଏକ-ଚତୁର୍ଥାଂଶ ସ୍ୱଦେଶର ପଣ୍ୟପଦାର୍ଥ ବେପାରୀ ଓ ଯାନବାହନଙ୍କ ନିରାପତ୍ତା ସକାଶେ ବ୍ୟୟକରି ସୁଗମ ସ୍ଥଳପଥରେ ବ୍ୟବସାୟ ଚଳାଇବେ ଏବଂ ପରରାଜ୍ୟର ଅଟବୀପାଳ (ଜଙ୍ଗଲରକ୍ଷକ), ଅନ୍ତପାଳ (ସୀମାରକ୍ଷକ), ନଗରମୁଖ୍ୟ ଓ ରାଷ୍ଟ୍ରମୁଖ୍ୟମାନଙ୍କ ମନଧରି ସେମାନଙ୍କ ଅନୁଗ୍ରହ ସମ୍ପାଦନ ପାଇଁ ଚେଷ୍ଟା କରିବେ । (୮) ବାଣିଜ୍ୟପଥରେ ଚୋର ଖଣ୍ଟ ଡକାୟତମାନଙ୍କ ଦ୍ୱାରା ଆପଦ ଘଟିଲେ ସେଥିରୁ ଧନ, ପ୍ରାଣ କିମ୍ବା ଏ ଉଭୟର ରକ୍ଷାବିଷୟରେ ଅସମର୍ଥ ହେଲେ ଯେକୌଣସି ଉପାୟରେ କେବଳ ପ୍ରାଣରକ୍ଷା କରିବାକୁ

* ଶୁଲ୍କ—Toll; ବର୍ତିନୀ—Road cess, payable to boundary guard.

ଆପଦ ସାରମାତ୍ମାନଂ ବା ମୋକ୍ଷୟେତ୍ । ଆତ୍ମନୋ ବା ଭୂମିମପ୍ରାପ୍ତଃ ସର୍ବଦେୟବିଶୁଦ୍ଧଂ ବ୍ୟବହରେତ୍ । (୯) ବାରିପଥେ ଚ ଯାନଭାଟକପଥ୍ୟଦନପଣ୍ୟପ୍ରତିପଣ୍ୟାର୍ଘପ୍ରମାଣଯାତ୍ରାକାଳଭୟପ୍ରତୀକାରପଣ୍ୟପତ୍ତନଚାରିତ୍ରାଣ୍ୟୁପଲଭେତ ।

(୧୦) ନଦୀପଥେ ଚ ବିଜ୍ଞାୟ ବ୍ୟବହାରଂ ଚରିତ୍ରତଃ ।
ଯତୋ ଲାଭସ୍ତତୋ ଗଚ୍ଛେଦଲାଭଂ ପରିବର୍ଜୟେତ୍ ॥

---

ଯତ୍ନବାନ୍ ହେବେ । ଯଦି ବ୍ୟବସାୟୀ ପରଦେଶର ଅଭିଳଷିତ ଓ ନିର୍ଦ୍ଦିଷ୍ଟ ବ୍ୟବସାୟକେନ୍ଦ୍ରରେ ନିଜର ପଣ୍ୟପଦାର୍ଥ ପହଞ୍ଚାଇବା ପାଇଁ ଅସମର୍ଥ ହୁଅନ୍ତି, ତେବେ ସେହି ପଣ୍ୟପଦାର୍ଥକୁ ସେହି ରାଜ୍ୟର ଯେକୌଣସି ସ୍ଥାନରେ ଯେକୌଣସି ଦରରେ ନିଜର ପଣ୍ୟଦ୍ରବ୍ୟକୁ ସେହି ଦେଶର ରାଜାଙ୍କ ପଣ୍ୟଦ୍ରବ୍ୟ ବୋଲି କହି କର ଇତ୍ୟାଦି ନ ଦେଇ ସ୍ୱଳ୍ପଲାଭରେ କୌଣସିମତେ ବିକ୍ରୟ କରିଦେଇ ଶୀଘ୍ର ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବେ କିମ୍ବା ଯେପର୍ଯ୍ୟନ୍ତ ବ୍ୟବସାୟୀ ବିଦେଶରେ ବ୍ୟବସାୟ ଶେଷକରି ସ୍ୱଦେଶକୁ ଫେରିନାହାନ୍ତି, ସେପର୍ଯ୍ୟନ୍ତ ବିଦେଶୀ ରାଜାଙ୍କୁ ଯାବନ୍ତ ପ୍ରକାର କର ଓ ଅନ୍ୟାନ୍ୟ ଦେୟ ପ୍ରଦାନ କରି ଯେକୌଣସିମତେ ଅଳ୍ପ ଲାଭ ହେଲେ ମଧ୍ୟ ନିଜର ପଣ୍ୟପଦାର୍ଥ ବିକ୍ରୟ କରିଦେଇ ନିଜରାଜ୍ୟକୁ ଫେରି ଆସିବେ । (୯) ଜଳପଥରେ ବ୍ୟବହାର କରିବା ବ୍ୟକ୍ତି ନୌକାଭଡ଼ା, ଭତ୍ତା, ବାଟରେ ହେବା ଖାଉଟି ଖର୍ଚ୍ଚ, ନିଜର ପଣ୍ୟପଦାର୍ଥ ଓ ପରଦେଶୀୟ ପଣ୍ୟପଦାର୍ଥର ମୂଲ୍ୟ ତାରତମ୍ୟ, ଜଳପଥରେ ଯାତାୟାତ କରିବା ସମୟର ପରିମାଣ ଓ ଅନୁକୂଳ ଋତୁ, ତସ୍କରାଦି ଭୟର ପ୍ରତିକାର ଓ ନିଜର ପଣ୍ୟପଦାର୍ଥ ପରଦେଶର ଯେଉଁ ସ୍ଥାନରେ ବିକ୍ରୟ କରିବେ ସେହି ସ୍ଥାନର ସମାଚାର ଅବଗତ ହୋଇ ଜଳପଥରେ ବ୍ୟବସାୟ ଚଳାଇବେ । (୧୦) ବ୍ୟବସାୟୀ ସମୁଦ୍ର-ପଥ ଛଡ଼ା ନଦୀପଥରେ ମଧ୍ୟ ବ୍ୟବହାରରେ ଲାଭ ଆଶା ଥିଲେ ପରଦେଶକୁ ଯାଇ ବାଣିଜ୍ୟ କରିବାକୁ ହେବ । ମାତ୍ର ସେ ଦେଶର ବାଣିଜ୍ୟସ୍ଥାନର

# ସପ୍ତଦଶାଧ୍ୟାୟଃ

## ପଞ୍ଚବିଂଶ ପ୍ରକରଣମ୍—କୁପ୍ୟାଧ୍ୟକ୍ଷଃ

## THE SUPERINTENDENT OF FOREST PRODUCE

( କୁପ୍ୟ ଅର୍ଥାତ୍ ଚନ୍ଦନାଦି ସାର କାଷ୍ଠ, ସାଳ ଶିଂଶପାଦି ଗୃହୋପଯୋଗୀ କାଷ୍ଠ ଓ ବାଉଁଶ ପ୍ରଭୃତି ବ୍ୟାପାରରେ ନିଯୁକ୍ତ ହୋଇଥିବା କୁପ୍ୟାଧ୍ୟକ୍ଷଙ୍କ ବ୍ୟାପାର )

(୧) କୁପ୍ୟାଧ୍ୟକ୍ଷୋ ଦ୍ରବ୍ୟବନପାଳୈଃ କୁପ୍ୟମାନାୟୟେତ୍ । ଦ୍ରବ୍ୟବନକର୍ମାନ୍ତାଂଶ୍ଚ ପ୍ରଯୋଜୟେତ୍ । ଦ୍ରବ୍ୟବନଚ୍ଛିଦାଂ ଚ

---

ସମାଗ୍ରର ବୃଦ୍ଧିସୃଷ୍ଟି ସେଠାରେ ବ୍ୟବସାୟ କରିବେ । ଯେଉଁଠି ଲାଭ ହେବ ସେସ୍ଥାନରେ ବ୍ୟବହାର କରିବେ, ଲାଭ ନହେବା ସ୍ଥାନକୁ ଯିବେ ନାହିଁ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଶୋଡ଼ଶୋଽଧ୍ୟାୟଃ—ପଣ୍ୟାଧ୍ୟକ୍ଷଃ—ଆଦିତଃ ସପ୍ତତ୍ରିଂଶଃ ।

---

(୧) କୁପ୍ୟାଧ୍ୟକ୍ଷ ସାଲପ୍ରଭୃତି ବୃକ୍ଷବହୁଳ ବନର ରକ୍ଷକମାନଙ୍କ ଦ୍ୱାରା ଉତ୍ତମ କାଷ୍ଠ ଅଣାଇ ସେଥିରେ ଶଗଡ଼, ଜୁଆଳି, ଲଙ୍ଗଳ, କୁର୍ଚି, ମେଜ, ପଲଙ୍କ, ଦୁଆର, ସିନ୍ଦୁକ ପ୍ରଭୃତି ଗୃହୋପକରଣ ଓ ସୌଖିନ୍ ଉପକରଣ ନିର୍ମାଣ କରାଇବେ । ବୃକ୍ଷମାନଙ୍କର ସ୍ଥିତି ଗତି ଜାଣିଥିବା ଓ ବୃକ୍ଷାଦି ଛେଦନ କରି ଜୀବିକାନିର୍ବାହ କରୁଥିବା ଶ୍ରମିକମାନଙ୍କୁ ଗଛ ହାଣି ମୂଳ ଡାଳ ଅଲଗାକରି ଉପାଦେୟ କାଠ ବଣରୁ ପାରକରିଦେବା ସକାଶେ ଉଚିତ ବେତନ ଦେବାକୁ ବ୍ୟବସ୍ଥା କରିବେ ଏବଂ ଏମାନେ ଯଦି ବିନାଦେଶରେ ବୃକ୍ଷାଦି ଛେଦନ କରନ୍ତି ତେବେ ତାଙ୍କୁ ଉଚିତ ଦଣ୍ଡ ଦେବାର ବ୍ୟବସ୍ଥା କରିବେ । କିନ୍ତୁ ବାଟରେ ବୋଝାଇ ହୋଇ ଯାଉଥିବା ଶଗଡ଼ର ଅଖ ଇତ୍ୟାଦି ହଠାତ୍ ଭାଙ୍ଗିଗଲେ ସେଥିସକାଶେ ଆବଶ୍ୟକ ହେବା କାଷ୍ଠ ପ୍ରଭୃତି ବିନାଦେଶରେ ଛେଦନ କଲେ ସେମାନେ ଅପରାଧଜନିତ ଦଣ୍ଡ

ଦେଯ୍ମମତ୍ୟଯ୍ନଂ ଚ ସ୍ଥାପୟେଦନ୍ୟତ୍ରାପଭ୍ୟଃ । (୨) କୁପ୍ୟବର୍ଗଃ—ଶାକତିନଶଧନ୍ୱନାର୍ଜୁନମଧୂକ ତିଲକସାଲଶିଂଶପାରିମେଦରାଜାଦନ-ଶିରୀଷଖଦିରସରଳତାଳସର୍ଜାଶ୍ୱକର୍ଣସୋମବଲ୍କ କୁଶାମ୍ରପ୍ରିୟକଧବାଦିଃ ସାରଦାରୁବର୍ଗଃ । (୩) ଉଟଜଚମିୟ୍ଯଚ୍ଚପଚେଣୁବଂଶସାତୀନକଣ୍ଟକ-

ପାରିବେ ନାହିଁ । (୨) ଶାକ (ସାଗୁଆଣି), ତିନଶ (ଶିଙ୍ଗ), ଧନ୍ୱନ (ଡାମଣି), ଅର୍ଜୁନ, ମଧୂକ (ମହୁଲ), ତିଲକ (ତିଳକବୃକ୍ଷ), ସାଳ (ସାଳୁଆ), ଶିଶୁଆ, ଅରିମେଦ (ଦୁର୍ଗନ୍ଧଖଇର), * ରାଜାଦନ (କ୍ଷୀରକୋଳି), ଶିରୀଷ, ଖଇର, ସରଳ (ଦେବଦାରୁ ବିଶେଷ), ତାଳ, ସର୍ଜ (ପିଆଶାଳ), ଅଶ୍ୱକର୍ଣ୍ଣ (ପିଆଶାଳଭେଦ), ସୋମବଲ୍କ (ଧୋବ ଖଇର), କଶ (କସି), ଅମ୍ବ, ପ୍ରିୟକ (ହଳଦଗଛ), ଧବ (ଧୋବାଗଛ) ପ୍ରଭୃତିକୁ ସାରଦାରୁବର୍ଗ ଅର୍ଥାତ୍ ଉତ୍ତମ ସାରବୃକ୍ଷବର୍ଗ କୁହାଯାଏ । (୩) ଉଟଜ (ବେଣି ପୋଲ ଅଳ୍ପ କଣ୍ଟକ-

(୨) ଶାକ—Teek; ତିନଶ—Dalbergia Ougeinensis; ଅର୍ଜୁନ—Terminalia Arjuna; ମଧୂକ—Bassialatifolia; ତିଲକ—Barleria Cristata; ତାଳ—Palmyra; ଶିଂଶୁପା—Dalbergia Sissu; ଅରିମେଦ—Fetid Mimosa; ରାଜାଦନ—Mimosops Kanki; ଶିରୀଷ—Mimosa Sirisha; ଖଦିର—Mimosa Catechu; ସରଳ—Pinus Longifolia; ସର୍ଜ—Sal tree or Shorea Robesta; ଅଶ୍ୱକର୍ଣ୍ଣ—Vatica Robesta; ସୋମବଲ୍କ—A kind of white khadir; ପ୍ରିୟକ—Yellow Sal tree; ଧବ—Mimosa Hexandra are the trees of strong timber; ମାଲତୀ—Jasminum Granadiflorum; ଦୂର୍ବା—Panic grass; ଅର୍କ—Calotropis Gigantia; ଶଣ—Hemp; ଗବେଧୂକ—Coix Barbata; ଅତସୀ—Linum Usitatis Simum; ମୁଞ୍ଜ—Saccharum Munja; ବଲ୍ୱଜ—Eleusin India; ତାଳୀ—Corypha Taliera; ତାଳ—Palmyra or Borassus Flabelliformis; କିଂଶୁକ—Butia Frondosa; ଭୂର୍ଜ—Birch; କୁସୁମ୍ଭ—Carthamus Tinctorious; ମୁସ୍ତା—Cyperous Rotundus.

* ରାଜାଦନ = ପ୍ରିୟାଳ ।

**ଶଲ୍ୟବ୍ଧକାଦର୍ବେଣୁବର୍ଗଃ । (୪) ବେତ୍ରଶୀକବଲ୍ଲୀବାଶୀଶ୍ୟାମଲତାନାଗଲତାଦ ବଲ୍ଲୀବର୍ଗଃ । (୫) ମାଳତୀମୂର୍ବାର୍କଶଣଗବେଧୁକାତସ୍ୟାଦର୍ବଲ୍କବର୍ଗଃ । (୬) ମୁଞ୍ଜବଲ୍ବଜାଦ ରଜ୍ଜୁଭାଣ୍ଡମ୍ । ତାଳୀତାଳଭୂର୍ଜାନାଂପତ୍ରମ୍ । କିଂଶୁକକୁସୁମ୍ଭକୁଙ୍କୁମାନାଂ ପୁଷ୍ପମ୍ । (୭) କନ୍ଦମୂଳଫଳାଦରୌଷଧବର୍ଗଃ । କାଳକୂଟବତ୍ସନାଭହାଳାହଳମେଷଶୃଙ୍ଗମୁସ୍ତାକୁଷ୍ଠମହାବିଷ**

---

ଯୁକ୍ତ ଅଣ୍ଟା ବାଉଁଶ), ଚମିଯୁ (ନଦା ଓ କୋମଳ ବାଉଁଶ), ଗୃପ (ଅଡଗଦଡ଼ା ଓ ଅଳ୍ପପୋଲ ବାଉଁଶ), ବେଣୁ (କଣ୍ଟକହୀନ ଧନୁନର୍ମାଣଯୋଗ୍ୟ ବାଉଁଶ), ବଂଶ (କଣ୍ଟାଥିବା ଓ ଲମ୍ବା ପଗଥିବା ପୋଲ ବାଉଁଶ), ସାତାନ (ସୁନ୍ଦରଙ୍ଗଯୁକ୍ତ ବାଉଁଶ), କଣ୍ଟକ (କଣ୍ଟା ବାଉଁଶ), ଭାଲ୍ଲୁକ (ମୋଟା ଓ ଲମ୍ବା ବାଉଁଶ) ପ୍ରଭୃତିଙ୍କୁ ବେଣୁବର୍ଗ ଅର୍ଥାତ୍ ବାଉଁଶବର୍ଗ କୁହାଯାଏ । (୪) ବେତ, ଶୀକବଲ୍ଲୀ (ହଂସବଲ୍ଲୀ), ବାଶୀ (ଅର୍ଜୁନଫୁଲପର ଫୁଲଥିବା ଲତା), ଶ୍ୟାମଲତା (ସୁଆଁଲଉ), ନାଗଲତା (ନାଗବଲ୍ଲୀ ଓ ପାନଲତା) ଇତ୍ୟାଦିଙ୍କୁ ଲତାବର୍ଗ କୁହାଯାଏ । (୫) ମାଳତୀ (ମାଳୁଲତା), ମୂର୍ବା (ମୁର୍ଗା) *, ଅରଖ, ଛଣି, ଗବେଧୁକା (ନାଗବଲା), ଅତସୀ (ଅତସୀଗଛ) ପ୍ରଭୃତିଙ୍କୁ ବଲ୍କବର୍ଗ କୁହାଯାଏ । (୬) ମୁଞ୍ଜ (ମୁଞ୍ଜନାମକ ତୃଣ ଯାହାଦ୍ୱାରା ମେଖଳା ନର୍ମାଣ କରି ବ୍ରହ୍ମଚାରୀମାନେ ଧାରଣ କରନ୍ତି), ବଲ୍ବଜ (ବାବୁଲ, ପଲଶି, ଦଉଡ଼ି ବଳିବା ତୃଣବିଶେଷ)—ଏମାନଙ୍କୁ ରଜ୍ଜୁଭାଣ୍ଡ; ତାଳୀ, ତାଳ ଓ ଭୂର୍ଜ—ଏମାନଙ୍କ ପତ୍ରକୁ ଲେଖ୍ୟୋପଯୋଗୀ ପତ୍ରବର୍ଗ ଏବଂ ପଳାଶ, କୁସୁମ୍ଭ (କୁସୁମ) ଓ କୁଙ୍କୁମ ବୃକ୍ଷମାନଙ୍କର ପୁଷ୍ପମାନଙ୍କୁ ବସ୍ତ୍ରାଦିରଞ୍ଜନସାଧନ ପୁଷ୍ପବର୍ଗ କୁହାଯାଏ । (୭) ଭୂଇଁକଖାରୁ, ଓଲ, ଶ୍ୱେତପୁରୁଣୀ ଇତ୍ୟାଦି କନ୍ଦ; ବେଣା, ଶତାବରୀ, ସୁଗନ୍ଧୀ ପ୍ରଭୃତି ମୂଳ ଏବଂ ଅଁଳା, ବାହାଡ଼ା, ହରଡ଼ା ପ୍ରଭୃତି ଫଳ ଇତ୍ୟାଦିଙ୍କୁ ଔଷଧିବର୍ଗ ଏବଂ କାଳକୂଟ (ଅଶ୍ୱତ୍ଥପତ୍ରସଦୃଶ ପତ୍ରବିଶିଷ୍ଟ ବିଷବୃକ୍ଷ ଯାହାର ଦୁଇପଗର ମଝିରୁ ଶୁଷ୍କ ଓ ଆର୍ଦ୍ର ଅଠା ବାହାରୁଥାଏ) । ବତ୍ସନାଭ (ବାଛୁରୀନାଭିସଦୃଶ ବିଷକନ୍ଦ), ହାଳାହଳ [ବେଗୁନିଆ (ନିର୍ଗୁଣ୍ଡି) ପତ୍ରସଦୃଶ ପତ୍ର ବା ସୂଚୀପରି ପତ୍ରଯୁକ୍ତ ନୀଳବର୍ଣ୍ଣ ପଲ୍ଲବ (କୋମଳ ପତ୍ର)ଯୁକ୍ତ ଏବଂ ଗୋସ୍ତନାକୃତି ଫଳଯୁକ୍ତ ବିଷବୃକ୍ଷ], ମେଷଶୃଙ୍ଗ (ମେଣ୍ଢାଶିଂଘ ପରି ଯାହାର କନ୍ଦର ଆକୃତି କର୍ଣ୍ଣଫୁଲର

---

*ମୂର୍ବା = ମରୁଲି Bow-string hemp—Sansevicria Zeylamica.

ବେଲ୍ଲିତକଗୌରାଦ୍ରବାଳକମାର୍କଟହୈମବତକାଳିଂଗକଦାରଦକାଂ-କୋଳସାରକୋଷ୍ଟ୍ରକାଦୀନି ବିଷାଣି । ସର୍ପାଃ କୀଟାଶ୍ଚ । ତ ଏବ କୁମ୍ଭଗତାଃ । ବିଷବର୍ଗଃ । (୮) ଗୋଧାସେରକଦ୍ୱୀପିଶିଂଶୁମାର-ସିଂହବ୍ୟାଘ୍ରହସ୍ତିମହିଷଚମରସୃମରଖଡ୍ଗଗୋମୃଗଗବୟାନାଂ ଚର୍ମାସ୍ଥି-

ଛଡ଼ିପରି ଦେଖାଯାଏ), ମୁସ୍ତା (ମୁଥାସଦୃଶ, ଶୁକ୍ଳକନ୍ଦ ମହୁରା), କୁଷ୍ଠ (କୁଡ଼ପରି ଦେଖାଯାଉଥିବା ମହୁରା କନ୍ଦ), ମହାବିଷ (ମାଂସବର୍ଣ୍ଣ ଓ ସ୍ତନର ଅଗ୍ରଭାଗ ପରି ଆକାରବିଶିଷ୍ଟ ବିଷକନ୍ଦ), ବେଲ୍ଲିତକ (କୃଷ୍ଣରକ୍ତମୂଳ ମହୁରା), ଗୌରାଦ୍ର (କଳାବର୍ଣ୍ଣ କନ୍ଦ ମହୁରା), ବାଳକ (ପିପ୍‌ପଳୀ ସଦୃଶ ମହୁରା), ମାର୍କଟ (ମର୍କଟର ଲୋମପରି ଲୋମବିଶିଷ୍ଟ ମହୁରା), ହୈମବତ (ହିମାଳୟ ଜାତ ଦୀର୍ଘପତ୍ରବିଶିଷ୍ଟ ବିଷବୃକ୍ଷ), କାଳିଂଗକ (କଳିଙ୍ଗ ଦେଶଜାତ ଯବାକୃତ ମହୁରା), ଦାରଦକ (ହିଙ୍ଗୁଳବର୍ଣ୍ଣ ପତ୍ରଯୁକ୍ତ ବିଷବୃକ୍ଷ), ଅଙ୍କୋଲ ସାରକ (ଅଙ୍କୋଲ ଗଛରୁ ଜାତହେବା ବିଷ), ଉଷ୍ଟ୍ରକ (ଉଷ୍ଟ୍ରମେଢ୍ରାକାର ମହୁରା)—ଏହି ଶୋହଳପ୍ରକାର ବିଷକନ୍ଦବୃକ୍ଷାଦିକୁ ସ୍ଥାବର ବିଷ (ମହୁରା) କୁହାଯାଏ * । ସର୍ପ ଓ ବିଛା ବିରୁଢ଼ି ପ୍ରଭୃତି ଜନ୍ତୁବିଷକୁ ଜଙ୍ଗମ ବିଷ କୁହାଯାଏ । ଏହି ବିଷଧର ଜନ୍ତୁ ଅସଂସ୍କୃତ ଓ ସଂସ୍କୃତ ଭେଦରେ ଦୁଇପ୍ରକାର । ସ୍ୱଇଚ୍ଛାରେ ରହିଥିବା ସର୍ପ, କୀଟାଦିଙ୍କୁ ଅସଂସ୍କୃତ ଏବଂ ଉପନିଷଦ୍‌ଉକ୍ତ ବିଧିଅନୁସାରେ ସଂସ୍କାର କରି ତମ୍ବା ପ୍ରଭୃତି ହାଣ୍ଡିରେ ରଖାଯାଇଥିବା ସର୍ପ, କୀଟାଦିଙ୍କୁ ସଂସ୍କୃତ କୁହାଯାଏ । ସ୍ଥାବର ଓ ଜଙ୍ଗମ ଉଭୟବିଧ ବିଷବୃକ୍ଷ ଏବଂ ବିଷଧର ଜନ୍ତୁମାନଙ୍କୁ ବିଷବର୍ଗ କୁହାଯାଏ । (୮) ଗୋଧା (ଗୋଧି), ସେରକ (ଗୌରବର୍ଣ୍ଣ ଗୋଧି), ଦ୍ୱୀପୀ (ଚିତାବାଘ), ଶିଶୁମାର (ପାଣିରି, ବାଲୁଙ୍ଗା ପ୍ରଭୃତି ଚୁଆଣିଆ ବାଘ), ସିଂହ, ବାଘ, ହାତୀ, ବଣମଇଁଷି, ଚମରମୃଗ, ସୃମର (ହରିଣବିଶେଷ), ଗାଈଗୋରୁ, ମୃଗ ଓ

* ସ୍ଥାବର ବିଷ ପଞ୍ଚାଅଣୀ ପ୍ରକାର । ଏହାର ଆଶ୍ରୟ ସ୍ଥାନ ଦଶ । ସେଥିରୁ ଏଠାରେ ଷୋହଳଗୋଟିର ନାମ ଉଲ୍ଲେଖ କରାଯାଇଛି ।

ଯଥା :— ତ୍ୱକ୍ କନ୍ଦପତ୍ର ପୁଷ୍ପାଣି ଫଳଂ ନିର୍ଯାସ ଏବ ଚ ।
ମୂଳଂ ସାରସ୍ତଥା ଧାତୁର୍ବୀଜଂ ଚେତି ଦଶାଶ୍ରୟାଃ ॥
ଅବ୍ୟକ୍ତ ରସ ଗନ୍ଧାନି ତୀକ୍ଷ୍ଣାନ୍ୟେକ ରସାନି ଚ ।
ପଞ୍ଚାଶୀତିବିଷାଣ୍ୟେବ ମୂପଦସ୍ଥାନି ତତ୍ତ୍ୱତଃ ॥

ପିତ୍ତସ୍ନାୟ୍ୱ * ବସ୍ତିଦନ୍ତଶୃଙ୍ଗଖୁରପୁଚ୍ଛାନି, ଅନ୍ୟେଷାଂ ବାପି ମୃଗପଶୁପକ୍ଷିବ୍ୟାଳାନାମ୍ । (୯) କାଳାୟସତାମ୍ରବୃତ୍ତକାଂସ୍ୟସୀସତ୍ରପୁ-ବୈକୃନ୍ତକାରକୂଟାନି ଲୋହାନି । ବିଦଳମୃତ୍ତିକାମୟଂ ଭାଣ୍ଡମ୍ । ଅଙ୍ଗାରତୁଷଭସ୍ମାନି ମୃଗପଶୁପକ୍ଷିବ୍ୟାଳବାଟାଃ କାଷ୍ଠତୃଣବାଟାଶ୍ଚେତି ।

(୧୦) ବହିରନ୍ତଶ୍ଚ କର୍ମାନ୍ତା ବିଭକ୍ତାଃ ସାର୍ବଭାଣ୍ଡିକାଃ ।
ଆଜୀବପୁରରକ୍ଷାର୍ଥାଃ କାର୍ଯ୍ୟାଃ କୁପ୍ୟୋପଜୀବିନା ॥

—o—

ଗବୟ (ଗୋସଦୃଶ ମୃଗ) ପ୍ରଭୃତିଙ୍କର ଚର୍ମ୍ମ, ଅସ୍ଥି, ପିତ୍ତ, ଶିରା, ବସ୍ତି (ମୂତ୍ରାଶୟ), ଦନ୍ତ, ଶୃଙ୍ଗ, ଖୁରା ଓ ଲାଞ୍ଜ ଉପଯୋଗରେ ଆସେ । ଏହାଛଡ଼ା ଅନ୍ୟାନ୍ୟ ମୃଗ, ପଶୁ, ପକ୍ଷୀ ଓ ସର୍ପ ପ୍ରଭୃତି ଜନ୍ତୁମାନଙ୍କର ଚର୍ମ୍ମ ପ୍ରଭୃତି ଅବୟବ ମଧ୍ୟ ଉପଯୋଗରେ ଆସେ । (୯) କାଳାୟସ (ଲୌହଭେଦ), ତାମ୍ର, ବୃତ୍ତ (ବୃତ୍ତଲୌହ), କଂସା, ସୀସା, ତ୍ରପୁ (ରଙ୍ଗ), ବୈକୃନ୍ତକ (ଇସ୍ପାତ), ଆରକୂଟ (ପିତ୍ତଳ) ପ୍ରଭୃତି 'ଲୌହଭେଦ'; ବାଉଁଶ ଓ ବେତରେ ତିଆରି ହେବା ପେଡ଼ି, ଟୋକେଇ ପ୍ରଭୃତି ଏବଂ ମାଟିରେ ତିଆରି ହେବା ହାଣ୍ଡି, ମାଠିଆ ପ୍ରଭୃତି 'ଭାଣ୍ଡ'; ଅଙ୍ଗାର, ତୁଷ, ପାଉଁଶ, ମୃଗ, ପଶୁ, ପକ୍ଷୀ ଓ କାଠ, ବାଉଁଶ, ଘାସ, ପାଳ ଇତ୍ୟାଦିର ସଂଗ୍ରହ ସ୍ଥାନ କୁପ୍ୟ ପଦବାଚ୍ୟ ହୋଇଥିବା ଯୋଗୁଁ ଏଗୁଡ଼ିକ ମଧ୍ୟ ସଂଗ୍ରହଯୋଗ୍ୟ ଅଟନ୍ତି । (୧୦) କୁପ୍ୟାଧ୍ୟକ୍ଷ ଦୁର୍ଗର ଭିତରେ ଏବଂ ଦୁର୍ଗର ବାହାରେ କୁପ୍ୟପଦାର୍ଥର ଶିଳ୍ପକର୍ମଦ୍ୱାରା ଜୀବିକାନିର୍ବାହ କରୁଥିବା ଶିଳ୍ପୀମାନଙ୍କ ଦ୍ୱାରା ଜୀବିକା-ନିର୍ବାହ ଉପଯୋଗୀ ଶଗଡ଼, ଲଙ୍ଗଳ ପ୍ରଭୃତି ଉପକରଣ ଓ ରାଜ୍ୟରକ୍ଷା ସକାଶେ ଉପଯୋଗୀ ହେଉଥିବା ନାନାବିଧ ଯନ୍ତ୍ରପାତି ଯଥାଯଥ ଭାବରେ ନିର୍ମ୍ମାଣ କରାଇବେ ଅର୍ଥାତ୍ ଜୀବିକା ନିର୍ବାହ ଉପଯୋଗୀ ଉପକରଣ ଦୁର୍ଗଭିତରେ ଓ ବାହାରେ ଏବଂ ରାଜ୍ୟରକ୍ଷା ଉପଯୋଗୀ ଯନ୍ତ୍ରପାତି କେବଳ ଦୁର୍ଗଭିତରେ ନିର୍ମ୍ମାଣ କରାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ସପ୍ତଦଶୋଽଧ୍ୟାୟଃ—କୁପ୍ୟାଧ୍ୟକ୍ଷଃ—ଆଦିତୋଽଷ୍ଟାତ୍ରିଂଶଃ ।

---

* ସ୍ନାୟ୍ୱସ୍ଥି ଇତି ପାଠାନ୍ତରଂ । ଅସ୍ଥି—ଛୋଟ ଛୋଟ ହାଡ଼ ।

## ଅଷ୍ଟାଦଶୋଽଧ୍ୟାୟଃ

### ଷଟ୍‌ତ୍ରିଂଶ ପ୍ରକରଣମ୍—ଆୟୁଧାଗାରାଧ୍ୟକ୍ଷଃ

### THE SUPERINTENDENT OF ARMOURY

( ଅୟୁଧଶାଳାଧ୍ୟକ୍ଷଙ୍କ ବ୍ୟାପାର )

(୧) ଆୟୁଧାଗାରାଧ୍ୟକ୍ଷଃ ସାଂଗ୍ରାମିକଂ ଦୌର୍ଗକର୍ମିକଂ ପରପୁରାଭିଘାତକଂ ଯନ୍ତ୍ରମାୟୁଧମାବରଣମୁପକରଣଂ ଚ ତଜ୍ଜାତକାରୁ-ଶିଳ୍ପିଭିଃ କୃତକର୍ମପ୍ରମାଣକାଳବେତନଫଳନିଷ୍ପତ୍ତିଭିଃ କାରୟେତ୍ । ସ୍ୱଭୂମୌ ଚ ସ୍ଥାପୟେତ୍ । ସ୍ଥାନପରିବର୍ତ୍ତନମାତପପ୍ରବାତପ୍ରଦାନଂ ଚ ବହୁଶଃ କୁର୍ଯାତ୍ । ଊଷ୍ମୋପସ୍ନେହକ୍ରିମିଭିରୁପହନ୍ୟମାନମନ୍ୟଥା ସ୍ଥାପୟେତ୍ । ଜାତିରୂପଲକ୍ଷଣପ୍ରମାଣାଗମମୂଲ୍ୟନିକ୍ଷେପୈଶ୍ଚୋପ-

---

(୧) ଅୟୁଧଶାଳାର ଅଧ୍ୟକ୍ଷ ଯୁଦ୍ଧୋପଯୋଗୀ, ଦୁର୍ଗରକ୍ଷା ଉପଯୋଗୀ ଏବଂ ଶତ୍ରୁପୁରବିଧ୍ୱଂସନଯୋଗ୍ୟ ସର୍ବତୋଭଦ୍ର, ଯାମଦଗ୍ନ୍ୟ ପ୍ରଭୃତି ଯନ୍ତ୍ର, ଶକ୍ତି ତୋମର ଖଡ଼୍‌ଗାଦି ଅୟୁଧ, ସାଞ୍ଜୁ, ଟୋପ, ଢାଲ, ଖୋଳ ପ୍ରଭୃତି ଆବରଣ ଓ ଅନ୍ୟାନ୍ୟ ଉପକରଣଗୁଡ଼ିକୁ (ଭାର, ଶକଟ ପ୍ରଭୃତିକୁ) ତିଆରିବା କାର୍ଯ୍ୟର ପରିମାଣ, ସମୟ ଓ ବେତନ ନିର୍ଦ୍ଧାରଣ କରି ଅଭିଜ୍ଞ କାରୁ (ସ୍ଥୂଳ ଶିଳ୍ପକର), ଶିଳ୍ପୀ (ସୂକ୍ଷ୍ମ ଶିଳ୍ପକର) ମାନଙ୍କ ଦ୍ୱାରା କରାଇବେ ଏବଂ ଏ ସମସ୍ତ ପଦାର୍ଥ ନିଜର ଅଧୀନରେ ଥିବା ସୁବିଧାଜନକ ଜାଗାରେ ରଖାଇବେ । ଏହି ସମସ୍ତ ଯନ୍ତ୍ର, ଶସ୍ତ୍ର, ଆବରଣ ଓ ଉପକରଣଗୁଡ଼ିକର ପ୍ରତି ତିନି ଚାରି ଦିନରେ ଥରେ ସ୍ଥାନ ପରିବର୍ତ୍ତନ କରି ସେଥିରେ ଧୂଳି ଓ ମଳି ନ ଲାଗିବା ସକାଶେ ପବନ ଓ ସୂର୍ଯ୍ୟକିରଣ ବାଜିବାର ବ୍ୟବସ୍ଥା ମଧ୍ୟ କରାଇବେ । ଉତ୍ତାପ, ବାଷ୍ପ ଓ କୀଟଦ୍ୱାରା ଫଟା, ଉକୁଟା ଓ ପୋକଡ଼ା ହୋଇ ଯାଉଥିବା ଯନ୍ତ୍ରଶସ୍ତ୍ରାଦିମାନଙ୍କୁ ମରାମତିକରାଇ ବା ଏସବୁରେ ନଷ୍ଟ ନହେବାଭଳି ପ୍ରତିଷେଧର ବ୍ୟବସ୍ଥା କରାଇ ନିରାପଦ ଜାଗାରେ ରଖାଇ-ଦେବେ । ଏହି ଯନ୍ତ୍ରଶସ୍ତ୍ରାଦିମାନଙ୍କର ଜାତି (ଶ୍ରେଣୀ), ରୂପ (ସଳଖ ଓ ବାଙ୍କ ଆକାର), ଲକ୍ଷଣ (ଚିହ୍ନ), ପ୍ରମାଣ (ଲମ୍ବା ଚଉଡ଼ା ଗୋଲେଇ ଓଜନ ପ୍ରଭୃତି), ଆଗମ (ପ୍ରାପ୍ତିସ୍ଥାନ), ମୂଲ୍ୟ, ନିକ୍ଷେପ (ଥୁଳୀ, ପେଡ଼ି, ଖାପ ଓ

ଲଭେତ । (୨) ସର୍ବତୋଭଦ୍ରଜାମଦଗ୍ନ୍ୟବହୁମୁଖବିଶ୍ୱାସଘାତି-ସଂଘାଟିଯାନକପର୍ଜନ୍ୟକବାହୂର୍ଦ୍ଧ୍ୱବାହ୍ୱର୍ଦ୍ଧବାହୂନି ସ୍ଥିତଯନ୍ତ୍ରାଣି । ପଞ୍ଚାଳିକଦେବଦଣ୍ଡସୂକରିକାମୁସଳଯଷ୍ଟିହସ୍ତିବାରକତାଳବୃନ୍ତ ମୁଦ୍‌ଗର-

ଖୋଲ ଇତ୍ୟାଦି) ବିଷୟକୁ ମଧ୍ୟ ଆୟୁଧାଗାରାଧ୍ୟକ୍ଷ ଭଲଭାବେ ଜାଣିବାକୁ ହେବ । (୨) ସର୍ବତୋଭଦ୍ର (ଶକଟଚକ୍ର ଆକାର, ତୀକ୍ଷ୍ଣଧାର **ମଣ୍ଡଳଯୁକ୍ତ** ଚତୁର୍ଦ୍ଦିଗ ପାଷାଣବର୍ଷଣକାରୀ ଯନ୍ତ୍ରବିଶେଷ—କେହି କେହି ଏହାକୁ କ୍ଷୁଦ୍ର ପାଷାଣବର୍ଷଣକାରୀ 'ସିଦ୍ଧ ଭୂମିକାଯନ୍ତ୍ର' ବୋଲି କହନ୍ତି) । ଜାମଦଗ୍ନ୍ୟ (ମହାଶରନିକ୍ଷେପସାଧନ ଯନ୍ତ୍ରବିଶେଷ)—ବହୁମୁଖ (ଦୁର୍ଗପ୍ରାଚୀର ଉପରି-ଭାଗରେ ସନ୍ନିବିଷ୍ଟ ଓ ବହୁମୁଖବିଶିଷ୍ଟ ଚକ୍ରାକାର, ଚର୍ମ୍ମାବୃତ, ଚତୁସ୍ତଳ ଓ ଗୃହପୂରିଆ ଧନୁର୍ଦ୍ଧାରୀ ଯୋଦ୍ଧାଗଣ ଆତ୍ମରକ୍ଷା କରି ଯେଉଁ ଯନ୍ତ୍ରଭିତରୁ ଶତ୍ରୁସୈନ୍ୟଙ୍କ ପ୍ରତି ବହୁଶର ନିକ୍ଷେପ କରନ୍ତି ସେହି ଯନ୍ତ୍ର), ବିଶ୍ୱାସଘାତୀ (ଦୁର୍ଗର ପ୍ରବେଶଦ୍ୱାରରେ କୌଶଳରେ ରଖାଯାଇଥିବା ଅର୍ଗଳାକାର ଯନ୍ତ୍ର * ଯାହାର କି ଯନ୍ତ୍ରବିଶ୍ଳେଷଣ ବା ଫିଟାଇଦେବା ଫଳରେ ଶତ୍ରୁର ପ୍ରାଣହାନି ଘଟିଥାଏ), ସଂଘାଟି (ଦୁର୍ଗ ଅଟ୍ଟାଳିକାଦିରେ ଅଗ୍ନିସଂଯୋଗ କରିବା ସକାଶେ ନିର୍ମ୍ମାଣ କରାଯାଇଥିବା ଦୀର୍ଘକାଷ୍ଠମୟ ଯନ୍ତ୍ର), ଯାନକ (ଗୁଳା ଲାଗିଥିବା ଛେଳଯୁକ୍ତ ଲହୁଦଣ୍ଡା ଯାହାକୁ ଶତ୍ରୁସୈନ୍ୟପ୍ରତି ନିକ୍ଷେପକଲେ ସେମାନଙ୍କ ଦେହ ଖଣ୍ଡ ଖଣ୍ଡ ହୋଇଯାଏ), ପର୍ଜ୍ଜନ୍ୟକ (ଅଗ୍ନି ଲିଭାଇବା ଯନ୍ତ୍ର, ଅନ୍ୟମାନଙ୍କ ମତରେ ଦୁର୍ଗଉପରେ ରଖାଯାଇଥିବା ପଞ୍ଚାଶେ ହାତ ଲମ୍ବ ଲୌହଯନ୍ତ୍ର ଯାହାର ଯନ୍ତ୍ର ଖୋଲିଦେବା ମାତ୍ରେ ତାର ଆକସ୍ମିକ ପ୍ରହାରରେ ଶତ୍ରୁର ପ୍ରାଣହାନି ଘଟେ; ବିଶ୍ୱାସଘାତୀ ଯନ୍ତ୍ର ଏହାଠାରୁ ଛୋଟ ଓ ଗୁପ୍ତଭାବରେ ଥାଏ କିନ୍ତୁ ଏହି ପର୍ଜ୍ଜନ୍ୟକ ନାମକ ଯନ୍ତ୍ର ବିଶ୍ୱାସଘାତୀ ଯନ୍ତ୍ରଠୁ ବଡ଼ ଏବଂ ସମସ୍ତେ ଦେଖିବାଭଳି ବାହାରେ ରହିଥାଏ), ବାହୁଯନ୍ତ୍ର (ପର୍ଜ୍ଜନ୍ୟକଯନ୍ତ୍ରର ଅର୍ଦ୍ଧପ୍ରମାଣ ଦୈର୍ଘ୍ୟବିଶିଷ୍ଟ), ପରସ୍ପରାଭିମୁଖ (ମୁଖାମୁଖୀ ହୋଇ ରହିଥିବା ଦୁଇଗୋଟି ସ୍ତମ୍ଭ, ଯାହାର କି ଯନ୍ତ୍ର ଖୋଲିଦେବା ଫଳରେ ଶତ୍ରୁଉପରେ ସ୍ତମ୍ଭ ଦୁଇଟି କଚାଡ଼ି ହୋଇ ପଡ଼ନ୍ତି), ଊର୍ଦ୍ଧ୍ୱବାହୁ (ପର୍ଜ୍ଜନ୍ୟକ ଯନ୍ତ୍ରର ସମାନ ପଞ୍ଚାଶେ ହାତ ଲମ୍ବ, ଦ୍ୱାର ତୋରଣଉପରେ

* ଉପରୋକ୍ତ ଯନ୍ତ୍ରଗୁଡ଼ିକର ସୁଇଚ୍ ଖୋଲିବାପାଇଁ ଗୁପ୍ତଭାବରେ ଲୋକ ରଖାଯାଇଥାଏ ।

ତେଉରଣ୍ଟ ଭାବରେ ରଖାଯାଇଥିବା ମହାସ୍ତମ୍ଭ, ଯାହାର କ ଯନ୍ତ ଖୋଲିଦେବା ଫଳରେ ଶତ୍ରୁ ଉପରେ ପ୍ରଚଣ୍ଡ ବେଗରେ ପଡ଼ି ତାର ପ୍ରାଣନାଶ କରେ), ଅର୍ଦ୍ଧବାହୁ (ପର୍ଜନ୍ୟକ ଯନ୍ତର ଅଧାଲମ୍ବ ଅର୍ଥାତ୍ ପଞ୍ଚିଶି ହାତ ଲମ୍ବ ଥିବା ଊର୍ଦ୍ଧ୍ୱବାହୁ ଯନ୍ତଭଳି ବ୍ୟବହୃତ ହେବା ଯନ୍ତ)—ଏହି ଦଶଗୋଟି ଯନ୍ତକୁ ସ୍ଥିତଯନ୍ତ ବା ଥୁଆହେବା ଯନ୍ତ କୁହାଯାଏ । ପଞ୍ଚାଳିକ (ଜଳୀଭିତରେ ଶତ୍ରୁର ମାର୍ଗରୋଧ ସକାଶେ ରଖାଯାଇଥିବା ସୁତୀକ୍ଷ୍ଣ ଓ ଘଞ୍ଚ କୀଲକବିଶିଷ୍ଟ ସୁଦୃଢ଼ କାଷ୍ଠଫଳକ), ଦେବଦଣ୍ଡ (ଦୁର୍ଗ ପ୍ରାଚୀର ଉପରେ ଶତ୍ରୁକୁ ପ୍ରହାର କରିବା ପାଇଁ ରଖାଯାଇଥିବା ମହାସ୍ତମ୍ଭ—ଏହା ଉପରୁ ମରାଯାଏ ବୋଲି ଦେବଦଣ୍ଡ ନାମରେ ଅଭିହିତ ହୋଇଅଛି, କାରଣ ଦେବତାମାନେ ଉପରେ ରହିବା ପ୍ରବାଦ ସମସ୍ତେ ଜାଣନ୍ତି), ସୂକରିକା (ଚମଡ଼ା ଓ ସୂତାରେ ତିଆରି ହୋଇଥିବା ମଧ୍ୟଭାଗ କାର୍ପାସ ଓ ଉଲ୍-ମେଷଲୋମ ପ୍ରଭୃତି ପୂର୍ଣ୍ଣ ହୋଇଥିବା ବୃହଦାକାର ଆଚ୍ଛାଦନ ବା କଭର, ଯାହାଦ୍ୱାରା ପ୍ରାସାଦ, ଅଟ୍ଟାଳିକା, ଦେବପଥ ଇତ୍ୟାଦିକୁ ଘୋଡ଼ାଇ ରଖି ଶତ୍ରୁକର୍ତ୍ତୃକ କ୍ଷିପ୍ତ ପ୍ରସ୍ତରାଦି ଆଘାତକୁ ନିବାରଣ କରାଯାଏ । ମତାନ୍ତରରେ ବାଉଁଶ-ପାତିରେ ବୁଣାଯାଇଥିବା, ବରାହାକାର, ଚର୍ମାବୃତ ଆଚ୍ଛାଦନ, ଯାହାକି ଶତ୍ରୁକୃତ ଦୁର୍ଗପ୍ରାଚୀର ଆକ୍ରମଣ ନିବାରଣ ସକାଶେ ରଖାଯାଇଥାଏ), ମୂଷଲଯଷ୍ଟି (ଖଇର କାଠରେ ତିଆରି ହୋଇଥିବା ଶୂଳ), ହସ୍ତିବାରକ (ଦମୁନିଆଁ ବା ତିନିମୁନିଆଁ ହୋଇଥିବା ଅର୍ଗଳାକାର ଦଣ୍ଡ, ଯାହାଦ୍ୱାରା ହସ୍ତିକୁ ପଛକୁ ହଟାଇ ଦିଆଯାଇଥାଏ), ତାଳବୃନ୍ତ (ବାତଚକ୍ର—ତାଳବୃନ୍ତାକାର କ୍ଷେପଣୀୟ ଅସ୍ତ୍ର), ମୁଦ୍‌ଗର, ଦ୍ରୁଘଣ (ମୁଦ୍‌ଗର ସଦୃଶ ଆଠପଟିଆ ବା ଛ'ପଟିଆ ଗଣିଆ), ଗଦା, ସ୍ପୃକ୍ତଳା (ସର୍ବାଙ୍ଗ ଲୌହ-କଣ୍ଟକଯୁକ୍ତ ଗଦା), କୁଦ୍ଦାଳ (ଠିଆକୋଡ଼ି ବା ଖଣତି), ଅସ୍ଫୋଟିମ

ଯନ୍ତ୍ରପ୍ରୟୋଗ— ବ୍ୟାଧିତଂ ଭ୍ରାମିତଂ ଚୈବ ଜ୍ୱରଯୁକ୍ତଂ ଚ କାରୟେତ୍ ।
ପୀଡ଼ନାଦ୍ ମନ୍ତ୍ରଭାବାଦ୍ଧି ଧାଯନ୍ତ୍ରଂ ପ୍ରବର୍ତ୍ତିତେ ॥

ଯନ୍ତ୍ର ତିନି ପ୍ରକାର କାର୍ଯ୍ୟ କରେ । ପ୍ରୟୋଗକର୍ତ୍ତା ଯନ୍ତ୍ର ସାହାଯ୍ୟରେ ପୀଡ଼ା ଦେବାଦ୍ୱାରା ଶତ୍ରୁକୁ ପୀଡ଼ିତ (ବ୍ୟାଧିତ), ବୁଲାଇବାଦ୍ୱାରା ଇତସ୍ତତ ଓ ମଡ଼ାଇଦେବାଦ୍ୱାରା ଜ୍ୱରଗ୍ରସ୍ତ କରାଇବେ ।

**ତ୍ରିଶୂଳଚକ୍ରାଣି ଚଳଯନ୍ତ୍ରାଣି । (୩) ଶକ୍ତିପ୍ରାସକୁନ୍ତହାଟକଭିଣ୍ଡିପାଳଶୂଳ-ତୋମରବରାହକର୍ଣ୍ଣକଣୟକର୍ପଣତ୍ରାସିକାଦୀନି ଚ ହୁଳମୁଖାନି । (୪) ତାଳଚାପଦାରବଶାର୍ଙ୍ଗାଣି କାର୍ମୁକକୋଦଣ୍ଡଦ୍ରୂଣା ଧନୂଂଷି ।**

---

(ଚର୍ମାବୃତ ଚତୁସ୍ତମ୍ଭଯୁକ୍ତ ପାଷାଣ କ୍ଷେପଣ ଯନ୍ତ୍ର ବା ଦଣ୍ଡଯୁକ୍ତ ଚମଡ଼ାଥଳୀ ଯାହା ପ୍ରହାର କରିବା ଫଳରେ ପ୍ରଚଣ୍ଡ ଓ ଭୀତିପ୍ରଦ ଶବ୍ଦ ଜାତହୁଏ), ଉଦ୍‌ଘାଟିମ [ମୁଦ୍‌ଗରାକାର ଯନ୍ତ୍ରବିଶେଷ, ଯାହାଦ୍ୱାରା କି ପ୍ରାଚୀର ବା ଅଟ୍ଟାଳିକା ଉପରେ ଥିବା ବୁରୁଜ (Tower)ମାନଙ୍କୁ ଭାଙ୍ଗି ତଳେ ପକାଇ ଦିଆଯାଏ], ଉତ୍‌ପାଟିମ [ସ୍ତମ୍ଭାଦି ଉତ୍‌ପାଟନ କାର୍ଯ୍ୟରେ ବ୍ୟବହୃତ ହେଉଥିବା ଶ୍ୟେନଯନ୍ତ୍ର (Crane)], ଶତଘ୍ନୀ (ସଗଡ଼ଗୁଲି ଲାଗିଥିବା, ମୋଟା, ଲମ୍ବା ଓ ମୁନିଆଁ କୀଳକଯୁକ୍ତ ମହାସ୍ତମ୍ଭ, ଯାହାକୁ କି ପାଚେରୀ ଉପରୁ ଶତ୍ରୁସୈନ୍ୟ ଉଦ୍ଦେଶରେ ପ୍ରୟୋଗ କରାଯାଏ), ତ୍ରିଶୂଳ ଓ ଚକ୍ର—ଏହି ସବୁର ଗୋଟିକୁ ଚଳଯନ୍ତ୍ର କୁହାଯାଏ । (୩) ଶକ୍ତି (ଚାରି ହାତ ଲମ୍ବ, ସର୍ବାଙ୍ଗ ଲୌହମୟ, କଣ୍ଟଅରପତ୍ର ପରି ଅଗ୍ରଭାଗବିଶିଷ୍ଟ, ତଳଭାଗ ଗୋସ୍ତନାକାର ଦେଖାଯାଉଥିବା ଆୟୁଧବିଶେଷ), ପ୍ରାସ (ଚତୁର୍ବିଂଶତି ଅଙ୍ଗୁଳ ପ୍ରମାଣ, ସର୍ବାଙ୍ଗ ଲୌହମୟ ଦୁଇଟି ପୀଠଥିବା କାଷ୍ଠଗର୍ଭ ଆୟୁଧବିଶେଷ—ଦୁଇଧାରିଆ ଭାଲା), କୁନ୍ତ (ସାତହାତ, ଛ'ହାତ ବା ପାଞ୍ଚହାତ ଲମ୍ବଥିବା ଭାଲା), ହାଟକ (ତିନିଗୋଟି କଣ୍ଟାଥିବା ଓ କୁନ୍ତ ସଦୃଶ ଦୀର୍ଘ ହୋଇଥିବା ଭାଲା), ଭିଣ୍ଡିପାଳ (ମୋଟା ଫଳକଯୁକ୍ତ ଭାଲା), ଶୂଳ (ଗୋଜିଆ ଭାଲା), ତୋମର (ଶରପରି ଧାରଥିବା ଚାରିହାତ, ସାଢ଼େ ଚାରିହାତ ବା ପାଞ୍ଚହାତ ଲମ୍ବର ଭାଲା), ବରାହକର୍ଣ୍ଣ (ବାରହା କାନପରି ଦେଖାଯାଉଥିବା ଭାଲା), କଣୟ (ଦୁଇପଟେ ତ୍ରିଶୂଳ ଥାଇ ମଝିରେ ମୁଠିଥିବା ଆୟୁଧ), କର୍ପଣ (ତୋମର ସଦୃଶ, ହାତରେ ଫିଙ୍ଗାହେବା ପକ୍ଷିଲଗିଥିବା ଶର), ତ୍ରାସିକା (ଲୌହମୟ ଉପରଭାଗ ପ୍ରାସ ସଦୃଶ ହୋଇଥିବା ଭାଲ)—ଏସମସ୍ତ ଆୟୁଧକୁ ହୁଲମୁଖ (ହୁଲଭେଦ) ଆୟୁଧ କହନ୍ତି । (୪) ତାଳ, ବାଉଁଶ, ଡାମଣି ପ୍ରଭୃତି କାଠ ଓ ଶିଂଘରେ ଧନୁ ତିଆରି କରାଯାଏ । ଏହି ଧନୁ କାର୍ମୁକ, କୋଦଣ୍ଡ, ଦ୍ରୂଣ ଓ ଧନୁ ଭେଦରେ ଚାରିପ୍ରକାର । ଏମାନଙ୍କ ଭିନ୍ନ ଭିନ୍ନ ନିର୍ମାଣ

(୫) ମୂର୍ବାର୍କଶଣ* ଗବେଧୁବେଣୁସ୍ନାୟୂନି ଜ୍ୟାଃ । (୬) ବେଣୁ-ଶରଶଲାକାଦଣ୍ଡାସନନାରାଚାଶ୍ଚ ଇଷବଃ । ତେଷାଂ ମୁଖାନି ଛେଦନଭେଦନତାଡ଼ନାନ୍ୟାୟସାସ୍ଥିଦାରବାଣି । (୭) ନିସ୍ତ୍ରିଂଶ-ମଣ୍ଡଳାଗ୍ରାସିଯଷ୍ଟୟଃ ଖଡ୍‌ଗାଃ । ଖଡ୍‌ଗମହିଷବାରଣବିଷାଣ† ଦାରୁବେଣୁମୂଳାନି ତ୍ସରବଃ । (୮) ପରଶୁକୁଠାରପଟ୍ଟସଖନିତ୍ର-

---

ପ୍ରକ୍ରିୟା ଧନୁର୍ବେଦରେ ବିସ୍ତୃତଭାବେ ଲେଖାଯାଇଛି । (୫) ମୂର୍ଗା, ଅରଖ, ଛଣ, ଗବେଧୁ (ଗରଗଡ଼ ବା ମୁନିତୃଣ), ବାଉଁଶ ଓ ସ୍ନାୟୁ (ଶିରା)ରେ ଧନୁର ଗୁଣ ତିଆରି କରାଯାଏ । (୬) ବେଣୁ ଅର୍ଥାତ୍ ବାଉଁଶନିର୍ମିତ ଶର, ଶର ଅର୍ଥାତ୍ କାଣ୍ଡତୃଣରେ ନିର୍ମିତ ହେବା ଶର, ଶଲାକା ଅର୍ଥାତ୍ ଦୃଢ଼କାଷ୍ଠନିର୍ମିତ ଶର, ଦଣ୍ଡାସନ ଅର୍ଥାତ୍ ଅଧେ ଲୁହା ଓ ଅଧେ କାଠରେ ତିଆରି ହେବା ଶର ଓ ନାରାଚ ଅର୍ଥାତ୍ ସର୍ବାଙ୍ଗ ଲୌହମୟ ଶର—ଏପରି ଶର ପାଞ୍ଚପ୍ରକାର ଅଟେ । ଏମାନଙ୍କ ଅଗ୍ରଭାଗ ଛେଦନ, ଭେଦନ ଓ ତାଡ଼ନ କାର୍ଯ୍ୟସାଧନ ସକାଶେ ଲୌହ, ଅସ୍ଥି ଓ ଦୃଢ଼କାଷ୍ଠରେ ନିର୍ମିତ ହୋଇଥାଏ । (୭) ନିସ୍ତ୍ରିଂଶ (ବକ୍ରାକାର ଅଗ୍ରଭାଗ ଥିବା ଖଣ୍ଡା), ମଣ୍ଡଳାଗ୍ର (ସଳଖ ଓ ବର୍ତ୍ତୁଳ ଅଗ୍ରଭାଗ ଥିବା ଖଣ୍ଡା), ଅସିଯଷ୍ଟି (ପତଳା ଓ ଲମ୍ବା ଖଣ୍ଡା)—ଏପରି ତିନିପ୍ରକାର ଖଣ୍ଡା ନିର୍ମାଣ କରାଯାଏ । ଗଣ୍ଡାର ମୁଖାଗ୍ରରେ ଥିବା ସିଂଗ, ମହିଷି ବା ଗୟଳ ସିଂଗ, ହାତୀଦାନ୍ତ, କାଠ ଓ ବାଉଁଶମୂଳରେ ଖଣ୍ଡାର ମୂଠି ତିଆରି କରାଯାଏ । (୮) ପରଶୁ (ଚବିଶ ଅଙ୍ଗୁଳ ଲମ୍ବ ଲୌହମୟ ତୀକ୍ଷ୍ଣଧାର କୁଠାର ବିଶେଷ—ଟାଙ୍ଗି), କୁଠାର (କୁରାଢ଼ୀ), ପଟ୍ଟସ (ଦୁଇପଟେ ତୀକ୍ଷ୍ଣ ତ୍ରିଶୂଳଥିବା ଲୌହମୟ କୁଠାର ବିଶେଷ), ଖନିତ୍ର (ଖଣିତ୍ର), କୁଦ୍ଦାଳ (କୋଡ଼, କାଂକ ବା ଭୂମିବିଦାରକ କୁଠାରଭେଦ), କ୍ରକଚ (କରତ), କାଣ୍ଡଚ୍ଛେଦନ (କାତି ବା ଓସାରଆ କୁରାଢ଼ୀ)—ଏଗୁଡ଼ିକୁ

---

* ଗାଂଗେରୁକୀ ନାଗବଲା ଝଷା ହ୍ରସ୍ୱ ଗବେଧୁକା । ଇତ୍ୟମରଃ ।

† ବାରଣ ବିଷାଣ = ହସ୍ତିଦନ୍ତ—

ବିଲାସିନୀ ବିଭ୍ରମ ଦନ୍ତପତ୍ରିକା ବିଧିତ୍ସ୍ୟା ନୂନ ମନେନ ମାନିନା ।
ନ ଜାତୁ ବୈନାୟକମେକମୁଦ୍ଧୃତଂ ବିଷାଣମଦ୍ୟାପି ପୁନଃ ପ୍ରରୋହତି ॥
ଇତି ଶିଶୁପାଳବଧେ ।

କୁଦ୍ଦାଳକ୍ରକଚକାଣ୍ଡଚ୍ଛେଦନାଃ କ୍ଷୁରକଲ୍ପାଃ । (୯) ଯନ୍ତ୍ର-ଗୋଷ୍ପଣମୁଷ୍ଟିପାଷାଣରୋଚନୀଦୃଷଦଶ୍ଚାୟୁଧାନି । (୧୦) ଲୋହଜାଳଜାଳିକାପଟ୍ଟକବଚସୂତ୍ରକଂକଟଶିଂଶୁମାରକଖଡ୍ଗିଧେନୁକ-ହସ୍ତିଗୋଚର୍ମ୍ମଖୁରଶୃଙ୍ଗସଂଘାତଂ ବର୍ମ୍ମାଣି । ଶିରସ୍ତ୍ରାଣକଣ୍ଠତ୍ରାଣ-କୂର୍ପାସକଞ୍ଚୁକବାରବାଣପଟ୍ଟନାଗୋଦରକାଃ । ପେଟୀଚର୍ମ୍ମହସ୍ତିକର୍ଣ୍ଣ-

---

କ୍ଷୁରକଳ୍ପ ଅର୍ଥାତ୍ କ୍ଷୁରପରି ଧାରୁଆ ଶସ୍ତ୍ର କୁହାଯାଏ । (୯) ଯନ୍ତ୍ରପାଷାଣ (ଯନ୍ତ୍ର ବା ମେଶିନ୍ ଦ୍ୱାରା ଫିଙ୍ଗାହେବା ବଡ଼ ପଥର), ଗୋଷ୍ପଣପାଷାଣ (ଗୋଷ୍ପଣ ନାମକ ଯଷ୍ଟିଯନ୍ତ୍ରଦ୍ୱାରା ଫିଙ୍ଗାହେବା ପଥର), ମୁଷ୍ଟିପାଷାଣ (ହାତମୁଠାରେ ଧରି ଫିଙ୍ଗିବା ପଥର), ରୋଚନୀ (ଦଳନଯନ୍ତ୍ର ଶିଳା), ଦୃଷଦ୍ (ପ୍ରକାଣ୍ଡ ପଥର)—ଏଗୁଡ଼ିକୁ ଆୟୁଧ କୁହାଯାଏ । (୧୦) ଲୋହଜାଳ (ଶିରସ୍ତ୍ରାଣ ଥିବା ସର୍ବାଙ୍ଗ ଆବରକ ଲୁହା ସାଞ୍ଜୁ), ଲୋହଜାଳିକା (ମସ୍ତକ ଆବରକ—ଶିରସ୍ତ୍ରାଣ ସାଞ୍ଜୁ), ଲୋହପଟ୍ଟ (ବାହୁଦ୍ୱୟ ବ୍ୟତୀତ ସର୍ବାଙ୍ଗ ଆବରଣକାରକ ସାଞ୍ଜୁ), ଲୋହକବଚ (କେବଳ ବକ୍ଷସ୍ଥଳ ଓ ପୃଷ୍ଠ ପ୍ରଦେଶକୁ ଆବରଣ କରୁଥିବା ସାଞ୍ଜୁ), ସୂତ୍ରକଂକଟ (କପାସୂତା, ରେଶମସୂତା ପ୍ରଭୃତିରେ ତିଆରି ହେବା ସାଞ୍ଜୁ)—ଏପରି ଚାରିପ୍ରକାର ସାଞ୍ଜୁ ତିଆରି କରାଯାଏ ଏବଂ ଶିଂଶୁମାରକ (ଜଳମର୍କଟ ନାମକ ଜଳଚର ଜନ୍ତୁ ବିଶେଷ), ଖଡ଼୍ଗୀ (ଖଡ଼୍ଗମୃଗ—ଗଣ୍ଡା), ଧେନୁକ (ଗୋସଦୃଶ ମୃଗ—ଗବୟ-ନୀଲଗାଈ), ହସ୍ତୀ ଓ ବୃଷଭର ଚମଡ଼ା, ଖୁରା ଓ ସିଂଗ ସହଯୋଗରେ ମଧ୍ୟ ସାଞ୍ଜୁ ତିଆରି କରାଯାଏ ।

ଶିରସ୍ତ୍ରାଣ ପ୍ରଭୃତି ବିଭିନ୍ନ ଅଂଗରେ ଧାରଣ କରିବା କବଚ ସାତପ୍ରକାର । ଯଥା—ଶିରସ୍ତ୍ରାଣ (କେବଳ ମସ୍ତକ ଆବରକ କବଚ), କଣ୍ଠତ୍ରାଣ (କେବଳ କଣ୍ଠଆବରକ କବଚ), କୂର୍ପାସ (କହୁଣି ପର୍ଯ୍ୟନ୍ତ ଆବରଣ କରିବା କବଚ), କଞ୍ଚୁକ (ଆଜାନୁଲମ୍ବୀ କବଚ), ବାରବାଣ (ପାଦଗଣ୍ଠିଯାଏ ଆବରଣକାରକ କବଚ), ପଟ୍ଟ (ପଟ୍ଟନିର୍ମ୍ମିତ ବାହୁରହିତ କବଚ), ନାଗୋଦରକ (କରାଙ୍ଗୁଳିରକ୍ଷକ କବଚ) ।

ପେଟୀ (କାଷ୍ଠବଲ୍ଲୀମୟ ଖେଟକ ବା ଢ଼ାଲ), ଚର୍ମ୍ମ (ଚର୍ମ୍ମଫଳକ), ହସ୍ତିକର୍ଣ୍ଣ (ମୁଖଆଚ୍ଛାଦକ ହସ୍ତିକର୍ଣ୍ଣାକୃତି ଫଳକ), ତାଳମୂଳ (କାଠରେ ତିଆରି ହେବା ଢ଼ାଲ), ଧମନିକା (ସୂତ୍ରନିର୍ମିତ ଆବରଣ), କବାଟ

ତାଳମୂଳଧମନକାକବାଟକଟିକାପ୍ରଡହ୍ୱତବଳାହକାନ୍ତାଷ୍ଟାବରଣାନି ।
(୧୧) ହସ୍ତିରଥବାଜିନାଂ ଯୋଗ୍ୟାଭଣ୍ଡମାଲଙ୍କାରିକଂ ସନ୍ନାହ-କଲ୍ପନାଶ୍ଚୋପକରଣାନି । ଐନ୍ଦ୍ରଜାଲିକମୌପନିଷଦିକଂ ଚ କର୍ମ୍ମ ।
(୧୨) କର୍ମାନ୍ତାନାଂ ଚ—

ଇଚ୍ଛାମାରମ୍ଭନିଷ୍ପତ୍ତିଂ ପ୍ରୟୋଗଂ ବ୍ୟାଜ*ମୁଦ୍ଦୟମ୍ ।
କ୍ଷୟବ୍ୟୟୌ ଚ ଜାନୀୟାତ୍ କୁପ୍ୟାନାମାୟୁଧେଶ୍ୱରଃ ॥

---

(କାଷ୍ଠମୟ ଫଳକବିଶେଷ), କଟିକା (ଚମଡ଼ା ଓ ବାଉଁଶରେ ତିଆରି ହୋଇଥିବା ଆବରଣ), ଅପ୍ରତିହତ (ହସ୍ତବାରକ ନାମକ ଆବରଣ), ବଳାହକାନ୍ତ (ଲୁହାପଟାରେ ଆଚ୍ଛାଦିତ ହୋଇଥିବା ଆବରଣ)—ଏହି ନଂଗୋଟିକୁ କରଧାର୍ଯ୍ୟ ଆବରଣ ଅର୍ଥାତ୍ ହାତରେ ଧରିବା ଢ଼ାଲ କୁହାଯାଏ । ଏମାନଙ୍କୁ ଆତ୍ମରକ୍ଷା ସକାଶେ ବ୍ୟବହାର କରାଯାଏ । (୧୧) ହସ୍ତୀ, ରଥ ଓ ଅଶ୍ୱମାନଙ୍କର ଶିକ୍ଷାର ଉପକରଣ ଗୃଣ୍ଟିକ, ଅଙ୍କୁଶ ପ୍ରଭୃତି, ଅଳଙ୍କାରରୂପେ ଆବଶ୍ୟକ ହେବା ପତାକା, ମାଳା ପ୍ରଭୃତି ଓ କବଚ, ତୋମର ପ୍ରଭୃତି ଶସ୍ତ୍ରବାରକ ପଦାର୍ଥଗୁଡ଼ିକୁ ଉପକରଣ କୁହାଯାଏ । ଐନ୍ଦ୍ରଜାଲିକ କର୍ମ ଅର୍ଥାତ୍ ଅଳ୍ପସୈନ୍ୟକୁ ବହୁତ ସୈନ୍ୟକରି ଦେଖାଇଦେବା, ଅଗ୍ନି ନଥିବା ଜାଗାରେ (ପାଣିଭିତରେ) ଅଗ୍ନି ଦେଖାଇଦେବା ଇତ୍ୟାଦି ମାୟା ଏବଂ ଔପନିଷଦିକ ଅର୍ଥାତ୍ ବିଷାକ୍ତ ଧୂମ, ବିଷବାଷ୍ପ, ବିଷାକ୍ତ ଜଳ ଓ ପ୍ରଲମ୍ଭନାଦି ପ୍ରୟୋଗକୁ ମଧ୍ୟ ଯୁଦ୍ଧ ଉପକରଣ କୁହାଯାଏ । (୧୨) କୁପ୍ୟାଧ୍ୟକ୍ଷ ଅଧ୍ୟାୟ ଓ ଏହି ଆୟୁଧାଗାରାଧ୍ୟକ୍ଷ ଅଧ୍ୟାୟ ବର୍ଣ୍ଣିତ ପଦାର୍ଥମାନଙ୍କ ବିଷୟରେ ରାଜାଙ୍କ ଅଭିରୁଚି, ଆରମ୍ଭ (ଉଦ୍ୟୋଗ), ନିଷ୍ପତ୍ତି (କାର୍ଯ୍ୟସିଦ୍ଧି), ଉକ୍ତ ପଦାର୍ଥ ଓ ଅସ୍ତ୍ରଶସ୍ତ୍ରାଦିର ପ୍ରୟୋଗ (ଉପଯୋଗ), ବ୍ୟାଜ (ଦୋଷ), ଉଦୟ (ଲାଭ), କ୍ଷୟ (ଖଣ୍ଡ, ଭଗ୍ନ ଏବଂ ରଦ୍ଦି), ବ୍ୟୟ (କର୍ମଗୃହୀଙ୍କ ବେତନାଦିରେ ହେବା ବ୍ୟୟ ଓ ଅସ୍ତ୍ରଶସ୍ତ୍ରାଦିଙ୍କର ଯୁଦ୍ଧ ସମୟରେ ହେବା ବ୍ୟୟ)କୁ କୁପ୍ୟାଧ୍ୟକ୍ଷ ଓ ଆୟୁଧାଗାରାଧ୍ୟକ୍ଷ ଉତ୍ତମଭାବେ ଜାଣିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଅଷ୍ଟାଦଶୋଽଧ୍ୟାୟଃ—ଆୟୁଧାଗାରାଧ୍ୟକ୍ଷଃ—ଆଦିତଃ ଏକୋନଚତ୍ୱାରିଂଶଃ ।

---

* 'ମୁଦୟମ୍'—ପାଠାନ୍ତର ।

## ଊନବିଂଶୋଽଧ୍ୟାୟଃ

## ସପ୍ତବିଂଶ ପ୍ରକରଣମ୍—ତୁଲାମାନପୌତବମ୍

### THE SUPERINTENDENT OF WEIGHTS & MEASURES

( ତୁଳ ଓ ମାପର ଅଧିକାରୀ ପୌତବାଧ୍ୟକ୍ଷଙ୍କ ବ୍ୟାପାର )

(୧) ପୌତବାଧ୍ୟକ୍ଷଃ ପୌତବକର୍ମାନ୍ତାନ୍ କାରୟେତ୍ । ଧାନ୍ୟମାଷା ଦଶ ସୁବର୍ଣମାଷକଃ । ପଞ୍ଚ ବା ଗୁଞ୍ଜାଃ । ତେ ଷୋଡ଼ଶସୁବର୍ଣଃ କର୍ଷୋ ବା । ଚତୁଷ୍କର୍ଷଂ ଫଳମ୍ । (୨) ଅଷ୍ଟାଶୀତଗୌରସର୍ଷପା ରୂପ୍ୟମାଷକଃ । ତେ ଷୋଡ଼ଶ ଧରଣମ୍ । ଶୈମ୍ବ୍ୟାନି ବା ବିଂଶତିଃ । ବିଂଶତିତଣ୍ଡୁଳଂ ବଜ୍ରଧରଣମ୍ । (୩) ଅର୍ଧମାଷକଃ, ମାଷକଃ, ଦ୍ୱୌ, ଚତ୍ୱାରଃ, ଅଷ୍ଟୌମାଷକାଃ, ସୁବର୍ଣୋ, ଦ୍ୱୌ, ଚତ୍ୱାରଃ, ଅଷ୍ଟୌ-ସୁବର୍ଣାଃ, ଦଶ, ବିଂଶତିଃ, ତ୍ରିଂଶତ୍, ଚତ୍ୱାରିଂଶତ୍, ଶତମିତି । ତେନ ଧରଣାନି ବ୍ୟାଖ୍ୟାତାନି ।

---

(୧) ପୌତବାଧ୍ୟକ୍ଷ ପୌତବକର୍ମାନ୍ତ ଅର୍ଥାତ୍ ତୁଳ, ନିକ୍ତି, ନଉତି, ତୁମ୍ବ, ଅଡ଼ା, ସେର ଇତ୍ୟାଦି ତିଆର କରାଇବେ । ଦଶ ଧାନ୍ୟମାସ ଅର୍ଥାତ୍ ବିରିଦାନାରେ ବା ପାଞ୍ଚ କାଇଁଚରେ (ଗୁଞ୍ଜାରେ) ଏକ ସୁବର୍ଣ୍ଣ ମସା ହୁଏ । ଷୋହଳ ସୁବର୍ଣ୍ଣ ମସାରେ ଗୋଟିଏ 'ସୁବର୍ଣ୍ଣ' ବା ଗୋଟିଏ 'କର୍ଷ' ହୁଏ । ଚାରି କର୍ଷରେ ଗୋଟିଏ 'ପଳ' ହୁଏ । (୨) ଅଠାଅଶୀ ଶୁକ୍ଳ ସୋରିଷରେ ଗୋଟିଏ 'ରୂପ୍ୟମାସକ' ହୁଏ । ଷୋହଳ ରୂପ୍ୟମାସକ ବା କୋଡ଼ିଏ ଶିମ୍ବମଞ୍ଜିରେ ଗୋଟିଏ 'ଧରଣ' ହୁଏ । କୋଡ଼ିଏଟି ବିରିଫାଳ ବା କୋଡ଼ିଏଟି ଚାଉଳର ଓଜନରେ ଗୋଟିଏ 'ବଜ୍ରଧରଣ' (ହୀରକଧରଣ) ହୁଏ । (୩) ଅର୍ଦ୍ଧମାଷକ (ଅର୍ଦ୍ଧମସା), ଏକମସା, ଦୁଇମସା, ଚାରିମସା, ଅଠମସା, ଏକ ସୁବର୍ଣ୍ଣ, ଦୁଇ ସୁବର୍ଣ୍ଣ, ଚାରି ସୁବର୍ଣ୍ଣ, ଅଠ ସୁବର୍ଣ୍ଣ, ଦଶ ସୁବର୍ଣ୍ଣ, କୋଡ଼ିଏ ସୁବର୍ଣ୍ଣ, ତିରିଶି ସୁବର୍ଣ୍ଣ, ଚାଳିଶି ସୁବର୍ଣ୍ଣ ଓ ଶତ ସୁବର୍ଣ୍ଣ—

---

* ଧରଣ = ରୂପିଆ । ସୁବର୍ଣ୍ଣ = ସୁନିଆ (ମୋହର) ।

(୪) ପ୍ରତମାନାନ୍ୟଶ୍ମୋମୟାନ, ମାଗଧମେକଲଶୈଳମୟାନ, ଯାନି ବା ନୋଦକପ୍ରଦେହାଭ୍ୟାଂ ବୃଦ୍ଧିଂ ଗଚ୍ଛେୟୁରୁଷ୍ଣେନ ବା ହ୍ରାସମ୍ । (୫) ଷଡ଼ଙ୍ଗୁଳାଦୂର୍ଦ୍ଧ୍ୱମଷ୍ଟାଙ୍ଗୁଳୋତ୍ତରାଃ ଦଶତୁଲାଃ କା●ୟେ-ଲ୍ଲୋହପଳାଦୂର୍ଦ୍ଧ୍ୱମେକପଳୋତ୍ତରାଃ । ଯନ୍ତ୍ରମୁଭୟତଃ ଶିକ୍ୟଂ ବା । (୬) ପଞ୍ଚତ୍ରିଂଶତ୍‌ପଳଲୋହାଂ ଦ୍ୱିସପ୍ତତ୍ୟଙ୍ଗୁଳାୟାମାଂ ସମବୃତ୍ତଂ କାରୟେତ୍ । ତସ୍ୟାଃ ପଞ୍ଚପଳିକଂ ମଣ୍ଡଳଂ ବଦ୍ଧ୍ୱା ସମକରଣଂ କାରୟେତ୍ । ତତଃ କର୍ଷୋତ୍ତରଂ ପଳଂ, ପଳୋତ୍ତରଂ ଦଶପଳଂ,

---

ଏପରି ଚଉଦ ପ୍ରକାର ବଟକରି ତିଆରି କରାଯାଏ । ଉପରୋକ୍ତ ପ୍ରକାରେ 'ରୂପ୍ୟଧରଣ'ର ଚଉଦ ପ୍ରକାର ବଟକରି ରୂପା ତୁଳିବା ସକାଶେ ନିର୍ମାଣ କରାଯାଏ । (୪) ଏହି ବଟକରିଗୁଡ଼ିକ ଲୁହା, ମଗଧଦେଶଜାତ ପଥର ଓ ମେକଲ ନାମକ ଅରଣ୍ୟକ ଦେଶଜାତ ପଥରରେ ତିଆରି କରାଯାଏ । ଟଙ୍କ ଖଣ୍ଡ, ଶାମୁକା ଖଣ୍ଡ ପ୍ରଭୃତି ପଦାର୍ଥ ଯାହା କି ପାଣି ଓ ମଳି ଲାଗିଲେ ବୃଦ୍ଧିପ୍ରାପ୍ତ (ଭାରି) ହୁଏ ନାହିଁ କିମ୍ବା ସୂର୍ଯ୍ୟକିରଣରେ ଶୁଷ୍କ ହୋଇ ନ୍ୟୂନ (ହ୍ରାସ) ହୁଏ ନାହିଁ, ସେପରି ପଦାର୍ଥରେ ମଧ୍ୟ ଏହି ବଟକରିଗୁଡ଼ିକ ତିଆରି କରାଯାଏ । (୫) ସୁନା ଓ ରୂପା ତୁଳ କରିବାପାଇଁ ଛଅ ଅଙ୍ଗୁଳରୁ ଆରମ୍ଭ କରି ଆଠ ଆଠ ଅଙ୍ଗୁଳ ବୃଦ୍ଧିରେ ଦଶପ୍ରକାର ତରାଜୁ (ନିକିତି) ତିଆରି କରାଯାଏ ଏବଂ ଏହିଗୁଡ଼ିକ ଯଥାକ୍ରମେ ଏକ ପଳରୁ ଆରମ୍ଭ କରି ଦଶପଳ ପର୍ଯ୍ୟନ୍ତ ଲୁହାରେ ତିଆରି କରାଯାଏ । ଏକପଳ ଲୁହାରେ ଛ'ଅଙ୍ଗୁଳର ନିକିତି, ଦୁଇପଳରେ ଚଉଦ ଅଙ୍ଗୁଳର ନିକିତି, ଏହି କ୍ରମରେ ଅଠସ୍ତୋରି ଅଙ୍ଗୁଳ ପର୍ଯ୍ୟନ୍ତ ପ୍ରତ୍ୟେକଟି ଆଠ ଆଠ ଅଙ୍ଗୁଳ ବୃଦ୍ଧିକରି ଓ ପ୍ରତ୍ୟେକଟିରେ କ୍ରମରେ ଏକ ଏକ ପଳ ଲୁହା ବୃଦ୍ଧିକରି ସାନବଡ଼ କରି ଦଶପ୍ରକାର ନିକିତି ତିଆରି କରି ଏହି ନିକିତି ଯନ୍ତ୍ରର ଦୁଇପଟେ ଦୁଇଟି ଶିକା ଓ ଦୁଇଟି ପରଳ ଲଗାଇବାକୁ ହେବ । (୬) ପଞ୍ଚତିରିଶି ପଳ ଲୁହାରେ ବାସ୍ତୋରି ଅଙ୍ଗୁଳର (ତିନିହାତର) ଗୋଟିଏ ଗୋଲାକାର ବିସାବାଡ଼ି ବା ବିସାନାଡ଼ି ତିଆରି କରି, ସେଥିରେ ପାଞ୍ଚପଳ ଲୁହାର ପରଳ ଲଗାଇ, ବିସାନାଡ଼ି ତଳକୁ କିମ୍ବା ଉପରକୁ ଉଚ୍ଚନୀଚ ହୋଇ ଠିକ୍ ସିଧାସଳଖେ ରହିବାପରି ତହିଁରେ ଗୋଟିଏ ଚିହ୍ନକରି, ଫୁଲି

**ଦ୍ୱାଦଶ ପଞ୍ଚଦଶ ବଂଶତରତ ପଦାନ କାରୟେତ୍ । ତତ ଆ ଶତାଦ୍. ଦଶୋତ୍ତରଂ କାରୟେତ୍ । ଅକ୍ଷେଷୁ ନନ୍ଦ୍ରୀପିନଦ୍ଧଂ କାରୟେତ୍ । (୭) ଦ୍ୱିଗୁଣଲୋହାଂ ତୁଲାମତଃ ସପ୍ତବତ୍ୟଙ୍ଗୁଳାୟାମାଂ ପରମାଣୀଂ କାରୟେତ୍ । ତସ୍ୟାଃ ଶତପଦାଦୂର୍ଦ୍ଧ୍ୱଂ ବଂଶତଃ, ପଞ୍ଚାଶତ୍, ଶତମିତ ପଦାନ କାରୟେତ୍ । ବଂଶତ ତୌଳକୋଷରଃ । ଦଶଧରଣିକଂ ପଳମ୍ । ତତ୍ପଳଶତମାୟମାନୀ । ପଞ୍ଚପଳାବର ବ୍ୟାବହାରିକୀ ଭଜନ୍ୟନ୍ତଃପୁରଭଜନୀ ଚ । ତାସାମର୍ଦ୍ଧ-**

ଲଗାଇବେ । ସେହି ସମଚିହ୍ନ କରିବା ପରେ କର୍ଷେ, ଦୁଇକର୍ଷ, ତିନିକର୍ଷ, ପଲ, ଦୁଇପଲ କ୍ରମରେ ଦଶପଲ, ବାରପଲ, ପନ୍ଦରପଲ ଓ କୋଡ଼ିଏପଲ, ଏପରି ଶୋହଳଗୋଟି ଗାର କରି ତା'ପରେ ପ୍ରତି ଦଶପଲରେ ଗୋଟିଏ ଗୋଟିଏ ଗାର କାଟି ଶହେ ପଲ ପର୍ଯ୍ୟନ୍ତ ଗାର କଟାଇବେ ଏବଂ ପ୍ରତି ପାଞ୍ଚପଲର ଗାର ଉପରେ ଗୋଟିଏ ନନ୍ଦ୍ରୀ ବା ନାନ୍ଦୀ (ଛକ ବା ସ୍ୱସ୍ତିକଚିହ୍ନ (X—卐) କଟାଇବେ । ଏହାର ନାମ 'ସମବୃତ୍ତା ତୁଳା' । (୭) ଏହାପରେ ସମବୃତ୍ତା ତୁଳାର ଦୁଇଗୁଣ ଅର୍ଥାତ୍ ସତୁରିପଲ ଲୁହାରେ ଛୟାଣୋଇ ଅଙ୍ଗୁଳ (ଗୃହହାତ) ଲମ୍ବର 'ପରମାଣୀ' ନାମକ ତୁଳା ନିର୍ମାଣ କରାଇବେ । ଏଥିରେ ମଧ୍ୟ କର୍ଷଠାରୁ ଆରମ୍ଭ କରି ଶହେ ପଲ ପର୍ଯ୍ୟନ୍ତ ଚିହ୍ନକରି କୋଡ଼ିଏ, ପଞ୍ଚାଶ ଓ ଶହେ ପଲର ଗାର ଉପରେ ଗୋଟିଏ ଗୋଟିଏ ଛକ 'X' କରାଇବେ । ଅର୍ଥାତ୍ ଶହେପଲରେ ଗୋଟିଏ ତୁଲା ଓ କୋଡ଼ିଏ ତୁଲାରେ ଗୋଟିଏ ଭାର ହୁଏ । ସୁନାରୂପା ଛଡ଼ା ଅନ୍ୟପଦାର୍ଥର ତୁଲ ସକାଶେ ଦଶଧରଣ (ଦଶରୂପ୍ୟ ମୁଦ୍ରା—ଏକରୂପ୍ୟ ଧରଣ=ଶୋହଳରୂପ୍ୟ ମସା=ଏକ ରୂପ୍ୟ ମସା= ଅଠାଅଶୀ ଶୁକ୍ଳସୋରିଷ)ରେ ଗୋଟିଏ ପଲ ଓ ଶହେ ପଲରେ ଗୋଟିଏ * 'ଆୟମାନୀ' ନାମକ ତୁଳା ନିର୍ମାଣ କରାଇବେ । ଏଥିରୁ ପାଞ୍ଚପଲ ଊଣାରେ (୯୫ ପଲରେ) 'ବ୍ୟାବହାରିକୀ' ନାମକ ତୁଳା, ବ୍ୟାବହାରିକୀ ତୁଳାରୁ ପାଞ୍ଚପଲ ଊଣାରେ (୯୦ ପଲରେ) 'ଭାଜନୀ' ନାମକ ତୁଳା ଓ

* ଆୟ ଏବ ମୀୟତେ ଅନୟା ଇତି ଆୟମାନୀ । ଆୟପରିମାପିକା—ଏଥିରେ କେବଳ ଦ୍ରବ୍ୟ ତୁଳ ରଖାଯାଏ କିନ୍ତୁ ବିକାଯାଏ ନାହିଁ । ଏହା ଶିଖାନହତି ଏବଂ ଶିଖା ତୁଳସହ ।

ଧରଣାବରଂ ପଳମ୍ । ଦ୍ୱିପଳାବରମୁତ୍ତରଲୋହମ୍ । ଷଡ଼ଙ୍ଗୁଳାବରୋ-ଷ୍ଟାଯାମାଃ । ପୂର୍ବୟୋଃ ପଞ୍ଚପଳିକଃ ପ୍ରଯାମୋ ମାଂସଲୋହଲବଣ-ମଣିବର୍ଜମ୍ । କାଷ୍ଠତୁଳା ଅଷ୍ଟହସ୍ତା ପଦବତୀ, ପ୍ରତିମାନବତୀ ମୟୂରପଦାଧିଷ୍ଠାନା । କାଷ୍ଠପଞ୍ଚବିଂଶତିପଳଂ ତଣ୍ଡୁଳପ୍ରସ୍ଥସାଧନମ୍ । ଏଷ ପ୍ରଦେଶୋ ବହ୍ୱଳ୍ପୟୋଃ । ଇତି ତୁଳାପ୍ରତିମାନଂ ବ୍ୟାଖ୍ୟାତମ୍ ।

---

ଏଥିରୁ ପାଞ୍ଚପଳ ଊଣାରେ (୮୫ ପଳରେ) 'ଅନ୍ତଃପୁରଭାଜନୀ' ନାମକ ତୁଳା ନିର୍ମାଣ କରାଇବେ *। ଏହି ବ୍ୟାବହାରିକୀ, ଭାଜନୀ ଓ ଅନ୍ତଃପୁର-ଭାଜନୀର ପଳ ପରିମାଣ ଯଥାକ୍ରମେ ସାଢ଼େ ନ' (୯½), ନଅ (୯) ଓ ସାଢ଼େ ଆଠ (୮½) ଧରଣ କ୍ରମରେ ହୁଏ । ଏଗୁଡ଼ିକ 'ଆୟମାନୀ' ତୁଳାଅପେକ୍ଷା ଯଥାକ୍ରମେ ଦୁଇ ଦୁଇ ପଳ ଊଣାରେ ଅର୍ଥାତ୍ ବ୍ୟାବହାରିକୀ ୩୩ ପଳ, ଭାଜନୀ ୩୧ ପଳ ଏବଂ ଅନ୍ତଃପୁରଭାଜନୀ ୨୯ ପଳରେ ନିର୍ମାଣ କରାଇବେ । ଏଗୁଡ଼ିକର ଲମ୍ବ ମଧ୍ୟ ଯଥାକ୍ରମେ ଛ' ଛ' ଅଙ୍ଗୁଳ ଊଣା ହେବ । ଅର୍ଥାତ୍ ବ୍ୟାବହାରିକୀ ତୁଳା ୬୬ ଅଙ୍ଗୁଳ, ଭାଜନୀ ୬୦ ଅଙ୍ଗୁଳ ଓ ଅନ୍ତଃପୁର-ଭାଜନୀ ୫୪ ଅଙ୍ଗୁଳ ହେବ । ମାଂସ, ଲୋହ, ଲବଣ ଓ ମଣି ଛଡ଼ା ଅନ୍ୟ ପଦାର୍ଥ ବ୍ୟାବହାରିକୀ ଓ ଭାଜନୀ ତୁଳାରେ ତୁଳି ନେବାବେଳେ ପ୍ରତି ଶହେ ପଳରେ ପାଞ୍ଚପଳ ପ୍ରଯାମ ବା ଅଧିକା ନେବାକୁ ହେବ । କାଷ୍ଠ ତରାଜୁ (ଅର୍ଥାତ୍ କାଠରେ ତିଆରି ହେବା ତୁଳା ବା ତରାଜୁ) ଆଠହାତ ଲମ୍ବରେ କରିବାକୁ ହେବ । ସେଥିରେ ଏକ, ଦୁଇ, ତିନି ଇତ୍ୟାଦି ଚିହ୍ନ ରହିବ । ଏହାର ବଟକରା ପଥରରେ କରାଯିବ ଓ ମୟୂରପାଦ ଆକାର ସ୍ତମ୍ଭ ଉପରେ ଏହାକୁ ଝୁଲାଇ ତୁଳ କରିବାକୁ ହେବ । ପଚିଶି ପଳ କାଠରେ ଏକ ପ୍ରସ୍ଥ (ଏକ ଅଢ଼ା) ଚାଉଳ ରନ୍ଧାଯାଏ । ଏଥିରୁ ଊଣା ବା ଅଧିକ ଚାଉଳ ରାନ୍ଧିବାପାଇଁ ଯେତିକି କାଠ ଦରକାର ତାହା ହିସାବ କରି ଜାଣିବାକୁ ହେବ । ଏପରି ଶୋହଳ ପ୍ରକାର ତୁଳା ବା ତରାଜୁ ଓ ଚବିଶି ପ୍ରକାର

---

* କ୍ରୟବିକ୍ରୟ ସକାଶେ ବ୍ୟାବହାରିକୀ ତୁଳା, ଭୃତ୍ୟମାନଙ୍କ ବର୍ତ୍ତନ ଦେବା ସକାଶେ ଭାଜନୀ ଓ ଅନ୍ତଃପୁରକୁ ଦ୍ରବ୍ୟ ଦେବା ସକାଶେ ଅନ୍ତଃପୁରଭାଜନୀ ତୁଳା ବ୍ୟବହାର କରାଯାଏ ।

**(୮) ଅଥଧାନ୍ୟମାଷଦ୍ୱିପଳଶତଂ ଦ୍ରୋଣମାୟମାନମ୍ । ସପ୍ତାଶୀତି-ପଳଶତମର୍ଧପଳଂ ଚ ବ୍ୟାବହାରିକମ୍ । ପଞ୍ଚସପ୍ତତିପଳଶତଂ ଭାଜନୀୟମ୍ । ଦ୍ୱିଷଷ୍ଟିପଳଶତମର୍ଧପଳଂ ଚାନ୍ତଃପୁରଭାଜନୀୟମ୍ । ତେଷାମାଢ଼କପ୍ରସ୍ଥକୁଡ଼ୁବାଶ୍ଚତୁର୍ଭାଗାବରାଃ । (୯) ଷୋଡ଼ଶଦ୍ରୋଣା ଖାରୀ, ବିଂଶତିଦ୍ରୋଣିକଃ କୁମ୍ଭଃ, କୁମ୍ଭୈର୍ଦଶଭିର୍ବହଃ । ଶୁଷ୍କସାର-ଦାରୁମୟଂ ସମଂ ଚତୁର୍ଭାଗଶିଖଂ ମାନଂ କାରୟେତ୍ । ଅନ୍ତଃଶିଖଂ**

---

ବିଚକର ବିଷୟ ଏଠାରେ ନିରୂପିତ ହେଲା । (୮) ଧାନ୍ୟମାଷ (ବିରି) ଦୁଇଶହ ପଳରେ 'ଆୟମାନ' ନାମକ ଦ୍ରୋଣ; ଏକଶହ ସାଢ଼େ ସତାଅଶୀ ପଳରେ ଅର୍ଥାତ୍ ଆୟମାନ ଦ୍ରୋଣଠାରୁ ସାଢ଼େ ତେରପଳ ଊଣାରେ 'ବ୍ୟାବହାରିକ' ନାମକ ଦ୍ରୋଣ; ଏକଶହ ପଞ୍ଚସ୍ତୋରି ପଳରେ ଗୋଟିଏ 'ଭାଜନୀ'* ନାମକ ଦ୍ରୋଣ ଏବଂ ଏକଶହ ସାଢ଼େ ବାଷଠି ପଳରେ 'ଅନ୍ତଃପୁର ଭାଜନୀ' ନାମକ ଦ୍ରୋଣ ହୁଏ । ଦ୍ରୋଣର ଚାରିଭାଗରୁ ଏକଭାଗକୁ 'ଆଢ଼କ', ଆଢ଼କର ଚାରିଭାଗରୁ ଏକଭାଗକୁ 'ପ୍ରସ୍ଥ' ଏବଂ ପ୍ରସ୍ଥର ଚାରିଭାଗରୁ ଏକଭାଗକୁ 'କୁଡ଼ୁବ' କୁହାଯାଏ । (୯) ଷୋହଳ ଦ୍ରୋଣରେ ଏକ 'ଖାରି', କୋଡ଼ିଏ ଦ୍ରୋଣରେ ଏକ 'କୁମ୍ଭ' ଓ ଦଶ କୁମ୍ଭରେ ଏକ 'ବହ' ହୁଏ । ଶୁଖିଲା ଓ ଟାଣୁଆ କାଠରେ ତଳଉପର ସମାନ ଥାଇ ଓ ମାପହେବା ଜିନିଷର ଚାରିଭାଗରୁ ଏକଭାଗ, ଶିଖାରେ ଧାରଣ କରିବାଭଳି ମୁଖଭାଗ ଥାଇ ମାନପାତ୍ର (ମାପିବା ପାତ୍ର) ତିଆରି କରିବାକୁ ହେବ । କିନ୍ତୁ ଘୃତ ତୈଳ ପ୍ରଭୃତି ପଦାର୍ଥ ମାପକରିବା ସକାଶେ ଏହି ମାନପାତ୍ରକୁ 'ଅନ୍ତଃଶିଖ' ଅର୍ଥାତ୍ ମାପହେବା ପଦାର୍ଥର ଯେଉଁ ଚାରିଭାଗରୁ ଏକଭାଗ ଶିଖରେ ରହନ୍ତା, ତାହା ଗର୍ଭରେ ରହିଯିବାଭଳି ମାନପାତ୍ର ତିଆରି କରିବାକୁ ହେବ । ଏହି ମାନପାତ୍ରକୁ 'ଅନ୍ତଃଶିଖ ମାନପାତ୍ର' କହନ୍ତି । ଘୃତ, ତୈଳ, ମଧୁ ପ୍ରଭୃତି ତରଳ ପଦାର୍ଥ କେବଳ

---

* ଭାଜନୀ—Servants' measure.

ଅନ୍ତଃପୁରଭାଜନୀ—Harem measure.

୧ ଆଢ଼କ = ¼ ଦ୍ରୋଣ; ୧ ପ୍ରସ୍ଥ = ¼ ଆଢ଼କ; ୧ କୁଡ଼ୁବ = ¼ ପ୍ରସ୍ଥ ।

ବା । ରସସ୍ୟ ତୁ । (୧୦) ସୁରାୟାଃ ପୁଷ୍ପଫଳୟୋଃ ତୁଷାଂଗାରଣାଂ ସୁଧାୟାଶ୍ଚ ଶିଖାମାନଂ ଦ୍ୱିଗୁଣୋତ୍ତର ବୃଦ୍ଧିଃ । ସପାଦପଣୋ ଦ୍ରୋଣମୂଲ୍ୟମ୍ । ଆଢ଼କସ୍ୟ ପାଦୋନଃ । ଷଣ୍ମାଷକାଃ ପ୍ରସ୍ଥସ୍ୟ । ମାଷକଃ କୁଡୁବସ୍ୟ । ଦ୍ୱିଗୁଣଂ ରସାଦୀନାଂ ମାନମୂଲ୍ୟମ୍ । ବିଂଶତିପଣାଃ ପ୍ରତିମାନସ୍ୟ । ତୁଲାମୂଲ୍ୟଂ ତ୍ରିଭାଗଃ । ଚତୁର୍ମାସିକଂ ପ୍ରାତିବେଧନକଂ କାରୟେତ୍ । ଅପ୍ରତିବଦ୍ଧସ୍ୟାତ୍ୟୟଃ

---

ଏହି ମାନପାତ୍ରରେ ଜଣ୍ଡୁ କରିବାକୁ ହେବ । (୧୦) ସୁରା (ମଦ୍ୟ), ପୁଷ୍ପ, ଫଳ, ତୁଷ (ଚଷୁ), ଅଙ୍ଗାର ସୁଧା (ଚୂନ)—ଏହି ସମସ୍ତ ପଦାର୍ଥକୁ ମାପିବା ସକାଶେ ଶିଖା ମାନର ଦୁଇଗୁଣ ବୃଦ୍ଧି କରିବାକୁ ହେବ ଅର୍ଥାତ୍ ସୁରା ବ୍ୟତୀତ ପୁଷ୍ପଫଳାଦି ପାଞ୍ଚପ୍ରକାର ପଦାର୍ଥ ଉପରୋକ୍ତ ଘୃତ, ତୈଳ ମାପକରିବା ଅନ୍ତଃଶିଖ ମାନପାତ୍ରରେ ଶିଖ ରଖି ମାପକରାଯିବ । ସୁରା ମାପକରିବା ପାଇଁ ଗୋଟିଏ ପ୍ରସ୍ଥ ତିଆର କରିବାକୁ ହେଲେ ତା ଭିତରେ ପାଞ୍ଚ କୁଡ଼ୁବ ପଦାର୍ଥ ରହିବା ଭଳି ଅନ୍ତଃଶିଖ କରି ତିଆର କରିବାକୁ ହେବ । [ଘୃତାଦି ମାପକରିବା ଅନ୍ତଃଶିଖ ପ୍ରସ୍ଥରେ ଧାନ୍ୟାଦି ମାପକଲେ ତାହା ପାଞ୍ଚ କୁଡ଼ୁବ ହେବ ଏବଂ ସୁରା ମାପକରିବା ପଞ୍ଚକୁଡ଼ୁବାତ୍ମକ ଅନ୍ତଃଶିଖ ମାନପାତ୍ର (ପ୍ରସ୍ଥରେ) ଧାନ୍ୟାଦି ମାପକଲେ ତାହା ଛ'କୁଡ଼ୁବ ହେବ] ।

* ମାନପାତ୍ରମାନଙ୍କ ମୂଲ୍ୟ, ଯଥା—ଏକଦ୍ରୋଣର ମୂଲ୍ୟ ଏକଅଧେ (୧¼ ଦେଢ଼ପଣ) । ଏକ ଆଢ଼କର ମୂଲ୍ୟ ଏକପଣର ଚାରିଭାଗରୁ ତିନିଭାଗ (¾ ପଣ) । ଏକ ପ୍ରସ୍ଥର ମୂଲ୍ୟ ଛ'ମସା, ଏକ କୁଡ଼ୁବର ମୂଲ୍ୟ ଏକ ମସା । ଘୃତତୈଳାଦି ମାପିବା ମାନପାତ୍ରଗୁଡ଼ିକର ମୂଲ୍ୟ ଉକ୍ତ ମୂଲ୍ୟର ଦୁଇଗୁଣ ହୁଏ ।

ଚଉଦପ୍ରକାର ବଟକରାସମୂହ (Set)ର ମୂଲ୍ୟ କୋଡ଼ିଏ ପଣ । ତରାଜୁର ମୂଲ୍ୟ ବଟକରା ସମୂହ ମୂଲ୍ୟର ଏକତୃତୀୟାଂଶ ଅର୍ଥାତ୍ ୬⅔ ପଣ । ପ୍ରତି ଚାରିମାସରେ ଥରେ ନିକିତି ଓ ବଟକରାକୁ ପୌତବାଧ୍ୟକ୍ଷଙ୍କ ସମକ୍ଷରେ ପରୀକ୍ଷା କରାଇ ପରିଶୁଦ୍ଧ କରାଇବାକୁ ହେବ । ଅପରିଶୁଦ୍ଧ ନିକିତି (ତରାଜୁ)

---

* ମାନପାତ୍ର—Measures.

ସପାଦଃ ସପ୍ତବିଂଶତିପଣଃ । ପ୍ରାତିବେଧନିକଂ କାକଣିକମହରହଃ ପୌତବାଧ୍ୟକ୍ଷାୟ ଦଦ୍ୟୁଃ । (୧୧) ଦ୍ଵାତ୍ରିଂଶଦ୍ଭାଗସ୍ତପ୍ତବ୍ୟାଜୀ ସର୍ପିଷଶ୍ଚତୁଃଷଷ୍ଟିଭାଗସ୍ତୈଳସ୍ୟ । ପଞ୍ଚାଶଦ୍ଭାଗୋ ମାନସ୍ରାବୋ ଦ୍ରବାଣାମ୍ । କୁଡୁବାର୍ଧଚତୁରଷ୍ଟଭାଗାନି ମାନାନି କାରୟେତ୍ ।

(୧୨) କୁଡୁବାଶ୍ଚତୁରଶୀତିର୍ବାରକଃ ସର୍ପିଷୋ ମତଃ ।
ଚତୁଃଷଷ୍ଟିସ୍ତୁ ତୈଳସ୍ୟ ପାଦଶ୍ଚ ଘଟିକାନୟୋଃ ॥

---

ଓ ବିଂଟକର ବ୍ୟବହାର କଲେ ବେପାରୀ ସର୍ଦ୍ଧାସତାଇଶି ପଣ ( ୨୭¼ ପଣ ବା ଟଙ୍କା ) ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ବେପାରୀମାନେ ପ୍ରତିଦିନ ଏକ କାକଣୀ (ଏକମସାର ଚତୁର୍ଥାଂଶ) ହିସାବରେ ଗୃହମାସ ଶେଷରେ ନିକିତି ଓ ବିଂଟକରର ପରିଶୁଦ୍ଧି ସମୟରେ ପୌତବାଧ୍ୟକ୍ଷଙ୍କୁ ମୋଟ ଏକଶହ କୋଡ଼ିଏ କାକଣୀ ପରିଶୋଧନ ଶୁଳ୍କ (ପ୍ରାତି-ବେଧନିକ) ପ୍ରଦାନ କରିବେ । (୧୧) ତାତିଲା ଘିଅ କିଣିବା ବେଳେ କିଣା ହେବା ଘିଅର ବତିଶି ଭାଗରୁ ଏକଭାଗ ଅଧିକ ଗ୍ରହଣ କରିବାକୁ ହେବ । ଏହାର ନାମ 'ତପ୍ତବ୍ୟାଜୀ' । ତେଲମାପ ବେଳେ କିଣାହେବା ତେଲର ଚଉଷଠି ଭାଗରୁ ଏକଭାଗ ମଧ୍ୟ ଅଧିକ ଗ୍ରହଣ କରିବାକୁ ହେବ । ଏବାଦେ ଘିଅ, ତେଲ ଓ ମହୁ ପ୍ରଭୃତି ଦ୍ରବ ପଦାର୍ଥ କିଣିବା ବେଳେ କିଣା ଜିନିସର ପଞ୍ଚାଶେ ଭାଗରୁ ଏକଭାଗ ଅଧିକା ଗ୍ରହଣ କରିବାକୁ ହେବ । ଏହାର ନାମ 'ମାନବ୍ୟାଜୀ' । ବେପାରୀମାନେ ଘିଅ, ତେଲ ପ୍ରଭୃତି ମାପିସାରି ହଠାତ୍ ମାପପାତ୍ର ଅର୍ଥାତ୍ ଅଣ୍ଡା, ବୋଡ଼ା ଓ ସୋଲକୁ ନିଜର ଘିଅଘଡ଼ି ଓ ତେଲଘଡ଼ି ପ୍ରଭୃତିରେ ଓଗୁଡ଼ାଇ ରଖିଦଅନ୍ତି । ଏଥିଦ୍ଵାରା ଯେଉଁ ଘିଅ, ତେଲ ନିଗିଡ଼ିଯାଏ, ସେହି କ୍ଷତିପୂରଣ ସକାଶେ ଏହି ମାନବ୍ୟାଜୀ ବେପାରୀଠାରୁ ଗ୍ରହଣ କରିବାର ବ୍ୟବସ୍ଥା କରାଯାଇଛି । କୁଡୁବ, ଅର୍ଦ୍ଧକୁଡୁବ, ଚତୁର୍ଥାଂଶ କୁଡୁବ ଓ ଅଷ୍ଟମାଂଶ କୁଡୁବକୁମ୍ଭମାପର ସୁବିଧା ସକାଶେ ନିର୍ମାଣ କରିବାକୁ ହେବ । (୧୨) ଘିଅ ମାପିବାପାଇଁ ଚଉରାଶି କୁଡୁବ ମାପର 'ବାରକ' ନାମକ ଗୋଟିଏ କୁମ୍ଭ ଏବଂ ତେଲ ମାପିବାପାଇଁ ଚଉଷଠି କୁଡୁବ ମାପର 'ବାରକ' ନାମକ ଗୋଟିଏ କୁମ୍ଭ ନିର୍ମାଣ କରିବାକୁ ହେବ

## ବିଂଶୋଽଧ୍ୟାୟଃ

## ଅଷ୍ଟତ୍ରିଂଶ ପ୍ରକରଣମ୍—ଦେଶକାଳମାନମ୍

## MEASUREMENT OF SPACE AND TIME

( ସ୍ଥାନ ଓ ସମୟର ପରିମାଣ )

(୧) ମାନାଧ୍ୟକ୍ଷୋ ଦେଶକାଳମାନଂ ବିଦ୍ୟାତ୍ । (୨) ଅଷ୍ଟୌ ପରମାଣବୋ ରଥଚକ୍ରବିପ୍ରୁଟ୍ । ତା ଅଷ୍ଟୌ ଲିକ୍ଷା । ତା ଅଷ୍ଟୌ ଯୂକାମଧ୍ୟଃ । ତେ ଅଷ୍ଟୌ ଯବମଧ୍ୟଃ । ଅଷ୍ଟୌ ଯବମଧ୍ୟାଃ ଅଙ୍ଗୁଳମ୍ । ମଧ୍ୟମସ୍ୟ ପୁରୁଷସ୍ୟ ମଧ୍ୟମାୟା ଅଙ୍ଗୁଲ୍ୟା ମଧ୍ୟପ୍ରକର୍ଷୋ ବାଙ୍ଗୁଳମ୍ । (୩) ଚତୁରଂଗୁଳୋ ଧନୁର୍ଗ୍ରହଃ ।

---

ଏବଂ ଏହି ଦୁଇପ୍ରକାର କୁମ୍ଭର ଚାରିଭାଗରୁ ଏକଭାଗରେ ଅର୍ଥାତ୍ ଏକୋଇଶି ଓ ଷୋହଳ କୁଡ଼ୁବ ମାପରେ ଦୁଇଟି ଘଡ଼ି ମଧ୍ୟ ନିର୍ମାଣ କରିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଏକୋନବିଂଶୋଽଧ୍ୟାୟଃ—ତୁଳାମାନପୌତବମ୍—ଆଦିତଶ୍ଚତ୍ୱାରିଂଶଃ ।

(୧) ମାନାଧ୍ୟକ୍ଷ ଅର୍ଥାତ୍ ପୌତବାଧ୍ୟକ୍ଷ ଦେଶ ଓ କାଳର ପରିମାଣ ଜାଣିବାକୁ ହେବ । (୨) ଆଠଗୋଟି 'ପରମାଣୁ'ରେ ରଥଚକ୍ର ଘୂର୍ଣ୍ଣନ ବେଳେ ସେଥିରୁ ଉଠୁଥିବା ଏକ 'ଧୂଳିକଣି' ହୁଏ । ଏହିପରି ଆଠଗୋଟି ଧୂଳିକଣରେ ଏକ 'ଲିକ୍ଷା', ଆଠ ଲିକ୍ଷାରେ ଏକ 'ଯୂକାମଧ୍ୟ', ଆଠ 'ଯୂକାମଧ୍ୟ'ରେ ଗୋଟିଏ 'ଯବମଧ୍ୟ' ଏବଂ ଆଠ ଯବମଧ୍ୟରେ ଏକ ଅଙ୍ଗୁଳ ହୁଏ । * ମଧ୍ୟମ ଆକାର ପୁରୁଷର ମଧ୍ୟଅଙ୍ଗୁଳିର ମଧ୍ୟଭାଗର ମୋଟା ଅଂଶରେ ମାପରେ ମଧ୍ୟ ଏକ ଅଙ୍ଗୁଳ ହୁଏ । (୩) ଚାରି ଅଙ୍ଗୁଳରେ ଏକ ଧନୁର୍ଗ୍ରହ, ଆଠ ଅଙ୍ଗୁଳରେ ଏକ ଧନୁର୍ମୁଷ୍ଟି, ବାର ଅଙ୍ଗୁଳରେ ଏକ ବିତସ୍ତି

---

* ଶହେ ଅଂଗୁଳ ଉଚ୍ଚ ଓ ପଞ୍ଚଚାଳିଶି ଅଙ୍ଗୁଳ ମୋଟା ଥିବା ପୁରୁଷକୁ ମଧ୍ୟମପୁରୁଷ କୁହାଯାଏ । ଇତି ଭଟ୍ଟସ୍ୱାମୀ ।

ଅଷ୍ଟଂଗୁଳା ଧନୁର୍ମୁଷ୍ଟିଃ । ଦ୍ୱାଦଶାଙ୍ଗୁଳା ବିତସ୍ତିଃ ଛାୟାପୌରୁଷଂ ଚ । ଚତୁର୍ଦ୍ଦଶାଙ୍ଗୁଳଂ ଶମଃ ଶଳଃ ପରିରୟଃ ପଦଂ ଚ । ଦ୍ୱିବିତସ୍ତି-ରରତ୍ନିଃ ପ୍ରାଜାପତ୍ୟୋ ହସ୍ତଃ । ସଧନୁର୍ଗ୍ରହଃ ପୌତବବିବୀତମାନମ୍ । ସଧନୁର୍ମୁଷ୍ଟିଃ କିଷ୍କୁଃ କଂସୋ ବା । (୪) ଦ୍ୱିଚତ୍ୱାରିଂଶଦଂଗୁଳ-ସ୍ତକ୍ଷ୍ଣଃ, କ୍ରାକଚକିକିଷ୍କୁଃ, ସ୍କନ୍ଧାବାରଦୁର୍ଗରାଜପରିଗ୍ରହମାନମ୍ । ଚତୁଷ୍ପଞ୍ଚାଶଦଙ୍ଗୁଳଃ କୁପ୍ୟବନହସ୍ତଃ । ଚତୁରଶୀତ୍ୟଙ୍ଗୁଳୋ ବ୍ୟାମୋ ରଜ୍ଜୁମାନଂ ଖାତପୌରୁଷଂ ଚ । ଚତୁରରତ୍ନିର୍ଦଣ୍ଡୋ ଧନୁର୍ନାଳିକା

ଓ ଛାୟାପୁରୁଷ *, ଚଉଦ ଅଙ୍ଗୁଳରେ ଏକ 'ଶମ', 'ଶଳ', 'ପରିରୟ' ବା ପଦ ହୁଏ । ଚବିଶ ଅଙ୍ଗୁଳ ( ଦୁଇ ବିତସ୍ତି ✝ )ରେ ଏକ ଅରତ୍ନି ବା ପ୍ରାଜାପତ୍ୟ ହସ୍ତ ଅର୍ଥାତ୍ ବିଶ୍ୱକର୍ମାଙ୍କ ସମ୍ମତ ହସ୍ତ ହୁଏ । ଏକ ପ୍ରାଜାପତ୍ୟ ହସ୍ତ ସହିତ ଏକ ଧନୁର୍ଗ୍ରହ ମିଶି ଅଠେଇଶି ଅଙ୍ଗୁଳର ଏକ ମାପଦଣ୍ଡ ହୁଏ । ଏଥିରେ କାଠନିକିତିର ଦଣ୍ଡ, ଗୋଚର ପଡ଼ିଆଭୂମି ମାପ କରାଯାଏ । ଏହି ମାପଦଣ୍ଡକୁ 'ପୌତବ ବିବୀତ ମାନଦଣ୍ଡ' କହନ୍ତି । ଏକ ପ୍ରାଜାପତ୍ୟ ହସ୍ତ ସହିତ ଏକ ଧନୁର୍ମୁଷ୍ଟି ମିଶିଲେ ଯେଉଁ ବତିଶି ଅଙ୍ଗୁଳର ମାପଦଣ୍ଡ ହୁଏ ତାହାକୁ 'କିଷ୍କୁ' ବା 'କଂସ' ନାମକ ମାପଦଣ୍ଡ କହନ୍ତି । (୪) ବଢ଼େଇମାନଙ୍କ କରତଦ୍ୱାରା କଟାଯାଇଥିବା କାଠ ଇତ୍ୟାଦି ଯେଉଁ ମାନଦଣ୍ଡ (ମାପବାଡ଼ି=ହାତ)ରେ ମପାଯାଏ ତାହାକୁ 'କ୍ରକଚକିଷ୍କୁ' କହନ୍ତି । ଏହାର ଦୈର୍ଘ୍ୟ ବୟାଳିଶ ଅଙ୍ଗୁଳ । ଏଥିଦ୍ୱାରା ସୈନ୍ୟଛାଉଣି, ଦୁର୍ଗ ଓ ରାଜଭବନାଦି ସ୍ଥାନ ମପାଯାଏ । ଚଉବନ ଅଙ୍ଗୁଳର ମାପଦଣ୍ଡକୁ 'କୁପ୍ୟ ବନହସ୍ତ' କହନ୍ତି । ଏଥିଦ୍ୱାରା ମହାବୃକ୍ଷ ଥିବା ବନକୁ ମାପ କରାଯାଏ । ଚଉରାଶୀ ଅଙ୍ଗୁଳର ମାପଦଣ୍ଡକୁ 'ବ୍ୟାମ' କହନ୍ତି । ଏଥିଦ୍ୱାରା ଦଉଡ଼ି ମାପିବା ଓ କୁଅଁ ପ୍ରଭୃତି ଗାତ କେତେ ମଣିଷ ଗଭୀର ଖୋଳାହେଲା ତାହା ମାପିବା କାର୍ଯ୍ୟ ସମ୍ପନ୍ନ ହୁଏ । ଚାରି ଅରତ୍ନି ଅର୍ଥାତ୍ ଛୟାଣୋଇ ଅଙ୍ଗୁଳରେ ଏକ 'ଦଣ୍ଡ', 'ଧନୁ', 'ନାଳିକା' ଓ 'ପୌରୁଷ' ନାମକ ମାପଦଣ୍ଡ ହୁଏ । ଗୃହପତି ଅର୍ଥାତ୍ ବିଶ୍ୱକର୍ମାଙ୍କ ସମ୍ମତ ଗାର୍ହପତ୍ୟ

* ଛାୟାପୁରୁଷ = ଶଂକୁ = ବାରଅଙ୍ଗୁଳ କାଠି ।

✝ ବିତସ୍ତିର୍ଦ୍ୱାଦଶାଂଗୁଳଃ । ଇତ୍ୟମରଃ ।

ପୌରୁଷଂ ଚ । ଗାର୍ହପତ୍ୟମଷ୍ଟଶତାଙ୍ଗୁଳଂ ଧନୁଃ ପଥିପ୍ରାକାରମାନମ୍ । ପୌରୁଷଂ ଚ ଅଗ୍ନିଚତ୍ୟାନାମ୍ । ଷଟ୍‌କଂସୋ ଦଣ୍ଡୋ ବ୍ରହ୍ମଦେୟାତିଥ୍ୟମାନମ୍ । ଦଶଦଣ୍ଡୋ ରଜ୍ଜୁଃ । ଦ୍ୱିରଜ୍ଜୁକଃ ପରିଦେଶଃ । ତ୍ରିରଜ୍ଜୁକଂ ନିବର୍ତ୍ତନମ୍ । ଏକତୋ ଦ୍ୱିଦଣ୍ଡାଧିକୋ ବାହୁଃ । ଦ୍ୱିଧନୁସ୍‌ସହସ୍ରଂ ଗୋରୁତମ୍ । ଚତୁର୍ଗୋରୁତଂ ଯୋଜନମ୍ । ଇତି ଦେଶମାନମ୍ । (୫) କାଳମାନମତ ଊର୍ଦ୍ଧ୍ୱମ୍ । ତ୍ରୁଟୋ ଲବୋ ନିମେଷଃ କାଷ୍ଠା କଳା ନାଳିକା ମୁହୂର୍ତ୍ତଃ ପୂର୍ବାପରଭାଗୌ ଦିବସୋ ରାତ୍ରିଃ ପକ୍ଷୋ ମାସ ଋତୁରୟନଂ ସମ୍ବତ୍ସରୋ ଯୁଗମିତି କାଳାଃ । (୬) ନିମେଷଚତୁର୍ଭାଗସ୍ତ୍ରୁଟଃ । ଦ୍ୱୌ ତ୍ରୁଟୌ ଲବଃ ।

---

ଧନୁ (ମାପଦଣ୍ଡ)ର ପ୍ରମାଣ ଶହେ ଆଠ ଅଙ୍ଗୁଳ । ଏଥିଦ୍ୱାରା ରାଜମାର୍ଗ ଓ ପାଚେରି ମାପ କରାଯାଏ । ଏହି ଶହେ ଆଠ ଅଙ୍ଗୁଳର 'ପୌରୁଷ' ନାମକ ମାପଦଣ୍ଡ ଦ୍ୱାରା ଅଗ୍ନିଚୟନ କର୍ମଯୁକ୍ତ ଯଜ୍ଞବେଦୀ ମାପ କରାଯାଏ । ଛ କଂସ ବା ଶହେ ବୟାଳିଶ ଅଙ୍ଗୁଳର ଏକ ମାପଦଣ୍ଡରେ ବ୍ରାହ୍ମଣମାନଙ୍କୁ ଦେବା ଭୂମି ଓ ଅତିଥି ଅଭ୍ୟାଗତମାନଙ୍କ ସତ୍କାର ସକାଶେ ଦିଆଯିବା ଭୂମି ମାପ କରାଯାଏ । ଦଶଦଣ୍ଡ ବା ଚାଳିଶି ହାତରେ ଗୋଟିଏ 'ରଜ୍ଜୁ', ଦୁଇ ରଜ୍ଜୁରେ ଏକ 'ପରିଦେଶ' * ଓ ତିନି ରଜ୍ଜୁରେ ଏକ 'ନିବର୍ତ୍ତନ' ହୁଏ । ଏହି 'ପରିଦେଶ' ଓ 'ନିବର୍ତ୍ତନ' ବର୍ଗମାପରେ ବ୍ୟବହୃତ ହୁଏ । 'ନିବର୍ତ୍ତନ'ର ଏକ ଦିଗରେ ଦୁଇ ଦଣ୍ଡ ବଢ଼ାଇଦେଲେ ଅର୍ଥାତ୍ ଦୀର୍ଘ ବତିଶି ଦଣ୍ଡ ଏବଂ ପ୍ରସ୍ଥ ତିରିଶି ଦଣ୍ଡ କରି ନିର୍ମାଣ କଲେ ତାହାର ନାମ 'ବାହୁ' ହୁଏ । ଦୁଇହଜାର ଧନୁରେ ଏକ 'ଗୋରୁତ' (କୋଶ) ହୁଏ ଏବଂ ଚାରି କୋଶରେ ଏକ 'ଯୋଜନ' ହୁଏ । ଏଠାରେ ଦେଶମାନ ଶେଷ ହେଲା । (୫) ଏଠାରୁ ସତର ପ୍ରକାର କାଳର ବିଚାର କରାଯିବ । ତ୍ରୁଟ, ଲବ, ନିମେଷ, କାଷ୍ଠା, କଳା, ନାଳିକା, ମୁହୂର୍ତ୍ତ, ପୂର୍ବଭାଗ, ଅପରଭାଗ, ଦିବସ, ରାତ୍ରି, ପକ୍ଷ, ମାସ, ଋତୁ, ଅୟନ, ସମ୍ବତ୍ସର ଓ ଯୁଗଭେଦରେ କାଳ ସତର ପ୍ରକାର । (୬) ନିମେଷ ଅର୍ଥାତ୍ ଆଖିର ପଲକ ପକାଇବାକୁ ଯେତକ ସମୟ ଲାଗେ ସେହି ସମୟର ଚାରିଭାଗରୁ ଏକଭାଗକୁ ଏକ 'କାଳପରମାଣୁ'

---

* ପରିଦେଶ, ନିବର୍ତ୍ତନ = Square measure.

ଦ୍ୱୌ ଲବୌ ନିମେଷଃ । ପଞ୍ଚ ନିମେଷାଃ କାଷ୍ଠା । ତ୍ରିଂଶତ୍ କାଷ୍ଠାଃ କଳା । ଚତ୍ୱାରିଂଶତ୍ କଳା ନାଡ଼ିକା (ନାଳିକା) । ସୁବର୍ଣ୍ଣମାଷକାଶ୍ଚତ୍ୱାରଶ୍ଚତୁରଙ୍ଗୁଳାୟାମାଃ କୁମ୍ଭଚ୍ଛିଦ୍ରମାଢ଼କମମ୍ଭସୋ ବା ନାଳିକା । ଦ୍ୱିନାଳିକୋ ମୁହୂର୍ତ୍ତଃ । ପଞ୍ଚଦଶମୁହୂର୍ତ୍ତୋ ଦିବସୋ ରାତ୍ରିଶ୍ଚ ଚୈତ୍ରେ ମାସ୍ୟାଶ୍ୱୟୁଜେ ଚ ମାସି ଭବତଃ । ତତଃପରଂ ତ୍ରିଭିର୍ମୁହୂର୍ତ୍ତୈରନ୍ୟତରଃ ଷଣ୍ମାସଂ ବର୍ଦ୍ଧତେ ହ୍ରସତେ ଚେତି । (୭) ଛାୟାୟାମଷ୍ଟପୌରୁଷ୍ୟାମଷ୍ଟାଦଶଭାଗଶ୍ଛେଦଃ, ଷଟ୍ପୌରୁଷ୍ୟାଂ ଚତୁର୍ଦ୍ଦଶଭାଗଃ, ଚତୁଷ୍ପୌରୁଷ୍ୟାମଷ୍ଟଭାଗଃ, ଦ୍ୱିପୌରୁଷ୍ୟାଂ ଷଡ୍ଭାଗଃ, ପୌରୁଷ୍ୟାଂ ଚତୁର୍ଭାଗଃ, ଅଷ୍ଟାଙ୍ଗୁଳାୟାଂ, ତ୍ରୟୋଦଶ ଭାଗାଃ,

---

ବା 'ତ୍ରୁଟ' (ତ୍ରୁଟି) କହନ୍ତି । ଦୁଇ ତ୍ରୁଟରେ ଏକ 'ଲବ', ଦୁଇ ଲବରେ ଗୋଟିଏ 'ନିମେଷ', ପାଞ୍ଚ ନିମେଷରେ ଏକ 'କାଷ୍ଠା', ତିରିଶି କାଷ୍ଠାରେ ଏକ 'କଳା', ଚାଳିଶି କଳାରେ ଏକ 'ନାଡ଼ିକା' ବା 'ନାଳିକା' । ଅଥବା ସୁବର୍ଣ୍ଣ-ମସା ଓଜନର ଚାରି ମସା ଓଜନରେ ଚାରି ଅଙ୍ଗୁଳ ଲମ୍ବା ଥିବା କୌଣସି ଧାତୁନଳୀ ତିଆରି କରି ଗୋଟିଏ କୁମ୍ଭରେ ଛିଦ୍ରକରି ତହିଁରେ ଏହି ନଳୀକୁ ଲଗାଇ ଏକ ଆଢ଼କ ଜଳଦ୍ୱାରା ଉକ୍ତ କୁମ୍ଭକୁ ପୂର୍ଣ୍ଣ କରିବାକୁ ହେବ । କୁମ୍ଭତଳେ ଲଗିଥିବା ଉକ୍ତ ନଳୀଦ୍ୱାରା ଯେତିକ ସମୟରେ ଏହି ଆଢ଼କ ପରିମିତ ଜଳ ବହିର୍ଗତ ହୁଏ, ସେହି ସମୟକୁ ମଧ୍ୟ 'ନାଳିକା' କହନ୍ତି । ଦୁଇ ନାଳିକାରେ ଏକ ମୁହୂର୍ତ୍ତ । ପନ୍ଦର ମୁହୂର୍ତ୍ତରେ କେବଳ ଚୈତ୍ର ଓ ଅଶ୍ୱିନ ମାସର ଏକ ଦିନ ବା ଏକ ରାତି ହୁଏ ଅର୍ଥାତ୍ ଏହି ଦୁଇ ମାସରେ ସୂର୍ଯ୍ୟ ଠିକ୍ ବିଷୁବରେଖାରେ ପହଞ୍ଚିଥିବା ଯୋଗୁଁ ଏପରି ପନ୍ଦର ମୁହୂର୍ତ୍ତର ଏକ ସମରାତ୍ରି ଓ ପନ୍ଦର ମୁହୂର୍ତ୍ତର ସମଦିବସ ହୁଏ । ତା'ପରେ ଛ'ମାସ ତିନିମୁହୂର୍ତ୍ତ ହିସାବରେ କ୍ରମବୃଦ୍ଧି ଓ ଛ'ମାସ ତିନିମୁହୂର୍ତ୍ତ ହିସାବରେ କ୍ରମହ୍ରାସ ହୁଏ । (୭) ଛାଇମାପ କଲେ ଯଦି ଛାୟା ଆଠପୁରୁଷ ଅର୍ଥାତ୍ ଛୟାଶୋଇଁ ଅଙ୍ଗୁଳ ହୁଏ, ତେବେ ଦିନର ଅଠରଭାଗରୁ ଏକଭାଗ ଶେଷ ହେଲା ବୋଲି ଜାଣିବାକୁ ହେବ । ଛାୟା ଛ'ପୁରୁଷ ଅର୍ଥାତ୍ ବାସ୍ତୋରି ଅଙ୍ଗୁଳ ହେଲେ ଦିବସର ଚଉଦଭାଗରୁ ଏକଭାଗ, ଚାରିପୁରୁଷ ଅର୍ଥାତ୍ ଅଠଚାଳିଶି

ଚତୁରଙ୍ଗୁଳାୟାମ୍ ଅଷ୍ଟଭାଗଃ, ଅଚ୍ଛାୟୋ ମଧ୍ୟାହ୍ନ ଇତି । ପରବୃତ୍ତେ ଦିବସେ ଶେଷମେବଂ ବିଦ୍ୟାତ୍ । (୮) ଆଷାଢ଼େ ମାସି ନଷ୍ଟଚ୍ଛାୟୋ ମଧ୍ୟାହ୍ନୋ ଭବତି । ଅତଃପରଂ, ଶ୍ରାବଣାଦୀନାଂ ଷଣ୍ମାସାନାଂ ଦ୍ୱ୍ୟଙ୍ଗୁଳୋତ୍ତରା ମାଘାଦୀନାଂ ଦ୍ୱ୍ୟଙ୍ଗୁଳାବରା ଛାୟା ଇତି । (୯) ପଞ୍ଚଦଶାହୋରାତ୍ରାଃ ପକ୍ଷଃ । ସୋମାପ୍ୟାୟନଃ ଶୁକ୍ଳଃ । ସୋମାବଚ୍ଛେଦନୋ ବହୁଳଃ । ଦ୍ୱିପକ୍ଷୋ ମାସଃ । ତ୍ରିଂଶଦହୋରାତ୍ରଃ ପ୍ରକର୍ମମାସଃ । ସାର୍ଦ୍ଧଃ

---

ଅଙ୍ଗୁଳ ହେଲେ ଦିବସର ଆଠଭାଗରୁ ଏକଭାଗ, ଚବିଶ ଅଙ୍ଗୁଳ ହେଲେ ଛ'ଭାଗରୁ ଏକଭାଗ, ବାର ଅଙ୍ଗୁଳ ହେଲେ ଚାରିଭାଗରୁ ଏକଭାଗ, ଆଠ ଅଙ୍ଗୁଳ ହେଲେ ଦଶଭାଗରୁ ତିନିଭାଗ ଓ ଚାରି ଅଙ୍ଗୁଳ ହେଲେ ଦିବସର ଆଠଭାଗରୁ ତିନିଭାଗ ବ୍ୟତୀତ ହେଲା ବୋଲି ଜାଣିବାକୁ ହେବ । ଛାଇ ଆଦୌ ନରହି ସୂର୍ଯ୍ୟ ସିଧା ମସ୍ତକ ଉପରେ ରହିଲେ ମଧ୍ୟାହ୍ନ ବୋଲି ଜାଣିବାକୁ ହେବ । ପୂର୍ବାହ୍ଣର ସମୟ ଉକ୍ତ ନିୟମରେ ଜାଣିବା ପରେ ଅପରାହ୍ଣରେ ଛାଇ ଲେଉଟିବା ବେଳେ ପୂର୍ବାହ୍ଣର ଓଲଟା ଆକାରରେ ସମୟର ହିସାବ ଜାଣିବାକୁ ହେବ—ଅର୍ଥାତ୍ ଅପରାହ୍ଣରେ ଚାରି ଅଙ୍ଗୁଳ ଛାଇ ଗଢ଼ିଲେ ଦିବସର ଆଠଭାଗରୁ ତିନିଭାଗ ଅବଶିଷ୍ଟ ଅଛି ବୋଲି ଜାଣିବାକୁ ହେବ ଏବଂ ଛାଇ ଆଠ ଅଙ୍ଗୁଳ ହେଲେ ଦିବସର ଦଶଭାଗରୁ ତିନିଭାଗ ଅବଶିଷ୍ଟ ଅଛି—ଏହି କ୍ରମରେ ଛୟାଣୋଇଁ ଅଙ୍ଗୁଳ ଛାୟା ହେବା ପର୍ଯ୍ୟନ୍ତ ହିସାବ ଜାଣିବାକୁ ହେବ । (୮) ଆଷାଢ଼ମାସର ମଧ୍ୟାହ୍ନ ସମୟରେ ଛାୟାର ଚିହ୍ନ ରହେ ନାହିଁ । ଶ୍ରାବଣମାସଠାରୁ ପୌଷମାସଯାଏ ଛ'ମାସ, ପ୍ରତିମାସରେ ଛାୟା ଦୁଇ ଦୁଇ ଅଙ୍ଗୁଳ ବୃଦ୍ଧିପାଏ ଏବଂ ମାଘମାସଠାରୁ ଆଷାଢ଼ଯାଏ ଛ'ମାସ, ପ୍ରତିମାସରେ ଛାୟା ଦୁଇ ଦୁଇ ଅଙ୍ଗୁଳ ହ୍ରାସ ହୁଏ । (୯) ପନ୍ଦର ଅହୋରାତ୍ରରେ ଏକ 'ପକ୍ଷ' ହୁଏ । ଯେଉଁ ପକ୍ଷରେ ଚନ୍ଦ୍ରର କ୍ରମବୃଦ୍ଧି ହୁଏ, ତାହାକୁ 'ଶୁକ୍ଳପକ୍ଷ' ଏବଂ ଯେଉଁ ପକ୍ଷରେ ଚନ୍ଦ୍ରର କ୍ରମହ୍ରାସ ହୁଏ ତାହାକୁ 'ବହୁଳ' ବା 'କୃଷ୍ଣପକ୍ଷ' କୁହାଯାଏ । ଦୁଇପକ୍ଷରେ ଏକ 'ମାସ' ହୁଏ । ତିରିଶି ଅହୋରାତ୍ରରେ ଏକ 'ପ୍ରକର୍ମ ମାସ' ଅର୍ଥାତ୍ ରାଜକର୍ମଚାରୀମାନଙ୍କୁ ବେତନ ଦେବା ସକାଶେ ନିର୍ଦ୍ଦିଷ୍ଟ ହୋଇଥିବା ମାସ ହୁଏ । ସାଢ଼େ ତିରିଶି

ସୌରଃ । ଅର୍ଦ୍ଧନ୍ୟୂନଶ୍ଚାନ୍ଦ୍ରମାସଃ । ସପ୍ତବିଂଶତର୍ନାକ୍ଷତ୍ରମାସଃ । ଦ୍ୱାତ୍ରିଂଶନ୍ମଳମାସଃ । ପଞ୍ଚତ୍ରିଂଶଦଶ୍ୱବାହାୟାଃ । ଦ୍ୱୌମାସାବୃତୁଃ । ଶ୍ରାବଣଃ ପ୍ରୌଷ୍ଠପଦଶ୍ଚ ବର୍ଷାଃ । ଆଶ୍ୱୟୁଜଃ କାର୍ତ୍ତିକଶ୍ଚ ଶରତ୍ । ମାର୍ଗଶୀର୍ଷଃ ପୌଷଶ୍ଚ ହେମନ୍ତଃ । ମାଘଃ ଫାଲ୍ଗୁନଶ୍ଚ ଶିଶିରଃ । ଚୈତ୍ରୋ ବୈଶାଖଶ୍ଚ ବସନ୍ତଃ । ଜ୍ୟେଷ୍ଠାମୂଳୀୟ ଆଷାଢ଼ଶ୍ଚ ଗ୍ରୀଷ୍ମଃ । ଶିଶିରାଦ୍ୟୁତ୍ତରାୟଣମ୍ । ବର୍ଷାଦି ଦକ୍ଷିଣାୟନମ୍ । ଦ୍ୱ୍ୟୟନଃ ସମ୍ବତ୍ସରଃ । ପଞ୍ଚସମ୍ବତ୍ସରୋ ଯୁଗମିତି ।

(୧୦) ଦିବସସ୍ୟ ହରତ୍ୟର୍କଃ ଷଷ୍ଟିଭାଗମୃତୌ ତତଃ ।
କରୋତ୍ୟେକମହଶ୍ଛେଦଂ ତଥୈବୈକଂ ଚ ଚନ୍ଦ୍ରମାଃ ॥

---

ଅହୋରାତ୍ର (ଦିନ ଓ ରାତି)ରେ ଏକ 'ସୌରମାସ' ଏବଂ ସାଢ଼େ ଅଣତିରିଶି ଦିନରେ ଏକ 'ଚାନ୍ଦ୍ରମାସ', ସତେଇଶି ଦିନରେ ଏକ 'ନାକ୍ଷତ୍ରିକମାସ', ବତିଶି ଅହୋରାତ୍ରରେ ଏକ 'ମଳମାସ', ପଞ୍ଚତିରିଶି ଅହୋରାତ୍ରରେ 'ଅଶ୍ୱବାହ' (ଘୋଡ଼ାସାଆଣି) ମାନଙ୍କୁ ଦରମା ଦେବା ସକାଶେ ନିର୍ଦ୍ଦିଷ୍ଟ ହୋଇଥିବା ମାସ ଏବଂ ଚାଳିଶି ଅହୋରାତ୍ରରେ 'ହସ୍ତିବାହ' (ହାତୀମାହୁନ୍ତ) ମାନଙ୍କୁ ଦରମା ଦେବା ସକାଶେ ନିର୍ଦ୍ଦିଷ୍ଟ ହୋଇଥିବା ମାସ ହୁଏ । ଦୁଇମାସରେ (ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷ ଲକ୍ଷଣଯୁକ୍ତ ତିରିଶି ଅହୋରାତ୍ରରେ ହେଉଥିବା ମାସ ଦୁଇଟିରେ) ଗୋଟିଏ ଋତୁ ହୁଏ । ଶ୍ରାବଣ ଓ ଭାଦ୍ରପଦ ମାସ (ଭାଦ୍ରବମାସ)ରେ ବର୍ଷାଋତୁ, ଅଶ୍ୱିନ ଓ କାର୍ତ୍ତିକମାସରେ ଶରତ୍‌ଋତୁ, ମାର୍ଗଶିର ଓ ପୌଷମାସରେ ହେମନ୍ତଋତୁ, ମାଘ ଓ ଫାଲ୍‌ଗୁନମାସରେ ଶୀତଋତୁ, ଚୈତ୍ର ଓ ବୈଶାଖମାସରେ ବସନ୍ତଋତୁ, ଜ୍ୟେଷ୍ଠ ଓ ଅଷାଢ଼-ମାସରେ ଗ୍ରୀଷ୍ମଋତୁ ହୁଏ । ଶୀତ, ବସନ୍ତ ଓ ଗ୍ରୀଷ୍ମ ଏହି ତିନିଋତୁରେ ଉତ୍ତରାୟଣ ଏବଂ ବର୍ଷା, ଶରତ୍ ଓ ହେମନ୍ତ ଏହି ତିନିଋତୁରେ ଦକ୍ଷିଣାୟନ ହୁଏ । ଦୁଇଟି ଅୟନରେ ଗୋଟିଏ ସମ୍ବତ୍ସର ଓ ପାଞ୍ଚ ସମ୍ବତ୍ସରରେ ଗୋଟିଏ ଯୁଗ ହୁଏ । (୧୦, ୧୧) ସୂର୍ଯ୍ୟ ଏକ ଅହୋରାତ୍ରର ଷାଠିଏ ଭାଗରୁ ଏକଭାଗ ହରଣ କରେ ଏବଂ ଚନ୍ଦ୍ର ଅହୋରାତ୍ରର ଷାଠିଏ ଭାଗରୁ ଏକଭାଗ ଛିନ୍ନ କରେ ।.ଏପରି ଏକ ଋତୁ ଅର୍ଥାତ୍ ଦୁଇମାସରେ ସୂର୍ଯ୍ୟଚନ୍ଦ୍ର ଦୁଇଦିନ ବଳକା କରି ସାଢ଼େ ଦୁଇବର୍ଷ (ତିରିଶି ମାସ)ରେ ତିରିଶି ଦିନ ବଳକା କରିବା

(୧୯) ଏବମର୍ଧତୃତୀୟାନାମବ୍ଦାନାମଧିମାସକମ୍ ।
ଗ୍ରୀଷ୍ମେ ଜନୟତଃ ପୂର୍ବଂ ପଞ୍ଚାବ୍ଦାନ୍ତେ ଚ ପଶ୍ଚିମମ୍ ॥

ଫଳରେ ଗୋଟିଏ ମଳମାସ ହୁଏ । ଏହାକୁ ଅଧିମାସ କହନ୍ତି । ଏହା ମାଘମାସଠାରୁ ଆରମ୍ଭ କରି ଗଣନା କଲେ ତିରିଶି ମାସଠାରେ ପ୍ରଥମେ ଗ୍ରୀଷ୍ମଋତୁ ଶେଷରେ ଅର୍ଥାତ୍ ଆଷାଢ଼ମାସରେ ଗୋଟିଏ ଅଧିମାସ ଏବଂ ଏହାପରେ ପୁଣି ଅପର ତିରିଶି ମାସରେ ଠିକ୍ ପୌଷମାସରେ ଅନ୍ୟ ଏକ ଅଧିମାସ ପଡ଼େ । ଏପରି ପାଞ୍ଚବର୍ଷ ଭିତରେ ଦୁଇଟି ମଳମାସ ସୂର୍ଯ୍ୟଚନ୍ଦ୍ରଙ୍କ ଗତି କ୍ରମରୁ ହୋଇଥାଏ । ※

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ବିଂଶୋଽଧ୍ୟାୟଃ ।
ଦେଶକାଳମାନମ୍—ଆଦିତଃ ଏକଚତ୍ୱାରିଂଶଃ ।

---

※ ସୂର୍ଯ୍ୟଚନ୍ଦ୍ରଙ୍କଦ୍ୱାରା ତିରିଶି ଦିନରେ ଏକ ଅଧିମାସ ହୁଏ ବୋଲି ଶେଷ ଦୁଇଟି ଶ୍ଳୋକରେ ଲେଖାଯାଇଥିବା ଯୋଗୁଁ ପୂର୍ବବର୍ତ୍ତୀ ଦ୍ୱାତ୍ରିଂଶାଦ୍ ମଲମାସଃ । "ସୂତ୍ର ସମ୍ଭବତଃ ଦ୍ୱାତ୍ରିଂଶାଦ୍ ମଲ୍ଲମାସଃ" ଅର୍ଥାତ୍ ବତିଶି ଦିନରେ ମଲ୍ଲମାନଙ୍କୁ ବେତନ ଦେବା ମାସ ହୁଏ । ଏପରି ହେବ ବୋଲି ଡାକ୍ତର ଜେ. ଏଫ୍. ଫ୍ଲୀଟ୍ କହନ୍ତି । କାରଣ ତାର ପରବର୍ତ୍ତୀ ସୂତ୍ରରେ ପଞ୍ଚତ୍ରିଂଶଦଶ୍ୱବାହାସ୍ୟାଃ, ଚତ୍ୱାରିଂଶଦ୍ଧସ୍ତିବାହାସ୍ୟାଃ ପ୍ରଭୃତି ଘୋଡ଼ାସାହାଣି ଓ ହାତୀମାହୁନ୍ତଙ୍କ ବେତନ ଦେବା ମାସର ବିବରଣୀ ରହିଛି ।

ମଳମାସ ବା ଅଧିମାସର ଲକ୍ଷଣ:—

ଅମାବସ୍ୟାଦ୍ୱୟଂ ଯତ୍ର ରବିସଂକ୍ରାନ୍ତି ବର୍ଜିତମ୍ ।
ମଲମାସଃ ସବିଜ୍ଞେୟୋ ବିଷ୍ଣୁଃ ସ୍ୱପିତି କର୍କଟେ ॥

ମଳମାସ ଅର୍ଥାତ୍ ସଂକ୍ରାନ୍ତିବର୍ଜିତ ଦୁଇଟି ଅମାବାସ୍ୟା ମଧ୍ୟରେ ହେବା ଅଧିମାସ ।

## ଏକବିଂଶୋଽଧ୍ୟାୟଃ

## ଊନଚତ୍ୱାରିଂଶ ପ୍ରକରଣମ୍—ଶୁଲ୍କାଧ୍ୟକ୍ଷଃ

### THE SUPERINTENDENT OF TOLLS

( ଶୁଲ୍କ ଅର୍ଥାତ୍ ପନ୍ଦରଭାଗରୁ ରାଜଦେୟ ଏକଭାଗ ଇତ୍ୟାଦିର ଅଧ୍ୟକ୍ଷଙ୍କ ବ୍ୟାପାର )

(୧) ଶୁଲ୍କାଧ୍ୟକ୍ଷଃ ଶୁଲ୍କଶାଳାଂ ଧ୍ୱଜଂ ଚ ପ୍ରାଙ୍ମୁଖମ୍ ଉଦଙ୍ମୁଖଂ ବା ମହାଦ୍ୱାରାଭ୍ୟାଶେ ନିବେଶୟେତ୍ । (୨) ଶୁଲ୍କାଦାୟିନଶ୍ଚତ୍ୱାରଃ ପଞ୍ଚ ବା ସାର୍ଥୋପୟାତାନ୍ ବଣିଜୋ ଲିଖେୟୁଃ ।—କେ କୁତସ୍ତ୍ୟାଃ କିୟତ୍ପଣ୍ୟାଃ କ୍ୱ ଚାଭିଜ୍ଞାନମୁଦ୍ରା ବା କୃତେତି । (୩) ଅମୁଦ୍ରାଣାମତ୍ୟୟୋ ଦେୟଦ୍ୱିଗୁଣଃ । କୂଟମୁଦ୍ରାଣାଂ ଶୁଲ୍କାଷ୍ଟଗୁଣୋ ଦଣ୍ଡଃ । ଭିନ୍ନମୁଦ୍ରାଣାମତ୍ୟୟୋ

---

(୧) ଶୁଲ୍କଶାଳାର ଅଧ୍ୟକ୍ଷ ନଗରର ପ୍ରଧାନ ଦ୍ୱାର ନିକଟରେ ପୂର୍ବ ବା ଉତ୍ତର ମୁଖ କରି ଶୁଲ୍କଶାଳା ଓ ତାହାର ଧ୍ୱଜ (ଶୁଲ୍କଶାଳା ଜ୍ଞାପକ ସାଙ୍କେତିକ ଚିହ୍ନ ବା ପତାକା) ନିର୍ମାଣ କରାଇବେ । (୨) ଶୁଲ୍କାଧ୍ୟକ୍ଷଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା ଚାରି ବା ପାଞ୍ଚଜଣ ଶୁଲ୍କଗ୍ରାହୀ କର୍ମଚାରୀ, ବିକ୍ରେୟ ପଦାର୍ଥ ସହିତ ଆସିଥିବା ବ୍ୟବସାୟୀମାନଙ୍କଠାରୁ ନାମ, ଜାତି ଇତ୍ୟାଦି ଲେଖିନେବେ, ଅର୍ଥାତ୍ କେଉଁ ବ୍ୟବସାୟୀମାନେ କେଉଁ ରାଜ୍ୟର ଲୋକ, ସେମାନଙ୍କ ନାମ ଓ ଜାତି କ'ଣ, ବିକ୍ରେୟ ଜିନିସର ନାମ ଓ ପରିମାଣ ତଥା ଅନ୍ତପାଳ କର୍ତ୍ତୃକ ବିଭିନ୍ନ ବିକ୍ରେୟ ପଦାର୍ଥର ମୋଟରୀ ଗଣ୍ଠିରୀ ଉପରେ ଉପଯୁକ୍ତ ମୋହର ବା ସୀଲ୍ ଦିଆଯାଇଛି କି ନାହିଁ ଇତ୍ୟାଦି ବିଷୟ ତଦନ୍ତ କରି ଲେଖିନେବେ । (୩) ଅନ୍ତପାଳଙ୍କ ମୋହର ନଥାଇ ଯେଉଁ ବ୍ୟବସାୟୀମାନେ ବିକ୍ରେୟ ପଦାର୍ଥ ଧରି ଆସିଥିବେ ସେମାନଙ୍କଠାରୁ ଅନ୍ତପାଳ ଦେୟ ବର୍ତ୍ତନୀର ଦୁଇଗୁଣ ଧନ ଆଦାୟ କରିବାକୁ ହେବ । ଅର୍ଥାତ୍ ଉକ୍ତ ବ୍ୟବସାୟୀମାନେ ସେମାନଙ୍କ ବିକ୍ରେୟ ପଦାର୍ଥମାନଙ୍କ ଉପରେ ନିର୍ଦ୍ଧାରିତ ହୋଇଥିବା ଶୁଲ୍କର ଦୁଇଗୁଣ ଜରିମାନା ଦେବେ । ଯଦି କୌଣସି ବ୍ୟବସାୟୀ ତାଙ୍କ ବିକ୍ରେୟ ପଦାର୍ଥ ଉପରେ ପ୍ରକୃତ ସୀଲ୍

ଘଟିକାଃ ସ୍ଥାନେ ସ୍ଥାନମ୍ । ରାଜମୁଦ୍ରାପରିବର୍ତ୍ତନେ ନାମକୃତେ ବା ସପାଦପଣିକଂ ବହନଂ ଦାପୟେତ୍ । (୪) ଧ୍ୱଜମୂଳୋପସ୍ଥିତସ୍ୟ ପ୍ରମାଣମର୍ଘଂ ଚ ବୈଦେହକାଃ ପଣ୍ୟସ୍ୟ ବ୍ରୂୟୁଃ—ଏତତ୍ପ୍ରମାଣେନାର୍ଘେଣ ପଣ୍ୟମିଦଂ କଃ କ୍ରେତେତି । ତ୍ରିରୁଦ୍ଘୋଷିତମର୍ଥିଭ୍ୟୋ ଦଦ୍ୟାତ୍ । କ୍ରେତୃସଂଘର୍ଷେ ମୂଲ୍ୟବୃଦ୍ଧିଃ ।

(ମୁଦ୍ରା ବା ମୋହର) ନ ବସାଇ ଜାଲ ମୋହର (Counterfeit seal) ବସାଇବାର ଜଣାପଡ଼େ, ତେବେ ତାଙ୍କୁ ଉକ୍ତ ବିକ୍ରେୟ ପଦାର୍ଥ ଉପରେ ଧାର୍ଯ୍ୟ ହୋଇଥିବା ଶୁଳ୍କର ଅଠଗୁଣ ଜରିମାନା କରିବାକୁ ହେବ । ଯଦି କୌଣସି ବ୍ୟବସାୟୀଙ୍କ ବିକ୍ରେୟ ପଦାର୍ଥ ଉପରେ ଥିବା ମୋହର ପୋଛି ବା ଚିରି ହୋଇଯାଇଥାଏ, ତେବେ ସେହି ବ୍ୟବସାୟୀଙ୍କୁ ଅନ୍ୟ ବ୍ୟାବସାୟୀଙ୍କ ଦୃଷ୍ଟିରେ ପଡୁଥିବା ରାଜଶୁଳ୍କ ଶାଳର କୌଣସି * ନିର୍ଦ୍ଦିଷ୍ଟ ଜାଗାରେ ତିନିଘଡ଼ି ପର୍ଯ୍ୟନ୍ତ ଅଟକ କରି, ତଦନ୍ତ ପରେ ବିହିତ ବ୍ୟବସ୍ଥା କରିବେ । ରାଜକୀୟ ମୋହର ପରିବର୍ତ୍ତନ କରିବା ବା ଜିନିଷର ନାମ ବଦଳାଇଥିବା ବିଷୟ ଜଣାଗଲେ ବ୍ୟବସାୟୀଠାରୁ ସଉଥ ଏକପଣ (୧¼ ପଣ) ଅସୁଲ କରି ଉକ୍ତ ପଦାର୍ଥ ବହନ କରୁଥିବା ବ୍ୟକ୍ତିଙ୍କୁ ରାଜକର୍ମଚାରୀମାନେ ଦଆଇଦେବେ । (୪) ରାଜକୀୟ ଶୁଳ୍କଶାଳାର ଧ୍ୱଜମୂଳସ୍ଥ ପ୍ରାଙ୍ଗଣରେ ବ୍ୟବସାୟୀମାନେ ନିଜ ନିଜର ବିକ୍ରେୟ ପଦାର୍ଥ ରଖି ଉକ୍ତ ପଦାର୍ଥମାନଙ୍କ ପରିମାଣ ଓ ମୂଲ୍ୟ ଘୋଷଣା କରି କହିବେ—"ଅମୁକ ପରିମାଣ ପଦାର୍ଥର ମୂଲ୍ୟ ଏତେ । ଏହା କିଏ କିଣିବ ?"—ଏପରି ଉଚ୍ଚ ସ୍ୱରରେ ତିନିଥର ଘୋଷଣା କରିବା ପରେ ଯେଉଁ ଗ୍ରାହକ ଏହି ଜିନିଷର ପ୍ରାର୍ଥୀ ହେବେ ତାହାଙ୍କୁ ଦେଇଦେବେ । ଏପରି କରିବା ଫଳରେ କ୍ରେତାମାନଙ୍କ ମଧ୍ୟରେ ଯଦି ସଂଘର୍ଷମୂଳକ ପ୍ରତିଯୋଗିତା ହୁଏ, ତେବେ ନିଲାମଡ଼ାକ-ପଦାର୍ଥର ମୂଲ୍ୟ ବଢେ । ଉଚ୍ଚ ଦରରେ ନିଲାମ ଡାକିବା ଗ୍ରାହକଙ୍କୁ ଉକ୍ତ ଜିନିଷ ସମର୍ପଣ କରି ବ୍ୟବସାୟୀମାନେ ନିଜ ଜିନିଷର ମୂଲ୍ୟ ପାଇବେ ଏବଂ ନିଲାମରୁ ଉଠିଥିବା ଅତିରିକ୍ତ ଧନ ରାଜପ୍ରାପ୍ୟ ଶୁଳ୍କ ସହିତ

* ଯେଉଁ ସ୍ଥାନରେ କି ଅସମୟରେ ବେଆଇନଭାବେ ଯାତାୟାତ କରିବା ବ୍ୟକ୍ତିମାନଙ୍କୁ ଅଟକ ରଖାଯାଏ ।

ସଶୁଲ୍କା କୋଶଂ ଗଚ୍ଛେତ୍ । (୫) ଶୁଲ୍କଭୟାତ୍ ପଣ୍ୟପ୍ରମାଣଂ ମୂଲ୍ୟଂ ବା ହୀନଂ ବ୍ରୁବତସ୍ତଦତିରିକ୍ତଂ ରାଜା ହରେତ୍ । ଶୁଲ୍କମଷ୍ଟଗୁଣଂ ବା ଦଦ୍ୟାତ୍ । ତଦେବ ନିବଷ୍ଟପଣ୍ୟସ୍ୟ ଭାଣ୍ଡସ୍ୟ ହୀନପ୍ରତିବର୍ଣ୍ଣକେନାର୍ଘାପକର୍ଷଣେ ସାରଭାଣ୍ଡସ୍ୟ ଫଲ୍ଗୁଭାଣ୍ଡେନ ପ୍ରତିଚ୍ଛାଦନେ ଚ କୁର୍ଯ୍ୟାତ୍ । (୬) ପ୍ରତିକ୍ରେତୃଭୟାଦ୍ ବା ପଣ୍ୟମୂଲ୍ୟାଦୁପରି ମୂଲ୍ୟଂ ବର୍ଧୟତୋ ମୂଲ୍ୟବୃଦ୍ଧିଂ ରାଜା ହରେଦ୍, ଦ୍ୱିଗୁଣଂ ବା ଶୁଲ୍କଂ କୁର୍ଯ୍ୟାତ୍ । ତଦେବାଷ୍ଟଗୁଣମଧ୍ୟକ୍ଷସ୍ୟ-

---

ରାଜକୋଷକୁ ଗୃହୀତ ହେବ । (୫) ଯେଉଁ ବ୍ୟବସାୟୀ ଶୁଲ୍କ ଦେବାକୁ ଡରି ନିଜ ବିକ୍ରେୟ ଜିନିଷର ପରିମାଣ ଓ ମୂଲ୍ୟ କମ୍ କରି କହନ୍ତି, ତାହା ଜଣାପଡ଼ିବା ପରେ, ତାଙ୍କ ପଦାର୍ଥର ପରିମାଣ ଓ ମୂଲ୍ୟ ସେ ଯେତିକି କହିଥିବେ ତାଙ୍କୁ ସେତିକି ମୂଲ୍ୟ ଦେଇ ବଳକା ପଦାର୍ଥ ଓ ତାର ମୂଲ୍ୟ ରାଜା ରାଜକୋଷକୁ ନେଇଯିବେ । ଅଥବା ଉକ୍ତ ପଦାର୍ଥ ଉପରେ ଧାର୍ଯ୍ୟ ହୋଇଥିବା ଶୁଲ୍କର ଅଠଗୁଣ ବେପାରୀଠାରୁ ଜରିମାନା ରୂପେ ଆଦାୟ କରିବାକୁ ହେବ । ଯଦି କୌଣସି ବ୍ୟବସାୟୀ ଶୁଲ୍କ ଦେବା ଭୟରେ ମୂଲ୍ୟବାନ୍ ସାର ପଦାର୍ଥକୁ ସିନ୍ଦୁକ, ଭାଣ୍ଡ ଓ ମୁଣା ଇତ୍ୟାଦିରେ ଲୁଚାଇ ରଖି ନିକୃଷ୍ଟ ଧରଣର ପ୍ରତିବର୍ଣ୍ଣିକ (ନମୁନା) ଦେଖାଇ ଶୁଲ୍କ ସଂଗ୍ରହକାରୀ କର୍ମଚାରୀମାନଙ୍କୁ ପ୍ରତାରଣା କରନ୍ତି କିମ୍ବା ମଣିମୁକ୍ତାଦି ମୂଲ୍ୟବାନ୍ ସାରପଦାର୍ଥକୁ କପା ତୁଳା ଇତ୍ୟାଦି ଅଳ୍ପମୂଲ୍ୟ ପଦାର୍ଥଦ୍ୱାରା ଘୋଡ଼ାଇ ରଖି ସାଧାରଣ ଜିନିଷରୂପେ ପରିଚୟ କରାଇବାକୁ ପ୍ରଯତ୍ନ କରନ୍ତି, ତେବେ ତଦନ୍ତ ପରେ ଉକ୍ତ ସାର ପଦାର୍ଥଗୁଡ଼ିକୁ ରାଜକୋଷକୁ ନେଇଯାଇ ସେ ଯେଉଁ ଜିନିଷ ବୋଲି ପ୍ରକୃତ ଜିନିଷକୁ ପରିଚିତ କରାଉଥିଲେ ତାଙ୍କୁ ସେହି ସାରହୀନ ଜିନିଷ ଦେଇଦେବେ କିମ୍ବା ପ୍ରକୃତ ଜିନିଷ ଉପରେ ଧାର୍ଯ୍ୟହେବା ନ୍ୟାଯ୍ୟ ଶୁଲ୍କର ଅଠଗୁଣ ଧନ ତାଙ୍କଠାରୁ ଅସୁଲ କରିବେ । (୬) କୌଣସି କିଣିବା ବ୍ୟକ୍ତି ଯଦି ସେ ଗ୍ରହଣ କରୁଥିବା ଜିନିଷ ଅନ୍ୟ କେହି କ୍ରେତା କିଣି ନେଇଯିବାର ଭୟକରି ଉକ୍ତ ଜିନିଷର ପ୍ରକୃତ ମୂଲ୍ୟଠାରୁ ଅଧିକ ମୂଲ୍ୟ ବୃଦ୍ଧି କରି କିଣେ, ତେବେ ରାଜା ବା ଶୁଲ୍କାଧ୍ୟକ୍ଷ ବ୍ୟବସାୟୀଠାରୁ ଏହି ଅଧିକା ମୂଲ୍ୟ ରାଜକୋଷକୁ ନେଇଯିବେ, କିମ୍ବା ଜିନିଷ ଉପରେ ଧାର୍ଯ୍ୟ ହୋଇଥିବା

ଚ୍ଛାଦୟତଃ । (୭) ତସ୍ମାଦ୍ ବଳୟଃ ପଣ୍ୟାନାଂଧୃତୋ ମିତୋ ଗଣିତୋ ବା କାର୍ୟ୍ୟଃ, ତର୍କଃ ଫଲ୍ଗୁଭାଣ୍ଡାନାମନୁଗ୍ରାହ୍ୟକାଣାଂ ଚ । (୮) ଧ୍ୱଜମୂଳମତକ୍ରାନ୍ତାନାଂ ଚାକୃତଶୁଲ୍କାନାଂ ଶୁଲ୍କାଦଷ୍ଟଗୁଣୋ ଦଣ୍ଡଃ । ପଥିକୋତ୍ପଥିକାସ୍ତଦ୍ ବଦ୍ୟୁଃ । (୯) ବୈବାହିକମନ୍ୱାୟନ-ମୌପାୟନକଂ ଯଜ୍ଞକୃତ୍ୟପ୍ରସବନୈମିତ୍ତିକଂ ଦେବେଜ୍ୟା-ଚୌଳୋପନୟନଗୋଦାନବ୍ରତଦୀକ୍ଷାଦଷୁ କ୍ରିୟାବଶେଷେଷୁ ।

---

ପ୍ରକୃତ ଶୁଳ୍କର ଦୁଇଗୁଣ ଆଦାୟ କରିବେ । ଯଦି ଶୁଲ୍କାଧ୍ୟକ୍ଷ ବ୍ୟବସାୟୀ-ମାନଙ୍କଠାରୁ ଲାଞ୍ଚ ଗ୍ରହଣ କରି କିମ୍ବା ପ୍ରିୟାପ୍ରୀତି ଦୃଷ୍ଟିରେ ବ୍ୟବସାୟୀମାନଙ୍କ ଦୋଷକୁ ଘୋଡ଼ାଇଦିଅନ୍ତି, ତେବେ ରାଜା ଶୁଲ୍କାଧ୍ୟକ୍ଷଙ୍କଠାରୁ ସେହି ବ୍ୟବସାୟୀମାନଙ୍କର ବିକ୍ରେୟ ପଦାର୍ଥ ଉପରେ ଧାର୍ଯ୍ୟ ହୋଇଥିବା ଶୁଳ୍କର ଆଠଗୁଣ ଧନ ଆଦାୟ କରିବେ । (୭) ଉପରୋକ୍ତ ଦୁର୍ନୀତି-ନିବାରଣ ସକାଶେ ତୁଳଯୋଗ୍ୟ, ମାପଯୋଗ୍ୟ ଓ ଗଣନାଯୋଗ୍ୟ ବିକ୍ରେୟ ପଦାର୍ଥ-ଗୁଡ଼ିକୁ ଉତ୍ତମଭାବେ ତୁଳାଇ, ମପାଇ ଓ ଗଣତି କରାଇ ବିକ୍ରୟ କରିବା ପାଇଁ ଶୁଲ୍କାଧ୍ୟକ୍ଷ ବ୍ୟବସ୍ଥା କରିବେ । ଲବଣ ଓ ଅଙ୍ଗାର ପ୍ରଭୃତି ଅଲ୍ପମୂଲ୍ୟର ପଦାର୍ଥମାନଙ୍କ ମାପ, ଓଜନ ଓ ମୂଲ୍ୟ ଅନୁମାନ କରି କରଧାର୍ଯ୍ୟ କରିବାକୁ ହେବ । (୮) ଯେଉଁ ବ୍ୟବସାୟୀ ଶୁଲ୍କଶାଳାର ଧ୍ୱଜସ୍ଥାନ ଅର୍ଥାତ୍ ଶୁଲ୍କଦେୟ ସ୍ଥାନ ଅତିକ୍ରମକରି ଶୁଲ୍କ ନଦେଇ ଚାଲିଯାଏ ତାହାଠାରୁ ସେ ଆଣିଥିବା ଜିନିସ ଉପରେ ଧାର୍ଯ୍ୟ ହେଉଥିବା ନ୍ୟାଯ୍ୟ ଶୁଲ୍କର ଆଠଗୁଣ ଆଦାୟ କରିବାକୁ ହେବ । ଏମାନଙ୍କୁ ଧରିବା ସକାଶେ ବା ଦରକାର ବେଳେ ସାକ୍ଷ୍ୟ ଦେବା ସକାଶେ ଛଦ୍ମବେଶୀ ବେପାରୀ, କାଠ ଓ ଘାସବୁହାଳି ବା ପଶୁପାଳକମାନଙ୍କୁ ଶୁଲ୍କାଧ୍ୟକ୍ଷ ନିଯୁକ୍ତ କରିବେ । (୯) ବିବାହରେ ଉପଯୋଗ ହେବା ପଦାର୍ଥ, କୌତୁକ, ଭେଟି, ଯଜ୍ଞସକାଶେ ଉପଯୋଗୀ ହେବା ଘୃତାଦି ପଦାର୍ଥ, ପ୍ରସବ ସକାଶେ ( ଜାତକର୍ମାଦି ସକାଶେ ) ଉପଯୋଗୀ ହେବା ଔଷଧାଦି ପଦାର୍ଥ, ଦେବପୂଜା ପ୍ରଭୃତିରେ ଉପଯୋଗୀ ହେବା ପତ୍ରପୁଷ୍ପଫଳମୂଳାଦି ପଦାର୍ଥ, ଚୂଡ଼ାକର୍ମ, ଉପନୟନ, ଗୋଦାନ ଅର୍ଥାତ୍ କେଶଖଣ୍ଡନାଖ୍ୟ ବୈଦିକ ସଂସ୍କାର, ବ୍ରତ ଓ ଦୀକ୍ଷାଗ୍ରହଣାଦି କାର୍ଯ୍ୟମାନଙ୍କ ସକାଶେ ଉପଯୋଗୀ ହେବା ପଦାର୍ଥମାନଙ୍କରୁ ଶୁଲ୍କ ଗ୍ରହଣ

ଷଣ୍ଡମୁଚ୍ଛୁଲ୍କଂ ଗଚ୍ଛେତ୍ । ଅନ୍ୟଥାବାଦନଃ ସ୍ତେୟଦଣ୍ଡଃ । (୧୦) କୃତଶୁଲ୍କେନାକୃତଶୁଲ୍କଂ ନିର୍ବାହୟତୋ ଦ୍ୱିତୀୟମେକମୁଦ୍ରୟା ଭିତ୍ୱା ପୁଟମପହରତୋ ବୈଦେହକସ୍ୟ ତଚ୍ଚ ତାବଚ୍ଚ ଦଣ୍ଡଃ । ଶୁଲ୍କସ୍ଥାନାଦ୍ ଗୋମୟପଲାଳଂ ପ୍ରମାଣଂ କୃତ୍ୱାପହରତ ଉତ୍ତମଃ ସାହସଦଣ୍ଡଃ । ଶସ୍ତ୍ରବର୍ମ୍ମକବଚଲୋହରଥରତ୍ନଧାନ୍ୟପଶୂନା-

---

ହରିବାକୁ ହେବ ନାହିଁ ଅର୍ଥାତ୍ ଉକ୍ତ ପଦାର୍ଥମାନଙ୍କୁ ବିନାଶୁଲ୍କଗ୍ରହଣରେ ଛାଡ଼ିଦେବାକୁ ହେବ । କିନ୍ତୁ ଯେଉଁ ବ୍ୟକ୍ତି (ବଣିକ) ଅନ୍ୟ କାର୍ଯ୍ୟ ଓ ବ୍ୟାପାର ସକାଶେ ସଂଗ୍ରହ କରିଥିବା ପଦାର୍ଥକୁ ଉପରୋକ୍ତ ବିବାହାଦି କାର୍ଯ୍ୟର ଉପଯୋଗୀ ପଦାର୍ଥ ବୋଲି ମିଥ୍ୟାପ୍ରସଙ୍ଗ କରନ୍ତି, ସେହି ବ୍ୟକ୍ତିଙ୍କୁ ଧର୍ମ୍ମସ୍ଥୀୟ ପ୍ରକରଣୋକ୍ତ ବିଧାନାନୁସାରେ ଚୌର୍ଯ୍ୟଦଣ୍ଡ ପରି ଦଣ୍ଡ ଦେବାକୁ ହେବ । (୧୦) ଶୁଲ୍କ ଦିଆଯାଇଥିବା ବହୁଳ ଜିନିଷ ସହିତ ଶୁଲ୍କ ନ ଦିଆଯାଇଥିବା କେତେକ ଜିନିଷ ପାର କରିଦେବା (ଏହା ଗୋଟିଏ ଅପରାଧ), ମୋହର ଦିଆଯାଇଥିବା ଜିନିଷ ଶୁଲ୍କ ଗ୍ରହଣକାରୀ କର୍ମ୍ମଚାରୀଙ୍କୁ ଦେଖାଇ ତା ସହିତ ମୋହର ଦିଆଯାଇନଥିବା କେତେକ ତା' ସମାନ ଜିନିଷ ଗୁପ୍ତଭାବରେ ପାରକରିଦେବା (ଏହା ଅନ୍ୟ ଏକ ଅପରାଧ) ଏବଂ ମୋହର ଦିଆଯାଇଥିବା ଓ ଶୁଲ୍କ ଦିଆଯାଇଥିବା ପଦାର୍ଥର ପେଡ଼ି, ବସ୍ତା ବା ବୁଜୁଲି ଫିଟାଇ ସେଭିତରେ ଶୁଲ୍କ ଦିଆଯାଇ ନଥିବା ଜିନିଷ ଭରିକରିଥିବା ବ୍ୟବସାୟୀଙ୍କୁ ବେଆଇନ୍‌ଭାବେ ପାରକରିଥିବା ପଦାର୍ଥର ସମପରିମାଣ ଅର୍ଥଦଣ୍ଡ ଦେବେ କିମ୍ବା ସେହି ବେଆଇନ୍‌ଭାବେ ନିଆଯାଇଥିବା ପଦାର୍ଥଗୁଡ଼ିକ ରାଜକୋଷରେ ମିଶାଇଦେବେ । ଯେଉଁ ବେପାରୀ ସ୍ୱର୍ଣ୍ଣରୂପ୍ୟାଦି ପଦାର୍ଥକୁ ଗୋବର ଓ ପାଳବିଣ୍ଡା ଭିତରେ ଲୁଚାଇ ନେଇଯାଉଥିବା ଧରାପଡ଼େ, ସେହି ବେପାରୀଙ୍କୁ ଉତ୍ତମସାହସଦଣ୍ଡ (ଏକହଜାର ଟଙ୍କାର ଅର୍ଥଦଣ୍ଡ) ପ୍ରଦାନ କରିବେ । ରାଜା ନିଷେଧ କରିଥିବା ଶସ୍ତ୍ର, ବର୍ମ୍ମ (ଭିନ୍ନ ଭିନ୍ନ ଅଙ୍ଗରକ୍ଷକ କବଚ), କବଚ (ସମଗ୍ର ଶରୀରରକ୍ଷକ କବଚ), ଲୌହାଦି ଧାତୁପଦାର୍ଥ, ରଥ, ରତ୍ନ, ଧାନ୍ୟ ଓ ପଶୁମାନଙ୍କ ମଧ୍ୟରୁ କୌଣସି ଗୋଟିକୁ ବା କେତେଗୋଟିକୁ ଯଦି କୌଣସି ବେପାରୀ ସ୍ୱଦେଶରୁ ରପ୍ତାନି କରନ୍ତି ରାଜା ସେହି ଅପରାଧ ପାଇଁ ଘୋଷଣା କରିଥିବା

ମନ୍ୟତମାନର୍ବାହ୍ୟଂ ନର୍ବାହୟତୋ ଯଥାବଘୁଷିତୋ ଦଣ୍ଡଃ ପଣ୍ୟନାଶଶ୍ଚ । ତେଷାମନ୍ୟତମସ୍ୟାନୟନେ ବହିରେବୋଚ୍ଛୁଲ୍କଂ ବକ୍ରୟଃ । (୧୧) ଅନ୍ତପାଳଃ ସପାଦପଣିକାଂ ବର୍ତ୍ତନୀଂ ଗୃହ୍ଣୀୟାତ୍ ପଣ୍ୟବହନସ୍ୟ, ପଣିକାମେକଖୁରସ୍ୟ, ପଶୂନାମର୍ଦ୍ଧପଣିକାଂ, କ୍ଷୁଦ୍ରପଶୂନାଂ ପାଦକାମ୍, ଅଂସଭାରସ୍ୟ ମାଷିକାମ୍ । ନଷ୍ଟାପହୃତଂ ଚ ପ୍ରତବଦଧ୍ୟାତ୍ । (୧୨) ବୈଦେଶ୍ୟଂ ସାର୍ଥଂ କୃତସାରଫଲ୍ଗୁ ଭାଣ୍ଡବଚୟନମଭିଜ୍ଞାନଂ ମୁଦ୍ରାଂ ଚ ଦତ୍ତ୍ୱା ପ୍ରେଷୟେଦଧ୍ୟକ୍ଷସ୍ୟ

---

ଦଣ୍ଡ ସେ ଭୋଗକରିବେ ଓ ତାଙ୍କର ଉକ୍ତ ଜିନିସ ବାଜ୍ୟାପ୍ତ କରି ଦିଆଯିବ । ଏପରି ନିଷେଧ କରାଯାଇଥିବା କୌଣସି ଜିନିସକୁ ଯଦି କୌଣସି ବେପାରୀ ବାହାରୁ ଆମଦାନୀ କରନ୍ତି, ତେବେ ସେହି ଜିନିସଗୁଡ଼ିକୁ ଦୁର୍ଗବାହାରେ ବିନାଶୁଲ୍କରେ ବିକ୍ରୟ କରିଯିବ ଅର୍ଥାତ୍ ଏହା ରାଜାଙ୍କର ନିଜର ଜିନିସ ଭାବରେ ବିକ୍ରୀ କରିଦିଆଯିବ । (୧୧) ଅନ୍ତପାଳ (The officer in charge of boundaries) ବିକ୍ରୀ ଜିନିସ ବହି ଆଣୁଥିବା ଶଗଡ଼ପିଚ୍ଛା ସୌଞ୍ଚା ଏକପଣ (୧¼ ପଣ) ବର୍ତ୍ତିନୀ (ଅର୍ଥାତ୍ ମାର୍ଗରକ୍ଷା ବେତନ ସକାଶେ ଆଦାୟ କରାଯିବା ପଥକର) ଆଦାୟ କରିବେ । ଘୋଡ଼ା, ଖଚର ଓ ଗଧ ପ୍ରଭୃତି ଏକଫାଳିଆ ଖୁରାଥିବା ଜନ୍ତୁପିଚ୍ଛା ଏକପଣ, ପିଠିଆବଳଦ ପ୍ରଭୃତି ଦୁଇଫାଳିଆ ଖୁରାଥିବା ଜନ୍ତୁପିଚ୍ଛା ଅଧପଣ, ଛେଳି ମେଣ୍ଢା ଆଦି କ୍ଷୁଦ୍ର ପଶୁମାନଙ୍କ ସକାଶେ ସର୍ତ୍ତ୍ୱାପଣ (¼ ପଣ) ଏବଂ କାନ୍ଧରେ ବୁହାହୋଇ ଆସୁଥିବା ଭାରପିଚ୍ଛା ଏକ ତାମ୍ରମସା ବର୍ତ୍ତିନୀ ଆଦାୟ କରିବେ । କୌଣସି ବେପାରୀର ଜିନିସ ହେଜିଗଲେ ବା ଅନ୍ତପାଳଙ୍କ ଅବ୍ୟବସ୍ଥା ଯୋଗୁଁ ନଷ୍ଟ ହୋଇଗଲେ ଅନ୍ତପାଳ ସେ ବେପାରୀର ଏହି ଜିନିସ ଖୋଜାଇ ଆଣିଦେବେ ବା ସେମାନଙ୍କର ଯାହା ଯାହା କ୍ଷତି ହୋଇଥିବ ତାହା ନିଜେ ଦେଇଦେବେ । (ବ୍ୟବସାୟୀମାନଙ୍କ ପଣ୍ୟ ପଦାର୍ଥର ନିରାପତ୍ତା ବିଷୟରେ ରାଜକୀୟ ଦାୟିତ୍ୱ ଥିବା ଯୋଗୁଁ ଏପରି ବ୍ୟବସ୍ଥା ବାଧ୍ୟବାଧକ ଭାବେ କରାଯାଇଥାଏ) । (୧୨) ଅନ୍ତପାଳ—ବିଦେଶାଗତ ବଣିକ୍‌ସଙ୍ଘର ମୂଲ୍ୟବାନ୍ ଓ ସାଧାରଣ ପଦାର୍ଥଗୁଡ଼ିକୁ ଉତ୍ତମରୂପେ ପରୀକ୍ଷା କରି ଓ ସେଥିରେ ନିଜର ମୋହର ଓ ଚିଠିଦେଇ ଶୁଲ୍କାଧ୍ୟକ୍ଷଙ୍କ ନିକଟକୁ ଏହି ବଣିକ୍‌ସଙ୍ଘକୁ

(୧୩) ବୈଦେହକବ୍ୟଂଜନୋ ବା ସାର୍ଥପ୍ରମାଣଂ ରାଜ୍ଞଃ ପ୍ରେଷୟେତ୍ । ତେନ ପ୍ରଦେଶେନ ରାଜା ଶୁଲ୍କାଧ୍ୟକ୍ଷସ୍ୟ ସାର୍ଥପ୍ରମାଣମୁପଦଶେତ୍ ସର୍ବଜ୍ଞତ୍ୱଖ୍ୟାପନାର୍ଥମ୍ । ତତଃ ସାର୍ଥ-ମଧ୍ୟକ୍ଷୋଽଭିଗମ୍ୟ ବ୍ରୂୟାତ୍—ଇଦମମୁଷ୍ୟାମୁଷ୍ୟ ଚ ସାରଭାଣ୍ଡଂ ଫଲ୍ଗୁଭାଣ୍ଡଂ ଚ ନ ନିଗୂହିତବ୍ୟମ୍, ଏଷ ରାଜ୍ଞଃ ପ୍ରଭାବଃ ଇତି । ହୃତଃ ଫଲ୍ଗୁଭାଣ୍ଡଂ ଶୁଲ୍କାଷ୍ଟଗୁଣୋ ଦଣ୍ଡଃ, ସାରଭାଣ୍ଡଂ ର୍ବାପହାରଃ ।

(୧୪) ରାଷ୍ଟ୍ରପୀଡ଼ା କରଂ ଭାଣ୍ଡମୁଚ୍ଛିନ୍ଦ୍ୟାଦଫଳଂ ଚ ଯତ୍ ।
ମହୋପକାରମୁଚ୍ଛୁଲ୍କଂ କୁର୍ଯାତ୍ ବୀଜଂ ତୁ ଦୁର୍ଲଭମ୍ ॥

---

ପ୍ରେରଣ କରିବେ । (୧୩) ରାଜାଙ୍କ କର୍ତ୍ତୃକ ନିଯୁକ୍ତ ବେପାରୀ ବେଶରେ ରହିଥିବା ଗୁପ୍ତଚର ଉପରୋକ୍ତ ବଣିକ୍‌ସଙ୍ଘର ସମସ୍ତ ଖବର ରାଜାଙ୍କ ନିକଟରେ ପହଞ୍ଚାଇବେ । ରାଜା ଗୁପ୍ତଚରଠାରୁ ଏହି ବଣିକ୍‌ସଙ୍ଘର ସମସ୍ତ ବିଷୟ ଅବଗତ ହୋଇ ଶୁଲ୍କାଧ୍ୟକ୍ଷଙ୍କ ନିକଟକୁ ଉକ୍ତ ବଣିକ୍‌ସଙ୍ଘର ସମସ୍ତ ବିବରଣୀଯୁକ୍ତ ଉପଦେଶ ପତ୍ର ପଠାଇବେ । ଶୁଲ୍କାଧ୍ୟକ୍ଷ ରାଜାଙ୍କ ଉପଦେଶ-ପତ୍ର ପାଇବା ପରେ ବଣିକ୍‌ସଙ୍ଘକୁ ଯାଇ କହିବେ—ଅମୁକ ଅମୁକ ବେପାରୀଠାରେ ଅମୁକ ମୂଲ୍ୟବାନ୍ ଓ ଅମୁକ ସାଧାରଣ ଜିନିସ ଏତେ ପରିମାଣରେ ଅଛି ବୋଲି ରାଜା ତାଙ୍କର ସର୍ବଜ୍ଞପ୍ରଭାବ ଯୋଗୁଁ ଜାଣିପାରି ମତେ ଉପଦେଶ ଦେଲେଣି । ଅତଏବ ଏଥିରୁ କୌଣସିଟି ହେଲେ ଲୁଗୁଇ ହେବ ନାହିଁ କିମ୍ବା ଭୁଲାଇ ହେବ ନାହିଁ । ଶୁଲ୍କାଧ୍ୟକ୍ଷ ଏପରି କହିବା ସତ୍ତ୍ୱେ କୌଣସି ବେପାରୀ ଯଦି କାର୍ପାସାଦି ହୀନମୂଲ୍ୟର ପଦାର୍ଥ ଲୁଗୁଛପା କରନ୍ତି, ତେବେ ଉକ୍ତ ପଦାର୍ଥ ଉପରେ ଧାର୍ଯ୍ୟହେବା ଶୁଲ୍କର ଅଠଗୁଣ ଧନ ତାଙ୍କଠାରୁ ଅସୁଲ କରିବେ ଏବଂ ମଣିମୁକ୍ତାଦି ମୂଲ୍ୟବାନ୍ ପଦାର୍ଥ ଲୁଗୁଛପା କଲେ ସମସ୍ତ ପଦାର୍ଥ ରାଜକୋଷକୁ ନେଇଯିବେ । (୧୪) ରାଜା ରାଷ୍ଟ୍ରପୀଡ଼ାକର ଗରଳ, ମଦିରା ପ୍ରଭୃତି ପଣ୍ୟପଦାର୍ଥକୁ ରାଜ୍ୟରେ ପ୍ରବେଶ କରାଇଦେବେ ନାହିଁ । ଯଦି ଅଜ୍ଞାତଭାବରେ ଉକ୍ତ ଜିନିସ ରାଜ୍ୟରେ ପ୍ରବେଶ କରିବା ଜଣାପଡ଼େ ତେବେ ତାହାକୁ ନଷ୍ଟ

# ଦ୍ୱାବିଂଶୋଽଧ୍ୟାୟଃ

## ଊନଚତ୍ୱାରିଂଶ ପ୍ରକରଣମ୍

## ଶୁଲ୍କାଧ୍ୟକ୍ଷଃ—ଶୁଲ୍କ ବ୍ୟବହାରଃ

**REGULATION OF TOLL DUES**

( ଅମୁକ ପଣ୍ୟର ଏତକ ଶୁଲ୍କ, ଏବଂବିଧ ବ୍ୟବସ୍ଥାକରଣ )

(୧) ଶୁଲ୍କବ୍ୟବହାରଃ । ବାହ୍ୟମାଭ୍ୟନ୍ତରଂ ଚାତିଥ୍ୟଂ ନିଷ୍କ୍ରାମ୍ୟଂ ପ୍ରବେଶ୍ୟଂ ଚ ଶୁଲ୍କମ୍ । (୨) ପ୍ରବେଶ୍ୟାନାଂ

---

କରାଇଦେବେ । ଅଳ୍ପମୂଲ୍ୟର ବୀଜଗଣ, କଖାରୁ ଓ କାକୁଡ଼ି ପ୍ରଭୃତି ଜନପଦ ବାହାରୁ ନିଜରାଜ୍ୟକୁ ଅଣାଇବେ ନାହିଁ ଏବଂ ସ୍ୱଦେଶରେ ନ ମିଳୁଥିବା ମହାଉପକାରୀ ପଦାର୍ଥ ଅର୍ଥାତ୍ ଧାନ, ଯବ, ଗହମ ପ୍ରଭୃତି ପ୍ରଧାନ ଖାଦ୍ୟପଦାର୍ଥ ଓ ହରଡ଼ା, ଗୋଲମରିଚ, ଅଳାଇଚ ପ୍ରଭୃତି ଔଷଧୋପଯୋଗୀ ପଦାର୍ଥ ବିନାଶୁଲ୍କରେ ଅବାଧରେ ସ୍ୱଦେଶରେ ବିକ୍ରୀ ହେବା ପାଇଁ ଆଦେଶ ଦେବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଏକବିଂଶୋଽଧ୍ୟାୟଃ—ଶୁଲ୍କାଧ୍ୟକ୍ଷଃ—ଆଦିତୋ ଦ୍ୱିଚତ୍ୱାରିଂଶଃ ।

---

(୧) ଶୁଲ୍କର ବ୍ୟବହାରଃ—ବାହ୍ୟ, ଆଭ୍ୟନ୍ତର ଓ ଆତିଥ୍ୟଭେଦରେ ଶୁଲ୍କ ତିନିପ୍ରକାର ଏବଂ ଏହା ନିଷ୍କ୍ରାମ୍ୟ ଓ ପ୍ରବେଶ୍ୟ ଭେଦରେ ମଧ୍ୟ ଦୁଇପ୍ରକାର ଅଟେ । ନିଜରାଜ୍ୟରେ ଉତ୍ପନ୍ନ ହେବା ପଣ୍ୟପଦାର୍ଥ ସମ୍ବନ୍ଧୀୟ ଶୁଲ୍କକୁ 'ବାହ୍ୟ', ଦୁର୍ଗଭିତର ଜମିରେ ଉତ୍ପନ୍ନ ହେବା ପଣ୍ୟପଦାର୍ଥ ସମ୍ବନ୍ଧୀୟ ଶୁଲ୍କକୁ 'ଆଭ୍ୟନ୍ତର' ଏବଂ ବିଦେଶାଗତ ପଣ୍ୟପଦାର୍ଥ ସମ୍ବନ୍ଧୀୟ ଶୁଲ୍କକୁ 'ଆତିଥ୍ୟ' କୁହାଯାଏ । ସ୍ୱଦେଶରୁ ଅନ୍ୟଦେଶକୁ ରପ୍ତାନି କରିବା ପଣ୍ୟପଦାର୍ଥ ସମ୍ବନ୍ଧୀୟ ଶୁଲ୍କକୁ 'ନିଷ୍କ୍ରାମ୍ୟ' ଏବଂ ବିଦେଶରୁ ସ୍ୱଦେଶକୁ ଆମଦାନୀ କରାଯିବା ପଣ୍ୟପଦାର୍ଥ ସମ୍ବନ୍ଧୀୟ ଶୁଲ୍କକୁ 'ପ୍ରବେଶ୍ୟ' କୁହାଯାଏ । (୨) ପରଦେଶରୁ ଆସିଥିବା ପଣ୍ୟପଦାର୍ଥମାନଙ୍କର ମୂଲ୍ୟର

ମୂଲ୍ୟପଞ୍ଚଭାଗଃ । ପୁଷ୍ପଫଳଶାକମୂଳକନ୍ଦବଲ୍ଲିକ୍ୟବୀଜଶୁଷ୍କମତ୍ସ୍ୟ-ମାଂସାନାଂ ଷଡ଼୍‌ଭାଗଂ ଗୃହ୍ଣୀୟାତ୍ । ଶଙ୍ଖବଜ୍ରମଣିମୁକ୍ତାପ୍ରବାଳ-ହାରଣାଂ ତଜ୍ଜାତପୁରୁଷୈ କାରୟେତ୍ କୃତକର୍ମପ୍ରମାଣକାଳ-ବେତନଫଳନିଷ୍ପତ୍ତିଭିଃ । (୩) କ୍ଷୌମଦୁକୂଳକ୍ରିମିତାନକଂକଟ-[illegible]ଲମନଃଶିଳାହିଂଗୁଳୁକଲୋହବର୍ଣ୍ଣଧାତୂନାଂ ଚନ୍ଦନାଗୁରୁକଟୁକ-[illegible]ବାବସଣାଂ ସୁରାଦନ୍ତାଜିନକ୍ଷୌମଦୁକୂଳନିକରାସ୍ତରଣପ୍ରାବରଣ-[illegible]ମିଜାତାନାମଜୈଳକସ୍ୟ ଚ ଦଶଭାଗଃ, ପଞ୍ଚଦଶଭାଗୋ ବା ।

---

ପାଞ୍ଚଭାଗରୁ ଏକଭାଗ ପ୍ରବେଶ୍ୟ କର ରୂପେ ବିଦେଶାଗତ ବ୍ୟବସାୟୀ ମାନଙ୍କୁ ଦେବେ । ପୁଷ୍ପ (ନାନାବିଧ ଫୁଲ), ପଣସ କଦଳୀ ନଡ଼ିଆ ପ୍ରଭୃତି ଫଳ, ପାଳଙ୍ଗ ଲେଉଟିଆ ପ୍ରଭୃତି ଶାଗ, ଅଳୁ ମୂଳା ପ୍ରଭୃତି ମୂଳ, ବାରଓଲ କନ୍ଦମୂଳ ମାଣକନ୍ଦା ପ୍ରଭୃତି କନ୍ଦ, ଦ୍ରାକ୍ଷା ପଟୋଳ ଜହ୍ନି କଖାରୁ ପ୍ରଭୃତି ବଲ୍ଲିକ୍ୟ ଅର୍ଥାତ୍ ଲତାଜାତ ଫଳପରିବା, ଧାନ ମୁଗ ଚଣା ଶିମ୍ବ ପ୍ରଭୃତି ବୀଜ, ଶୁଷ୍କମତ୍ସ୍ୟ (ଶୁଖୁଆ) ଶୁଷ୍କମାଂସ ପ୍ରଭୃତି ପଦାର୍ଥମାନଙ୍କ ମୂଲ୍ୟର ଛ'ଭାଗରୁ ଏକଭାଗ 'କର' (ଶୁଲ୍କ) ସ୍ୱରୂପେ ଗ୍ରହଣ କରିବାକୁ ହେବ । ଶଙ୍ଖ, ହୀରା, ମଣି, ମୁକ୍ତା, ପୋହଳା, ହାର ପ୍ରଭୃତିର ଶୁଲ୍କ ଉକ୍ତ ପଦାର୍ଥ-ମାନଙ୍କର କାର୍ଯ୍ୟକାଳ, ମୂଲ୍ୟ, ଆକୃତି ପ୍ରଭୃତିକୁ ଜାଣିଥିବା ବିଶେଷଜ୍ଞମାନଙ୍କ ଦ୍ୱାରା ସ୍ଥିର କରାଇବାକୁ ହେବ । (୩) କ୍ଷୌମ (ସ୍ଥୂଳ ବଲ୍‌କଳ ପଟ୍ଟବସ୍ତ୍ର), ଦୁକୂଳ (ସୂକ୍ଷ୍ମ ବଲ୍‌କଳ ପଟ୍ଟବସ୍ତ୍ର), କ୍ରିମିତାନ (ଚୀନଦେଶୀୟ ପଟ୍ଟବସ୍ତ୍ର), କଂକଟ (ସୂତାର ସାଞ୍ଜୁ), ହରିତାଳ, ମନଃଶିଳ, ହିଙ୍ଗୁଳ, ଲୋହ ଓ ଗେରୁ ପ୍ରଭୃତି ବର୍ଣ୍ଣଧାତୁ ପଦାର୍ଥମାନଙ୍କର ଏବଂ ଚନ୍ଦନ, ଅଗୁରୁ, କଟୁକ ଅର୍ଥାତ୍ ପିପ୍‌ପଳୀ, ଶୁଣ୍ଠୀ ଓ ମରିଚ ପ୍ରଭୃତି କଟୁପଦାର୍ଥ, କିଣ୍ୱ (ସୁରାବୀଜ), ତୈଳଜାତୀୟ ଦ୍ରବପଦାର୍ଥ, ସୁରା, ଗଜଦନ୍ତ, କୃଷ୍ଣାଜିନ ପ୍ରଭୃତି ଚର୍ମ, କ୍ଷୌମ ଓ ଦୁକୂଳ ନିର୍ମାଣ ସକାଶେ ଉପଯୋଗୀ ହେବା ତନ୍ତୁସମୂହ, ଆସ୍ତରଣ (ଶେଜପଡ଼ା ବସ୍ତ୍ର), ପ୍ରାବରଣ (ଦ୍ୱାରଆବରକ ବସ୍ତ୍ର ବା କାର୍ଟେନ୍), କୋଷାସୂତାରେ ବୁଣାହେବା ପାଟ, ମଠା ଇତ୍ୟାଦ ବସ୍ତ୍ର ଓ ଛେଳି ମେଣ୍ଢା ପ୍ରଭୃତିଙ୍କ ଲୋମନିର୍ମିତ ଊର୍ଣ୍ଣବସ୍ତ୍ରର ମୂଲ୍ୟର ଦଶଭାଗରୁ ଏକଭାଗ କିମ୍ବା

(୪) ବସ୍ତ୍ରଚତୁଷ୍ପଦଦ୍ୱିପଦସୂତ୍ରକାର୍ପାସଗନ୍ଧଭୈଷଜ୍ୟକାଷ୍ଠବେଣୁ-ବଲ୍କଲଚର୍ମମୃଦ୍‌ଭାଣ୍ଡାନାଂ ଧାନ୍ୟସ୍ନେହକ୍ଷାରଲବଣମଦ୍ୟପକ୍ୱାନ୍ନାଦୀନାଂ ଚ ବିଂଶତିଭାଗଃ ପଞ୍ଚବିଂଶତିଭାଗୋ ବା । (୫) ଦ୍ୱାରଦେୟଂ ଶୁଲ୍କପଞ୍ଚଭାଗଃ । ଆନୁଗ୍ରାହିକଂ ବା ଯଥାଦେଶୋପକାରକଂ ସ୍ଥାପୟେତ୍ । (୬) ଜାତଭୂମିଷୁ ଚ ପଣ୍ୟାନାମ[redacted] ଖନିଭ୍ୟୋ ଧାତୁପଣ୍ୟାଦାନେ ଷଟ୍‌ଛତମତ୍ୟୟଃ । ପୁଷ୍ପଫଲବା[redacted] ପୁଷ୍ପଫଲାଦାନେ ଚତୁଷ୍ପଞ୍ଚାଶତ୍ପଣୋ ଦଣ୍ଡଃ । ଷଣ୍ଡେ[redacted] ଶାକମୂଳକନ୍ଦାଦାନେ ପାଦୋନଂ ଦ୍ୱିପଞ୍ଚାଶତ୍ପଣୋ ଦଣ୍ଡଃ ।

---

ପନ୍ଦରଭାଗରୁ ଏକଭାଗ ଶୁଳ୍କ ଗ୍ରହଣ କରାଯାଏ । (୪) ବସ୍ତ୍ର, ପଶୁ, ପକ୍ଷୀ, ସୂତା, କପା, ଅତର, ଔଷଧି, କାଠ, ବାଉଁଶ, ବକଳ, ଛାଲ, ମାଟିହାଣ୍ଡି ଏବଂ ଧାନ୍ୟ, ଘୃତ, ତେଲ, ଗୁଡ଼, ଲବଣ, ମଦ୍ୟ ଓ ଭାତ ରୁଟି ପ୍ରଭୃତି ପଦାର୍ଥମାନଙ୍କର ମୂଲ୍ୟର କୋଡ଼ିଏ ଭାଗରୁ ଏକଭାଗ କିମ୍ବା ପଚିଶି ଭାଗରୁ ଏକଭାଗ ଶୁଳ୍କ ଗ୍ରହଣ କରାଯାଏ । (୫) ଯେଉଁ ବିକ୍ରେୟ ପଦାର୍ଥ ଉପରେ ଯେତିକି ଶୁଳ୍କ ଧାର୍ଯ୍ୟ ହୋଇଥାଏ ତାର ପାଞ୍ଚଭାଗରୁ ଏକଭାଗ 'ଦ୍ୱାରଦେୟ ଶୁଳ୍କ' * ପ୍ରଧାନଦ୍ୱାରର ଅଧ୍ୟକ୍ଷ ଗ୍ରହଣ କରିବେ । ଯଦି ଦେଶର ଉପକାରୀ ପଦାର୍ଥ ହୋଇଥାଏ ତେବେ ତାର ଶୁଳ୍କ ଓ ଦ୍ୱାରରକ୍ଷକ ପାଇବା ଶୁଳ୍କ ସମ୍ବନ୍ଧେ ଅନୁଗ୍ରହପୂର୍ବକ ବ୍ୟବସ୍ଥା କରିବେ । (୬) ପଣ୍ୟପଦାର୍ଥ ଯେଉଁଠାରେ ଜାତହୁଏ ବା ପ୍ରସ୍ତୁତ ହୁଏ ସେଠାରେ ତାହା ବିକ୍ରୟ କରିବାକୁ ହେବ ନାହିଁ । ଏହି ନିଷେଧାଜ୍ଞାକୁ ଅବଜ୍ଞା କରି ଲୁହା ଲବଣାଦି ଖଣିରୁ ଉକ୍ତ ଦ୍ରବ୍ୟ ଆଣିବା ଓ ବିକ୍ରୟ କରିବା ବ୍ୟକ୍ତିଙ୍କୁ (ବିକିବା ଓ କିଣିବା ବ୍ୟକ୍ତିଙ୍କୁ) ଛ'ଶହ ପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଫୁଲ ଓ ଫଳ ବଗିଚାରୁ ଫୁଲ ଓ ଫଳ ବିକ୍ରୟ କରିବା ଓ କ୍ରୟ କରିବା ବ୍ୟକ୍ତିଙ୍କୁ ଚଉବନ ପଣ ଅର୍ଥଦଣ୍ଡ, ଶାକ, ମୂଳ, କନ୍ଦ ପ୍ରଭୃତିର ଉତ୍ପତ୍ତି କ୍ଷେତରୁ ଉକ୍ତ ପଦାର୍ଥ କ୍ରୟ କରିବା ଓ ବିକ୍ରୟ କରିବା ଉଭୟ ବ୍ୟକ୍ତିଙ୍କୁ ପାଏଊଣା

---

* ଦ୍ୱାରଦେୟ ଶୁଳ୍କ—Gate Dues.

କ୍ଷେତ୍ରେଭ୍ୟଃ ସର୍ବଶସ୍ୟାଦାନେ ତ୍ରିପଞ୍ଚାଶଦ୍ ପଣଃ, ପଣୋଽଧ୍ୟର୍ଦ୍ଧ-ପଣଶ୍ଚ ସୀତାତ୍ୟୟଃ ।

(୭) ଅତୋ ନବପୁରାଣାନାଂ ଦେଶଜାତିଚରିତ୍ରତଃ ।
ପଣ୍ୟାନାଂ ସ୍ଥାପୟେଚ୍ଛୁଲ୍କମତ୍ୟୟଂ ଚାପକାରତଃ ॥

—o—

ପଣ ଅର୍ଥଦଣ୍ଡ ଏବଂ କିଆରିରୁ ଧାନ୍ୟ ପ୍ରଭୃତି ଶସ୍ୟମାନଙ୍କୁ କ୍ରୟ କା ଓ ବିକ୍ରୟ କରିବା ବ୍ୟକ୍ତିଙ୍କୁ ତେପନ ପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ବିଶେଷତଃ କେବଳ ଖାଦ୍ୟଶସ୍ୟ କ୍ରୟ ବିକ୍ରୟ କରିବା ବ୍ୟକ୍ତିମାନଙ୍କୁ ଯଥାକ୍ରମେ କ୍ରେତାଙ୍କୁ ଏକପଣ ଓ ବିକ୍ରେତାଙ୍କୁ ଦେଢ଼ପଣ ଅତିରିକ୍ତ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୭) ଅତଏବ ରାଜା, ନୂତନ ଓ ପୁରାତନ ପଣ୍ୟପଦାର୍ଥମାନଙ୍କର ଦେଶ, ଜାତି ଓ ସ୍ୱଭାବ ଅନୁସାରେ ଶୁଲ୍କ ନିର୍ଦ୍ଧାରଣ କରିବେ ଏବଂ ଯେଉଁ ବ୍ୟକ୍ତି ବେଆଇନ୍ ଭାବେ କାର୍ଯ୍ୟ କରିବେ ତା'ଙ୍କୁ ଉପଯୁକ୍ତ ଦଣ୍ଡଦେବାର ବ୍ୟବସ୍ଥା କରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଦ୍ୱାବିଂଶୋଽଧ୍ୟାୟଃ—ଆଦିତସ୍ତ୍ରିଚତ୍ୱାରିଂଶଃ ।

## ତ୍ରୟୋବିଂଶୋଽଧ୍ୟାୟଃ

### ଚତ୍ୱାରିଂଶ ପ୍ରକରଣମ୍—ସୂତ୍ରାଧ୍ୟକ୍ଷଃ

### THE SUPERINTENDENT OF WEAVING

( କପା, କେଶ, ଲୋମ ଓ କୋଷାରୁ ତିଆରି ହେବା ସୂତାର କଟାଇ ଓ ବୁଣାଇ କାର୍ଯ୍ୟ କରାଇବା ସୂତ୍ରାଧ୍ୟକ୍ଷଙ୍କ ବ୍ୟାପାର । )

(୧) ସୂତ୍ରାଧ୍ୟକ୍ଷଃ ସୂତ୍ରବର୍ମବସ୍ତ୍ରରଜ୍ଜୁବ୍ୟବହାରଂ ପୁରୁଷୈଃ କାରୟେତ୍ । (୨) ଊର୍ଣ୍ଣା ବଲ୍କକାର୍ପାସତୂଲଶଣକ୍ଷୌ
ଚ ବିଧବାନ୍ୟଙ୍ଗାକନ୍ୟାପ୍ରବ୍ରଜିତାଦଣ୍ଡପ୍ରତିକାରିଣୀଭି ରୂପାଜୀବାମାତୃ
ଭିର୍ବୃଦ୍ଧରାଜଦାସୀଭିର୍ବ୍ୟୁପରତୋପସ୍ଥାନଦେବଦାସୀଭିଶ୍ଚ କର୍ତ୍ତୟେତ୍ । (୩) ଶ୍ଲକ୍ଷ୍ଣସ୍ଥୂଲମଧ୍ୟତାଂ ଚ ସୂତ୍ରସ୍ୟ ବିଦିତ୍ୱା ବେତନଂ କଲ୍ପୟେତ୍ । ବହ୍ୱଲ୍ପତାଂ ଚ । ସୂତ୍ରପ୍ରମାଣଂ ଜ୍ଞାତ୍ୱା ତୈଳା-

---

(୧) ସୂତ୍ରାଧ୍ୟକ୍ଷ—ସୂତ୍ର, * କବଚ, ବସ୍ତ୍ର ଓ ରଜ୍ଜୁ (ଦଉଡ଼ି) ପ୍ରଭୃତି କାଟିବା ଓ ବୁଣିବା କାର୍ଯ୍ୟ ସେହି ସେହି ଶିଳ୍ପରେ କୁଳକ୍ରମାଗତ ବ୍ୟବସାୟୀ କରି ଆସୁଥିବା ଦକ୍ଷଶିଳ୍ପୀମାନଙ୍କ ଦ୍ୱାରା କରାଇବେ । (୨) † ଊର୍ଣ୍ଣା ଅର୍ଥାତ୍ ମେଷାଦି ଲୋମ, ମୃଗୀ ପ୍ରଭୃତିର କେଶ, କପା, ଶିମୁଳିତୁଳା, ଛଣି ଓ ଅତସୀର ସୂକ୍ଷ୍ମକେଶ ବା କୋଷା ପ୍ରଭୃତି ଦ୍ରବ୍ୟରୁ ବିଧବା, ବିକଳାଙ୍ଗୀ, କନ୍ୟା (ଅବିବାହିତା ଝିଅ), ସନ୍ନ୍ୟାସିନୀ, ଶ୍ରମଦ୍ୱାରା ଅପରାଧଜନିତ ଦଣ୍ଡର ପ୍ରତିକାର ଶୁଝୁଁଥିବା ଅପରାଧିନୀ, ବେଶ୍ୟାର ବୁଢ଼ୀମାତା ବା ଧାଈ, ବୁଢ଼ୀ ରାଜଦାସୀ ଏବଂ ଦେବସ୍ଥାନରେ ନୃତ୍ୟଗୀତାଦି କାର୍ଯ୍ୟ କରିବା ପାଇଁ ଅକ୍ଷମ ହେବା ଦେବଦାସୀମାନଙ୍କ ଦ୍ୱାରା ସୂତା କଟାଇବେ । (୩) ସୂତା—ସରୁ, ମୋଟା କିମ୍ବା ମଝିଲା, ତାହା ନିର୍ଦ୍ଦିଷ୍ଟ ସମୟରେ କେଏ ଅଧିକ କେଏ ଊଣା କାଟିଛି ତା'ର ହିସାବ ରଖି ସୂତ୍ରାଧ୍ୟକ୍ଷ କଟାଳିମାନଙ୍କର ମଜୁରି ସ୍ଥିର କରିବେ ଏବଂ ସୂତାର ସୂକ୍ଷ୍ମତା ଓ ପରିମାଣ ଦେଖି ଭଲ ଭଲ କଟାଳିମାନଙ୍କୁ ତେଲ, ଅଁଳା, ହଳଦୀ ପ୍ରଭୃତି ପାରିତୋଷିକ ଦେଇ ଉତ୍ସାହିତ କରିବେ,

---

* କବଚ—Coat.

† ଊର୍ଣ୍ଣା—Wool; ବଲ୍କ—Fibre; କାର୍ପାସ—Cotton; ତୂଲ—Panicle; ଶଣ—Hemp; କ୍ଷୌମ—Flax.

ମଳକୋଦ୍‌ବର୍ତ୍ତନୈରେତା ଅନୁଗୃହ୍ଣୀୟାତ୍ । (୪) ତିଥିଷୁ ପ୍ରତିପାଦନମାନୈଶ୍ଚ କର୍ମ କାରୟିତବ୍ୟାଃ । ସୂତ୍ରହ୍ରାସେ ବେତନହ୍ରାସୋ ଦ୍ରବ୍ୟସାରାତ୍ । (୫) କୃତକର୍ମପ୍ରମାଣକାଳବେତନଫଳନିଷ୍ପତ୍ତିଭିଃ କାରୁଭିଶ୍ଚ କର୍ମ କାରୟେତ୍, ପ୍ରତିସଂସର୍ଗଂ ଚ ଗଚ୍ଛେତ୍ ।

କ୍ଷୌମଦୁକୂଳକ୍ରିମିତାନରାଙ୍କବକାର୍ପାସସୂତ୍ରବାନକର୍ମାନ୍ତାଂଶ୍ଚ ...ତିନୋ ଗନ୍ଧମାଲ୍ୟଦାନୈରନ୍ୟୈଶ୍ଚୋପଗ୍ରାହ୍ୟକୈରାରାଧୟେତ୍ ।

...ଯେପରି କି ଅନ୍ୟ କଟାଳିମାନେ ଏହା ଦେଖି ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହେବେ । (୪) କାର୍ଯ୍ୟଦିନମାନଙ୍କରେ ଏତିକି ସୂତା କାଟିଲେ ଏତିକି ବେତନ ଦିଆଯିବ—ଏପରି ଛିଣ୍ଡାଇ କମ୍ବା ତିଥି ଅର୍ଥାତ୍ ଛୁଟିଦିନମାନଙ୍କରେ ସ୍ୱତନ୍ତ୍ର ବେତନ ଓ ଭୋଜନଦ୍ୱାରା କଟାଳିମାନଙ୍କୁ ଉତ୍ସାହିତ କରି ସେମାନଙ୍କ ଦ୍ୱାରା ସୂତା କଟାଇବେ । ଯେଉଁ ରକମର ସୂତା ଯେତିକି ସମୟରେ ଯେତେ ପରିମାଣ କଟାଯାଇପାରେ ସେତିକି ସମୟରେ ସେହି ସୂତା କଟା ନହୋଇ ନ୍ୟୂନ ହେଲେ ତଦନୁସାରେ ବେତନ ମଧ୍ୟ ଊଣା କରିବାକୁ ହେବ । କିନ୍ତୁ ପାଟ, ଟସର, କପା, ଛଣି ଇତ୍ୟାଦି ସୂତାର ମୂଲ୍ୟ ଓ କଟାସମୟ ପ୍ରତି ଦୃଷ୍ଟି ଦେଇ ଏହି ବେତନ ସ୍ଥିର କରିବାକୁ ହେବ । (୫) ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ପରିମାଣ ସୂତା ନିର୍ଦ୍ଦିଷ୍ଟ ବେତନ ନେଇ କାଟିପାରିବା ଦକ୍ଷଶିଳ୍ପିମାନଙ୍କ ଦ୍ୱାରା ମଧ୍ୟ ଏହି କାର୍ଯ୍ୟ କରାଇବେ ଏବଂ ସେମାନଙ୍କର ଜାଲ୍‌ୟାତି ଜାଣିବା ପାଇଁ ସେମାନଙ୍କ ସହିତ ସଖ୍ୟ ସ୍ଥାପନ କରିବେ । (୬) କ୍ଷୌମ (ଅତସୀକେରର ସୂତା), ଦୁକୂଳ (ସରୁ ବକଳଜାତ ସୂତା), କ୍ରିମିତାନ (ଚୀନଦେଶୀୟ ପାଟସୂତା), ରାଙ୍କବ (ମୃଗଲୋମଜାତ ସୂତା) ଓ କପାସୂତାରେ ବିଭିନ୍ନ ସୂକ୍ଷ୍ମ ବସ୍ତ୍ରବୁଣା କାର୍ଯ୍ୟ କରିବା ସକାଶେ ନିଯୁକ୍ତ ହୋଇଥିବା ଶିଳ୍ପିମାନଙ୍କୁ ସୂତ୍ରାଧ୍ୟକ୍ଷ ଗନ୍ଧ, ମାଲ୍ୟ ଓ ବସ୍ତ୍ର ଉପହାର ଦ୍ୱାରା ସମ୍ମାନିତ କରି ସେମାନଙ୍କଦ୍ୱାରା ବିଭିନ୍ନ ପ୍ରକାରର ସୌଖୀନ ବସ୍ତ୍ର, ଶଯ୍ୟାସ୍ତରଣ (**Bed sheet**), କମ୍ବଳ, ସତରଞ୍ଜି, ବସ୍ତ୍ରା, ଓଢ଼ଣୀ ପ୍ରଭୃତି ଜିନିଷ ତିଆରି କରାଇବେ । (ନୂଆଁ ନୂଆଁ ଆକାରର ଜିନିଷ ଉତ୍ପାଦନ କରାଇବେ, ଯାହା କି କ୍ରେତାମାନଙ୍କ ମନକୁ ଆକର୍ଷଣ କରିବ) ।

ବସ୍ତ୍ରାସ୍ତରଣପ୍ରାବରଣବିକଲ୍ପାନୁତ୍ଥାପୟେତ୍ । (୭) କଂକଟ-କର୍ମାନ୍ତାଂଶ୍ଚ ତଜ୍ଜାତକାରୁଶିଲ୍ପିଭିଃ କାରୟେତ୍ । (୮) ଯାଶ୍ଚା ନିଷ୍କାସିନ୍ୟଃ ପ୍ରୋଷିତ ବିଧବା ନ୍ୟଙ୍ଗାଃ କନ୍ୟକା ବାତ୍ମାନଂ ବିଭୃୟୁସ୍ତାଃ ସ୍ୱଦାସୀଭିରନୁସାର୍ଯ୍ୟ ସୋପଗ୍ରହଂ କର୍ମ କାରୟିତବ୍ୟାଃ । ସ୍ୱୟମାଗଚ୍ଛନ୍ତୀନାଂ ବା ସୂତ୍ରଶାଳାଂ ପ୍ରତ୍ୟୁଷସି ଭାଣ୍ଡବେତନବି... କାରୟେତ୍ । ସୂତ୍ରପରୀକ୍ଷାର୍ଥମାତ୍ରଃ ପ୍ରଦୀପଃ । (୯)... ମୁଖସଂଦର୍ଶନେଽନ୍ୟକାର୍ଯସଂଭାଷାୟାଂ ବା ପୂର୍ବଃ 'ସାହସଦ... ବେତନକାଳାତିପାତନେ ମଧ୍ୟମଃ, ଅକୃତକର୍ମବେତନପ୍ରଦା...

---

(୭) ସୂତାଦ୍ୱାରା ସାଞ୍ଜୁ ତିଆରି କରିବା କାର୍ଯ୍ୟ ସେହି କାର୍ଯ୍ୟ କୁଳକ୍ରମାଗତ ପେସାକରି ଆସୁଥିବା ଅଭିଜ୍ଞ କାରିଗର ଓ ଶିଳ୍ପୀମାନଙ୍କ ଦ୍ୱାରା କରାଇବେ । (୮) କୁଳସ୍ତ୍ରୀ ବା ପରଦାନସୀନ ସ୍ତ୍ରୀବ୍ୟକ୍ତି (ଯେଉଁମାନେ କି ଘରୁ ବାହାରି ପାରନ୍ତି ନାହିଁ), ପତି ବିଦେଶଯାତ୍ରା କରିଥିବା ଯୋଗୁଁ ଲୋକ ଉପାସରେ ପଡ଼ୁଥିବା ସ୍ତ୍ରୀବ୍ୟକ୍ତି, ବିକଳାଙ୍ଗୀ ଓ ଅବିବାହିତା କନ୍ୟା, ଯେଉଁମାନେ କି ସୂତା କାଟି ନିଜ ପେଟ ପୋଷିବାକୁ ଇଚ୍ଛା କରନ୍ତି—ସେମାନଙ୍କ ପାଖକୁ ସୂତ୍ରାଧ୍ୟକ୍ଷ ସୂତ୍ରଶାଳାରେ ଚାକିରି କରୁଥିବା ଦାସୀଦ୍ୱାରା କପା, କୋଷା ପ୍ରଭୃତି କଞ୍ଚାମାଲ ପଠାଇ ସେମାନେ ଯେପରି ଆଗ୍ରହର ସହିତ ସୂତା କାଟିବେ ସେପରି ଉପହାରଦ୍ୱାରା ସମ୍ମାନିତ କରିବେ । ଯେଉଁ ସ୍ତ୍ରୀବ୍ୟକ୍ତିମାନେ ପାହାନ୍ତିଆରେ ନିଜ ନିଜର କଟା ସୂତାଧରି ସୂତ୍ରଶାଳାକୁ ନିଜେ ଆସିବେ ସେମାନଙ୍କଠାରୁ ସୂତା ରଖି ବେତନ ଦେଇଦେବେ । ସୂତା ପରୀକ୍ଷା ସକାଶେ ଯେତିକି ସମୟ ଆଲୋକ ଦର୍କାର କେବଳ ସେତିକି ସମୟ ଆଲୋକ ବ୍ୟବହାର କରିବାକୁ ହେବ । (ଅନ୍ୟ ସମୟରେ ବା ମାତ୍ରାରୁ ଅଧିକ ଆଲୋକ ବ୍ୟବହାର କଲେ ସୂତା ଜଳିଯିବାର ଭୟ ଅଛି) । (୯) ସୂତ୍ରଶାଳାରେ କାର୍ଯ୍ୟ କରୁଥିବା ସ୍ତ୍ରୀମାନଙ୍କ ମୁହଁକୁ ପାପଦୃଷ୍ଟିରେ ଚାହିଁଲେ କିମ୍ବା ସେମାନଙ୍କ ସହିତ ସୂତ୍ର ସମ୍ବନ୍ଧୀୟ କଥାବାର୍ତ୍ତା ବ୍ୟତୀତ ଅନ୍ୟ କଥାବାର୍ତ୍ତା କଲେ ସୂତ୍ରାଧ୍ୟକ୍ଷଙ୍କୁ ପ୍ରଥମସାହସ-ଦଣ୍ଡ; କୌଣସି ସୂତାକଟାଳିକୁ ବେତନ ଦେବାରେ ଡେରି କଲେ ବା ତାହାଠାରୁ ଲାଞ୍ଚ ଖାଇ ସେ କାମ ନ କରିଥିଲେ ମଧ୍ୟ ତାକୁ ବେତନ ଦେବାର

ଚ । (୧୦) ଗୃହୀତ୍ୱା ବେତନଂ କର୍ମାକୁର୍ବତ୍ୟାଃ ଅଙ୍ଗୁଷ୍ଠସଂଦଂଶଂ ଦାପୟେତ୍ । ଭକ୍ଷିତାପହୃତାବସ୍କନ୍ଦିତାନାଂ ଚ । ବେତନେଷୁ ଚ କର୍ମକରାଣାମପରାଧତୋ ଦଣ୍ଡଃ । (୧୧) * ରଜ୍ଜୁବର୍ତକୈଶ୍ଚର୍ମକାରୈଶ୍ଚ ସ୍ୱୟଂ ସଂସୃଜେୟତ । ଭାଣ୍ଡାନି ଚ ବରତ୍ରାଦୀନି ବର୍ତୟେତ୍ ।

(୧୨) ସୂତ୍ରବଲ୍କମୟୀଂ ରଜ୍ଜୁର୍ବରତ୍ରା ବୈତ୍ରବୈଣବୀଃ ।
ସାନ୍ନାହ୍ୟା ବନ୍ଧନୀୟାଶ୍ଚ ଯାନଯୁଗ୍ୟସ୍ୟ କାରୟେତ୍ ॥

---

[...]ଣାଗଲେ ରାଜା ତାଙ୍କୁ (ସୂତ୍ରାଧ୍ୟକ୍ଷଙ୍କୁ) ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବେ । (୧୦) ଅଗ୍ରିମ ବେତନ ନେଇଯାଇ ସୂତାକଟା କାମ ନ କରିବା ସ୍ତ୍ରୀବ୍ୟକ୍ତିର ବୁଢ଼ାଅଙ୍ଗୁଠି ଟିପ କାଟି ଦେବାକୁ ହେବ । ରାଜକୀୟ ବେତନ ଖାଇଦେବା, ଅପହରଣ କରିବା ଓ ନେଇ ପଳାଇଯିବା ସୂତାକଟାଳିଙ୍କୁ ମଧ୍ୟ ଏପରି ଅଙ୍ଗୁଳିଚ୍ଛେଦନ ଦଣ୍ଡରେ ଦଣ୍ଡିତ କରାଯିବ । ତନ୍ତୀ, ବୁଣାଳିମାନଙ୍କର ଅପରାଧ ଅନୁସାରେ ସେମାନଙ୍କ ବେତନ କାଟକସର କରି ଅର୍ଥଦଣ୍ଡ ଦେବାକୁ ହେବ କିନ୍ତୁ ପୂର୍ବୋକ୍ତ ପ୍ରକାରେ ଅଙ୍ଗୁଳିଚ୍ଛେଦନ ପ୍ରଭୃତି ଦେହ ଦଣ୍ଡ ଦେବାକୁ ହେବ ନାହିଁ । (୧୧) ଦଉଡ଼ି ବଳି ଜୀବିକା ନିର୍ବାହ କରିବା ଶିଳ୍ପୀ ଓ ଚର୍ମମୟ ଅଶ୍ୱ ଉପକରଣ ପ୍ରଭୃତି ତିଆରି କରିବା ଶିଳ୍ପୀମାନଙ୍କ ସହିତ ସମ୍ପର୍କ ସ୍ଥାପନ କରି ସୂତ୍ରାଧ୍ୟକ୍ଷ ସେମାନଙ୍କଦ୍ୱାରା ନାନାବିଧ ଉପକରଣ ଓ ଗାଈ, ଘୋଡ଼ା, ହାତୀ ପ୍ରଭୃତିଙ୍କୁ ବାନ୍ଧିବା ସକାଶେ ମୋଟା ମୋଟା ଦଉଡ଼ି ପ୍ରଭୃତି ପ୍ରସ୍ତୁତ କରାଇବେ । (୧୨) ସୂତ୍ରାଧ୍ୟକ୍ଷ କପାସୂତା ଓ ଛଣିକେଉରେ ବଳାହେବା କବଚ ନିର୍ମାଣଯୋଗ୍ୟ ସରୁ ଦଉଡ଼ି, ବେତ ଓ ବାଉଁଶରେ ତିଆରି ହେବା ଘୋଡ଼ା, ହାତୀ ଓ ବଳଦ-ବନ୍ଧନ ଯୋଗ୍ୟ ବରତ୍ରା ବା ମୋଟା ଦଉଡ଼ିଗୁଡ଼ିକୁ ଉପରୋକ୍ତ ଶିଳ୍ପିମାନଙ୍କ ଦ୍ୱାରା ମଧ୍ୟ ତିଆରି କରାଇବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ତ୍ରୟୋବିଂଶୋଽଧ୍ୟାୟଃ—ସୂତ୍ରାଧ୍ୟକ୍ଷଃ—ଆଦିତଶ୍ଚତ୍ୱାରିଂଶଃ ।

---

* ବର୍ମକାରୈଃ ଇତି ପାଠେ ସୂତାଦଉଡ଼ିରେ ସାଞ୍ଜୁ ତିଆରି କରିବା ଶିଳ୍ପୀ ହେବ ।

## ଚତୁର୍ବିଂଶୋଽଧ୍ୟାୟଃ

### ଏକଚତ୍ୱାରିଂଶ ପ୍ରକରଣମ୍—ସୀତାଧ୍ୟକ୍ଷଃ

### THE SUPERINTENDENT OF AGRICULTURE

( କୃଷିକର୍ମର ଅଧ୍ୟକ୍ଷଙ୍କ କୃଷିବ୍ୟାପାର )

(୧) ସୀତାଧ୍ୟକ୍ଷଃ କୃଷିତନ୍ତ୍ରଶୁଲ୍ବବୃକ୍ଷାୟୁର୍ବେଦଜ୍ଞସ୍ତଜ୍ଜ ବା ସର୍ବଧାନ୍ୟପୁଷ୍ପଫଳଶାକକନ୍ଦମୂଳବାଲ୍ଲିକ୍ୟକ୍ଷୌମକାର୍ପାସ ଯଥାକାଳଂ ଗୃହ୍ଣୀୟାତ୍ । (୨) ବହୁହଳପରିକୃଷ୍ଟାୟାଂ ସ୍ୱଭୂ ଦାସକର୍ମକରଦଣ୍ଡପ୍ରତିକର୍ତୃଭିର୍ବାପୟେତ୍ । କର୍ଷଣଯନ୍ତ୍ରୋପକରଣ-ବଳୀବର୍ଦୈଶ୍ଚୈଷାମସଂଗଂ କାରୟେତ୍ । କାରୁଭିଶ୍ଚର୍ମାରକୁଟ୍ଟା-କମେଦକରଜ୍ଜୁବର୍ତକସର୍ପଗ୍ରାହାଦିଭିଶ୍ଚ । ତେଷାଂ କର୍ମଫଳବିନିପାତେ

---

(୧) କୃଷିବିଭାଗର ଅଧ୍ୟକ୍ଷ ବୃହସ୍ପତି ପରାଶରାଦି ପ୍ରଣୀତ କୃଷିଶାସ୍ତ୍ର, ଭୂମିସିରାଦି ବିଷୟଜ୍ଞାପକ ଶୁଲ୍ବଶାସ୍ତ୍ର ଓ ଅଗ୍ନିବେଶାଦି ପ୍ରଣୀତ ବୃକ୍ଷାୟୁ-ର୍ବେଦରେ ନିଜେ ନିଷ୍ଣାତ ହୋଇ, ଉକ୍ତ ଶାସ୍ତ୍ରମାନଙ୍କରେ ପ୍ରବୀଣତା ଲାଭ କରିଥିବା ସହକର୍ମିମାନଙ୍କ ସହଯୋଗରେ ସମସ୍ତ ପ୍ରକାର ଧାନ୍ୟ, ଫୁଲ, ଫଳ, ପରିବା, କନ୍ଦ, ମୂଳ, ବାଲ୍ଲିକ୍ୟ (କଖାରୁ, କଳରା, ଜହ୍ନି, ପୋଟଳ ପ୍ରଭୃତି ବଲ୍ଲୀ ଜାତ ପଦାର୍ଥ), କ୍ଷୌମ (ଅତସୀ, ଛଣି ପ୍ରଭୃତି) ଓ କପା ପ୍ରଭୃତିର ମଞ୍ଜି (ବିହନ) ଗୁଡ଼ିକୁ ଯଥାସମୟରେ ସଂଗ୍ରହ କରିବେ । (୨) ଏହି ବୀଜଗୁଡ଼ିକୁ ବହୁବାର ଲଙ୍ଗଳରେ ଚଷ କରାଯାଇଥିବା ବିଭିନ୍ନ ପ୍ରକାର ବୀଜବପନଯୋଗ୍ୟ ରାଜାଙ୍କ ନିଜଜମିରେ ଉଦରଦାସ, କ୍ରୀତଦାସ, ଶ୍ରମିକ (ମୂଲିଆ) ଓ ଦଣ୍ଡପ୍ରତିକର୍ତ୍ତା ଅର୍ଥାତ୍ ଶ୍ରମଦ୍ୱାରା ରାଜ-ଦଣ୍ଡରୁ ମୁକ୍ତ ପାଇବାକୁ ଇଚ୍ଛୁକ ଥିବା ଅପରାଧୀମାନଙ୍କ ଦ୍ୱାରା ବୁଣାଇବେ । ଲଙ୍ଗଳ, କୁଆଳ, ମଇ, କୁରୁଳ ପ୍ରଭୃତି କର୍ଷଣଯନ୍ତ୍ର; ଦଉଡ଼ି, ବାଡ଼ି, ଦାଆ, କୋଡ଼ି ପ୍ରଭୃତି ଉପକରଣ; ବଳଦ, କମାର, ବଢ଼େଇ ଇତ୍ୟାଦିଙ୍କର ମାଟିଖୋଳାଳି, ଦଉଡ଼ିବଳାଳି ଓ ସାପଧରାଳି ପ୍ରଭୃତି କୃଷିକର୍ମ ସହାୟକ ମାନେ ଓ ଉପର୍ଯ୍ୟୁକ୍ତ ଦାସାଦିମାନେ ଯେପରି ଅନ୍ତରାୟ ନ ହୁଅନ୍ତି, ସେପରି

**ତତ୍ଫଳହାନଂ ଦଣ୍ଡଃ । (୩) ଷୋଡ଼ଶଦ୍ରୋଣଂ ଜାଙ୍ଗଲାନାଂ ବର୍ଷପ୍ରମାଣମଧ୍ୟର୍ଧମାନୂପାନାମ୍ । ଦେଶବାପାନାମ୍ । ଅର୍ଦ୍ଧତ୍ରୟୋଦଶାଶ୍ମକାନାଂ, ତ୍ରୟୋବିଂଶତିରବନ୍ତୀନାମ୍, ଅମିତ ମପରାନ୍ତାନାଂ, ହୈମନ୍ୟାନାଂ ଚ କୁଲ୍ୟାବାପାନାଂ ଚ କାଳତଃ । (୪) ବର୍ଷତ୍ରିଭାଗଃ**

---

ଜ୍ଞା ମଧ୍ୟ କରାଇବେ । ଉପରୋକ୍ତ ବ୍ୟକ୍ତିମାନଙ୍କ ମଧ୍ୟରୁ ଯେକୌଣସି ଦ୍ୱାରା କୌଣସି କାର୍ଯ୍ୟହାନି ଘଟିଲେ ଅର୍ଥାତ୍ କୃଷିଜାତ ଫଳମାନଙ୍କର ଟିଲେ, ସେହି ବ୍ୟକ୍ତିଠାରୁ କ୍ଷତି ଘଟିଥିବା ପଦାର୍ଥର ମୂଲ୍ୟ ଦଣ୍ଡସ୍ୱରୂପ ୟ କରିବାକୁ ହେବ । (୩) **ଭୂମିବିଶେଷରେ ଶସ୍ୟନିଷ୍ପତ୍ତି-ନିମିତ୍ତ ବର୍ଷା ପ୍ରମାଣଃ**—ହାତେ ଲମ୍ବ ଓ ହାତେ ଓସାର ମୁହଁଥିବା ବୃଷ୍ଟିପରିମାଣଜ୍ଞାପକ କୁଣ୍ଡରେ ଯଦି ଗୋଟିଏ ଅଣ୍ଟବର୍ଷାର ଜଳଧାରଦ୍ୱାରା ଶୋହଳ ଦ୍ରୋଣ ଜଳ ଭରିହୁଏ, ତେବେ ସେହି ପରିମାଣ ବର୍ଷା ଜାଙ୍ଗଲ ଦେଶ (ମରୁପ୍ରାୟ ଶୁଷ୍କଦେଶ)ରେ ଶସ୍ୟ ନିଷ୍ପାଦନ ପାଇଁ ଯଥେଷ୍ଟ ହୁଏ ଏବଂ ଏହାର ଦେଢ଼ଗୁଣ ଅର୍ଥାତ୍ ଚବିଶ ଦ୍ରୋଣ ଜଳ ଉକ୍ତ କୁଣ୍ଡରେ ଭରିହେବାର ଜଣାଗଲେ ଏହି ପରିମାଣ ବର୍ଷା ଅନୂପ ଅର୍ଥାତ୍ ଜଳୁଆ ଭୂମିଥିବା ଦେଶରେ ଶସ୍ୟ ନିଷ୍ପାଦନ ପାଇଁ ଯଥେଷ୍ଟ ହୁଏ । ଏହିପରି ଜାଙ୍ଗଲ ଓ ଅନୂପ ଦେଶ ଭେଦରେ ବର୍ଷାର ମୋଟାମୋଟି ପରିମାଣ ସ୍ଥିର କରାଯାଇଛି । **ଦେଶଭେଦରେ ବର୍ଷାର ପରିମାଣଃ**—ଅଶ୍ମକ ବା ଆରଛ ଦେଶରେ ସାଢ଼େ ତେର ଦ୍ରୋଣ, ଅବନ୍ତୀ ଦେଶରେ (ମାଳବ ଦେଶରେ) ତେଇଶି ଦ୍ରୋଣ ଓ ଏତଦ୍ଭିନ୍ନ ପାଶ୍ଚାତ୍ୟ ଦେଶମାନଙ୍କରେ ଅପର୍ଯ୍ୟାପ୍ତ ବର୍ଷା ଶସ୍ୟ ଉତ୍ପାଦନ ପକ୍ଷେ ଉପଯୋଗୀ । ହିମାଳୟ ତଟବର୍ତ୍ତୀ ପ୍ରଦେଶମାନଙ୍କରେ, ଯେଉଁଠାରେ କି ଭିନ୍ନ ଭିନ୍ନ ଋତୁରେ କେବଳ ବରଫ ଯୋଗରେ ଶସ୍ୟ ଉତ୍ପନ୍ନ ହୁଏ, ସେଠାରେ ଏବଂ ସିନ୍ଧୁ-ଗଙ୍ଗା-ସମତଳ ପ୍ରଦେଶରେ ଯେଉଁଠାରେ କି ଗଙ୍ଗା, ଯମୁନା, ସିନ୍ଧୁ ପ୍ରଭୃତି ସଦାନୀର ନଦୀସ୍ରୋତ ଦ୍ୱାରା ଜମିସବୁ ପ୍ଲାବିତ ହୁଏ, ସେଠାରେ ବର୍ଷାର ପରିମାଣକୁ ଅପେକ୍ଷା କରାଯାଏ ନାହିଁ । (୪) **ଶୋଭନ ସମ୍ବତ୍ସରର ସ୍ୱରୂପଃ**—ଉପରୋକ୍ତ ଦେଶମାନଙ୍କରେ ଯେଉଁ ପରିମାଣେ ବର୍ଷା ହେଲେ ତାହା ଶସ୍ୟପକ୍ଷେ ହିତକର ବୋଲି କୁହାଗଲା, ସେହି ବର୍ଷା ତିନିଭାଗରେ ବିଭକ୍ତ । ଶ୍ରାବଣ, ଭାଦ୍ରବ, ଅଶ୍ୱିନ ଓ କାର୍ତ୍ତିକ ମାସ ମଧ୍ୟରୁ ଶ୍ରାବଣ ଓ

ପୂର୍ବପଶ୍ଚିମମାସୟୋଃ, ଦ୍ୱୌ ତ୍ରିଭାଗୌ ମଧ୍ୟମୟୋଃ ସୁଷମାରୂପମ୍ । ତସ୍ୟୋପଲବ୍ଧିର୍ବୃହସ୍ପତେଃ ସ୍ଥାନଗମନଗର୍ଭାଧାନେଭ୍ୟଃ ଶୁକ୍ରୋଦୟାସ୍ତମୟଚାରେଭ୍ୟଃ ସୂର୍ଯସ୍ୟ ପ୍ରକୃତିବୈକୃତାଚ୍ଚ । ସୂର୍ଯାଦ୍-ବୀଜସିଦ୍ଧିଃ । ବୃହସ୍ପତେଃ ସସ୍ୟାନାଂ ସ୍ତମ୍ବକାରିତା । ଶୁକ୍ରାଦ୍ ବୃଷ୍ଟିରିତି ।

(୫) ତ୍ରୟଃ ସପ୍ତାହିକା ମେଘା ଅଶୀତିଃ କଣଶୀକରାଃ [redacted]
ଷଷ୍ଟିରାତପମେଘାନାମେଷା ବୃଷ୍ଟିଃ ସମା ହିତାଃ [redacted]

---

କାର୍ତ୍ତିକ ମାସରେ ବର୍ଷା ପ୍ରମାଣର ତିନିଭାଗରୁ ଏକଭାଗ ଏବଂ ଭାଦ୍ରବ[redacted] ଅଶ୍ୱିନରେ ବର୍ଷା ପ୍ରମାଣର ତିନିଭାଗରୁ ଦୁଇଭାଗ ବର୍ଷା ହେଲେ ତାହାକୁ ଉତ୍ତମ ବର୍ଷା କୁହାଯାଏ ଏବଂ ଏପରି ବର୍ଷା ହେବା ସମ୍ବତ୍ସରକୁ 'ଶୋଭନ ସମ୍ବତ୍ସର' କୁହାଯାଏ । ବୃହସ୍ପତିଙ୍କର ସ୍ଥାନଗମନ ଓ ମେଘର ଗର୍ଭାଧାନ ହେତୁରୁ ଅର୍ଥାତ୍ ବର୍ଷାକାରକ ରାଶିରେ ବୃହସ୍ପତି ସ୍ଥିତ ହେଲେ କିମ୍ବା ଉକ୍ତ ରାଶିକୁ ଗମନ କଲେ ଅଥବା ଏହାଙ୍କ ଯୋଗୁଁ ମେଘର ଗର୍ଭାଧାନ ଲକ୍ଷଣ ଦେଖାଗଲେ; ଶୁକ୍ର ଉଦୟ, ଅସ୍ତ ଓ ଜଳରାଶିକୁ ସଞ୍ଚରିତ ହେଲେ ଏବଂ ସୂର୍ଯ୍ୟଙ୍କର ପ୍ରକୃତିର ବିକୃତି ଦେଖାଗଲେ (ସୂର୍ଯ୍ୟମଣ୍ଡଳାଦି ପଡ଼ିଲେ) 'ସୁଷମା' ନାମକ ସମ୍ବତ୍ସର ଅର୍ଥାତ୍ ଶୋଭନ ସମ୍ବତ୍ସରର ଲକ୍ଷଣ ପ୍ରକାଶ ପାଏ । ସୂର୍ଯ୍ୟଙ୍କ ପ୍ରକୃତି ଓ ବିକୃତିରୁ ବୀଜସିଦ୍ଧି (କିପରି ଫଳ ହେବ ତାହାର ସିଦ୍ଧାନ୍ତ), ବୃହସ୍ପତି ସ୍ଥିତିଗତିରୁ ଶସ୍ୟର ସ୍ତମ୍ବକାରିତା (କିପରି ଗଛର ମୋଟା ପୁଷ୍ଟ ହେବ ତାହାର ସିଦ୍ଧାନ୍ତ) ଏବଂ ଶୁକ୍ରଙ୍କର ଉଦୟାସ୍ତାଦିରୁ ବୃଷ୍ଟି କିପରି ହେବ ତାହା ଅନୁମାନ କରି ସ୍ଥିର କରିବାକୁ ହେବ ।

(୫, ୬, ୭) ଶୋଭନ ସମ୍ବତ୍ସରରେ ବୃଷ୍ଟିର ପରିମାଣ:—ସପ୍ତାହବ୍ୟାପୀ

---

* "ମାର୍ଗଶିରାଃ ସ ତୁଷାରଃ ସ ହିମଃ ପୌଷଃ ସମାରୁତୋ ମାଘଃ । ସାଭ୍ରଃ ଫାଲ୍ଗୁନମାସଃ ସପବନବୃଷ୍ଟିଶ୍ଚ ଯଦି ଚୈତ୍ରଃ । ତଡ଼ିଦଭ୍ରାନିଲବିଦ୍ୟୁଜ୍ଜଳବୃଷିତୋ ଭବତି ଯଦି ଚ ବୈଶାଖଃ । ସମ୍ୟଗ୍ ବର୍ଷତି ମଘବାନ୍ ଧାରଣଦିବସେଷୁ ବର୍ଷତି ଚେତ୍ତୁ ।"
ଧାରଣଦିବସ ବୈଶାଖ କୃଷ୍ଣ ପ୍ରତିପଦାଠାରୁ ଚତୁର୍ଥୀ ପର୍ଯ୍ୟନ୍ତ ଚାରିଦିନ । ଏହି ଚାରିଦିନ ଶୁକ୍ରଙ୍କର ସଞ୍ଚରିଦିବସ । ଆଷାଢ଼ମାସ ପଞ୍ଚମୀ ଠାରୁ ତ୍ରୟୋଦଶୀ ପର୍ଯ୍ୟନ୍ତ ନ'ଦିନ ଉଦୟ ଅସ୍ତ ପାଇଁ ପ୍ରସିଦ୍ଧ ।

(୬) ବାତମାତପଯୋଗଂ ଚ ବିଭଜନ୍ ଯତ୍ର ବର୍ଷତି ।
ତ୍ରୀନ୍ କର୍ଷକାଂଶ୍ଚ ଜନୟଂସ୍ତତ୍ର ସସ୍ୟାଗମୋ ଧ୍ରୁବଃ ॥

(୭) ତତଃ ପ୍ରଭୂତୋଦକମଲ୍ପୋଦକଂ ବା ସସ୍ୟଂ ବାପୟେତ୍ । (୮) ଶାଲିବ୍ରୀହିକୋଦ୍ରବତିଲପ୍ରିୟଙ୍ଗୁଦାରକବରକାଃ ପୂର୍ବବାପାଃ । [redacted] ଶୈମ୍ବ୍ୟା ମଧ୍ୟବାପାଃ । କୁସୁମ୍ଭମସୂରକୁଲୁତ୍ଥ- [redacted] କଳାୟାତସୀସର୍ଷପାଃ ପଶ୍ଚାଦ୍ବାପାଃ । ଯଥର୍ତୁବଶେନ [redacted] ବାପାଃ । (୯) ବାପାତିରିକ୍ତମର୍ଧସୀତିକାଃ କୁର୍ଯୁଃ । [redacted] ର୍ଯୋପଜୀବିନୋ ବା ଚତୁର୍ଥପଞ୍ଚଭାଗିକାଃ । ଯଥେଷ୍ଟ-

---

ଅହୋରାତ୍ର ନିରବଚ୍ଛିନ୍ନ ବୃଷ୍ଟିକାରୀ ମେଘ ତିନି; ସାନ୍ଦ୍ରବିନ୍ଦୁ (ସାନ ସାନ ଟୋପା) ବର୍ଷଣକାରୀ ମେଘ ଅଶୀଏ ଏବଂ ସୂର୍ଯ୍ୟକିରଣରେ ଝିର୍‌ଝିର୍ ବର୍ଷା କରୁଥିବା ମେଘ ଷାଠିଏ । ଶୋଭନ ସମ୍ବତ୍ସରର ବୃଷ୍ଟିକ୍ରମ ଏପରି ହୋଇଥାଏ । ଅର୍ଥାତ୍ ଶୋଭନ ନାମକ ସମ୍ବତ୍ସରରେ ଏକୋଇଶି ଦିନ ଝାଣବର୍ଷା, ଅଶୀଏ ଦିନ ସାଧାରଣ ବର୍ଷା ଓ ଷାଠିଏ ଦିନ ଖରାରେ ଝିର୍‌ଝିର୍ ବର୍ଷା ହୋଇଥାଏ । ଏହି ବର୍ଷା ଲୋକହିତକାରୀ ଅଟେ । ବାୟୁ ଓ ସୂର୍ଯ୍ୟକିରଣ ସହିତ ନମିଶି, ତିନିଗୋଟି କୃଷି ଉଠିଆ ହେବାଭଳି ଛାଡ଼ଛାଡ଼ରେ ବର୍ଷା କରିବା ଅର୍ଥାତ୍ ତିନିଥର ଛାଡ଼ଛାଡ଼ରେ ହଳ ଚଳାଇବା ଭଳି ସୁବିଧା ଦେବା ମେଘ ନିଃସନ୍ଦେହରେ ଶସ୍ୟଉତ୍ପାଦନକାରକ ହୋଇଥାଏ । ବୃଷ୍ଟି ପରିମାଣ ଜ୍ଞାତହେବା ପରେ ପ୍ରଚୁର ଜଳ ନିଷ୍ପନ୍ନ ଶସ୍ୟ ଓ ଅଳ୍ପ ଜଳ ନିଷ୍ପନ୍ନ ଶସ୍ୟଗୁଡ଼ିକୁ କେଉଁ ଜାଗାରେ କିପରି ପାଗରେ ବୁଣା କଟା କରିବାକୁ ହେବ ତାହା ବିବେଚନା କରି ବୁଣିବାକୁ ହେବ । (୮) ଶାଳୀ (ଶୁକ୍ଳଧାନ), ବ୍ରୀହି (ଷାଠିକାଧାନ), କୋଦ, ତିଳ (ରାଶି), କାଙ୍ଗୁ, ଦାରକ (କୁହୁଡ଼ି), ବରକ (ବରଗୁଡ଼)—ଏହି ସାତଗୋଟି ଶସ୍ୟ ବର୍ଷାପୂର୍ବରୁ ବୁଣାଯାଏ । ମୁଗ, ବିରି ଓ ଶିମ୍ବିଜାତୀୟ ଶସ୍ୟ ବର୍ଷା ମଧ୍ୟରେ ଏବଂ କୁସୁମ୍ଭ, ମସୂର, କୋଳଥ, ଯବ, ଗହମ, ଚଣା, ଅତସୀ ଓ ସୋରିଷ ବର୍ଷାଶେଷରେ ବୁଣାଯାଏ । ଉକ୍ତ ଶସ୍ୟ ଓ ଅନ୍ୟାନ୍ୟ ଶସ୍ୟ ଯଥାଋତୁରେ ଅନୁକୂଳ ସମୟ ଦେଖି ମଧ୍ୟ ବୁଣା ଯାଇଥାଏ । (୯) ସୀତାଧ୍ୟକ୍ଷ ନିଜେ ଚାଷ କରିନପାରିବା ଜମିଗୁଡ଼ିକୁ ଭାଗଚାଷୀମାନଙ୍କୁ ଅଦାୟର ଅର୍ଦ୍ଧଭାଗ ରାଜଭାଗ ଦେବାକୁ

**ମନବସିତଷ୍ଟଗଂ ଦଦ୍ୟୁରନ୍ୟତ୍ର କୃଚ୍ଛ୍ରେଭ୍ୟଃ । (୧୦) ସ୍ୱସେତୁଭ୍ୟଃ ହସ୍ତପ୍ରାବର୍ତିମମୁଦକଭାଗଂ ପଞ୍ଚମଂ ଦଦ୍ୟୁଃ । ସ୍କନ୍ଧପ୍ରାବର୍ତିମଂ ଚତୁର୍ଥମ୍ । ସ୍ରୋତୋଯନ୍ତ୍ରପ୍ରାବର୍ତିମଂ ଚ ତୃତୀୟମ୍ । ଚତୁର୍ଥମ୍ ନଦୀସରସ୍ତଟାକକୂପୋଦ୍‌ଘାଟମ୍ । (୧୧) କର୍ମୋଦକପ୍ରମାଣେନ କୈଦାରଂ ହୈମନଂ ଗ୍ରୈଷ୍ମିକଂ ବା ସସ୍ୟଂ ସ୍ଥାପ**
**(୧୨) ଶାଲ୍ୟାଦ ଜ୍ୟେଷ୍ଠମ୍ । ଷଣ୍ଡୋ ମଧ୍ୟମଃ । ଇକ୍ଷୁଃ**

---

ନିଷ୍ପନ୍ନ କରି ଭାଗଚାଷକୁ ଦେଇଦେବେ । ହଳ, ବଳଦ ଓ
ନଥିବା ଚାଷୀ, ଯେଉଁମାନେ କି ନିଜର ଶାରୀରିକ ବଳ ଉପରେହିଁ
ନିର୍ବାହ କରନ୍ତି ସେମାନେ ମଧ୍ୟ ସୀତାଧ୍ୟକ୍ଷଙ୍କଠାରୁ ହଳ, ବଳଦ ପ୍ର
ନେଇ ରାଜାଙ୍କ ଜମି ଚାଷ କରିପାରିବେ ଏବଂ ସେମାନେ ମୋଟ ଅଦାୟ
ଚାରିଭାଗରୁ ଭାଗେ ଏବଂ କେତେକ ଶସ୍ୟର ପାଞ୍ଚଭାଗରୁ ଭାଗେ ମଧ୍ୟ ଶ୍ରମଭାଗ ପାଇପାରିବେ । ଭାଗ ନ ଛିଣ୍ଡାଇ ଚାଷ କରିଥିବା ଜମିର ରାଜଭାଗ ସ୍ୱାମୀ ଅର୍ଥାତ୍ ରାଜାଙ୍କ ଇଚ୍ଛାର ବିରୁଦ୍ଧ ନହେବା ପରି ଦେବାକୁ ହେବ ଓ କର୍ଷଣବିଘାତକ ବିପଦ ଉତ୍ପାତରେ ଯାହା କ୍ଷତି ହେବ ତାହା ଏଥିରୁ ବାଦ ଦିଆଯିବ । (୧୦) କୃଷକ ନିଜ ପରିଶ୍ରମରେ ଖୋଳିଥିବା କୂଅ ପୋଖରୀରୁ ପାଣି ମଡ଼ାଇ ରାଜାଙ୍କ ଜମିରେ କରିଥିବା ଫସଲର ପାଞ୍ଚଭାଗରୁ ଏକଭାଗ, ରାଜକୀୟ ଜଳାଶୟାଦିରୁ କାନ୍ଧରେ ଜଳ ବହିନେଇ ଉଠିଆ କରିଥିବା ଫସଲର ଚାରିଭାଗରୁ ଏକଭାଗ, ଯନ୍ତ୍ରଚାଳିତ ଜଳସେଚନଦ୍ୱାରା ଅମଳକରିଥିବା ଖନ୍ଦର ତିନିଭାଗରୁ ଏକଭାଗ ଏବଂ ନଦୀ, ସରୋବର, ବନ୍ଧ ଓ କୂପରୁ ଟେଣ୍ଡାଦ୍ୱାରା ଜଳ ଉଠାଇ ଉଠିଆ କରିଥିବା ଖନ୍ଦର ଚାରିଭାଗରୁ ଏକଭାଗ * 'ଉଦକଭାଗ' ଅର୍ଥାତ୍ ରାଜଭାଗ ରାଜାଙ୍କୁ ଦେବେ । (୧୧) ସୀତାଧ୍ୟକ୍ଷ କୃଷିଉପଯୋଗୀ ଜଳର ପ୍ରଚୁରତା ଓ ନ୍ୟୂନତା ଏବଂ କୃଷି-କର୍ମୋପଯୋଗୀ ଶ୍ରମିକ, କୃଷକ, ଦାସ ପ୍ରଭୃତିଙ୍କ ସଂଖ୍ୟା ପ୍ରତି ଦୃଷ୍ଟିଦେଇ ବର୍ଷାକାଳୀନ, ହେମନ୍ତକାଳୀନ ଓ ଗ୍ରୀଷ୍ମକାଳୀନ ଶସ୍ୟଗୁଡ଼ିକ ଯେଉଁଠି ଯାହା ଯେତେ ପରିମାଣରେ ବୁଣାଯାଇ ପାରିବ ତାହା ବିବେଚନା କରି ବୁଣାଇବାର ବ୍ୟବସ୍ଥା କରିବେ । (୧୨) ଧାନ ପ୍ରଭୃତି ପ୍ରଧାନ ଖାଦ୍ୟଶସ୍ୟ-

---

*** ରାଜା ଭୂମେଃ ପତିର୍ଦୃଷ୍ଟଃ ଶାସ୍ତ୍ରଜ୍ଞୈରୁଦକସ୍ୟ ଚ ।**
**ତାଭ୍ୟାମନ୍ୟତ୍ତୁ ଯଦ୍‌ଦ୍ରବ୍ୟଂ ତତ୍ର ସ୍ୱାମ୍ୟଂ କୁଟୁମ୍ବିନାମ୍ ॥**

**ଇକ୍ଷବୋ ହି ବହ୍ୱାବାଧା ବ୍ୟୟଗ୍ରାହିଣଶ୍ଚ । (୧୩) ଫେନାଘାତୋ ବଲ୍ଲୀଫଳାନାଂ, ପରୀବାହାନ୍ତାଃ ପିପ୍ପଲୀମୃଦ୍ୱୀକେକ୍ଷୂଣାଂ, କୂପପର୍ଯ୍ୟନ୍ତାଃ ଶାକମୂଳାନାଂ, ହରଣୀପର୍ଯ୍ୟନ୍ତା ହରିତକାନାଂ, ପାଲ୍ୟୋ ଲବାନାଂ ଗନ୍ଧଭୈଷଜ୍ୟୋଶୀରହ୍ରୀବେରପିଣ୍ଡାଲୁକା- । ଯଥାସ୍ୱଂ ଭୂମିଷୁ ଚ ସ୍ଥଲ୍ୟାଶ୍ଚାନୂପ୍ୟାଶ୍ଚୌଷଧୀଃ । (୧୪) ତୁଷାରପାୟନମୁଷ୍ଣଶୋଷଣଂ ଚ ସପ୍ତ-**

ଲ୍ପ ବ୍ୟୟ ଓ ଅଳ୍ପ ଶ୍ରମସାଧ୍ୟ ପ୍ରଚୁର ଆଦାୟ ହେବା ଫସଲ, କଦଳୀ ଓ ପରିବା ମଧ୍ୟମ କଷ୍ଟସାଧ୍ୟ ଫସଲ ଏବଂ ଆଖୁ ଏସମସ୍ତଙ୍କ ଅପେକ୍ଷା ର କଷ୍ଟସାଧ୍ୟ ଫସଲ ଅଟେ । ଆଖୁ ଫସଲ ମନୁଷ୍ୟ, ମୂଷିକ, ଭଲ୍ଲୁକ ଓ ଶୃଗାଳ ପ୍ରଭୃତି ଉପଦ୍ରବବହୁଳ ଏବଂ ଛେଦନ, ପୀଡ଼ନ (ପେଡ଼ିବା) ଓ ପଚନ (ଗୁଡ଼ରାନ୍ଧିବା) ଇତ୍ୟାଦିରେ ବହୁ ଧନ ଓ ଶ୍ରମ ନିୟୋଜନସାପେକ୍ଷ ଅଟେ । (୧୩) **ବପନଯୋଗ୍ୟ ଭୂମି ନିର୍ଣ୍ଣୟ**—ନଦୀଜଳର ଫେନଦ୍ୱାରା ଆଘାତପ୍ରାପ୍ତ ହେଉଥିବା ଅଗଣ୍ଡ ଭୂମିରେ କଖାରୁ, କାକୁଡ଼ି, ଖୁଆଁକହ୍ଲୀ, ତୋରଡ଼ା, ତରଭୁଜ ପ୍ରଭୃତି ବଲ୍ଲୀଫଳ; ଜଳଦ୍ୱାରା ପ୍ଲାବିତ ହେଉଥିବା ଭୂମିରେ ପିପ୍ପଳୀ, ଦ୍ରାକ୍ଷା ଓ ଆଖୁ ଫସଲ; କୂପ ନିକଟରେ ଶାଗ ଓ ମୂଳା ପ୍ରଭୃତି ପଦାର୍ଥ; ଝରଣା ଓ ସର ନିକଟ ଭୂମିରେ ନାନାବିଧ କଞ୍ଚା ପନିପରିବା ଓ କ୍ଷେତ୍ରମଧ୍ୟସ୍ଥ ବନ୍ଧରେ ଅର୍ଥାତ୍ କିଆରିର ହିଡ଼ ମଧ୍ୟରେ ଗନ୍ଧତୃଣ, ଗନ୍ଧଶୁଣ୍ଠି, ଜାଟାମାଂସୀ, ରସୁଣ, ସୌଂପ, ଉଶୀରବେଣା, ମୃଗନ୍ଧ-ବାଲା ଓ ପିଣ୍ଡାଳୁ * ପ୍ରଭୃତି ଫସଲ ଭଲ ହୋଇଥାଏ । ଶୁଷ୍କ ପଦର ଭୂମିରେ ହେବା ଔଷଧି ଓ ଜଳୁଆ ଭୂମିରେ ହେବା ଔଷଧି ବୃକ୍ଷଲତାଗୁଡ଼ିକୁ ଯେଉଁ ବୃକ୍ଷ ଯେଉଁଠି ହୋଇ ପାରିବ ସେହିପରି ଭୂମିରେ ଲଗାଇବେ (ଉକ୍ତ ଭୂମିମାନଙ୍କରୁ ମାଟି ନେଇ ମାଣ୍ଡଣାରେ ମଧ୍ୟ ଔଷଧିବୃକ୍ଷମାନଙ୍କୁ ଲଗାଇ ବାସଗୃହ ଓ ବଗିଚାମାନଙ୍କରେ ରଖିବେ । (୧୪) ଧାନ୍ୟାଦି ବୀଜଗୁଡ଼ିକୁ ସୁରକ୍ଷିତ କରିବା ପାଇଁ ସେଗୁଡ଼ିକୁ ରାତିରେ କାକରରେ ଏବଂ ଦିନରେ ଖରାରେ ସାତରାତି ପର୍ଯ୍ୟନ୍ତ ରଖିବେ ଏବଂ କୋଶୀଧାନ୍ୟ ଅର୍ଥାତ୍ ମୁଗ, ବିରି ପ୍ରଭୃତି ଛୁଇଁରୁ ଜାତହେବା ବୀଜଗୁଡ଼ିକୁ ମଧ୍ୟ ଉକ୍ତ ନିୟମରେ ତନିରାତି

* ପିଣ୍ଡାଳୁ—ଶ୍ଳେଷ୍ମକନ୍ଦ ବା ବାରାହକନ୍ଦ ।

**ସପ୍ତରାତ୍ର ଧାନ୍ୟବୀଜାନାଂ, ତ୍ରିରାତ୍ରଂ ପଞ୍ଚରାତ୍ରଂ ବା କୋଶୀଧାନ୍ୟାନାଂ, ମଧୁଘୃତସୂକରବସାଭିଃ ଶକୃଦ୍‌ଯୁକ୍ତାଭିଃ କାଣ୍ଡବୀଜାନାଂ ଛେଦଲେପୋ, ମଧୁଘୃତେନ କନ୍ଦାନାମ୍ । ଅସ୍ଥିବୀଜାନାଂ ଶକୃଦାଲେପଃ । ଶାଖିନାଂ ଗର୍ତଦାହୋ ଗୋସ୍ଥିଶକୃଦ୍ଭିଃ କାଲେ ଦୌହୃଦଂ ଚ । (୧୫) ପ୍ରରୂଢ଼ାଂଶ୍ଚାଶୁ**
**ମତ୍ସ୍ୟାଂଶ୍ଚ ସ୍ନୁହୀକ୍ଷୀରେଣ ପାୟୟେତ୍ ।**

**(୧୬) କାର୍ପାସ ସାରଂ ନିର୍ମୋକଂ ସର୍ପସ୍ୟ ଚ ସମାହ୍**
**ନ ସର୍ପାସ୍ତତ୍ର ତିଷ୍ଠନ୍ତି ଧୂମୋ ଯତ୍ରୈଷ ତିଷ୍ଠତ**

**(୧୭) ସର୍ବବୀଜାନାଂତୁ ପ୍ରଥମ ବାପେ ସୁବର୍ଣୋଦକସଂପ୍ଲୁତ ପୂର୍ବମୁଷ୍ଟିଂ ବାପୟେତ୍ । ଅମୁଂ ଚ ମନ୍ତ୍ରଂ ବ୍ରୂୟାତ୍‌—ପ୍ରଜାପତୟେ କାଶ୍ୟପାୟ ଦେବାୟ ନମଃ ସଦା । ସୀତା ମେ ଋଧ୍ୟତାଂ ଦେବୀ**

---

ବା ପାଞ୍ଚରାତ ରଖିବେ । ଆଖୁ ପ୍ରଭୃତି କାଣ୍ଡବୀଜଗୁଡ଼ିକର କଟା ହେବା ସ୍ଥାନରେ ମହୁ, ଘିଅ ଓ ବରାହଚର୍ବି ସହିତ ଗୋବର ମିଶାଇ ଲେପଦେବେ; ଅଳୁ, ଓଲ ପ୍ରଭୃତି କନ୍ଦାର ପିଣ୍ଡ ଉପରେ ମହୁ ଘିଅର ଲେପ ଦେବେ; କପାମଞ୍ଜି ପ୍ରଭୃତିରେ କେବଳ ଗୋବର ଲେପ ଦେବେ; ଆମ୍ବ, ପଣସ ପ୍ରଭୃତି ଗଛ ଲଗାଇବା ସକାଶେ ଖୋଳା ଯାଇଥିବା ଗାତରେ ପାଳ ପକା ପୋଡ଼ି, ଗୋରୁହାଡ଼ ଓ ଗୋବର ଦେଇ ଉବୁଷୀତରେ ଯେପରି ଗଛ ଫୁଲଫଳରେ ଭରିହେବ ସେପରି ବ୍ୟବସ୍ଥା କରିବେ । (୧୫) **କୃମିକୀଟାଦି ପ୍ରତିକାରଃ**—ଗଛ ଅଙ୍କୁରିତ ହୋଇ ଦୁଇ ତିନିପତ୍ର ହେଲେ ପିତାକେରଣ୍ଡି ମାଛ ତା ମୂଳରେ ପୋତି ସେଥିରେ ଶିଙ୍ଘୁଖୀର ଢ଼ାଳିବେ କିମ୍ବା ଶିଙ୍ଘୁଖୀରରେ ପିତାକେରଣ୍ଡି ମାଛ ଗୋଳାଇ ଉକ୍ତ ଗଛମୂଳରେ ପୋତିବେ । ଏଥିଦ୍ୱାରା ଗଛ ଫଳଫୁଲରେ ଭରିହୁଏ ଏବଂ ଗଛକୁ କୃମିକୀଟାଦି ଅନିଷ୍ଟକାରୀ ଜନ୍ତୁ ନଷ୍ଟ କରି ପାରନ୍ତି ନାହିଁ । (୧୬) କପାମଞ୍ଜିର ତେଲ (କାର୍ପାସ ସାର)ରେ ସାପକାତି ମିଶାଇ ଧୂପଦେଲେ ସେହି ଧୂପ ଯେଉଁଠାରେ ଯେତେ ସ୍ଥାନ ବ୍ୟାପିଥାଏ ସେତେ ସ୍ଥାନରେ ଆଉ ସାପ ରହିପାରେ ନାହିଁ । (୧୭) **ପ୍ରଥମ ବୀଜବପନ ବିଧିଃ**—ସମସ୍ତ ପ୍ରକାର ବୀଜକୁ ବୁଣିବା ବେଳେ ପ୍ରଥମ ମୁଠାକ ସୁବର୍ଣ୍ଣ ମିଶ୍ରିତ ଜଳରେ ବୁଡ଼ାଇ ଉପରଲିଖିତ 'ପ୍ରଜାପତୟେ'

ବୀଜେଷୁ ଚ ଧନେଷୁ ଚ । (୧୮) ଷଣ୍ଡବାଟଗୋପାଳକଦାସକର୍ମ-କରେଭ୍ୟୋ ଯଥାପୁରୁଷପରିବାପଂ ଭକ୍ତଂ କୁର୍ଯାତ୍ । ସପାଦ ପଣିକଂ ମାସଂ ଦଦ୍ୟାତ୍ । କର୍ମାନୁରୂପଂ କାରୁଭ୍ୟୋ ଭକ୍ତ ବେତନମ୍ । (୧୯) ପ୍ରଶୀର୍ଣଂ ଚ ପୁଷ୍ପଫଳଂ ଦେବକାର୍ଯାର୍ଥଂ ...ାଗ୍ରୟଣାର୍ଥଂ ଶ୍ରୋତ୍ରିୟାସ୍ତପସ୍ୱିନଶ୍ଚାହରେୟୁଃ । ରାଶି-...ଭୟୁଃ ।

...ଆକାଳଂ ଚ ସସ୍ୟାଦ ଜାତଂ ଜାତଂ ପ୍ରବେଶୟେତ୍ ।
ନ କ୍ଷେତ୍ରେ ସ୍ଥାପୟେତ୍ କିଂଚତ୍ ପଲାଳମପି ପଣ୍ଡିତଃ ॥

...ତ୍ୟାଦ ମନ୍ତ୍ର ପାଠକରି ବୁଣିବେ । ଏହି ମନ୍ତ୍ରର ଅର୍ଥ—"ପ୍ରଜାପତି କାଶ୍ୟପ ଦେବଙ୍କୁ ସର୍ବଦା ନମସ୍କାର । କୃଷିରୂପା ଦେବୀ (ଅନ୍ନପୂର୍ଣ୍ଣା) ଧନଧାନ୍ୟରେ ପୂର୍ଣ୍ଣ ହୁଅନ୍ତୁ" । (୧୮) ମାଲି, ଜଗାଳୀ, ଗଉଡ଼, ଗୁଲ୍ଲର ଓ ଶ୍ରମିକମାନଙ୍କୁ ସେମାନଙ୍କ ପରିଶ୍ରମ ଓ କିଏ କେତେ ପରିମାଣରେ ଭୋଜନ କରିପାରିବ ସେପରି ପେଟ ଚଳି ଭୋଜନର ବ୍ୟବସ୍ଥା କରିବେ ଏବଂ ସେମାନଙ୍କୁ ସଓଆ ଏକପଣ (ପାଞ୍ଚ ଟଙ୍କା) ମାସିକ ବେତନ ମଧ୍ୟ ଦେବେ । * କାରୁ ଅର୍ଥାତ୍ ବଢ଼େଇ, ତନ୍ତୀ, ନାପିତ, ରଜକ (ଧୋବା), ଚମାର (ମୋଚି) ପ୍ରଭୃତିଙ୍କୁ ସେମାନଙ୍କ କର୍ମ ଅନୁରୂପ ଭୋଜନ ବେତନର ବ୍ୟବସ୍ଥା କରିବେ । (୧୯) ଗଛରୁ ଆପେ ଝଡ଼ି ପଡ଼ିଥିବା ଫୁଲ ଓ ଫଳଗୁଡ଼ିକୁ ଦେବକାର୍ଯ ସକାଶେ ଏବଂ ସ୍ୱୟଂ ପତିତ (ଆପେ ଆପେ ଝଡ଼ି ପଡ଼ିଥିବା) ବ୍ରୀହି (ଷାଠିକା ଧାନ) ଓ ଯବଧାନଗୁଡ଼ିକୁ ନବାନ୍ନ ସକାଶେ ଶ୍ରୋତ୍ରିୟ (ଛନ୍ଦପାଠୀ ବ୍ରାହ୍ମଣ) ଓ ତପସ୍ୱୀମାନେ ସଂଗ୍ରହ କରି ନେବେ ଏବଂ ଖଳରୁ ଧାନ ଗଦାମରି ଗଦା ବା ବଡ଼ା ଆସିବା ପରେ ସେଠାରେ ଯେଉଁ ଛିଣ୍ଡା ଶିଂଷା ଓ ଝଡ଼ି ପଡ଼ିଥିବା ଧାନଗୁଡ଼ିକ ପଡ଼ିଥାଏ, ସେଗୁଡ଼ିକୁ † ଉଂଛବୃତ୍ତିକାର-ମାନେ ସଂଗ୍ରହ କରି ନେବେ । (୨୦) ଯେଉଁ ସମୟରେ ଯେଉଁ ଶସ୍ୟ ଅଦାୟ

* ତକ୍ଷା ଚ ତନ୍ତୁବାୟଶ୍ଚ ନାପିତୋ ରଜକ ସ୍ତଥା ।
ପଞ୍ଚମଶ୍ଚର୍ମକାରଶ୍ଚ କାରବଃ ଶିଳ୍ପିନୋମତାଃ ॥

† ଉଂଛବୃତ୍ତିକାଷ୍ଠ—ଧାନ୍ୟକଣାଦାନଜୀବୀ ଅର୍ଥାତ୍ ଧାନଖଳରୁ ସମୁଦାୟ ଧାନବଡ଼ା ଆସିବା ପରେ ସେଠାରେ ପଡ଼ିଥିବା ଧାନକୁ ଗୋଟି ଗୋଟି କରି ଗୋଟାଇ ଜୀବିକା-ନିର୍ବାହ କରିବା ବ୍ୟକ୍ତି ।

(୨୧) ପ୍ରକରଣାଂ ସମୁଚ୍ଛ୍ରାୟାନ୍ ବଳଭୀର୍ବା ତଥାବଧାଃ ।
ନ ସଂହତାନି କୁର୍ବୀତ ନ ତୁଚ୍ଛାନି ଶିରାଂସି ଚ ॥
(୨୨) ଖଳସ୍ୟ ପ୍ରକରାନ୍ କୁର୍ଯାନ୍ମଣ୍ଡଳାନ୍ତେ ସମାଶ୍ରିତାନ୍ ।
ଅନଗ୍ନିକାଃ ସୋଦକାଶ୍ଚ ଖଳେ ସ୍ୟୁଃ ପରକର୍ମିଣଃ ॥

---

ହେବ, * ପଣ୍ଡିତ ବ୍ୟକ୍ତି ତାହା ଯଥାଶୀଘ୍ର ସଂଗ୍ରହ କରି ସୁରକ୍ଷି
ଏପରି କି ବାଲିରେ ଅଗାଡ଼ି କିମ୍ବା ପାଳ କେତେ ମଧ୍ୟ ଘୁଣ୍ଡି
(୨୧) କଟା ହୋଇ ଆସିବା ଧାନ ପ୍ରଭୃତି ଶସ୍ୟ ଉଚ୍ଚ ସ୍ଥାନରେ ଗଦା କ
କିମ୍ବା ଛୋଟ ଛୋଟ ଗଦା କରି ରଖିବେ । ଏଗୁଡ଼ିକୁ ଲଗାଲଗି କରି ରଖି
ନାହିଁ ଏବଂ ଏହି ଶସ୍ୟଗଦାଗୁଡ଼ିକର ଉପରଭାଗ ବେଶି ଗୋଳିଆ କିମ୍ବା ଚେପ୍ଟା ନକରି, ପ୍ରବଳ ବତାସ ପ୍ରଭୃତିରେ ଉଡ଼ି ନଗଲା ଭଳି ଗଦାର ମଝିରେ ଓ ଉପରଭାଗରେ ପଥର ପ୍ରଭୃତି ଭାରି ଜିନିଷ ମଧ୍ୟ ରଖିବେ । (ଅନେକ ମଧ୍ୟ ଏହି ନିୟମରେ ଭିନ୍ନ ଭିନ୍ନ ଶସ୍ୟ ସଂଚୟ ପାଇଁ କରିବେ) । (୨୨) ଧାନ ଇତ୍ୟାଦିର ଗଦାଗୁଡ଼ିକ ନିକଟରେ ଖଳା ଅର୍ଥାତ୍ ଯେଉଁଠି ବଳଦ ଦ୍ୱାରା ଧାନ ଅମଳ କରାଯାଏ, ତାହା କରିବେ । ଏହି ଖଳାରେ କାମ କରୁଥିବା ହଳିଆ ମୂଲିଆ ବା କୃଷିମାନେ ପାଖରେ ନିଆଁ ରଖିବେ ନାହିଁ, କାରଣ ପାଖରେ ନିଆଁ ରଖିଲେ କାଳେ ଖଳାରେ ନିଆଁ ଲାଗି ଧାନ ପାଳ, ନଡ଼ା ପ୍ରଭୃତି ଭସ୍ମରେ ପରିଣତ ହୋଇଯିବ । ବରଂଚ ଏମାନେ ଦୈବାତ୍ ନିଆଁ ଲାଗିଗଲେ ତାହା ଲିଭାଇବା ପାଇଁ ପାଖରେ ଜଳକୁମ୍ଭ ରଖିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଚତୁର୍ବିଂଶୋଽଧ୍ୟାୟଃ—ସୀତାଧ୍ୟକ୍ଷଃ—ଆଦିତଃ ପଞ୍ଚଚତ୍ୱାରିଂଶଃ ।

---

* ସସ୍ୟ ବଦ୍ଧାନ୍ ନ କୁର୍ବନ୍ତ ଶୀତମୁଷ୍ଣଂ ଋତୁର୍ଭବ୍ୟଂ ।
ସମୃଦ୍ଧିରସମୃଦ୍ଧିର୍ବା ସ ବୈ ପଣ୍ଡିତ ଉଚ୍ୟତେ ॥

## ପଞ୍ଚବିଂଶୋଽଧ୍ୟାୟଃ

## ଦ୍ୱିଚତ୍ୱାରିଂଶ ପ୍ରକରଣମ୍—ସୁରାଧ୍ୟକ୍ଷଃ

### THE SUPERINTENDENT OF LIQUOR

[illegible]ସୁରା ଅର୍ଥାତ୍ ଗୁଡ଼-ମହୁ-ମହୁଲ ପ୍ରଭୃତିରେ ପୋଚ ହୋଇ [illegible] ବାହାରିବା ମାଦକଦ୍ରବ୍ୟର ଅଧ୍ୟକ୍ଷଙ୍କ ବ୍ୟାପାର । )

**[illegible] ସୁରାଧ୍ୟକ୍ଷଃ ସୁରାକିଣ୍ୱବ୍ୟବହାରାନ୍ ଦୁର୍ଗେ ଜନପଦେ [illegible]ାରେ ବା ତଜ୍ଜାତସୁରାକିଣ୍ୱବ୍ୟବହାରିଭିଃ କାରୟେଦେକ-[illegible]ମନେକମୁଖଂ ବା ବିକ୍ରୟକ୍ରୟବଶେନ ବା । ଷଟ୍ଛତମତ୍ୟୟ-[illegible]ନ୍ୟତ୍ର କର୍ତୃକ୍ରେତୃବିକ୍ରେତୃଣାଂ ସ୍ଥାପୟେତ୍ । ଗ୍ରାମାଦନିର୍ଣ୍ଣୟନମସମ୍ପାତଂ ଚ ସୁରାୟାଃ, ପ୍ରମାଦଭୟାତ୍ କର୍ମସୁ ନିର୍ଦ୍ଦିଷ୍ଟାନାଂ, ମର୍ଯ୍ୟାଦାତିକ୍ରମଭୟାଦାର୍ଯ୍ୟାଣାମ୍, ଉତ୍ସାହଭୟାଚ୍ଚ ତୀକ୍ଷ୍ଣାନାମ୍ ।**

(୧) ସୁରାଧ୍ୟକ୍ଷ ସୁରାବ୍ୟବସାୟୀ ଶୁଣ୍ଡି ପ୍ରଭୃତିଙ୍କ ଦ୍ୱାରା ଦୁର୍ଗ, ରାଜ୍ୟ ବା ସୈନ୍ୟଛାଉଣୀରେ ସୁରାର ସନ୍ଧାନ (ପୋଚ କରିବା, ରାନ୍ଧିବା ଇତ୍ୟାଦି) ଓ ବିକ୍ରୟ କାର୍ଯ୍ୟ କରାଇବେ । ଆବଶ୍ୟକତା ଅନୁସାରେ ଏହି ସୁରାର ବିକ୍ରୟ କୌଣସି ଗୋଟିଏ କେନ୍ଦ୍ରରେ କରାଇବେ କିମ୍ବା ଲୋକମାନଙ୍କ ଆଗ୍ରହ ଓ ସୁବିଧା ଅନୁସାରେ ଭିନ୍ନ ଭିନ୍ନ ସ୍ଥାନରେ ମଧ୍ୟ ବିକ୍ରୀକେନ୍ଦ୍ରମାନ ସ୍ଥାପନ କରାଇବେ । ସରକାରୀ ବିକ୍ରୀକେନ୍ଦ୍ର ବ୍ୟତୀତ ଅନ୍ୟସ୍ଥାନରେ ତିଆରି ମଦ ରଖିଥିବା, କିଣୁଥିବା ଓ ବିକୁଥିବା ବ୍ୟକ୍ତିମାନଙ୍କୁ ଛ'ଶହ ପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବେ । ସୁରାପାନ କରି * ମତୁଆଲ ହେବାର ଭୟଥିବା ଯୋଗୁଁ ସୁରାପାୟୀ ବ୍ୟକ୍ତିଙ୍କୁ ଗାଁବାହାରେ ଯିବାକୁ ଦେବେ ନାହିଁ, ଗୋଟିଏ ଘରୁ ଅନ୍ୟ ଘରକୁ କିମ୍ବା ଜନାକୀର୍ଣ୍ଣ (ଗହଳି) ସ୍ଥାନକୁ ଯିବାକୁ ଦେବେ ନାହିଁ । ସରକାରୀ କର୍ମଚାରୀମାନେ ନିଜ ନିଜ କାର୍ଯ୍ୟରେ ପ୍ରମାଦ ଅର୍ଥାତ୍ ଅସାବଧାନତା ଘଟିବା ଭୟରେ, ଆର୍ଯ୍ୟ ଅର୍ଥାତ୍ ସଜ୍ଜନ ବା ମାନ୍ୟଗଣ୍ୟ ବ୍ୟକ୍ତିମାନେ ମର୍ଯ୍ୟାଦାର ଅତିକ୍ରମ ହେବା ଭୟରେ

* ବୈକ୍ଲବ୍ୟଂ ଧରଣୀପାତଂ ଅୟଥୋଚିତ ଜଳ୍ପନଂ ।
ସନ୍ନିପାତସ୍ୟ ଚିହ୍ନାନି ମଦ୍ୟଂ ସର୍ବାଣି ଦର୍ଶୟେତ୍ ॥ —ଇତି ଉଦ୍ଭଟସାଗରେ ।

(୬) ଲକ୍ଷିତମଲ୍ପଂ ବା ଚତୁର୍ଭାଗମର୍ଧକୁଡ଼ୁବଂ କୁଡ଼ୁବମର୍ଧପ୍ରସ୍ଥଂ ପ୍ରସ୍ଥଂ ବେତି ଜ୍ଞାତଶୌଚା ନିର୍ହରେୟୁଃ । ପାନାଗାରେଷୁ ବା ପିବେୟୁ-ରସଞ୍ଚାରିଣଃ । (୩) ନିକ୍ଷେପୋପନିଧିପ୍ରୟୋଗାପହୃତାଦୀନା-ମନିଷ୍ଟୋପଗଣାନାଂ ଚ ଦ୍ରବ୍ୟାଣାଂ ଜ୍ଞାନାର୍ଥମସ୍ୱାମିକଂ କୁପ୍ୟଂ [illegible] ଗ୍ରେପଲଭ୍ୟ ନିକ୍ଷେପ୍ତାରମନ୍ୟତ୍ର ବ୍ୟପଦେଶେନ ଗ୍ରା[illegible]

---

ଏବଂ ଉଷ୍ଣେ ଅର୍ଥାତ୍ ଶୁଦ୍ଧବାଦମାନେ ଅସ୍ଥାନରେ ଶସ୍ତ୍ର ପ୍ରହାର[illegible] ଭୟରେ ସୁରାପାନ କରି ଘରୁ ନ ବାହାରିବା କିମ୍ବା ସୁରାପାନ କରି[illegible] ଇଚ୍ଛା ନ କରିବା ଶ୍ରେୟସ୍କର । (୨) ରାଜକୀୟ ମୋହର ଥାଇ ଚତୁର୍ଥ[illegible] କୁଡ଼ୁବ, ଅର୍ଦ୍ଧ କୁଡ଼ୁବ, ଏକ କୁଡ଼ୁବ, ଅର୍ଦ୍ଧପ୍ରସ୍ଥ ବା ଏକପ୍ରସ୍ଥ ସୁରା, ଶୁଦ୍ଧ ବ୍ୟବହାର ଅର୍ଥାତ୍ ସୁରାର ଗୁଣଦୁର୍ଗୁଣ ଜାଣିଥିବା ସତ୍‌ସ୍ୱଭାବ ବ୍ୟକ୍ତିମାନେ ସୁରାବିକ୍ରୟ ସ୍ଥାନରୁ ବାହାରେ ବ୍ୟବହାର କରିବା ପାଇଁ ନେଇପାରନ୍ତି । ଯେକୌଣସି ସୁରାପାନାଭିଳାଷୀ ବ୍ୟକ୍ତି ପାନାଳୟରେ କେବଳ ସୁରାପାନ କରି ନିଶାଛାଡ଼ିବା ପର୍ଯ୍ୟନ୍ତ ସେହିଠାରେ ରହିବାକୁ ବାଧ୍ୟ ହେବେ । (୩) ସୁରା ବ୍ୟବହାର ନିନ୍ଦନୀୟ ହେଲେ ମଧ୍ୟ ଏହାଦ୍ୱାରା ଚୋର, ଦୁଃସାହସିକ ପ୍ରଭୃତି ଅପରାଧୀମାନଙ୍କୁ ସହଜରେ ଗିରଫଦାର କରିବା ସୁବିଧା ହୋଇଥାଏ । ଅତଏବ ପାନାଳୟରେ ମଦ୍ୟପମାନଙ୍କୁ ନିଶାଛାଡ଼ିବା ପର୍ଯ୍ୟନ୍ତ ଅଟକାଇରଖି ସେମାନେ ଘୃଣ୍ୟ ଓ ନିନ୍ଦନୀୟ ଉପାୟରେ ସଂଗ୍ରହ କରି ଆଣି ମଦ୍ୟ-ବିକ୍ରେତାଙ୍କୁ ଦେଇଥିବା ନିକ୍ଷେପ ( ଗଚ୍ଛିତ ଧନ ବା ଉପଯୋଜନ୍ ), ଉପନିଧି (ନ୍ୟାସ ବା ବନ୍ଧାମାଲ), ପ୍ରୟୋଗ (ମରାମତି ପାଇଁ ଦିଆଯାଇଥିବା ଜିନିଷ ଓ ଧାର ଧନ), ଚୋରିପଦାର୍ଥ ଓ କୁଟୁମ୍ବ ପୋଷଣ ବାହାନାରେ ମାଗି ଆଣିଥିବା ଜିନିଷ ପ୍ରଭୃତିର ରହସ୍ୟ ଉଦ୍‌ଘାଟନ ପାଇଁ ସୁରାବିକ୍ରେତା ମଦ୍ୟପମାନଙ୍କଠାରୁ ରଖିଥିବା ବେଓ୍ୱାରିସ ଜିନିଷ, ଖଣ୍ଡା, କାଡ ପ୍ରଭୃତି ହାତହତିଆର ଓ ସୁନା ଅଳଙ୍କାର ପ୍ରଭୃତିକୁ ଜବତ୍ କରି, ନଗରାଧ୍ୟକ୍ଷ ଏହି ଜିନିଷ ଆଣିଥିବା ମଦ୍ୟପମାନଙ୍କୁ କୌଶଳକ୍ରମେ ଅନ୍ୟତ୍ର ଅପସାରିତ କରି ଓ ସେମାନଙ୍କୁ ଗାଳିଗୁଲଜ ପୂର୍ବକ ଭୟତ୍ରାସ ଦେଖାଇ, ସେମାନଙ୍କ ତୁଣ୍ଡରେ ଅପରାଧର ପ୍ରକୃତ ବିବରଣୀ ପ୍ରକାଶ କରାଇ ତାଙ୍କୁ ଗିରଫଦାର କରାଇବେ ( ଅଟକ କରାଇବେ ) । ଆୟଠାରୁ ଅପେକ୍ଷା ଅଧିକ ବ୍ୟୟକାରୀ,

ଅତବ୍ୟୟକର୍ତ୍ତାରମନାୟତବ୍ୟୟଂ ଚ । (୪) ନ ଚାନର୍ଘେଣ କାଳିକାଂ ବା ସୁରାଂ ଦଦ୍ୟାଦନ୍ୟତ୍ର ଦୁଷ୍ଟସୁରାୟାଃ । ତାମନ୍ୟତ୍ର-ବିକ୍ରାପୟେତ୍ । ଦାସକର୍ମକରେଭ୍ୟୋ ବା ବେତନଂ ଦଦ୍ୟାତ୍ । ବାହନପ୍ରତିପାନଂ ଶୂକରପୋଷଣଂ ବା ଦଦ୍ୟାତ୍ । (୫)
ନ୍ୟନେକକକ୍ଷାଣି ବିଭକ୍ତଶୟନାସନବନ୍ତି ପାନୋ-
ଗନ୍ଧମାଲ୍ୟୋଦକବନ୍ତି ଋତୁସୁଖାନି କାରୟେତ୍ । (୬)
ତ୍ରତ୍ୟୌପ୍ରକୃତିକୌ ବ୍ୟୟୌ ଗୂଢା ବିଦ୍ୟୁରାଗନ୍ତୂଂଶ୍ଚ ।
ତ୍ତଶାଂ ମତ୍ତସୁପ୍ତାନାମଲଂକାରାଚ୍ଛାଦନହିରଣ୍ୟାନି ଚ
ୟୁଃ । ତନ୍ନାଶେ ବଣିଜସ୍ତଚ୍ଚ ତାବଚ୍ଚ ଦଣ୍ଡଂ ଦଦ୍ୟୁଃ ।

---

ଅପି ନଥାଇ କେବଳ ବ୍ୟୟ କରିବା ବ୍ୟକ୍ତିମାନଙ୍କୁ ମଧ୍ୟ ପାନାଳୟରେ ଧରିବାର ସୁବିଧା ହୋଇଥାଏ । (୪) ଦୁଷ୍ଟସୁରା ଅର୍ଥାତ୍ ଖରାପ ସୁରା ବ୍ୟତୀତ ଅନ୍ୟ ସୁରାକୁ ଅଳ୍ପ ମୂଲ୍ୟରେ ବିକ୍ରୟ କରିବେ ନାହିଁ କିମ୍ବା କାଳିବାକି ଦେବେ ନାହିଁ । ଖରାପ ସୁରାକୁ ଅନ୍ୟତ୍ର ବିକିବାର ବ୍ୟବସ୍ଥା କରିବେ, କାଳିବାକି ମଧ୍ୟ ଦେବେ । ଭୃତ୍ୟ ଓ ମଜୁରିଆମାନଙ୍କ ବେତନ ବଦଳେ ସେମାନଙ୍କୁ ଏହି ଦୁଷ୍ଟ ସୁରା ମଧ୍ୟ ଦେଇପାରିବେ କିମ୍ବା ଓଟ, ବଳଦ, ଛେଳି, ଘୁସୁରି ପ୍ରଭୃତିଙ୍କୁ ଚରାଉଥିବା ସେବକମାନଙ୍କ ବେତନ ସ୍ୱରୂପ ଦେଇଦେବେ । (ଓଟ, ବଳଦ, ଘୁସୁରି ପ୍ରଭୃତି ଗୃହପାଳିତ ଜନ୍ତୁମାନଙ୍କୁ ପିଆଇବା ସକାଶେ ଦେଇଦେବେ) । (୫) ସୁରାଧ୍ୟକ୍ଷ ପାନାଗାରରେ ଅନେକଗୁଡ଼ିଏ କୋଠରି କରାଇବେ ଓ ସେଥିରେ ଖଟ, ଶେଜ, ଚୌକି ରଖାଇ, ଗନ୍ଧ ମାଲ୍ୟ ଓ ଜଳ ପ୍ରଭୃତି ଯେଉଁ ଋତୁରେ ଯେଉଁ ସୁଖକର ଦ୍ରବ୍ୟ ଆବଶ୍ୟକ ତାହା ସେଠାରେ ସଜ୍ଜିତ କରି ରଖାଇବାର ବ୍ୟବସ୍ଥା କରିବେ । (୬) ଏହି ପାନାଗାରରେ ଛଦ୍ମବେଶରେ ଗୃହକର୍ମ କରୁଥିବା ଗୁପ୍ତଚରମାନେ ସ୍ୱଦେଶାଗତ ଓ ବିଦେଶାଗତ ମଦ୍ୟପମାନଙ୍କର ଠିକଣା ଓ ସେମାନଙ୍କର ସ୍ୱାଭାବିକ ଓ ଅସ୍ୱାଭାବିକ ବ୍ୟୟ ବିଷୟ ଅବଗତ ହେବେ । (୭) ମତୁଆଳ ହୋଇ ଗଡ଼ୁଥିବା ଓ ମଦନଶାରେ ଅଭିଭୂତ ହୋଇ ଶୋଇଥିବା ମଦ୍ୟପ-ମାନଙ୍କ ଅଳଙ୍କାର, ବସ୍ତ୍ର ଓ ଟଙ୍କା ସୁନା ଇତ୍ୟାଦିର ପରିଚୟ ଓ ପରିମାଣ ପ୍ରଭୃତି ମଧ୍ୟ ଏହି ଗୁପ୍ତଚରମାନେ ଅବଗତ ହେବେ । ସେମାନଙ୍କର ଏହି

**ବଣିଜସ୍ତୁ ସଂବୃତେଷୁ କକ୍ଷ୍ୟାବକ୍ଷଶେଷୁ ସ୍ୱଦାସୀଭିଃ ପେଶଲରୂପାଭିଃ ଆଗନ୍ତୂନାଂ ବାସ୍ତବ୍ୟାନାଂ ଚ ଆର୍ଯରୂପାଣାଂ ମତ୍ତସୁପ୍ତାନାଂ ଭାବଂ ବିଦ୍ୟୁଃ । (୮) ମେଦକପ୍ରସନ୍ନାସବାରିଷ୍ଟମୈରେୟମଧୂନାମ୍ । ଉଦକଦ୍ରୋଣଂ ତଣ୍ଡୁଳାନାମର୍ଧାଢ଼କଂ ତ୍ରୟଃ ପ୍ରସ୍ଥାଃ କିଣ୍ୱସ୍ୟେତି ମେଦକ ଯୋଗଃ । ଦ୍ୱାଦଶାଢ଼କଂ ପିଷ୍ଟସ୍ୟ ପଞ୍ଚ ପ୍ରସ୍ଥା ... ପୁତ୍ରକତ୍ୱକ୍‌ଫଳଯୁକ୍ତୋ ବା ଜାତସଂଭାରଃ ପ୍ରସନ୍ନା ... କପିତ୍ଥତୁଲା ଫାଣିତଂ ପଞ୍ଚତୌଳିକଂ ପ୍ରସ୍ଥୋ ମଧୁନ ... ଯୋଗଃ । ପାଦାଧିକୋ ଜ୍ୟେଷ୍ଠଃ ପାଦହୀନଃ କ ...**

---

ସବୁ ଜିନିଷରୁ କୌଣସିଟିର ଚୋରି ହେଲେ ମଦ୍ୟବିକ୍ରେତାଠାରୁ ... ଯାଇଥିବା ଜିନିଷର ଉପଯୁକ୍ତ ମୂଲ୍ୟ ଆଦାୟ କରି ଯାହାର ଜିନିଷ ଚୋରି ଯାଇଛି ସେହି ମଦ୍ୟପଙ୍କୁ ସୁନାଧନ ଦିଆଇଦେବେ ଏବଂ ଉକ୍ତ ଜିନିଷର ମୂଲ୍ୟ ସମପରିମାଣ ଅର୍ଥଦଣ୍ଡରେ ମଦ୍ୟବିକ୍ରେତାଙ୍କୁ ଦଣ୍ଡିତ କରିବେ । ମଦ୍ୟବିକ୍ରେତା ମଧ୍ୟ ସୁରାଳୟର ନିଭୃତ କୋଠରିମାନଙ୍କରେ ମନୋହର ବେଶଧାରିଣୀ ଦାସୀମାନଙ୍କଦ୍ୱାରା ମତ୍ତ ଓ ସୁପ୍ତ ଅବସ୍ଥାରେ ଥିବା ବିଦେଶାଗତ ଓ ସ୍ୱଦେଶାଗତ ଅସଲି ଓ ନକଲି ଭଦ୍ରବ୍ୟକ୍ତିମାନଙ୍କର ମନୋଗତ ଗୂଢ଼ ଅଭିପ୍ରାୟ ଅବଗତ ହେବେ । (୮) ମେଦକ, ପ୍ରସନ୍ନା, ଆସବ, ଅରିଷ୍ଟ, ମୈରେୟ ଓ ମଧୁ ଭେଦରେ ସୁରା ଛ'ପ୍ରକାର । ଏକଦ୍ରୋଣ ଜଳ, ଅର୍ଦ୍ଧଆଢ଼କ ତଣ୍ଡୁଳ ଓ ତିନିପ୍ରସ୍ଥ କିଣ୍ୱ (ସୁରାବୀଜ) ସହଯୋଗରେ 'ମେଦକ' ନାମକ ସୁରା ପ୍ରସ୍ତୁତ ହୁଏ । ବାରଆଢ଼କ ଗୁଣ୍ଡଚୂନା ବା ପିଠଉ, ପାଞ୍ଚପ୍ରସ୍ଥ କିଣ୍ୱ, କାମରୂପ ଦେଶଜ ପୁତ୍ରକ ନାମକ ବୃକ୍ଷର ଛାଲି, ଫଳ ଓ ଅଜାନବିନ୍ଧ, ଲୋଧ ପ୍ରଭୃତି ପଦାର୍ଥ ସହଯୋଗରେ 'ପ୍ରସନ୍ନା' ନାମକ ସୁରା ଏବଂ ଶହେପଲ କଇଥ ରସ, ପାଞ୍ଚଶହ ପଲ ଗୁଡ଼ଫେଣା (ଫାଣିତ) ଓ ଏକପ୍ରସ୍ଥ ମହୁଦ୍ୱାରା 'ଆସବ' ନାମକ ସୁରା; (ଏହି ଆସବ ପଦାର୍ଥର ଚୌଥଭାଗରୁ ଭାଗେ ବୃଦ୍ଧିକଲେ ତାହା 'ଶ୍ରେଷ୍ଠ ଆସବ' ଏବଂ ଚୌଥଭାଗରୁ ଭାଗେ ଊଣାକଲେ ତାହା 'ହୀନ ଆସବ' ହୁଏ। ଚିକିତ୍ସକମାନେ ନାନାବିଧ ରୋଗ ଚିକିତ୍ସା ପାଇଁ ଯେଉଁ ଦ୍ରାକ୍ଷାରିଷ୍ଟ, ଦଶମୂଳାରିଷ୍ଟ, ଅଭୟାରିଷ୍ଟ ଓ ଅଶୋକାରିଷ୍ଟ ପ୍ରଭୃତି ଅରିଷ୍ଟ ପ୍ରସ୍ତୁତ କରନ୍ତି, 'ଅରିଷ୍ଟ' ନାମକ ସୁରାର

ଫଳତ୍ରିକପ୍ରମାଣାଃ ପ୍ରତ୍ୟେକଶୋ ଫଳାବର୍ଣ୍ଣାମରଷ୍ଟାଃ । ମେଷଶୃଙ୍ଗୀ-ତ୍ୱକ୍କ୍ୱାଥାଭିଷୁତୋ ଗୁଡପ୍ରତୀବାପଃ ପିପ୍ପଳୀମରିଚସମ୍ଭାରସ୍ତ୍ରିଫଳା-ଯୁକ୍ତୋ ବା ମୈରେୟଃ । ଗୁଡଯୁକ୍ତାନାଂ ବା ସର୍ବେଷାଂ ତ୍ରିଫଳାସମ୍ଭାରଃ । ମୃଦ୍ୱୀକାରସୋ ମଧୁ ତସ୍ୟ ସ୍ୱଦେଶୋ କାପିଶାୟନଂ ହାରହୂରକମିତି । (୯) ମାଷକଲନୀ-ପିଣ୍ଡଂ ବା ତ୍ରିଭାଗାଧିକତଣ୍ଡୁଳଂ ମୋରଟାଦୀନାଂ କ୍ତଂ କିଣ୍ୱାବନ୍ଧଃ । (୧୦) ପାଠାଲୋଧ୍ରତେଜୋ-ବାଳୁକମଧୁକମଧୁରସାପ୍ରିୟଙ୍ଗୁଦାରୁହରିଦ୍ରାମରିଚପିପ୍ପଳୀନାଂ

ଭ ପ୍ରଣାଳୀ ସେମାନଙ୍କଠାରୁ ଶିକ୍ଷା କରିବାକୁ ହେବ । * ମେଷଶୃଙ୍ଗୀର କ୍ୱାଥରେ ଯଥାଯୋଗ୍ୟ ଗୁଡ଼ ମିଶ୍ରଣପୂର୍ବକ ପିପ୍ପଳୀ ଓ ମରିଚଚୂର୍ଣ୍ଣ ବା ହରିଡ଼ା, ବାହାଡ଼ା, ଅଁଳାଚୂର୍ଣ୍ଣ ମିଶ୍ରଣ କଲେ 'ମୈରେୟ' ନାମକ ସୁରା ପ୍ରସ୍ତୁତ ହୁଏ । ଗୁଡ଼ଯୁକ୍ତ ସମସ୍ତ ପ୍ରକାର ସୁରାରେ ତ୍ରିଫଳାଚୂର୍ଣ୍ଣ ପ୍ରକ୍ଷେପ କରାଯାଏ । ଦ୍ରାକ୍ଷାରସରୁ ପ୍ରସ୍ତୁତ ହେବା ସୁରାର ନାମ 'ମଧୁ' । ଏହି 'ମଧୁ' ନାମକ ସୁରା, 'କପିଶା' ନାମକ ନଦୀତୀରବର୍ତ୍ତୀ ନଗରରେ ପ୍ରସ୍ତୁତ ହେଉଥିବା ଯୋଗୁଁ ଏହାର ଅନ୍ୟ ନାମ 'କାପିଶାୟନ' ଏବଂ ହରହୂର ନାମକ ନଗରରେ ମଧ୍ୟ ପ୍ରସ୍ତୁତ ହେଉଥିବା ଯୋଗୁଁ ଏହାର ଅପର ନାମ 'ହାରହୂରକ' ଅଟେ । (୯) କିଣ୍ୱ ପ୍ରସ୍ତୁତବିଧିଃ—ଏକଦ୍ରୋଣ ପରିମିତ ସିଝା ବା କଞ୍ଚା ବିରିବରର ପତଳା ପିଠଉରେ ଏକଦ୍ରୋଣ ତିନିପା' ଚାଉଳ ପିଠଉ ବା ଗୁଣ୍ଡ, †ମୋରଟା ପ୍ରଭୃତି ପଦାର୍ଥର ପ୍ରତ୍ୟେକରୁ ଏକକର୍ଷ ହିସାବରେ ମିଶାଇଲେ 'କିଣ୍ୱଯୋଗ' ପ୍ରସ୍ତୁତ ହୁଏ (ସୁରାବୀଜ ଯୋଗ ପ୍ରସ୍ତୁତ ହୁଏ) । (୧୦) ଅକାନବିନ୍ଧ (ପାଠା), ଲୋଧ, ତେଜୋବତୀ (ଗଜପିପ୍ପଳୀ), ଅଳାଇଚ, ବାଳୁକା, ଜାଠିମଧୁ, ମଧୁରସା (ଦ୍ରାକ୍ଷା), ପ୍ରିୟଙ୍ଗୁ, ଦାରୁହଳଦୀ, ମରିଚ ଓ ପିପ୍ପଳୀ ପ୍ରତ୍ୟେକର

* ମେଷଶୃଙ୍ଗୀ—ମେଣ୍ଢାସିଙ୍ଗା ନାମକ ଓଷଧିବୃକ୍ଷ ।

† ମୋରଟା—ମୂର୍ବାଲତା ।

ମୂର୍ବାଦେବୀ ମଧୁରସା ମୋରଟା ତେଜନୀ ସ୍ରବା ।
ମଧୂଲିକା ମଧୁଶ୍ରେଣୀ ଗୋକର୍ଣ୍ଣୀ ପୀଲୁପର୍ଣ୍ଣ୍ୟପି ॥ ଇତ୍ୟମରଃ ।

ଚ ପଞ୍ଚକର୍ଷିକଃ ସମ୍ଭାରଯୋଗୋମେଦକସ୍ୟ ପ୍ରସନ୍ନାୟାଶ୍ଚ । ମଧୁକନିର୍ଯ୍ୟୂହଯୁକ୍ତା କଟଶର୍କରା ବର୍ଣ୍ଣପ୍ରସାଦନୀ ଚ । (୧୧) ଚୋଚଚିତ୍ରକବିଳଙ୍ଗଗଜପିପ୍ପଳୀନାଂ ଚ କାର୍ଷିକଃ କ୍ରମୁକମଧୁକମୁସ୍ତାଲୋଧ୍ରାଣାଂ ଦ୍ୱିକାର୍ଷିକଶ୍ଚାସବସମ୍ଭାରଃ । ଦଶଭାଗଶ୍ଚୈଷାଂ ବୀଜବନ୍ଧଃ । ପ୍ରସନ୍ନାଯୋଗଃ ଶ୍ୱେତ[illegible] ସହକାର ସୁରା, ରସୋତ୍ତରା, ବୀଜୋତ୍ତରା ବା [illegible] ସଂଭାରକୀ ବା (୧୨) ତାସାଂ ମୋରଟାପ[illegible]

---

ଚୂର୍ଣ୍ଣ ପାଞ୍ଚକର୍ଷ ହିସାବରେ (ପାଞ୍ଚତୋଳା ହିସାବରେ) ଏକତ୍ର ମି[illegible] ମେଦକ ଓ ପ୍ରସନ୍ନା ନାମକ ସୁରାର ସମ୍ଭାର ଯୋଗ (କିଣ୍ୱଯୋଗ ବା ସୁରା[illegible] ଯୋଗ) ପ୍ରସ୍ତୁତ କରାଯାଏ । ଜାଠିମଧୁର କଷାୟରେ କଟଶର୍କରା (ଗଙ୍ଗେଷ୍ଟୀ) ଯୋଗକରି ପ୍ରସନ୍ନା ଓ ମେଦକ ସୁରାରେ ମିଶାଇଲେ ସେଥିରୁ ଏକ ମନୋହର ବର୍ଣ୍ଣ ବାହାରେ । (୧୧) **ଆସବସମ୍ଭାର ଯୋଗଃ**—ଡାଲଚିନି, ଚିତାପାରୁ ମୂଳ, ବିଡ଼ଙ୍ଗ ଓ ଗଜପିପ୍ପଳୀ ପ୍ରତ୍ୟେକ ଏକ ଏକ କର୍ଷ ବା ତୋଳା * ଏବଂ ଗୁଆ, ଜାଠିମଧୁ, ମୁଥା ଓ ଲୋଧ ପ୍ରତ୍ୟେକ ଦୁଇକର୍ଷ ବା ଦୁଇତୋଳା ମିଶାଇ ଅସବସମ୍ଭାର ଯୋଗ ପ୍ରସ୍ତୁତ କରାଯାଏ । ଉପରୋକ୍ତ ଡାଲଚିନି ପ୍ରଭୃତି ଜିନିଷର ଦଶଭାଗରୁ ଏକଭାଗକୁ 'ବୀଜବନ୍ଧ' କହନ୍ତି । ଏହା ଆସବକରଣ ଦ୍ରବ୍ୟରେ ଯୋଗ କରାଯାଏ । ପ୍ରସନ୍ନା ନାମକ ସୁରାରେ ଯେଉଁସବୁ ଯୋଗ କୁହାଗଲା ଶ୍ୱେତସୁରାରେ ସେହି ଯୋଗ ବ୍ୟବହୃତ ହୁଏ । କିନ୍ତୁ ଏହା ସମ୍ଭାରରହିତ ହୋଇଥାଏ । ପାଚିଲା ଅମ୍ବରସରେ ପ୍ରସ୍ତୁତ ହେବା ସୁରାକୁ 'ସହକାର ସୁରା', ଗୁଡ଼ ମିଶାଇ ପ୍ରସ୍ତୁତ କରିବା ସୁରାକୁ 'ରସୋତ୍ତରା' ବା 'ସୀଧୁ', ବୀଜଦ୍ରବ୍ୟ ଅଧିକ ମାତ୍ରାରେ ମିଶାଇ ପ୍ରସ୍ତୁତ କରିବା ସୁରାକୁ 'ବୀଜୋତ୍ତରା' ବା 'ମହାସୁରା' ଏବଂ ସମ୍ଭାର ଦ୍ରବ୍ୟ ଅଧିକ ମାତ୍ରାରେ ପ୍ରଯୁକ୍ତ ହୋଇ ପ୍ରସ୍ତୁତ ହେବା ସୁରାକୁ 'ସମ୍ଭାରକୀ' କହନ୍ତି । (୧୨) **ସୁରାପ୍ରସାଦନ ବିଧିଃ**—ଉପରୋକ୍ତ ସମସ୍ତ ସୁରାରେ

---

* ମୃଦ୍ୱୀକା ଗୋସ୍ତନୀ ଦ୍ରାକ୍ଷା ସ୍ୱାଦ୍ୱୀ ମଧୁରସେତ୍ୟପି ।
ପ୍ରତ୍ୟେକ ଦେଢ଼ତୋଳା ହିସାବରେ ମୋଟ ଛ'କର୍ଷ ବୋଲି ଭଟ୍ଟସ୍ୱାମିନ୍ ଟୀକାରେ ଅଛି ।

ମେଷଶୃଙ୍ଗୀକରଞ୍ଜକ୍ଷୀରବୃକ୍ଷକଷାୟଭାବିତଂ ଦଗ୍ଧକଟଶର୍କରା ଚୂର୍ଣ୍ଣଂ ଲୋଧ୍ରଚିତ୍ରକବିଳଙ୍ଗପାଠାମୁସ୍ତାକଳିଙ୍ଗଯବଦାରୁହରିଦ୍ରେନ୍ଦୀବର-ଶତପୁଷ୍ପାପାମାର୍ଗସପ୍ତପର୍ଣ୍ଣନିମ୍ବାସ୍ଫୋତକଳ୍କାର୍ଧଯୁକ୍ତମନ୍ତର୍ନଖୋ ମୁଷ୍ଟିଃ …ଜପେୟାଂ ପ୍ରସାଦୟତି । ଫାଣିତଃ ପଞ୍ଚ-… ରସବୃଦ୍ଧିର୍ଦେୟଃ । (୧୩) କୁଟୁମ୍ବିନଃ କୃତ୍ୟେଷୁ …ଷଧାର୍ଥଂ ବାରିଷ୍ଟମନ୍ୟଦ୍ ବା କର୍ତୁଂ ଲଭେରନ୍ । …ଜଯାତ୍ରାସୁ ଚତୁରହଃ ସୌରିକୋ ଦେୟଃ ।

…ରଟା (ମୂର୍ବା ଲତା), ପଲାଶ, † ପତ୍ତୁର (ଲୋହମାରକ), ମେଷଶୃଙ୍ଗୀ, …ଞ୍ଜ ଓ ବଟାଦି କ୍ଷୀରବୃକ୍ଷର କ୍ୱାଥରେ ଭାବିତ ହୋଇଥିବା ଦଗ୍ଧ କଟ ଶର୍କରା ଚୂର୍ଣ୍ଣ (ଗଙ୍ଗେଷ୍ଟୀଚୂର୍ଣ୍ଣ) ଓ ଏହାର ଅର୍ଦ୍ଧଭାଗ ଲୋଧ, ଚିତାମୂଳ, ବିଡ଼ଙ୍ଗ, ପାଠା (ଅକାନବିନ୍ଧ), ମୁଥା, କାଳଙ୍ଗଯବ (କଳିଙ୍ଗ ଦେଶଜାତ ଯବ), ଦାରୁହଳଦୀ, ଇନ୍ଦୀବର (ନୀଳପଦ୍ମ), ଶତପୁଷ୍ପା (ସୌଫ), ଅପାମାର୍ଗ, ଛତିନା (ସପ୍ତପର୍ଣ୍ଣ), ନିମ୍ବ, * ଅସ୍ଫୋତ (ଭୂଇଁପଲାଶ)—ଏସମସ୍ତର କଳ୍କ, ମୁଠାଭିତରେ ନଖ ଲୁଚିଯାଉଥିବା ଭଳି ମୁଠାଏ ଧରି କୁମ୍ଭୀ ଅର୍ଥାତ୍ ୧୦୨୪ ପଳ ସୁରାରେ ମିଶାଇଲେ ତାହା ଯେପରି ରାଜପାନଯୋଗ୍ୟ ହେବ ସେଭଳି ସ୍ୱଚ୍ଛ ହୋଇଥାଏ । ଏହି ପ୍ରସାଦିତ ସୁରାରେ ପାଞ୍ଚପଳ ଫାଣିତ (ଗୁଡ଼ଫେଣା) ରସବୃଦ୍ଧି ସକାଶେ ନିକ୍ଷେପ କରିବା ଆବଶ୍ୟକ । (୧୩) ଗ୍ରାମ ଓ ସହରର କୁଟୁମ୍ବୀଲୋକମାନେ ବିବାହାଦି କୃତ୍ୟରେ ଶ୍ୱେତସୁରା, ଔଷଧାର୍ଥରେ ଅରିଷ୍ଟ ଆସବ ପ୍ରଭୃତି ସୁରା ବା ଏତଦ୍ଭିନ୍ନ ଅନ୍ୟ ମେଦକାଦି ସୁରା ସନ୍ଧାନ କରି ପାରିବେ । ଦୁର୍ଗୋତ୍ସବ, ବସନ୍ତୋତ୍ସବ, ବନ୍ଧୁମିଳନ ଓ ଇଷ୍ଟଦେବତାଙ୍କ ପୂଜା ସମୟରେ ଚାରିଦିନ ସୁରାପାନ କରିବା ପାଇଁ ଓ ସୁରା ସନ୍ଧାନ କରିବା ପାଇଁ ସୁରାଧ୍ୟକ୍ଷ ଅନୁମତି ଦେଇପାରିବେ । ଅନୁମତି ନନେଇ ସୁରାପାନ ଓ ସନ୍ଧାନ କରିବା ବ୍ୟକ୍ତିମାନଙ୍କୁ ପ୍ରହବଣ ଅର୍ଥାତ୍ ପ୍ରୀତିଭୋଜନ ଶେଷରେ ସେମାନେ ଯେତେ ଦିନ ଏପରି ବିନାନୁମତିରେ

* ମୋରଟା = ମୂଳପୁଷ୍ପିକା ନାମକ ବଲ୍ଲୀଭେଦ ।
† ଧତ୍ତୁର = (ପାଠାନ୍ତର) କୁଙ୍କୁରାଗଛ । କଳାୟ = (ପାଠାନ୍ତର) ଚଣା ।
* ଆସ୍ଫୋତ = ଅରଖ, ବଣମଲ୍ଲୀ, ଭୁଇଁପଲାଶ ଓ ଅପରାଜିତା ଗଛ ।

ତେଷ୍ୱନନୁଜ୍ଞାତାନାଂ ପ୍ରହବଣାନ୍ତଂ ଦୈବସିକମତ୍ୟୟଂ ଗୃହ୍ଣୀୟାତ୍ ।
(୧୪) ସୁରକଣ୍ୱବଚୟଂ ସ୍ତ୍ରିୟୋ ବାଳାଶ୍ଚ କୁର୍ଯୁଃ । ଅରାଜପଣ୍ୟାଃ ପଞ୍ଚକଂ ଶତଂ ଶୁଲ୍କଂ ଦଦ୍ୟୁଃ ସୁରକାମେଦକାରିଷ୍ଟମଧୁଫଳାମ୍ଳାମ୍ଳଶୀଧୂନାଂ ଚ ।

(୧୫) ଅହ୍ନଶ୍ଚ ବିକ୍ରୟଂ ବ୍ୟାଜୀଂ ଜ୍ଞାତ୍ୱା ମାନହିରଣ୍ୟ[redacted]
ତଥା ବୈଧରଣଂ କୂର୍ଯାଦୁଚିତଂ ଚାନୁବର୍ତୟେ[redacted]

---

ପାନ ସନ୍ଧାନାଦ କାର୍ଯ୍ୟ କରଛନ୍ତି, ସେତେ ଦନର ଦୈନିକ [redacted] ହସାବ କର ସୁରାଧ୍ୟକ୍ଷ ସେମାନଙ୍କଠାରୁ ଜରିମାନା ଅସୁଲ କରି[redacted] (ଅନୁମତ ନଥିବା ଦନମାନଙ୍କରେ କାର୍ଯ୍ୟହାନି କର ମତୁଆଲ ହେବା ଗୃହର ପ୍ରଭୃତଙ୍କୁ ଏହ ପ୍ରାତ୍ୟହକ (ଦୈନିକ) ଦଣ୍ଡ ଦେବାକୁ ହେବ ବୋଲି କେହ କେହ କହନ୍ତି) । (୧୪) ସୁରା ଓ ସୁରାବୀଜର ସଂଗ୍ରହ ସୁରାପାନ-ଅନଭିଜ୍ଞ ସ୍ତ୍ରୀ ଓ ବାଳକମାନଙ୍କ ଦ୍ୱାରା କରାଇବେ । ରାଜକୀୟ ସୁରା ବ୍ୟବସାୟୀ ବ୍ୟତୀତ ସ୍ୱତନ୍ତ୍ର ସୁରା ବ୍ୟବସାୟୀମାନେ ସେମାନଙ୍କ ଉତ୍ପାଦିତ ସୁରକ, ମେଦକ, ଅରିଷ୍ଟ, ମଧୁ, ଫଳାମ୍ଳ ଓ ଅମ୍ଳଶୀଧୁ ପ୍ରଭୃତ ସୁରାର ଶତକରା ପାଞ୍ଚଭାଗ ରାଜାଙ୍କୁ ଶୁଳ୍କ ସ୍ୱରୂପ ଦେବେ । (୧୫) ଦୈନିକ ବିକ୍ରୟ ଓ ଭାଗୁଡ଼ି ଇତ୍ୟାଦ ଅବଗତ ହୋଇ ସୁରାଧ୍ୟକ୍ଷ ଉପରୋକ୍ତ ବ୍ୟବସାୟୀମାନଙ୍କଠାରୁ ଶୋଳଭାଗରୁ ଭାଗେ ମାନବ୍ୟାଜୀ (ମାପ କର) ଓ କୋଡ଼ିଏଭାଗରୁ ଭାଗେ ହରଣ୍ୟବ୍ୟାଜୀ (ବଟ୍ଟୀକର) ଆଦାୟ କରିବେ । ରାଜକୀୟ ସୁରା ବ୍ୟବସାୟରେ ସ୍ୱତନ୍ତ୍ର ବ୍ୟବସାୟୀମାନଙ୍କ ଯୋଗୁଁ ଘଟିଥିବା କ୍ଷତର ପୂରଣ ସକାଶେ ଏପରି କରାଗଲେ ମଧ୍ୟ ସ୍ୱତନ୍ତ୍ର ସୁରା ବ୍ୟବସାୟୀମାନଙ୍କ ବ୍ୟବସାୟରେ ହାନି ଘଟିବା ଭଳି କରଧାର୍ଯ୍ୟ ନକରି ସୁରାଧ୍ୟକ୍ଷ ଉଚିତ ପନ୍ଥା ଅବଲମ୍ବନ କରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଅଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ପଞ୍ଚବିଂଶୋଽଧ୍ୟାୟଃ—ସୁରାଧ୍ୟକ୍ଷଃ—ଆଦିତଃ ଷଟ୍‌ଚତ୍ୱାରିଂଶଃ ।



## ଷଡ୍‌ବିଂଶୋଽଧ୍ୟାୟଃ

## ଦ୍ୱିଚତ୍ୱାରିଂଶ ପ୍ରକରଣମ୍—*ସୂନାଧ୍ୟକ୍ଷଃ

### THE SUPERINTENDENT OF SLAUGHTER HOUSE

[illegible] ଅର୍ଥାତ୍ ଭକ୍ଷ୍ୟପ୍ରାଣିବଧ ସ୍ଥାନର ଅଧ୍ୟକ୍ଷଙ୍କ ବ୍ୟାପାର )

[illegible] ସୂନାଧ୍ୟକ୍ଷଃ ପ୍ରଦିଷ୍ଟାଭୟାନାମଭୟବନବାସିନାଂ ଚ [illegible] ମତ୍ସ୍ୟାନାଂ ବନ୍ଧବଧହିଂସାୟାମୁତ୍ତମଂ ଦଣ୍ଡଂ [illegible] । କୁଟୁମ୍ବିନାମଭୟବନପରିଗ୍ରହେଷୁ ମଧ୍ୟମମ୍ । [illegible] ପ୍ରବୃତ୍ତବଧାନାଂ ମତ୍ସ୍ୟପକ୍ଷିଣାଂ ବନ୍ଧବଧହିଂସାୟାଂ ପାଦୋନ- [illegible] ବିଂଶତିପଣମତ୍ୟୟଂ କୁର୍ଯାତ୍, ମୃଗପଶୂନାଂ ଦ୍ୱିଗୁଣମ୍ । (୩) ପ୍ରବୃତ୍ତହିଂସାନାମପରିଗୃହୀତାନାଂ ଷଡ୍‌ଭାଗଂ ଗୃହ୍ଣୀୟାତ୍ । ମତ୍ସ୍ୟ

(୧) ସୂନାଧ୍ୟକ୍ଷ, ହିଂସା କରିବାକୁ ନିଷେଧ କରାଯାଇଥିବା ଅଭୟ-ବନବାସୀ ଅର୍ଥାତ୍ ବ୍ରହ୍ମସୋମାରଣ୍ୟାଦି ସମସ୍ତ ଅଟବୀ ଓ ମୃଗବନ ପ୍ରଭୃତି ବନମାନଙ୍କରେ ବାସ କରୁଥିବା ହରିଣ ପ୍ରଭୃତି ମୃଗ, ଗଣ୍ଡାର, ମହିଷ ପ୍ରଭୃତି ପଶୁ, ମୟୂରାଦି ପକ୍ଷୀ ଓ ମତ୍ସ୍ୟମାନଙ୍କୁ ଯେଉଁମାନେ ନିଷେଧାଜ୍ଞା ଲଙ୍ଘନ ପୂର୍ବକ ବନ୍ଧନ, ବଧ ବା ପ୍ରହାର କରିବେ, ସେମାନଙ୍କୁ ଉତ୍ତମ-ସାହସଦଣ୍ଡରେ ଦଣ୍ଡିତ କରିବେ ଏବଂ ଗୃହସ୍ଥ ଲୋକମାନେ ଏପରି ଅପରାଧ କଲେ ସେମାନଙ୍କୁ ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବେ । (୨) ଯେଉଁ ମତ୍ସ୍ୟ ଓ ପକ୍ଷିମାନଙ୍କୁ କୌଣସିକାଳେ ହିଂସା କରାଯାଏନାହିଁ, ସେମାନଙ୍କୁ କୌଣସି ବ୍ୟକ୍ତି ବନ୍ଧନ, ବଧ କିମ୍ବା ପ୍ରହାର କଲେ ତାକୁ ପାଏକଣା ସତେଇଶି ପଣ ଜରିମାନା କରିବେ ଏବଂ ଏପରି ମୃଗ ପଶୁମାନଙ୍କୁ ହିଂସା କଲେ ଏହାର ଦୁଇଗୁଣ (୫୩½ ପଣ) ଜରିମାନା କରିବେ । (୩) ଯେଉଁ ପଶୁମାନଙ୍କୁ ସାଧାରଣତଃ ହିଂସା କରାଯାଏ ଏବଂ ଯେଉଁ ପଶୁମାନେ କାହାଦ୍ୱାରା ସଂରକ୍ଷିତ ନ ହୋଇଥିବା ବନରେ ବିଚରଣ କରୁଥାନ୍ତି ସେମାନଙ୍କୁ

* ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ଅଧ୍ୟକ୍ଷ ତିନିପ୍ରକାର । ସମାହର୍ତ୍ତା, ସନ୍ନିଧାତା ପ୍ରଭୃତି ଉତ୍ତମ ଅଧ୍ୟକ୍ଷ, ପୌତବାଧ୍ୟକ୍ଷ ପ୍ରଭୃତି ମଧ୍ୟମ ଓ ସୂନାଧ୍ୟକ୍ଷ, ଗଣିକାଧ୍ୟକ୍ଷ ପ୍ରଭୃତି ସାଧାରଣ ଅଧ୍ୟକ୍ଷ ।

ପକ୍ଷିଣାଂ ଦଶଭାଗଂ ବାଧିକଂ; ମୃଗପଶୂନାଂ ଶୁଲ୍କଂ ବାଧିକମ୍ ।
(୪) ପକ୍ଷିମୃଗାଣାଂ ଜୀବତ୍‌ଷଡ୍‌ଭାଗମଭୟବନେଷୁ ପ୍ରମୁଞ୍ଚେତ୍ ।
(୫) ସାମୁଦ୍ରହସ୍ତ୍ୟଶ୍ୱପୁରୁଷବୃଷଗର୍ଦଭାକୃତୟୋ ମତ୍ସ୍ୟାଃ ସାରସା
ନାଦେୟାସ୍ତଟାକକୁଲ୍ୟାଭବା ବା, କ୍ରୌଞ୍ଚୋତ୍କ୍ରୋଶକ
ଚକ୍ରବାକଜୀବଂଜୀବକଭୃଙ୍ଗରାଜଚକୋରମତ୍ତକୋକିଳମୟୂ
ଶାରକା ବିହାରପକ୍ଷିଣୋ ମଙ୍ଗଲ୍ୟାଶ୍ଚାନ୍ୟେଽପି
ପକ୍ଷିମୃଗା ହିଂସାବାଧେଭ୍ୟୋ ରକ୍ଷ୍ୟାଃ । ରକ୍ଷାତିକ୍ର
ସାହସଦଣ୍ଡଃ । (୬) ମୃଗପଶୂନାମନସ୍ଥି ମାଂସଂ ସ

ବଧ କରି ବିକ୍ରୟ କରିବା ବ୍ୟକ୍ତିଠାରୁ ସୂନାଧ୍ୟକ୍ଷ ଉକ୍ତ ବିକ୍ରୟମୂ
ଛ'ଭାଗରୁ ଭାଗେ ଶୁଳ୍କ ଅଦାୟ କରିବେ । ଏହିପରି ମତ୍ସ୍ୟ ଓ ପକ୍ଷୀମାନଙ୍କ ବିକ୍ରୟଲବ୍ଧ ଧନର ଦଶଭାଗରୁ ଭାଗେ କିମ୍ବା ତହିଁରୁ କିଛି ଅଧିକ ଓ ମୃଗପଶୁମାନଙ୍କ ବିକ୍ରୟଲବ୍ଧ ଧନର ମଧ୍ୟ ଦଶଭାଗରୁ ଭାଗେ କିମ୍ବା ତହିଁରୁ କିଛି ଅଧିକ ଶୁଳ୍କ ଆଦାୟ କରିବେ । (୪) ବଣରୁ ଧରାହୋଇ ଆସିଥିବା ଜୀଅନ୍ତା ପକ୍ଷୀ କିମ୍ବା ବା ମୃଗମାନଙ୍କର ଛ'ଭାଗରୁ ଭାଗେ ଅଭୟବନରେ ଛାଡ଼ି ଦେବାକୁ ହେବ । (୫) **ରକ୍ଷଣଯୋଗ୍ୟ ପ୍ରାଣୀ ବିବରଣ:**—ହସ୍ତୀ, ଅଶ୍ୱ, ପୁରୁଷ (ମନୁଷ୍ୟ), ବୃଷଭ ଓ ଗର୍ଦ୍ଦଭ (ଗଧ) ଆକୃତିର ଜଳଚର ସାମୁଦ୍ରିକ ପ୍ରାଣୀ; ସାମୁଦ୍ରିକ ମତ୍ସ୍ୟ ଓ ସର, ନଦୀ, କେନାଲ, ଗଡ଼ିଆ ଇତ୍ୟାଦିରେ ରହିଥିବା ମତ୍ସ୍ୟ; କ୍ରୌଞ୍ଚ, କୁରର, ଡାହୁକ, ହଂସ, ଚକ୍ରବାକ, ଜୀବଂଜୀବକ (ଚକୋରଜାତୀୟ ପକ୍ଷୀବିଶେଷ), ଭୃଙ୍ଗରାଜ, ଚକୋର, ମତ୍ତକୋକିଳ, ମୟୂର, ଶୁକ (ଶୁଆ), ମଦନ ଓ ଶାରକା (ଶାରୀ) ପ୍ରଭୃତି କ୍ରୀଡ଼ାପକ୍ଷୀ ଓ ଗରୁଡ଼, ଭରଦ୍ୱାଜ ପ୍ରଭୃତି ମାଙ୍ଗଳିକ ପକ୍ଷୀ ଓ ମୃଗାଦି ପ୍ରାଣିମାନେ ମାରଣ ଓ ପ୍ରହାରରୁ ସର୍ବଦା ରକ୍ଷଣଯୋଗ୍ୟ । ଅତଏବ, ଏଥିରେ ଅନାସ୍ଥା ପ୍ରଦର୍ଶନ କରିବା ବ୍ୟକ୍ତିମାନେ ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (ସୂନାଧ୍ୟକ୍ଷ ମଧ୍ୟ ଶବର, କିରାତ ଓ ଶିକାରିମାନଙ୍କଠାରୁ ଏହି ପ୍ରାଣୀମାନଙ୍କୁ ରକ୍ଷା କରିବାର ସମସ୍ତ ବ୍ୟବସ୍ଥା କରିବେ) । (୬) **ମାଂସବିକ୍ରୟ ବିଧି:**—କଂସେଇମାନେ ସଦ୍ୟ କଟା ହୋଇଥିବା ମୃଗ ଓ ପଶୁ ପ୍ରଭୃତି ଭକ୍ଷ୍ୟ ପ୍ରାଣୀମାନଙ୍କ ଅସ୍ଥିହୀନ ମାଂସ ବିକ୍ରୟ କରିବେ । ଅସ୍ଥିଯୁକ୍ତ ମାଂସ ବିକ୍ରୟ

ବକ୍ରୀଣୀରନ୍ । ଅସ୍ଥିମତଃ ପ୍ରତିପାତଂ ଦଦ୍ୟୁଃ । ତୁଲାହୀନେ ହୀନାଷ୍ଟଗୁଣମ୍ । (୭) ବତ୍ସୋ ବୃଷୋ ଧେନୁଶ୍ଚୈଷାମବଧ୍ୟାଃ । ତଃ ପଞ୍ଚାଶତ୍କୋ ଦଣ୍ଡଃ । କ୍ଲିଷ୍ଟଘାତଂ ଘାତୟତଶ୍ଚ । (୮) ସୂନମ୍ଶିରଃପାଦାସ୍ଥି ବିଗନ୍ଧଂ ସ୍ୱୟଂମୃତଂ ଚ ନ ବିକ୍ରୀଣୀରନ୍ । ଦ୍ୱାଦଶପଣୋ ଦଣ୍ଡଃ ।

ପଶୁମୃଗବ୍ୟାଳା ମତ୍ସ୍ୟାଶ୍ଚାଭୟଚାରିଣଃ ।
ଗୁପ୍ତିସ୍ଥାନେଭ୍ୟୋ ବଧବନ୍ଧ ମବାପ୍ନୁୟୁଃ ॥

---

ଥିର ପ୍ରତିପାତ ଅର୍ଥାତ୍ ଅସ୍ଥିଯୋଗୁଁ ଊଣା ହେଉଥିବା ମାଂସ ବଦଳରେ ଅଧିକ କିଛି ମାଂସ ଦେବାକୁ ହେବ । ତୁଲରେ ଊଣାକରି ମାଂସ ବିକ୍ରୟ କଲେ ଊଣାକରିଥିବା ମାଂସର ଆଠଗୁଣ ମାଂସ ଦଣ୍ଡସ୍ୱରୂପ ଆଦାୟ କରି ସୂନାଧ୍ୟକ୍ଷ କ୍ରେତାକୁ ଦିଅଇ ଦେବେ । (୭) ବାଛୁରି, ବୃଷଭ ଓ ଗାଈ ସାଧାରଣତଃ ଅବଧ୍ୟ ପଶୁ । ଏମାନଙ୍କୁ ହତ୍ୟା କରିବା ବ୍ୟକ୍ତି ପଞ୍ଚାଶ ପଣ ଜରିମାନା ଦେବେ ଏବଂ ଦାରୁଣ ବ୍ୟଥା ଦେଇ ଏମାନଙ୍କୁ ହତ୍ୟାକଲେ ମଧ୍ୟ ଏପରି ଦଣ୍ଡ ଭୋଗିବେ । (୮) ସରକାରୀ ବଧସ୍ଥାନ ବ୍ୟତୀତ ଅନ୍ୟସ୍ଥାନରେ କଟାଯାଇଥିବା, ମୁଣ୍ଡ ଓ ଖୁରା ଲାଗିନଥିବା ମାଂସ, ଦୁର୍ଗନ୍ଧ ମାଂସ ଓ ରୋଗରେ ନିଜେ ମରିଯାଇଥିବା ପଶୁର ମାଂସ କୌଣସି ବ୍ୟକ୍ତି ବିକି ପାରିବେ ନାହିଁ । ଏପରି ବିକିବା ବ୍ୟକ୍ତିଙ୍କୁ ସୂନାଧ୍ୟକ୍ଷ ବାରପଣ ଜରିମାନା କରିବେ । (୯) ଅଭୟବନରକ୍ଷିତ ଦୁଷ୍ଟ (ହିଂସ୍ର) ଗବୟାଦି ପଶୁ, ଶୂନକାଦି ମୃଗ, ହସ୍ତୀସିଂହବ୍ୟାଘ୍ରାଦି ବ୍ୟାଳ ଓ ଶିଂଶୁମାର ପ୍ରଭୃତି ମତ୍ସ୍ୟ ଯଦି ଅଭୟବନରୁ ଅନ୍ୟତ୍ର ଚାଲିଯାଇ ସଞ୍ଚାର କରନ୍ତି, ତେବେ ସେମାନେ ବଧ ଓ ବନ୍ଧନଯୋଗ୍ୟ ହୁଅନ୍ତି ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଷଡ୍‌ବିଂଶୋଽଧ୍ୟାୟଃ—ସୂନାଧ୍ୟକ୍ଷଃ—ଆଦିତଃ ସପ୍ତଚତ୍ୱାରିଂଶଃ ।

---

* ମୃଗ = ବନ୍ୟପଶୁ ; ପଶୁ = ଗ୍ରାମ୍ୟପଶୁ ।

## ସପ୍ତବିଂଶୋଽଧ୍ୟାୟଃ

### ଚତୁଃଚତ୍ୱାରିଂଶ ପ୍ରକରଣମ୍—ଗଣିକାଧ୍ୟକ୍ଷଃ

### THE SUPERINTENDENT OF PROSTITUTES

( ଗଣିକା ଅର୍ଥାତ୍ ବେଶ୍ୟାମାନଙ୍କ ଅଧ୍ୟକ୍ଷଙ୍କ ବ୍ୟାପା[illegible]ରସା

(୧) ଗଣିକାଧ୍ୟକ୍ଷୋ ଗଣିକାନ୍ୱୟାମଗଣିକାନ୍ୱୟାଂ [illegible] ଯୌବନଶିଳ୍ପସମ୍ପନ୍ନାଂ ସହସ୍ରେଣ ଗଣିକାଂ କା[illegible] କୁଟୁମ୍ବାର୍ଦ୍ଧେନ ପ୍ରତିଗଣିକାମ୍ ॥ (୨) ନଷ୍ଟପ୍ରତ୍ୟୁତପ୍ରେତ[illegible] ଭଗିନୀ ବା କୁଟୁମ୍ବଂ ଭରେତ । ତନ୍ମାତା ବା ପ୍ର[illegible] ସ୍ଥାପୟେତ୍ । ତାସାମଭାବେ ରାଜା ହରେତ୍ । (୩) ସୌଭାଗ[illegible]

---

(୧) ଗଣିକାଧ୍ୟକ୍ଷ ବେଶ୍ୟାବଂଶରେ ଜାତହୋଇଥିବା ବା ବେଶ୍ୟା-ବଂଶରେ ଜାତ ନହୋଇଥିବା ରୂପଯୌବନସମ୍ପନ୍ନା କଳାବତୀ (କଳା ବିଚକ୍ଷଣା) ଯୁବତୀସ୍ତ୍ରୀକୁ ନୂତନ ଗଣିକାକୁଟୁମ୍ବ ସ୍ଥାପନ ସକାଶେ ବାର୍ଷିକ ଏକ ସହସ୍ର ପଣ ରୌପ୍ୟମୁଦ୍ରା ଦେଇ ରାଜଗଣିକାରୂପେ ନିଯୁକ୍ତ କରିବେ ଏବଂ ଏହି ଗଣିକା କୁଟୁମ୍ବଦେୟର ଅର୍ଦ୍ଧଭାଗ ଅର୍ଥାତ୍ ପାଞ୍ଚଶତ ରୌପ୍ୟମୁଦ୍ରା ଦେଇ ଅନ୍ୟ ଏକ ଅନୁରୂପ ପ୍ରତିଗଣିକା (Rival-Prostitute) ମଧ୍ୟ ନିଯୁକ୍ତ କରିବେ । (୨) ରାଜଗଣିକାମାନଙ୍କ ମଧ୍ୟରୁ କୌଣସି ଗଣିକା ଯଦି କୌଣସି ଆଡ଼େ ଚାଲିଯାଏ ବା ମରିଯାଏ, ତେବେ ତାର ଦୁହିତା ବା ଭଗିନୀ ତା' ସ୍ଥାନରେ ରାଜନିୟୋଗରେ ନିଯୁକ୍ତ ହୋଇ ତା'ର ସମସ୍ତ ସମ୍ପତ୍ତି ଓ ଦାସୀ ଇତ୍ୟାଦିର ଅଧିକାରିଣୀ ହେବ । ଦୁହିତା ବା ଭଗିନୀ ନଥିଲେ ଉକ୍ତ ଗଣିକାର ମାତା ଅନ୍ୟ ଏକ ଗଣିକାକୁ ତା'ସ୍ଥାନରେ ନିଯୁକ୍ତ କରିବ । ଏପରି କିଛି ହୋଇ ନପାରିଲେ ରାଜା ଏହି ଗଣିକାର ସମସ୍ତ ସମ୍ପତ୍ତି ରାଜକୋଷରେ ମିଶାଇଦେବେ । (ଗଣିକାର ପୁତ୍ରମାନେ ମାତୃଅର୍ଜିତ ସମ୍ପତ୍ତିର ଉତ୍ତରାଧିକାରୀ ନୁହନ୍ତି ବୋଲି ଏଥିରୁ ସ୍ପଷ୍ଟ ହୁଏ) । (୩) ସୌନ୍ଦର୍ଯ୍ୟ ଓ ବେଶଭୂଷାର ଉତ୍କର୍ଷ ଅନୁପାତରେ ଗଣିକାମାନେ କନିଷ୍ଠ, ମଧ୍ୟମ ଓ ଉତ୍ତମ ଶ୍ରେଣୀରେ ବିଭକ୍ତ ହୋଇଥାନ୍ତି । କନିଷ୍ଠ ଶ୍ରେଣୀର ଗଣିକା ଏକସହ

...ବୃଦ୍ଧ୍ୟା ସହସ୍ରେଣ ବାରଂ କନିଷ୍ଠଂ ମଧ୍ୟମମୁତ୍ତମଂ ବାରୋପୟେତ୍ । ଛତ୍ରଭୃଙ୍ଗାରବ୍ୟଜନଶିବିକାପୀଠିକାରଥେଷୁ ଚ ବିଶେଷାର୍ଥମ୍ । ସୌଭାଗ୍ୟଭଙ୍ଗେ ମାତୃକାଂ କୁର୍ଯ୍ୟାତ୍ । (୪) ନିଷ୍କ୍ରୟଶ୍ଚତୁର୍ବିଂଶତିସାହସ୍ରୋ ଗଣିକାୟାଃ । ଦ୍ୱାଦଶସାହସ୍ରୋ ଗଣିକା-... ଅଷ୍ଟବର୍ଷାତ୍ ପ୍ରଭୃତି ରାଜ୍ଞଃ କୁଶୀଲବକର୍ମ କୁର୍ଯ୍ୟାତ୍ । ...ଦାସୀ ଭଗ୍ନଭୋଗା କୋଷ୍ଠାଗାରେ ମହାନସେ ବା କର୍ମ

...ବେତନ ପାଇବା ସ୍ଥଳେ ମଧ୍ୟମ ଶ୍ରେଣୀର ଗଣିକା ଦୁଇସହସ୍ର ଏବଂ ଉତ୍ତମ ଶ୍ରେଣୀର ଗଣିକା ତିନିସହସ୍ର ପାଇଥାଏ । ଏମାନେ ଛତ୍ର, ଭୃଙ୍ଗାର (ସ୍ୱର୍ଣ୍ଣନିର୍ମିତ ଜଳପାନବିଶେଷ, ସୁନାଗଡ଼ୁ ବା ଝରି), ବ୍ୟଜନ (ଆଲଟ ବା ପଙ୍ଖା) ଧାରଣ ପୂର୍ବକ ଶିବିକା (ସବାରି), ପୀଠିକା (ସିଂହାସନ) ଓ ରଥ ନିକଟରେ ରାଜାଙ୍କର ସେବାକାର୍ଯ୍ୟରେ ନିଯୁକ୍ତ ହୋଇଥାନ୍ତି । କନିଷ୍ଠ ଶ୍ରେଣୀର ଗଣିକାମାନେ ଛତ୍ର ଓ ଭୃଙ୍ଗାର ଧାରଣକରି ରାଜନିଯୋଗରେ ରତ ହୁଅନ୍ତି । ମଧ୍ୟମ ଶ୍ରେଣୀର ଗଣିକାମାନେ ଆଲଟହସ୍ତରେ ରାଜା ପାଲିଙ୍କିରେ ବସେ ହେବାବେଳେ ନିଯୋଗରେ ରତ ହୁଅନ୍ତି ଏବଂ ଉତ୍ତମ ଶ୍ରେଣୀର ଗଣିକାମାନେ ରାଜା ସିଂହାସନ ବା ରଥରେ ବସେ ହୋଇଥିବା ବେଳେ ନିଯୋଗରେ ରତ ହୁଅନ୍ତି । ଏହି ଗଣିକାମାନଙ୍କ ମଧ୍ୟରୁ ଯାହାର ରୂପ-ଯୌବନ ବୟୋବୃଦ୍ଧି ହେତୁରୁ ନଷ୍ଟ ହୋଇଯାଏ, ଗଣିକାଧ୍ୟକ୍ଷ ତାକୁ କୌଣସି ନବଯୁବତୀ ଗଣିକାର ଧାଈ ବା ମାତା ସ୍ୱରୂପ ନିଯୁକ୍ତ କରିବେ ।

(୪) **ଗଣିକାବୃତ୍ତିରୁ ମୁକ୍ତିପାଇବା ବିଧି:**—ଯଦି କୌଣସି ଗଣିକା ରାଜ-ଗଣିକା ବୃତ୍ତିରୁ ନିଷ୍କୃତି ପାଇବା ପାଇଁ ଇଚ୍ଛାକରେ, ତେବେ ସେ ଚବିଶ ସହସ୍ର ପଣ ନିଷ୍କ୍ରୟ ଅର୍ଥାତ୍ ରାଜଦାସ୍ୟନିର୍ମୋକ୍ଷ ମୂଲ୍ୟ ରାଜାଙ୍କୁ ଦେବ ଓ ଗଣିକାର ପୁତ୍ର ରାଜସେବାରୁ ନିଷ୍କୃତି ପାଇବା ପାଇଁ ଇଚ୍ଛାକଲେ, ବାରସହସ୍ର ପଣ ନିଷ୍କ୍ରୟ ଦେଇ କାର୍ଯ୍ୟରୁ ଅନ୍ତର ହେବ । ଯଦି ଏହି ଗଣିକାପୁତ୍ରର ଏତେ ଧନ ଦେଇ ନିଷ୍କୃତି ପାଇବାର ସୁବିଧା ନଥିବ, ତେବେ ସେ ଆଠବର୍ଷ ପର୍ଯ୍ୟନ୍ତ ରାଜାଙ୍କର କୁଶୀଲବ କର୍ମ ଅର୍ଥାତ୍ ଚାରଣକର୍ମରେ ନିଯୁକ୍ତ ହୋଇ ପରଶେଷରେ ନିଷ୍କୃତି ଲଭିବ । (୫) ଗଣିକାର ଦାସୀ, ଭୋଗଯୋଗ୍ୟ ବୟସ ଅତିକ୍ରାନ୍ତ ହେବାଯୋଗୁଁ ଭୋଗଯୋଗ୍ୟା ନହେଲେ,

କୁର୍ଯାତ୍ । ଅବଶନ୍ତୀ ସପାଦପଣମବରୁଦ୍ଧା ମାସବେତନଂ ଦଦ୍ୟାତ୍ । (୬) ଭୋଗଂ ଦାୟମାୟଂ ବ୍ୟୟମାୟତିଂ ଚ ଗଣିକାୟା ନିବନ୍ଧୟେତ୍ । ଅତିବ୍ୟୟକର୍ମ ଚ ବାରୟେତ୍ । (୭) ମାତୃହସ୍ତା-ଦନ୍ୟତ୍ରାଭରଣନ୍ୟାସେ ସପାଦଚତୁଷ୍ପଣୋ ଦଣ୍ଡଃ । ସ୍ୱାପତେୟଂ ବିକ୍ରୟମାଧାନଂ ନୟନ୍ତ୍ୟାଃ ସପାଦପଞ୍ଚାଶତ୍ପଣୋ ଦ… ଚତୁର୍ବିଂଶତିପଣୋ ବାକ୍ପାରୁଷ୍ୟେ । ଦ୍ୱିଗୁଣୋ ଦଣ୍ଡପା… ସପାଦପଞ୍ଚାଶତ୍ପଣଃ ପଣୋଽର୍ଧପଣଶ୍ଚ କର୍ଣ୍ଣଚ୍ଛେଦ… (୮) ଅକାମାୟାଃ କୁମାର୍ଯା ବା ସାହସେ ଉତ୍ତମୋ ଦଣ୍ଡ…

---

ତାଙ୍କୁ ଭଣ୍ଡାରଘରେ କିମ୍ବା ରୋଷେଇଶାଳରେ ବରିବଣ୍ଟା, ପରିବାକଣ୍ଟା ଓ ବାସନମଜା ପ୍ରଭୃତି କାର୍ଯ୍ୟରେ ନିଯୁକ୍ତ କରିବେ । ଏପରି କାର୍ଯ୍ୟ ନକରି କୌଣସି ପୁରୁଷ ସହିତ ଅନ୍ୟତ୍ର ବାସକଲେ, ସେ ତାର ସ୍ୱାମିନୀ ଗଣିକାକୁ ମାସିକ ବେତନ ଏକପଣ ଏକପା (୧¼ ପଣ) ଦେବାକୁ ବାଧ୍ୟ ହେବ । (୬) ଗଣିକାଧ୍ୟକ୍ଷ ଗଣିକାମାନଙ୍କ ସମ୍ଭୋଗରୁ ମିଳିବା ଧନ, ମାତୃକ୍ରମାଗତ ଦାୟ ଧନ ଓ ସମ୍ଭୋଗବ୍ୟତୀତ ଗାନ, ନୃତ୍ୟାଦିରୁ ଲବ୍ଧହେବା ଧନର ଆୟବ୍ୟୟ ନିବନ୍ଧ ପୁସ୍ତକରେ ଲିପିବଦ୍ଧ କରିବେ ଏବଂ ଭୋଗବିଳାସରେ ଅତିଶୟ ବ୍ୟୟ ନକରି ବାର୍ଦ୍ଧକ୍ୟ ସମୟକୁ ସେମାନେ ଯେପରି କିଛି ସଞ୍ଚୟ କରିପାରିବେ, ସେପରି ବ୍ୟବସ୍ଥା କରି ସେମାନଙ୍କର ଅତିରିକ୍ତ ବ୍ୟୟକୁ ନିବାରଣ କରିବେ । (୭) ଯଦି କୌଣସି ଗଣିକା ତା'ର ଅଳଙ୍କାରପତ୍ରର ରକ୍ଷଣାବେକ୍ଷଣ ଅଧିକାର ନିଜର ମା'ଛଡ଼ା କୌଣସି ଏକ ପ୍ରିୟ ବିଟପୁରୁଷ ହସ୍ତରେ ଅର୍ପଣ କରେ, ତେବେ ତାକୁ ଚାରିପଣ ଏକପା (୪¼ ପଣ) ଅର୍ଥଦଣ୍ଡ ଦେବେ । ବସ୍ତ୍ର ଓ ବାସନକୁସନ ବିକ୍ରୟ ବନ୍ଧକାଦି କଲେ ପଚାଶପଣ ଏକପା (୫୦¼ ପଣ); ତାହାକୁ ଗାଳିକଲେ ବା କାହାର ମାନହାନି କଲେ ଚବିଶପଣ; ହାତ, ପାଦ ବା ବାଡ଼ିଦ୍ୱାରା କାହାକୁ ପ୍ରହାର କଲେ ଅଠଚାଳିଶ ପଣ ଏବଂ କାହାର କର୍ଣ୍ଣଚ୍ଛେଦନ ଅର୍ଥାତ୍ କାନ କାଟିଦେଲେ ଉକ୍ତ ଗଣିକା ଯଥାକ୍ରମେ ପଞ୍ଚାଶେ ପଣ ଏକପା ରାଜାଙ୍କୁ ଏବଂ ଦେଢ଼ପଣ ଗଣିକାଧ୍ୟକ୍ଷଙ୍କୁ ଜରିମାନା ଦେବାକୁ ବାଧ୍ୟ ହେବ । (୮) ସମ୍ଭୋଗଇଚ୍ଛାଶୂନ୍ୟା ଗଣିକା ବା ଗଣିକାକୁମାରୀଙ୍କ ବଳାତ୍କାରରେ ସମ୍ଭୋଗ କରିବା ବ୍ୟକ୍ତିକୁ ଉତ୍ତମ-

**ସକାମାୟାଃ ପୂର୍ବଃ ସାହସ ଦଣ୍ଡଃ । (୯) ଗଣିକାମକାମାଂ ରୁନ୍ଧତୋ ନିଷ୍ପାତୟତୋ ବା ବ୍ରଣବିଦାରଣେନ ବା ରୂପମୁପଘ୍ନତଃ ସହସ୍ର ଦଣ୍ଡଃ । ସ୍ଥାନବିଶେଷେଣ ବା ଦଣ୍ଡବୃଦ୍ଧିରାନିଷ୍କ୍ରୟଦ୍ୱିଗୁଣାତ୍ । ପଣସହସ୍ରଂ ବା ଦଣ୍ଡଃ । (୧୦) ପ୍ରାପ୍ତାଧିକାରାଂ ଗଣିକାଂ ଘାତୟତୋ ... ତ୍ରିଗୁଣୋଦଣ୍ଡଃ । ମାତୃକାଦୁହିତୃକାରୂପଦାସୀନାଂ ଘାତ ... ସାହସଦଣ୍ଡଃ । ସର୍ବତ୍ର ପ୍ରଥମେଽପରାଧେ ପ୍ରଥମଃ, ... ଦ୍ୱିଗୁଣଃ । ତୃତୀୟେ ତ୍ରିଗୁଣଃ, ଚତୁର୍ଥେ ଯଥାକାମୀ ସ୍ୟାତ୍ ।**

...ସଦଣ୍ଡ ଏବଂ ସମ୍ଭୋଗଇଚ୍ଛୁକା କୁମାରୀକୁ ବଳାତ୍କାରରେ ସମ୍ଭୋଗ କରିବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବେ । (୯) କୌଣସି ଗଣିକାର ଇଚ୍ଛାବିରୁଦ୍ଧରେ ଯଦି କୌଣସି ପୁରୁଷ ତା'କୁ ନିଜ ଗୃହରେ ଅଟକାଇ ରଖେ, ଲୁଚାଇ ରଖେ କିମ୍ବା ନଖଦନ୍ତାଦିଦ୍ୱାରା କ୍ଷତବିକ୍ଷତ କରି ତାର ରୂପଶ୍ରୀକୁ ନଷ୍ଟକରେ, ତେବେ ତା'କୁ ଏକସହସ୍ର ପଣ ଜରିମାନା କରିବେ । ଯଦି ଏହି ଦୁଷ୍ଟବ୍ୟକ୍ତି ଗଣିକାର ମର୍ମସ୍ଥାନମାନଙ୍କୁ ଆଘାତ କରି କ୍ଷତବିକ୍ଷତ କରେ କିମ୍ବା ନାସା କର୍ଣ୍ଣ ଛେଦନକରି ବିରୂପ କରେ ତେବେ ତାକୁ ଏକସହସ୍ରଠାରୁ ଆରମ୍ଭ କରି ଦୋଷର ଗୁରୁତା ଅନୁପାତରେ * ଚବିଶ ସହସ୍ର ଓ ତାର ଦୁଇଗୁଣ ଅର୍ଥାତ୍ ଅଠଚାଳିଶ ସହସ୍ର ପଣ ପର୍ଯ୍ୟନ୍ତ ଜରିମାନା କରିବେ । ସାଧାରଣତଃ ଏହି ଅପରାଧର ଦଣ୍ଡ ଏକସହସ୍ର ପଣ । (୧୦) ରାଜାଙ୍କର ଛତ୍ରଭୃଙ୍ଗାରାଦି ନିଯୋଗ ଅଧିକାରପ୍ରାପ୍ତ ଗଣିକାକୁ କୌଣସି ବ୍ୟକ୍ତି ହତ୍ୟାକଲେ ତାକୁ ନିଷ୍କ୍ରୟର ତିନିଗୁଣ ଅର୍ଥାତ୍ ୭୨,୦୦୦ ବାସ୍ତୋରି ସହସ୍ର ପଣ ଜରିମାନା କରିବେ ଏବଂ ଏହି ଗଣିକାର ମାତା, କନ୍ୟା ଓ ରୂପଦାସୀ ଅର୍ଥାତ୍ ବେଶଭୂଷା କରାଇବା ଦାସୀକୁ ତାଡ଼ନ (ପ୍ରହାର) କରିବା ବ୍ୟକ୍ତିଙ୍କୁ ଉତ୍ତମସାହସଦଣ୍ଡରେ ଦଣ୍ଡିତ କରିବେ । ଉପରୋକ୍ତ ଅପରାଧମାନଙ୍କମଧ୍ୟରୁ ଯେଉଁ ଯେଉଁ ଅପରାଧ ପାଇଁ ଯେଉଁ ଯେଉଁ ଦଣ୍ଡ ପ୍ରଥମ ଥରପାଇଁ ବ୍ୟବସ୍ଥା କରାଯାଇଛି, ତାହା ଦ୍ୱିତୀୟବାର କଲେ ଏହି ଦଣ୍ଡର ଦୁଇଗୁଣ, ତୃତୀୟବାର କଲେ ଏହି ଦଣ୍ଡର ତିନିଗୁଣ ଏବଂ ଚତୁର୍ଥବାର

* ନିଷ୍କ୍ରୟ = ୨୪,୦୦୦ ପଣ । ଏହି ଦଣ୍ଡ ଉତ୍ତମ, ମଧ୍ୟମ ଓ ସାଧାରଣ ଗଣିକାମାନଙ୍କ ସ୍ତରକୁ ନେଇ ବିଚାର କରାଯିବ ।

(୧୧) ରାଜାଜ୍ଞୟା ପୁରୁଷମନଭିଗଚ୍ଛନ୍ତୀ ଗଣିକା ଶିଫା ସହସ୍ରଂ ଲଭେତ । ପଞ୍ଚସହସ୍ରଂ ବା ଦଣ୍ଡଃ । (୧୨) ଭୋଗଂ ଗୃହୀତ୍ୱା ଦ୍ୱିଷତ୍ୟା ଭୋଗଦ୍ୱିଗୁଣୋ ଦଣ୍ଡଃ । ବସତିଭୋଗାପହାରେ ଭୋଗମଷ୍ଟଗୁଣଂ ଦଦ୍ୟାଦ୍ ଅନ୍ୟତ୍ର ବ୍ୟାଧିପୁରୁଷଦୋଷେଭ୍ୟଃ । ପୁରୁଷଂ ଘ୍ନତ୍ୟାଶ୍ଚିତାପ୍ରତାପୋଽପ୍ସୁ ପ୍ରବେଶନଂ ବା । (୧୩) ଗ[redacted] ଭରଣମର୍ଥଂ ଭୋଗଂ ବାପହରତୋଽଷ୍ଟଗୁଣୋ ଦଣ୍ଡଃ [redacted] ଭୋଗମାୟୃତିଂ ପୁରୁଷଂ ଚ ନିବେଦୟେତ୍ । ଏତେନ

---

କଲେ ରାଜା ଇଚ୍ଛାମୁତାବକ ଗୃହଗୁଣ ଦଣ୍ଡ କିମ୍ବା ସର୍ବସ୍ୱହରଣ ଓ ଦେଶରୁ ବିତାଡ଼ନ ପ୍ରଭୃତି କଠିନ ଦଣ୍ଡର ବ୍ୟବସ୍ଥା କରିବେ । (୧୧) ରାଜାଙ୍କ ଆଜ୍ଞା ଅନୁସାରେ କୌଣସି ପୁରୁଷ ପାଖକୁ ଯଦି କୌଣସି ଗଣିକା ନଯାଏ, ତେବେ ସେ ହଜାରେ ବେତ ମାଡ଼ ଖାଇବ ଏବଂ ମାଡ଼ଖାଇବାକୁ ଇଚ୍ଛା-ନକଲେ ବା ଅଯୋଗ୍ୟା ହେଲେ ମାଡ଼ ବଦଳରେ ପାଞ୍ଚସହସ୍ର ପଣ ଜରିମାନା ଦେବ । (୧୨) ଗଣିକା ସମ୍ଭୋଗମୂଲ୍ୟ ପ୍ରଥମେ ଗ୍ରହଣ କରି ପରେ ସମ୍ଭୋଗ ହେବାବେଳେ କୌଣସି ପୁରୁଷକୁ ଘୃଣା ବା ଦ୍ୱେଷକଲେ ଭୋଗମୂଲ୍ୟର ଦୁଇଗୁଣ ଜରିମାନା ଦେବ । ସାରା ରାତିସକାଶେ ଭୋଗମୂଲ୍ୟ ଗ୍ରହଣ କରି କେବଳ କଥାବାର୍ତ୍ତା ଇତ୍ୟାଦିଦ୍ୱାରା ଭୁଲାଇଦେଲେ ଉକ୍ତ ଗଣିକା ସେ ଗ୍ରହଣ କରିଥିବା ଭୋଗମୂଲ୍ୟର ଆଠଗୁଣ ଜରିମାନା ଦେବ । କିନ୍ତୁ ପୁରୁଷ ଯଦି କୁଷ୍ଠରୋଗୀ ବା ଅନ୍ୟକୌଣସି କୁତ୍ସିତ ରୋଗରେ ପୀଡ଼ିତ ହୋଇଥାଏ କିମ୍ବା ଅରସିକ ହୋଇଥାଏ, ତେବେ ଗଣିକା ଏପରି ଦଣ୍ଡ ପାଇବ ନାହିଁ । କୌଣସି ଗଣିକା ଯଦି କୌଣସି ବିଟପୁରୁଷକୁ ହତ୍ୟାକରେ ତେବେ ସେହି ମୃତ ପୁରୁଷର ଚିତାରେ ଏହି ଗଣିକାକୁ ପକାଇ ପୋଡ଼ିଦେବାକୁ ହେବ କିମ୍ବା ଏହାର ବେକରେ ପଥର ବାନ୍ଧି ଗଭୀର ଜଳରେ ବୁଡ଼ାଇ ମାରିଦେବାକୁ ହେବ । (୧୩) କୌଣସି ପୁରୁଷ ଗଣିକାର ଅଳଙ୍କାର, ଟଙ୍କା-ପଇସା ବା ସମ୍ଭୋଗମୂଲ୍ୟ ଅପହରଣ କଲେ, ଉକ୍ତ ଧନର ଆଠଗୁଣ ଜରିମାନା ଦେବ । ଉପରୋକ୍ତ ନିୟମ ପ୍ରକାରେ ନଟ (ପାଲା, ଘୁଡୁକି, ଗୋଟିପୁଅ ପ୍ରଭୃତି ଗୀତଗାଇବା ନାଚୁଆ ବା ଅଭିନେତା), ନର୍ତ୍ତକ (କେବଳ ଅଙ୍ଗଭଙ୍ଗି-ଦ୍ୱାରା ନୀରବ ଅଭିନୟକାରୀ), ଗାୟକ, ବାଦକ (ବୀଣା-ମୃଦଙ୍ଗାଦି ବାଦ୍ୟ

ଗାୟକବାଦକବାଗ୍‌ଜୀବନକୁଶୀଲବପ୍ଳବକସୌଭିକଚାରଣ ସ୍ତ୍ରୀବ୍ୟବ-
ହାରଣାଂ ସ୍ତ୍ରିୟୋ ଗୂଢାଜୀବାଶ୍ଚ ବ୍ୟାଖ୍ୟାତାଃ । (୧୪)
ତେଷାଂ ତୂର୍ଯମାଗନ୍ତୁକଂ ପଞ୍ଚପଣଂ ପ୍ରେକ୍ଷାବେତନଂ ଦଦ୍ୟାତ୍ ।
ରୂପାଜୀବା ଭୋଗଦ୍ୱୟଗୁଣଂ ମାସଂ ଦଦ୍ୟୁଃ । (୧୫) ଗୀତବାଦ୍ୟ
[redacted]ନାଟ୍ୟାକ୍ଷରଚିତ୍ରବୀଣାବେଣୁମୃଦଙ୍ଗପରଚିତ୍ତଜ୍ଞାନଗନ୍ଧମାଲ୍ୟ —
[redacted]ପାଦନସଂବାହନବୈଶିକକଳାଜ୍ଞାନାନ ଗଣିକା ଦାସୀ-

[redacted]), ବାଗ୍‌ଜୀବନ (କଥକ ବା ଗଳ୍ପସାଗର), କୁଶୀଳବ (ଅଭିନେତା ନର୍ତ୍ତକୀମାନଙ୍କ ପ୍ରଧାନ ଗୁରୁ), ପ୍ଳବକ (ଦଉଡ଼ିରେ ଖେଳ କରିବା ଲୋକ ପ୍ରଭୃତି), * ସୌଭିକ (ଐନ୍ଦ୍ରଜାଲିକ-ହଠାତ୍‌ଚମତ୍କାରକ ବା ଛଦ୍ମଗ୍ରାହକ), ଚାରଣ (ଭାଟ ଓ ମଲ୍ଲବୃତ୍ତିକାରୀ ନଟପୁରୁଷ), ସ୍ତ୍ରୀ ବ୍ୟବହାରୀ (ନିଜର ସ୍ତ୍ରୀକୁ ଅନ୍ୟଦ୍ୱାରା ସମ୍ଭୋଗ କରାଇ ଧନଅର୍ଜନ କରୁଥିବା ଭାଉଆ) ଓ ଗୂଢାଜୀବା ସ୍ତ୍ରୀ (ଗୋପନ ବ୍ୟଭିଚାର ଦ୍ୱାରା ଧନଅର୍ଜନ କରୁଥିବା ସ୍ତ୍ରୀ) ମାନଙ୍କ ବ୍ୟବହାର ଜାଣିବାକୁ ହେବ । (୧୪) ଉପରୋକ୍ତ ନଟନର୍ତ୍ତକାଦି ଦଳ ଯଦି ବିଦେଶରୁ ଆସି ନିଜ ନିଜର ବିଦ୍ୟା ପ୍ରଦର୍ଶନ ପୂର୍ବକ ବ୍ୟବସାୟ ଚଳାନ୍ତି, ତେବେ ସେମାନେ ରାଜାଙ୍କୁ ପାଞ୍ଚପଣ ହିସାବରେ ପ୍ରେକ୍ଷାବେତନ ଦେବେ ଏବଂ ପ୍ରତ୍ୟେକ ଗଣିକା ସେମାନଙ୍କ ଦୈନିକ ହାରାହାରି ଆୟର ଦୁଇଗୁଣ ଅର୍ଥାତ୍ ଦୁଇଦିନର ଆୟ ମାସିକ ଦେୟଭାବେ ରାଜାଙ୍କୁ ଦେବେ । (୧୫) ରାଜା ପୂର୍ବୋକ୍ତ ଗଣିକା, ଦାସୀ ଓ ରଙ୍ଗୋପଜୀବିନୀ ଅର୍ଥାତ୍ ନଟାଦିଙ୍କ ସ୍ତ୍ରୀମାନଙ୍କୁ (ରଙ୍ଗମଞ୍ଚରେ ଅଭିନୟ କରିବା ଅଭିନେତ୍ରୀମାନଙ୍କୁ) ନୃତ୍ୟ, ଗୀତ, ପାଠ୍ୟ, ନୃତ୍ତ (ପଦାର୍ଥାଭିନୟ), ନାଟ୍ୟ (ବାକ୍ୟାର୍ଥାଭିନୟ), ଅକ୍ଷର, ଚିତ୍ର, ବୀଣା, ବେଣୁ, ମୃଦଙ୍ଗ, ପରଚିତ୍ତଜ୍ଞାନ (ଅନ୍ୟର ଆକାର ଇଙ୍ଗିତାଦିରୁ ତା'ର ମନକଥା ଜାଣିବା), ଗନ୍ଧଯୁକ୍ତି (ଅତର, ପମେଟ ପ୍ରଭୃତି ପ୍ରସ୍ତୁତ କରିବା), ମାଲ୍ୟଗୁମ୍ଫନ (ମାଳାଗୁନ୍ଥିବା), ସମ୍ବାହନ (ଅଙ୍ଗମର୍ଦ୍ଦନ), ବୈଶିକ (ବେଶଭୂଷା ଓ ହାସ୍ୟ କଟାକ୍ଷାଦିଦ୍ୱାରା ଅନ୍ୟର ମନକୁ ଆକର୍ଷଣ ବା ବଶୀଭୂତ କରିବା) ଓ ଏଥିରୁ ଅତିରିକ୍ତ

* ସୌଭେ ନାମ ଆକାଶଗାମୀ ମାୟେନ୍ଦ୍ରଜାଲ କୃତଃ ପୁରବିଶେଷଃ । ଇତି ଶ୍ରୀମଦ୍ ଭାଗବତ ଦଶମସ୍କନ୍ଧସ୍ୟ ଉତ୍ତରାର୍ଦ୍ଧ ଟୀକାୟାଂ ଶାଲ୍ୱଯୁଦ୍ଧାବସରେ ।

ରଙ୍ଗୋପଜୀବିନୀଶ୍ଚ ଗ୍ରାହୟତୋ ରାଜମଣ୍ଡଳାଦାଜୀବଂ କୁର୍ଯ୍ୟାତ୍ । ଗଣିକାପୁତ୍ରାନ୍ ରଙ୍ଗୋପଜୀବିନଶ୍ଚ ମୁଖ୍ୟାନ୍ ନିଷ୍ପାଦୟେୟୁଃ ସର୍ବତାଳାବଚରାଣି ଚ ।

(୧୬) ସଂଜ୍ଞାଭାଷାନ୍ତରଜ୍ଞାଶ୍ଚ ସ୍ତ୍ରିୟସ୍ତେଷାମନାତ୍ମସୁ ।
ଚାରଘାତପ୍ରମାଦାର୍ଥଂ ପ୍ରୟୋଜ୍ୟା ବନ୍ଧୁବାହନାଃ ॥

—o—

ଚତୁଃଷଷ୍ଟି ବିଦ୍ୟା ଅନ୍ତର୍ଗତ କଳାବିଦ୍ୟା ଶିକ୍ଷାଦେବା ଆଚାର୍ଯ୍ୟଙ୍କୁ ... ସକାଶେ ଗ୍ରାମ ନଗରାଦିରୁ ମିଳିଥିବା ବାର୍ଷିକ ଆୟରୁ ବୃତ୍ତି ଖଞ୍ଜିଦେବେ । ସମସ୍ତ ନଟ ନର୍ତ୍ତକ ଓ ଅଭିନେତା ଅଭିନେତ୍ରୀ ପ୍ରଭୃତି ରଙ୍ଗୋପଜୀବୀମାନଙ୍କ ମଧ୍ୟରେ ରାଜା ଗଣିକାପୁତ୍ରଙ୍କୁ ହିଁ ନାଟ୍ୟାଚାର୍ଯ୍ୟ ବା ପ୍ରଧାନ ଅଭିନେତାରୂପେ ନିଯୁକ୍ତ କରିବେ । (୧୬) ରାଜା ଏହି ନଟ, ନର୍ତ୍ତକ ଓ ଅଭିନେତାମାନଙ୍କର ସଙ୍କେତବିଶେଷଜ୍ଞ ଓ ଭାଷାବିଶେଷଜ୍ଞ ସ୍ତ୍ରୀମାନଙ୍କୁ ଓ ସେମାନଙ୍କ ବିଶ୍ୱାସୀ ବନ୍ଧୁମାନଙ୍କୁ ଅର୍ଥଦାନଦ୍ୱାରା ବଶୀଭୂତ କରି, ଦ୍ୱେଷୀ, ଦୁଷ୍ଟପୁରୁଷ ଓ ଶତ୍ରୁ-ପ୍ରେରିତ ଗୁପ୍ତଚରମାନଙ୍କୁ ହତ୍ୟାକରିବା ଓ ବିଷପ୍ରୟୋଗଦ୍ୱାରା କର୍ତ୍ତବ୍ୟମୂଢ଼ କରାଇବା କାର୍ଯ୍ୟରେ ନିଯୁକ୍ତ କରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ସପ୍ତବିଂଶୋଽଧ୍ୟାୟଃ—ଗଣିକାଧ୍ୟକ୍ଷଃ—ଆଦିତୋଽଷ୍ଟଚତ୍ୱାରିଂଶଃ ।

# ଅଷ୍ଟାବିଂଶୋଽଧ୍ୟାୟଃ

## ପଞ୍ଚଚତ୍ୱାରିଂଶ ପ୍ରକରଣମ୍—ନାବଧ୍ୟକ୍ଷଃ

## THE SUPERINTENDENT OF SHIPS

[redacted]ନୌକାପ୍ରଭୃତି ଜଳଯାନାଦିରୁ ରାଜସ୍ୱ ଆଦାୟ ଓ ଏଗୁଡ଼ିକର [redacted]ଷଣାବେକ୍ଷଣ ସକାଶେ ନିଯୁକ୍ତ ହୋଇଥିବା ଅଧ୍ୟକ୍ଷଙ୍କ ବ୍ୟାପାର ନିରୂପଣ )

**୮(୧) ନାବଧ୍ୟକ୍ଷଃ ସମୁଦ୍ରସଂଯାନନଦୀମୁଖତରପ୍ରଚାରାନ୍ ଦେବସରୋବିସରୋନଦୀତରାଂଶ୍ଚ ସ୍ଥାନୀୟାଦିଷ୍ୱବେକ୍ଷେତ । (୨) ତଦ୍‌ବେଳାକୂଳଗ୍ରାମାଃ କ୍ଲୃପ୍ତଂ ଦଦ୍ୟୁଃ । ମତ୍ସ୍ୟବନ୍ଧକା ନୌକାଭାଟକଂ**

(୧) * ନାବଧ୍ୟକ୍ଷ ସ୍ଥାନୀୟ, ଦ୍ରୋଣମୁଖ, ଖାର୍ବଟିକ, ସଂଗ୍ରହଣ ପ୍ରଭୃତି ଜନବସତିମାନଙ୍କ ଉପକଣ୍ଠସ୍ଥିତ ସମୁଦ୍ରବନ୍ଦର, ନଦୀମୁହାଣ, ଦେବସର (ମହାହ୍ରଦ ବା ସଦା ଜଳପୂର୍ଣ୍ଣ ମହାସରୋବର), କୃତ୍ରିମଜଳପ୍ରଣାଳୀ ଓ ଦୀର୍ଘ ଗଭୀର ନଦୀମାନଙ୍କରେ ଯାତାୟାତ କରୁଥିବା ଜାହାଜ, ନୌକା ପ୍ରଭୃତି ଜଳଯାନ, ତତ୍‌ସ୍ଥ ଯାତ୍ରୀ ଓ ପଣ୍ୟପଦାର୍ଥମାନଙ୍କର ନିରାପତ୍ତା ଏବଂ ଉହିଁରୁ ଆଦାୟ ହେବା ଶୁଳ୍କ ପ୍ରଭୃତି ସମସ୍ତ ବିଷୟର ପର୍ଯ୍ୟବେକ୍ଷଣ କରିବେ । (୨) ସମୁଦ୍ର, ନଦୀ ଓ ହ୍ରଦ ଇତ୍ୟାଦିର ଉପକୂଳରେ ବାସକରୁଥିବା ଲୋକେ ଘରୁ ବାହାରିଲେ ନୌକାରେ ଚଢ଼ିବାକୁ ବାଧ୍ୟ ହେଉଥିବା ଯୋଗୁଁ ସେମାନେ ଗୋଟିଏ ନିର୍ଦ୍ଦିଷ୍ଟ କର (A fixed amount of tax) ବା 'କ୍ଳୃପ୍ତ' (ନୌକାଭଡ଼ା) ରାଜାଙ୍କୁ ଦେଉଥିବେ । (ସାଧାରଣ ଯାତ୍ରୀଭଡ଼ାଠାରୁ ଏହା ପୃଥକ୍ ଓ ପରିମାଣରେ ଅଳ୍ପ ଅଟେ) । ମାଛଧରା କେଉଟ, କଣ୍ଡରା ଓ ନୋଳିଆ ପ୍ରଭୃତି ଲୋକମାନେ ଧରିଥିବା ମାଛର ଛ'ଭାଗରୁ ଏକଭାଗ ନୌକାଭଡ଼ା (ରାଜାଙ୍କୁ) ଦେବେ; ବେପାରୀମାନେ ଯେଉଁ ପଣ୍ୟପତ୍ତନ ବା ବନ୍ଦର, ମୁହାଣ ଥିବା ସହରମାନଙ୍କରେ ଯେଉଁ ନିର୍ଦ୍ଦିଷ୍ଟ କରର ବ୍ୟବସ୍ଥା

* ଆଠଶହ ଗ୍ରାମ ମଧ୍ୟରେ ଥିବା ପ୍ରଧାନ ନଗରୀର ନାମ 'ସ୍ଥାନୀୟ', ଚାରିଶହ ଗ୍ରାମ ମଧ୍ୟରେ ଥିବା ନଗରୀର ନାମ 'ଦ୍ରୋଣମୁଖ', ଦୁଇଶହ ଗ୍ରାମ ମଧ୍ୟରେ ଥିବା ସହରର ନାମ '[illegible]' ଏବଂ ଦଶଗୋଟି ଗ୍ରାମ ମଧ୍ୟରେ ଥିବା ମୁଖ୍ୟଗ୍ରାମର ନାମ 'ସଂଗ୍ରହଣ' ।

**ଷଡ୍‌ଭାଗଂ ଦଦ୍ୟୁଃ । ପତ୍ତନାନୁବୃତ୍ତଂ ଶୁଲ୍କଭାଗଂ ବଣିଜୋ ଦଦ୍ୟୁ । ଯାତ୍ରାବେତନଂ ରାଜନୌଭିଃ ସଂପତନ୍ତଃ । ଶଙ୍ଖମୁକ୍ତାଗ୍ରାହି ନୌଭାଟକଂ ଦଦ୍ୟୁଃ, ସ୍ୱନୌଭିର୍ବା ତରେୟୁଃ । ଅଧ୍ୟକ୍ଷଶ୍ଚୈ ଖନ୍ୟଧ୍ୟକ୍ଷେଣ ବ୍ୟାଖ୍ୟାତଃ । (୩) ପତ୍ତନାଧ୍ୟକ୍ଷକୃ ପଣ୍ୟପତ୍ତନଚାରିତ୍ରଂ ନାବଧ୍ୟକ୍ଷଃ ପାଳୟେତ୍ । ମୂଢ଼ବାତା [redacted] ତାଂ ପିତେବାନୁଗୃହ୍ଣୀୟାତ୍ । ଉଦକପ୍ରାପ୍ତଂ ମଶୁଲ୍କକ [redacted]**

ଥିବ, ତଦନୁସାରେ ପଣ୍ୟମୂଲ୍ୟର ପାଞ୍ଚଭାଗରୁ ଏକଭାଗ କିମ୍ବା ଏକଭାଗ * ପତ୍ତନାନୁବୃତ୍ତ ପଣ୍ୟଶୁଲ୍କ ରାଜାଙ୍କୁ ଦେବେ; ରାଜ ନୌକାରେ ଯାତାୟାତ କରିବା ଯାତ୍ରୀମାନେ ଯଥାପ୍ରସିଦ୍ଧ ନୌକା ରାଜାଙ୍କୁ ଦେବେ ଏବଂ ଶଙ୍ଖ, ମୁକ୍ତା ପ୍ରଭୃତି ବ୍ୟବସାୟ କରୁଥିବା ବେପାରି-ମାନେ ମଧ୍ୟ ରାଜକୀୟ ନୌକାରେ ଉକ୍ତ ଜିନିଷ ବୋହାଇ ଆଣିଲେ ଯଥାଦେୟ ନୌକାଭଡ଼ା (ସମ୍ଭବତଃ ଛ'ଭାଗରୁ ଏକଭାଗ) ରାଜାଙ୍କୁ ଦେବେ । ରାଜାଙ୍କ ଅନୁମତି ନେଇ ମଧ୍ୟ ଉପରୋକ୍ତ କେଉଟ, ବେପାରି, ଯାତ୍ରୀ ଓ ଶଙ୍ଖ, ମୁକ୍ତା ସଂଗ୍ରହକାରମାନେ ନିଜ ନିଜ ନୌକାରେ ଯାତାୟାତ କରିପାରିବେ । ଖଣିର ଅଧ୍ୟକ୍ଷ ଯେପରି ଖଣିଜ ପଦାର୍ଥମାନଙ୍କ ବ୍ୟବହାର ସମ୍ବନ୍ଧେ ବ୍ୟବସ୍ଥା କରନ୍ତି, ଶଙ୍ଖ, ମୁକ୍ତା ପ୍ରଭୃତି ସାମୁଦ୍ରିକ ପଦାର୍ଥମାନଙ୍କ ଭଡ଼ା ଓ ରାଜଭାଗ ପ୍ରଭୃତି ବିଷୟରେ ନାବଧ୍ୟକ୍ଷ ମଧ୍ୟ ସେପରି କରିବେ । (୩) ପଣ୍ୟପତ୍ତନ ଅର୍ଥାତ୍ ବାଣିଜ୍ୟର କେନ୍ଦ୍ରସ୍ଥଳ ହୋଇଥିବା ବନ୍ଦରମାନଙ୍କରେ ପତ୍ତନାଧ୍ୟକ୍ଷ ପ୍ରବର୍ତ୍ତିତ ନୌବାଣିଜ୍ୟ ସମ୍ବନ୍ଧୀୟ ଆଇନକାନୁନଗୁଡ଼ିକୁ ନାବଧ୍ୟକ୍ଷ ପାଳନ କରିବେ । ଦିଗଭ୍ରମ ବା ପ୍ରତିକୂଳ ବାୟୁଗ୍ରସ୍ତରେ ବ୍ୟାକୁଳିତ ହୋଇ ବନ୍ଦରରେ ଆସି ଲାଗିବା ନୌକା ବା ଜାହାଜଗୁଡ଼ିକୁ ନାବଧ୍ୟ ପିତା ଯେପରି ସନ୍ତାନସନ୍ତତିଙ୍କୁ ଅନୁଗ୍ରହ କରନ୍ତି ସେପରି ଅନୁଗ୍ରହ କରିବେ ଜଳରେ ଭିଜିଯାଇଥିବା ପଣ୍ୟପଦାର୍ଥ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଥିଲେ ସେଥିରୁ ଶୁଳ୍କ ଆଦାୟ କରିବେ ନାହିଁ, ଅଂଶିକ ନଷ୍ଟ ହୋଇଥିଲେ ଶୁଳ୍କର ଅର୍ଦ୍ଧଭାଗ ବା ନଷ୍ଟି ଅନୁପାତରେ ବିବେଚିତ ହେବା ଶୁଳ୍କ ଆଦାୟ କରିବେ ।

* ପତ୍ତନାନୁବୃତ୍ତ ଶୁଲ୍କ—Customary toll; ପତ୍ତନ—Port town or ପଣ୍ୟପତ୍ତନ—Commercial town.

ବା କୁର୍ଯାତ୍ । (୪) ଯଥାନିର୍ଦ୍ଦିଷ୍ଟାଶ୍ଚୈତାଃ ପଣ୍ୟପତ୍ତନଯାତ୍ରାକାଳେଷୁ ପ୍ରେଷୟେତ୍ । ସଂଯାନ୍ତୀର୍ନାବଃ କ୍ଷେତ୍ରାନୁଗତାଃ ଶୁଳ୍କଂ ଯାଚେତ । ହିଂସ୍ରିକା ନିର୍ଘାତୟେତ୍, ଅମିତ୍ରବିଷୟାତିଗାଃ ପଣ୍ୟପତ୍ତନ ଚାରିତ୍ରୋପଘାତିକାଶ୍ଚ । (୫) ଶାସକନିୟାମକଦାତ୍ରରଶ୍ମି-[illegible]କୋତ୍ସେଚକାଧିଷ୍ଠିତାଶ୍ଚ ମହାନାବୋ ହେମନ୍ତଗ୍ରୀଷ୍ମତାର୍ଯାସୁ [illegible]ଷୁ ପ୍ରଯୋଜୟେତ୍ । କ୍ଷୁଦ୍ରିକାଃ କ୍ଷୁଦ୍ରିକାସୁ ବର୍ଷାସ୍ରାବିଣୀଷୁ ।

---

(୪) ଉକ୍ତ ଅଶୁଳ୍କ ଓ ଅର୍ଦ୍ଧଶୁଳ୍କ ବିବେଚିତ ହୋଇଥିବା ଜାହାଜଗୁଡ଼ିକ ଯେଉଁ ପଣ୍ୟପତ୍ତନ ଅର୍ଥାତ୍ ବାଣିଜ୍ୟକେନ୍ଦ୍ର ହୋଇଥିବା ସହରକୁ ଯିବାପାଇଁ ଆସିଥିଲେ ସେଗୁଡ଼ିକୁ ଯଥାନିର୍ଦ୍ଦିଷ୍ଟ ସମୟରେ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦେବା ପକାଶେ ନାବଧ୍ୟକ୍ଷ ବ୍ୟବସ୍ଥା କରିବେ । ପୋତାଶ୍ରୟ ଅର୍ଥାତ୍ ବନ୍ଦର ନିକଟ ଦେଇ ଚାଲିଯାଉଥିବା ନୌକା ବା ଜାହାଜଗୁଡ଼ିକ ଶୁଳ୍କ ସ୍ଥାନରେ ଉପସ୍ଥିତ ହେବାମାତ୍ରେ ସେମାନଙ୍କ ନିର୍ଦ୍ଦିଷ୍ଟ ନୌ-ଶୁଳ୍କ ମାଗିବାକୁ ହେବ । ଜଳଦସ୍ୟୁ ପ୍ରଭୃତି ହିଂସ୍ର ମନୁଷ୍ୟ ଥିବା ଜାହାଜଗୁଡ଼ିକୁ ଅନୁସନ୍ଧାନ କରି ଧ୍ୱଂସ କରିଦେବାକୁ ହେବ; ଶତ୍ରୁଦେଶକୁ ଯାଉଥିବା ଓ ପଣ୍ୟପତ୍ତନର ଆଇନ-କାନୁନକୁ ଅମାନ୍ୟ କରୁଥିବା ଜାହାଜଗୁଡ଼ିକୁ ମଧ୍ୟ ଧ୍ୱଂସ କରିଦେବାକୁ ହେବ । (୫) * ଶାସକ (କପ୍ତାନ), ନିୟାମକ (କର୍ଣ୍ଣଧାର ବା ଜାହାଜ-ଚାଳକ), ଦାତ୍ରଗ୍ରାହକ (ଲବିତ୍ର ଅର୍ଥାତ୍ କାଟିବାର ଅସ୍ତ୍ର 'ଦା' ଧରିବା ବ୍ୟକ୍ତି), ରଶ୍ମିଗ୍ରାହକ (ଦଉଡ଼ି ଧରିବା ବ୍ୟକ୍ତି) ଓ ଉତ୍ସେଚକ (ଜାହାଜ ଭିତରୁ ପାଣି ବାହାରକୁ ଫିଙ୍ଗିବା ବ୍ୟକ୍ତି) ଅଧିଷ୍ଠିତ ମହାନାବ ଅର୍ଥାତ୍ ଜାହାଜଗୁଡ଼ିକୁ ହେମନ୍ତ ଓ ଗ୍ରୀଷ୍ମଋତୁରେ ମଧ୍ୟ ପାରହେବା ଯୋଗ୍ୟ ଜଳପୂର୍ଣ୍ଣ ସିନ୍ଧୁ ସରଯୂ ପ୍ରଭୃତି ମହାନଦୀମାନଙ୍କରେ ଚାଲୁହେବାର ବ୍ୟବସ୍ଥା କରିବେ ଏବଂ କ୍ଷୁଦ୍ର ନୌକାଗୁଡ଼ିକୁ କେବଳ ବର୍ଷାକାଳରେ ପାରହେବା ଯୋଗ୍ୟ ବର୍ଷାଜଳବାହୀ କ୍ଷୁଦ୍ର ନଦୀମାନଙ୍କରେ ଚାଲୁହେବାର ବ୍ୟବସ୍ଥା

---

* ଶାସକ (ଜାହାଜର ଶାସକ)—Captain; ନିୟାମକ—Steersman; ଦାତ୍ର—ରଶ୍ମିଗ୍ରାହକ ଓ ଉତ୍ସେଚକ Servants to hold the sickle, ropes and to pour out water.

(୬) ବଦ୍ଧତୀର୍ଥାଶ୍ଚୈତାଃ କାର୍ଯାଃ ରାଜଦ୍ୱିଷ୍ଟକାରିଣାଂ ତରଣଭୟାତ୍ । (୭) ଅକାଲେଽତୀର୍ଥେ ଚ ତରତଃ ପୂର୍ବଃ ସାହସଦଣ୍ଡଃ । କାଲେ ତୀର୍ଥେ ଚାନିସୃଷ୍ଟ ତାରିଣଃ ପାଦୋନ ସପ୍ତବିଂଶତିପଣସ୍ତରାତ୍ୟୟଃ । (୮) କୈବର୍ତ୍ତକାଷ୍ଠତୃଣଭାରପୁଷ୍ପଫଲବାଟଷଣ୍ଡଗୋପାଳକାନାମନତ୍ୟୟଃ ସଂଭାବ୍ୟଦୂତାନୁପାତିନାଂ ଚ ସେନାଭାଣ୍ଡପ୍ରୟୋ...

---

କରିବେ । (୬) ରାଜଦ୍ୱେଷକାରୀ (ଶତ୍ରୁପ୍ରଯୁକ୍ତ ତୀକ୍ଷ୍ଣ ରସଦ... ଅନିଷ୍ଟକାରୀ)ମାନେ ଜାହାଜ ଭିତରେ ଛଦ୍ମବେଶରେ ରହିଯିବା ଭୟ ଥିବା ଯୋଗୁଁ କିମ୍ବା ନିୟନ୍ତ୍ରଣ ଅଭାବରୁ ସେମାନେ ନଦୀ, ବନ୍ଦର ଇତ୍ୟାଦିର ଅଇନ ଅମାନ୍ୟ କରି ବଳପୂର୍ବକ ପାରହୋଇଯାଇ ଅନିଷ୍ଟ ସାଧନ କରିବାର ଆଶଙ୍କା ଥିବା ଯୋଗୁଁ, ତୀର୍ଥ ଅର୍ଥାତ୍ ଜାହାଜ ଲାଗିବା ଘାଟ ବା ପୋତାଶ୍ରୟ ପାଖେ କଡ଼ା ପହରା ଓ ଦୃଢ଼ନିୟନ୍ତ୍ରଣର ବ୍ୟବସ୍ଥା କରି ନାବଧ୍ୟକ୍ଷ ନୌକା ବା ଜାହାଜଗୁଡ଼ିକର ଯାତାୟାତର ବିଧିବଦ୍ଧ ତଦାରଖ କରିବେ । (୭) ଅକାଳରେ ଓ ଅଘାଟରେ ଯଦି କୌଣସି ବ୍ୟକ୍ତି ନୌକାରେ ପାରହୁଏ ତେବେ ତାକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବେ । ରାଜାଙ୍କ ଅନୁମତି ନଥାଇ ଯଥାକାଳ ଓ ଯଥାସ୍ଥାନରେ ନୌକାରେ ପାରହେବା ବ୍ୟକ୍ତି ମଧ୍ୟ ପାଏଊଣା ସତେଇଶି ପଣ (୨୬¾) ତରଣ ଦଣ୍ଡରେ ଦଣ୍ଡିତ ହେବେ । (୮) କେଉଟ, ଜାଳକାଠବୁହାଳି, ଘାସ ଓ ପାଳ ବୁହାଳି, ମାଳୀ, ପନିପରି ପ୍ରଭୃତି ଫଳଦଗିଚ୍ଛର ପାଳକ, ଅଖୁବାଡ଼ି ଓ ପାନବାଡ଼ି ଇତ୍ୟାଦିର ପାଳକ (ବାଡ଼ିଭଉଆ) ଓ ଗଉଡ଼ ବା ଗାଈଜଗିବା ବ୍ୟକ୍ତିମାନେ ନୌକାଭଡ଼ା ନଦେଇ ରାଜକାର୍ଯ୍ୟ ନୌକାରେ ବିନାଦଣ୍ଡରେ ପାର ହୋଇ ପାରିବେ । ନୌଯାତ୍ରୀମାନଙ୍କ ମଧ୍ୟରେ ଚୋର ଡକାୟତ ବୋଲି ସନ୍ଦେହ କରାଯାଉଥିବା ଲୋକଙ୍କୁ ଅନୁସନ୍ଧାନ କରି ଧରିବା ପାଇଁ ଅସମୟରେ ହଠାତ୍ ନୌକାରେ ବସିବା ରାଜଦୂତ, ଯୁଦ୍ଧରତ ସୈନ୍ୟମାନଙ୍କର ପାନଭୋଜନ ଓ ଯୁଦ୍ଧୋପକରଣ ବୋହି ନେଉଥିବା ବ୍ୟକ୍ତି ଓ ଗୁପ୍ତଚରମାନଙ୍କୁ ଅନୁସନ୍ଧାନ କରିବା ରାଜକାର୍ଯ୍ୟ ବ୍ୟକ୍ତିମାନେ ମଧ୍ୟ ଉପରୋକ୍ତ ପ୍ରକାରେ ରାଜକାର୍ଯ୍ୟ ନୌକାରେ ଯାତାୟାତ କରିପାରିବେ । ନିଜର ତରଣସାଧନ ଅର୍ଥାତ୍ ବାହୁ, ଲାଉତୁମ୍ବା, ଚର୍ମଭସ୍ତ୍ରା ଓ ସୋଲ୍‌ଭେଲା ପ୍ରଭୃତି ସାହାଯ୍ୟରେ ପାରହେବା ବ୍ୟକ୍ତି ବା ନିଜର ଫ୍ଲେଟ

ଚ । ୮ ସ୍ତୁତରଣୈସ୍ତରତାଂ, ବୀଜଭକ୍ତଦ୍ରବ୍ୟୋପସ୍କରାଂଶ୍ଚାନୂପ-ଗ୍ରାମାଣାଂ ତାରୟତାମ୍ । (୯) ବ୍ରାହ୍ମଣପ୍ରବ୍ରଜିତବାଳବୃଦ୍ଧବ୍ୟାଧିତ ଶାସନହରଗର୍ଭିଣ୍ୟୋ ନାବଧ୍ୟକ୍ଷମୁଦ୍ରାଭିସ୍ତରେୟୁଃ । (୧୦) କୃତପ୍ରବେଶାଃ ପାରବିଷୟିକାଃ ସାର୍ଥପ୍ରମାଣା ବା ବିଶେୟୁଃ । [illegible] ପରସ୍ୟ ଭାର୍ଯାଂ କନ୍ୟାଂ ବିତ୍ତଂ ବାପହରନ୍ତଂ ଶଂକିତ-[illegible]ମୁଦ୍‌ଭାଣ୍ଡୀକୃତଂ ମହାଭାଣ୍ଡେନମୂର୍ଦ୍ଧ୍ନି ଭାରେଣାବଚ୍ଛାଦୟନ୍ତଂ [illegible]ଗୃହୀତଲିଙ୍ଗିନମଲିଙ୍ଗିନଂ ବା ପ୍ରବ୍ରଜିତମଲକ୍ଷ୍ୟବ୍ୟାଧିତଂ

---

ଡଙ୍ଗାରେ ପାରହେବା ବ୍ୟକ୍ତି ଏବଂ ଜଳବହୁଳ ଜାଗାର ଗ୍ରାମବାସୀମାନେ ବିହନ, ଖାଦ୍ୟପଦାର୍ଥ, ଫୁଲ-ଫଳ, ପରିବା ଓ ଉପସ୍କର ଅର୍ଥାତ୍ ଧନିଆଁ, ଅଦା, ରସୁଣ, ଗୋଲମରିଚ, ଅଳାଇଚ, ତେଜପତ୍ରୀ, ଗୁଡ଼ତ୍ୱକ (ଡାଲଚିନି) ପ୍ରଭୃତି ମସଲାସର୍କ (ବାଟଣାଜିନିଷ)ମାନଙ୍କୁ ନିଜଗ୍ରାମକୁ ନେଉଥିବା ବ୍ୟକ୍ତି-ମାନେ ମଧ୍ୟ ରାଜକୀୟ ନୌକାରେ ବିନାଶୁଳ୍କରେ ବିନାଦଣ୍ଡରେ ପାର ହୋଇପାରିବେ । (୯) ବ୍ରାହ୍ମଣ, ସନ୍ନ୍ୟାସୀ, ବାଳକ, ବୃଦ୍ଧ, ରୋଗୀ, ରାଜଦୂତ (ରାଜଶାସନହର) ଓ ଗର୍ଭିଣୀ ପ୍ରଭୃତି ନାବଧ୍ୟକ୍ଷଙ୍କଠାରୁ ବିନାଶୁଳ୍କରେ ପାରହେବା ସକାଶେ ଅନୁମତିପତ୍ର (Free pass) ନେଇ ରାଜକୀୟ ନୌକାରେ ପାର ହୋଇ ପାରିବେ । (୧୦) ରାଜାଙ୍କ ଅନୁଜ୍ଞାପ୍ରାପ୍ତ ବିଦେଶାଗତ ପ୍ରସିଦ୍ଧ ପଣ୍ଡିତ, ବ୍ୟବସାୟୀ ବା ଶିଳ୍ପିମାନେ କିମ୍ବା ଏହାଙ୍କ ସହିତ ଆସିଥିବା ବ୍ୟକ୍ତିମାନେ ଓ ଅନୁମତି ନ ପାଇଥିଲେ ମଧ୍ୟ ଯେଉଁ ବିଦେଶାଗତ ବ୍ୟବହାରୀ (ବଣିକ)ମାନେ ବହୁକାଳରୁ ଯାତାୟାତ କରି ସ୍ଥାନୀୟ ବଣିକମାନଙ୍କ ସୁପରିଚିତ, ସେମାନେ ଘାଟ କିମ୍ବା ପୋତାଶ୍ରୟରେ ଓହ୍ଲାଇ ରାଜାଙ୍କ ଦେଶରେ ପ୍ରବେଶ କରିପାରିବେ । (୧୧) ନୌକାରେ ଅନ୍ୟର ଭାର୍ଯା, କନ୍ୟା କିମ୍ବା ଧନସମ୍ପତ୍ତି ଅପହରଣ କରି ନେଇଯାଉଥିବା ବ୍ୟକ୍ତିକୁ ନିମ୍ନଲିଖିତ ଶଙ୍କିତତ୍ୱାଦି ଲକ୍ଷଣଦ୍ୱାରା ଅନୁମାନ କରି ବନ୍ଧନ କରିବେ । ଅର୍ଥାତ୍ ଏପରି ବ୍ୟକ୍ତି ସାଧାରଣତଃ ଶଙ୍କିତ, ଉଦ୍‌ବିଗ୍ନ, ଅତ୍ୟଧିକ ଭାଣ୍ଡଭାର (ପେଡ଼ିପୋଟଳି) ବାହକ, ମହାଭାଣ୍ଡ (ବଡ଼ବୁଜୁଲା ବା ବଡ଼ ପାଲଭିଡ଼ା ପ୍ରଭୃତି ମସ୍ତକରେ ଧାରଣପୂର୍ବକ ମୁଖ ଅଚ୍ଛାଦନକାରୀ, ସଦ୍ୟସନ୍ନ୍ୟାସୀବେଶଧାରୀ ବା ସଦ୍ୟସନ୍ନ୍ୟାସବେଶପରିତ୍ୟାଗକାରୀ, ବ୍ୟାଧିଲକ୍ଷଣ ଦେଖାଯାଉନଥିବା

ଭୟ୍ୟବକାରଣଂ ଗୂଢ଼ସାରଭଣ୍ଡଶାସନଶସ୍ତ୍ରାଗ୍ନିଯୋଗଂ ବିଷହସ୍ତଂ ଦୀର୍ଘପଥିକମମୁଦ୍ରଂ ଚୋପଗ୍ରାହୟେତ୍ । (୧୨) କ୍ଷୁଦ୍ରପଶୁର୍ମନୁଷ୍ୟଶ୍ଚ ସଭାରୋ ମାଷକଂ ଦଦ୍ୟାତ୍ । ଶିରୋଭାରଃ କାୟଭାରୋ ଗବାଶ୍ୱଂ ଚ ଦ୍ୱୌ । ଉଷ୍ଟ୍ରମହିଷଂ ଚତୁରଃ । ପଞ୍ଚଲଘୁଯାନମ୍ । ଷଡ୍ଗୋଲିଙ୍ଗମ୍ । ସପ୍ତଶକଟମ୍ । ପଣ୍ୟଭାରଃ ପାଦମ୍ । (୧୩) ତେନ ଭା ବ୍ୟାଖ୍ୟାତଃ । ଦ୍ୱିଗୁଣୋ ମହାନଦୀଷୁ ତରଃ । କ୍ଲୃପ୍ତମାନୂ

---

ସତ୍ତ୍ୱେ ବ୍ୟାଧିତଭଳି ଛଳନାକାରୀ, ଭୟଯୋଗୁଁ ଦେହ ସେଠୁଅ ଓ ମୁଦ୍ରା ବିକୃତଚିହ୍ନଯୁକ୍ତ, ଗୁପ୍ତ ରତ୍ନାଦିର ପେଟିକା (ପେଡ଼ି), ଗୁପ୍ତଲେଖ (ଗୁପ୍ତପତ୍ର), ଗୁପ୍ତଅସ୍ତ୍ର, ଗୂଢ଼ ଅଗ୍ନିଯୋଗ ଅର୍ଥାତ୍ ଅପ୍ରତିହତ ଅଗ୍ନିଯୋଗ ଯାହାକି ନାନାବିଧ ସର୍ପ, ଏଣ୍ଡୁଅ ଓ ବିଷାକ୍ତ କୀଟମାନଙ୍କ ଶୁଷ୍କଦେହଚୂର୍ଣ୍ଣରେ ପ୍ରସ୍ତୁତ ହୋଇଥାଏ ସେହି ଅଗ୍ନିଯୋଗଯୁକ୍ତ, ବିଷହସ୍ତ, ଦୂରମାର୍ଗ ଗମନ-ଦ୍ୱାରା ଶ୍ରାନ୍ତ ଓ ଅନ୍ତପାଳଙ୍କ ଆଦେଶମୁଦ୍ରାଶୂନ୍ୟ ହୋଇଥାଏ । (୧୨) ଛେଳି, ମେଣ୍ଢା ପ୍ରଭୃତି କ୍ଷୁଦ୍ରପଶୁ ଓ ହାତରେ ବୋହି ନେବାପରି ବୋଝ ଧରିଥିବା ମନୁଷ୍ୟ ସକାଶେ ନୌକାଭଡ଼ା ଏକମସା, ମୁଣ୍ଡରେ ବୋହିବା ବୋଝ, କାନ୍ଧରେ ବୋହିବା ଭାର, ଗାଈ ଓ ଘୋଡ଼ା ସକାଶେ ଦୁଇମସା, ଓଟ ଓ ମଇଁଷି ସକାଶେ ଚାରିମସା, ଧୀରଭାବରେ ଗତିକରୁଥିବା ଯାନ ସକାଶେ ପାଞ୍ଚମସା, ମଧ୍ୟମଭାବେ ଗମନ କରୁଥିବା ଯାନ ସକାଶେ ଛ'ମସା, ଶଗଡ଼ ସକାଶେ ସାତମସା ଓ ପଣ୍ୟଭାର ଅର୍ଥାତ୍ କୋଡ଼ିଏତୁଳା ବା ଦୁଇସହସ୍ର ପଳ (ଆଠହଜାର ତୋଳା) ପଣ୍ୟ ପଦାର୍ଥ ସକାଶେ ପଣର ଚାରିଭାଗରୁ ଏକଭାଗ ତରବେତନ ଅର୍ଥାତ୍ ରାଜକୀୟ ନୌକାରେ ପାରହେବା ଦେୟ ଦେବାକୁ ହେବ । (୧୩) ପଣ୍ୟଭାରବେତନ ବିଷୟ କଥନଦ୍ୱାରା ଭଣ୍ଡାରବେତନ ବିଷୟ ମଧ୍ୟ ବ୍ୟାଖ୍ୟାତ ହେଲା । ସାଧାରଣ ନଦୀ-ମାନଙ୍କରେ ପାର ହେବାପାଇଁ ଏ ଯେଉଁ ତରବେତନ ଧାର୍ଯ୍ୟ କରାଗଲା ଗଙ୍ଗା, ଯମୁନା, ସିନ୍ଧୁ ଓ ଗୋଦାବରୀ ପ୍ରଭୃତି ମହାନଦୀମାନଙ୍କର ତରବେତନ ଏହାର ଦୁଇଗୁଣ ଦେବାକୁ ହେବ । ଜଳବହୁଳ ଅଞ୍ଚଳର ଗ୍ରାମବାସିମାନେ ନାବିକମାନଙ୍କୁ ଯତ୍କିଞ୍ଚିତ ବେତନ ଓ ସାମୟିକ ଭୋଜନ ଦେଇ ରାଜକୀୟ

ଭକ୍ତବେତନଂ ଦଦ୍ୟୁଃ । (୧୪) ପ୍ରତ୍ୟନ୍ତେଷୁ ତରାଃ ଶୁଳ୍କ-
ମାତବାହ୍ନକଂ ବର୍ତ୍ତନୀଂ ଚ ଗୃହ୍ଣୀୟୁଃ । ନିର୍ଗଚ୍ଛତଶ୍ଚାମୁଦ୍ରସ୍ୟ
ଭଣ୍ଡଂ ହରେୟୁଃ । ଅତିଭାରେଣାବେଳାୟାମତୀର୍ଥେତରତଶ୍ଚ ।
(୧୫) ପୁରୁଷୋପକରଣହୀନାୟା ମସଂସ୍କୃତାୟାଂ ବା ନାବି
[redacted]ାୟାଂ ନାବଧ୍ୟକ୍ଷୋ ନଷ୍ଟଂ ବିନଷ୍ଟଂ ବାଭ୍ୟାବହେତ୍ ।

ସପ୍ତାହବୃତ୍ତାମାଷାଢ଼ୀଂ କାର୍ତ୍ତିକୀଂ ¶ ଚାନ୍ତରତରଃ ।
କାର୍ମିକପ୍ରତ୍ୟୟଂ ଦଦ୍ୟାନ୍ନିତ୍ୟଂ ଚାହ୍ନିକମାବହେତ୍ ॥

---

ନୌକାରେ ସର୍ବଦା ଯାତାୟାତ କରୁଥିବେ । (୧୪) ରାଜ୍ୟ ସୀମାନ୍ତରେ ପାର-
କରୁଥିବା ନାବିକମାନେ ବଣିକସଂଘରୁ ଅତ୍ୟନ୍ତ ଭଗ୍ନ ପଦାର୍ଥର ରାଜଦେୟ
ଓ ଅନ୍ତପାଳ ଦେୟ ଗ୍ରହଣ କରିବେ । ମୁଦ୍ରାନଥିବା କୌଣସି ପଦାର୍ଥ
ନେଇ ପଳାଇ ଯାଉଥିବା ବଣିକସଂଘଠାରୁ ଉକ୍ତ ପଦାର୍ଥ ନୌକର୍ମଗୃହମାନେ
ଜବତ କରିନେବେ । ସେପରି ମଧ୍ୟ ଦୁଇଜଣ ବହିନେବାଭଳି ଅତିଶୟ
ଭାରି ହୋଇଥିବା ଭାର ଧରି ଜଣେ ଲୋକ ବା ଦୁଇଗୁଣ ଭାରଯୁକ୍ତ ଗୋଟିଏ
ନୌକା ଅସମୟରେ ଅଘାଟରେ ପାରି ହେଉଥିଲେ ତାକୁ ଅଟକାଇ
ସେଥିରେ ଥିବା ଜିନିଷପତ୍ର ଜବତ କରିନେବେ । (୧୫) ରାଜକୀୟ ନୌକା
ଯଦି ଶାସକ ଓ ନିୟାମକହୀନ ଓ ଉପକରଣ ଅର୍ଥାତ୍ ନଙ୍ଗର, ଦଉଡ଼ି,
ଡଲଇ, ଜଳନିଷ୍କାସକ ପାତ୍ରହୀନ ଏବଂ ସିଅଁ, ବନ୍ଧା, ଯୋଡ଼ା ପ୍ରଭୃତି
ମରାମତି ଅଭାବରୁ ଅସଂସ୍କୃତ ହେବା ଯୋଗୁଁ ବିପନ୍ନ ହୁଏ, ତେବେ ନାବଧ୍ୟକ୍ଷ
ନଷ୍ଟ ଅର୍ଥାତ୍ ଲବଣାଦି ଜଳଲୀନ ପଣ୍ୟପଦାର୍ଥ ବିନଷ୍ଟ ଅର୍ଥାତ୍ ଜଳରେ
ଭିଜିଯିବା ଯୋଗୁଁ ଦୂଷିତରୂପ ଧାରଣ କରିଥିବା ଜିନିଷ ବା ତା'ର
ମୂଲ୍ୟ ବଣିକସଂଘକୁ ଦେବାକୁ ବାଧ୍ୟ ହେବେ । (୧୬) * ଅଷାଢ଼

---

¶ ଆତର—ନୌକାଭଡ଼ା ।
ଆତର ଲଘବ ହେତୋର୍ମୂଲ୍ୟହର ତରଣୀଂ ତବାବଲମ୍ବେ । ଇତି ହଳାୟୁଧରେ ।

* "ଚୈତ୍ର ଶୁକ୍ଳାଦିକା ମାସାଃ" ଅର୍ଥାତ୍ ଚୈତ୍ର ଶୁକ୍ଳ ପ୍ରତିପଦାଠାରୁ ସ୍ମୃତିକାରଙ୍କ ମତରେ
ମାସଗଣନା ଆରମ୍ଭ ହୁଏ । ଏହି ନିୟମ ଅନୁସାରେ ଗୋଟିଏ ଅମାବାସ୍ୟାଠାରୁ ପରବର୍ତ୍ତୀ

ପୌର୍ଣ୍ଣମୀର ଏକସପ୍ତାହ ପରଠାରୁ (ଆଷାଢ କୃଷ୍ଣ ସପ୍ତମୀଠାରୁ) କାର୍ତ୍ତିକ ପୌର୍ଣ୍ଣମୀର ଏକସପ୍ତାହ ପରପର୍ଯ୍ୟନ୍ତ (କାର୍ତ୍ତିକ କୃଷ୍ଣ ସପ୍ତମୀପର୍ଯ୍ୟନ୍ତ) ବର୍ଷାଜଳ ଦ୍ୱାରା ସମୃଦ୍ଧ ହୋଇଥିବା ନଦୀଗୁଡ଼ିକରେ ଯାତାୟାତ କରିବା ନୌଯାତ୍ରୀ-ମାନଙ୍କଠାରୁ ତରଶୁଳ୍କ ଆଦାୟ କରିବାକୁ ହେବ । (ସବୁ ଋତୁରେ ଜଳଥିବା ନଦୀମାନଙ୍କରୁ ସର୍ବଦା ତରଶୁଳ୍କ ଆଦାୟ କରିବାକୁ ହେ[redacted] ନାବଧ୍ୟକ୍ଷ ନାବିକମାନଙ୍କୁ ଅମୁକ ଅମୁକ ଦିନ କର୍ମଦିବସ ବୋଲି [redacted] ଦେଉଥିବେ । ନାବିକମାନେ ଦୈନିକ ନୌକାଭଡ଼ାରୁ ଆଦାୟ ହେବା [redacted] ନାବଧ୍ୟକ୍ଷଙ୍କୁ ଦେଉଥିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଅଷ୍ଟାବିଂଶୋଽଧ୍ୟାୟଃ—ନାବଧ୍ୟକ୍ଷଃ—ଆଦିତୋ ଊନପଞ୍ଚାଶତ୍ ଅଧ୍ୟାୟଃ ।

---

ଅମାବାସ୍ୟାପର୍ଯ୍ୟନ୍ତ ଗୋଟିଏ ମାସ ବୋଲି ଧରାଯାଇଛି । "ସପ୍ତାହବୃତ୍ତାଂ ମାଷାଢୀଂ" ଏହାର ଅର୍ଥ ଉକ୍ତ ନିୟମ ଅନୁସାରେ ଆଷାଢ ମାସର ପୌର୍ଣ୍ଣମୀ ପରବର୍ତ୍ତୀ ସାତଦିନ ଠାରୁ "କାର୍ତ୍ତିକୀଂ ଚାନ୍ତରାତରଂ" ଅର୍ଥାତ୍ କାର୍ତ୍ତିକ ପୌର୍ଣ୍ଣମୀର ପରବର୍ତ୍ତୀ ସାତଦିନଯାଏ ତରଶୁଳ୍କ ଆଦାୟ କରିବାକୁ ହେବ ବୋଲି ଲେଖାଯାଇଛି । ପ୍ରଚଳିତ ମାସ ନିୟମ ଅନୁସାରେ ଏହା ଯଥାକ୍ରମେ ଶ୍ରାବଣ କୃଷ୍ଣ ସପ୍ତମୀ ପରବର୍ତ୍ତୀ ଦିନଠାରୁ ମାର୍ଗଶିର କୃଷ୍ଣ ସପ୍ତମୀ ପର୍ଯ୍ୟନ୍ତ ତରଶୁଳ୍କ ଆଦାୟ କରାଯିବ ବୋଲି ବୁଝିବାକୁ ହେବ ।

# ଊନତ୍ରିଂଶୋଽଧ୍ୟାୟଃ

## ଷଟ୍ଚତ୍ୱାରିଂଶ ପ୍ରକରଣମ୍—ଗୋଧ୍ୟକ୍ଷଃ

## THE SUPERINTENDENT OF COWS

( ଗୋ ମହିଷାଦି ଗୃହପାଳିତ ଜନ୍ତୁମାନଙ୍କ ତତ୍ତ୍ୱାବଧାରକ ଗୋ ଅଧ୍ୟକ୍ଷଙ୍କ ବ୍ୟାପାର )

(୧) ଗୋଧ୍ୟକ୍ଷୋ ବେତନୋପଗ୍ରାହିକଂ କରପ୍ରତିକରଂ ଭଗ୍ନୋତ୍ସୃଷ୍ଟକଂ ଭାଗାନୁପ୍ରବିଷ୍ଟକଂ ବ୍ରଜପର୍ଯ୍ୟଗ୍ରଂ ନଷ୍ଟଂ ବିନଷ୍ଟଂ କ୍ଷୀରଘୃତସଞ୍ଜାତଂ ଚୋପଲଭେତ । (୨) ଗୋପାଳକପିଣ୍ଡାରକ ଦୋହକମନ୍ଥକଲୁବ୍ଧକାଃ ଶତଂ ଶତଂ ଧେନୂନାଂ ହିରଣ୍ୟଭୃତାଃ ପାଳୟେୟୁଃ । କ୍ଷୀରଘୃତଭୃତା ହି ବତ୍ସାନୁପହନ୍ୟୁରିତି

(୧) ଗୋ ଅଧ୍ୟକ୍ଷ—* ବେତନଗ୍ରାହିକ, କର ପ୍ରତିକର, ଭଗ୍ନୋତ୍ସୃଷ୍ଟକ, ଭାଗାନୁପ୍ରବିଷ୍ଟକ, ବ୍ରଜପର୍ଯ୍ୟଗ୍ର, ନଷ୍ଟ, ବିନଷ୍ଟ ଓ କ୍ଷୀର ଘୃତସଞ୍ଜାତ—ଗବାଦି ଗୃହପାଳିତ ପଶୁସମ୍ବନ୍ଧୀୟ ଏ ଅଠଗୋଟି ବିଷୟ ଉପରେ ଅଧ୍ୟକ୍ଷତା କରିବେ । (୨) ଗୋପାଳକ (ଗଉଡ଼), ପିଣ୍ଡାରକ (ମଇଁଷିଆଳ), ଦୋହକ (ଦୁହିଁବା ଲୋକ), ମନ୍ଥକ (ଦହିମନ୍ଥିବା ଲୋକ) ଓ ଲୁବ୍ଧକ (ବାଘ, ସାପ ଇତ୍ୟାଦି ହିଂସ୍ରପ୍ରାଣୀମାନଙ୍କ କବଳରୁ ଗାଈ ମଇଁଷିମାନଙ୍କୁ ରକ୍ଷାକରିବା ଲୋକ)—ଏ ପାଞ୍ଚପ୍ରକାର ଲୋକ ଶହ ଶହ ଗାଈ ମଇଁଷିଙ୍କୁ କେବଳ ଧନଧାନ୍ୟ ବେତନ

* (1) Herds maintained for wages, (2) Herds surrendered for a fixed amount of dairy produce, (3) Useless and abandoned herds, (4) Herds maintained for a share in dairy produce, (5) Classes of herds, (6) Cattle that strayed, (7) Cattle that are irrecoverably lost, (8) The amassed quantity of milk and clarified butter.

ବେତନୋପଗ୍ରାହିକମ୍ । (୩) କରଦ୍‌ଗୁଡଧେନୁଗର୍ଭିଣୀପଷ୍ଠୌହୀ-ବତ୍ସତରୀଣାଂ ସମବିଭାଗଂ ରୂପଶତମେକଃ ପାଳୟେତ୍ । ଘୃତସ୍ୟାଷ୍ଟୌ ବାରକାନ୍ ପଣିକଂ ପୁଚ୍ଛଂ ଅଙ୍କଚର୍ମ ଚ ବାର୍ଷିକଂ ଦଦ୍ୟାଦିତି କରପ୍ରତିକରଃ । (୪) ବ୍ୟାଧିତାନ୍ୟଙ୍ଗାନନ୍ୟଦୋହୀ-ଦୁର୍ଦୋହାପୁତ୍ରଘ୍ନୀନାଂ ଚ ସମବିଭାଗଂ ରୂପଶତଂ ପାଳୟନ୍ତସ୍ତଜ୍ଜାତିକଂ ଭାଗଂ ଦଦ୍ୟୁରିତି ଭଗ୍ନୋତ୍ସୃଷ୍ଟକମ୍ । (୫) ପରଚକ୍ରାଟବୀଭୟା

ନେଇ ପାଳନ କରିବେ । ଯଦି ଏମାନଙ୍କୁ କ୍ଷୀର ଘିଅ ବେତନରୂପେ ଦେବାକୁ ସ୍ଥିର କରାଯାଏ, ତେବେ ଏମାନେ ବହୁତ କ୍ଷୀର ପାଇବା ଆଶାରେ ଗାଈ ମଇଁଷିମାନଙ୍କୁ ଅତିମାତ୍ରାରେ ଦୋହନ କରି ବାଛୁରିମାନଙ୍କୁ ମାରିଦେବେ କିମ୍ବା ରୁଗ୍ଣ ଓ ଦୁର୍ବଳ କରିଦେବେ । ଏମାନଙ୍କୁ 'ବେତନୋପଗ୍ରାହିକ' କୁହାଯାଏ । (୩) ବୁଢ଼ିଗାଈ, ଦୁଧିଆଳୀ ଗାଈ, ଗର୍ଭିଣୀ ଗାଈ, ଛଡ଼ା ଗାଈ (ଷଣ୍ଢ ଖୋଜୁଥିବା ଗାଈ) ଓ ପିଅଛାଡ଼ିଥିବା ବାଛୁରିମାନଙ୍କ ମଧ୍ୟରୁ ପ୍ରତ୍ୟେକଟିରୁ କୋଡ଼ିଏ ଗୋଟି ଲେଖାରେ ନେଇ ମୋଟ ଶହେ ଗାଈଙ୍କୁ ପାଳନ କରିବା ସକାଶେ ଜଣେ ଜଣେ ପାଳକ ନିଯୁକ୍ତ ହେବେ । ଏହି ଗୋପାଳକ ପ୍ରତିବର୍ଷ ଆଠବାରକ ଅର୍ଥାତ୍ ଚଉରାଅଶୀ କୁଡ଼ୁବ ଘୃତ, ପ୍ରତି ଗାଈପିଚ୍ଛା ଏକପଣ କର ଓ ରଜାଙ୍କ ମୋହରଥିବା ମଲାଗାଈର ଚମଡ଼ା ବାର୍ଷିକ ଦେୟ ସ୍ୱରୂପ ରାଜାଙ୍କୁ ଦେଉଥିବେ । ଏହିପ୍ରଥାକୁ 'କରପ୍ରତିକର' କୁହାଯାଏ । (୪) ରୁଗ୍ଣା, ବିକଳାଙ୍ଗୀ, ଅନନ୍ୟଦୋହା (ସ୍ୱତମତ ଦୁହୁଁଥିବା ଲୋକଛଡ଼ା ଅନ୍ୟଲୋକ ଦ୍ୱାରା ଦୁହାଁନଯିବା ଗାଈ), ଦୁର୍ଦୋହା (ଲାତମାରୁଣୀ ଓ ପାଦବନ୍ଧନ-ଶୃଙ୍ଗଧାରଣ ବ୍ୟତିରେକେ ଦୁହାଁନଯିବା ଗାଈ) ଓ ମୃତବତ୍ସା (ପୁତ୍ରଘ୍ନୀ) ଗାଈମାନଙ୍କ ମଧ୍ୟରୁ ପ୍ରତ୍ୟେକଟିରୁ କୋଡ଼ିଏ ଗୋଟି ହିସାବରେ ଶହେଗୋଟି ଗାଈ ପାଳନକରି ପୂର୍ବୋକ୍ତ 'କରପ୍ରତିକର' ପ୍ରଥାର ଅର୍ଦ୍ଧଭାଗ କିମ୍ବା ଦଶମଭାଗରୁ ଏକଭାଗ ଘୃତ, କର ଓ ଚମଡ଼ା ରାଜକୋଷକୁ ଦେବା ପ୍ରଥାକୁ 'ଭଗ୍ନୋତ୍ସୃଷ୍ଟକ' କୁହାଯାଏ । (୫) ଶତ୍ରୁର ଚକ୍ରାନ୍ତ, ଗୋଖାଦକ-ଅନାର୍ଯ୍ୟବନଚର ତଥା ବ୍ୟାଘ୍ର ପ୍ରଭୃତି ହିଂସ୍ରପ୍ରାଣୀମାନଙ୍କ ଭୟହେତୁରୁ ନିଜର ଗାଈମାନଙ୍କୁ ରକ୍ଷାକରିବା ପାଇଁ କୌଣସି ବ୍ୟକ୍ତି ଗୋଧ୍ୟକ୍ଷଙ୍କ ଜିମାରେ ତାର ଗାଈଗୁଡ଼ିକୁ ରଖାଇଦେଇ ପାଳନଧର୍ମ ରକ୍ଷାସକାଶେ ଉକ୍ତ ଗାଈମାନଙ୍କ

ପ୍ରବିଷ୍ଟାନାଂ ପଶୂନାଂ ପାଲନଧର୍ମଣ ଦଶଭାଗଂ ଦଦ୍ୟୁରିତି 'ଭାଗାନୁପ୍ରବିଷ୍ଟକମ୍' । (୬) ବତ୍ସା ବତ୍ସତରା ଦମ୍ୟା ବହିନୋ ବୃଷା ଉକ୍ଷାଣଶ୍ଚ ପୁଂଗବାଃ । ଯୁଗବାହନଶକଟବହା ବୃଷଭାଃ ସୂନାମହିଷାଃ ପୃଷ୍ଠସ୍କନ୍ଧବାହିନଶ୍ଚ ମହିଷାଃ । ବତ୍ସିକା ବତ୍ସତରୀ ପଷ୍ଠୌହୀ ଗର୍ଭିଣୀ ଧେନୁଶ୍ଚାପ୍ରଜାତା ବନ୍ଧ୍ୟାଶ୍ଚ ଗାବୋ ମହିଷ୍ୟଶ୍ଚ । ମାସଦ୍ୱିମାସଜାତାସ୍ତାସାମୁପଜା ବତ୍ସା ବତ୍ସିକାଶ୍ଚ । ମାସଦ୍ୱିମାସ-ଜାତାନଙ୍କୟେତ୍ । ମାସଦ୍ୱିମାସପର୍ୟୁଷିତମଙ୍କୟେତ୍ । ଅଙ୍କମ୍ ଚିହ୍ନଂ ବର୍ଣ୍ଣଂ ଶୃଙ୍ଗାନ୍ତରଂ ଚ ଲକ୍ଷଣଂ, ଏବମୁପଜା ନିବନ୍ଧୟେଦିତି

---

ଠାରୁ ଅଦାୟ ହେବା ଘୃତାଦି ପଦାର୍ଥର ଦଶଭାଗରୁ ଏକଭାଗ ରାଜାଙ୍କୁ ଦେବା ସ୍ଥିର କରାଯିବା ପ୍ରଥାକୁ 'ଭାଗାନୁପ୍ରବିଷ୍ଟକ' କହନ୍ତି । (୬) ଅଣ୍ଡିରା ପିଅବାଛୁରୀ ଓ ପିଅଛଡ଼ା ବାଛୁରୀ, ଦାମୁଡ଼ା, ହଳଯୋଗ୍ୟ ବଳଦ ବା ପିଠିଆ ବଳଦ, ଷଣ୍ଢ ଓ ବୁଢ଼ା ବଳଦ ଭେଦରେ ଗୋରୁ ଛ'ପ୍ରକାର । ହଳଯୋଗ୍ୟ ଓ ଶଗଡ଼ଯୋଗ୍ୟ ପୋଢ଼, ମଞ୍ଚିପୋଢ଼, ବଳିପୋଢ଼ (ଦେବୀ ନିକଟରେ ବଳିପଡ଼ିବା ପୋଢ଼ ବା ମାଂସ ସକାଶେ ହଣାହେବା ପୋଢ଼, ସୂନାମହିଷ) ଏବଂ ପିଠିଆ ଓ କାନ୍ଧୁଆ ଭେଦରେ ପୋଢ଼ ଚାରିପ୍ରକାର । ବାଛୁରୀ କରିଥିବା ଗାଈ ଓ ମଇଁଷୀ, ପିଅଛଡ଼ା ମାଈ ବାଛୁରୀ, ଛଡ଼ା, ଗର୍ଭିଣୀ, ଦୁଧିଆଳି, ଅପ୍ରଜାତା (ପିଲା ଜନ୍ମ କରିନଥିବା ଗାଈ, ମଇଁଷୀ) ଓ ବନ୍ଧ୍ୟା ଭେଦରେ ଗାଈ ଓ ମଇଁଷୀ ସାତପ୍ରକାର । ଏହି ଗାଈ ଓ ମଇଁଷିମାନଙ୍କଠାରୁ ଜାତହୋଇଥିବା ମାସେ ବା ଦୁଇମାସର ଅଣ୍ଡିରା ବାଛୁରୀ ଓ ମାଈ ବାଛୁରୀଙ୍କି 'ଉପଜା' କୁହାଯାଏ । ଏହି ବାଛୁରୀଗୁଡ଼ିକ ଜନ୍ମହେବାର ମାସେ ବା ଦୁଇମାସ ପରେ ତାତିଲା ଲୁହାଦ୍ୱାରା ଏମାନଙ୍କ ଦେହରେ ବା ଫଞ୍ଜିଆରେ ଦାଗ କରିଦେବାକୁ ହେବ । ଜ୍ଞାତସ୍ୱାମିକ ଅର୍ଥାତ୍ ଯେଉଁ ଗାଈର ମାଲିକ ଜଣାପଡ଼ୁଥିବ ଓ ଅଜ୍ଞାତ ସ୍ୱାମିକ ଅର୍ଥାତ୍ ଯେଉଁ ଗାଈର ମାଲିକ କିଏ ତାହା ଜଣାପଡ଼ୁନଥିବ, ଏପରି ଗାଈ, ମଇଁଷୀ, ପୋଢ଼, ବଳଦଙ୍କୁ ମାସେ ବା ଦୁଇମାସ ଅପେକ୍ଷା କରି ଉକ୍ତ ମାଲିକମାନେ ସେମାନଙ୍କ ଜନ୍ତୁ ଫେରାଇ ନେବାକୁ ନ ଆସିଲେ ଗୋଧ୍ୟକ୍ଷ ଏମାନଙ୍କ ଦେହରେ ମଧ୍ୟ ଦାଗ କରାଇ ଦେବେ । ଏସମସ୍ତଙ୍କର ସ୍ୱସ୍ତିକ ପ୍ରଭୃତି କୃତ୍ରିମ ଦାଗ, କଳା ଲଞ୍ଜି, ଧଳା ଲଞ୍ଜି,

'ବ୍ରଜପର୍ଯଗ୍ରମ୍' । (୭) ଚୌରହୃତମନ୍ୟଯୂଥପ୍ରବିଷ୍ଟମବଲୀନଂ ବା ନଷ୍ଟମ୍ । (୮) ପଙ୍କବିଷମବ୍ୟାଧିଜରାତୋୟାହାରାବସନ୍ନଂ ବୃକ୍ଷାତଟକାଷ୍ଠଶିଳାଭିହତମୀଶାନବ୍ୟାଳସର୍ପଗ୍ରାହଦାବାଗ୍ନିବିପନ୍ନଂ ବିନଷ୍ଟମ୍ । ପ୍ରମାଦାଦଭ୍ୟାବହେୟୁଃ । ଏବଂ ରୂପାଗ୍ରଂ ଦଦ୍ୟାତ୍ । (୯) ସ୍ୱୟଂହନ୍ତା ଘାତୟିତା ହର୍ତା ହାରୟିତା ଚ ବଧ୍ୟଃ । ପରପଶୂନ୍[illegible] ରାଜାଙ୍କେନ ପରିବର୍ତୟିତା ରୂପସ୍ୟ ପୂର୍ବଂ ସାହସଦଣ୍ଡଂ ଦଦ୍ୟା[illegible]

---

କିମ୍ବା କଣ୍ଠ, ଚନ୍ଦ ପ୍ରଭୃତି ସ୍ୱାଭାବିକ ଚିହ୍ନ; କଳା, ଧଳା, ନାଲି ପ୍ରଭୃତି ବର୍ଣ୍ଣ; ଠିଆ, ବଙ୍କା, ମୂଳିଆ, ଗୋଜା ଓ ଭଙ୍ଗାରୁଜା ଆକାରର ସିଂଗ ଇତ୍ୟାଦିର ବିଶଦ ବିବରଣୀ ଗୋଧନ ନିବନ୍ଧରେ ନିମୋଦ କରିବେ (ରେଜିଷ୍ଟରରେ ଲେଖି ରଖିବେ) ଏବଂ ଏହିପ୍ରକାରେ ବାଛୁରିମାନଙ୍କର ବିବରଣୀ ମଧ୍ୟ ଲେଖି ରଖିବା ପ୍ରଥାକୁ 'ବ୍ରଜପର୍ଯଗ୍ର' କୁହାଯାଏ । (୭) ଗାଈ, ମଇଁଷି, ଘୋଡ଼ା, ଗୋରୁ ଚୋରଦ୍ୱାରା ଅପହୃତ ହେଲେ, ଅନ୍ୟ ଗୋଠରେ ମିଶିଲେ ବା ବଣରେ ଚରୁଥିବା ସମୟରେ ହଜିଗଲେ ତାହାକୁ 'ନଷ୍ଟ' କୁହାଯାଏ । (୮) ଉପରୋକ୍ତ ଜନ୍ତୁ ପଙ୍କରେ ଲାଖି, ଖାଲଖମାରେ ପଡ଼ି, ରୋଗଗ୍ରସ୍ତ ହୋଇ, ବୁଢ଼ା ହୋଇ, ବଢ଼ିରେ ଭାସିଯାଇ, ଅନାହାର ଯୋଗୁଁ ଅବସନ୍ନ (ଦୁର୍ବଳ) ହୋଇ, ଗଛ, ଅଡଡ଼ା କାଠଗଣ୍ଡି ଓ ପଥରଦ୍ୱାରା ଅଘାତପ୍ରାପ୍ତ ହୋଇ ଏବଂ ବଜ୍ର, ବ୍ୟାଘ୍ର, ସର୍ପ, କୁମ୍ଭୀର ଓ ବନଅଗ୍ନି ଦ୍ୱାରା ବିପନ୍ନ ହୋଇ ପ୍ରାଣ ହରାଇଲେ ତାହାକୁ 'ବିନଷ୍ଟ' କୁହାଯାଏ । ପାଳକର ଅସାବଧାନତା ଯୋଗୁଁ ମଧ୍ୟ ଉକ୍ତ ପ୍ରାଣିମାନେ 'ବିନଷ୍ଟ' ହୋଇଥାନ୍ତି । ଏପରି ସ୍ଥଳେ ପାଳକ ଏଥିରେ ଙ୍କ୍ଷତିପୂରଣ କରିବେ । ଉକ୍ତ ପ୍ରକାରେ ଗାଈ, ମଇଁଷି, ଘୋଡ଼ା, ଗୋରୁମାନଙ୍କର ସମସ୍ତ ବିଷୟ ଜାଣିବାକୁ ହେବ । (୯) ଯେଉଁ ଗୋପାଳକ (ଗଉଡ଼) ବା ଯେଉଁ ବ୍ୟକ୍ତି ଗବାଦି-ପଶୁମାନଙ୍କୁ ନିଜେ ହତ୍ୟାକରେ ବା ଅନ୍ୟ କାହାଦ୍ୱାରା ହତ୍ୟା କରାଏ, ନିଜେ ହରଣକରେ କିମ୍ବା ଅନ୍ୟ କାହାଦ୍ୱାରା ହରଣ କରାଏ, ରାଜା ତାକୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବେ (ଫାଶୀରେ ଝୁଲାଇ ଦେବେ କିମ୍ବା ଘାତୁକ-ଦ୍ୱାରା ହତ୍ୟାକରାଇଦେବେ) । ଅନ୍ୟର ପଶୁକୁ ରାଜାଙ୍କ ଛାପଦ୍ୱାରା (ତତଲା-ଲୁହାରେ ଛାପଦ୍ୱାରା) ପରିବର୍ତ୍ତିତ କରିବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ

ସ୍ୱଦେଶୀୟାନାଂ ଚୌରହୃତଂ ପ୍ରତ୍ୟାନୀୟ * ପଣିକଂ ରୂପଂ-ହରେତ୍ । ପରଦେଶୀୟାନାଂ ମୋକ୍ଷୟିତାର୍ଧଂ ହରେତ୍ । (୧୦) ବାଳବୃଦ୍ଧବ୍ୟାଧିତାନାଂ ଗୋପାଳକାଃ ପ୍ରତିକୁର୍ୟୁଃ । ଲୁବ୍ଧକ-ଶ୍ୱଗଣିଭିରପାସ୍ତସ୍ତେନବ୍ୟାଳପରବାଧଭୟମୃତୁବିଭକ୍ତମରଣ୍ୟଂ ଚାର-ୟେୟୁଃ । ସର୍ପବ୍ୟାଳତ୍ରାସନାର୍ଥଂ ଗୋଚରାନୁପାତଜ୍ଞାନାର୍ଥଂ ତ୍ରସ୍ନୂନାଂ ଘଣ୍ଟାତୂର୍ଯଂ ଚ ବଧ୍ନୀୟୁଃ । ସମବ୍ୟୂଢତୀର୍ଥମକର୍ଦମ-

---

ଦଣ୍ଡିତ କରିବେ । ସ୍ୱଦେଶୀୟ ଗାଈ, ମଇଁଷୀ ପ୍ରଭୃତିଙ୍କୁ ଯଦି ଚୋରଠାରୁ କୌଣସି ବ୍ୟକ୍ତି ଛଡ଼ାଇ ଆଣି ସେହି ପଶୁର ମାଲିକଙ୍କୁ ଫେରାଇଦିଏ, ତେବେ ଉକ୍ତ ପଶୁର ମାଲିକଠାରୁ ସେ ପ୍ରତି ଜନ୍ତୁପିଛା ଏକପଣ କରି ରୂପଦଣ୍ଡ ଅସୁଲ କରି ନେବ । ବିଦେଶୀୟ ପଶୁମାନଙ୍କୁ ଚୋରଠାରୁ ମୁକ୍ତକରି ଆଣିବା ବ୍ୟକ୍ତି ଉକ୍ତ ପଶୁର ମୂଲ୍ୟର ଅର୍ଦ୍ଧଭାଗ ଦାବିକରି ନେଇ ପାରିବ । (୧୦) ଗୋପାଳକମାନେ ବାଳ, ବୃଦ୍ଧ ଓ ବ୍ୟାଧିଗ୍ରସ୍ତ ଗାଈ, ମଇଁଷୀ ପ୍ରଭୃତି ପଶୁମାନଙ୍କୁ ଯଥାଯୋଗ୍ୟ ଶୁଶ୍ରୂଷା କରିବେ; ଶିକାରିମାନଙ୍କ ଦ୍ୱାରା ଓ ଶିକାରି କୁକ୍କୁର ରଖିଥିବା ବଣୁଆମାନଙ୍କ ଦ୍ୱାରା ଚୋର, ବ୍ୟାଘ୍ର ଓ ଶତ୍ରୁଭୟରହିତ ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ତୃଣ ଜଳାଦି ସମୃଦ୍ଧ ପଶୁଚାରଣ ଅରଣ୍ୟମାନଙ୍କରେ ପଶୁମାନଙ୍କୁ ଚରାଇବେ; ଶବ୍ଦ ଶୁଣି ଚମକୁଥିବା (ତ୍ରସ୍ତଥିବା) ଡରୁଆ ପଶୁମାନେ ଅଭ୍ୟସ୍ତ ହୋଇ ଯେପରି ଆଉ ଚମକିବେ ନାହିଁ ସେପରି ସେମାନଙ୍କୁ ଚେତାଇବା ସକାଶେ ସର୍ପ, ବ୍ୟାଘ୍ର ପ୍ରଭୃତି ହିଂସ୍ର ପଶୁମାନଙ୍କ ମନରେ ଭୟ ଜାତ କରାଇ ସେମାନଙ୍କୁ ପଶୁଚାରଣ ବନରୁ ଘଉଡ଼ାଇବା ସକାଶେ ଏବଂ ଗାଈ କେଉଁଠି ଚରୁଛନ୍ତି ତାହା ଠିକ୍‌ଭାବେ ଜାଣିବା ସକାଶେ ଉକ୍ତ ଡରୁଆ ପଶୁମାନଙ୍କ ବେକରେ ଘଣ୍ଟାତୂର୍ଯ ଅର୍ଥାତ୍ ଟଣଟାଣ ହୋଇ ବାଜୁଥିବା ଲୋହମୟ ଘଣ୍ଟି ଓ ଟିଆ ବନ୍ଧନ କରିବେ ଏବଂ ଖାଲ୍‌ଢିପ ନଥାଇ ସମାନ ହୋଇଥିବା ଏବଂ ପଙ୍କ, କୁମ୍ଭୀର ନଥିବା ନଦୀ, ବନ୍ଧ କିମ୍ବା ହ୍ରଦମାନଙ୍କ ତୋଠରେ ଏହି ପଶୁମାନଙ୍କୁ ସ୍ନାନପାନ ସକାଶେ

---

* "ପଣିତଂ ରୂପଂ ହରେତ" ହିଳଥିବା ପଶୁର ମାଲିକ ପଶୁ ଆଣିଦେବା ବ୍ୟକ୍ତିକୁ ଦେବା ସକାଶେ ପ୍ରତିଜ୍ଞା କରିଥିବା ପୁରସ୍କାର ହିଳଥିବା ପଶୁମାନଙ୍କୁ ଉକ୍ତ ଚୋରଠାରୁ ଫେରାଇ ଆଣିବା ବ୍ୟକ୍ତି ଦାବୀ କରି ନେଇପାରିବେ ।

ଗ୍ରାହମୁଦକମବତାରୟେୟୁଃ ପାଳୟେୟୁଶ୍ଚ । (୧୧) ସ୍ତେନବ୍ୟାଳ-ସର୍ପଗ୍ରାହଗୃହୀତଂ ବ୍ୟାଧିଜରାବସନ୍ନଂ ଚ ଆବେଦୟେୟୁରନ୍ୟଥା-ରୂପମୂଲ୍ୟଂ ଭଜେରନ୍ । (୧୨) କାରଣମୃତସ୍ୟାଙ୍କଚର୍ମ ଗୋମହିଷସ୍ୟ, କର୍ଣ୍ଣଲକ୍ଷଣମଜାବିକାନାଂ, ପୁଚ୍ଛମଙ୍କଚର୍ମ ଚାଶ୍ୱଖରୋଷ୍ଟ୍ରାଣାଂ, ବାଳଚର୍ମବସ୍ତିପିତ୍ତସ୍ନାୟୁଦନ୍ତଖୁରଶୃଙ୍ଗାସ୍ଥୀନି ଚାହରେୟୁଃ । (୧୩) ମାଂସମାମମାର୍ଦ୍ରଂ ଶୁଷ୍କଂ ବା ବିକ୍ରୀଣୀୟୁଃ । ଉଦଶ୍ୱିତ୍ ଶ୍ୱବରାହେଭ୍ୟୋ ଦଦ୍ୟୁଃ । କୂର୍ଚ୍ଚିକାଂ ସେନାଭକ୍ତାର୍ଥ-ମାହରେୟୁଃ । କିଲାଟୋ ଘାଣପିଣ୍ୟାକକ୍ଳେଦାର୍ଥଃ । (୧୪) ପଶୁବିକ୍ରେତା ପାଦିକଂ ରୂପଂ ଦଦ୍ୟାତ୍ । (୧୫) ବର୍ଷାଶରଦ୍ଧେମନ୍ତା-

ପ୍ରବେଶ କରାଇ ସେମାନେ ଫେରିବା ପର୍ଯ୍ୟନ୍ତ ସେମାନଙ୍କୁ କୁମ୍ଭୀରାଦି ଆକ୍ରମଣରୁ ରକ୍ଷା କରିବେ । (୧୧) ଚୋରଦ୍ୱାରା ଅପହୃତ, ବ୍ୟାଘ୍ର, ସର୍ପ ଓ କୁମ୍ଭୀରଦ୍ୱାରା ଆକ୍ରାନ୍ତ ଏବଂ ବ୍ୟାଧି ଓ ବୃଦ୍ଧାବସ୍ଥା ଯୋଗୁଁ ଦୁର୍ବଳ ଓ ଚାଲିବାକୁ ଅସମର୍ଥ ହୋଇ ମୃତହେବା ପଶୁମାନଙ୍କ ଖବର ଗୋପାଳକମାନେ ତତ୍‌କ୍ଷଣାତ୍ ଗୋଧ୍ୟକ୍ଷଙ୍କ କର୍ଣ୍ଣଗୋଚର କରାଇବେ ଏବଂ ସେପରି ନକଲେ, ସେଥିରେ ସମ୍ଭବିବା କ୍ଷତି ସେମାନେ ପୂରଣ କରିବାକୁ ବାଧ୍ୟ ହେବେ । (୧୨) ଜରା ବ୍ୟାଧି ପ୍ରଭୃତି ପ୍ରାକୃତିକ କାରଣରୁ ମୃତହେବା ଗୋମହିଷାଦି ପଶୁମାନଙ୍କର ଚିହ୍ନଥିବା ଚମଡ଼ା, ଛେଳି ମେଣ୍ଢା ପ୍ରଭୃତିଙ୍କ ଲକ୍ଷଣ ଚିହ୍ନଥିବା କାନ, ଘୋଡ଼ା, ଗଧ ଓ ଓଟମାନଙ୍କର ଚିହ୍ନଥିବା ଚମଡ଼ା ଓ ଲାଞ୍ଜ ପଶୁପାଳକମାନେ ଆଣି ଗୋଧ୍ୟକ୍ଷଙ୍କୁ ଦେଖାଇବେ । ଏହାଛଡ଼ା ମୃତପଶୁମାନଙ୍କ ବାଳ, ଚମଡ଼ା, ବସ୍ତି (ମୂତ୍ରାଶୟ), ପିତ୍ତ, ସ୍ନାୟୁ, ଦନ୍ତ, ଖୁର, ଶୃଙ୍ଗ ଓ ଅସ୍ଥିଗୁଡ଼ିକୁ ମଧ୍ୟ ଆବଶ୍ୟକ ବେଳେ ବ୍ୟବହାର କରିବା ସକାଶେ ସଂଗ୍ରହ କରିବେ । (୧୩) ମୃତପଶୁର ବିକ୍ରୟଯୋଗ୍ୟ କଞ୍ଚା ବା ଶୁଖିଲା ମାଂସ ବିକ୍ରୟ କରିବେ । 'ଘୋଳ' କୁକୁର ଓ ବରାହମାନଙ୍କ ପୋଷଣ ସକାଶେ ଦେବେ । 'ଛେନା' ସୈନ୍ୟମାନଙ୍କ ଭୋଜନ ସକାଶେ ପଠାଇବେ ଓ ଛେନାପାଣି (କିଲାଟ) ଗୋମହିଷାଦିମାନେ ଯେଉଁ ପିଡ଼ିଆ ଖା'ନ୍ତି ତାହା ବତୁରାଇବା ସକାଶେ ଦେଇ ଦେବେ । (୧୪) ପଶୁବିକ୍ରେତା ପ୍ରତ୍ୟେକ ପଶୁର ବିକ୍ରୟମୂଲ୍ୟର ଏକଚତୁର୍ଥାଂଶ ଗୋଧ୍ୟକ୍ଷଙ୍କୁ ଦେବେ । (୧୫) ବର୍ଷା,

ନୁଭୟତଃ କାଳଂ ଦୁହ୍ୟୁଃ । ଶିଶିରବସନ୍ତଗ୍ରୀଷ୍ମାନେକକାଳମ୍ । ଦ୍ୱିତୀୟକାଳଦୋଗ୍‌ଧୁରଙ୍ଗୁଷ୍ଠଚ୍ଛେଦୋ ଦଣ୍ଡଃ । ଦୋହକାଳମତିକ୍ରାମତସ୍ତତ୍‌ଫଳହାନଂ ଦଣ୍ଡଃ । ଏତେନ ନସ୍ୟଦମ୍ୟ ଯୁଗପିଙ୍ଗନବର୍ତ୍ତନକାଳା ବ୍ୟାଖ୍ୟାତାଃ । (୧୬) କ୍ଷୀରଦ୍ରୋଣେ ଗବାଂ ଘୃତପ୍ରସ୍ଥଃ । ପଞ୍ଚଭାଗାଧିକୋ ମହିଷୀଣାମ୍ । ଦ୍ୱିଭାଗାଧିକୋଽଜାବୀନାମ୍ । ମନ୍ଥୋ ବା ସର୍ବେଷାଂ ପ୍ରମାଣମ୍, ଭୂମିତୃଣୋଦକବିଶେଷାଦ୍ଧି କ୍ଷୀରଘୃତବୃଦ୍ଧିର୍ଭବତି । (୧୭) ଯୂଥବୃଷଂ ବୃଷେଣାବ-

---

ଶରତ୍ ଓ ହେମନ୍ତ ଋତୁରେ ସକାଳ ସନ୍ଧ୍ୟା ଦୁଇବେଳା ଗାଈ ଓ ମଇଁଷିମାନଙ୍କୁ ଦୁହିଁବ ଏବଂ ଶିଶିର, ବସନ୍ତ ଓ ଗ୍ରୀଷ୍ମ ଋତୁରେ କେବଳ ରାତିରେ ଗୋଟିଏ ବେଳା ଦୁହିଁବ । ଥରେ ଦୁହିଁସାରି ସଙ୍ଗେ ସଙ୍ଗେ ଅନ୍ୟଥରେ ଦୁହିଁବା ଦୁହାଁଳର ଅଙ୍ଗୁଠି କାଟି ଦେବାକୁ ହେବ । (ଏପରି ଦୁହିଁଲେ ବାଛୁରି କ୍ଷୀର ଟୋପାଏ ନପାଇ ଶୁଖି ଶୁଖି ମରିଯିବାର ଦେଖାଯାଏ; ଏଥିପାଇଁ ଦୁହାଁଳକୁ ଏପରି ଅଙ୍ଗୁଳିଚ୍ଛେଦନ ଦଣ୍ଡର ବ୍ୟବସ୍ଥା ଅଛି) । ଦୁହିଁବାର ସମୟକୁ ଅତିକ୍ରମ କଲେ ଦୁହାଁଳକୁ ସେଦିନର ବେତନ ମିଳିବ ନାହିଁ । ଏହି ନିୟମରେ ନାକ ଫୋଡ଼ିବା ସମୟ, ଦମନଯୋଗ୍ୟ ସମୟ, ବୁଢ଼ାହେବା ଜନ୍ତୁ ସହିତ ଅବୁଢ଼ା ଜନ୍ତୁକୁ ଯୋଚିବା ସମୟ ଓ ହଳ, ଲଙ୍ଗଳ, ଶଗଡ଼ ପ୍ରଭୃତି ଚଳାଇବା ସମୟର ବ୍ୟତିକ୍ରମ କରିବା ବ୍ୟକ୍ତିମାନଙ୍କ ବିଷୟ ବିଚାର କରିବାକୁ ହେବ । (୧୬) ଏକଦ୍ରୋଣ ଗାଈକ୍ଷୀରରୁ ପ୍ରାପ୍ୟ ଏକପ୍ରସ୍ଥ ଘୃତ, ଏକଦ୍ରୋଣ ମଇଁଷିକ୍ଷୀରରୁ ପ୍ରସ୍ଥର ପ୍ରାପ୍ୟ ପାଞ୍ଚଭାଗରୁ ଭାଗେ ଅଧିକ ଏକପ୍ରସ୍ଥ (୧⅕ ପ୍ରସ୍ଥ) ଘୃତ ଓ ଏକଦ୍ରୋଣ ଛେଳିକ୍ଷୀର ବା ମେଣ୍ଢାକ୍ଷୀରରୁ ପ୍ରାପ୍ୟ ଦେଢ଼ପ୍ରସ୍ଥ ଘୃତ ବାହାରେ । ମନ୍ଥନ କେବଳ ସମସ୍ତ ପ୍ରକାର ଘୃତ ପରିମାଣର ନିର୍ଣ୍ଣାୟକ ଅଟେ । ଭୂମିବିଶେଷ, ତୃଣବିଶେଷ ଓ ଜଳବିଶେଷରେ ହିଁ କ୍ଷୀରବୃଦ୍ଧି ଓ ଘୃତବୃଦ୍ଧି କିମ୍ବା କ୍ଷୀରରେ ଘୃତଭାଗ ବୃଦ୍ଧି ସମ୍ଭବପର ହୋଇଥାଏ । (୧୭) ଗାଈପଲରେ ଥିବା ଷଣ୍ଢ ସହିତ ତାର ସମାନସ୍କନ୍ଧ ଅନ୍ୟ ଏକ ଷଣ୍ଢକୁ ଯୁଦ୍ଧ ଲଗାଇଲେ, ଲଗାଇବା ଲୋକକୁ ପୂର୍ବସାହସଦଣ୍ଡ ଏବଂ ଘାଉଡ଼ କିମ୍ବା ବଧ କଲେ ଉତ୍ତମସାହସ

ପାତୟତଃ ପୂର୍ବଃ ସାହସଦଣ୍ଡଃ, ଘାତୟତ ଉତ୍ତମଃ । (୧୮) ବର୍ଣ୍ଣାବରୋଧେନ ଦଶତୀରକ୍ଷା । (୧୯) ଉପନିବେଶଦିଗ୍‌ବିଭାଗୋ ଗୋପ୍ରଚାରାଦ୍ ବଳାନ୍ୱୟତୋ ବା ଗବାଂ ରକ୍ଷାସାମର୍ଥ୍ୟାଚ୍ଚ । (୨୦) ଅଜାଦୀନାଂ ଷାଣ୍ମାସିକୀମୂର୍ଣ୍ଣାଂ ଗ୍ରାହୟେତ୍ । ତେନାଶ୍ୱଖରୋଷ୍ଟ୍ର ବରାହବ୍ରଜା ବ୍ୟାଖ୍ୟାତାଃ । (୨୧) ବଳୀବର୍ଦ୍ଦାନାଂ ନସ୍ୟାଶ୍ୱଭଦ୍ରଗତି-ବାହିନାଂ ଯବଶସ୍ୟାର୍ଦ୍ଧଭାରଃ, ତୃଣସ୍ୟ ଦ୍ୱିଗୁଣଂ, ତୁଲା ଘାଣପିଣ୍ୟାକସ୍ୟ, ଦଶାଢ଼କଂ କଣକୁଣ୍ଡକସ୍ୟ, ପଞ୍ଚପଲିକଂ ମୁଖଲବଣଂ, ତୈଳ କୁଡୁବୋ ନସ୍ୟଂ, ପ୍ରସ୍ଥଃ ପାନମ୍ । ମାଂସ ତୁଲା, ଦଧ୍ନଶ୍ଚାଢ଼କଂ, ଯବ ଦ୍ରୋଣଂ ମାଷାଣାଂ ବା ପୁଲାକଃ । କ୍ଷୀରଦ୍ରୋଣମର୍ଦ୍ଧାଢ଼କଂ ବା ସୁରାୟାଃ,

---

ଦଣ୍ଡରେ ଦଣ୍ଡିତ କରିବେ । (୧୮) କଳା, ଧଳା ଓ କପିଳା ଇତ୍ୟାଦି ବର୍ଣ୍ଣ ଅନୁସାରେ ଦଶଗୋଟି କଳା, ଦଶଗୋଟି ଧଳା ଓ ଦଶଗୋଟି କପିଳବର୍ଣ୍ଣର ଗାଈଗୋରୁଙ୍କୁ ଗୋଟିଏ ଗୋଟିଏ ପଲ ବା ଦଳକରି ସେମାନଙ୍କୁ ଚରାଇବେ ଓ ସେମାନଙ୍କ ପାଇଁ ଗୁହାଳ ତିଆରି କରି ସେଥିରେ ରକ୍ଷା କରିବେ । (୧୯) ଗବାଦିପଶୁମାନଙ୍କର ଉପନିବେଶ ଅର୍ଥାତ୍ ଚରାଭୂମିର ଦିଗ୍‌ବ୍ୟବସ୍ଥା, ସେମାନେ ଚରିଯାଉଥିବା ଦିଗକୁ ଅନୁସରଣ କରି ଓ ସେମାନଙ୍କର ଦୂରଗମନାଦି ସାମର୍ଥ୍ୟକୁ ଅନୁମାନ କରି ଚୋର, ବ୍ୟାଘ୍ର, ସର୍ପ ଓ ଶତ୍ରୁ ଉପଦ୍ରବରୁ ସେମାନଙ୍କୁ ରକ୍ଷା କରିବାର ସମସ୍ତ ପ୍ରତିଷେଧକ ଉପାୟ ଅବଲମ୍ବନ କରାଯାଇଥାଏ । (୨୦) ଛ'ମାସରେ ଥରେ ଛେଳି ଓ ମେଣ୍ଢାମାନଙ୍କର ଲୋମ କର୍ତ୍ତନ କରିବାକୁ ହେବ; ଘୋଡ଼ା, ଗଧ, ଓଟ ଓ ବରାହ (ଘୁଷୁରି) ପଲମାନଙ୍କ ପାଳନବିଧି ମଧ୍ୟ ଉପରୋକ୍ତ ଗବାଦି ପଶୁପାଳନବିଧି ଅନୁସାରେ କରିବାକୁ ହେବ । (୨୧) ଶ୍ରେଷ୍ଠ-ଅଶ୍ୱ ସଦୃଶ ପରାକ୍ରମଶାଳୀ ଓ ରଥାଦି ଆକର୍ଷଣସମର୍ଥ ନାକଫୋଡ଼ା ବଳଦକୁ ଅର୍ଦ୍ଧଭାର (୧୦୦୦ ପଳ ବା ୪୦୦୦ ତୋଳା) ଘାସ, ଏହାର ଦୁଇଗୁଣ ପାଳ, ଶହେପଳ ପିଡ଼ିଆ, ଦଶଆଢ଼କ ଖୁଦକୁଣ୍ଡା, ପାଞ୍ଚପଳ ସୈନ୍ଧବଲବଣ, ନାକରେ ପକାଇବା ପାଇଁ ଏକକୁଡ଼ୁବ ତେଲ, ପିଇବା ପାଇଁ ଏକପ୍ରସ୍ଥ ତେଲ ବା ଘିଅ, ଶହେପଳ ମାଂସ, ଏକ ଆଢ଼କ ଦହି, ଏକଦ୍ରୋଣ ଯବଧାନ ବା ଏକଦ୍ରୋଣ ବିରିରି ଦରସିଝା ଅନ୍ନ (ପୁଲାକ), ଏକଦ୍ରୋଣ କ୍ଷୀର ବା

ସ୍ନେହପ୍ରସ୍ଥଃ, କ୍ଷାରଦଶପଳଂ, ଶୃଙ୍ଗବେରପଳଂ ଚ ପ୍ରତିପାନମ୍ ।
(୨୨) ପାଦୋନମଶ୍ୱତର * ଗୋଖରାଣାଂ, ଦ୍ୱିଗୁଣଂ ମହିଷୋଷ୍ଟ୍ରାଣାଂ
ର୍ମକରବଲୀବର୍ଦ୍ଦାନାମ୍ । ପାୟନାର୍ଥଂ ଚ ଧେନୂନାମ୍ । କର୍ମକାଳତଃ
ଳତଶ୍ଚ ବିଧାନମ୍ । ସର୍ବେଷାଂ ତୃଣୋଦକପ୍ରାକାମ୍ୟମ୍ । ଇତି
ଗୋମଣ୍ଡଳଂ ବ୍ୟାଖ୍ୟାତମ୍ ।

(୨୩) ପଞ୍ଚର୍ଷଭଂ ଖରଶ୍ୱାନାମଜାବୀନାଂ ଦଶର୍ଷଭମ୍ ।
ଶତ୍ୟଂ ଗୋମହିଷୋଷ୍ଟ୍ରାଣାଂ ଯୂଥଂ କୁର୍ଯାଚ୍ଚତୁର୍ବୃଷମ୍ ॥

---

ଅର୍ଦ୍ଧଆଢ଼କ ସୁରା, ମର୍ଦ୍ଦନ ସକାଶେ ଏକପ୍ରସ୍ଥ ଜଡ଼ାତେଲ ବା ଅନ୍ୟ କୌଣସି ସ୍ନେହ ପଦାର୍ଥ (ଚିକ୍କଣ ପଦାର୍ଥ) ଏବଂ ଜଠରାଗ୍ନି ଉଦ୍ଦୀପନ ସକାଶେ ଦଶପଲ ଗୁଡ଼ରେ ଏକପଲ ଅଦା ବା ଶୁଣ୍ଠିଗୁଣ୍ଡ ମିଶାଇ ଜଳସହ ଭୋଜନ ପରେ ପିଇବାକୁ ଦେବ । (୨୨) ଖଚର, ଗାଈ ଓ ଗଧମାନଙ୍କ ଭୋଜନ ପରିମାଣ ଉପରୋକ୍ତ ଭଦ୍ରଗତି-ବଳୀବର୍ଦ୍ଦ (ଘଣ୍ଟିଘାଗୁଡ଼ି ଓ ଚୂଳ ଲଗାଇ ମର୍ଯ୍ୟାଦା ସହକାରେ ରାଜା କିମ୍ବା ବଡ଼ଲୋକଙ୍କ ରଥ ବା ଶଗଡ଼ରେ ଯୋଗୁହେବା ଶୀଘ୍ରଗାମୀ ବଳଦ)ର ଭୋଜନ ପରିମାଣର ପାଏ ଊଣା ଏବଂ ପୋଢ଼, ମଇଁଷି, ଓଟ, ହଳ, ବଣ ଓ ରାସ୍ତାରେ କାମକରୁଥିବା ଲଙ୍ଗଳଟଣା ଓ ଶଗଡ଼ଟଣା ବଳଦର ଭୋଜନ ପରିମାଣ ଏହାର ଦୁଇଗୁଣ ଅଟେ । ବେଶୀ ଦୁଧଦେବା ସକାଶେ ଗାଈକୁ ଓ ବେଶୀ କାମକରିବା ସକାଶେ ବଳଦକୁ ଉପରୋକ୍ତ ଖାଦ୍ୟପାନ ସେମାନଙ୍କ ଚାହିଦା ଅନୁସାରେ ନିର୍ଦ୍ଧାରିତ ଖାଦ୍ୟ ପରିମାଣର ଦୁଇଗୁଣ ବା ତତୋଧିକ ମଧ୍ୟ ବଢ଼ାଇ ଦିଆଯାଇପାରେ । ସାଧାରଣତଃ ସମସ୍ତ ଗୃହପାଳିତ ପଶୁମାନଙ୍କୁ ଘାସ, ପାଳ, ପେଜପାଣି ଯଥେଷ୍ଟ ପରିମାଣରେ ଦେବାକୁ ହେବ । ଏହାପରି ଏଠାରେ ଗୋମଣ୍ଡଳର ସମସ୍ତ ବିଷୟ ବ୍ୟାଖ୍ୟାନ କରାଗଲା । (୨୩) ଗଧ ଓ ଘୋଡ଼ାପଲରେ ଖତକରା ପାଞ୍ଚଗୋଟି,

---

* ଗୋଖର—ଷଣ୍ଢ ଓ ଗଧୁଣୀଠାରୁ ଜାତ ହେବା ସନ୍ତାନର ନାମ 'ଗୋଖର'; ଗୋ = ଗାଈ; ଖର = ଗଧ ।

## ତ୍ରିଂଶୋଽଧ୍ୟାୟଃ

## ସପ୍ତଚତ୍ୱାରିଂଶ ପ୍ରକରଣମ୍—ଅଶ୍ୱାଧ୍ୟକ୍ଷଃ

## THE SUPERINTENDENT OF HORSES

( ଅଶ୍ୱାଧ୍ୟକ୍ଷଙ୍କ ବ୍ୟାପାର )

(୧) ଅଶ୍ୱାଧ୍ୟକ୍ଷଃ ପଣ୍ୟାଗାରିକଂ କ୍ରୟୋପାଗତମାହବଲବ୍ଧମାଜାତ୍ୟ, ସାହାଯ୍ୟାଗତକଂ ପଣସ୍ଥିତଂ ଯାବତ୍କାଳିକଂ ବାଶ୍ୱପର୍ଯ୍ୟଗ୍ରଂ କୁଳବୟୋବର୍ଣ୍ଣଚିହ୍ନକର୍ମବର୍ଗାଗମୈର୍ଲେଖୟେତ୍ । (୨) ଅପ୍ରଶସ୍ତ-

ଛେଳି ମେଣ୍ଢା ପଲରେ ଶତକରା ଦଶଗୋଟି ଏବଂ ଗାଈ ଓ ମଇଁଷୀ ପଲରେ ଶତକରା ଗୁଣ୍ଡଗୋଟି ଅଣ୍ଡିରାଜନ୍ତୁ ସେମାନଙ୍କ ନିଜ ନିଜ ଜାତିର ବୃଦ୍ଧି ଜନ୍ମ କରିବା ସକାଶେ ରଖିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ଏକୋନତ୍ରିଂଶୋଽଧ୍ୟାୟଃ—ଗୋଧ୍ୟକ୍ଷଃ—ଆଦିତଃ ପଞ୍ଚାଶଃ ।

---

(୧) ଅଶ୍ୱାଧ୍ୟକ୍ଷ ବିକ୍ରୀ ସକାଶେ ପଣ୍ୟାଗାରକୁ ଆସିଥିବା, କିଣା ହୋଇ ଆସିଥିବା, ଯୁଦ୍ଧରୁ ଜିଣି ଆଣିଥିବା, ନିଜର ଅଶ୍ୱଠାରୁ ଜାତହୋଇଥିବା, ସାହାଯ୍ୟ କରିବା ସକାଶେ ଅନ୍ୟ କେଉଁଠାରୁ ବା ମିତ୍ରରାଜ୍ୟମାନଙ୍କରୁ ଆସିଥିବା, ବନ୍ଧକ ରଖାଯାଇଥିବା ଓ ନିଜର ପ୍ରୟୋଜନ ଶେଷ ହେବା ପର୍ଯ୍ୟନ୍ତ କୌଣସି ରାଜା ବା ବନ୍ଧୁଙ୍କଠାରୁ ଉଧାର ଅଣାଯାଇଥିବା ଅଶ୍ୱମାନଙ୍କର ପରିମାଣ, * କୁଳ, ବୟସ, ବର୍ଣ୍ଣ, ଚିହ୍ନ, ବର୍ଗ ଓ ପ୍ରାପ୍ତିସ୍ଥାନ ଭଲଭାବେ ଲେଖି ରଖିବେ । (୨) ଅପ୍ରଶସ୍ତ ଅର୍ଥାତ୍ ମୁଣ୍ଡରେ ଶିଙ୍ଗପରି ମାଂସବୃଦ୍ଧି

---

* ପାରସୀକ, କାମ୍ବୋଜ, ଆରଟ୍ଟ, ସିନ୍ଧୁ, ଆରବ ପ୍ରଭୃତି କୁଳ; ବର୍ଷେ ଦୁଇବର୍ଷ ବା ପାଞ୍ଚବର୍ଷ ଦଶବର୍ଷ ଇତ୍ୟାଦି ବୟସ; ଧଳା କଳା ପ୍ରଭୃତି ବର୍ଣ୍ଣ; ଧଳା ବାଲ, କଳା ବାଲ ଥିବା ଲାଞ୍ଜ ଓ ଚନ୍ଦା ମୁଣ୍ଡ ପ୍ରଭୃତି ଚିହ୍ନ; ରଥରେ ଯୋଗ୍ୟହେବା, ଯୁଦ୍ଧରେ ସେନାଙ୍କ ବ୍ୟବହାରରେ ଲଗିବା, ହଳ ବନ୍ଧାହେବା ଇତ୍ୟାଦି କର୍ମ; ପାରସୀକ ପ୍ରଭୃତି ଜାତିସ୍ଥ ଅଶ୍ୱ ମଧ୍ୟରୁ କେଉଁ ଅଶ୍ୱ କେତେ ଅଛନ୍ତି—ଏହି 'ବର୍ଗ' ଓ କେଉଁ ଅଶ୍ୱ କେଉଁଠାରେ ମିଳେ ତାର ଆଗମନ ସ୍ଥାନ, ପ୍ରାପ୍ତିସ୍ଥାନ ।

ନ୍ୟଙ୍ଗବ୍ୟାଧିତାଂଶ୍ଚାବେଦୟେତ୍ । କୋଶକୋଷ୍ଠାଗାରାଭ୍ୟାଂ ଚ ଗୃହୀତ୍ୱା ମାସଲାଭମଶ୍ୱବାହଶ୍ଚିନ୍ତୟେତ୍ । (୩) ଅଶ୍ୱବିଭବେନାୟତାମଶ୍ୱାୟାମଦ୍ୱିଗୁଣବିସ୍ତାରାଂ ଚତୁର୍ଦ୍ୱାରୋପାବର୍ତନ ମଧ୍ୟାଂ ସପ୍ରଗ୍ରୀବାଂ ପ୍ରଦ୍ୱାରାସନଫଳକଯୁକ୍ତାଂ ବାନରମୟୂରପୃଷତନକୁଳଚକୋର ଶୁକଶାରିକାଭିରାକୀର୍ଣାଂ ଶାଳାଂ ନିବେଶୟେତ୍ । (୪) ଅଶ୍ୱାୟାମଚତୁରଶ୍ରଶ୍ଲକ୍ଷ୍ଣଫଳକାସ୍ତାରଂ ସଖାଦନକୋଷ୍ଠକଂ ସମୂତ୍ରପୁରୀଷୋତ୍ସର୍ଗମେକୈକଶଃ ପ୍ରାଙ୍ମୁଖମୁଦଙ୍ମୁଖଂ ବା ସ୍ଥାନଂ ନିବେଶୟେତ୍ । ଶାଲାବଶେନ ବା ଦିଗ୍‌ବିଭାଗଂ କଲ୍ପୟେତ୍ । ବଡ଼ବାବୃଷକିଶୋରାଣା-

ବାନ୍ଧାଯାଇଥିବା ଅଥବା ମୂଲ୍ୟ ଦେଇ ଆଣିଥିବା ପ୍ରଭୃତି ସ୍ଥାନରେ ଗୋଟିଏ ପିଲାଥିବା ଘୋଡ଼ା, ବିକଳାଙ୍ଗ ଓ ରୁଗ୍ଣ ଅଶ୍ୱମାନଙ୍କର ଯଥାକାଳରେ ପରିବର୍ତ୍ତନ ଓ ଚିକିତ୍ସା ସକାଶେ ଅଶ୍ୱବାହକ ରାଜାଙ୍କ ନିକଟରେ ଆବେଦନ କରିବେ ଏବଂ ରାଜକୋଷ ଓ କୋଷ୍ଠାଗାରରୁ ଅଶ୍ୱମାନଙ୍କ ପାଇଁ ଆଣିଥିବା ଖାଦ୍ୟ ଓ ଅନ୍ୟାନ୍ୟ ଖର୍ଚ୍ଚର ଯଥାଯଥ ବ୍ୟବସ୍ଥାର ଚିନ୍ତା କରିବେ । (୩) **ଅଶ୍ୱଶାଳା ନିର୍ମାଣ ବିଧିଃ**— ଅଶ୍ୱାଧ୍ୟକ୍ଷ ଅଶ୍ୱବିଭବ ଅର୍ଥାତ୍ ଅଶ୍ୱମାନଙ୍କ ପରିମାଣ ଅନୁରୂପ ଦୀର୍ଘ ଓ ଅଶ୍ୱ ଆୟତନର ଦୁଇଗୁଣ ବିସ୍ତୃତ, ସୁଖପ୍ରବେଶ, ନିର୍ଗମନ ଓ ଅଗ୍ନିଭୟାଦି ସମୟରେ ହଠାତ୍ ନିଷ୍କ୍ରମଣସୁଲଭ ଚତୁର୍ଦ୍ୱାରବିଶିଷ୍ଟ ଓ ମଧ୍ୟରେ ଉପାବର୍ତ୍ତନ ଅର୍ଥାତ୍ ଘୂର୍ଣ୍ଣନ, ପାର୍ଶ୍ୱପରିବର୍ତ୍ତନ ସ୍ଥାନଯୁକ୍ତ, ମୁଖଶାଳାସମନ୍ୱିତ, ଦ୍ୱାରମାନଙ୍କ ଉଭୟପାର୍ଶ୍ୱ ଆସନଫଳକ (ବେଞ୍ଚ) ଯୁକ୍ତ, ବାନର, ମୟୂର, * ପୃଷତ (ବିନ୍ଦୁମୃଗ), ନକୁଳ (ନେଉଳ), ଚକୋର, ଶୁକ ଓ ଶାରିକାଦି ବିଷପ୍ରତୀକାରପ୍ରୟୋଜକ ପ୍ରାଣିସମାକୀର୍ଣ୍ଣ ମନ୍ଦୁରା (ଅଶ୍ୱଶାଳା) ନିର୍ମାଣ କରାଇବେ । (୪) ପ୍ରତ୍ୟେକ ଅଶ୍ୱକୁ ଅଶ୍ୱଦୈର୍ଘ୍ୟର ଅନୁରୂପ ଚତୁରସ୍ର ଚିକ୍‌କଣଫଳକନିର୍ମିତ (କାଠପଟାରେ ତିଆରି) ଶଯ୍ୟା ଓ ଖାଦନକୋଷ୍ଠକଯୁକ୍ତ (ଘାସ କୁଟା ପ୍ରଭୃତି ଖାଇବା ସକାଶେ କାଠରେ ତିଆରି ହୋଇଥିବା କୁଣ୍ଡଯୁକ୍ତ), ମଳମୂତ୍ରନିଃସାରଣକ୍ଷମ ଅଗ୍ରଭାଗ କିଞ୍ଚିତ୍ ଉନ୍ନତ ଓ ପ୍ରାନ୍ତଭାଗ କିଂଚିତ୍ ଅବନତ, ପୂର୍ବମୁଖ ବା ଉତ୍ତରମୁଖ ହୋଇ ନିର୍ମିତ ହୋଇଥିବା ଅଶ୍ୱଶାଳାରେ ରଖାଇବେ ।

* ପୃଷତ—**Red-spotted deer.**

**ମେକାନ୍ତେଷୁ । (୫) ବଡ଼ବାୟାଃ ପ୍ରଜାତାୟାସ୍ତ୍ରିରାତ୍ରଂ ଘୃତପ୍ରସ୍ଥ-ପାନମ୍, ଅତ ଊର୍ଦ୍ଧ୍ୱଂ ସକ୍ତୁପ୍ରସ୍ଥଃ ସ୍ନେହଭୈଷଜ୍ୟପ୍ରତିପାନଂ ଦଶରାତ୍ରଂ ତତଃ ପୁଲାକୋ ଯବସମାର୍ତ୍ତବଶ୍ଚାହାରଃ । (୬) ଦଶରାତ୍ରାଦୂର୍ଦ୍ଧ୍ୱଂ କିଶୋରସ୍ୟ ଘୃତଚତୁର୍ଭାଗଃ ସକ୍ତୁକୁଡୁବଃ, କ୍ଷୀରପ୍ରସ୍ଥଶ୍ଚାହାର ଆ ଷଣ୍ମାସାଦିତି । ତତଃ ପରଂ ମାସୋତ୍ତରମର୍ଦ୍ଧ-ବୃଦ୍ଧିର୍ଯବପ୍ରସ୍ଥ ଆ ତ୍ରିବର୍ଷାଦ୍, ଦ୍ରୋଣ ଆ ଚତୁର୍ବର୍ଷାଦିତି । ଅତ ଊର୍ଦ୍ଧ୍ୱଂ**

---

ରାଜଭବନ ନିର୍ମାଣ ବିଷୟ ଆଲୋଚନା କଲାବେଳେ ରାଜଭବନର ✝ ପୂର୍ବ ବା ଉତ୍ତର ଦିଗରେ ରାଜକୋଷ, ଗୋଶାଳ ବା ଅଶ୍ୱଶାଳା ନିର୍ମାଣ କରିବାକୁ ହେବ ବୋଲି କୁହାଯାଇଛି । ଅତଏବ ଅଶ୍ୱସଂଖ୍ୟା ବହୁତ ହୋଇଥିଲେ ତଦନୁସାରେ ଅଶ୍ୱଶାଳା ନିର୍ମାଣର ଦିଗ ନିର୍ଣ୍ଣୟ କରିବେ । ବଡ଼ବା (ପ୍ରସୂତା ଅଶ୍ୱିନୀ), ବୃଷ (ଷଣ୍ଢ ଅଶ୍ୱ) ଓ ଛ'ମାସରୁ ଊର୍ଦ୍ଧ୍ୱ ତିନିବର୍ଷ ପର୍ଯ୍ୟନ୍ତ ବୟସର କିଶୋର ଅଶ୍ୱମାନଙ୍କୁ ସେମାନେ ପରସ୍ପରକୁ ନଦେଖି ଏକାନ୍ତରେ ରହିବାଭଳି କୋଠରୀରେ ରଖାଇ ଦେବେ । (୫) ପ୍ରସୂତା ଅଶ୍ୱିନୀମାନଙ୍କୁ ପ୍ରସବର ପ୍ରଥମଦିନ, ପରବର୍ତ୍ତୀ ତିନିଦିନ ପ୍ରାତଃକାଳରେ ଏକପ୍ରସ୍ଥ ହିସାବରେ ଘୃତପାନ କରାଇଦେ । ତା'ପରେ ଦଶଦିନ ପର୍ଯ୍ୟନ୍ତ ପ୍ରତ୍ୟହ ପ୍ରାତଃକାଳରେ ଏକପ୍ରସ୍ଥ ଘୃତ ଏବଂ ଅପରାହ୍ଣରେ ଏକପ୍ରସ୍ଥ ଯବଛତୁ (ଯବଧାନର ଲିଆ) ଦେଇ ତା'ପରେ ଘୃତଯୁକ୍ତ ମୂଳମୂଳିକାର କଷାୟ ପାନ କରିବାକୁ ଦେବେ । ତା'ପରେ ଦରସିଝା ଯବାଦି ଧାନ୍ୟ (କୁଳୁଚି), ଘାସ ଓ ଋତୁଅନୁଯାୟୀ ଆହାର ଦେବେ । (୬) ଅଶ୍ୱ କିଶୋର ଅର୍ଥାତ୍ ଘୋଡ଼ାଛୁଆଙ୍କୁ ଦଶଦିନ ହେବା ପରଠାରୁ ଛ'ମାସ ବୟସ ହେବା ପର୍ଯ୍ୟନ୍ତ ପାଦକୁଡ଼ୁବ (ଏକ କୁଡ଼ୁବର ଚାରିଭାଗରୁ ଏକଭାଗ) ଘୃତଯୁକ୍ତ ଏକକୁଡ଼ୁବ ଯବଛତୁ ଏବଂ ଏକପ୍ରସ୍ଥ କ୍ଷୀର ଆହାର ଦେବେ । ତା'ପରେ ପ୍ରତିମାସରେ ଉକ୍ତ ଆହାର ପରିମାଣର ଅଧଭାଗ ଓ ଯବଛତୁ ଏକପ୍ରସ୍ଥ ହିସାବରେ ବୃଦ୍ଧିକରି ଘୋଡ଼ାଛୁଆଙ୍କୁ ତିନିବର୍ଷ ବୟସ ହେବା ପର୍ଯ୍ୟନ୍ତ ଦେବେ ଏବଂ ଚାରିବର୍ଷ ବୟସ ହେବା ପର୍ଯ୍ୟନ୍ତ (ତିନିବର୍ଷ ଠାରୁ ଚାରିବର୍ଷ ବୟସ ପର୍ଯ୍ୟନ୍ତ ଏକବର୍ଷ ) ଉକ୍ତ ଘୃତ, ଦୁଗ୍ଧ ସହିତ ଏକଦ୍ରୋଣ ଯବଛତୁ

---

✝ "ଉତ୍ତର ପୂର୍ବଭାଗଂ କୋଶୋଗବାଶ୍ୱ ଚ"—୨୨ଶ ପ୍ରକରଣ, ଦୁର୍ଗନିବେଶଃ ।

ଚତୁର୍ବର୍ଷଃ ପଞ୍ଚବର୍ଷୋ ବା କର୍ମଣ୍ୟଃ ପୂର୍ଣପ୍ରମାଣଃ । (୭) ଦ୍ୱାତ୍ରିଂଶଦଙ୍ଗୁଳଂ ମୁଖମୁତ୍ତମାଶ୍ୱସ୍ୟ, ପଞ୍ଚମୁଖାନ୍ୟାୟାମଃ, ବିଂଶତ୍ୟଙ୍ଗୁଳା ଜଂଘା, ଚତୁର୍ଜଂଘ ଉତ୍ସେଧଃ । ତ୍ର୍ୟଙ୍ଗୁଳାବରଂ ମଧ୍ୟମାବରୟୋଃ । ଶତାଙ୍ଗୁଳଃ ପରିଣାହଃ । ପଞ୍ଚଭାଗାବରଂ ମଧ୍ୟମାବରୟୋଃ । (୮) ଉତ୍ତମାଶ୍ୱସ୍ୟ ଦ୍ୱିଦ୍ରୋଣଂ ଶାଳିବ୍ରୀହିଯବପ୍ରିୟଙ୍ଗୁଣାମର୍ଧଶୁଷ୍କମର୍ଧସିଦ୍ଧଂ ବା, ମୁଦ୍ଗମାଷାଣାଂ ବା ପୁଲାକଃ । ସ୍ନେହପ୍ରସ୍ଥଶ୍ଚ । ପଞ୍ଚପଲଂ ଲବଣସ୍ୟ ମାଂସଂ ପଞ୍ଚାଶତ୍ ପଲିକମ୍ । ରସସ୍ୟାଢ଼କଂ ଦ୍ୱିଗୁଣଂ ବା ଦଧ୍ନଃ ପିଣ୍ଡକ୍ଲେଦନାର୍ଥମ୍ ।

ଦେବାର ବ୍ୟବସ୍ଥା କରିବେ । ଚାରିବର୍ଷ ବା ପାଞ୍ଚବର୍ଷ ବୟସର ଅଶ୍ୱ ସମସ୍ତ କାର୍ଯ୍ୟକ୍ଷମ ହୁଏ, ଅତଏବ ଏହାକୁ ପୂର୍ଣ୍ଣମାତ୍ରାରେ ଖାଦ୍ୟ ଦେବା ଆବଶ୍ୟକ । (୭) ଉତ୍ତମ ଅଶ୍ୱର ମୁହଁର ଦୈର୍ଘ୍ୟ ବତିଶି ଅଙ୍ଗୁଳ, ଦେହର ଦୈର୍ଘ୍ୟ ଏକଶଷାଠିଏ ଅଙ୍ଗୁଳ, ⁂ ଜଂଘା ଅର୍ଥାତ୍ ପେଣ୍ଡାର ଦୈର୍ଘ୍ୟ କୋଡ଼ିଏ ଅଙ୍ଗୁଳ ଓ ଉଚ୍ଚତା ଅଶିଏ ଅଙ୍ଗୁଳ ଅଟେ । ଉତ୍ତମ ଅଶ୍ୱର ମୁଖ ଦେହାଦି ଦୈର୍ଘ୍ୟ ପରିମାଣରୁ ପ୍ରତ୍ୟେକଟିରୁ ତିନି ତିନି ଅଙ୍ଗୁଳ ଊଣା ହେଲେ ସେହି ଅଶ୍ୱକୁ ମଧ୍ୟମ ଏବଂ ଏଥିରୁ ତିନି ତିନି ଅଙ୍ଗୁଳ ଊଣା ହେଲେ ସେହି ଅଶ୍ୱକୁ 'କନିଷ୍ଠ ଅଶ୍ୱ' କୁହାଯାଏ । ଉତ୍ତମ ଅଶ୍ୱର ✝ ପରିଣାହ ଅର୍ଥାତ୍ ପରିଧି ବା ଦେହର ବେଢ଼ ଶହେ ଅଙ୍ଗୁଳ, ମଧ୍ୟମ ଅଶ୍ୱର ବେଢ଼ ଅଶିଏ ଅଙ୍ଗୁଳ ଏବଂ କନିଷ୍ଠ ଅଶ୍ୱର ବେଢ଼ ଷାଠିଏ ଅଙ୍ଗୁଳ ଅଟେ । (୮) ଉତ୍ତମ ଅଶ୍ୱର ଆହାର ସକାଶେ ଦରଶୁଖା ବା ଦରସିଝା ଶାଳୀ ଅଥବା ବ୍ରୀହି (ଷାଠିକା ଧାନ), ଯବ, କୋଳଥ ବା କଙ୍ଗୁଧାନ୍ୟ ମଧ୍ୟରୁ ଯେ କୌଣସିଟିରୁ ଦୁଇଦ୍ରୋଣ ଅଥବା ମୁଗ କିମ୍ବା ବିରିର ପୁଲାକ (ଖଳି)ରୁ ଦୁଇଦ୍ରୋଣ ଦେବେ । ପିଇବା ସକାଶେ ଘୃତ କିମ୍ବା ତେଲ ଏକପ୍ରସ୍ଥ ଦେବେ, ଲବଣ ପାଞ୍ଚପଲ, ମାଂସ ପଞ୍ଚାଶପଲ ଓ ମୁଗ ବା ବିରିର ଝୋଳରେ ଗୋଳାଇ ପାଣିଆ କରିବା ପାଇଁ * ମାଂସର ଝୋଳ (ରସ) ଏକଆଢ଼କ

⁂ ଜଂଘା = ପେଣ୍ଡା (Shank)—"ମାତୃଜଂଘାହିବତ୍ସସ୍ୟ ସ୍ତମ୍ଭୀଭବତି ବନ୍ଧନେ" ଆଣ୍ଠୁଠାରୁ ପାଦର ଗଣ୍ଠିପର୍ଯ୍ୟନ୍ତ ଅଂଶ ।

✝ ପରିଣାହ = ବିସ୍ତାର, ବେଢ଼, ପରିଧି ବା ଗୋଲେଇ (Circumference)—"ଧନୁଃଶତଂ ପରିଣାହୋ ଗ୍ରାମାନ୍ତ କ୍ଷେତ୍ରାନ୍ତରଂ ଭବେତ୍" ।

* ରସ = ଝୋଳ (Broth) ।

କ୍ଷାରପଞ୍ଚପଳକଃ ସୁବେୟାଃ ପ୍ରସ୍ଥଃ ପୟସୋ ବା ଦ୍ୱିଗୁଣଃ ପ୍ରତିପାନମ୍। ଦୀର୍ଘପଥଭାରକ୍ଲାନ୍ତାନାଂ ଚ ଖାଦନାର୍ଥଂ ସ୍ନେହପ୍ରସ୍ଥୋଽନୁବାସନମ୍ । କୁଡୁବୋ ନସ୍ୟ କର୍ମଣଃ । ଯବଶସ୍ୟାର୍ଦ୍ଧଭାରଃ, ତୃଣସ୍ୟ ଦ୍ୱିଗୁଣଃ, ଷଡ଼ରତ୍ନିପରକ୍ଷେପଃ ପୁଞ୍ଜୀଲଗ୍ରହୋ ବା । (୯) ପାଦାବରମେ-ତନ୍ମଧ୍ୟମାବରୟୋଃ । ଉତ୍ତମସମୋ ରଥ୍ୟୋ ବୃଷଶ୍ଚ ମଧ୍ୟମଃ । ମଧ୍ୟମସମଶ୍ଚାବରଃ । ପାଦହୀନଂ ବଡ଼ବାନାଂ ପାରଶମାନାଂ ଚ । ଅତୋଽର୍ଧଂ କଶୋରାଣାଂ ଚ । ଇତିବିଧା ଯୋଗଃ । (୧୦) ବିଧାପାଚକସୂତ୍ରଗ୍ରାହକଚିକିତ୍ସକାଃ ପ୍ରତିସ୍ୱାଦଭାଜଃ ।

---

କିମ୍ବା ଦହି ଦୁଇଅଢ଼କ ଦେବେ । ଗୁଡ଼ ପାଞ୍ଚପଲ, ସୁରା ଏକପ୍ରସ୍ଥ କିମ୍ବା କ୍ଷୀର ଏହାର ଦୁଇଗୁଣ 'ପ୍ରତିପାନ' ଅର୍ଥାତ୍ ଅପରାହ୍ନ ଭୋଜନ ସକାଶେ ବ୍ୟବସ୍ଥା କରିବେ । ଦୀର୍ଘପଥଲଙ୍ଘନ ଓ ଗୁରୁଭାର ବହନ କରି କ୍ଳାନ୍ତ (ହାଲିଆ) ହୋଇଥିବା ଅଶ୍ୱମାନଙ୍କୁ ସବଳ କରିବା ପାଇଁ ଘୃତ ଏକପ୍ରସ୍ଥ, ଅନୁବାସନ (ପିଚକାରୀ) ସକାଶେ ମହାନାରାୟଣ ତୈଳ ବା ପ୍ରସାରଣୀ ତୈଳ ପ୍ରଭୃତି ଏକପ୍ରସ୍ଥ ଏବଂ ନାକରେ ପକାଇବା ପାଇଁ ତୈଳ ଏକକୁଡ଼ୁବ ଦେବେ ଏବଂ ସାଧାରଣ ଖାଦ୍ୟ ହିସାବରେ ଘାସ ବା କଞ୍ଚାଶସ୍ୟ ଏକସହସ୍ର ପଳ (ଗୃହେଜାର ତୋଳା), ଏହାର ଅଭାବରେ ପାଳ ଦୁଇସହସ୍ର ପଳ ଅର୍ଥାତ୍ ଅଠସହସ୍ର ତୋଲା କିମ୍ବା ଛ'କୁଣ୍ଡ ନିୟମିତଭାବେ ଦେବାର ବ୍ୟବସ୍ଥା କରିବେ । (୯) ଉପରୋକ୍ତ ଉତ୍ତମ ଅଶ୍ୱର ଆହାର ପରିମାଣରୁ ଏକଚତୁର୍ଥାଂଶ ଊଣାକରି ମଧ୍ୟମ ଅଶ୍ୱକୁ ଏବଂ ଏହାର ଚତୁର୍ଥାଂଶ ଊଣାକରି କନିଷ୍ଠ ଅଶ୍ୱକୁ ଆହାର ଦେବାକୁ ହେବ । (ଉତ୍ତମ ଅଶ୍ୱ ଆହାରର ଅର୍ଦ୍ଧଭାଗ ଦେବାକୁ ହେବ) । ରଥରେ ଯୋଗୁହେବା ଅଶ୍ୱ ଓ ମଧ୍ୟମ ପ୍ରକାରର ବୃଷଅଶ୍ୱ (ଛୁଆ ଜନ୍ମ କରିବା ସକାଶେ ଅଶ୍ୱିନୀମାନଙ୍କ ସହିତ ସଂଯୁକ୍ତ ହେବା ବୃଷଅଶ୍ୱ)କୁ ଉତ୍ତମ ଅଶ୍ୱ ସଦୃଶ ଆହାର, ପ୍ରସୂତା ଅଶ୍ୱିନୀ ଓ ଖଚରମାନଙ୍କୁ ଏହାର ଚତୁର୍ଥାଂଶ ଊଣା ଏବଂ ଏହାର ଅର୍ଦ୍ଧାଂଶ କିଶୋର ଅଶ୍ୱମାନଙ୍କୁ ଆହାର ଦେବାକୁ ହେବ । ଏପରି ଅଶ୍ୱମାନଙ୍କ ଆହାର ପରିମାଣର ବିଧାନ କୁହାଗଲା । ଏହାକୁ ବିଧାଯୋଗ କହନ୍ତି । (୧୦) ବିଧାପାଚକ ଅର୍ଥାତ୍ ଅଶ୍ୱାହାର ପାଚକ (ଘୋଡ଼ାମାନଙ୍କ ପାଇଁ ଆହାର ରାନ୍ଧିବା ରାନ୍ଧୁଣୀ), ସୂତ୍ର

(୧୧) ଯୁଦ୍ଧବ୍ୟାଧିଜରାକର୍ମକ୍ଷୀଣାଃ ପିଣ୍ଡଗୋଚରିକାଃ ସ୍ୟୁଃ । ଅସମର ପ୍ରଯୋଗ୍ୟାଃ ପୌରଜାନପଦାନାମର୍ଥେନ ବୃଷା ବଡ଼ବାସ୍ୱାୟୋଜ୍ୟାଃ । (୧୨) ପ୍ରୟୋଗ୍ୟାନାମୁତ୍ତମାଃ କାମ୍ବୋଜକସୈନ୍ଧବାରଟ୍ଟଜ- ବାନାୟୁଜାଃ । ମଧ୍ୟମା ବାହ୍ଲୀକପାପେୟକସୌବୀରକ ତୈତଲାଃ । ଶେଷାଃ ପ୍ରତ୍ୟବରାଃ । (୧୩) ତେଷାଂ ତୀକ୍ଷ୍ଣ- ଭଦ୍ରମନ୍ଦବଶେନ ସାନ୍ନାହ୍ୟମୌପବାହ୍ୟକଂ ବା କର୍ମପ୍ରୟୋ- ଜୟେତ୍ । (୧୪) ଚତୁରସ୍ରଂ କର୍ମାଶ୍ୱସ୍ୟ ସାନ୍ନାହ୍ୟମ୍ । ବଲ୍ଗନୋ

ଗ୍ରାହକ (ଘୋଡ଼ାସାହାଣି) ଏବଂ ଅଶ୍ୱଚିକିତ୍ସକମାନେ ମଧ୍ୟ ଅଶ୍ୱ ଭୋଜନ ପଦାର୍ଥର ଭାଗୀ ହେବେ ଅର୍ଥାତ୍ ଅଶ୍ୱ ଆହାର ସକାଶେ ଆଣାଯିବା ପଦାର୍ଥ ସହିତ ଏମାନଙ୍କ ଆହାର୍ଯ୍ୟ ପଦାର୍ଥ ମଧ୍ୟ ମିଶାଇ ଆଣିବାକୁ ହେବ । (୧୧) ଯୁଦ୍ଧ, ବ୍ୟାଧି ଓ ବୃଦ୍ଧାବସ୍ଥା ଯୋଗୁଁ କର୍ମକ୍ଷମ ନ ହେଉଥିବା ଅଶ୍ୱମାନଙ୍କୁ କେବଳ ପେଟ ବଞ୍ଚାଇବା ସକାଶେ ଆହାର ଦେଇ ରଖିବେ ଏବଂ ଯୁଦ୍ଧରେ ଉପଯୋଗୀ ନ ହେଉଥିବା ଅଶ୍ୱମାନଙ୍କୁ ପ୍ରଜାମାନଙ୍କ ଅଶ୍ୱିନୀମାନଙ୍କଠାରୁ ଛୁଆଜନ୍ମ କରିବା ସକାଶେ ଛାଡ଼ିଦେବେ । (୧୨) ଶିକ୍ଷିତ ଓ ଯୁଦ୍ଧଯୋଗ୍ୟ ଅଶ୍ୱମାନଙ୍କ ମଧ୍ୟରେ * କାମ୍ବୋଜ, ସୈନ୍ଧବ, ଆରଟ୍ଟ ଓ ବନାୟୁଜ ଅଶ୍ୱ ଉତ୍ତମ; ବାହ୍ଲୀକ, ପାପେୟକ, ସୌବୀରକ ଓ ତୈତଲ ଅଶ୍ୱ ମଧ୍ୟମ ଓ ଅବଶିଷ୍ଟ ପ୍ରଭୃତି ଦେଶଜ ଅଶ୍ୱ ଅଧମ ଅଶ୍ୱରୂପେ ପରିଗଣିତ । (୧୩) ଏହି ଅଶ୍ୱମାନେ † ତୀକ୍ଷ୍ଣ, ଭଦ୍ର ଓ ମନ୍ଦଗତି ଭେଦରେ ସାନ୍ନାହ୍ୟ ଓ ଔପବାହ୍ୟକ କର୍ମ ଅର୍ଥାତ୍ ଯୁଦ୍ଧ ଏବଂ କ୍ରୀଡ଼ା ଓ ଯାନ ଆକର୍ଷଣାଦି କର୍ମରେ ନିଯୁକ୍ତ ହୁଅନ୍ତି । (ତୀକ୍ଷ୍ଣ=ଅତ୍ୟନ୍ତ ତେଜସ୍ୱୀ, କେତେମାନ ଆଘାତ ଅସହିଷ୍ଣୁ; ଭଦ୍ର=ତେଜସ୍ୱୀ, ଆଘାତ ଅନୁରୂପ ଚେଷ୍ଟାକାରୀ ଏବଂ ମନ୍ଦ= ନିସ୍ତେଜ ଓ ମହା ଆଘାତପ୍ରାପ୍ତ ସତ୍ତ୍ୱେ କାର୍ଯ୍ୟକାରୀ) । (୧୪) ସୌଷ୍ଠବଯୁକ୍ତ,

* କାମ୍ବୋଜକ ଅଶ୍ୱ=କାମ୍ବୋଜିଆ ଅଶ୍ୱ; ସୈନ୍ଧବ=ସିନ୍ଧୁପ୍ରଦେଶଜାତ ଅଶ୍ୱ; ଆରଟ୍ଟ= ପଞ୍ଜାବ ପ୍ରଦେଶଜାତ ଅଶ୍ୱ; ବନାୟୁଜ=ଆରବ ଦେଶଜ; ପାପେୟକ=ସୀମାନ୍ତ ଅଞ୍ଚଳଜାତ; ସୌବୀରକ=ରାଜପୁତାନାଜାତ ।

† ତୀକ୍ଷ୍ଣ=Furious; ଭଦ୍ର=Mild; ମନ୍ଦ=Stupid or slow.

ନୀଚୈର୍ଗତୋ ଲଂଘନୋ ଧୋରଣୋ ନାରେଷ୍ଟ୍ରଶ୍ଚୌପବାହ୍ୟାଃ । (୧୫) ତତ୍ରୌପବେଣୁକୋ ବର୍ଦ୍ଧମାନକୋ ଯମକ ଆଲୀଢ଼ପ୍ଲୁତଃ ପୃଥଗ (ପୂର୍ବଗ ?)ସ୍ତ୍ରିକଚ୍ଛାଳୀଚବଲ୍‌ଗନଃ । ସ ଏବ ଶିରଃକର୍ଣ୍ଣବିଶୁଦ୍ଧୋ ନୀଚୈର୍ଗତଃ, ଷୋଡ଼ଶମାର୍ଗୋ ବା । ପ୍ରକୀର୍ଣ୍ଣକଃ ପ୍ରକୀର୍ଣ୍ଣୋତ୍ତରୋ ନିଷଣ୍ଣଃ ପାର୍ଶ୍ୱାନୁବୃତ୍ତ ଊର୍ମିମାର୍ଗଃ ଶରଭକ୍ରୀଡ଼ିତଃ ଶରଭପ୍ଲୁତଃ ତ୍ରିତାଲୋ ବାହ୍ୟାନୁବୃତ୍ତଃ ପଞ୍ଚପାଣିଃ ସିଂହାୟତଃ ସ୍ୱାଧୂତଃ

---

ଖାଲଧୋଆଦ ପ୍ରପଞ୍ଚିତ ବିଶେଷ-ସାଗ୍ରାମିକ କର୍ମକୁ 'ସାନାହ୍ୟ' ଏବଂ ବଲ୍‌ଗନ, ନୀଚୈର୍ଗତ, ଲଙ୍ଘନ, ଧୋରଣ ଓ ନାରେଷ୍ଟ—ଏହି ପାଞ୍ଚ ପ୍ରକାର ଅଶ୍ୱଗତିକୁ 'ଔପବାହ୍ୟ' କୁହାଯାଏ । (୧୫) ଅଶ୍ୱର ଚକ୍ରାକାର ଗତିକୁ ବଲ୍‌ଗନ କୁହାଯାଏ । ଏହି ବଲ୍‌ଗନ ଗତି ଛ'ପ୍ରକାର—ଔପବେଣୁକ (ଏକହସ୍ତପରିମିତ ଚକ୍ରାକାର ମଣ୍ଡଳରେ ବୁଲିବା), ବର୍ଦ୍ଧମାନକ (ଏକହସ୍ତ-ପରିମିତ ମଣ୍ଡଳ ପଂକ୍ତିରେ ଅନୁକ୍ରମରେ ବୁଲି ବୁଲି ଯିବା), ଯମକ (ଏକାଥରେ ଦୁଇଟି ମଣ୍ଡଳରେ ବୁଲିବା), ଆଲୀଢ଼ପ୍ଲୁତ (ଏକ ପାଦ ସଂକୋଚ ଓ ଅପର ପାଦ ପ୍ରସାରଣ ପୂର୍ବକ କୁଦାମାରି ଗତିକରିବା), ପୂର୍ବଗ (ପୂର୍ବାର୍ଦ୍ଧ ଘୂରାଇ ଅର୍ଥାତ୍ ଆଗଗୋଡ଼ ଦୁଇଟି ଊର୍ଦ୍ଧ୍ୱଗକରି ପଛପାଦରେ ଛିଡ଼ାହୋଇ ମଣ୍ଡଳାକାର ଭ୍ରମଣ), ତ୍ରିକଚ୍ଛାଳୀ (ଆଗଗୋଡ଼ ଦୁଇଟି ଯଥାସ୍ଥାନରେ ରଖି ପଛପଟର ଦୁଇଗୋଡ଼ ଓ ପିଠି ସଞ୍ଚାଳନ ପୂର୍ବକ ଭ୍ରମଣ) ।

ଅଶ୍ୱ ମୁଣ୍ଡ-କାନକୁ ଅବିକୃତଭାବେ ରଖି କରିବା ଗତିକୁ 'ନୀଚୈର୍ଗତ' କୁହାଯାଏ । ଏହା ଶୋହଳ ପ୍ରକାର । ସମସ୍ତପ୍ରକାର ଗତିର ସଂକରଗତିକୁ 'ପ୍ରକୀର୍ଣ୍ଣକ', ଗୋଟିଏ ଗତିକୁ ପ୍ରଧାନ କରି ପ୍ରକୀର୍ଣ୍ଣ ଗତିପରି କରିବା ଗତିକୁ 'ପ୍ରକୀର୍ଣ୍ଣୋତ୍ତର', ପୃଷ୍ଠଦେଶକୁ ନିଷ୍କମ୍ପଭାବେ ରଖି କରିବା ଗତିକୁ 'ନିଷଣ୍ଣ', ତେରଛଭାବେ କରିବା ଗତିକୁ 'ପାର୍ଶ୍ୱାନୁବୃତ୍ତ', ଲହରୀପରି ଉନ୍ନତ ଓ ଅବନତ ଭାବେ କରିବା ଗତିକୁ 'ଊର୍ମିମାର୍ଗ', * ଶରଭର ଗତି ସମାନ ଗତିକୁ 'ଶରଭକ୍ରୀଡ଼ିତ', ଶରଭପରି ଉପରକୁ ଡେଇଁ ଡେଇଁ କରିବା ଗତିକୁ

---

* ଶରଭ—ସିଂହଘାତୀ ଅଷ୍ଟାପଦ ମୃଗବିଶେଷ । ପ୍ରମାଣ, ଯଥା—ଅଷ୍ଟପାଦୂର୍ଦ୍ଧ୍ୱନୟନ ଊର୍ଦ୍ଧ୍ୱପାଦଚତୁଷ୍ଟୟଃ । ସିଂହଂ ହନ୍ତୁଂ ସମାୟାତ ଶରଭୋ ବନଗୋଚରଃ । ଓଟ ଓ ବାନରବିଶେଷର ନାମ ମଧ୍ୟ ଶରଭ ଅଟେ ।

କ୍ଳିଷ୍ଟଃ ଶ୍ଳିଙ୍ଗିତୋ ବୃଂହିତଃ ପୁଷ୍ପାଭିକୀର୍ଣ୍ଣଶ୍ଚେତ ନୀଚୈର୍ଗତା ମାର୍ଗାଃ । (୧୬) କପିପ୍ଲୁତୋ ଭେକପ୍ଲୁତ ଏଣପ୍ଲୁତ ଏକପାଦ-ପ୍ଲୁତଃ କୋକିଳସଂଗୃଯୁରସେଧ୍ୟାବକଗୁରୀ ଚ ଲଙ୍ଘନଃ । (୧୭) କାଂକୋ ବାରକାଂଙ୍କ୍ଷୋ ମାୟୂରୋଽର୍ଦ୍ଧମାୟୂରୋ ନାକୁଳୋ-ଽର୍ଦ୍ଧନାକୁଳୋ ବାରହୋଽର୍ଦ୍ଧବାରହଶ୍ଚେତ ଧୋରଣଃ ।

---

'ଶରଭପ୍ଲୁତ', ଏକପାଦ ଊର୍ଦ୍ଧ୍ୱଗ କରି ଅନ୍ୟପାଦରେ କରିବା ଗତିକୁ 'ବିତାଳ', ବାମ ଓ ଦକ୍ଷିଣ ପଟେ ବୁଲି ବୁଲି କରିବା ଗତିକୁ 'ବାହ୍ୟାନୁବୃତ୍ତ', ଅନ୍ୟ ପାଦ ଭୂମିରେ ରଖି ଅପର ଏକପାଦକୁ ଦୁଇଥର ପକାଇବା କିମ୍ବା ଥରେ ଅନ୍ୟପାଦରେ, ଅନ୍ୟଥରେ ଦୁଇପାଦରେ କରିବା ଗତିକୁ 'ପଞ୍ଚପାଣି', ସିଂହସଦୃଶ ଠାଣିରେ କରିବା ଗତିକୁ 'ସିଂହାପ୍ଲୁତ', ଅତ୍ୟନ୍ତ ଦୀର୍ଘଗତିକୁ 'ସ୍ୱାଧୁତ', ଭାରବହନ ନ କରିଥିବା ବେଳେ ମଧ୍ୟ ଭାରବହିବା ସମୟରେ ଯେପରି ଠିକ୍‌ଭାବେ ଧୀର ଗତି ହୁଏ, ସେପରି ଗତିକୁ 'କ୍ଳିଷ୍ଟ', ମୁଣ୍ଡକୁ ନୁଆଇଁ କରିବା ଗତିକୁ 'ଶ୍ଳିଙ୍ଗିତ', ମୁଣ୍ଡକୁ ଉପରକୁ ଟେକି କରିବା ଗତିକୁ 'ବୃଂହିତ', ଗୋମୂତ୍ରିକାନ୍ୟାୟ ଅର୍ଥାତ୍ ଏଣେତେଣେ ଡୁଆଁଡ଼ି ହୋଇ କରିବା ଗତିକୁ 'ପୁଷ୍ପାଭିକୀର୍ଣ୍ଣ'—ଏହିଗୁଡ଼ିକୁ 'ନୀଚୈର୍ଗତି ମାର୍ଗ' କୁହାଯାଏ । (୧୬) ମାଙ୍କଡ଼ପରି କୁଦାମାରି ଡେଇଁ ଡେଇଁ କରିବା ଗତିକୁ 'କପିପ୍ଲୁତ', ବେଙ୍ଗପରି କୁଦାମାରି ଡେଇଁ ଡେଇଁ କରିବା ଗତିକୁ 'ଭେକପ୍ଲୁତ', ମୃଗପରି କୁଦାମାରି ଡେଇଁ ଡେଇଁ କରିବା ଗତିକୁ 'ଏଣପ୍ଲୁତ', ଅନ୍ୟପାଦ ସଙ୍କୋଚ କରି ଏକପାଦରେ କୁଦା ମାରି ମାରି କରିବା ଗତିକୁ 'ଏକପାଦ-ପ୍ଲୁତ', କୋଇଲିପକ୍ଷୀ ଉଡ଼ିବାପରି ଡେଇଁ ଡେଇଁ କରିବା ଗତିକୁ 'କୋକିଳ ସଂଗୃହୀ', ସମସ୍ତ ପାଦ ସଙ୍କୋଚକରି ସ୍ଥିତ ଥିଲେ ଲାଗେନାହିଁ ଏପରି ଅବସ୍ଥାରେ କରିବା ଗତିକୁ 'ଉରସ୍ୟ', ବଗପରି ଗୋଡ଼ ଟେକି ଟେକି କରିବା ଗତିକୁ 'ବକଗ୍ରୁଷି'—ଏପରି ସାତପ୍ରକାର ଗତିକୁ 'ଲଂଘନ' କୁହାଯାଏ । (୧୭) କଙ୍କପକ୍ଷୀ ଗତିର ସମାନ ଗତିକୁ 'କାଂକ', ହଂସାଦି ଗତିର ସମାନ ଗତିକୁ 'ବାରକାଂକ୍ଷ', ମୟୂର ଗତିର ସମାନ ଗତିକୁ 'ମାୟୂର', ମୟୂର ଗତିର ଅଧଗତିକୁ 'ଅର୍ଦ୍ଧମାୟୂର', ନେଉଳ ଗତିର ସମାନ ଗତିକୁ 'ନାକୁଳ', ନେଉଳ ଗତିର ଅର୍ଦ୍ଧଗତିକୁ 'ଅର୍ଦ୍ଧନାକୁଳ', ବରାହ ଗତିର

(୧୮) ସଂଜ୍ଞାପ୍ରତକାରେ ନାରେଷ୍ଟ ଇତ । (୧୯) ଷଣ୍ଣ-ବଦ୍ଵାଦଶେତ ଯୋଜନାନ୍ୟଧ୍ଵା ରଥ୍ୟାନାମ୍ । ପଞ୍ଚଯୋଜନା-ନ୍ୟର୍ଧାଷ୍ଟମାନ ଦଶେତ ପୃଷ୍ଠବାହ୍ୟାନାମଶ୍ଵାନାମଧ୍ଵା । (୨୦) ବକ୍ରମୋ ଭଦ୍ରାଶ୍ଵାସୋ ଭରବାହ୍ୟ ଇତ ମାର୍ଗାଃ । (୨୧) ବକ୍ରମୋ ବଲ୍ଗିତମୁପକଣ୍ଠମୁପଜବୋ ଜବଶ୍ଚ ଧାରାଃ । (୨୨) ତେଷାଂ ବନ୍ଧନୋପକରଣଂ ଯୋଗ୍ୟାଚାର୍ଯ୍ୟାଃ ପ୍ରତଦଶେୟୁଃ । ସାଂଗ୍ରାମିକଂ ରଥାଶ୍ଵାଳଂକରଂ ଚ ସୂତାଃ । ଅଶ୍ଵାନାଂ ଚକତ୍ସକାଃ ଶରୀରହ୍ରାସ-ବୃଦ୍ଧିପ୍ରତକାରମୃତୁବଭକ୍ତଂ ଚାହାରମ୍ । (୨୩) ସୂତ୍ରଗ୍ରାହକାଶ୍ଵ-ବନ୍ଧକ ଯାବସିକବଧାପାଚକସ୍ଥାନପାଳକେଶକାରଜାଂଗଳୀବଦଶ୍ଚ

---

ସମାନ ଗତକୁ 'ବାଗ୍ବ', ବଗ୍ବ ଗତର ଅର୍ଦ୍ଧଗତକୁ 'ଅର୍ଦ୍ଧବାଗ୍ବ'—ଏହି ଅଠପ୍ରକାର ଗତକୁ 'ଧୋରଣ' କୁହାଯାଏ । (୧୮) ଶିଖାଇଥିବା ସଂକେତ ଅନୁରୂପ (ଅଶ୍ବର) ଗତକୁ 'ନାରୋଷ୍ଟ' କୁହାଯାଏ । (୧୯) ରଥରେ ଯୋଗୃହେବା ଉତ୍ତମ ଅଶ୍ବମାନଙ୍କର ଦୈନିକ ଗତ ବାରଯୋଜନ, ମଧ୍ୟମ ଅଶ୍ବମାନଙ୍କର ଦୈନିକ ଗତ ନ'ଯୋଜନ ଏବଂ ଅଧମ ଅଶ୍ବମାନଙ୍କର ଦୈନିକ ଗତ ଛ'ଯୋଜନ ଅଟେ । ଏହାପର, ପିଠିରେ ଭାରବହନ କରିବା ଉତ୍ତମ ଅଶ୍ବମାନଙ୍କର ଦୈନିକ ଗତ ଦଶ ଯୋଜନ, ମଧ୍ୟମ ଅଶ୍ବର ସାଢ଼େ ସାତ ଏବଂ ଅଧମ ଅଶ୍ବର ପାଞ୍ଚ ଯୋଜନ ଅଟେ । (୨୦) ଉପରୋକ୍ତ ଅଶ୍ବ-ମାନଙ୍କର ବକ୍ରମ (ମନ୍ଦ), ଭଦ୍ରାଶ୍ବାସ (ମଧ୍ୟମ), ଭାରବାହ୍ୟ (ଦ୍ରୁତଗମନ)—ଏ ତନିପ୍ରକାର ଗତ ପ୍ରସିଦ୍ଧ ଅଟେ । (୨୧) ଅଶ୍ବଗତର ଧାରା ପାଞ୍ଚପ୍ରକାର । ଯଥା—ଧୀରଗତକୁ 'ବକ୍ରମ', ଆନ୍ଦୋଳତ ବା କମ୍ପିତ ଗତକୁ 'ବଲ୍ଗିତ', କୁଦାମାର ଗତକୁ 'ଉପକଣ୍ଠ', ପ୍ରଥମବେଗକୁ 'ଉପଜବ' ଓ ଚରମବେଗକୁ 'ଜବ' କୁହାଯାଏ । (୨୨) ରଥରେ ଯୋଗୃହେବା ଅଶ୍ବ ଓ ଭାରବାହକ ଅଶ୍ବମାନଙ୍କର ମୁଖ କଣ୍ଠ ପୃଷ୍ଠ ପାଦ ଇତ୍ୟାଦରେ ଲଗାହେବା କବଚ୍ୟ ପର୍ଯ୍ୟାଣାଦ ବନ୍ଧନୋପକରଣମାନଙ୍କର ନିର୍ମାଣ ଓ ପ୍ରୟୋଗ ସକାଶେ ଅଶ୍ବଶିକ୍ଷକମାନେ ଉପଦେଶ ଦେବେ, ସାଂଗ୍ରାମିକ ରଥରେ ଯୋଗୃହେବା ଅଶ୍ବମାନଙ୍କ ଉପକରଣମାନଙ୍କ ବଷୟରେ ସାରଥିମାନେ ନିର୍ଦ୍ଦେଶ ଦେବେ ଏବଂ ଅଶ୍ବଚକତ୍ସକମାନେ ଅଶ୍ବମାନଙ୍କର ଶରୀର ହ୍ରାସ ଓ ବୃଦ୍ଧିର ପ୍ରତୀକାର

**ସ୍ୱକର୍ମଭିରଶ୍ୱାନାରାଧୟେୟୁଃ । (୨୪) କର୍ମାତିକ୍ରମେ ଚୈଷାଂ ଦିବସବେତନଚ୍ଛେଦନଂ କୁର୍ଯାତ୍ । ନୀରାଜନୋପରୁଦ୍ଧଂ ବାହୟତଃ ଚିକିତ୍ସକୋପରୁଦ୍ଧଂ ବା ଦ୍ୱାଦଶପଣୋ ଦଣ୍ଡଃ । କ୍ରିୟାଭୈଷଜ୍ୟସଙ୍ଗେନ ବ୍ୟାଧିବୃଦ୍ଧୌ ପ୍ରତୀକାରଦ୍ୱିଗୁଣୋ ଦଣ୍ଡଃ । ତଦପରାଧେନ ବୈଲୋମ୍ୟେ ପତ୍ରମୂଲ୍ୟଂ ଦଣ୍ଡଃ । ତେନ ଗୋମଣ୍ଡଲଂ ଖରୋଷ୍ଟ୍ରମହିଷମଜାବିକଂ ଚ ବ୍ୟାଖ୍ୟାତମ୍ ।**

---

ପାଇଁ ଔଷଧାଦିର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଋତୁ ଅନୁରୂପ ପଥ୍ୟ ଆହାରାଦିର ମଧ୍ୟ ବ୍ୟବସ୍ଥା କରିବେ । (୨୩) ସୂତ୍ରଗ୍ରାହକ (ସଞ୍ଚାଳନ, ବିବର୍ତ୍ତନ, ସମୀପଗମନ, ଫବାହନାଦି କରିବା ବ୍ୟକ୍ତି), ଅଶ୍ୱବନ୍ଧକ (ଲଗାମ ବାଗ ପ୍ରଭୃତି ଖଞ୍ଜିବା ବ୍ୟକ୍ତି), ଯାବସିକ (ଋତୁଅନୁସାରେ ଘାସ ଖୁଆଇବା ବ୍ୟକ୍ତି), ବିଧାପାଚକ (ଧାନ, ମୁଗ, ବିରି ପ୍ରଭୃତିର ପାଚକ), ସ୍ଥାନପାଳ (ଅଶ୍ୱରହିବା ଗୃହ ସଫାକରିବା ବ୍ୟକ୍ତି), କେଶକାର୍ତ୍ତି (କେଶ କର୍ତ୍ତନକରିବା ବ୍ୟକ୍ତି) ଓ ଜାଙ୍ଗଲୀବିଦ୍ (ବିଷବିଦ୍ୟାରେ ନିପୁଣ ହୋଇଥିବା ବ୍ୟକ୍ତି)—ଏମାନେ ଯଥାସମୟରେ ଯଥାବିଧି ନିଜ ନିଜର କାର୍ଯ୍ୟଦ୍ୱାରା ଅଶ୍ୱମାନଙ୍କୁ ସେବାକରିବେ । (୨୪) ଉପରୋକ୍ତ ସୂତ୍ରଗ୍ରାହକାଦି ଅଶ୍ୱସେବକମାନେ ନିଜ ନିଜର କାର୍ଯ୍ୟ ନକଲେ ବା ଅନ୍ୟପ୍ରକାରେ କଲେ ସେମାନେ ଯେଉଁ ଦିନ ଏପରି କରିବେ ସେଦିନର ବେତନ କାଟିଦେବାକୁ ହେବ । ଦୂରିତଶାନ୍ତି ସକାଶେ ଶାନ୍ତି-ଉଦକ ଓ ପୁଷ୍ପଦୀପାଦିରେ ନୀରାଜନା କରିବା ପାଇଁ ରଖାଯାଇଥିବା ଅଶ୍ୱ କିମ୍ବା ଚିକିତ୍ସକଦ୍ୱାରା ଚିକିତ୍ସା ସକାଶେ ଅଟକକରି ରଖାଯାଇଥିବା ଅଶ୍ୱକୁ ବାହିବା ବ୍ୟକ୍ତିକୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଚିକିତ୍ସାଉପଯୋଗୀ କ୍ରିୟା ଓ ଔଷଧାଦି ପ୍ରୟୋଗର ବ୍ୟତିକ୍ରମ କରିବାଦ୍ୱାରା ଅଶ୍ୱମାନଙ୍କର ବ୍ୟାଧିବୃଦ୍ଧି ଘଟିଲେ ଅଶ୍ୱାଧ୍ୟକ୍ଷଙ୍କୁ ଉକ୍ତ ଔଷଧାଦି ବ୍ୟୟର ଦ୍ୱିଗୁଣ ଦଣ୍ଡ ଦେବାକୁ ହେବ । ଚିକିତ୍ସାଦୋଷରୁ କିମ୍ବା ଔଷଧପ୍ରୟୋଗ-ଦୋଷରୁ ଯଦି ଅଶ୍ୱର ବିପତ୍ତି ଘଟେ, ତେବେ ଏହି ବିପନ୍ନ ଅଶ୍ୱର ମୂଲ୍ୟ ପରିମାଣ ଅର୍ଥଦଣ୍ଡ ଅଶ୍ୱାଧ୍ୟକ୍ଷଙ୍କ ଉପରେ ଧାର୍ଯ୍ୟ କରିବାକୁ ହେବ । ଏହି ପ୍ରଣାଳୀରେ ଗୋମଣ୍ଡଳ, ଖର (ଗଧ), ଉଷ୍ଟ୍ର, ମହିଷ, ଛାଗ, ମେଷ

(୨୫) ଦ୍ୱିରହ୍ନଃ ସ୍ନାନମଶ୍ୱାନାଂ ଗନ୍ଧମାଲ୍ୟଂ ଚ ଦାପୟେତ୍ ।
କୃଷ୍ଣ ସନ୍ଧିଷୁ ଭୂତେଜ୍ୟାଃ ଶୁକ୍ଳେଷୁ ସ୍ୱସ୍ତିବାଚନମ୍ ॥

(୨୬) ନୀରାଜନାମାଶ୍ୱୟୁଜେ କାରୟେନ୍ନବମେଽହନି ।
ଯାତ୍ରାଦାବବସାନେ ବା ବ୍ୟାଧୌ ବା ଶାନ୍ତିକେରତଃ ॥



ଇତ୍ୟାଦି ଗୃହପାଳିତ ପଶୁମଣ୍ଡଳର ବ୍ୟବସ୍ଥା କରିବାକୁ ହେବ । (୨୫,୨୬) ଶରତ୍ ଓ ଗ୍ରୀଷ୍ମଋତୁରେ ଅଶ୍ୱମାନଙ୍କୁ ଦିନରେ ଦୁଇଥର ସ୍ନାନ କରାଇ ଗନ୍ଧମାଲ୍ୟ ଦିଆଇବେ । ଅମାବାସ୍ୟାରେ ଅଶ୍ୱମାନଙ୍କ ପାଇଁ ଭୂତବଳି ଏବଂ ପୌର୍ଣ୍ଣମାରେ ସ୍ୱସ୍ତିବାଚନ ଅର୍ଥାତ୍ ବ୍ରାହ୍ମଣ-ଅଶୀର୍ବାଦ ଦିଆଇବେ । ଆଶ୍ୱିନ ମାସର ନବମୀରେ ନୀରାଜନା କରାଇବେ । ଯାତ୍ରାର ଆରମ୍ଭରେ ଓ ଶେଷରେ କିମ୍ବା ଅଶ୍ୱମାନଙ୍କ ବ୍ୟାଧି ଉପସ୍ଥିତ କାଳରେ ଶାନ୍ତିକର୍ମ କରାଇବେ ।

ଇତି କୌଟଲ୍ୟସ୍ୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ତ୍ରିଂଶୋଽଧ୍ୟାୟଃ—
ଅଶ୍ୱାଧ୍ୟକ୍ଷଃ—ଆଦିତଃ ଏକପଞ୍ଚାଶଃ ।



## ଏକତ୍ରିଂଶୋଽଧ୍ୟାୟଃ

## ଅଷ୍ଟଚତ୍ୱାରିଂଶତ୍ ପ୍ରକରଣମ୍—ହସ୍ତ୍ୟଧ୍ୟକ୍ଷଃ

## THE SUPERINTENDENT OF ELEPHANTS

( ହସ୍ତୀ-ଅଧ୍ୟକ୍ଷଙ୍କ ବ୍ୟାପାର )

(୧) ହସ୍ତ୍ୟଧ୍ୟକ୍ଷୋ ହସ୍ତିବନରକ୍ଷାଂ ଦମ୍ୟକର୍ମକ୍ଷାନ୍ତାନାଂ ହସ୍ତିହସ୍ତିନୀକଲଭାନାଂ ଶାଲାସ୍ଥାନଶଯ୍ୟାକର୍ମବିଧାଯବସପ୍ରମାଣଂ କର୍ମସ୍ୱାୟୋଗଂ ବନ୍ଧନୋପକରଣଂ ସାଂଗ୍ରାମିକମଲଂକାରଂ ଚିକିତ୍ସକାନୀକସ୍ଥୋପସ୍ଥାୟିକବର୍ଗଂ ଚାନୁତିଷ୍ଠେତ୍ । (୨) ହସ୍ତ୍ୟାୟାମଦ୍ୱିଗୁଣୋତ୍ସେଧବିଷ୍କମ୍ଭାୟାମାଂ ହସ୍ତିନୀସ୍ଥାନାଧିକାଂ ସପ୍ରଗ୍ରୀବାଂ କୁମାରୀସଂଗ୍ରାହ୍ୟାଂ ପ୍ରାଙ୍ମୁଖୀମୁଦଙ୍ମୁଖୀଂ ବା ଶାଲାଂ

---

(୧) ହସ୍ତ୍ୟଧ୍ୟକ୍ଷ ହସ୍ତିବନ-ପ୍ରବେଶ-ନିଷେଧାଦି ରକ୍ଷାକାର୍ଯ୍ୟ, ଦାନ୍ତମ-ପ୍ରାପ୍ତ ହସ୍ତୀ, ହସ୍ତିନୀ ଓ ଶିଶୁହସ୍ତି(କଳଭ)ମାନଙ୍କର ଶାଳ, ସ୍ଥାନ (ବନ୍ଧନ ବିଚରଣାଦି ସକାଶେ ନିର୍ଦ୍ଦିଷ୍ଟ ହୋଇଥିବା ଖୋଲା ଜାଗା), ଶଯ୍ୟା (ଶୟନ ସ୍ଥାନ), କର୍ମ (ସାନ୍ନାହ୍ୟାଦି କର୍ମ), ଆହାର ଓ ଘାସ ପ୍ରଭୃତିର ପରିମାଣ, ଦମ୍ୟାଦି କର୍ମରେ ଅସକ୍ତ, ବନ୍ଧନ ଆଳାନ ଓ ଗ୍ରୈବେୟକାଦି ଉପକରଣ ଓ ଅଂକୁଶ, ବାଉଁଶ ପ୍ରଭୃତି ଯନ୍ତ୍ର, ସାଞ୍ଜୁ, ତୋମରାଦି ଯୁଦ୍ଧୋପଯୋଗୀ ପଦାର୍ଥ, ମାଳା, କ୍ଷୁରପ୍ର ଓ ବୈଜୟନ୍ତୀ ପ୍ରଭୃତି ଅଳଙ୍କାର, ଚିକିତ୍ସକ (ହସ୍ତିବୈଦ୍ୟ), ଅନୀକସ୍ଥ (ହସ୍ତିଶିକ୍ଷାବିଶାରଦ) ଓ ଉପସ୍ଥାୟିକ-ବର୍ଗ ଗୃହକ, ବନ୍ଧନକାରକାଦି (ଗୃହର ନୌକରସମୂହ)ଙ୍କର ତତ୍ତ୍ୱାବଧାନ କରିବେ । (୨) **ହସ୍ତୀଗୃହ ନିର୍ମାଣ ବିଧି:**—ହସ୍ତ୍ୟାୟାମ ଅର୍ଥାତ୍ ହସ୍ତିର ଆୟତନ (ନ'ହାତ ପରିମାଣ)ର ଦୁଇଗୁଣ ଅଠରହାତ ଉଚ୍ଚ, ଅଠରହାତ ପ୍ରସ୍ଥ ଓ ଅଠରହାତ ଦୀର୍ଘ ହସ୍ତିନୀ ସ୍ଥାନ ଅର୍ଥାତ୍ ମାଈହାତୀ ରହିବା ପାଇଁ ଛ'ହାତ ଅଧିକ ମିଶାଇ ମୋଟ ଚବିଶ ହାତ ଦୀର୍ଘ, ମୁଖଶାଳା ଓ କୁମାରୀ (ହସ୍ତିବନ୍ଧନ ସ୍ତମ୍ଭ ଉପରେ ହସ୍ତିମାନଙ୍କ ସୁଖବନ୍ଧନ ସକାଶେ ରଖାଯାଇଥିବା ତୁଳାଦଣ୍ଡ)ଯୁକ୍ତ ପୂର୍ବମୁଖୀ ବା ଉତ୍ତରମୁଖୀ ହସ୍ତିଶାଳା ନିର୍ମାଣ କରାଇବେ ।

ନବେଶୟେତ୍ । (୩) ହସ୍ତ୍ୟାୟାମଚତୁରଶ୍ରଶ୍ଲକ୍ଷ୍ଣାଲନସ୍ତମ୍ଭଫଳକାନ୍ତରକଂ ମୂତ୍ରପୁରୀଷୋତ୍ସର୍ଗସ୍ଥାନଂ ନବେଶୟେତ୍ । ସ୍ଥାନସମଶଯ୍ୟାମର୍ଦ୍ଧାପାଶ୍ରୟ୍ୟାଂ ଦୁର୍ଗେ ସାନ୍ନାହ୍ୟୌପବାହ୍ୟାନାଂ ବହିର୍ଦମ୍ୟବ୍ୟାଳାନାମ୍ । (୪) ପ୍ରଥମ ସପ୍ତମାବଷ୍ଟମଭାଗାବହ୍ନଃ ସ୍ନାନକାଲୌ, ତଦନନ୍ତରଂ ବଧାୟାଃ । ପୂର୍ବାହ୍ଣେ ବ୍ୟାୟାମକାଲଃ, ପଶ୍ଚାହ୍ନଃ ପ୍ରତିପାନକାଲଃ । ରାତ୍ରିଭାଗୌ ଦ୍ୱୌ ସ୍ୱପ୍ନକାଲୌ, ତ୍ରିଭାଗଃ ସଂବେଶନୋତ୍ଥାନକଃ । (୫) ଗ୍ରୀଷ୍ମେ ଗ୍ରହଣକାଲଃ । ବିଂଶତିବର୍ଷୋ ଗ୍ରାହ୍ୟଃ । (୬) ବିକ୍କୋମୂଢ଼ୋ ମତ୍କୁଣୋ ବ୍ୟାଧିତୋ

---

(୩) ହସ୍ତୀ ରହିବା (ବନ୍ଧାହେବା)ସ୍ଥାନ:—ହସ୍ତିଅାୟତନ ଅର୍ଥାତ୍ ନ'ହାତ ଅର୍ଦ୍ଧବ୍ୟାସବିଶିଷ୍ଟ ବୃତ୍ତାକାର, ଚିକ୍କଣ ଗଜବନ୍ଧନସ୍ତମ୍ଭଯୁକ୍ତ, ତଳଭାଗ କାଷ୍ଠଫଳକ (କାଠପଟା) ସମୂହଦ୍ୱାରା ଆଚ୍ଛାଦିତ, ମଳମୂତ୍ର ନିଷ୍କାସନ ସକାଶେ କଣ୍ଟିତ ମୁଖଭାଗ ଉନ୍ନତ ଓ ଛିଦ୍ରଯୁକ୍ତ ନିବେଶ ସ୍ଥାନ (ହସ୍ତିବନ୍ଧନ ସ୍ଥାନ) ନିର୍ମାଣ କରିବେ । ହସ୍ତିଆୟତନ ସଦୃଶ ଶଯ୍ୟାସ୍ଥାନ ଓ ଅର୍ଦ୍ଧଉନ୍ନତ କର ଆଉଜିବା ସ୍ଥାନ ନିର୍ମାଣ କରାଇବେ । ଯୁଦ୍ଧୋପଯୋଗୀ ଓ ଯାନୋପଯୋଗୀ ହସ୍ତିମାନଙ୍କୁ ଦୁର୍ଗଭିତରେ ଏବଂ ତାଲିମ ପାଉଥିବା ହସ୍ତି ଓ ଦୁଷ୍ଟହସ୍ତିମାନଙ୍କୁ ଦୁର୍ଗବାହାରେ ରଖାଇବା ପାଇଁ ଶାଳା ନିର୍ମାଣ କରାଇବେ । (୪) ଅାଠଭାଗରେ ବିଭକ୍ତ ହୋଇଥିବା ଦିନର ପ୍ରଥମ ଓ ସପ୍ତମ ଭାଗ ହସ୍ତିମାନଙ୍କର ସ୍ନାନକାଳ, ଦ୍ୱିତୀୟ ଓ ଅଷ୍ଟମଭାଗ ଭୋଜନ କାଳ, ପୂର୍ବାହ୍ନ ବ୍ୟାୟାମ କାଳ ଓ ଅପରାହ୍ଣ ପ୍ରତିପାନ (ଜଳପାନ) କାଳ, ରାତିର ତିନିଭାଗରୁ ଦୁଇଭାଗ ଅର୍ଥାତ୍ ୨୦ ଦଣ୍ଡ ଶୟନ କାଳ ଏବଂ ଅବଶିଷ୍ଟ ତିନିଭାଗରୁ ଏକଭାଗ ଅର୍ଥାତ୍ ଦଶଦଣ୍ଡ ସଂବେଶନ (ଚେତାରହି ହାଲିଆ ମାରିବା ପାଇଁ ଶୋଇ ରହିବା) ଓ ଉତ୍ଥାନ (ଉଠି ସତେଜହେବା) କାଳ ଅଟେ । (୫) ହସ୍ତି ଗ୍ରହଣ କାଳ:—ସୂର୍ଯ୍ୟକିରଣରେ କ୍ଷୀଣବଳ ହେଉଥିବା ଯୋଗୁଁ ଗ୍ରୀଷ୍ମକାଳହିଁ ହସ୍ତିମାନଙ୍କର ଗ୍ରହଣକାଳ (ସୁଖ ସୁବିଧାରେ ଧରିବାର କାଳ) ଏବଂ କୋଡ଼ିଏବର୍ଷ ବା ତତୋଧିକ ବୟସ୍କ ହସ୍ତୀ ହିଁ ଗ୍ରହଣଯୋଗ୍ୟ ଅଟେ । (୬) ଗ୍ରହଣଅଯୋଗ୍ୟ ହସ୍ତୀ:—ବିକ୍କ (ଦୁଧପିଅଛୁଆ—ସ୍ତନ୍ୟପାୟୀ), ମୂଢ଼ (ହସ୍ତିନୀସମାନ ଦନ୍ତବିଶିଷ୍ଟ), ମତ୍କୁଣ (ଦନ୍ତରହିତ), ବ୍ୟାଧିତ (ରୋଗୀ),

ଗର୍ଭିଣୀ ଧେନୁକା ହସ୍ତିନୀ ଚାଗ୍ରାହ୍ୟାଃ । (୭) ସପ୍ତାରତ୍ନିରୁତ୍ସେଧୋ ନବାୟାମୋ ଦଶପରିଣାହଃ ପ୍ରମାଣତଶ୍ଚତ୍ୱାରିଂଶଦ୍‌ବର୍ଷୋ ଭବତ୍ୟୁତ୍ତମଃ । ତ୍ରିଂଶଦ୍‌ବର୍ଷୋ ମଧ୍ୟମଃ । ପଞ୍ଚବିଂଶତିବର୍ଷୋ ଅବରଃ । (୮) ତୟୋଃପାଦାବରେ ବିଧାବିଧିଃ । (୯) ଅରତ୍ନୌ ତଣ୍ଡୁଳ ଦ୍ରୋଣଃ । ଅର୍ଦ୍ଧାଢ଼କଂ ତୈଳସ୍ୟ । ସର୍ପିଷସ୍ତ୍ରୟଃ ପ୍ରସ୍ଥାଃ ଦଶପଳଂ ଲବଣସ୍ୟ । ମାଂସଂ ପଞ୍ଚାଶତ୍ ପଳକମ୍ । ରସସ୍ୟାଢ଼କଂ ଦ୍ୱିଗୁଣଂ ବା ଦଧ୍ନଃ ପିଣ୍ଡକ୍ଳେଦନାର୍ଥମ୍ । କ୍ଷାରଂ ଦଶପଳକମ୍ । ମଦ୍ୟସ୍ୟ ଆଢ଼କଂ ଦ୍ୱିଗୁଣଂ ବା ପୟସଃ ପ୍ରତିପାନମ୍ । ଗାତ୍ରାବସେକ ସ୍ତୈଳପ୍ରସ୍ଥଃ ଶିରସୋଷ୍ଟଭାଗଃ ପ୍ରାଦୀପିକଶ୍ଚ । ଯବସସ୍ୟ ଦ୍ୱୌ

---

ଗର୍ଭିଣୀ, ଧେନୁକା (ସ୍ତନପାନଦାୟିନୀ) ଓ ହସ୍ତିନୀ (ମାଈହାତୀ)ମାନେ ଅଗ୍ରାହ୍ୟ ଅଟନ୍ତି । (୭) ସାତହାତ ଉଚ୍ଚ, ନ'ହାତ ଲମ୍ବ ଓ ଦଶହାତ ମୋଟା ଥିବା ଚାଳିଶିବର୍ଷ ବୟସ୍କ ହସ୍ତୀ ଉତ୍ତମ, ତିରିଶିବର୍ଷ ବୟସ୍କ ହସ୍ତୀ ମଧ୍ୟମ ଓ ପଚିଶିବର୍ଷ ବୟସ୍କ ହସ୍ତୀ ଅଧମ ଅଟେ । (ବୟସ ଅନୁପାତରେ ମଧ୍ୟମ ଓ ଅଧମ ହସ୍ତିମାନଙ୍କ ଦୈର୍ଘ୍ୟ, ଉଚ୍ଚତା ଓ ଗୋଲେଇ ହିସାବ କରାଯିବ) । (୮) ଉପରୋକ୍ତ ଉତ୍ତମ ହସ୍ତିର ଭୋଜନଦ୍ରବ୍ୟ ପରିମାଣରୁ ଏକଚତୁର୍ଥାଂଶ ଭାଗ ଊଣାକରି ମଧ୍ୟମ ହସ୍ତିକୁ ଏବଂ ମଧ୍ୟମ ହସ୍ତିର ଭୋଜନଦ୍ରବ୍ୟ ପରିମାଣରୁ ଏକଚତୁର୍ଥାଂଶ ଊଣାକରି ଅଧମ ହସ୍ତିକୁ ଭୋଜନଦ୍ରବ୍ୟ ଦେବାକୁ ହେବ । (୯) ଉତ୍ତମ ହସ୍ତିର ଖାଦ୍ୟଦ୍ରବ୍ୟ ପରିମାଣ:—ସାତହାତ ଉଚ୍ଚ ଥିବା ଏକ ଉତ୍ତମ ହସ୍ତିର ଭୋଜନ ସକାଶେ ଚାଉଳ ଏକଦ୍ରୋଣ, ତେଲ ଅର୍ଦ୍ଧ-ଅଢ଼କ, ଘିଅ ତିନିପ୍ରସ୍ଥ, ଲବଣ ଦଶପଳ, ମାଂସ ପଞ୍ଚାଶପଳ, ଭୋଜନ ପଦାର୍ଥରେ ଗୋଳାଇବା ପାଇଁ ମାଂସ-ସଂସ୍କୃତ ରସ ଏକଅଢ଼କ କିମ୍ବା ଦହି ଦୁଇଅଢ଼କ, ଗୁଡ଼ ଦଶପଳ, ଅପରାହ୍ନର ପ୍ରତିପାନ ସକାଶେ ମଦ୍ୟ ଏକଅଢ଼କ କିମ୍ବା କ୍ଷୀର ଦୁଇଅଢ଼କ, ଦେହରେ ମର୍ଦ୍ଦନ କରିବା ସକାଶେ ତେଲ ଏକପ୍ରସ୍ଥ, ମସ୍ତକରେ ମର୍ଦ୍ଦନ କରିବା ତେଲ ଏହାର ଅଷ୍ଟମାଂଶ (ଅର୍ଦ୍ଧ କୁଡ଼ୁବ) ଓ ପ୍ରଦୀପ (ଦୀପଲଗାଇବା) ସକାଶେ ତେଲ ଅର୍ଦ୍ଧ କୁଡ଼ୁବ

---

* ଚାରିତୋଳାରେ ଏକପଳ; ଶହେପଳରେ ଏକତୁଳା; କୋଡ଼ିଏ ତୁଳାରେ ଏକଭାର ।

ଙ୍ଖରୌ ସପାଦୌ ଶଷ୍ପସ୍ୟଶୁଷ୍କସ୍ୟାର୍ଧତୃତୀୟୌ ଙ୍ଖରଃ । କଡ଼ଙ୍ଗ-ରସ୍ୟାନଯ୍ତ୍ୱମଃ ।

(୧୦) ସପ୍ତାରତ୍ନିନାତୁଲ୍ୟଭୋଜନୋଽଷ୍ଟାରତ୍ନିରତ୍ୟରାଳଃ ।
ଯଥାହସ୍ତମବଶେଷଃ ଷଡ଼ରତ୍ନିଃ ପଞ୍ଚରତ୍ନିଶ୍ଚ ।।

(୧୧) କ୍ଷୀର ଯାବସିକୋ ବଲ୍‌କଃ କ୍ରୀଡ଼ାର୍ଥଂ ଗ୍ରାହ୍ୟଃ । (୧୨) ସଂଜାତ ଲୋହିତା ପ୍ରତିଛନ୍ନା ସଂଲଗ୍ନପକ୍ଷା ସମକକ୍ଷ୍ୟା ବ୍ୟତିକୀର୍ଣ୍ଣମାଂସା ସମତଲ୍ପତଳା ଜାତଦ୍ରୋଣିକେତି ଶୋଭାଃ ।

---

ଦେବାକୁ ହେବ ଏବଂ କଞ୍ଚା ଶସ୍ୟାଦ ପଦାର୍ଥ ଦୁଇଭାର (ଗୃହହଟାର ପଳ), ସାଧାରଣ ଘାସ (ବାଲତୃଣ) ଅଢ଼ାଇଭାର, ଶୁଖିଲା ଘାସ ଅଢ଼ାଇଭାର ଓ କଡ଼ଙ୍ଗର ଅର୍ଥାତ୍ ଡାଳପତ୍ର ଯେତେ ଖାଇ ତୃପ୍ତ ହେବ ସେତେ ପରିମାଣେ ଦେବାକୁ ହେବ । (୧୦) ଅଠହାତ ଉଚ୍ଚ ଥିବା ହସ୍ତିକୁ 'ଅତ୍ୟରାଳ' କୁହାଯାଏ । ଏହାକୁ ସାତହାତ ଉଚ୍ଚ ଥିବା ହସ୍ତୀ ସଦୃଶ ଖାଦ୍ୟ ଦେବାକୁ ହେବ ଏବଂ ଛ'ହାତ ଓ ପାଞ୍ଚହାତ ଉଚ୍ଚ ଥିବା ହସ୍ତିମାନଙ୍କୁ ସେମାନଙ୍କ ଆକାର ଅନୁପାତରେ ଖାଦ୍ୟ ଦେବାକୁ ହେବ । (୧୧) କୌତୁହଳବଶତଃ ଯଦି ଦୁଧପିଉଥିବା ହାତୀଛୁଆକୁ କ୍ରୀଡ଼ା ସକାଶେ ଧରାଯାଏ, ତେବେ ସେ ଯେପରି ତୃପ୍ତ ହେବ ସେହିପରିମାଣର କ୍ଷୀର ଓ କଞ୍ଚା ଘାସ ବ୍ୟବସ୍ଥା କରିବାକୁ ହେବ । (୧୨) ଅସ୍ଥିଚର୍ମଯୁକ୍ତ ଓ ପ୍ରଥମାବସ୍ଥାରେ ରକ୍ତ କ୍ରମେ କ୍ରମେ ବୃଦ୍ଧି ପାଉଥିବା ହସ୍ତିର ଶୋଭାକୁ 'ସଂଜାତ ଲୋହିତା', କଞ୍ଚିଉ୍ ମାଂସ ଜାତହୋଇ ଅସ୍ଥିକୁ ଆବୃତ କରିବା ଶୋଭାକୁ 'ପ୍ରତିଚ୍ଛନ୍ନା', ମାଂସ ଦ୍ୱାରା ଦୁଇପଖା ଚିକ୍‌କଣ ଦେଖାଯିବା ଶୋଭାକୁ 'ସଂଲଗ୍ନପକ୍ଷା', ସର୍ବତ୍ର ସମାନଭାବେ ମାଂସ ପୂର୍ଣ୍ଣହୋଇ ଦେଖାଯିବା ଶୋଭାକୁ 'ସମକକ୍ଷ୍ୟା', ମାଂସ କେଉଁଠି ଉନ୍ନତ ଓ ଅନ୍ୟ କେଉଁଠି ଅବନତଭାବେ ବୃଦ୍ଧି ପାଇବାର ଶୋଭାକୁ 'ବ୍ୟତିକୀର୍ଣ୍ଣ ମାଂସା', ମେରୁହାଡ଼ର ଦୁଇପଖାରେ ସମଭାବେ ମାଂସ ବୃଦ୍ଧିପାଇ ଦେଖାଯିବା ଶୋଭାକୁ 'ସମତଲ୍ପତଳା', ମେରୁହାଡ଼ର ଦୁଇପଖାର ମାଂସ ଉନ୍ନତ ହେବା ଯୋଗୁଁ ମେରୁହାଡ଼ ଅବନତ ହୋଇ

(୧୩) ଶୋଭବଶେନ ବ୍ୟାୟାମଂ ଭଦ୍ରଂ ମନ୍ଦ୍ରଂ ଚ କାରୟେତ୍ ।
ମୃଗସଂକୀର୍ଣ୍ଣଲିଙ୍ଗଞ୍ଚ କର୍ମସ୍ୱୃତୁ ବଶେନ ବା ॥

## ଦ୍ୱାତ୍ରିଂଶୋଽଧ୍ୟାୟଃ

## ଅଷ୍ଟଚତ୍ୱାରିଂଶତ୍ ପ୍ରକରଣମ୍—ହସ୍ତ୍ୟଧ୍ୟକ୍ଷଃ-ହସ୍ତିପ୍ରଚାରଃ

### THE TRAINING OF ELEPHANTS

( ହସ୍ତିମାନଙ୍କୁ ଶିକ୍ଷାଦେବା ପ୍ରଣାଳୀ )

(୧) କର୍ମସ୍କନ୍ଧାଃ ଚତ୍ୱାରଃ ଦମ୍ୟଃ ସାନ୍ନାହ୍ୟ ଔପବାହ୍ୟୋ ବ୍ୟାଳଶ୍ଚ । (୨) ତତ୍ରଦମ୍ୟ ପଞ୍ଚବଧଃ—ସ୍କନ୍ଧଗତଃ ସ୍ତମ୍ଭଗତୋ

---

ଦେଖାପିବା ଶୋଭାକୁ 'ଜାତଦ୍ରୋଣିକ' କୁହାଯାଏ । (୧୩) ଉପରୋକ୍ତ ଅବସ୍ଥା ଅନୁସାରେ ଭଦ୍ର (ଉତ୍ତମ), ମନ୍ଦ (ମଧ୍ୟମ) ଓ ଅଧମ ଭଦ୍ରାଦି ହସ୍ତିମାନଙ୍କଠାରୁ ଜାତ ହୋଇଥିବା ସଙ୍କରହସ୍ତିପ୍ରଭୃତି ନାନାପ୍ରକାର ହସ୍ତିମାନଙ୍କୁ ସାନ୍ନାହ୍ୟ ଓ ଔପବାହ୍ୟାଦି ବ୍ୟାୟାମ ଶିକ୍ଷା ଦିଅଇବେ ଅଥବା ଶରଦାଦି ଅନୁସ୍ତୁକାଳରେ ମଧ୍ୟ ଏହିପରି ହସ୍ତିମାନଙ୍କୁ ବ୍ୟାୟାମ ଶିକ୍ଷା ଦିଅଇବେ ।

ଇତି କୌଟଲ୍ୟୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଏକତ୍ରିଂଶୋଽଧ୍ୟାୟଃ—ହସ୍ତ୍ୟଧ୍ୟକ୍ଷଃ—ଆଦିତୋ ଦ୍ୱିପଞ୍ଚାଶଃ ।

—o—

(୧) ଶିକ୍ଷାଭେଦରେ ହସ୍ତୀ ଚାରିପ୍ରକାର । ଯଥା—ଦମ୍ୟ, ସାନ୍ନାହ୍ୟ, ଔପବାହ୍ୟ ଓ ବ୍ୟାଳ । (୨) ଦମ୍ୟହସ୍ତୀ ପାଞ୍ଚପ୍ରକାର—ସ୍କନ୍ଧଗତ, ସ୍ତମ୍ଭଗତ, ବାରିଗତ, ଅବପାତଗତ ଓ ଯୂଥଗତ । ଯେଉଁ ହସ୍ତୀ ସ୍କନ୍ଧାରୋହପ୍ରବଣ ଅର୍ଥାତ୍ ସ୍କନ୍ଧରେ ଆରୋହଣ କରାଇବାକୁ ସୁଖୋପାଏ ତା'କୁ 'ସ୍କନ୍ଧଗତ'; ଯେଉଁ ହସ୍ତୀ 'ଆଳାନ' ସ୍ତମ୍ଭରେ ବନ୍ଧନ ସହ୍ୟକରେ ତା'କୁ 'ସ୍ତମ୍ଭଗତ'; ଯେଉଁ ହସ୍ତୀ ଅନ୍ୟ ହସ୍ତିଗ୍ରହଣ ଭୂମିରେ ସରଳଭାବରେ ପ୍ରବେଶ କରେ ତାକୁ

ବାରଗତୋଽବପାତଗତୋ ଯୂଥଗତଶ୍ଚେତି । ତସ୍ୟୋପବର୍ଗଃ ଶୌବ୍ଲକର୍ମ । (୩) ସାନ୍ନାହ୍ୟଃ ସପ୍ତକ୍ରିୟାପଥଃ—ଉପସ୍ଥାନଂ ସଂବର୍ତ୍ତନଂ ସଂଯାନଂ ବଧାବଧୋ ହସ୍ତିଯୁଦ୍ଧଂ ନାଗରାୟଣଂ ସାଂଗ୍ରାମିକଂ ଚ । ତସ୍ୟୋପବର୍ଗଃ କକ୍ଷ୍ୟାକର୍ମ ଗ୍ରୈବେୟକର୍ମ ଯୂଥକର୍ମ ଚ । (୪)

'ବାରଗତ'; ଯେଉଁ ହସ୍ତୀ ତୃଣାଚ୍ଛାଦିତ କଳ୍ପିତଗର୍ତ୍ତ ଭିତରକୁ ଅର୍ଥାତ୍ ଅନ୍ୟ ହସ୍ତୀ ଧରିବାର ଗଡ଼ା ଭିତରକୁ ଗମନକରେ ତାକୁ 'ଅବପାତଗତ' ଏବଂ ଯେଉଁ ହସ୍ତୀ ହସ୍ତିନୀଯୂଥରେ ପ୍ରବେଶ କରି ବିହାର କରେ ତାକୁ 'ଯୂଥଗତ' କୁହାଯାଏ । ଏହି ଦମ୍ୟ ହସ୍ତିମାନଙ୍କର ଉପବର୍ଗର ବା ଉପଚରଣ, ଶିକ୍ଷ ଅର୍ଥାତ୍ ହସ୍ତିଶାବକମାନଙ୍କର ଉପଚରଣପରି କ୍ଷୀରଯବସରକ୍ଷୁ-କାଣ୍ଡାଦିଦ୍ୱାରା କରିବାକୁ ହେବ । (୩) ସାନ୍ନାହ୍ୟହସ୍ତିର (ଯୁଦ୍ଧ ସକାଶେ ତାଲିମପ୍ରାପ୍ତ ହସ୍ତିର) କ୍ରିୟାମାର୍ଗ ସାତପ୍ରକାର—ଉପସ୍ଥାନ, ସଂବର୍ତ୍ତନ, ସଂଯାନ, ବଧାବଧ, ହସ୍ତିଯୁଦ୍ଧ, ନାଗରାୟଣ ଓ ସାଂଗ୍ରାମିକ । ଅଗପଛର ଅବୟବମାନଙ୍କୁ ସଙ୍କୋଚ ପ୍ରସାରଣ ପୂର୍ବକ ଧ୍ୱଜ, ଉଲ୍କା (ଅଗ୍ନିପିଣ୍ଡ), ବେଣୁ (ବାଉଁଶ) ଓ ରଜ୍ଜୁ (ଦଉଡ଼ି) ଇତ୍ୟାଦିର ଲଙ୍ଘନକୁ 'ଉପସ୍ଥାନ'; ସଙ୍କେତ ଅନୁସାରେ ଶୟନ, ଉପବେଶନ, ରେଖାଗତି ଓ ବିଷମ ସ୍ଥାନ ଲଙ୍ଘନାଦି ଭୂମିକର୍ମକୁ 'ସଂବର୍ତ୍ତନ'; ସରଳ, ବକ୍ର ଓ ଗୋମୂତ୍ରିକାଦି ଗତି-ବିଶେଷକୁ 'ସଂଯାନ'; ଶୁଣ୍ଡ, ଦନ୍ତ ଓ ଦେହ ସାହାଯ୍ୟରେ ଅଶ୍ୱ, ଅଶ୍ୱାରୋହୀ, ମନୁଷ୍ୟ ଓ ରଥାରୋହୀମାନଙ୍କୁ ମାରିବା ଧରିବାକୁ 'ବଧାବଧ'; ସମବଳ ଓ ହୀନବଳ ହସ୍ତିମାନଙ୍କ ସହିତ ବରଣ୍ଡକାଦି ଅମିଷ ସହଯୋଗରେ 'ଜ୍ୱାଳାପିଣ୍ଡିକ' ନାମକ ଯୁଦ୍ଧକୁ 'ହସ୍ତିଯୁଦ୍ଧ'; ଗୋପୁର (ମୁଖଶାଳା), ଅଟ୍ଟାଳକ ଓ ପରିଘ (ଗୁମ୍ବଜ) ଇତ୍ୟାଦି ଭଗ୍ନକରିବାକୁ 'ନାଗରାୟଣ' ଏବଂ ସୌପ୍ତିକାଦି ପ୍ରକାଶ୍ୟ ଯୁଦ୍ଧକୁ 'ସାଂଗ୍ରାମିକ' କୁହାଯାଏ । ସାନ୍ନାହ୍ୟ ହସ୍ତିର ଉପଚରଣଃ— କକ୍ଷ୍ୟାକର୍ମ ଅର୍ଥାତ୍ ବରତ୍ରାବନ୍ଧନ ଶିଳ୍ପ (ହସ୍ତିର ବେକରେ ଦଉଡ଼ି ବାନ୍ଧିବା କୌଶଳ), ଗ୍ରୈବେୟ କର୍ମ (କଳାପକାଦି ଗଳଅଳଙ୍କାର ବନ୍ଧନ କୌଶଳ) ଓ ଯୂଥକର୍ମ ଅର୍ଥାତ୍ ହସ୍ତିଶାସ୍ତ୍ରୋକ୍ତ ପୂର୍ବକାୟୋନ୍ନତତ୍ୱରୁ ଅପରକାୟ ଉନ୍ନତତ୍ୱ ଓ ସମକାୟତ୍ୱାଦି ଚିହ୍ନଦ୍ୱାରା ଗିରିଚରାଦି ଯୂଥାନ୍ତର୍ଗତ ବିଷୟ ଅବଗତପୂର୍ବକ ତତ୍ତଦ୍ୟୂଥାନୁଗୁଣକର୍ମରେ ନିଯୋଜନ । (୪) ଔପବାହ୍ୟ

**ଔପବାହ୍ୟୋଽଷ୍ଟବିଧଃ—ଆଚରଣଃ, କୁଞ୍ଜରୌପବାହ୍ୟଃ, ଧୋରଣଃ, ଆଧାନଗତିକଃ, ଯଷ୍ଟ୍ୟୁପବାହ୍ୟଃ, ତୋତ୍ତ୍ରୋପବାହ୍ୟଃ, ଶୁଦ୍ଧୋପବାହ୍ୟଃ ମାର୍ଗାୟୁକଶ୍ଚେତି । ତସ୍ୟୋପବିଚାରଃ—ଶାରଦକର୍ମ ହୀନକର୍ମ ନାରୋଷ୍ଟ୍ରକର୍ମ ଚ । (୫) ବ୍ୟାଳ ଏକକ୍ରିୟୋପଥଃ—ତସ୍ୟୋପବିଚାର ଆୟମ୍ୟୈକରକ୍ଷଃ କର୍ମଶଙ୍କିତୋଽବରୁଦ୍ଧୋ ବିଷମଃ**

---

ଅଠପ୍ରକାର:—ଅଗ୍ରଭାଗ ଉନ୍ନତ ଅବନତ ଓ ପଶ୍ଚାଦ୍ଭାଗ ଉନ୍ନତଅବନତାଦି ଚଳଗତି ଅନୁସରଣକାରୀ ହସ୍ତିକୁ 'ଆଚରଣ', ଅନ୍ୟ ହସ୍ତିସହିତ ଔପବାହ୍ୟାଦିକର୍ମରତ ହସ୍ତିକୁ 'କୁଞ୍ଜରୌପବାହ୍ୟ', ଏକାଦିଗ ବା ପକ୍ଷୀ ସାହାଯ୍ୟରେ ସବୁକର୍ମକର ହସ୍ତିକୁ 'ଧୋରଣ', ଦୁଇ ବା ତିନିପ୍ରକାର ଗତିକାରୀ ଓ ନାନାବିଧ ଗତିକାରୀ ହସ୍ତିକୁ ଆଧାନଗତିକ, କେବଳ ଯଷ୍ଟି (ଠେଙ୍ଗା) ପ୍ରହାର ଉପରେ କାର୍ଯ୍ୟକରିବା ହସ୍ତିକୁ ଯଷ୍ଟ୍ୟୁପବାହ୍ୟ, କଣ୍ଟା ଲଗିଥିବା ଯଷ୍ଟି କିମ୍ବା ଅଙ୍କୁଶ ଉପରେ କାର୍ଯ୍ୟ କରିବା ହସ୍ତିକୁ 'ତୋତ୍ରୋ-ପବାହ୍ୟ', ଯଷ୍ଟି ଓ କଣ୍ଟକଯଷ୍ଟି ବ୍ୟତୀତ କେବଳ ପଦାଘାତାଦି ସଙ୍କେତ ଦ୍ୱାରା ସମସ୍ତ କାର୍ଯ୍ୟ କରିବା ହସ୍ତିକୁ 'ଶୁଦ୍ଧୋପବାହ୍ୟ' ଏବଂ ମୃଗୟାକର୍ମ ଶିକ୍ଷିତ ଶିକାରୀ ହସ୍ତିକୁ 'ମାର୍ଗାୟୁକ' କୁହାଯାଏ ।

ଔପବାହ୍ୟ ହସ୍ତିର ଉପବିଚାର ତିନିପ୍ରକାର । ଯଥା—ଶାରଦକର୍ମ, ହୀନକର୍ମ ଓ ନାରୋଷ୍ଟ୍ରକର୍ମ । ସ୍ଥୂଳ, କୃଶ, ଲୋହିତ ଓ ପ୍ରାକୃତ ଭେଦରେ 'ଶାରଦକର୍ମ' ଚାରିପ୍ରକାର । ସ୍ଥୂଳହସ୍ତିକୁ କୃଶ କରିବା, କୃଶ ହସ୍ତିକୁ ସ୍ଥୂଳ କରିବା, ଲୋହିତ ଅର୍ଥାତ୍ ମନ୍ଦାଗ୍ନି ହସ୍ତିର ଅଗ୍ନିଦୀପନ କରିବା ଏବଂ ପ୍ରକୃତିସ୍ଥ ହସ୍ତିର ସ୍ୱାସ୍ଥ୍ୟରକ୍ଷା କରିବାକୁ 'ଶାରଦକର୍ମ'; ବ୍ୟାୟାମ (କସରତ) କରୁନଥିବା ହସ୍ତିକୁ ବ୍ୟାୟାମଶିକ୍ଷା ଦେବାକୁ 'ହୀନକର୍ମ' ଏବଂ ସଞ୍ଜ୍ଞା ଅର୍ଥାତ୍ ସଙ୍କେତ ଅନୁସାରେ ଗତିଶିକ୍ଷଣକୁ 'ନାରୋଷ୍ଟ୍ରକର୍ମ' କୁହାଯାଏ । (୫) 'ବ୍ୟାଳ' ଅର୍ଥାତ୍ ଦୁଷ୍ଟହସ୍ତୀ କେବଳ ଗୋଟିଏ ମାର୍ଗରେ ଶିକ୍ଷାପାଇଥାଏ । ଏହାକୁ ଗୋଟିଏ ନିୟମରେ କିମ୍ବା କେବଳ ଏକମାତ୍ର ଦଣ୍ଡଦ୍ୱାରା ହିଁ ରକ୍ଷା କରାଯାଏ । ଏହି ହସ୍ତୀ କର୍ମଶଙ୍କିତ (ଶିକ୍ଷା ସମୟରେ ଇତସ୍ତତ କିମ୍ବା ଶିକ୍ଷାପାଇବାକୁ ଅନିଚ୍ଛୁକ), ଅବରୁଦ୍ଧ (ଶିକ୍ଷା ସକାଶେ ଅନୁପଯୋଗୀ ହେବା

---

* ଶାରଦ—ଅପ୍ରତିଭ

ପ୍ରଭିନ୍ନଃ ପ୍ରଭିନ୍ନବିନଷ୍ଟଚେଷ୍ଟୋ ମଦହେତୁ ବିନଷ୍ଟଚେଷ୍ଟଶ୍ଚ । (୭) କ୍ରିୟା-ବିପନ୍ନୋ ବ୍ୟାଳଃ । ଶୁଦ୍ଧଃ ସୁବ୍ରତୋ ବିଷମଃ ସର୍ବଦୋଷ ପ୍ରଦୁଷ୍ଟଶ୍ଚ । ତେଷାଂ ବନ୍ଧନୋପକରଣମନୀକସ୍ଥପ୍ରମାଣମ୍, ଆଳାନ ଗ୍ରୈବେୟକକ୍ଷ୍ୟା ପାରାୟଣପରିକ୍ଷେପୋତ୍ତରାଦିକଂ ବନ୍ଧନମ୍, ଅଙ୍କୁଶବେଣୁଯନ୍ତ୍ରାଦିକମୁପକରଣମ୍, ବୈଜୟନ୍ତୀକ୍ଷୁରପ୍ରମାଳାସ୍ତରଣ-କୁଥାଦିକଂ ଭୂଷଣମ୍, ବର୍ମତୋମରଶରାବାପଯନ୍ତ୍ରାଦିକଃ

---

ଯୋଗୁଁ ଉପେକ୍ଷିତ), ବିଷମ (ଯଦୃଚ୍ଛାନୁଷ୍ଠାୟୀ ଅର୍ଥାତ୍ ଇଚ୍ଛାନୁଯାୟୀ କାର୍ଯ୍ୟକାରୀ), ପ୍ରଭିନ୍ନ (ମଦଦୋଷଦୁଷ୍ଟ), ପ୍ରଭିନ୍ନ ବିନଷ୍ଟଚେଷ୍ଟ (ମଦ ହେତୁରୁ ଭୋଜନାଦି ଦୋଷରୁ ବ୍ୟାକୁଳୀଭୂତ), ମଦହେତୁ ବିନଷ୍ଟଚେଷ୍ଟ (ସର୍ବଦା ମଦମତ୍ତ ହେତୁରୁ ଯାହାର ମଦର କାରଣ ଅଜ୍ଞାତ)—ଏପରି ସାତପ୍ରକାର ବ୍ୟାଳହସ୍ତୀ ଅର୍ଥାତ୍ ଦୁଷ୍ଟହସ୍ତୀଙ୍କୁ କେବଳ ଦଣ୍ଡଦ୍ୱାରାହିଁ ରକ୍ଷା କରାଯାଏ । (୭) ଦୁଷ୍ଟକର୍ମଦ୍ୱାରା ଦୂଷିତ ହସ୍ତିକୁ 'ବ୍ୟାଳ' କୁହାଯାଏ । ବିଶେଷତଃ କେବଳ ଘାତୁକ (୧୮ ଗୋଟି ଦୋଷଯୁକ୍ତ) ହସ୍ତିକୁ 'ଶୁଦ୍ଧ', କେବଳ ଗୂଳକ (୧୫ ଗୋଟି ଦୋଷଯୁକ୍ତ) ହସ୍ତିକୁ 'ସୁବ୍ରତ', ଘାତକ ଓ ଗୂଳକ (ଶୁଦ୍ଧ-ସୁବ୍ରତ) ଉଭୟ ଦୋଷଯୁକ୍ତ ହସ୍ତିକୁ 'ବିଷମ' ଏବଂ ଉପରୋକ୍ତ ତେତିଶଗୋଟି ଦୋଷ ଓ ନିଜର ଉଣିଶି ପ୍ରକାର ଦୋଷଯୁକ୍ତ ହସ୍ତିକୁ 'ସର୍ବଦୋଷ ପ୍ରଦୁଷ୍ଟ' କୁହାଯାଏ ।

ହସ୍ତିମାନଙ୍କର ବନ୍ଧନ ଉପକରଣ ହସ୍ତିଶିକ୍ଷାବିଚକ୍ଷଣମାନଙ୍କ ଉପଦେଶ ଅନୁସାରେ କରିବାକୁ ହେବ । ଆଳାନ (ହସ୍ତିବନ୍ଧନ ସ୍ତମ୍ଭ), ଗ୍ରୈବେୟ (କଣ୍ଠଭୂଷଣ ଶିକୁଳି ପ୍ରଭୃତି), କକ୍ଷା (ବରଣା—କାଖରେ ବନ୍ଧାହେବା ମୋଟା ଦଉଡ଼ି), ପାରାୟଣ (ଚଢ଼ିବା ପାଇଁ ଲମ୍ବିଥିବା ଦଉଡ଼ି), ପରିକ୍ଷେପ (ପାଦପାଶ), ଉତ୍ତର (ବେକରେ ବନ୍ଧାହେବା ଉତ୍ତରୀୟ ଦଉଡ଼ି) ଇତ୍ୟାଦି ବନ୍ଧନ ଏବଂ ଅଙ୍କୁଶ, ବାଉଁଶ ଓ ପଞ୍ଜାଳିକାଯନ୍ତ୍ରାଦି ଉପକରଣ, ବୈଜୟନ୍ତୀ (ହସ୍ତୀ ପତାକା), କ୍ଷୁରପ୍ରମାଳା (ନକ୍ଷତ୍ରମାଳା), ଅସ୍ତରଣ (ପିଠିରେ ପକାହେବା କମ୍ବଳ) ଓ କୁଥ (ବର୍ଣ୍ଣକମ୍ବଳ ବା ଝାଲର), ଘଣ୍ଟା ପ୍ରଭୃତି ଅଳଙ୍କାର ଏବଂ ବର୍ମ (କବଚ ବା ସାଞ୍ଜୁ), ତୋମର (ଗୁରହାତ ଲମ୍ବର ଅୟୁଧ), ଶରାବାପ (ତୁଣୀରଯନ୍ତ୍ର) ପ୍ରଭୃତି ଯୁଦ୍ଧୋପଯୋଗୀ ଅଳଙ୍କାର ଅଟେ ।

ସାଂଗ୍ରାମିକାଲଂକାରଃ । (୭) ଚିକିତ୍ସକାନୀକସ୍ଥାରୋହକାଧୋରଣ-ହସ୍ତିପକୌପଚାରିକବିଧାପାଚକଯାବସିକପାଦପାଶିକକୁଟୀରକ୍ଷକୌ—ପଶାୟିକାଦିରୌପସ୍ଥାୟିକ ବର୍ଗଃ । (୮) ଚିକିତ୍ସକ-କୁଟୀରକ୍ଷବିଧାପାଚକାଃ ପ୍ରସ୍ଥୌଦନଂ ସ୍ନେହପ୍ରସୃତିଂ କ୍ଷାରଲବଣ-ୟୋଶ୍ଚ ଦ୍ୱିପଲିକଂ ହରେୟୁଃ । ଦଶପଲଂ ମାଂସସ୍ୟାନ୍ୟତ୍ର ଚିକିତ୍ସକେଭ୍ୟଃ । (୯) ପଥିବ୍ୟାଧିକର୍ମମଦଜରାଭିତପ୍ତାନାଂ ଚିକିତ୍ସକାଃ ପ୍ରତିକୁର୍ୟୁଃ । (୧୦) ସ୍ଥାନସ୍ୟାଶୁଦ୍ଧିର୍ୟବସସ୍ୟାଗ୍ରହଣଂ ସ୍ଥଲେ ଶାୟନମଭାଗେ ଘାତଃ ପରାରୋହଣମକାଲେ ଯାନମଭୂମାବତୀର୍ଥେ

---

(୭) ଚିକିତ୍ସକ (ଗଜବୈଦ୍ୟ), ଅନୀକସ୍ଥ (ଗଜଶିକ୍ଷକ), ଆରୋହକ (ଶାସ୍ତ୍ରଜ୍ଞ ଗଜାରୋହୀ), ଆଧୋରଣ (ହସ୍ତିଶାସ୍ତ୍ର ଅଭିଜ୍ଞ—କର୍ମକୁଶଳ ବ୍ୟକ୍ତି), ହସ୍ତିପକ (ହସ୍ତିରକ୍ଷକ), ଔପଚାରିକ (ଚରାଇବା, ଘଷାମଜା କରିବା, ତେଲମର୍ଦ୍ଦନ କରିବା ବ୍ୟକ୍ତି), ବିଧାପାଚକ (ଆହାର ପାଚକ), ଯାବସିକ (କଞ୍ଚାଘାସ ଓ ଡାଳପତ୍ର ଯୋଗାଇବା ବ୍ୟକ୍ତି), ପାଦପାଶିକ (ପାଦବନ୍ଧନ-କାରକ), କୁଟୀରକ୍ଷକ (ଶାଳପାଳନ ଓ ସଫେଇ କରିବା ବ୍ୟକ୍ତି) ଓ ଔପଶାୟିକ (ଶୟନଶାଳାରେ କାର୍ଯ୍ୟକରିବା ବ୍ୟକ୍ତି) ଇତ୍ୟାଦିଙ୍କୁ ଔପସ୍ଥାୟିକ-ବର୍ଗ ଅର୍ଥାତ୍ କର୍ମକରବର୍ଗ (ହସ୍ତିସେବକବର୍ଗ) କୁହାଯାଏ । (୮) ଚିକିତ୍ସକ, କୁଟୀରକ୍ଷକ ଓ ବିଧାପାଚକମାନେ ଅନ୍ନ ଏକପ୍ରସ୍ଥ, ତେଲ ଓ ଘୃତ ଅର୍ଦ୍ଧଅଞ୍ଜଳି, ଗୁଡ଼ ଓ ଲବଣ ଦୁଇପଲ ହସ୍ତିଆହାରପଦାର୍ଥରୁ ଗ୍ରହଣ କରିବେ (ଅର୍ଥାତ୍ ହସ୍ତିକୁ ଦିଆଯାଇଥିବା ଖାଦ୍ୟପଦାର୍ଥରୁ ଗ୍ରହଣ କରିବେ) ଏବଂ ଚିକିତ୍ସକ ବ୍ୟତୀତ କୁଟୀରକ୍ଷକ ଓ ବିଧାପାଚକ ଏ ଦୁହେଁ ପ୍ରତ୍ୟେକେ ଦଶପଲ ମାଂସ ମଧ୍ୟ ଗ୍ରହଣ କରିବେ । (୯) ମାର୍ଗଗମନ, ବ୍ୟାଧି, ଯୁଦ୍ଧ-ଯାନାଦିରେ ଅତ୍ୟଧିକ ପରିଶ୍ରମ, ମଦ ଓ ଜରାବସ୍ଥା (ବୃଦ୍ଧାବସ୍ଥା) ଯୋଗୁଁ ଅଭିତପ୍ତ ହୋଇଥିବା (ଅବଶ ହୋଇଥିବା) ହସ୍ତିମାନଙ୍କୁ ଗଜବୈଦ୍ୟ ଚିକିତ୍ସା କରିବେ । (୧୦) ହସ୍ତୀ ଶୋଇବା ସ୍ଥାନ ସଫା ନକରିବା, ଘାସ, କଞ୍ଚାଘାସ ଓ ଡାଳପତ୍ର ନ ଯୋଗାଇବା, ତଳେ ଶୁଆଇବା, ଅସ୍ଥାନରେ ଅର୍ଥାତ୍ ମର୍ମସ୍ଥାନରେ ଆଘାତ କରିବା, ଚଢ଼ିବାକୁ ଅଧିକାର ନଥିବା ବ୍ୟକ୍ତିକୁ ଚଢ଼ାଇବା, ଅସମୟରେ ଚଲାଇବା, ଖାଲଢିପ ସ୍ଥାନରେ ଚଲାଇବା,

ବତାରଣଂ ତରୁଷଣ୍ଡ ଇତ୍ୟତ୍ୟୟସ୍ଥାନାନ । ତମ୍ ଏଷାଂ ଭକ୍ତ ବେତନାଦାଦଦୀତ ।

(୧୧) ତସ୍ରୋ ନୀରାଜନାଃ କାର୍ଯାଶ୍ଚାତୁର୍ମାସ୍ୟତୁସନ୍ଧିଷୁ ।
ଭୂତାନାଂ କୃଷ୍ଣସନ୍ଧୀଜ୍ୟାଃ ସେନାନ୍ୟଃ ଶୁକ୍ଳସନ୍ଧିଷୁ ॥

(୧୨) ଦନ୍ତମୂଳପରୀଣାହ ଦ୍ୱିଗୁଣଂ ପ୍ରୋଜ୍‌ଝ୍ୟ କଳ୍ପୟେତ୍ ।
ଅବ୍‌ଦେବ୍‌ଦ୍ୟର୍ଦ୍ଧେ ନଦୀଯାନାଂ ପଞ୍ଚାବ୍‌ଦେ ପର୍ବତୌକସାମ୍ ॥

---

ଅଣଓଠରେ ଓହ୍ଲାଇବା, ଗଛ ଗହଳରେ ପୂରାଇବା ଇତ୍ୟାଦ କାର୍ଯ ହସ୍ତିସେବକବର୍ଗ ଓ ହସ୍ତ୍ୟଧ୍ୟକ୍ଷଙ୍କର ଦଣ୍ଡର କାରଣ ଅଟେ । ଏହ ଦଣ୍ଡ ସେମାନଙ୍କ ବେତନ ଓ ଭତ୍ତାରୁ ଗ୍ରହଣ କରବାକୁ ହେବ । (୧୧, ୧୨) ହସ୍ତିମାନଙ୍କର ବଳବୃଦ୍ଧି ଓ ଦୁରବସ୍ଥାନ୍ତ ସକାଶେ ସେମାନଙ୍କୁ ବର୍ଷର ପ୍ରତ ଚାରମାସର ପୂର୍ଣ୍ଣିମାରେ ଓ ଋତୁସନ୍ଧ ଅର୍ଥାତ୍ କାର୍ତ୍ତିକ, ଫାଲ୍‌ଗୁନ ଓ ଆଷାଢ଼ମାସରେ ତନଥର ନୀରାଜନା (ଆରତୀ) କରବେ । କୃଷ୍ଣସନ୍ଧରେ (ଅମାବାସ୍ୟାରେ) ଭୂତବଳ ଏବଂ ଶୁକ୍ଳସନ୍ଧରେ (ପୂର୍ଣ୍ଣିମାରେ) କାର୍ତ୍ତିକେୟଙ୍କୁ ପୂଜାକରବେ । ହସ୍ତିର ଦନ୍ତମୂଳ ବେଢ଼ର ଦୁଇଗୁଣ ଦନ୍ତମୂଳ ଛାଡ଼ି କଟାଇବାକୁ ହେବ । ନଦୀନକଟରେ ରହୁଥିବା ହସ୍ତିମାନଙ୍କ ଦନ୍ତ ପ୍ରତ ଅଢ଼େଇବର୍ଷରେ ଥରେ ଏବଂ ପର୍ବତରେ ରହୁଥିବା ହସ୍ତିମାନଙ୍କ ଦନ୍ତ ପ୍ରତ ପାଞ୍ଚବର୍ଷରେ ଥରେ କଟାଇବାକୁ ହେବ ।

ଇତ କୌଟଲ୍ୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଦ୍ୱାତ୍ରିଂଶୋଽଧ୍ୟାୟଃ—ହସ୍ତ୍ୟଧ୍ୟକ୍ଷଃ ହସ୍ତିପ୍ରଚାରଃ—ଅଦାତସ୍ତ୍ରିପଞ୍ଚାଶଃ ।

# ତ୍ରୟଃତ୍ରିଂଶୋଽଧ୍ୟାୟଃ

## ଊନପଞ୍ଚାଶ, ପଞ୍ଚାଶ, ଏକପଞ୍ଚାଶତ୍ ପ୍ରକରଣମ୍

## ରଥାଧ୍ୟକ୍ଷଃ, ପତ୍ତ୍ୟଧ୍ୟକ୍ଷଃ, ସେନାପତି ପ୍ରଚାରଃ ।

## THE SUPERINTENDENT OF CHARIOTS, THE SUPERINTENDENT OF INFANTRY AND THE DUTIES OF THE COMMANDER-IN-CHIEF.

( ରଥର ଅଧ୍ୟକ୍ଷ, ପଦାତିମାନଙ୍କ ଅଧ୍ୟକ୍ଷ ଓ ସେନାପତିଙ୍କ କାର୍ଯ୍ୟନିରୂପଣ )

(୧) ଅଶ୍ୱାଧ୍ୟକ୍ଷେଣ ରଥାଧ୍ୟକ୍ଷୋ ବ୍ୟାଖ୍ୟାତଃ । ସରଥ-କର୍ମାନ୍ତାନ୍ କାରୟେତ୍ । (୨) * ଦଶପୁରୁଷୋ ଦ୍ୱାଦଶାନ୍ତରୋ ରଥଃ । ତସ୍ମାଦେକାନ୍ତରାବରା ଆ ଷଡ଼ନ୍ତରାଦିତି ସପ୍ତ ରଥାଃ । (୩) ଦେବରଥପୁଷ୍ୟରଥସାଂଗ୍ରାମିକପାରିଯାଣିକପରପୁରାଭିଯାନିକ

(୧) ଅଶ୍ୱାଧ୍ୟକ୍ଷଙ୍କ ବିଧାନ ଅନୁସାରେ ରଥାଧ୍ୟକ୍ଷ ମଧ୍ୟ ରଥମାନଙ୍କ ଶାଳା ନିବେଶନ, ତୈଳପ୍ରଭୃତି ଦାନ, କାର୍ଯ୍ୟରେ ନିଯୁକ୍ତି ଓ ବିଶ୍ରାମ, ପଥ ପରିକଳ୍ପନା, ଘୋଡ଼ାର ଗୃହନ୍ଥି ପ୍ରଭୃତି ଅଳଙ୍କାର ଓ ରଜ୍ଜୁ (ଦଉଡ଼ି) ପ୍ରଭୃତି ବନ୍ଧନଉପକରଣସଂଗ୍ରହ, ଭୃତ୍ୟନିୟୋଗ ଓ ମାର୍ଜନା ଇତ୍ୟାଦି କରାଇବେ । ଅଧିକନ୍ତୁ ରଥନିର୍ମାଣ ଓ ରଥସଂସ୍କାର କାର୍ଯ୍ୟ ମଧ୍ୟ ରଥାଧ୍ୟକ୍ଷ କରାଇବେ । (୨) ବାର ଅଙ୍ଗୁଳ ଲମ୍ବର ବିତସ୍ତିକୁ ( ଏକବୃଖଣ୍ଡକୁ ) 'ଛାୟାପୁରୁଷ' କୁହାଯାଏ । ଏହିପରି ଦଶ ଛାୟାପୁରୁଷ ଅର୍ଥାତ୍ ୧୨୦ ଅଙ୍ଗୁଳ ବା ପାଞ୍ଚହାତ ଲମ୍ବ ଓ ବାର ଛାୟାପୁରୁଷ ଅର୍ଥାତ୍ ଛ'ହାତ ଓସାର ଥିବା ରଥକୁ 'ଉତ୍ତମ ରଥ' କୁହାଯାଏ । ଏହି ଲମ୍ବ ଓସାରରୁ ଏକ ଏକ ଛାୟାପୁରୁଷ ଅର୍ଥାତ୍ ଏକ ଏକ ବୃଖଣ୍ଡ ଊଣାକରି ଆଉ ଛ'ପ୍ରକାର ରଥ ନିର୍ମାଣ କଲେ ସର୍ବମୋଟ ସାତପ୍ରକାର ରଥ ନିର୍ମିତ ହୁଏ । (୩) ଯାହା ଉତ୍ସବାଦିରେ ଦେବତା ପ୍ରତିମାକୁ ପରିକ୍ରମା ସକାଶେ ବିନିଯୋଗ କରାଇବା

* ଦ୍ୱାଦଶାଙ୍ଗୁଲୋ ବିତସ୍ତିଶ୍ଛାୟାପୌରୁଷଂ ଚ । ଇତି ଦ୍ୱାଦଶାଙ୍ଗୁଲୋ ଯଃ ପୁରୁଷ ସ୍ତତ୍ ପ୍ରମାଣଃ ।

ବୈନୟିକାଂଶ୍ଚ ରଥାନ୍ କାରୟେତ୍ । (୪) ଇଷ୍ୱସ୍ତ୍ରପ୍ରହରଣା-ବରଣୋପକରଣକଳ୍ପନାଃ ସାରଥିରଥିକରଥ୍ୟାନାଂ ଚ କର୍ମସ୍ୱା-ଯୋଗଂ ବିଦ୍ୟାତ୍ । ଆ କର୍ମଭ୍ୟଶ୍ଚ ଭକ୍ତବେତନଂ ଭୃତାନା-ମଭୃତାନାଂ ଚ ଯୋଗ୍ୟାରକ୍ଷାନୁଷ୍ଠାନମର୍ଥମାନକର୍ମ ଚ । (୫)

---

ରଥକୁ 'ଦେବରଥ', ବିବାହାଦି ମାଙ୍ଗଳିକ କାର୍ଯ୍ୟରେ ବ୍ୟବହୃତ ହେବା ରଥକୁ 'ପୁଷ୍ୟରଥ', ଯୁଦ୍ଧରେ ବ୍ୟବହୃତ ହେବା ରଥକୁ 'ସାଂଗ୍ରାମିକ ରଥ', ପଥଭ୍ରମଣରେ ବ୍ୟବହୃତ ହେବା ରଥକୁ 'ପାରିଯାଣିକ ରଥ', ଶତ୍ରୁର ଦୁର୍ଗଭଙ୍ଗ କରିବା ସକାଶେ ବ୍ୟବହୃତ ହେବା ରଥକୁ 'ପରପୁରାଭିଯାନିକ ରଥ' ଏବଂ ଅଶ୍ୱ ଓ ସାରଥିମାନଙ୍କ ଶିକ୍ଷା ସକାଶେ ବ୍ୟବହୃତ ହେବା ରଥକୁ 'ବୈନୟିକ ରଥ' କୁହାଯାଏ । ରଥାଧ୍ୟକ୍ଷ ଏହି ସମସ୍ତ ପ୍ରକାର ରଥ ନିର୍ମାଣ କରାଇବେ । (୪) ବାଣ (ଶର), ତୂଣୀର ଓ ଧନୁ ପ୍ରଭୃତି ଅସ୍ତ୍ର, ତୋମର ପ୍ରଭୃତି ପ୍ରହରଣ (ପଲ୍ଲାଣାଦି ରଥାଚ୍ଛାଦକ ଆବରଣ), ବଲ୍‌ଗାଦି ଉପକରଣର ରଚନା ଏବଂ ସାରଥି, ରଥୀ (ଯୋଦ୍ଧା) ଓ ରଥବାହକ ଅଶ୍ୱମାନେ ନିଜ ନିଜ କାର୍ଯ୍ୟରେ କିପରି ଉତ୍ତମଭାବେ ଲାଗିପଡ଼ିବେ ରଥାଧ୍ୟକ୍ଷ ସେବିଷୟ ଜାଣିବାକୁ ହେବ । କର୍ମ ଆରମ୍ଭଠାରୁ ଶେଷ ପର୍ଯ୍ୟନ୍ତ ନିତ୍ୟନିଯୁକ୍ତ ଶିଳ୍ପୀ, ଆଗନ୍ତୁକ ଶିଳ୍ପୀ ଓ ମଜୁରିଆମାନଙ୍କ ବେତନଭତ୍ତାର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ନିଜ ନିଜ କର୍ମରେ ନିପୁଣଥିବା ଶିଳ୍ପୀ, ଅଶ୍ୱହୃଦୟ ଓ ରଥଚର୍ଯ୍ୟାଦି ଶିକ୍ଷାରୂପକ ଯୋଗ୍ୟ ଉପଦେଶଦାତା ଆଚାର୍ଯ୍ୟ ଓ ଶତ୍ରୁର ଷଡ଼୍‌ଯନ୍ତ୍ରଭେଦକାରୀ ରଥୀ, ସାରଥି ଓ ଅଶ୍ୱମାନଙ୍କୁ ରକ୍ଷା କରିପାରୁଥିବା କୌଶଳୀବ୍ୟକ୍ତିମାନଙ୍କୁ ପ୍ରଚୁର ଧନଦାନ ଏବଂ ପାରିତୋଷିକ, କଂକଣ, ବସ୍ତ୍ରାଦି ଉପହାର ଦେଇ ସତ୍କାର କରିବେ । ଇତି ରଥାଧ୍ୟକ୍ଷ ପ୍ରକରଣଂ ସମାପ୍ତମ୍ ।

ପତ୍ତ୍ୟଧ୍ୟକ୍ଷପ୍ରକରଣମ୍ ।

(୫) ପତ୍ତି ଅର୍ଥାତ୍ ପଦାତି (ପାଇକ)ମାନଙ୍କ ଅଧ୍ୟକ୍ଷ ରଥାଧ୍ୟକ୍ଷଙ୍କପରି ପଦାତି-ମାନଙ୍କୁ ଧନୁଶର ଓ ତୂଣୀରାଦି ଅସ୍ତ୍ର, ତୋମରାଦି ପ୍ରହରଣ, କର୍ମନିଯୁକ୍ତି, ବେତନଭତ୍ତା, ଯୋଗ୍ୟ ଓ ଆରକ୍ଷ କର୍ମ ସକାଶେ ଧନ ସମ୍ମାନଦାନ ଇତ୍ୟାଦିର ବ୍ୟବସ୍ଥା କରିବା ପରେ ମୌଳବଳ (ସ୍ଥାୟୀ ସୈନ୍ୟ), ଭୃତବଳ (ବେତନ-ଭୋଗୀ ସୈନ୍ୟ), ଶ୍ରେଣୀବଳ (ରାଜ୍ୟର ଗ୍ରାମମାନଙ୍କରେ ଥିବା ଆୟୁଧୀୟ

**ଏତେନ ପତ୍ତ୍ୟଧ୍ୟକ୍ଷୋ ବ୍ୟାଖ୍ୟାତଃ । ସ ମୌଳଭୃତଶ୍ରେଣୀ ମିତ୍ରାମିତ୍ରାଟବୀବଳାନାଂ ସାରଫଲ୍ଗୁତାଂ ବିଦ୍ୟାତ୍ । ନିମ୍ନସ୍ଥଳପ୍ରକାଶ-କୂଟଖନକାକାଶଦିବାରାତ୍ରିଯୁଦ୍ଧବ୍ୟାୟାମଂ ଚ ବିଦ୍ୟାତ୍ । ଅଯୋଗ-ମଯୋଗଂ ଚ କର୍ମସୁ । (୭) ତଦେବ ସେନାପତିଃ ସର୍ବଯୁଦ୍ଧ-ପ୍ରହରଣବିଦ୍ୟାବିନୀତୋ ହସ୍ତ୍ୟଶ୍ୱରଥଚର୍ଯାସଂଘୁଷ୍ଟଶ୍ଚତୁରଙ୍ଗସ୍ୟ**

---

ସୈନ୍ୟ), ମିତ୍ରବଳ (ମିତ୍ରରାଜାଙ୍କଠାରୁ ସାହାଯ୍ୟ ସ୍ୱରୂପ ପାଇଥିବା ସୈନ୍ୟ), ଅମିତ୍ରବଳ (ଶତ୍ରୁରାଜାଙ୍କ ସୈନ୍ୟଦଳରୁ ଗିରଫଦାର କରି ଅଣିଥିବା ସୈନ୍ୟ ଓ ସନ୍ଧିସର୍ତ୍ତ ଅନୁସାରେ ଲାଭକରିଥିବା ସୈନ୍ୟ) ଓ ଅଟବୀବଳ (ବନବାସୀ ଶବର, ଭିଲ ପ୍ରଭୃତି ସୈନ୍ୟ)ର ସାର ଓ ଅସାର ଶକ୍ତି ଅନୁସାରେ କେଉଁ ସ୍ଥାନରେ କାହାକୁ କିପରି ନିଯୁକ୍ତ କରାଯିବ ତାହା ଉତ୍ତମରୂପେ ଜାଣିରଖିବେ । ତା'ପରେ ନିମ୍ନଯୁଦ୍ଧ (ତୃଣ ଓ ଜଳମଧ୍ୟରେ ଲୁଚିରହି କରାଯିବା ଯୁଦ୍ଧ), ସ୍ଥଳଯୁଦ୍ଧ, ପ୍ରକାଶ ଯୁଦ୍ଧ, କୂଟ ଯୁଦ୍ଧ, ଖନକ ଯୁଦ୍ଧ (ଭୂଇଁରେ ଗାତ ଖୋଳି ସେଥିରେ ଲୁଚିରହି କରାଯିବା ଯୁଦ୍ଧ), ଆକାଶ ଯୁଦ୍ଧ (ଉପରୁ ଗୋଳା ଗୁଳି ବର୍ଷଣପାଇଁ ବିମାନ, ଉଚ୍ଚ ପ୍ରାଚୀର ଓ ଉଚ୍ଚ ବୃକ୍ଷ ଇତ୍ୟାଦିରେ ଆରୋହଣ ପୂର୍ବକ କରାଯିବା ଯୁଦ୍ଧ), ଦିବାଯୁଦ୍ଧ, ରାତ୍ରିଯୁଦ୍ଧ, ସୈନ୍ୟମାନଙ୍କର ଆବଶ୍ୟକୀୟ ବ୍ୟାୟାମ (ପେରେଡ୍ ପ୍ରଭୃତି), 'ଅଯୋଗ' (ସର୍ବଦା ଶସ୍ତ୍ରାସ୍ତ୍ର ବହନପୂର୍ବକ ଯୁଦ୍ଧବ୍ୟାୟାମ ଇତ୍ୟାଦିରେ ରତ ହେବା), 'ଅଯୋଗ' (ଆବଶ୍ୟକ ସ୍ଥଳେ ଅଯଥା ପ୍ରାଣହାନିରୁ ବିରତ ହେବାପାଇଁ କୌଶଳ ଓ ଧୈର୍ଯ୍ୟ ସହକାରେ ପଛଘୁଞ୍ଚା ଦେବା) ଇତ୍ୟାଦି କର୍ମ ବିଷୟ ମଧ୍ୟ ଉତ୍ତମରୂପେ ଅବଗତ ହେବେ । ଇତି ପତ୍ତ୍ୟଧ୍ୟକ୍ଷ ପ୍ରକରଣଂ ସମାପ୍ତମ୍ ।

ସେନାପତି ପ୍ରଚାରଃ ।

(୭) ହସ୍ତୀ, ଅଶ୍ୱ, ରଥ ଓ ପଦାତିରୂପକ ଚତୁରଙ୍ଗାତ୍ମକ ପୂର୍ବୋକ୍ତ ମୌଳ, ଭୃତ, ଶ୍ରେଣୀ, ମିତ୍ର, ଅମିତ୍ର ଓ ଅଟବୀସେନାର ପତି ଅର୍ଥାତ୍ 'ନାୟକ'ଙ୍କୁ ସେନାପତି କୁହାଯାଏ । ବର୍ତ୍ତମାନ ଏହି ସେନାପତିଙ୍କ କାର୍ଯ୍ୟକଳାପ ବିଷୟରେ ଏଠାରେ ଆଲୋଚନା କରାଯିବ । ଅଶ୍ୱାଧ୍ୟକ୍ଷ, ହସ୍ତ୍ୟଧ୍ୟକ୍ଷ, ରଥାଧ୍ୟକ୍ଷ ଓ ପତ୍ତ୍ୟାଧ୍ୟକ୍ଷମାନେ ଯେଉଁ ଯେଉଁ ବିଷୟରେ ନିପୁଣ ହେବେ ବୋଲି ପ୍ରଥମେ କୁହାଗଲା, ସେନାପତି ସେସବୁ ବିଷୟରେ ନିପୁଣ ହେବା ସଙ୍ଗେ ସଙ୍ଗେ

ବଳସ୍ୟାନୁଷ୍ଠାନାଧିଷ୍ଠାନଂ ବିଦ୍ୟାତ୍ । (୭) ସ୍ୱଭୂମିଂ ଯୁଦ୍ଧକାଳଂ ପ୍ରତ୍ୟନୀକମଭିନ୍ନଭେଦନଂ ଭିନ୍ନସନ୍ଧାନଂ ସଂହତଭେଦନଂ ଭିନ୍ନବଧଂ ଦୁର୍ଗବଧଂ ଯାତ୍ରାକାଳଂ ଚ ପଶ୍ୟେତ୍ ।

(୮) ତୂର୍ଯଧ୍ୱଜପତାକାଭିର୍ବ୍ୟୂହସଂଜ୍ଞାଃ ପ୍ରକଳ୍ପୟେତ୍ ।
ସ୍ଥାନେ ଯାନେ ପ୍ରହରଣେ ସୈନ୍ୟାନାଂ ବିନୟେରତଃ ॥

---

ନିମ୍ନଯୁଦ୍ଧ, ସ୍ଥଳଯୁଦ୍ଧ, ପ୍ରକାଶ ଯୁଦ୍ଧ, କୂଟ ଯୁଦ୍ଧ, ଖନକ ଯୁଦ୍ଧ, ଆକାଶ ଯୁଦ୍ଧ, ଦିବା ଯୁଦ୍ଧ ଓ ରାତ୍ରି ଯୁଦ୍ଧ ପ୍ରଭୃତି ଯୁଦ୍ଧବିଦ୍ୟା, ଧନୁର୍ବାଣ, ତୋମରାଦି ପ୍ରୟୋଗ ବିଦ୍ୟା ଓ ଆନ୍ୱୀକ୍ଷିକୀ ପ୍ରଭୃତି ହେତୁବିଦ୍ୟାରେ ନିପୁଣ ହୋଇ ହସ୍ତୀ, ଅଶ୍ୱ ଓ ରଥାଦିରେ ଆରୋହଣପୂର୍ବକ ଯୁଦ୍ଧକରଣ ଏବଂ ଅଶ୍ୱାରୋହୀ, ଗଜାରୋହୀ, ରଥାରୋହୀ ଓ ପଦାତିମାନଙ୍କ ସମସ୍ତ ଅନୁଷ୍ଠାନ ଓ ଅଧିଷ୍ଠାନ (ବ୍ୟୂହାଦି ରଚନା ସ୍ଥାନ) ବିଷୟ ଉତ୍ତମଭାବେ ଅବଗତ ହେବେ । (୭) ସେନାପତି ନିଜ ସେନାର ଦ୍ୟାୟାମଯୋଗ୍ୟ ସ୍ଥାନ, ପ୍ରକାଶାଦି ଯୁଦ୍ଧଯୋଗ୍ୟ କାଳ, ଶତ୍ରୁର ବଳ, ଭେଦକରିହେଉନଥିବା ଶତ୍ରୁର ବ୍ୟୂହଭେଦନ, ନିଜର ଭିନ୍ନହୋଇଯାଇଥିବା ସୈନ୍ୟମାନଙ୍କର ଏକତ୍ରୀ-କରଣ, ସଂଗଠିତ ଶତ୍ରୁବଳର ଭେଦ ଉତ୍ପାଦନ, ଭିନ୍ନ ହୋଇଯାଇଥିବା ଶତ୍ରୁସେନାର ବଧ, ଶତ୍ରୁର ଦୁର୍ଗ ଇତ୍ୟାଦି ବିଧ୍ୱଂସନ ଓ ଅଭିଯାନର ସମୟକୁ ଉତ୍ତମଭାବେ ଜାଣିରଖିବେ । (୮) ସେନାପତି ଯୁଦ୍ଧ ସକାଶେ ବ୍ୟୂହ ରଚନା କରି ରହିଥିବା ନିଜର ସୈନ୍ୟମାନଙ୍କୁ ଶତ୍ରୁକୁ ଜଣାନପଡ଼ିବା ପରି ବ୍ୟବସ୍ଥା କରି ତୂର୍ଯ୍ୟ, ଧ୍ୱଜ, ପତାକା, ବାଦ୍ୟ ଓ ଶଙ୍ଖନାଦାଦି ବିଶେଷ ଚିହ୍ନ ବା ସଙ୍କେତ ପ୍ରଦର୍ଶନ ପୂର୍ବକ ସ୍ଥାନ, ଯାନ ଓ ପ୍ରହରଣ ଅର୍ଥାତ୍ ଯୁଦ୍ଧଗମନ ନିବୃତ୍ତି, ଯୁଦ୍ଧ ଅଭିଯାନ ଓ ଶତ୍ରୁମାନଙ୍କ ଉପରକୁ ଶସ୍ତ୍ରାସ୍ତ୍ର ପ୍ରହାର କରିବା ବିଷୟରେ ଶିକ୍ଷାଦେବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ତ୍ରୟସ୍ତ୍ରିଂଶୋଽଧ୍ୟାୟଃ—ରଥାଧ୍ୟକ୍ଷଃ-ପତ୍ତ୍ୟଧ୍ୟକ୍ଷଃ-ସେନାପତିପ୍ରଚାରଶ୍ଚ
ଆଦିତଃ ଚତୁଷ୍ପଞ୍ଚାଶଃ ।

# ଚତୁଃତ୍ରିଂଶୋଽଧ୍ୟାୟଃ

## ଦ୍ୱିପଞ୍ଚାଶତ୍, ତ୍ରିପଞ୍ଚାଶତ୍ ପ୍ରକରଣମ୍

## ମୁଦ୍ରାଧ୍ୟକ୍ଷଃ, ବିବୀତାଧ୍ୟକ୍ଷଃ

**THE SUPERINTENDENT OF PASSPORTS AND THE SUPERINTENDENT OF PASTURE LANDS**

[ ମୁଦ୍ରା ଅର୍ଥାତ୍ ପଣ୍ୟଲେଖ୍ୟାଦିରେ (ପରୱାନା ଇତ୍ୟାଦିରେ) ଲଗାଯିବା ରାଜକୀୟ ଚିହ୍ନବିଶେଷ ଏବଂ ପଶୁଚାରଣ ଭୂମିର ଓ ପଶୁଚାରଣ ଭୂମିର ଅଧ୍ୟକ୍ଷଙ୍କ ବ୍ୟାପାର ]

**(୧) ମୁଦ୍ରାଧ୍ୟକ୍ଷୋ ମୁଦ୍ରାଂ ମାଷକେଣ ଦଦ୍ୟାତ୍ । ସମୁଦ୍ରୋ ଜନପଦଂ ପ୍ରବେଷ୍ଟୁଂ ନିଷ୍କ୍ରମିତୁଂ ବା ଲଭେତ । (୨) ଦ୍ୱାଦଶପଣମମୁଦ୍ରୋ ଜାନପଦୋ ଦଦ୍ୟାତ୍ । କୂଟମୁଦ୍ରାୟାଂ ପୂର୍ବଃ**

---

(୧) ମୁଦ୍ରାଧ୍ୟକ୍ଷ, ଏହି ଲୋକ ଚୋର ନୁହେଁ କିମ୍ବା ଶତ୍ରୁର ଚର ନୁହେଁ ବୋଲି ନିଜରାଜ୍ୟ ଲୋକଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ରାଜ୍ୟରେ ପ୍ରବେଶ କରିବା ଓ ରାଜ୍ୟରୁ ନିଷ୍କ୍ରାନ୍ତ ହେବା ବେପାରୀ ଓ ପରିଦର୍ଶନକାରୀ ବ୍ୟକ୍ତିଙ୍କଠାରୁ ରାଜକୋଷର ବୃଦ୍ଧି ସକାଶେ ଏକମାଷ (ଏକମସା) ଶୁଳ୍କ ଗ୍ରହଣ କରି ଅଜ୍ଞାପତ୍ର ଉପରେ ମୋହର ବସାଇ ଦେବେ ଓ ଏହି ମୁଦ୍ରା ଗ୍ରହଣ କରିଥିବା ବ୍ୟକ୍ତି ବିଜୟାଭିଳାଷୀ ରାଜାଙ୍କ ରାଜ୍ୟ ମଧ୍ୟରେ ଅବାଧରେ ପ୍ରବେଶ ଓ ନିଷ୍କ୍ରମଣର ଅଧିକାରୀ ହେବେ (ଏହି ବ୍ୟକ୍ତି ଚୋର ନୁହନ୍ତି କିମ୍ବା ଶତ୍ରୁର ଚର ନୁହନ୍ତି ବୋଲି ପ୍ରମାଣିତ ହୋଇ ଅବାଧରେ ଯାତାୟାତ କରି ପାରିବେ) । (୨) ମୁଦ୍ରା ନଥାଇ ପ୍ରବେଶ ଓ ନିଷ୍କ୍ରମଣ କରିବା ବ୍ୟକ୍ତି ସକାଶେ ଦଣ୍ଡବ୍ୟବସ୍ଥା:—ମୁଦ୍ରା ଗ୍ରହଣ ନକରି ବିଜିଗୀଷୁ ରାଜାଙ୍କ ନିଜରାଜ୍ୟର କୌଣସି ବ୍ୟକ୍ତି ରାଜ୍ୟରୁ ନିଷ୍କ୍ରାନ୍ତ କିମ୍ବା ରାଜ୍ୟରେ ପ୍ରବିଷ୍ଟ ହେଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଅନ୍ୟରାଜ୍ୟର କୌଣସି ବ୍ୟକ୍ତି ଏପରି ମୁଦ୍ରା ପ୍ରଦର୍ଶନ ନକରି ବିଜିଗୀଷୁ ରାଜାଙ୍କ ରାଜ୍ୟରେ ପ୍ରବେଶ କିମ୍ବା ତହିଁରୁ ନିଷ୍କ୍ରମଣ କଲେ କୂଟମୁଦ୍ରା (କୃତ୍ରିମମୁଦ୍ରା) କରିବାର ଦଣ୍ଡ ଅର୍ଥାତ୍

ସାହସଦଣ୍ଡଃ । ତଦ୍ଦେଶଜନପଦସ୍ୟୋତ୍ତମଃ । (୩) ବବୀତାଧ୍ୟକ୍ଷୋ ମୁଦ୍ରାଂ ପଶ୍ୟେତ୍ । (୪) ଭୟାନ୍ତରେଷୁ ଚ ବବୀତଂ ସ୍ଥାପୟେତ୍ । ଚୋରବ୍ୟାଳଭୟାନ୍ନିମ୍ନାରଣ୍ୟାନି ଶୋଧୟେତ୍ । (୫) ଅନୁଦକେ କୂପସେତୁବନ୍ଧୋତ୍ସାନ୍ ସ୍ଥାପୟେତ୍, ପୁଷ୍ପଫଳବାଟାଂଶ୍ଚ । ଲୁବ୍ଧକ ଶ୍ୱଗଣିନଃ ପରିବ୍ରଜେୟୁରରଣ୍ୟାନି । ତସ୍କରମିତ୍ରାଭ୍ୟାଗମେ ଶଙ୍ଖ-ଦୁନ୍ଦୁଭିଶବ୍ଦମଗ୍ରାହ୍ୟାଃ କୁର୍ଯୁଃ ଶୈଳବୃକ୍ଷାଧିରୁଢ଼ା ବା ଶୀଘ୍ରବାହନା

---

ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । ସ୍ୱଦେଶର କୌଣସି ବ୍ୟକ୍ତି ଏପରି କୃତ୍ରିମମୁଦ୍ରା ପ୍ରଦର୍ଶନ କଲେ ପୂର୍ବସାହସଦଣ୍ଡ ଓ ବିଦେଶର କୌଣସି ବ୍ୟକ୍ତି ଏପରି କୃତ୍ରିମମୁଦ୍ରା (ଜାଲମୁଦ୍ରା) ପ୍ରଦର୍ଶନ କଲେ ଉତ୍ତମସାହସ-ଦଣ୍ଡରେ ଦଣ୍ଡିତ ହେବେ । ଇତି ମୁଦ୍ରାଧ୍ୟକ୍ଷ ପ୍ରକରଣମ୍ ।

(୩) ବବୀତ ଅର୍ଥାତ୍ ଗୋମହିଷାଦି ଗୃହପାଳିତ ପଶୁ ଚରିବାର୍ଥ ତୃଣପତ୍ରାଦିଯୁକ୍ତ ସ୍ଥାନ, ଏହି ସ୍ଥାନର ଅଧ୍ୟକ୍ଷଙ୍କ (ବବୀତାଧ୍ୟକ୍ଷଙ୍କ) ବ୍ୟାପାରର ବିଚାର ଏଠାରେ କରାଯିବ । ଯେଉଁ ବ୍ୟକ୍ତିମାନେ ମୁଦ୍ରାଶୁଳ୍କ, ଅମୁଦ୍ରା ଓ କୂଟମୁଦ୍ରାଜନିତ ଦଣ୍ଡ ଇତ୍ୟାଦିରେ ଶଙ୍କିତ ହୋଇ ରାଜ୍ୟରେ ପ୍ରବେଶ କରିବା ମହାପଥ (ରାଜପଥ) ପରିତ୍ୟାଗ ପୂର୍ବକ ବବୀତ ଅର୍ଥାତ୍ ଜଙ୍ଗଲ-ମାର୍ଗରେ ଯାତାୟାତ କରନ୍ତି, ସେମାନଙ୍କୁ ନିଜେ ବା ନିଜଲୋକଙ୍କ ସାହାଯ୍ୟରେ ଧରି ମୁଦ୍ରାଧ୍ୟକ୍ଷଙ୍କୁ ସମର୍ପଣ କରିବା ସକାଶେ ଏଠାରେ ବବୀତାଧ୍ୟକ୍ଷଙ୍କ ବିଷୟ ଆଲୋଚନା କରାଯାଉଛି । (୪) ବବୀତାଧ୍ୟକ୍ଷ ଚୋର ଓ ଶତ୍ରୁର ଗୁପ୍ତଚରମାନଙ୍କୁ ଧରିବା ସକାଶେ କୃଷ୍ୟ ଓ ଅକୃଷ୍ୟ ଭୂମିକୁ ଗୋଚରଣାଦିର ଯୋଗ୍ୟ ହେବାପରି ବ୍ୟବସ୍ଥା କରିବେ ଏବଂ ଗଭୀର ଓ ଗହ୍ୱରଯୁକ୍ତ ଅରଣ୍ୟ ମଧ୍ୟରେ ଚୋର କିମ୍ବା ବ୍ୟାଘ୍ରାଦି ହିଂସ୍ର ପ୍ରାଣୀ ସେଠାରେ ଲୁଚି ଛପି ଅଛନ୍ତି କି ନାହିଁ ଭଲଭାବେ ଦେଖି ସେହିସ୍ଥାନକୁ ସଂଶୋଧନ କରିବେ । (୫) ନିର୍ଜଳ ପ୍ରଦେଶର ସ୍ଥାନେ ସ୍ଥାନେ କୂପ, ବନ୍ଧ ଓ କ୍ଷୁଦ୍ର କୂପମାନଙ୍କର ବ୍ୟବସ୍ଥା କରି, ଫୁଲଫଳ ବଗିଚା ଓ ପାନୀୟ ଶାଳ ଇତ୍ୟାଦିର ବ୍ୟବସ୍ଥା କରିବେ । ଚୋର ଓ ଶତ୍ରୁର ଗୁପ୍ତଚରମାନଙ୍କର ପ୍ରବେଶ ପରିହାର, ପ୍ରବିଷ୍ଟ ହୋଇଥିବା ଚୋର ଓ ଶତ୍ରୁଚରମାନଙ୍କର ଗୋଚର ସକାଶେ, ଲୁବ୍ଧକ (ଶିକାରୀ) ଓ ଶ୍ୱଗଣି (କୁକ୍କୁର ରଖିଥିବା ଶିକାରୀ)ମାନେ ଅରଣ୍ୟ

ବା । ଅମିତ୍ରାଟବୀସଂଚାରଂ ଚ ସଞ୍ଜ୍ଞା ଗୃହକପୋତୈର୍ମୁଦ୍ରା-
ଯୁକ୍ତୈର୍ହାରୟେୟୁଃ ଧୂମାଗ୍ନିପରଂପରୟା ବା ।
(୭) ଦ୍ରବ୍ୟହସ୍ତିବନାଜୀବଂ ବର୍ତ୍ତନୀଂ ଚୋରରକ୍ଷଣମ୍ ।
ସାର୍ଥାତିବାହ୍ୟଂ ଗୋରକ୍ଷଂ ବ୍ୟବହାରଂ ଚ କାରୟେତ୍ ॥

---

ମଧ୍ୟରେ ଦିବାରାତି ପରିଭ୍ରମଣ କରିବେ; ଚୋର କିମ୍ବା ଶତ୍ରୁଚର ଆସିବାର ଜଣାପଡ଼ିଲେ ସେମାନେ ନଜାଣିବା ଭଳି ବ୍ୟବସ୍ଥା କରି ଉଚ୍ଚ ବୃକ୍ଷ କିମ୍ବା ଗିରିଶୃଙ୍ଗରେ ଆରୋହଣ ପୂର୍ବକ ଶଙ୍ଖ, ଦୁନ୍ଦୁଭି ପ୍ରଭୃତି ଦ୍ୱାରା ବା ବେଗଗାମୀ ଅଶ୍ୱଦ୍ୱାରା ଏହି ସମ୍ବାଦ ରାଜ୍ୟର ଅନ୍ତପାଳ ପ୍ରଭୃତିଙ୍କ କର୍ଣ୍ଣଗୋଚର କରାଇ ଦେବେ । ଶତ୍ରୁମାନେ ମୃଗୟାଦି ସକାଶେ ନିଜରାଜାଙ୍କ ଅରଣ୍ୟରେ ବିଚରଣ କରୁଥିବା ବୃତ୍ତାନ୍ତ, ବିବୀତାଧ୍ୟକ୍ଷ ଗୃହକପୋତ ଅର୍ଥାତ୍ ସମ୍ବାଦ-ବାହକ ପାରାର ବେକରେ ବା ପାଦରେ ମୁଦ୍ରାଯୁକ୍ତ ପତ୍ର ବନ୍ଧନ କରି ନିଜ ରାଜାଙ୍କ ନିକଟକୁ ପ୍ରେରଣ କରିବେ କିମ୍ବା ଦିନବେଳେ ଧୁଆଁ କରି ଓ ରାତିରେ ନିଆଁ ଜାଳି ଏହି ସଙ୍କେତଦ୍ୱାରା ଉକ୍ତ ସମ୍ବାଦ ଜଣାଇ ଦେବେ ।
(୭) ବିବୀତାଧ୍ୟକ୍ଷ—ଚନ୍ଦନାଦି ଦ୍ରବ୍ୟବନ ଓ ହସ୍ତିବନରେ ଜାତହେବା ଉପଜୀବ୍ୟ-ପଦାର୍ଥ ଅର୍ଥାତ୍ କୁପ୍ୟାଧ୍ୟକ୍ଷ ଓ ହସ୍ତ୍ୟଧ୍ୟକ୍ଷଙ୍କୁ ଆବଶ୍ୟକ ହେଉଥିବା ଉପାଦେୟ ପଦାର୍ଥ ବ୍ୟତୀତ ଅଙ୍ଗାର, ଘାସ, ଜାଳକାଠ ଓ ଅନ୍ୟ ସମସ୍ତ ଉପଯୋଗୀ ପଦାର୍ଥ ରକ୍ଷଣ, ବର୍ତ୍ତନୀ ଅର୍ଥାତ୍ ଦୁର୍ଗମାର୍ଗ ପାରିକରିଦେବା ଭୃତି (ପାନ୍ଥ), ବ୍ୟାପାରୀ ଓ ପଥିକମାନଙ୍କୁ ଚୋରଭୟରୁ ରକ୍ଷାକରିବା ଭୃତି, ବଣିକସଂଘକୁ ଭୟସ୍ଥାନରୁ ପାରିକରିଦେବା ଭୃତି, ଗୋରକ୍ଷା ସକାଶେ ଆଦାୟ କରାପିବା ଭୃତି ବା ପାନ୍ଥର ଆଦାୟ ଓ ଉପରୋକ୍ତ ପଦାର୍ଥମାନଙ୍କର କ୍ରୟ-ବିକ୍ରୟ-ବ୍ୟବହାର ନିଜେ ଓ ନିଜର ଅନୁଚରମାନଙ୍କ ଦ୍ୱାରା କରାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ
ଚତୁସ୍ତ୍ରିଂଶୋଽଧ୍ୟାୟଃ—ମୁଦ୍ରାଧ୍ୟକ୍ଷୋ ବିବୀତାଧ୍ୟକ୍ଷଶ୍ଚ—ଆଦିତଃ ପଞ୍ଚପଞ୍ଚାଶଃ ।

---

# ପଞ୍ଚତ୍ରିଂଶୋଽଧ୍ୟାୟଃ

## ଚତୁଃପଞ୍ଚାଶତ୍, ପଞ୍ଚପଞ୍ଚାଶତ୍ ପ୍ରକରଣମ୍ ସମାହର୍ତୃ ପ୍ରଚାରଃ, ଗୃହପତକ-ବୈଦେହକ-ତାପସବ୍ୟଞ୍ଜନାଃ ପ୍ରଣିଧୟଃ

## THE DUTIES OF REVENUE COLLECTORS, SPIES UNDER THE GUISE OF HOUSEHOLDERS, MERCHANTS AND ASCETICS.

( ଦୁର୍ଗ, ରାଷ୍ଟ୍ର, ଖଣି, ସେତୁ, ବନ, ବ୍ରଜ ଓ ବାଣିଜ୍ୟପଥାଦିରୁ ରାଜାଙ୍କ ସକାଶେ ବିଧିପ୍ରକାରେ ଧନ ଅଦାୟ କରିବା ଅଧିକାରୀ-ସମାହର୍ତାଙ୍କ ସମଗ୍ର ରାଷ୍ଟ୍ରର ସାମୂହିକ ଅୟଚିନ୍ତା ବିଷୟର ଆଲୋଚନା ଏବଂ ଗୃହପତକ, ବୈଦେହକ ଓ ତାପସବ୍ୟଞ୍ଜନ ଗୁପ୍ତଚର-ମାନଙ୍କର ଗ୍ରାମ ଓ ରାଜ୍ୟରେ ନିଯୁକ୍ତି ବିଷୟର ଆଲୋଚନା । )

(୧) ସମାହର୍ତା ଚତୁର୍ଧା ଜନପଦଂ ବିଭଜ୍ୟ ଜ୍ୟେଷ୍ଠମଧ୍ୟମ କନିଷ୍ଠବିଭାଗେନ ଗ୍ରାମାଗ୍ରଂ ପରିହାରକମାୟୁଧୀୟଂ ଧାନ୍ୟପଶୁ

---

(୧) ସମାହର୍ତା ନିଜରାଜ୍ୟକୁ ଚାରିଭାଗରେ ବିଭକ୍ତ କରି ପ୍ରତ୍ୟେକ ଭାଗର ଗ୍ରାମମାନଙ୍କୁ କୁଳସଂଖ୍ୟା ଓ ସାର ଅସାର ଅନୁକ୍ରମେ ଜ୍ୟେଷ୍ଠ, ମଧ୍ୟମ ଓ କନିଷ୍ଠ ଏପରି ତିନିଭାଗରେ ବିଭକ୍ତ କରିବେ । ମହାଦାନାଦି କାରଣରୁ ଗ୍ରାମଗୁଡ଼ିକର ସ୍ଥିତି ମାତ୍ର ଜାଣିବାପାଇଁ କରମୁକ୍ତ ହୋଇଥିବା ଗ୍ରାମକୁ 'ପରିହାରକ', ଯୁଦ୍ଧବେଳେ ରାଜ୍ୟରକ୍ଷା ପାଇଁ ଆୟୁଧଧାରୀ ସେନା ଯୋଗାଇବା ଗ୍ରାମକୁ 'ଆୟୁଧୀୟ', ରାଜସ୍ୱସ୍ୱରୂପ ରାଜକୋଷକୁ ଧାନ୍ୟ ଯୋଗାଉଥିବା ଗ୍ରାମକୁ 'ଧାନ୍ୟପ୍ରତିକର', ପଶୁ ଯୋଗାଉଥିବା ଗ୍ରାମକୁ 'ପଶୁପ୍ରତିକର', ସୁନାଅ ଯୋଗାଉଥିବା ଗ୍ରାମକୁ 'ହିରଣ୍ୟ ପ୍ରତିକର', କାଠ, ବାଉଁଶ ଓ ବନଜାତ ପଦାର୍ଥ ଯୋଗାଉଥିବା ଗ୍ରାମକୁ 'କୁପ୍ୟ ପ୍ରତିକର' ଏବଂ ବେଠି ବେଗାରି ଯୋଗାଉଥିବା ଗ୍ରାମକୁ 'ବିଷ୍ଟି ପ୍ରତିକର' କୁହାଯାଏ । ସମାହର୍ତା ଏହି ଗ୍ରାମମାନଙ୍କର 'ଗ୍ରାମାଗ୍ର' ଅର୍ଥାତ୍ ଜନସଂଖ୍ୟା, ପଶୁସଂଖ୍ୟା ଓ ଆୟସଂଖ୍ୟାକୁ

ହିରଣ୍ୟକୁପ୍ୟବିଷ୍ଟିପ୍ରତିକରମିଦମେତାବଦିତି ନିବନ୍ଧୟେତ୍ । ତତ୍ପ୍ରଦିଷ୍ଟଃ ପଞ୍ଚଗ୍ରାମୀଂ ଦଶଗ୍ରାମୀଂ ବା ଗୋପଶ୍ଚିନ୍ତୟେତ୍ । (୨) ସୀମାବରୋଧେନ ଗ୍ରାମାଗ୍ରଂ କୃଷ୍ଟାକୃଷ୍ଟସ୍ଥଳକେଦାରାରାମଷଣ୍ଡବାଟବନବାସ୍ତୁଚୈତ୍ୟଦେବଗୃହସେତୁବନ୍ଧଶ୍ମଶାନସତ୍ର ପ୍ରପାପୁଣ୍ୟସ୍ଥାନ ବିବୀତ ପଥିସଂଖ୍ୟାନେନ କ୍ଷେତ୍ରାଗ୍ରମ୍, ତେନ

---

ସ୍ୱତନ୍ତ୍ର ଓ ସାମୂହିକଭାବେ ସଂଗ୍ରହ କରି ଅମୁକ ଗ୍ରାମ ପରିହାରିକ, ଆୟୁଧୀୟ କିମ୍ବା କରପ୍ରତିକର ଏବଂ ଏହି ଗ୍ରାମର ଜନ, ପଶୁ ଓ ଆୟସଂଖ୍ୟା ଏତେ ଏପରି ନିବନ୍ଧପୁସ୍ତକରେ ଲିପିବଦ୍ଧ କରିବେ । ଅଧିକନ୍ତୁ, ଭିନ୍ନ ଭିନ୍ନ ପାଞ୍ଚଗୋଟି ଗ୍ରାମରେ କିମ୍ବା ସାଧାରଣ ଦଶଗୋଟି ଗ୍ରାମରେ ଜଣେ ଜଣେ 'ଗୋପ' ନାମକ ଅଧିକାରୀଙ୍କୁ ସମାହର୍ତ୍ତା ଉକ୍ତ ଗ୍ରାମମାନଙ୍କ ବିଷୟ ବୁଝିବା ସକାଶେ ନିଯୁକ୍ତ କରିବେ । (୨) ସମାହର୍ତ୍ତାଙ୍କଦ୍ୱାରା ନିଯୁକ୍ତ ଉକ୍ତ 'ଗୋପ' ନାମକ ଅଧିକାରୀ ନଦୀ, ପର୍ବତ ଓ ବୃହତ୍ ଶିଳା ଇତ୍ୟାଦି ଦ୍ୱାରା ପ୍ରତ୍ୟେକ ଗ୍ରାମର ସୀମା ନିର୍ଣ୍ଣୟ କରି ସେଗୁଡ଼ିକର ପରିମାଣ ଏବଂ କୃଷ୍ଟ (ଧାନ୍ୟ, ଯବ, ବ୍ରୀହି ଇତ୍ୟାଦି ଉତ୍ପନ୍ନ କ୍ଷେତ୍ର), ଅକୃଷ୍ଟ (ବିନାକୃଷିରେ ଆପେ ଆପେ ନୀବାରାଦି ଧାନ୍ୟ ଉତ୍ପନ୍ନ ହେଉଥିବା ବଞ୍ଜର ଭୂମି), ସ୍ଥଳ (ଉଜାଡ଼), କେଦାର (କିଆରି), ଆରାମ (ବଗିଚା), ଷଣ୍ଡ (କଦଳୀ ପ୍ରଭୃତିର ବୋରେଇ), ବାଟ (ଆଖୁ ପ୍ରଭୃତିର ବାଡ଼ି), ବନ (ବଣ), ବାସ୍ତୁ (ଗ୍ରାମଭୂମି ବା ବସତି ସ୍ଥାପନ କରିବା ଜାଗା), ଚୈତ୍ୟ (ଦେବତା ଅଛନ୍ତି ବୋଲି ଭାବନା କରି ଯେଉଁ ବୃକ୍ଷ ରଖାଯାଇଥାଏ, ସେହି ବୃକ୍ଷ ରହିବା ସ୍ଥାନ ବା ଯଜ୍ଞବେଦୀ), ଦେବଗୃହ (ଦେବାଳୟ), ସେତୁ (ସେତୁବନ୍ଧ), ଶ୍ମଶାନ, ସତ୍ର (ଅନ୍ନସତ୍ର—ଅନ୍ନଦାନ ଶାଳା), ପ୍ରପା (ପାନୀୟ ଶାଳା), ପୁଣ୍ୟସ୍ଥାନ (ତୀର୍ଥାଦି ସ୍ଥାନ), ବିବୀତ (ଗୋଚର ଭୂମି) ଓ ପନ୍ଥା (ରଥ, ଶକଟ ଓ ପାଦଦ୍ୱାରା ଗତାଗତ ହେବା ମାର୍ଗ ବା ରାସ୍ତା) ଇତ୍ୟାଦିର ସଂଖ୍ୟା ନିର୍ଣ୍ଣୟ କରି କ୍ଷେତ୍ର ପରିମାଣ ସହିତ ଉକ୍ତ ସ୍ଥାନମାନଙ୍କର ମର୍ଯ୍ୟାଦା ଅର୍ଥାତ୍ ପରସ୍ପରର ସନ୍ଧି ସୀମାନ୍ତ, ବନ, କୃଷ ହୋଇଥିବା କିମ୍ବା କୃଷ ହୋଇନଥିବା ଭୂମିରେ ପରସ୍ପରର ପ୍ରବେଶ ଓ ନିର୍ଗମ ମାର୍ଗ, ସେଗୁଡ଼ିକର ନିଜ ନିଜର ପରିମାଣ, ସମ୍ପ୍ରଦାନ ଅର୍ଥାତ୍ ଅମୁକ ରାଜା, ଶାସକ ବା ଦାତାଙ୍କଦ୍ୱାରା ଅମୁକ ଗ୍ରାମ, ବନ, କ୍ଷେତ୍ର

ସୀମ୍ନାଂ କ୍ଷେତ୍ରାଣାଂ ଚ ମର୍ଯାଦାରଣ୍ୟପଥିପ୍ରମାଣସଂପ୍ରଦାନ ବିକ୍ରୟାନୁଗ୍ରହପରିହାରନିବନ୍ଧାନ୍ କାରୟେତ୍ । ଗୃହାଣାଂ ଚ କରଦାକରଦସଂଖ୍ୟାନେନ । (୩) ତେଷୁ ଚୈତାବଚାତୁର୍ବର୍ଣ୍ଣ୍ୟମେତାବନ୍ତଃ କର୍ଷକଗୋରକ୍ଷକବୈଦେହକାରୁକର୍ମକରଦାସାଶ୍ଚୈତାବଚ୍ଚ ଦ୍ୱିପଦଚତୁଷ୍ପଦମିଦଂ ଚ ହିରଣ୍ୟବିଷ୍ଟିଶୁଲ୍କଦଣ୍ଡଂ ସମୁତ୍ତିଷ୍ଠତୀତି । (୪) କୁଲାନାଂ ଚ ସ୍ତ୍ରୀପୁରୁଷାଣାଂ ବାଳବୃଦ୍ଧକର୍ମଚରିତ୍ରାଜୀବିବ୍ୟୟପରିମାଣଂ ବିଦ୍ୟାତ୍ । ଏବଂ ଚ ଜନପଦଚତୁର୍ଭାଗଂ ସ୍ଥାନିକଃ ଚିନ୍ତୟେତ୍ । ଗୋପସ୍ଥାନିକସ୍ଥାନେଷୁ ପ୍ରଦେଷ୍ଟାରଃ

---

ଇତ୍ୟାଦି ଦତ୍ତ ହୋଇଥିବାର ପ୍ରମାଣ, ବିକ୍ରୟ, ଅନୁଗ୍ରହ ଅର୍ଥାତ୍ ଧାନ୍ୟାଦି ଋଣଦାନ ପୂର୍ବକ କୃଷିକାର୍ଯରେ ଉପକାର ଓ ପରିହାର ଅର୍ଥାତ୍ କରମୋକ୍ଷାଦି ବିଷୟ ନିବନ୍ଧପୁସ୍ତକରେ ଲିପିବଦ୍ଧ କରିବେ ଏବଂ କେତେ ଘର କର ଦେଉଛନ୍ତି, ଆଉ କେତେ ଘର କର ଦେଉନାହାନ୍ତି ତାହା ମଧ୍ଯ ଏଥିରେ ଲିପିବଦ୍ଧ କରିବେ । (୩) ସମାହର୍ତ୍ତା ସେହି ଗୃହମାନଙ୍କରେ ଏତେ ପରିମାଣ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର; ସେମାନଙ୍କ ମଧ୍ଯରୁ ଏତେ ପରିମାଣ କୃଷକ, ଗଉଡ଼, ବେପାରି, ଶିଳ୍ପୀ (ବଢ଼େଇ, କମାର, କୁମ୍ଭାର, ତନ୍ତୀ ଇତ୍ୟାଦି), ଶ୍ରମିକ ଓ କ୍ରୀତଦାସ; ପ୍ରତ୍ୟେକ ଘରେ ଏତେ ପରିମାଣ ହଂସ, କୁକୁଡ଼ା ପ୍ରଭୃତି ଦ୍ୱିପଦ ଓ ଗାଈ, ମଇଁଷି, ଛେଳି, ମେଣ୍ଢା ପ୍ରଭୃତି ଚତୁଷ୍ପଦଜନ୍ତୁ, ସର୍ବମୋଟ ଏତେ ମନୁଷ୍ୟ ଓ ପଶୁ ବାସ କରନ୍ତି, ଏମାନଙ୍କ ଠାରୁ ଏତେ ପରିମାଣ ସୁନା ରୁପା ତମ୍ବା ପ୍ରଭୃତି ମୋହର, ଏତେ ବେଠି ବେଗାରି, ଏତେ ଶୁଳ୍କ, ଏତେ ସୈନ୍ୟ ଏବଂ ଏତେ ଜୋରିମାନା ଧନ ବାର୍ଷିକ ଅଦାୟ ହୁଏ ବୋଲି ନିବନ୍ଧ ପୁସ୍ତକରେ ଲେଖିବେ । (୪) 'ଗୋପ' ନାମକ ଅଧିକାରୀ ତାଙ୍କ ତତ୍ତ୍ୱାବଧାନରେ ଥିବା ଗ୍ରାମମାନଙ୍କର ପ୍ରତ୍ୟେକ ପରିବାରରେ ଥିବା ସ୍ତ୍ରୀ, ପୁରୁଷ, ବାଳକ ଓ ବୃଦ୍ଧମାନଙ୍କ ପରିମାଣ, ସେମାନଙ୍କ ବୟସ, ବର୍ଣ୍ଣ, ଜାତିଗତ ପ୍ରସିଦ୍ଧ କର୍ମ, ଦେଶ ଓ ଜାତିଗତ ଆଚାର ବ୍ୟବହାର ବୃତ୍ତି, ଏହି ବୃତ୍ତିରୁ ହେବା ଆୟ ଓ ପରିବାରର ଭରଣ ପୋଷଣାଦିରେ ବିନିଯୋଗ ହେବା ବ୍ୟୟର ପରିମାଣ ଉତ୍ତମଭାବେ ଅନୁସନ୍ଧାନ କରି ଲେଖିରଖିବେ । ଦେଶର ଚତୁର୍ଭାଗରୁ ଏକଭାଗର ସମସ୍ତ

କାର୍ଯ୍ୟକରଣଂ ବଳପ୍ରଗ୍ରହଂ ଚ କୁର୍ଯ୍ୟୁଃ । (୫) ସମାହର୍ତ୍ତୃପ୍ରଦେଷ୍ଟାରଃ ଗୃହପତିକବ୍ୟଞ୍ଜନା ଯେଷୁ ଗ୍ରାମେଷୁ ପ୍ରଣିହିତାସ୍ତେଷାଂ ଗ୍ରାମାଣାଂ କ୍ଷେତ୍ରଗୃହକୁଲାଗ୍ରଂ ବିଦ୍ୟୁଃ । ମାନସଂଜାତାଭ୍ୟାଂ କ୍ଷେତ୍ରାଣି ଭୋଗପରିହାରାଭ୍ୟାଂ ଗୃହାଣି ବର୍ଣ୍ଣକର୍ମଭ୍ୟାଂ କୁଲାନି ଚ । ତେଷାଂ ଜଙ୍ଘାଗ୍ରମାୟବ୍ୟୟୌ ଚ ବିଦ୍ୟୁଃ । ପ୍ରସ୍ଥିତାଗତାନାଂ ଚ ପ୍ରବାସା ବାସକାରଣମନର୍ଥ୍ୟାନାଂ ଚ ସ୍ତ୍ରୀପୁରୁଷାଣାଂ ଚାରପ୍ରଚାରଂ ଚ

---

ବିଷୟ 'ସ୍ଥାନିକ' ନାମକ ଅଧିକାରୀ ଚଳାଇବେ ଏବଂ ଏହି 'ଗୋପ' ଓ 'ସ୍ଥାନିକ'ମାନଙ୍କ 'ପ୍ରଦେଷ୍ଟା' ନାମକ ଉପରସ୍ଥ ଅଧିକାରୀ ଉକ୍ତ କାର୍ଯ୍ୟରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ଯେଉଁମାନେ (ଯେଉଁ ଅଧିକାରୀମାନେ) ଏହିପରି ସଂଖ୍ୟାନ ଓ ଖଜଣା ଅଦାୟ ଇତ୍ୟାଦି କାର୍ଯ୍ୟରେ ବାଧାବିଘ୍ନ ସୃଷ୍ଟି କରୁଥିବେ ସେମାନଙ୍କୁ ଦମନ କରିବେ । ଇତି ସମାହର୍ତ୍ତୃପ୍ରଚାରଃ ।

(୫) [ପ୍ରଥମ ଅଧିକରଣରେ 'ଗୂଢ଼ପୁରୁଷ ପ୍ରଣିଧି' ନାମକ ପ୍ରକରଣରେ ଯେଉଁ ଗୃହପତିକ, ବୈଦେହକ ଓ ତାପସ ବେଶଧାରୀ ଗୁପ୍ତଚରମାନଙ୍କ ବିଷୟର ବିଚାର କରାଯାଇଛି, ସମାହର୍ତ୍ତା ସେହି ଗୁପ୍ତଚରମାନଙ୍କ ସହାୟତାରେ ଗ୍ରାମ ଓ ଜନପଦର (ରାଜ୍ୟର) ସମସ୍ତ ବୃତ୍ତାନ୍ତ ଏବଂ ଉପରୋକ୍ତ 'ଗୋପ' ଓ 'ସ୍ଥାନିକ' ନାମକ ଅଧିକାରୀମାନଙ୍କ କାର୍ଯ୍ୟକଳାପକୁ ଗୋପନଭାବେ ପରୀକ୍ଷା କରିବା ଆବଶ୍ୟକ ହେଉଥିବା ଯୋଗୁଁ ପ୍ରସଙ୍ଗକ୍ରମେ ଏଠାରେ ତାହା ଆଲୋଚନା କରାଯାଉଛି ।] ସମାହର୍ତ୍ତା କର୍ତ୍ତୃକ ନିଯୁକ୍ତ ଛଦ୍ମବେଶୀ କୃଷକ ବା 'ଗୃହପତିକ' ଗୁପ୍ତଚରମାନେ ଯେଉଁ ଯେଉଁ ଗ୍ରାମରେ ନିଯୁକ୍ତ ହେବେ, ସେହି ସେହି ଗ୍ରାମମାନଙ୍କର କ୍ଷେତ୍ର, ଗୃହ ଓ କୁଳମାନଙ୍କର ସଂଖ୍ୟା ଭଲଭାବେ ଜାଣିରଖିବେ । ଜମିର ବର୍ଗପରିମାଣ ଓ ସେଥିରୁ ଉତ୍ପନ୍ନ ହେବା ଶସ୍ୟାଦିର ପରିମାଣରୁ କ୍ଷେତ୍ରସଂଖ୍ୟା, ଗୃହରେ ଗୃହସ୍ୱାମୀର ସ୍ୱତ୍ୱାଧିକାର, କର ଓ କରଗ୍ରହଣ ପ୍ରଭୃତିରୁ ଗୃହସଂଖ୍ୟା ଏବଂ ବ୍ରାହ୍ମଣାଦି ବର୍ଣ୍ଣ ଓ ସେମାନଙ୍କର ପୌରୋହିତ୍ୟ, କୃଷିବାଣିଜ୍ୟାଦି କର୍ମସମୂହରୁ କୁଳସଂଖ୍ୟା ଅର୍ଥାତ୍ କୁଟୁମ୍ବସଂଖ୍ୟାର ହିସାବ ରଖିବେ । ପ୍ରତ୍ୟେକ ପରିବାରର ପାଦଗୃହୀ ଗୃହକର ଓ ଦ୍ୱିପଦ ଚତୁଷ୍ପଦ ପ୍ରାଣୀମାନଙ୍କର ସଂଖ୍ୟା, ସେମାନଙ୍କଦ୍ୱାରା ହେବା ଆୟ ଓ ସେମାନଙ୍କ ସମ୍ବନ୍ଧେ ହେବା ବ୍ୟୟର ହିସାବ ମଧ୍ୟ ରଖିବେ ।

ବଦ୍ୟୁଃ । (୭) ଏବଂ ବୈଦେହକବ୍ୟଞ୍ଜନାଃ ସ୍ୱଭୂମିଜାନାଂ ରାଜପଣ୍ୟାନାଂ ଖନିସେତୁବନକର୍ମାନ୍ତକ୍ଷେତ୍ରଜାନାଂ ପରମାଣମର୍ଘଂ ଚ ବଦ୍ୟୁଃ । ପରଭୂମିଜାତାନାଂ ବାରିସ୍ଥଳପଥୋପଯାତାନାଂ ସାର-ଫଲ୍‌ଗୁପଣ୍ୟାନାଂ କର୍ମସୁ ଚ । ଶୁଲ୍‌କବର୍ତନ୍ୟାତିବାହିକଗୁଲ୍ମତର

---

ପରେ ନିଜର ବାସସ୍ଥାନ ତ୍ୟାଗକରି ଅନ୍ୟତ୍ର ଚାଲିଯିବା, ଅନ୍ୟ ସ୍ଥାନରୁ ଏହି ଦେଶରେ ବାସ କରିବାକୁ ଆସିବା, ଅନ୍ୟ ସ୍ଥାନରେ ବାସକରିବାକୁ ଯାଇ ପୁଣି ଫେରିଆସିବା, ଏଠାରେ ବାସକରିବାକୁ ଆସି ପୁଣି ଫେରିଯିବା, ପ୍ରବାସ କରିବା ବା ବାସସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ ସେଠାରେ ବାସ କରିବା ବ୍ୟକ୍ତିମାନଙ୍କ ଗତିବିଧି ନିରୀକ୍ଷଣ କରି ଏମାନେ କାହିଁକି ଏପରି କରୁଛନ୍ତି ତାହା ଜାଣିବା ସଙ୍ଗେ ସଙ୍ଗେ ଦେଶର ଅନର୍ଥକାରୀ ନର୍ତ୍ତକୀ ଓ ବନ୍ଧକୀ ଅର୍ଥାତ୍ କୁଳଟା ପ୍ରଭୃତି ସ୍ତ୍ରୀବ୍ୟକ୍ତି ଏବଂ ଶଠ ଓ ଧୂର୍ତ୍ତ ପ୍ରଭୃତି ଅନର୍ଥକାରୀ ପୁରୁଷବ୍ୟକ୍ତିମାନଙ୍କର ପ୍ରବାସ ଓ ବାସସ୍ଥାନ ପରିବର୍ତ୍ତନର କାରଣ ଓ ଶତ୍ରୁ-ପ୍ରଯୁକ୍ତ ଗୁପ୍ତଚରମାନଙ୍କର ଗୁପ୍ତ କାର୍ଯ୍ୟକଳାପ ଇତ୍ୟାଦିର ଅନୁସନ୍ଧାନ କରି ସମସ୍ତ ବିଷୟ ଜାଣି ରଖିବେ । (୭) 'ଗୃହପତିକ' ଗୁପ୍ତଚରମାନଙ୍କପରି ବୈଦେହକ ଅର୍ଥାତ୍ ଛଦ୍ମବେଶୀ ବେପାରୀ ଭାବରେ ନିଯୁକ୍ତ ହୋଇଥିବା ଗୁପ୍ତଚରମାନେ ସ୍ୱଦେଶର ରାଜକୀୟ ପଣ୍ୟପଦାର୍ଥ ଅର୍ଥାତ୍ ଶଙ୍ଖହୀରକାଦି ଖନିଜ ପଦାର୍ଥ; ମତ୍ସ୍ୟହଂସାଦି ସେତୁବନ୍ଧ ଅର୍ଥାତ୍ ଜଳାଶୟାଦିରୁ ଜାତହେବା ପଦାର୍ଥ; କାଷ୍ଠ, ବଂଶ, ଶୃଙ୍ଗାଦି ବନଜାତ ପଦାର୍ଥ, କର୍ମକ୍ଷେତ୍ର ଅର୍ଥାତ୍ କାରଖାନା ଇତ୍ୟାଦିରୁ ଜାତହେବା କର୍ମାନ୍ତ-ଜାତ ପଦାର୍ଥ ଓ ଧାନ୍ୟ, ବ୍ରୀହି ଇତ୍ୟାଦି କ୍ଷେତ୍ରଜାତ ପଦାର୍ଥମାନଙ୍କର ପରିମାଣ ଓ ମୂଲ୍ୟର ହିସାବ ଜାଣି ରଖିବେ । ସେହିପରି ବିଦେଶରୁ ଜଳପଥ ଓ ସ୍ଥଳପଥରେ ଆସିଥିବା ରତ୍ନାଦି ମୂଲ୍ୟବାନ ପଦାର୍ଥ ଓ ଶାକମୂଳାଦି ଅଳ୍ପମୂଲ୍ୟ ପଦାର୍ଥମାନଙ୍କର ପରିମାଣ, ମୂଲ୍ୟ ଓ କ୍ରୟବିକ୍ରୟାଦିର ସମସ୍ତ ଜ୍ଞାତବ୍ୟ ବିଷୟ ମଧ୍ୟ ବୈଦେହକ ଗୁପ୍ତଚର ଉତ୍ତମଭାବେ ଅନୁସନ୍ଧାନ କରି ଜାଣିରଖିବେ । ଏବାଦେ ଉପରୋକ୍ତ ପଣ୍ୟପଦାର୍ଥ ସମ୍ବନ୍ଧୀୟ ଶୁଲ୍କ (କର), ବର୍ତନୀ (ପଥକର), ଅତିବାହିକ (ବଣିକସଂଘକୁ ନିର୍ଜନ ବନ ପ୍ରଭୃତିରେ ପାରିକରିବା ପାଉଣା), ଗୁଲ୍ମଦେୟ (ରକ୍ଷୀସଂଘକୁ ଦେବା ଧନ), ତରଦେୟ (ନୌକା ଇତ୍ୟାଦିରେ ନଦୀ ପ୍ରଭୃତି

ଦୈଦ୍ୟସ୍ବଗଭକ୍ତପଣ୍ୟାଗାରପ୍ରମାଣଂ ବିଦ୍ୟୁଃ । (୭) ଏବଂ ସମାହର୍ତ୍ତୃପ୍ରଦିଷ୍ଟାସ୍ତାପସବ୍ୟଞ୍ଜନାଃ କର୍ଷକଗୋରକ୍ଷକ ବୈଦେହକା-ନାମଧ୍ୟକ୍ଷାଣାଂ ଚ ଶୌଚାଶୌଚଂ ବିଦ୍ୟୁଃ । ପୁରାଣ ଚୋର-ବ୍ୟଞ୍ଜନାସ୍ତାନ୍ତେବାସିନଶ୍ଚୈତ୍ୟଚତୁଷ୍ପଥ ଶୂନ୍ୟପଦୋଦପାନନଦୀ—ନିପାନତୀର୍ଥାୟତନାଶ୍ରମାରଣ୍ୟଶୈଳବନଗହନେଷୁ ସ୍ତେନାମିତ୍ର ପ୍ରବୀରପୁରୁଷାଣାଂ ଚ ପ୍ରବେଶନ ସ୍ଥାନଗମନପ୍ରୟୋଜନାନ୍ୟୁପ-ଲଭେରନ୍ ।

(୮) ସମାହର୍ତ୍ତା ଜନପଦଂ ଚିନ୍ତୟେଦେବମୁତ୍ଥିତଃ ।

ଚିନ୍ତୟେୟୁଶ୍ଚ ସଂସ୍ଥାସ୍ତାଃ ସଂସ୍ଥାଶ୍ଚାନ୍ୟାଃ ସ୍ୱଯୋନୟଃ ।

---

ପାରହେବା ପାଇଁ ନାଉରୀମାନଙ୍କୁ ଦେବା ତର କଉଡ଼ି), ଭାଗ (ଭାଗୁଆଳୀ-ମାନେ ବାଣ୍ଟିନେବା ଧନ), ଭକ୍ତ (ପଣ୍ୟପଦାର୍ଥ ବୁହାବୋହି କରିବା ଶ୍ରମିକ ଓ ଘୋଡ଼ା, ବଳଦ ପ୍ରଭୃତି ପଶୁମାନଙ୍କ ଭତ୍ତା), ପଣ୍ୟାଗାର ଭଡ଼ାକ (ଗୋଦାମ ଓ ଦୋକାନ ଘରର ଭଡ଼ା) ଇତ୍ୟାଦିର ପରିମାଣ ମଧ୍ୟ ଜାଣି ରଖିବେ । (୭) ଏହିପରି ସମାହର୍ତ୍ତାଙ୍କଦ୍ୱାରା ନିଯୁକ୍ତ ହୋଇଥିବା ତାପସ (ବାବାଜୀ) ବେଶଧାରୀ ଗୁପ୍ତଚରମାନେ, କୃଷକ, ଗୋରକ୍ଷକ (ଗୋପାଳ), ବଣିକ ଓ ଗୋପସ୍ଥାନିକ ପ୍ରଭୃତି ଅଧିକାରୀମାନଙ୍କର ଶୌଚ ଓ ଅଶୌଚ, (ଭଲ ବୁଦ୍ଧି ଓ ଭଲ ବ୍ୟବହାର ଏବଂ ଅସାର ବୁଦ୍ଧି ଓ ଅସାର ବ୍ୟବହାର) ବିଷୟ ଜାଣିରଖିବେ । ଏହି ତାପସବେଶଧାରୀ ଗୁପ୍ତଚରମାନଙ୍କ ଶିଷ୍ୟମାନେ ନିଜକୁ ପୁରୁଣା ଚୋର ବେଶରେ ସଜାଇ ଦେବାଳୟ, ଚତୁଷ୍ପଥ, ନିର୍ଜନ ସ୍ଥାନ (ପ୍ରାଚୀନ କୀର୍ତ୍ତି ଇତ୍ୟାଦିର ଧ୍ୱଂସାବଶେଷ ଥିବା ସ୍ଥାନ), ଜଳାଶୟ, ନଦୀ, କ୍ଷୁଦ୍ର କୂପ (ଉପକୂପ-ଜଳାଶୟ), ତୀର୍ଥାୟତନ (ଗଙ୍ଗା, ଗୋଦାବରୀ ପ୍ରଭୃତି ପୁଣ୍ୟୋଦକ ପ୍ରଦେଶ), ଆଶ୍ରମ, ଅରଣ୍ୟ (ବ୍ରହ୍ମସୋମାଦି ଅରଣ୍ୟ), ପର୍ବତମାଳ ଓ ବନଗହନାଦି ସ୍ଥାନମାନଙ୍କରେ ବିଚରଣ ପୂର୍ବକ ଚୋର, ଶତ୍ରୁପ୍ରଯୁକ୍ତ ତୀକ୍ଷ୍ଣ-ରସଦ ପ୍ରଭୃତି ଅନିଷ୍ଟକାରୀ ବ୍ୟକ୍ତି ଓ ସାଧାରଣ ଲୋକଙ୍କରେ ମନୁଷ୍ୟ ମାରିବାକୁ ସାହସ କରୁଥିବା ସ୍ତ୍ରୀପୁରୁଷ ଉଭୟପ୍ରକାର ବ୍ୟକ୍ତିମାନଙ୍କର ଆସିବା, ରହିବା ଓ ଯିବାର ପ୍ରୟୋଜନ କ'ଣ, ତାହା ଭଲଭାବେ ଜାଣିବାକୁ ଲାଗିପଡ଼ିବେ । (୮) ଉପରୋକ୍ତ ପ୍ରକାରେ ଉଦ୍ୟମଶୀଳ

## ଷଟ୍‌ତ୍ରିଂଶୋଽଧ୍ୟାୟଃ

## ଷଟ୍‌ପଞ୍ଚାଶତ୍ ପ୍ରକରଣମ୍—ନାଗରକ ପ୍ରଣିଧିଃ

## THE DUTY OF A CITY-SUPERINTENDENT

( ନଗର-ପ୍ରବନ୍ଧକ ଅଧିକାରୀଙ୍କ କାର୍ଯ୍ୟକଳାପ ବିଷୟ )

(୧) ସମାହର୍ତ୍ତୃବନ୍ନାଗରକୋ ନଗରଂ ଚିନ୍ତୟେତ୍ । ଦଶକୁଲୀଂ ଗୋପୋ, ବିଂଶତିକୁଲୀଂ ଚତ୍ୱାରିଂଶତ୍‌କୁଲୀଂ ବା । ସ ତସ୍ୟାଂ ସ୍ତ୍ରୀପୁରୁଷାଣାଂ ଜାତିଗୋତ୍ରନାମକର୍ମଭିଃ ଜଙ୍ଘାଗ୍ରମାୟ-

---

ସମାହର୍ତ୍ତା, ଗୋପ ଓ ସ୍ଥାନିକ ପ୍ରଭୃତି ଅଧିକାରୀ, ଗୃହପତିକ, ବୈଦେହକ ଓ ତାପସବ୍ୟଞ୍ଜନାଦି ଗୁପ୍ତଚର ସଂସ୍ଥା ଏବଂ ଏହିପରି ଅନ୍ୟାନ୍ୟ ସଂସ୍ଥାମାନଙ୍କ ସହାୟତାରେ ଜନପଦ ଅର୍ଥାତ୍ ରାଜ୍ୟର ସର୍ବାଙ୍ଗୀଣ ଉନ୍ନତି ସାଧନ ସକାଶେ ଚିନ୍ତା କରିବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ ପଞ୍ଚତ୍ରିଂଶୋଽଧ୍ୟାୟଃ—ସମାହର୍ତ୍ତୃପ୍ରଚାରଃ, ଗୃହପତିକ, ବୈଦେହକ, ତାପସବ୍ୟଞ୍ଜନପ୍ରଣିଧୟଶ୍ଚ—ଆଦିତଃ ଷଟ୍‌ପଞ୍ଚାଶତଃ ।

---

(୧) ସମାହର୍ତ୍ତା ଯେପରି ଜନପଦକୁ ଚାରିଭାଗରେ ବିଭକ୍ତ କରି ଗୋପସ୍ଥାନିକମାନଙ୍କ ସହାୟତାରେ ନିଜର କର୍ତ୍ତବ୍ୟସାଧନ ପାଇଁ ଚିନ୍ତା କରନ୍ତି, ନଗରପ୍ରବନ୍ଧକ ଅଧିକାରୀ-ନାଗରକ ମଧ୍ୟ ସେହିପରି ନଗର ଅର୍ଥାତ୍ ଅଠଶହ ଗ୍ରାମମଧ୍ୟରେ ଥିବା ପ୍ରଧାନ ସହରକୁ ଚାରିଭାଗରେ ବିଭକ୍ତ କରି ଗୋପ ଓ ସ୍ଥାନିକ ନାମକ ଅଧିକାରୀମାନଙ୍କ ସାହାଯ୍ୟରେ ନଗରର ପରିଚାଳନା ବିଷୟ ଚିନ୍ତା କରିବେ । 'ଗୋପ' ନାମକ ଅଧିକାରୀଙ୍କ ଅଧୀନରେ ନଗରର ପ୍ରତି ଦଶଟି ପରିବାର, କୋଡ଼ିଏଟି ପରିବାର କିମ୍ବା ଚାଳିଶିଟି ପରିବାରର ପରିଚାଳନା ଦାୟିତ୍ୱ ରହିବ ଏବଂ ସେ ଏହି ପରିବାର-ମାନଙ୍କରେ ଥିବା ସ୍ତ୍ରୀପୁରୁଷ ଓ ସେମାନଙ୍କର ଜାତି, ଗୋତ୍ର, ନାମ, କର୍ମ, ନୌକରି, ଚାକର, ଗୃହପାଳିତ ପଶୁ ଓ ଆୟବ୍ୟୟ ବିଷୟ ଉତ୍ତମଭାବେ

ବ୍ୟୟୌ ଚ ବିଦ୍ୟାତ୍ । ଏବଂ ଦୁର୍ଗଚତୁର୍ଭାଗଂ ସ୍ଥାନିକ ଶ୍ଚିନ୍ତୟେତ୍ । (୨) ଧର୍ମାବସଥିନଃ ପାଷଣ୍ଡିପଥିକାନାବେଦ୍ୟ ବାସୟେୟୁଃ । ସ୍ୱପ୍ରତ୍ୟୟାଂଶ୍ଚ ତପସ୍ୱିନଃ ଶ୍ରୋତ୍ରିୟାଂଶ୍ଚ । (୩) କାରୁଶିଳ୍ପିନଃ ସ୍ୱକର୍ମସ୍ଥାନେଷୁ ସ୍ୱଜନଂ ବାସୟେୟୁଃ । ବୈଦେହକାଶ୍ଚାନ୍ୟୋନ୍ୟଂ ସ୍ୱକର୍ମସ୍ଥାନେଷୁ । ପଣ୍ୟାନାମଦେଶକାଳ ବିକ୍ରେତାରମସ୍ୱକରଣଂ ଚ ନିବେଦୟେୟୁଃ । (୪) ଶୌଣ୍ଡିକ ପାକ୍ୱମାଂସିକୌଦନିକରୂପାଜୀବାଃ ପରିଜ୍ଞାତମାବାସୟେୟୁଃ । ଅତିବ୍ୟୟ-

---

ଜାଣିରଖିବେ । ଏହାପରି ଦୁର୍ଗକୁ ଚାରିଭାଗରେ ବିଭକ୍ତ କରି ପ୍ରତ୍ୟେକ ବିଭାଗରେ 'ସ୍ଥାନିକ' ନାମକ ଅଧିକାରୀଙ୍କୁ ନାଗରକ ନିଯୁକ୍ତ କରିବେ । ଏହି ସ୍ଥାନିକ ନାମକ ଅଧିକାରୀ ତାଙ୍କ ଅଧୀନରେ ଥିବା ଦୁର୍ଗର ଚତୁର୍ଥାଂଶ ନିବାସୀ ସ୍ତ୍ରୀପୁରୁଷ ଓ ସେମାନଙ୍କର ଜାତି, ଗୋତ୍ର, ନାମ, କର୍ମ, ନୌକର, ଚାକର, ପଶୁ ଓ ଆୟବ୍ୟୟ ବିଷୟ ମଧ୍ୟ ଉତ୍ତମଭାବେ ଜାଣିରଖିବେ । (୨) ଧର୍ମାବସଥୀ ଅର୍ଥାତ୍ ଧର୍ମଶାଳାର ଅଧିକାରିଗଣ ଅପରିଚିତ ପାଶୁପତ, ବୌଦ୍ଧଭିକ୍ଷୁ ଓ ପଥିକମାନଙ୍କର ଧର୍ମଶାଳାକୁ ଆଗମନ ବିଷୟ 'ଗୋପ' ନାମକ ଅଧିକାରୀଙ୍କୁ ଜଣାଇ ସେମାନଙ୍କୁ ଧର୍ମଶାଳାରେ ସ୍ଥାନ ଦେବେ ଏବଂ ପରିଚିତ ଓ ଉତ୍ତମସ୍ୱଭାବ ଲୋକ ବୋଲି ବିଶ୍ୱାସ ହେଉଥିବା ତପସ୍ୱୀ ଓ ବ୍ରାହ୍ମଣମାନଙ୍କୁ 'ଗୋପ', 'ସ୍ଥାନିକ' ପ୍ରଭୃତିଙ୍କ ମଞ୍ଜୁରି ନନେଇ ମଧ୍ୟ ଧର୍ମଶାଳାରେ ରହିବାକୁ ଅନୁମତି ଦେବେ । (୩) କାରିଗର ଓ ଶିଳ୍ପିମାନେ ନିଜନିଜର କର୍ମସ୍ଥାନରେ (କାରଖାନାରେ) ସେମାନଙ୍କର ପରିଚିତ ସ୍ୱଜନମାନଙ୍କୁ ରହିବା ପାଇଁ ଅନୁମତି ଦେବେ; ବେପାରିମାନେ ନିଜନିଜର ପରିଚିତ ବେପାରିମାନଙ୍କୁ ସେମାନଙ୍କ ନିଜଦାୟିତ୍ୱରେ ନିଜ ନିଜ ବ୍ୟବସାୟ କେନ୍ଦ୍ର ଓ ଦୋକାନ ପ୍ରଭୃତିରେ ରହିବାକୁ ସ୍ଥାନ ଦେବେ ଏବଂ ଅସ୍ଥାନରେ, ଅକାଳରେ ବ୍ୟବସାୟ କରିବାକୁ ଆସିଥିବା ବ୍ୟାପାରୀମାନଙ୍କ ବିଷୟ ଓ ନିଜ ବ୍ୟବସାୟଠାରୁ ଭିନ୍ନ ଧରଣର ବ୍ୟବସାୟ କରିବା ବିଷୟରେ ନାଗରକଙ୍କ ନିକଟରେ ନିବେଦନ କରିବେ । (୪) ଶୁଣ୍ଡି, ସିଦ୍ଧାମାଂସ (ମାଂସତର୍କାରି, ମାଂସଭଜା) ବିକ୍ରୟକାରୀ, ଅନ୍ନବିକ୍ରୟକାରୀ ଓ ବେଶ୍ୟାମାନେ ସେମାନଙ୍କ ପରିଚିତ ବ୍ୟକ୍ତିମାନଙ୍କୁ ନିଜ ନିଜ ସ୍ଥାନରେ ରହିବାକୁ

କର୍ତ୍ତାରମତ୍ୟାହିତକର୍ମାଣଂ ଚ ନିବେଦୟେୟୁଃ । (୫) ଚିକିତ୍ସକଃ ପ୍ରଚ୍ଛନ୍ନବ୍ରଣପ୍ରତୀକାର କାରୟିତାରମପଥ୍ୟକାରିଣଂ ଚ ଗୃହସ୍ୱାମୀ ଚ ନିବେଦ୍ୟ ଗୋପସ୍ଥାନିକୟୋର୍ମୁଚ୍ୟେତ । ଅନ୍ୟଥା ତୁଲ୍ୟଦୋଷଃ ସ୍ୟାତ୍ । (୬) ପ୍ରସ୍ଥିତାଗତୌ ଚ ନିବେଦୟେତ୍ । ଅନ୍ୟଥା ରାତ୍ରି-ଦୋଷଂ ଭଜେତ । କ୍ଷେମରାତ୍ରିଷୁ ତ୍ରିପଣଂ ଦଦ୍ୟାତ୍ । (୭) ପଥିକୋତ୍-ପଥିକାଶ୍ଚ ବହିରନ୍ତଶ୍ଚ ନଗରସ୍ୟ ଦେବଗୃହପୁଣ୍ୟସ୍ଥାନବନଶ୍ମଶାନେଷୁ

---

ସୁବିଧା ଦେବେ । ଏମାନେ ଅତି ବ୍ୟୟକାରୀ ଓ ମଦ୍ୟପାନାଦି ଅନୁଚିତ କର୍ମପ୍ରବୃତ୍ତ ଲୋକମାନଙ୍କ ବିଷୟ 'ଗୋପ' ଓ 'ସ୍ଥାନିକ' ପ୍ରଭୃତି ଅଧିକାରୀ-ମାନଙ୍କୁ ଜଣାଇବେ । (୫) ଯେଉଁ ବ୍ୟକ୍ତି କୌଣସି ଅପରାଧ କରି ଜଖମ ହୋଇଥାଏ ଓ ତାହା ବାହାରେ ପ୍ରକାଶ ପାଇପିବା ଭୟରେ ଲୁଚିକି କୌଣସି ଚିକିତ୍ସକଦ୍ୱାରା ଚିକିତ୍ସା କରିବାକୁ ଚାହେଁ ଏବଂ ଯେଉଁ ବ୍ୟକ୍ତି ରୋଗ ଓ ମରଣୋତ୍ପାଦକ ଅପଥ୍ୟ ପଦାର୍ଥ ଚିକିତ୍ସକଙ୍କ ଜଣାରେ ଅନ୍ୱେଷଣ ଓ ସଂଗ୍ରହ କରେ, ଏ ଦୁଇଜଣଙ୍କ ବିଷୟ ଚିକିତ୍ସକ ଓ ଯେଉଁ ଘରେ ଏମାନେ ରହି ଏସବୁ କାର୍ଯ୍ୟ କରନ୍ତି ସେହି ଗୃହର ମାଲିକ ବା ଗୃହସ୍ୱାମୀ 'ଗୋପ' ଓ 'ସ୍ଥାନିକ'ଙ୍କୁ ଜଣାଇ ଦେବେ । ସେପରି ନକରି ଏମାନେ ଯଦି ଉକ୍ତ ବିଷୟ ଗୋପନକରି ରଖନ୍ତି ତେବେ ଏହି ଅପରାଧୀମାନଙ୍କପରି ଏମାନେ (ଚିକିତ୍ସକ ଓ ଗୃହସ୍ୱାମୀ) ମଧ୍ୟ ଦଣ୍ଡିତ ହେବେ । (୬) ଗୃହସ୍ୱାମୀ ନିଜଗୃହରୁ ଅନ୍ୟକାର୍ଯ୍ୟ ସକାଶେ ଦେଶାନ୍ତରକୁ ଯିବା ବ୍ୟକ୍ତି ଏବଂ ଅନ୍ୟଦେଶରୁ କୌଣସି କାର୍ଯ୍ୟସାଧନ କରିବା ସକାଶେ ଗୃହକୁ ଆସିବା ବ୍ୟକ୍ତିମାନଙ୍କର ଯିବା ଆସିବା ସମୟ, ଯିବା ଆସିବାର ପ୍ରୟୋଜନ ଇତ୍ୟାଦି ବିଷୟ ଗୋପ ଓ ସ୍ଥାନିକଙ୍କୁ ଜଣାଇବେ; ଏଥିରୁ ଅନ୍ୟଥା କଲେ ଏହି ବିଦେଶୀ ଲୋକଙ୍କ ଦ୍ୱାରା କରାଯିବା ଚୋରି ପ୍ରଭୃତି ରାତ୍ରିଦୋଷରେ ସେ ନିଜେ ମଧ୍ୟ ଭାଗୀ ହେବେ । ଏମାନଙ୍କଦ୍ୱାରା ଚୋରି ପ୍ରଭୃତି କୌଣସି ଅନିଷ୍ଟ ନହେଲେ ମଧ୍ୟ ଉକ୍ତ ବ୍ୟକ୍ତିମାନେ ଆସିବା ଯିବା ବିଷୟ ଯଦି ଗୃହସ୍ୱାମୀ ଗୋପ-ସ୍ଥାନିକଙ୍କୁ ନ ଜଣାଇଥାନ୍ତି, ତେବେ ସେ ତିନିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୭) ବେପାରୀ ବେଶରେ ରାଜମାର୍ଗରେ ବୁଲୁଥିବା ଗୁପ୍ତଚର ଓ କାଠ, ଘାସ ଆଣିବା ଓ ଗୋରୁଚରାଇବା ବେଶରେ ଗୋଚର,

**ସବ୍ରଣମନଷ୍ଟୋପକରଣମୁଦ୍ଭାଣ୍ଡୀକୃତମାବଗ୍ନମଭସ୍ୱପ୍ନମଧ୍ୱକ୍ଲାନ୍ତମପୂର୍ବମ୍ ବା ଗୃହ୍ଣୀୟୁଃ । ଏବମଭ୍ୟନ୍ତରେ ଶୂନ୍ୟନିବେଶାବେଶନ ଶୌଣ୍ଡିକୌଦନିକପାକ୍ୱମାଂସିକଦ୍ୟୂତପାଷଣ୍ଡାବାସେଷୁ ବିଚୟଂ କୁର୍ଯୁଃ । (୮) ଅଗ୍ନିପ୍ରତୀକାରଂ ଚ ଗ୍ରୀଷ୍ମେ ମଧ୍ୟମୟୋରହ୍ନ-ଶ୍ଚତୁର୍ଭାଗୟୋଃ । ଅଷ୍ଟଭାଗୋଽଗ୍ନି ଦଣ୍ଡଃ । ବହିରଧିଶ୍ରୟଣଂ**

ବନ ଜଙ୍ଗଲରେ ବୁଲୁଥିବା ଗୁପ୍ତଚରମାନେ ଦେବାଳୟ, ତୀର୍ଥସ୍ଥାନ, ବନ ଓ ଶ୍ମଶାନରେ ଶସ୍ତ୍ରାଦିଦ୍ୱାରା ଘାଇତ ହୋଇଥିବା, ଛୁରୀ, ଭୁଷା, ଅଗର ପ୍ରଭୃତି ଅନିଷ୍ଟକାରକ ଉପକରଣ ଧରିଥିବା, ବହୁତଗୁଡ଼ିଏ ମୋଟରୀ, ପେଡ଼ି ଓ ବୁଜୁଳି ବୋହିଥିବା, ଡରୁଥିବା, ରାତିରେ ବହୁତ ପରିଶ୍ରମ କରିବା ଯୋଗୁଁ ଦିନରେ ଢୁଲାଇ ଶୋଇପଡ଼ୁଥିବା, ବହୁତ ବାଟ ଚାଲି ଚାଲି ହାଲିଆ ହେଲପରି ଜଣାଯାଉଥିବା ଓ ପୂର୍ବରୁ ଚିହ୍ନିନଥିବା ବ୍ୟକ୍ତିମାନଙ୍କୁ ଧରି ନାଗରିକଙ୍କୁ ଅର୍ପଣ କରିବେ । ଉକ୍ତପ୍ରକାରେ ନଗର ଅନ୍ତରାଳରେ ଥିବା ଶୂନ୍ୟ ମନ୍ଦିର, ଶିଳ୍ପଶାଳା, ଶୁଣ୍ଡିଘର, ଭାତବିକାଳିଘର, ମାଂସତର୍କାରୀ ବିକାଳିର ଘର, ଜୁଆଖେଳ ଘର, ପାଷଣ୍ଡ ସାଧୁର ମଠ, (ମଦକୋଠି, ଭାତ ହୋଟେଲ, ମାଂସ ହୋଟେଲ, ଜୁଆଖଡ଼ା, ଭଣ୍ଡବାବାଜୀ ମଠ) ମାନଙ୍କରେ ମଧ୍ୟ ଗୁପ୍ତଚରମାନେ ଶସ୍ତ୍ରକୃତବ୍ରଣାଦି ପୀଡ଼ିତ ବ୍ୟକ୍ତି ଓ ଉପରୋକ୍ତ ଅନ୍ୟାନ୍ୟ ଲକ୍ଷଣଥିବା ବ୍ୟକ୍ତିମାନଙ୍କୁ ଅନୁସନ୍ଧାନ କରିବେ । (୮) ଗ୍ରୀଷ୍ମଋତୁରେ ଦିବସର ପ୍ରଥମ ପ୍ରହର ଓ ଚତୁର୍ଥ ପ୍ରହର ଛଡ଼ା ଦ୍ୱିତୀୟ ଓ ତୃତୀୟ ପ୍ରହରରେ ଅତିଶୟ ଅଗ୍ନିଜ୍ୱାଳାହେତୁରୁ ସ୍ଫୁଲିଙ୍ଗ ପ୍ରଭୃତି ଉପରକୁ ଉଠିବା ଭୟଥିବା ଯୋଗୁଁ ଅଗ୍ନିକର୍ମ ନିବାରଣ କରିବେ (ନଡ଼ା, ପାଳ, ଖଜୁରୀ ଓ ତାଳପତ୍ର ପ୍ରଭୃତିରେ ଛପର ହୋଇଥିବା ଘରମାନଙ୍କ ସକାଶେ ଏହି ନିୟମ ପ୍ରଯୁଜ୍ୟ) । ଯେଉଁମାନେ ନିଷେଧାଜ୍ଞାକୁ ଅବଜ୍ଞା କରି ଦିବସର ଦ୍ୱିତୀୟ ଓ ତୃତୀୟ ପ୍ରହରରେ ଅଗ୍ନିକର୍ମ କରିବେ ଅର୍ଥାତ୍ ନିଆଁ ଜାଳିବେ, ସେମାନେ ଏକ ପଣର ଆଠଭାଗରୁ ଏକଭାଗ ଅଗ୍ନିକାର୍ଯ୍ୟ କରିବା ନିମିତ୍ତ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଉକ୍ତ ସମୟରେ ରନ୍ଧନାଦି କାର୍ଯ୍ୟ କରିବାକୁ ବାଧ୍ୟ ହେଲେ ଘରର ବାହାରେ ଅଗ୍ନିକୁ ଆଣି କରି ତାହା କରିବେ । * ପାଞ୍ଚଗୋଟି

* ଦ୍ୱିତୀୟ ତୃତୀୟ ପ୍ରହରର ମଧ୍ୟମ ପାଞ୍ଚଘଟିକା ସମୟରେ ଅଗ୍ନିକର୍ମ କଲେ ଏକପଣର ଚତୁର୍ଥାଂଶ ଦଣ୍ଡ—(ଗଣପତି) ।

ବା କୁର୍ଯ୍ୟୁଃ । ପାଦଃ ପଞ୍ଚଘଟୀନାମ୍ । କୁମ୍ଭଦ୍ରୋଣୀନିଃଶ୍ରେଣୀପରଶୁ-ସୂର୍ପାଂକୁଶକଚଗ୍ରହଣୀଦୃତୀନାଂ ଚାକରଣେ । (୯) ତୃଣକଟଛନ୍ନା-ନ୍ୟପନୟେତ୍ । ଅଗ୍ନିଜୀବିନ ଏକସ୍ଥାନ୍ ବାସୟେତ୍ । ସ୍ୱଗୃହ-ପ୍ରଦ୍ୱାରେଷୁ ଗୃହସ୍ୱାମିନୋ ବସେୟୁରସମ୍ପାତିନୋ ରାତ୍ରୌ । ରଥ୍ୟାସୁ କୁଟବ୍ରଜାଃ ସହସ୍ରଂ ତିଷ୍ଠେୟୁଃ, ଚତୁଷ୍ପଥଦ୍ୱାରରାଜପରିଗ୍ରହେଷୁ ଚ । (୧୦) ପ୍ରଦୀପ୍ତମନଭିଧାବତୋ ଗୃହସ୍ୱାମିନୋ ଦ୍ୱାଦଶପଣୋ ଦଣ୍ଡଃ ।

---

ଜଳପୂର୍ଣ୍ଣ ଘଡ଼ି, ଜଳପୂର୍ଣ୍ଣ କୁମ୍ଭ, ଜଳପୂର୍ଣ୍ଣ କାଠର ଜଳରଖିବା ଦ୍ରୋଣି ବା ଫିମ୍ପା, ନିଶୁଣୀ, ପରଶୁ ବା ଟାଙ୍ଗି (କାଠହାଣିବା ପାଇଁ), କୁଲା ବା ମୁଖା (ଧୂଆଁରୁ ରକ୍ଷାପାଇବା ପାଇଁ), ଅଙ୍କୁଶ ବା ଅଙ୍କୁଡ଼ି (ପୋଡ଼ିଯାଉଥିବା ଜିନିଷ, ମନୁଷ୍ୟ ବା ଗାଈ, ମେଣ୍ଢା, ଛେଳିଙ୍କୁ ଟାଣିଆଣିବା ପାଇଁ), କଚଗ୍ରହଣୀ (ଘରର କବାଟ ପୋଡ଼ିଯାଉଥିବା ବେଳେ ତାକୁ ଓ ପୁଡ଼ୁଗ ଇତ୍ୟାଦି ଟାଣି ଆଣିବାପାଇଁ), ଏବଂ ଦୃତି ଅର୍ଥାତ୍ ଚମଡ଼ାର ଜଳରଖିବା ମୁଣା— ଏସମସ୍ତ ନିଆଁ ଲିଭା ଜିନିଷ ଗ୍ରୀଷ୍ମକାଳରେ ଯେଉଁ ବ୍ୟକ୍ତି ଦ୍ୱାରଦେଶରେ ନ ରଖିବେ, ସେ ଏକପଣର ଚାରିଭାଗରୁ ଏକଭାଗ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୯) ନାଗରିକ ଛଣ, ନଡ଼ା, ତାଳପତ୍ର ଓ ଖଜୁରିପତ୍ର ଇତ୍ୟାଦିରେ ଛପର ହୋଇଥିବା କୁଡ଼ିଆଗୁଡ଼ିକୁ ଗ୍ରୀଷ୍ମକାଳରେ ବାହାର କରାଇଦେବେ । ଲୋହରା, କଉରା ଓ କାଚରା ପ୍ରଭୃତି ଅଗ୍ନିଜୀବୀମାନଙ୍କୁ ଅଗ୍ନିଭୟର ପ୍ରତୀକାର କରାଯାଇଥିବା ଗୋଟିଏ ବଡ଼ ଚତୁଃଶାଳାରେ ସ୍ୱତନ୍ତ୍ରଭାବରେ ରଖାଇ ସେମାନଙ୍କଦ୍ୱାରା କାର୍ଯ୍ୟ କରାଇବେ । ପ୍ରତ୍ୟେକ ଗୃହସ୍ୱାମୀ ଗ୍ରୀଷ୍ମକାଳ ରାତିରେ ଅନ୍ୟ କେଉଁଆଡ଼େ ନଯାଇ ନିଜର ଦାଣ୍ଡଦ୍ୱାରରେ ହିଁ ରହିବାକୁ ଆଦେଶ ଦେବେ । ଦାଣ୍ଡର ରାସ୍ତାକଡ଼ରେ ଏକସହସ୍ର ଜଳପୂର୍ଣ୍ଣ କୁମ୍ଭ ଧାଡ଼ି ଧାଡ଼ି କରି ରଖାଇବେ । ଚତୁଷ୍ପଥ, ରାଜଦ୍ୱାର, କୋଷଗୃହ, କୁପ୍ୟଗୃହ, କୋଷ୍ଠାଗାର, ପଣ୍ୟଗୃହ, ଗଜଶାଳା, ଅଶ୍ୱଶାଳାଦି ନିକଟରେ ମଧ୍ୟ ଏହିପରି ଜଳପୂର୍ଣ୍ଣ କୁମ୍ଭ ରଖାଇବେ । (୧୦) ଯେଉଁ ଗୃହସ୍ୱାମୀ କୌଣସି ଗୃହ ପୋଡ଼ିଯାଉଥିବାର ଦେଖି ମଧ୍ୟ ତାକୁ ଲିଭାଇବା ପାଇଁ ଧାଇଁ ଯାଏନାହିଁ ତାକୁ ବାରପଣ ଅର୍ଥଦଣ୍ଡ, ଭଡ଼ାଘରେ ରହିଥିବା ବ୍ୟକ୍ତି ମଧ୍ୟ ଘରପୋଡ଼ି ଦେଲେ ଲିଭାଇବା ପାଇଁ ନ ଧାଇଁଲେ ତାକୁ ଛ’ପଣ

**ଷଟ୍‌ପଣୋଽବକ୍ତୃଣଃ । ପ୍ରମାଦାଦ୍ ଦୀପ୍ତେଷୁ ଚତୁଷ୍ପଞ୍ଚାଶତ୍‌ପଣୋ ଦଣ୍ଡଃ । ପ୍ରାଦୀପିକୋଽଗ୍ନିନାବଧ୍ୟଃ । (୧୧) ପାଂସୁନ୍ୟାସେ ରଥ୍ୟାୟାମଷ୍ଟଭାଗୋ ଦଣ୍ଡଃ । ପଙ୍କୋଦକସନ୍ନିରୋଧେ ପାଦଃ । ରାଜମାର୍ଗେ ଦ୍ୱିଗୁଣଃ । (୧୨) ପୁଣ୍ୟସ୍ଥାନୋଦକସ୍ଥାନଦେବଗୃହ ରାଜପରିଗ୍ରହେଷୁ ପଣୋତ୍ତରା ବିଷ୍ଠାଦଣ୍ଡାଃ । ମୂତ୍ରେଷ୍ୱର୍ଧଦଣ୍ଡାଃ । ଭୈଷଜ୍ୟବ୍ୟାଧିଭୟନିମିତ୍ତମଦଣ୍ଡ୍ୟାଃ । (୧୩) ମାର୍ଜାରଶ୍ୱନକୁଳ**

ଅର୍ଥଦଣ୍ଡ, ଅସାବଧାନତା ବଶତଃ ନିଜର ବା ଅନ୍ୟର ଘରେ ନିଆଁ ଲଗାଇଦେବା ବ୍ୟକ୍ତିକୁ ଚଉବନପଣ ଅର୍ଥଦଣ୍ଡ ଏବଂ ଜାଣିଶୁଣି ନିଜର ବା ଅନ୍ୟର ଘରେ ନିଆଁ ଲଗାଇଦେବା ବ୍ୟକ୍ତିକୁ ସେହି ନିଆଁରେ ପକାଇ ପୋଡ଼ି ଦେବେ ଅର୍ଥାତ୍ ପ୍ରାଣଦଣ୍ଡରେ ଦଣ୍ଡିତ କରିବେ । (୧୧) କୌଣସି ବ୍ୟକ୍ତି ରଥ ଶକଟାଦି ଯିବାର ମାର୍ଗରେ ଧୂଳି, ମଳି, କୁଟାପତ୍ର ପକାଇଲେ ତାଙ୍କୁ ଏକପଣର ଆଠଭାଗରୁ ଭାଗେ ଅର୍ଥଦଣ୍ଡ, ଉକ୍ତ ମାର୍ଗରେ କାଦୁଅ ଓ ପାଣି ଅଟକାଇଲେ ତାଙ୍କୁ ଏକପଣର ଚାରିଭାଗରୁ ଭାଗେ ଅର୍ଥଦଣ୍ଡ ଏବଂ ପ୍ରଧାନ ରାଜମାର୍ଗରେ ଏପରି କଲେ ତାଙ୍କୁ ଏହାର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବେ । (୧୨) ରାଜମାର୍ଗ, ପୁଣ୍ୟସ୍ଥାନ (ତୀର୍ଥାଦି ପବିତ୍ର ସ୍ଥାନ), ଉଦକ ସ୍ଥାନ (ନଦୀ, ବନ୍ଧ, କୂଅ ପ୍ରଭୃତି ସ୍ଥାନ), ଦେବାଳୟ ଓ ରାଜପରିଗ୍ରହ ଅର୍ଥାତ୍ ରାଜାଙ୍କର କୋଷଗୃହ, କୁପ୍ୟଗୃହ, କୋଷ୍ଠାଗାର, ପଣ୍ୟଗୃହ, ଗଜଶାଳା, ଗୋଶାଳା ଓ ଅଶ୍ୱଶାଳା ପ୍ରଭୃତି ସ୍ଥାନରେ ମଳତ୍ୟାଗ କଲେ ଉତ୍ତରୋତ୍ତର ଏକପଣ ବୃଦ୍ଧିକରି ଅର୍ଥାତ୍ ରାଜମାର୍ଗରେ ମଳତ୍ୟାଗ କଲେ ଏକପଣ, ପୁଣ୍ୟସ୍ଥାନରେ ଦୁଇପଣ, ଉଦକସ୍ଥାନରେ ତିନିପଣ, ଦେବଗୃହରେ ଚାରିପଣ ଏବଂ ରାଜଗୃହ, କୋଷାଗାର ଇତ୍ୟାଦିରେ ପାଞ୍ଚପଣ ଅର୍ଥଦଣ୍ଡ ଦେବେ । ଉକ୍ତ ସ୍ଥାନମାନଙ୍କରେ ମୂତ୍ରତ୍ୟାଗ କଲେ, ମଳତ୍ୟାଗ ସକାଶେ ନିର୍ଦ୍ଦିଷ୍ଟ ହୋଇଥିବା ଦଣ୍ଡର ଅର୍ଦ୍ଧପରିମାଣ ଦଣ୍ଡ ବ୍ୟବସ୍ଥା କରିବେ । କିନ୍ତୁ ବିରେଚକ ଔଷଧ ସେବନ କରିଥିବା ବ୍ୟକ୍ତି, ଅତିସାର ପ୍ରଭୃତି ରୋଗରେ ପୀଡ଼ିତ ହୋଇଥିବା ବ୍ୟକ୍ତି କିମ୍ବା କୌଣସି ପ୍ରକାର ଭୟଦ୍ୱାରା ଭୀତ କାତର ହୋଇଥିବା ବ୍ୟକ୍ତି ଯଦି ଉକ୍ତ ସ୍ଥାନମାନଙ୍କରେ ମଳମୂତ୍ର ତ୍ୟାଗକରନ୍ତି ତେବେ ସେ ଉପରୋକ୍ତ ଦଣ୍ଡରେ ଦଣ୍ଡିତ ହେବ ନାହିଁ । (୧୩) ମଲ୍ଲ ବିଲେଇ, କୁକ୍କୁର, ନେଉଳ ଓ ସାପକୁ

ସର୍ପପ୍ରେତାନାଂ ନଗରସ୍ୟାନ୍ତରୁତ୍ସର୍ଗେ ତ୍ରିପଣୋ ଦଣ୍ଡଃ । ଖରୋଷ୍ଟ୍ରାଃଶ୍ୱତରଶ୍ୱପଶୁପ୍ରେତାନାଂ ଷଟ୍‌ପଣଃ । ମନୁଷ୍ୟପ୍ରେତାନାଂ ପଞ୍ଚାଶତ୍ ପଣଃ । (୧୪) ମାର୍ଗବିପର୍ଯାସେ ଶବଦ୍ୱାରାଦନ୍ୟତଃ ଶବନିର୍ଣୟନେ ପୂର୍ବଃ ସାହସଦଣ୍ଡଃ । ଦ୍ୱାଃସ୍ଥାନାମ୍ ଦ୍ୱିଶତମ୍ । ଶ୍ମଶାନାଦନ୍ୟତ୍ର ନ୍ୟାସେ ଦହନେ ଚ ଦ୍ୱାଦଶପଣୋ ଦଣ୍ଡଃ । (୧୫) ବିଷଣ୍ଣାଳିକମୁଭୟତୋ ରାତ୍ରଂ ଯାମତୂର୍ଯମ୍ । ତୂର୍ଯଶବ୍ଦେ ରାଜ୍ଞୋ ଗୃହାଭ୍ୟାଶେ ସପାଦପଣମକ୍ଷଣତାଡ଼ନମ୍ ପ୍ରଥମ ପଶ୍ଚିମ ଯାମିକମ୍ । ମଧ୍ୟମଯାମିକଂ ଦ୍ୱିଗୁଣମ୍ । ବହିଶ୍ଚତୁର୍ଗୁଣମ୍ । (୧୬) ଶଂକନୀୟେ ଦେଶେ ଲିଙ୍ଗେ

---

ନଗରସୀମାମଧ୍ୟରେ ପକାଇବା ବ୍ୟକ୍ତିଙ୍କୁ ତିନିପଣ, ମଲ୍ଲ ଗଧ, ଓଟ, ଖଚ୍ଚର, ଅଶ୍ୱ ପ୍ରଭୃତିଙ୍କ ନଗରସୀମାମଧ୍ୟରେ ପକାଇବା ବ୍ୟକ୍ତିକୁ ଛ'ପଣ ଓ ମନୁଷ୍ୟର ମୃତଶରୀର ନଗରସୀମା ମଧ୍ୟରେ ପକାଇବା ବ୍ୟକ୍ତିକୁ ପଞ୍ଚାଶପଣ ଅର୍ଥଦଣ୍ଡ ଦେବେ । (୧୪) ଶବ ନିଷ୍କାସନ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ପଥ ଓ ଦ୍ୱାର ବ୍ୟତୀତ ଅନ୍ୟପଥ ଓ ଅନ୍ୟଦ୍ୱାର ଦେଇ ଶବ ନିଷ୍କାସନ କରିବା ବ୍ୟକ୍ତିଙ୍କୁ ପୂର୍ବସାହସ ଦଣ୍ଡରେ ଦଣ୍ଡିତ କରିବେ । ଯେଉଁ ଦ୍ୱାରରକ୍ଷୀମାନେ ଏପରି ଶବ ନିଷ୍କାସନ କରିବାକୁ ନିଷେଧ କରିବେ ନାହିଁ, ସେମାନଙ୍କୁ ଦୁଇଶହପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବେ ଏବଂ ଶ୍ମଶାନ ବ୍ୟତୀତ ଅନ୍ୟ ସ୍ଥାନରେ ବାଳକ ଓ ଅନାଥ ପ୍ରଭୃତିଙ୍କ ଶବକୁ ପୋତିବା, ପକାଇଦେବା କିମ୍ବା ଦାହ କରିବା ବ୍ୟକ୍ତିକୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବେ । (୧୫) ରାତିର ପ୍ରଥମ ଛ'ଘଡ଼ିକା ପରେ ଓ ଶେଷ ଛ'ଘଡ଼ିକା ପୂର୍ବରୁ ଦୁଇଥର ତୂର୍ଯ୍ୟଧ୍ୱନିଦ୍ୱାରା ଲୋକମାନଙ୍କର ରାତିସଞ୍ଚାର ନିରୋଧ କରାଇବେ । ତୂର୍ଯ୍ୟଧ୍ୱନି ଶୁଣାଯିବାର ପ୍ରଥମ ଓ ଶେଷ ପ୍ରହରରେ କୌଣସି ବ୍ୟକ୍ତି ଯଦି ରାଜଗୃହାଦିର ନିକଟରେ ବିଚରଣ କରୁଥିବାର ଦେଖାଯାଏ ତେବେ ତାକୁ ଏକପଣ-ଏକପା, ମଧ୍ୟମ ପ୍ରହରରେ ବିଚରଣ କରୁଥିବାର ଦେଖାଗଲେ ଏହାର ଦୁଇଗୁଣ ଏବଂ ଏହି ରାଜଗୃହାଦିର ବାହାରେ ଏପରି ବିଚରଣ କରୁଥିବାର ଦେଖାଗଲେ ଏହାର ଚାରିଗୁଣ ଅର୍ଥଦଣ୍ଡ ଦେବେ । (୧୬) ଶଙ୍କନୀୟ ସ୍ଥାନରେ ଅର୍ଥାତ୍ ଯେଉଁ ସ୍ଥାନରେ ରହିଲେ ଚୋର କିମ୍ବା ଜାର ବୋଲି ସନ୍ଦେହ ହେବ ସେପରି ସ୍ଥାନରେ ଥିବା ବ୍ୟକ୍ତିଙ୍କୁ ଶଙ୍କନୀୟ ଲିଙ୍ଗ ଅର୍ଥାତ୍

**ପୂର୍ବାପଦାନେ ଚ ଗୃହୀତମନୁଯୁଞ୍ଜୀତ । (୧୭) ରାଜପରିଗ୍ରହୋପଗମନେ ନଗରରକ୍ଷାରୋହଣେ ଚ ମଧ୍ୟମଃ ସାହସଦଣ୍ଡଃ । (୧୮) ସୂତିକାଚିକିତ୍ସକପ୍ରେତପ୍ରଦୀପଯାନନାଗରକତୂର୍ଯ୍ୟପ୍ରେକ୍ଷାଗ୍ନିନିମିତ୍ତଂ ମୁଦ୍ରାଭିଶ୍ଚାଗ୍ରାହ୍ୟାଃ । (୧୯) ଚାରରାତ୍ରିଷୁ ପ୍ରଚ୍ଛନ୍ନବିପରୀତବେଶାଃ ପ୍ରବ୍ରଜିତା ଦଣ୍ଡଶସ୍ତ୍ରହସ୍ତାଶ୍ଚ ମନୁଷ୍ୟା ଦୋଷତୋ**

---

ମୁହଁ ଘୋଡ଼ାଇହୋଇ, ବାଡ଼କାନ୍ଥ ଗୁଳିରେ ଲୁକ୍କାୟିତ ଭାବେ ରହିବା ବ୍ୟକ୍ତିଙ୍କୁ ଏବଂ ପୂର୍ବରେ ଚୋରିକରି ଧରାପଡ଼ିଥିବା ବ୍ୟକ୍ତିଙ୍କୁ ଦେଖିପାରିଲେ ତାଙ୍କୁ ଧରି, "ତୁମେ କିଏ, କେଉଁ ଜାଗାରୁ ଆସିଛ, ତୁମେ କାହାର ଲୋକ, ଏଠାକୁ କାହିଁକି ଆସିଛ" ଇତ୍ୟାଦି କଥା ପଚାରିବାକୁ ହେବ । (୧୭) କୌଣସି ବ୍ୟକ୍ତି ରାଜକୀୟ ବାସଭବନ ଓ କଚେରି ପ୍ରଭୃତି କାର୍ଯ୍ୟାଳୟ ତଥା ରାଜୋଦ୍ୟାନ ପ୍ରଭୃତିରେ ଅନୁମତି ନଥାଇ ପ୍ରବେଶ କଲେ ଏବଂ ନଗରରକ୍ଷା ପାଇଁ ନିର୍ମିତ ହୋଇଥିବା ପ୍ରାଚୀର ଓ ଅଟ୍ଟାଳିକା ପ୍ରଭୃତିରେ ଆରୋହଣ କଲେ (ଚଢ଼ିଲେ) ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୮) ସୂତିକାର ଶୁଶ୍ରୂଷା ସକାଶେ, ଚିକିତ୍ସାପାଇଁ ବୈଦ୍ୟଙ୍କୁ ଡାକିଯିବା ସକାଶେ ଓ ଶବ ବାହାର କରିବା ସକାଶେ ଯାତାୟାତ କରିବା ବ୍ୟକ୍ତି, ନିଜକୁ ଚିହ୍ନିତ କରିବା ସକାଶେ ହାତରେ ଆଲୋକ ଧରି ଯାତାୟାତ କରିବା ବ୍ୟକ୍ତି, ନାଗରିକଙ୍କୁ ଦେଖା କରିବା ସକାଶେ ଆକସ୍ମିକ ତୂର୍ଯ୍ୟନାଦ ଶ୍ରବଣକରି ଯାଉଥିବା ବ୍ୟକ୍ତି, ରାଜାଙ୍କ ଆଦେଶାନୁସାରେ ହେଉଥିବା ନାଟକ ପ୍ରଭୃତି ଦେଖିଯାଉଥିବା ବ୍ୟକ୍ତି, ଘରପୋଡ଼ି ଲିଭାଇବା ପାଇଁ ଯାଉଥିବା ବା ଅନ୍ୟ କୌଣସି ଭୟହେତୁରୁ ଧାଉଁଥିବା ବ୍ୟକ୍ତିମାନେ ଅଗ୍ରାହ୍ୟ ଅର୍ଥାତ୍ ଅସମୟରେ ଯାତାୟାତ କରୁଥିଲେ ମଧ୍ୟ ଅଟକଯୋଗ୍ୟ ନୁହନ୍ତି (କିନ୍ତୁ ଏମାନଙ୍କୁ ଉପଯୁକ୍ତ ଜେରା କରି ଛାଡ଼ିବାକୁ ହେବ) । ବିଶେଷତଃ ମନ୍ତ୍ରୀ ପ୍ରଭୃତି ରାଜକୀୟ କର୍ମଚାରୀମାନେ ଯେଉଁମାନେ କି ଏପରି ସ୍ୱଚ୍ଛନ୍ଦରେ ଯାତାୟାତ କରିବାପାଇଁ ଅନୁଜ୍ଞାପତ୍ର (Pass) ପାଇଥାନ୍ତି, ସେମାନେ ମଧ୍ୟ ଅଗ୍ରାହ୍ୟ ଅଟନ୍ତି । (୧୯) ଯାତ୍ରା ଉତ୍ସବ ଇତ୍ୟାଦିରେ, ସମସ୍ତେ ନିର୍ବିଘ୍ନରେ ଯାତାୟାତ କରିପାରିବା ରାତିମାନଙ୍କରେ ବିପରୀତ ବେଶ ଅର୍ଥାତ୍ ପୁରୁଷବେଶଧାରିଣୀ ସ୍ତ୍ରୀ କିମ୍ବା ସ୍ତ୍ରୀବେଶଧାରୀ ପୁରୁଷ, ସନ୍ନ୍ୟାସିନୀ, ଠେଙ୍ଗା ଓ ଶସ୍ତ୍ର ପ୍ରଭୃତି ଧରିଥିବା ବ୍ୟକ୍ତିମାନଙ୍କୁ ଉଦାହରଣ କରି ଦୋଷ

ଦଣ୍ଡ୍ୟାଃ । (୨୦) ରକ୍ଷିଣାମବାର୍ଯ୍ୟଂ ବାରୟତାଂ ବାର୍ଯ୍ୟଂ ଚାବାରୟତା ମକ୍ଷଣଦ୍ୱିଗୁଣୋ ଦଣ୍ଡଃ । ସ୍ତ୍ରିୟଂ ଦାସୀମଧିମେହୟତାଂ ପୂର୍ବଃ ସାହସଦଣ୍ଡଃ, ଅଦାସୀଂ ମଧ୍ୟମଃ, କୃତାବରୋଧାମୁତ୍ତମଃ, କୁଳସ୍ତ୍ରିୟଂ ବଧଃ । (୨୧) ଚେତନାଚେତନକଂ ରାତ୍ରିଦୋଷମଶଂସତୋ ନାଗରକସ୍ୟ ଦୋଷାନୁରୂପୋ ଦଣ୍ଡଃ, ପ୍ରମାଦସ୍ଥାନେ ଚ । (୨୨) ନିତ୍ୟମୁଦକସ୍ଥାନମାର୍ଗଭୂମିଚ୍ଛନ୍ନପଥବପ୍ରପ୍ରାକାରରକ୍ଷାବେକ୍ଷଣଂ, ନଷ୍ଟ-

---

ଅନୁରୂପ ଦଣ୍ଡବିଧାନ କରିବାକୁ ହେବ । (୨୦) ଯେଉଁ ନାଗରିକ ରକ୍ଷିମାନେ (ଚୌକିଦାର ପ୍ରଭୃତି) ଉପରୋକ୍ତ ସୂତିକା ଶୁଶ୍ରୂଷା ପ୍ରଭୃତି କାର୍ଯ୍ୟ ସକାଶେ ଅବାଧରେ ଯାତାୟାତ କରିବା ପାଇଁ ଅନୁଜ୍ଞା ପାଇଥିବା ବ୍ୟକ୍ତିମାନଙ୍କୁ ଅଯଥା ଅଟକାଇ ହଇରାଣ କରିବେ ଏବଂ ଅଟକଯୋଗ୍ୟ ବ୍ୟକ୍ତିମାନଙ୍କୁ ଅଟକାଇବେ ନାହିଁ, ତେବେ ସେମାନେ ଅକ୍ଷଣସଞ୍ଚାର ଦଣ୍ଡର ଅର୍ଥାତ୍ ଅସମୟରେ ବେଳସ୍ଥମରେ ଯାତାୟାତ କରିବା ବ୍ୟକ୍ତିମାନଙ୍କ ସମ୍ବନ୍ଧେ ଧାର୍ଯ୍ୟ ହୋଇଥିବା ଦଣ୍ଡର ଦ୍ୱିଗୁଣ ଦଣ୍ଡରେ ଦଣ୍ଡିତ ହେବେ । ଏହି ରକ୍ଷିପୁରୁଷମାନେ ଅନ୍ୟର ଦାସୀକୁ ବଳାତ୍କାରରେ ସମ୍ଭୋଗ କଲେ ପୂର୍ବ-ସାହସଦଣ୍ଡ, ଗଣିକାକୁ ବଳାତ୍କାରରେ ସମ୍ଭୋଗ କଲେ ମଧ୍ୟମସାହସଦଣ୍ଡ, ଦାସୀ ହେଉ ବା ଗଣିକା ହେଉ ଯଦି ସେ କାହାର ଭାର୍ଯ୍ୟାରୂପରେ ଗୃହୀତ ହୋଇଥାଏ, ତାହାକୁ ବଳାତ୍କାରରେ ସମ୍ଭୋଗ କଲେ ଉତ୍ତମସାହସଦଣ୍ଡ ଏବଂ କୁଳସ୍ତ୍ରୀକୁ ବଳାତ୍କାରରେ ସମ୍ଭୋଗ କଲେ ପ୍ରାଣଦଣ୍ଡରେ ଦଣ୍ଡିତ ହେବେ । (୨୧) ଚେତନ ଓ ଅଚେତନ (ମନୁଷ୍ୟ ପଶୁ ପ୍ରଭୃତି ଚେତନ ଓ ପଥର, ଶସ୍ତ୍ର, ବାଣ ପ୍ରଭୃତି ଅଚେତନ) ଯେକୌଣସି ସମ୍ବନ୍ଧର ଅପରାଧ ଯେଉଁ ନାଗରିକ ରାଜାଙ୍କୁ ନ କହନ୍ତି, ସେ ଦୋଷ ଅନୁରୂପ ଦଣ୍ଡ ପାଇବେ । ଏହାଙ୍କ ଅଧୀନରେ ଥିବା ରକ୍ଷିପୁରୁଷ ଅର୍ଥାତ୍ ଚୌକିଦାର ପ୍ରଭୃତି ମଦ୍ୟପାନାଦି ଦ୍ୱାରା ରକ୍ଷା ବ୍ୟାପାରରେ ଶିଥିଳ ହେଲେ ସେମାନଙ୍କୁ ମଧ୍ୟ ଦୋଷ ଅନୁସାରେ ଦଣ୍ଡ ଦେବାକୁ ହେବ । (୨୨) ନାଗରିକ ପ୍ରତିଦିନ ନଦୀ, କୂପ, ପୁଷ୍କରିଣୀ ପ୍ରଭୃତି ଜଳଥିବା ସ୍ଥାନ, ପ୍ରବେଶନିର୍ଗମ ମାର୍ଗ, ଭୂମି ଅର୍ଥାତ୍ ମାର୍ଗାଦିସ୍ଥଳ, ସୁଡ଼ଙ୍ଗପ୍ରଭୃତି ଗୁପ୍ତପଥ, ବପ୍ର ଅର୍ଥାତ୍ ପ୍ରାକାର (ପାଚେରି)ର ଚତୁର୍ଦ୍ଦିଗରେ ଥିବା ମାଟିବନ୍ଧ, ପ୍ରାକାର ଅର୍ଥାତ୍ ଆବରଣ

ପ୍ରସୃତାପସୃତାନାଂ ଚ ରକ୍ଷଣମ୍ । (୬୩) ବନ୍ଧନାଗାରେ ଚ ବାଲବୃଦ୍ଧବ୍ୟାଧିତାନାଥାନାଂ ଜାତନକ୍ଷତ୍ରପୌର୍ଣ୍ଣମାସୀଷୁ ବିସର୍ଗଃ । ପୁଣ୍ୟଶୀଳାଃ ସମୟାନୁବନ୍ଧା ବା ଦୋଷନିଷ୍କ୍ରୟଂ ଦଦ୍ୟୁଃ ।

(୬୪) ଦିବସେ ପଞ୍ଚରାତ୍ରେ ବା ବନ୍ଧନସ୍ଥାନ୍ ବିଶୋଧୟେତ୍ ।
କର୍ମଣା କାୟଦଣ୍ଡେନ ହିରଣ୍ୟାନୁଗ୍ରହେଣ ବା ॥

(୬୫) ଅପୂର୍ବଦେଶାଧିଗମେ ଯୁବରାଜାଭିଷେଚନେ ।
ପୁତ୍ର ଜନ୍ମନି ବା ମୋକ୍ଷୋ ବନ୍ଧନସ୍ୟ ବିଧୀୟତେ ॥

---

ପାରେଖି, ରକ୍ଷା ଅର୍ଥାତ୍ ଅଟ୍ଟାଳିକା ପରିଖା ପ୍ରଭୃତି ସ୍ଥାନମାନଙ୍କର ପର୍ଯ୍ୟବେକ୍ଷଣ କରିବେ । ପଡ଼ିଯାଇଥିବା ସୁବର୍ଣ୍ଣ ଅଳଙ୍କାରାଦି ପଦାର୍ଥ, ପାଶୋରି ଛାଡ଼ି ଦେଇଥିବା ପଦାର୍ଥ ଏବଂ ଗୃହସ୍ୱାମିଙ୍କ ଅସାବଧାନତା ଯୋଗୁଁ ଫିଟିଯାଇଥିବା ଦ୍ୱିପଦ ଓ ଚତୁଷ୍ପଦ (ଗାଈଗୋରୁ, କୁକୁଡ଼ା, ହଂସ, ମୟୂର ଇତ୍ୟାଦି ଜନ୍ତୁ) ମାନଙ୍କ ରକ୍ଷଣାବେକ୍ଷଣ, ସେହି ସେହି ପଦାର୍ଥ ଓ ପ୍ରାଣୀମାନଙ୍କ ମାଲିକମାନେ ଜାଣିବାପର୍ଯ୍ୟନ୍ତ, କରିବେ । (୨୩) ରାଜାଙ୍କ ସ୍ୱଜନକ୍ଷତ୍ର ଓ ପୁଷ୍ୟାଭିଷେକ, ଶ୍ରାବଣ ରାକ୍ଷୀବନ୍ଧନ ପୌର୍ଣ୍ଣମୀ ଦିନ କାରାଗାରରେ ଅବଦ୍ଧ ହୋଇଥିବା ବାଳକ, ବୃଦ୍ଧ, ରୋଗୀ ଓ ଅନାଥମାନଙ୍କୁ ବନ୍ଧନମୁକ୍ତ କରିଦେବେ । କୌଣସି ପୁଣ୍ୟଶୀଳ ବ୍ୟକ୍ତି ଯଦି ଉକ୍ତ ଦିନମାନଙ୍କରେ ଦୈବାତ୍ ନିଜର ଶିଷ୍ଟତା ତ୍ୟାଗକରି କାରାଦଣ୍ଡ ଭୋଗିବାଭଳି କୌଣସି ଅପରାଧ କରିଥାନ୍ତି ତେବେ ତାଙ୍କଠାରୁ କାରାଦଣ୍ଡ ବଦଳରେ ଦୋଷଅନୁରୂପ ସୁବର୍ଣ୍ଣ ଗ୍ରହଣ କରି ତାଙ୍କୁ ଛାଡ଼ିଦେବେ । (୨୪, ୨୫) କଏଦୀମାନଙ୍କୁ ପ୍ରତିଦିନ ଥରେ ବା ପ୍ରତି ପାଞ୍ଚଦିନରେ ଥରେ ସେମାନଙ୍କର ସ୍ୱାସ୍ଥ୍ୟ ପ୍ରଭୃତି କିପରି ଅଛି ତାହା ପରୀକ୍ଷା କରି ଅଭାବ ଅସୁବିଧାର ସଂଶୋଧନ କରିବେ ଅଥବା ଭାରବହନ, ଶକଟ ଆକର୍ଷଣ ଇତ୍ୟାଦି କର୍ମଦ୍ୱାରା ଜରିମାନା ନ ଦେଇପାରିବା କଏଦୀମାନଙ୍କୁ, ବେତ ଓ ଲାଠିମାଡ଼ ପ୍ରଭୃତିଦ୍ୱାରା ଭାରବହନ ପ୍ରଭୃତି କାର୍ଯ୍ୟ କରିବାକୁ ଅନିଚ୍ଛୁକ ହେବା କଏଦୀମାନଙ୍କୁ ଏବଂ ଅର୍ଥଗ୍ରହଣରୂପକ ଅନୁଗ୍ରହଦ୍ୱାରା ମଧ୍ୟ କଏଦୀମାନଙ୍କୁ ବନ୍ଦିଶାଳାରୁ ପ୍ରତିଦିନ ବା ପ୍ରତି ପାଞ୍ଚଦିନରେ

ଥରେ ମୁକ୍ତ କରିବା ବ୍ୟବସ୍ଥା କରିବେ । ଶତ୍ରୁ ଜୟକର ନୂତନ ଦେଶ ଲାଭ ସମୟରେ, ଯୁବରାଜଙ୍କ ଅଭିଷେକ ସମୟରେ ଓ ରାଜପୁତ୍ରଙ୍କ ଜନ୍ମ ସମୟରେ ବନ୍ଦିମାନଙ୍କୁ (କଏଦିମାନଙ୍କୁ) କାରାମୁକ୍ତ କରିଦେବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେଽଧ୍ୟକ୍ଷପ୍ରଚାରେ ଦ୍ୱିତୀୟାଧିକରଣେ

ଅଷ୍ଟତ୍ରିଂଶୋଽଧ୍ୟାୟଃ । ନାଗରିକ ପ୍ରଣିଧିଃ—ଆଦିତଃ ସପ୍ତପଞ୍ଚାଶଃ ।

ଏତାବତା କୌଟଲୀୟସ୍ୟାର୍ଥଶାସ୍ତ୍ରସ୍ୟାଧ୍ୟକ୍ଷପ୍ରଚାରୋ ନାମ

ଦ୍ୱିତୀୟମଧିକରଣଂ ସମାପ୍ତମ୍ ।



ଶ୍ରୀ ଗଣେଶାୟ ନମଃ

# କୌଟଲ୍ୟ - ଅର୍ଥଶାସ୍ତ୍ରମ୍

## ଧର୍ମସ୍ଥୀୟଂ - ତୃତୀୟମଧିକରଣମ୍

### ପ୍ରଥମୋଽଧ୍ୟାୟଃ

### ସପ୍ତପଞ୍ଚାଶତ୍, ଅଷ୍ଟପଞ୍ଚାଶତ୍ ପ୍ରକରଣମ୍

### ବ୍ୟବହାରସ୍ଥାପନା, ବିବାଦପଦନିବନ୍ଧଃ

## CONCERNING LAW

**( DETERMINATION OF AGREEMENT, DETERMINATION OF LEGAL DISPUTES )**

( ବିବାହ, ଦାୟଭାଗ ଓ ଋଣଦାନ ପ୍ରଭୃତି ମାମଲାର ଗ୍ରାହ୍ୟାଗ୍ରାହ୍ୟତ୍ୱ ନିରୂପଣ ଓ ଉକ୍ତବିଷୟକ ବାଦୀପ୍ରତିବାଦୀମାନଙ୍କର ଦେଶ, ବାସସ୍ଥାନ ଓ ଜାତି ଇତ୍ୟାଦି କ୍ରମରେ ପତ୍ରଲେଖନ ବା ଦେୱାନୀ ଓ ଫୌଜଦାରୀ ମକଦ୍ଦମା ସମ୍ବନ୍ଧୀୟ ଲେଖର ବିଚାର )

(୧) ଧର୍ମସ୍ଥାସ୍ତ୍ରୟସ୍ତ୍ରୟୋଽମାତ୍ୟା ଜନପଦସନ୍ଧିସଂଗ୍ରହଣ-ଦ୍ରୋଣମୁଖସ୍ଥାନୀୟେଷୁ ବ୍ୟାବହାରିକାନର୍ଥାନ୍ କୁର୍ଯୁଃ ।

---

(୧) ତିନି ତିନିଜଣ ଧର୍ମସ୍ଥ (ନ୍ୟାୟାଧୀଶ ବା ଜଜ୍) ଅମାତ୍ୟ ଅର୍ଥାତ୍ ସହକାରୀନ୍ୟାୟାଧୀଶମାନଙ୍କ ସହଯୋଗରେ ରାଜ୍ୟସୀମା, ସଂଗ୍ରହଣ (ଦଶଗ୍ରାମ ମଧ୍ୟସ୍ଥ ପ୍ରଧାନ ସ୍ଥାନ), ଦ୍ରୋଣମୁଖ (ଚାରିଶହ ଗ୍ରାମମଧ୍ୟସ୍ଥ ପ୍ରଧାନ ସହର) ଓ ସ୍ଥାନୀୟ (ଆଠଶହ ଗ୍ରାମମଧ୍ୟସ୍ଥ ପ୍ରଧାନ ନଗର) ଇତ୍ୟାଦି ମୁଖ୍ୟ ସ୍ଥାନମାନଙ୍କରେ ବ୍ୟବହାର ସମ୍ବନ୍ଧୀୟ କାର୍ଯ୍ୟଗୁଡ଼ିକର ଫୈସଲା କରିବେ (ମକଦ୍ଦମାଗୁଡ଼ିକର ନିଷ୍ପତ୍ତି କରିବେ) ।

(୬) ଉପେହିତାନ୍ତରଗାରନକ୍ତାରଣ୍ୟାପଧ୍ୟୁପହ୍ୱରକୃତାଂଶ୍ଚ ବ୍ୟବ-ହାରାନ୍ ପ୍ରତିଷେଧୟେୟୁଃ କର୍ତ୍ତୁଃ କାରୟିତୁଶ୍ଚ ପୂର୍ବଃ ସାହସଦଣ୍ଡଃ ଶ୍ରୋତୃଣାମେକୈକଂ ପ୍ରତ୍ୟର୍ଦ୍ଧଦଣ୍ଡାଃ । ଶ୍ରଦ୍ଧେୟାନାନ୍ତୁ ଦ୍ରବ୍ୟ-ବ୍ୟପନୟଃ । (୩) ପରୋକ୍ଷେଣାଧିକର୍ଣ୍ଣଗ୍ରହଣମବକ୍ତବ୍ୟକରା-ବାଉପେହିତାଃ ସିଦ୍ଧ୍ୟେୟୁଃ । (୪) ଦାୟନିକ୍ଷେପୋପନିଧିବିବାହ-

---

(୨) ଗ୍ରାହ୍ୟାଗ୍ରାହ୍ୟ ବ୍ୟବହାର (Valid and invalid transactions):— 'ଉପେହିତ' ଅର୍ଥାତ୍ ଗୁପ୍ତରେ ଦେବା ବିଷୟ:— ଏହା ସ୍ୱାମୀ, ଦେଶ, କାଳ, କ୍ରିୟା ଓ ଦ୍ରବ୍ୟାଦିଭେଦରେ ବହୁପ୍ରକାର । ସ୍ୱାମିଙ୍କ ବିନାନୁମତିରେ ତାହାଙ୍କ ଧନର ଅନ୍ୟଦ୍ୱାରା ଯେଉଁ ବିନିଯୋଗ କରାଯାଏ ତାହାକୁ 'ସ୍ୱାମିଉପେହିତ', ପରୋକ୍ଷ ସାକ୍ଷିକୁ 'ଦେଶୋପେହିତ', ଶତବର୍ଷ ଉପେକ୍ଷିତ ଇତ୍ୟାଦି ବିଷୟକୁ 'କାଳ-ଉପେହିତ', ପ୍ରମାଣପତ୍ର ନ ଦେଖାଇ ଋଣ ମାଗିବାକୁ 'କ୍ରିୟାଉପେହିତ' ଏବଂ ଦୃଷ୍ଟିର ଅଗୋଚରରେ ଥିବା ଦ୍ୱିପଦ, ଚତୁଷ୍ପଦ ପ୍ରାଣୀ (କୁକୁଡ଼ା, ହଂସ ଓ ଗାଈ, ଛେଳି ପ୍ରଭୃତି ପ୍ରାଣୀ) ଓ ସ୍ଥାବର ପ୍ରଭୃତିର ବିକ୍ରୟକୁ 'ଦ୍ରବ୍ୟଉପେହିତ' କୁହାଯାଏ । ଘରଭିତରେ କରାଯାଇଥିବା, ରାତିରେ କରାଯାଇଥିବା, ଅରଣ୍ୟରେ କରାଯାଇଥିବା, କପଟରେ କରା-ଯାଇଥିବା, ଦାତା ଓ ଗ୍ରହୀତା ବ୍ୟତୀତ ଅନ୍ୟର ଅଜଣାରେ କରାଯାଇଥିବା ବା କରାହେବାକୁ ଥିବା ବ୍ୟବହାରଗୁଡ଼ିକର ପ୍ରତିଷେଧ କରିବେ ଅର୍ଥାତ୍ ଉକ୍ତ ବିଷୟକ ସରତି (ଡ଼କୁମେଣ୍ଟ)ଗୁଡ଼ିକୁ ଅଗ୍ରାହ୍ୟ କରିବେ ଏବଂ ଏପରି ବ୍ୟବହାର କରିବା ଓ କରାଇବା ବ୍ୟକ୍ତିମାନଙ୍କୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବେ । ଶୁଣିବା ବ୍ୟକ୍ତିମାନଙ୍କୁ ଏହାର ଅର୍ଦ୍ଧଦଣ୍ଡ ଏବଂ ଏପରି କରିବା ପାଇଁ ଶ୍ରଦ୍ଧାପ୍ରକାଶ କରିବା ଲୋକଙ୍କର ସାଧ୍ୟଦ୍ରବ୍ୟହାନି ଅର୍ଥାତ୍ ଯେଉଁ ଦ୍ରବ୍ୟହାନି କରିବାର ସୁବିଧା ଥିବ ତାହା କରିଦେବେ । (୩) ଅପ୍ରତ୍ୟକ୍ଷରେ ଗୃହ, ବାରବଗିଚ୍ଚ ବନ୍ଧକଦେଇ ଋଣଗ୍ରହଣ କରିବା ବ୍ୟବହାର 'ଉପେହିତ' ଅର୍ଥାତ୍ ଲୁକ୍କାୟିତ ହେଲେ ମଧ୍ୟ ସିଦ୍ଧ ହୁଏ ଏବଂ ଅମୁକ ଧନ ଅମୁକ ଲୋକଦ୍ୱାରା ବ୍ୟବହୃତ ହେଲେ ମଧ୍ୟ ଦୋଷାବହ ନୁହେ ବୋଲି ଲୋକମୁଖରେ ପ୍ରତିପାଦିତ ହୋଇଥିଲେ ତାହା ସ୍ୱାମିଉପେହିତ ହେଲେ ମଧ୍ୟ ସିଦ୍ଧ ହୁଏ । (୪) କୁଳସ୍ତ୍ରୀ (ସଦ୍‌ବଂଶୀୟା ସ୍ତ୍ରୀ) ଓ ଜ୍ଞାନହୀନ ନ ହୋଇଥିବା ରୋଗୀ-

ସଂଯୁକ୍ତାଃ ସ୍ତ୍ରୀଣାମନିଷ୍କାସିନୀନାଂ ବ୍ୟାଧିତାନାଂ ଚାମୂଢ଼ସଜ୍ଞାନାମନ୍ତରଗାରକୃତାଃ ସିଧ୍ୟେୟୁଃ । (୫) ସାହସାନୁପ୍ରବେଶକଲହବିବାହରାଜନିୟୋଗଯୁକ୍ତାଃ ପୂର୍ବରାତ୍ରବ୍ୟବହାରିଣାଂ ଚ ରାତ୍ରିକୃତାଃ ସିଧ୍ୟେୟୁଃ । (୬) ସାର୍ଥବ୍ରଜାଶ୍ରମବ୍ୟାଧଚାରଣମଧ୍ୟେଷ୍ୱରଣ୍ୟଚରାଣାମରଣ୍ୟକୃତାଃ ସିଧ୍ୟେୟୁଃ । ଗୂଢ଼ାଜୀବିଷୁ ଚୋପଧିକୃତାଃ ସିଧ୍ୟେୟୁଃ । ମିଥସ୍ ସମବାୟେ ଚୋପହ୍ୱରକୃତାଃ ସିଧ୍ୟେୟୁଃ ।

---

ମାନଙ୍କର ଦାୟ (ପିତୃପିତାମହଙ୍କ ସମ୍ପତ୍ତି) ଭାଗବିଷୟକ ବ୍ୟବହାର, ନିକ୍ଷେପ ଅର୍ଥାତ୍ ଅଳଙ୍କାରାଦି ସକାଶେ ଦିଆଯାଇଥିବା ସ୍ୱର୍ଣ୍ଣାଦି ସମ୍ବନ୍ଧୀୟ ବ୍ୟବହାର ଅଥବା କୌଣସି ଥଳୀ ଓ ସିନ୍ଦୁକ ପ୍ରଭୃତି ଆଧାର ଭିତରେ ଥିବା ପଦାର୍ଥର ରୂପ ଓ ସଂଖ୍ୟା ଦେଖାଇବା ପରେ ତାହା ବନ୍ଦକରି ଅନ୍ୟକୁ ଅର୍ପଣ କରିବା ବିଷୟକ ବ୍ୟବହାର, ଉପନିଧି ଅର୍ଥାତ୍ ସିଲ୍ କରାଯାଇଥିବା ଥଳୀ ବା ସିନ୍ଦୁକରେ ଥିବା ପଦାର୍ଥ ନଦେଖାଇ ବା ନକହି ଅନ୍ୟକୁ ଅର୍ପଣ କରିବା ବିଷୟକ ବ୍ୟବହାର ଓ ବିବାହସଂଯୁକ୍ତ ଅର୍ଥାତ୍ ସ୍ତ୍ରୀଧନ ବିଷୟକ ବ୍ୟବହାର ଗୃହମଧ୍ୟରେ ହେଲେ ମଧ୍ୟ ସିଦ୍ଧ ହୁଏ । (୫) ପରଧନ ବଳପୂର୍ବକ ଅପହରଣ କରିବା, ପରଧନକୁ ସ୍ୱଗୃହରେ ପ୍ରବିଷ୍ଟ କରାଇବା, କଳହଯୁକ୍ତ, ବିବାହସମ୍ବନ୍ଧୀୟ, ରାଜନିୟୋଗସମ୍ବନ୍ଧୀୟ (ନଗରରକ୍ଷା ପ୍ରଭୃତି ରାଜକାର୍ଯ୍ୟ ସମ୍ବନ୍ଧୀୟ) ବ୍ୟବହାର ଏବଂ ଶୁଣ୍ଡୀ ଓ ବେଶ୍ୟାମାନଙ୍କ ସମ୍ବନ୍ଧୀୟ ବ୍ୟବହାର ରାତିରେ କରାଗଲେ ମଧ୍ୟ ସିଦ୍ଧ ହୁଏ । (୬) ବଣିକ ସଂଘ, ଗୋପାଳ, ବନରେ ସଙ୍କୁଚିତ୍ତ ବାସକରୁଥିବା ବନବାସୀ, କିରାତ, ଚାରଣ ଅର୍ଥାତ୍ ଲଙ୍ଘନ, ଲମ୍ଫନ ଓ ସନ୍ତରଣଦ୍ୱାରା ଜୀବିକା ନିର୍ବାହ କରୁଥିବା ମାରକେୟା, କେଳା ପ୍ରଭୃତି ବ୍ୟକ୍ତିମାନଙ୍କ ମଧ୍ୟରେ ବନଚରମାନଙ୍କର ଅରଣ୍ୟକୃତ ବ୍ୟବହାର ସିଦ୍ଧ ହୁଏ (ସରଡପତ୍ର ବିଗ୍ରହଯୋଗ୍ୟ ହୁଏ); ଗୁଢ଼ାଜୀବୀ ଅର୍ଥାତ୍ ନକଲି ସୁନା ବ୍ୟବହାର କରି ବଞ୍ଚିବା ବ୍ୟକ୍ତି ଓ ଜୁଆରିମାନେ କପଟରେ କରିଥିବା ବ୍ୟବହାର ସିଦ୍ଧ ହୁଏ ଏବଂ ସ୍ତ୍ରୀପୁରୁଷଙ୍କର ଗାନ୍ଧର୍ବ ବିବାହ ନିମିତ୍ତ ଉଭୟଙ୍କ ମଧ୍ୟରେ ଏକାନ୍ତରେ ହୋଇଥିବା ଚୁକ୍ତିନାମ (ବ୍ୟବହାର) ଓ ଏହିପରି ଅନ୍ୟାନ୍ୟ ଅସାକ୍ଷିକ ବ୍ୟବହାର ମଧ୍ୟ ସିଦ୍ଧ ହୁଏ ।

ଅତୋଽନ୍ୟଥାନ ସିଧ୍ୟେୟୁଃ । (୭) ଅପାଶ୍ରୟୈ ର୍ବଦ୍ଭିଶ୍ଚ କୃତାଃ, ପିତୃମତା ପୁତ୍ରେଣ, ପିତ୍ରା ପୁତ୍ରବତା, ନିଷ୍କୁଲେନ ଭ୍ରାତ୍ରା, କନିଷ୍ଠେନା-ବିଭକ୍ତାଂଶେନ, ପତିମତ୍ୟା ପୁତ୍ରବତ୍ୟା ଚ ସ୍ତ୍ରିୟା, ଦାସାହିତକାଭ୍ୟାମ୍, ଅପ୍ରାପ୍ତାତୀତବ୍ୟବହାରାଭ୍ୟାଂ ଅଭିଶସ୍ତପ୍ରବ୍ରଜିତବ୍ୟଙ୍ଗବ୍ୟସନିଭି ଶ୍ଚାନ୍ୟତ୍ର ନିସୃଷ୍ଟବ୍ୟବହାରେଭ୍ୟଃ । (୮) ତତ୍ରାପି କ୍ରୁଦ୍ଧେନାର୍ତ୍ତେନ ମତ୍ତେନୋନ୍ମତ୍ତେନାବଗୃହୀତେନ ବା କୃତାବ୍ୟବହାରା ନ ସିଧ୍ୟେୟୁଃ । କର୍ତ୍ତୃକାରୟିତୃଶ୍ରୋତୃଣାଂ ପୃଥଗ୍ ଯଥୋକ୍ତା ଦଣ୍ଡାଃ । (୯) ସ୍ୱେ ସ୍ୱେ ତୁ ବର୍ଗେ ଦେଶେ କାଲେ ଚ ସ୍ୱକରଣକୃତାଃ

---

ଏତଦ୍‌ଭିନ୍ନ ଅନ୍ୟାନ୍ୟ ଉପ୍ରେହିତାଦ ବ୍ୟବହାର ସିଦ୍ଧ ହୁଏ ନାହିଁ । (୭) ନିମ୍ନୋକ୍ତ 'ଅପାଶ୍ରୟବନ୍ତ' ଅର୍ଥାତ୍ ପରାଧୀନବ୍ୟକ୍ତିମାନେ କରିବା ବ୍ୟବହାର ଯଥାः—ବ୍ୟବହାରକୁଶଳ ପିତା ଥିବା ସତ୍ତ୍ୱେ ପିତାଙ୍କ ଅଜଣାରେ ପୁତ୍ର କରିବା ବ୍ୟବହାର, କୁଟୁମ୍ବପୋଷଣକ୍ଷମ ପୁତ୍ର ଥିବା ସତ୍ତ୍ୱେ ଏହାଙ୍କ ଅଜଣାରେ ପିତା କରିବା ବ୍ୟବହାର, କୁଳଚ୍ୟୁତ ହୋଇଥିବା ଭାଇ କରିବା ବ୍ୟବହାର, ଭାଇଭାଗ ପରିଷ୍କାର ହେବା ପୂର୍ବରୁ ଅବିଭକ୍ତ କନିଷ୍ଠ ଭାଇ କରିବା ବ୍ୟବହାର, କୁଟୁମ୍ବପୋଷଣସମର୍ଥ ପତି ଓ ପୁତ୍ର ଥିବା ସତ୍ତ୍ୱେ ସ୍ତ୍ରୀ କରିବା ବ୍ୟବହାର, କ୍ରୀତଦାସ ଓ ବନ୍ଧକଗ୍ରହୀତାଙ୍କ ଅଧୀନ ବ୍ୟକ୍ତି କରିବା ବ୍ୟବହାର, ଷୋହଳ-ବର୍ଷରୁ କମ୍ ବୟସ୍କ (ନାବାଳକ) ଓ ସତୁରିବର୍ଷରୁ ଊର୍ଦ୍ଧ୍ୱବୟସ୍କ (କାର୍ଯ୍ୟାକ୍ଷମ ବୃଦ୍ଧ) କରିବା ବ୍ୟବହାର, ମହାପାତକ ଦୋଷଯୁକ୍ତ, ସନ୍ନ୍ୟାସୀ, ଅନ୍ଧ, ପଙ୍ଗୁ, ମୂକ, ବଧିର ଓ ସ୍ତ୍ରୀ, ଦ୍ୟୂତ ଓ ମଦିରାସକ୍ତ ବ୍ୟକ୍ତିମାନେ କରିବା ବ୍ୟବହାର ଅସିଦ୍ଧ ହୁଏ । କିନ୍ତୁ ଏମାନେ ଯଦି ଏପରି ବ୍ୟବହାର (ସରତପତ୍ର ବା ଏଗ୍ରିମେଣ୍ଟ) କରିବା ପାଇଁ ଅଧିକାର ପାଇଥାନ୍ତି, ତେବେ ଏମାନଙ୍କ ବ୍ୟବହାର ସିଦ୍ଧ ହୁଏ । (୮) ଅଧିକାର ପାଇଥିଲେ ମଧ୍ୟ କ୍ରୁଦ୍ଧ, ଆର୍ତ୍ତ, ମତ୍ତ, ବାତୁଳ ଓ ଦଣ୍ଡିତ ବ୍ୟକ୍ତିଦ୍ୱାରା କରାଯାଇଥିବା ବ୍ୟବହାର ସିଦ୍ଧ ହୁଏ ନାହିଁ । ଏପରି ସରତପତ୍ର କରିବା, କରାଇବା ଓ ଏପରି ହେଉଥିବା ଶୁଣି ରାଜାଙ୍କୁ ସୂଚନା ନଦେବା ଅପରାଧିମାନଙ୍କୁ ଯଥାବିହିତ ଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୯) ନିଜ ନିଜ ବର୍ଗ ବା ଜାତିର ଅନୁକୂଳ, ସ୍ୱଦେଶର ଅନୁକୂଳ ଏବଂ ଦିବାରାତ୍ରାଦି କାଳର ଅନୁକୂଳ ବ୍ୟବହାର ସିଦ୍ଧ ହୁଏ । ଯଦି ଏହି

ସଂପୂର୍ଣ୍ଣଗୃହାଃ ଶୁଦ୍ଧଦେଶା ଦୃଷ୍ଟଲକ୍ଷଣପ୍ରମାଣଗୁଣାଃ ସର୍ବବ୍ୟବହାରାଃ ସିଦ୍ଧ୍ୟେୟୁଃ । (୧୦) * ପଶ୍ଚିମଂ ଚୈଷାଂ କରଣମାଦେଶାଧିବର୍ଜଂ ଶ୍ରଦ୍ଧେୟମ୍ । (୧୧) ସମ୍ବତ୍ସରମୃତୁଂ ମାସଂ ପକ୍ଷଂ ଦିବସଂ କରଣ-ମଧିକରଣମୃଣଂ ବେଦକାବେଦକୟୋଃ କୃତସମର୍ଥାବସ୍ଥୟୋ-ର୍ଦେଶଗ୍ରାମଜାତିଗୋତ୍ରନାମକର୍ମାଣି ଚାଭିଲିଖ୍ୟ ବାଦିପ୍ରତିବାଦିପ୍ରଶ୍ନାନ-ର୍ଥାନୁପୂର୍ବ୍ୟା ନିବେଶୟେତ୍ । ନିବଷ୍ଟାଂ ଶ୍ଚାବେକ୍ଷେତ । (୧୨) ନିବଦ୍ଧଂ

ବ୍ୟବହାରଗୁଡ଼ିକ ସଂପୂର୍ଣ୍ଣ ଗୃହ ଅର୍ଥାତ୍ ରାଜମାର୍ଗାଦି ପ୍ରସିଦ୍ଧ ସ୍ଥାନ, ଦିବସ ଓ ଅନେକମନୁଷ୍ୟ ରାତ୍ରି, ଅର୍ଥୀ ଓ ପ୍ରତ୍ୟର୍ଥୀ ଉଭୟଙ୍କ ଉପସ୍ଥିତିରେ ଶୁଦ୍ଧସ୍ୱଭାବ ଶିକ୍ଷିତ ପ୍ରତ୍ୟକ୍ଷସାକ୍ଷୀ ଥାଇ ସମ୍ପାଦନ କରାଯାଏ ଏବଂ ଏଗୁଡ଼ିକର ଆକୃତି, ଲକ୍ଷଣ, ପ୍ରମାଣ (ମାସ,ଗୁଂଜା, ଆଢ଼କ, ଦ୍ରୋଣ ଓ ବିତସ୍ତି-ହସ୍ତ ଇତ୍ୟାଦି ପ୍ରମାଣ) ଓ ଗୁଣ (ଶୁକ୍ଳନୀଳାଦି ଗୁଣ) ଯଥାଯଥଭାବେ ପରିଲକ୍ଷିତ ହୋଇଥାଏ । (୧୦) କ୍ରୟ, ବନ୍ଧକ (ଭୋଗବନ୍ଧକ) ଓ ପ୍ରତିଗ୍ରହ ବିଷୟକ ସରତିପତ୍ର ପ୍ରଥମେ କରାଯାଇ ପରେ ଧନ ଦିଆନିଆ କରାଯାଇଥିଲେ ଏବଂ ଏହାଛଡ଼ା ଅନ୍ୟସମସ୍ତ ସରତିପତ୍ର କାର୍ଯ୍ୟସମ୍ପାଦନ ପରେ କରାଗଲେ ସିଦ୍ଧ ହୁଏ ।

ବ୍ୟବହାର ସ୍ଥାପନା ସମାପ୍ତ ।

(୧୧) ନ୍ୟାୟାଧୀଶଙ୍କ ନିକଟକୁ ଯେତେବେଳେ କୌଣସି ମକଦ୍ଦମା ଆସେ, ସେତେବେଳେ ସେ ସେହି ମକଦ୍ଦମା ସମ୍ବନ୍ଧୀୟ ସରତିପତ୍ରର ସମ୍ବତ୍ସର, ଋତୁ, ମାସ, ପକ୍ଷ, ଦିନ (ତିଥି), କରଣ (ସତେପତ୍ର ରେଜେଷ୍ଟ୍ରି କରିବା), ସ୍ଥାନୀୟ ଦ୍ରୋଣମୁଖାଦି ସ୍ଥାନ, ଋଣଧନର ପରିମାଣ, ସାହୁକାର ଖାତକ ସମ୍ବନ୍ଧଯୁକ୍ତ ଅଭିଯୋକ୍ତା (ବାଦୀ), ଅଭିଯୋଜ୍ୟ (ପ୍ରତିବାଦୀ)ଙ୍କର ଦେଶ, ଗ୍ରାମ, ଜାତି, ଗୋତ୍ର, ନାମ ଓ ବୃତ୍ତି ଲିପିବଦ୍ଧ କରି ବାଦିପ୍ରତିବାଦୀଙ୍କୁ ପଚାରି ସେମାନେ ଦେବା ବିବରଣୀକୁ ମୁଖ୍ୟ ଗୌଣ ଅନୁକ୍ରମେ ଲିପିବଦ୍ଧ କଲାପରେ ଯେଉଁଠି ଯାହା ଊଣାଅଧିକ ଥିବ ତାହା ପୂରଣକରି ଠିକ୍ କରିଦେବେ । (୧୨) ପୂର୍ବେ ଦେଇଥିବା ବିବରଣୀର ଏକଅଂଶ ଛାଡ଼ି ଅନ୍ୟ

* ସର୍ବେଷ୍ୱେବ ବିବାଦେଷୁ ବଲବତ୍ୟୁତ୍ତରା କ୍ରିୟା ।
ଆଧୌ ପ୍ରତିଗ୍ରହେ କ୍ରୀତେ ପୂର୍ବା ତୁ ବଲବତ୍ତରା ॥ ଇତି ଯାଜ୍ଞବଲ୍କ୍ୟଃ ॥

† ଦେଶ = ସାକ୍ଷୀ । ଇତି ଗଣପତିଶାସ୍ତ୍ରୀ ।

**ପାଦମୁତ୍କ୍ରମ୍ୟାନ୍ୟଂ ପାଦଂ ସଂକ୍ରାମତି । ପୂର୍ବୋକ୍ତଂ ପଶ୍ଚିମେନାର୍ଥେନ ନାଭିସନ୍ଧତ୍ତେ । ପରବାକ୍ୟମନଭିଗ୍ରାହ୍ୟ ମଭିଗ୍ରାହ୍ୟାବତିଷ୍ଠତେ । ପ୍ରତିଜ୍ଞାୟ ଦେଶଂ ନିର୍ଦ୍ଦିଶେତ୍ୟୁକ୍ତେ ନ ନିର୍ଦ୍ଦିଶତି । ହୀନଦେଶ-ମଦେଶଂ ବା ନିର୍ଦ୍ଦିଶତି । ନିର୍ଦ୍ଦିଷ୍ଟାଦ୍ଦେଶାଦନ୍ୟଂ ଦେଶମୁପସ୍ଥାପୟତି । ଉପସ୍ଥିତେ ଦେଶେଽର୍ଥବଚନେ ନୈବମ୍ ଇତ୍ୟପବ୍ୟୟତେ । ସାକ୍ଷିଭିରବଧୃତଂ ନେଚ୍ଛତି । ଅସଂଭାଷ୍ୟେ ଦେଶେ ସାକ୍ଷିଭିର୍ମିଥଃ ସଂଭାଷତେ । ଇତି ପରୋକ୍ତହେତବଃ । (୧୩) ପରୋକ୍ତଦଣ୍ଡଃ ପଞ୍ଚବନ୍ଧଃ । ସ୍ୱୟଂବାଦଦଣ୍ଡୋ ଦଶବନ୍ଧଃ । ପୁରୁଷଭୃତରଷ୍ଟାଂଶଃ ।**

---

ଅଂଶ ମିଶାଇ କହିବା ('ଗାଳିଦେଲା' ବୋଲି ବିବରଣୀ ଦେଇ 'ମାରିଲା' ବୋଲି କହିବା), ପ୍ରଥମେ ପଶୁ, ସୁବର୍ଣ୍ଣ, ଧାନ୍ୟ ଇତ୍ୟାଦି ଦେବା କଥା କହି ପରେ କେବଳ ଏକମାତ୍ର ସୁବର୍ଣ୍ଣ ଦେବା କଥା କହିବା ଅର୍ଥାତ୍ ପୂର୍ବେ କହିଥିବା କଥା ସହିତ ପରକଥାର ସାମଞ୍ଜସ୍ୟ ନରଖି କହିବା, ବିପକ୍ଷବ୍ୟକ୍ତି କହିବା ଅଦୂଷଣୀୟ କଥାକୁ ଦୂଷଣୀୟ ବୋଲି କହି ତାର ପ୍ରତିପାଦନ କରିନପାରି ତୁନିରହିବା, ଏତେଜଣ ନିର୍ଦ୍ଦିଷ୍ଟ ସାକ୍ଷୀ ଅଛନ୍ତି ବୋଲି କହି ଡକାଅ ବୋଲି କହିବା ବେଳେ ନ ଡକାଇ ପାରିବା ଏବଂ ନାମ କହ ବୋଇଲେ ନାମନିର୍ଦ୍ଦେଶ ନକରିବା କିମ୍ବା ପ୍ରଥମେ କହିଥିବା ନିର୍ଦ୍ଦିଷ୍ଟ ପରିମାଣ ସାକ୍ଷୀ ଦେଖାଇନପାରି ଅଳ୍ପସଂଖ୍ୟକ ଦେଖାଇବା ବା ମାମୁଁ, ଶାଳକ, ଭଣଜା ପ୍ରଭୃତି ଅଭିନପ୍ରକାରେ ସାକ୍ଷୀ ନହୋଇ ପାରିବା ବ୍ୟକ୍ତିଙ୍କୁ ସାକ୍ଷୀରୂପେ ଦେଖାଇବା, ଜଣେ ସାକ୍ଷୀର ନାମ କହି ଅନ୍ୟଜଣଙ୍କୁ ସେହି ବ୍ୟକ୍ତି ବୋଲି ନେଇ ଠିଆକରିବା ଅର୍ଥାତ୍ ଗୋବିନ୍ଦଙ୍କୁ ସାକ୍ଷୀକରି ରାମଙ୍କୁ ନେଇ ଗୋବିନ୍ଦ ବୋଲି ଦେଖାଇବା, ସାକ୍ଷୀ ଉପସ୍ଥିତ ହୋଇ ସେ ନିଜେ ପ୍ରତ୍ୟକ୍ଷ କରିଥିବା କଥା ଅର୍ଥାତ୍ ନିଜ ଆଖିରେ ଦେଖିବା ବିଷୟ କହିଲେ, ଏହା ଏପରି ନୁହେ ବୋଲି କହି ଅପସରି ଯିବା, ସାକ୍ଷୀବାକ୍ୟରେ ନିର୍ଣ୍ଣୀତ ହେବା ବିଷୟକୁ ଅନୁମୋଦନ ନକରିବା ଏବଂ ସମ୍ଭାଷଣର ଅଯୋଗ୍ୟ ଜାଗାରେ ସାକ୍ଷିମାନଙ୍କ ସହିତ ଏକାନ୍ତରେ ମନ୍ତ୍ରଣା କରିବା ପରାଜୟର ମୂଳକାରଣ । (୧୩) ସାକ୍ଷୀଯୋଗୁଁ ସ୍ୱପକ୍ଷର ଅସିଦ୍ଧିମୂଳକ ପରାଜୟ ପାଇବା-ବ୍ୟକ୍ତି ପରାଜିତ ଦେୟଧନର ପାଞ୍ଚଭାଗ ପରାଜୟଦଣ୍ଡସ୍ୱରୂପ ରାଜାଙ୍କୁ

ପଥିଭକ୍ତମର୍ଘବଶେଷତଃ । ତଦୁଭୟଂ ନୟେମେ୍ୟା ଦଦ୍ୟାତ୍ । (୧୪) * ଅଭିଯୁକ୍ତୋ ନ ପ୍ରତ୍ୟଭିଯୁଂଜୀତ, ଅନ୍ୟତ୍ର କଳହସାହସ ସାର୍ଥସମବାୟେଭ୍ୟଃ । ନଚାଭିଯୁକ୍ତେଽଭିଯୋଗୋଽସ୍ତି । (୧୫) ଅଭିଯୋକ୍ତା ଚେତ୍ ପ୍ରତ୍ୟୁକ୍ତସ୍ତଦହରେବ ନ ପ୍ରତିବ୍ରୂୟାତ୍, ପରୋକ୍ତଃ ସ୍ୟାତ୍ । କୃତକାର୍ଯ୍ୟ ବିନିଶ୍ଚୟୋ ହ୍ୟଭିଯୋକ୍ତା, ନାଭିଯୁକ୍ତଃ । (୧୬) ତସ୍ୟାପ୍ରତିବ୍ରୁବତସ୍ତ୍ରିରାତ୍ରଂ ସପ୍ତରାତ୍ରମିତି ।

ଦେବେ । ବିନାସାକ୍ଷୀରେ ନିଜେ କହି ପରାଜିତହେବା ବ୍ୟକ୍ତି ପରାଜିତ ଦେୟଧନର ଦଶଭାଗ ଦଣ୍ଡସ୍ୱରୂପେ ଦେବେ ଏବଂ ବ୍ୟବହାର ଦ୍ରଷ୍ଟା ଅର୍ଥାତ୍ ସାକ୍ଷୀ ଓ ନୌକର ଚାକରମାନଙ୍କୁ ପରାଜିତ ଦେୟଧନର ଅଷ୍ଟାଂଶ ଗସ୍ତଖର୍ଚ୍ଚ ସ୍ୱରୂପେ ଦେବେ, ଅଧିକନ୍ତୁ ପରାଜିତବ୍ୟକ୍ତି ଜିଣିବାବ୍ୟକ୍ତି ଓ ତାଙ୍କର ସାକ୍ଷୀମାନଙ୍କୁ ସେମାନଙ୍କର ଭୋଜନାଦିର ମୂଲ୍ୟ ମଧ୍ୟ ଦେବାକୁ ବାଧ୍ୟ ହେବେ । (୧୪) କଳହ, ସାହସ (ଚୋରି ଡକାୟତି ପ୍ରଭୃତି) ବଣିକସଂଘ ସମ୍ପୃକ୍ତ-ବ୍ୟକ୍ତି ବ୍ୟତୀତ ଅନ୍ୟ ଅଭିଯୁକ୍ତ ବ୍ୟକ୍ତି, ନିଜପ୍ରତି ହୋଇଥିବା ଅଭିଯୋଗର ନିଷ୍ପତ୍ତି ନ ହେଉଣୁ ଓଲଟା ଅଭିଯୋଗ କରିପାରିବ ନାହିଁ । ଅଭିଯୋକ୍ତା, ଯାହା ଉପରେ ଗୋଟିଏ ଅଭିଯୋଗ କରାଯାଇଥିବ, ତାହା ନଛାଡ଼ିବା ଯାଏ ତାଉପରେ ଅନ୍ୟ ଅଭିଯୋଗ କରିବାକୁ ହେବନାହିଁ । (୧୫) ଅଭିଯୋକ୍ତା (ବାଦୀ), ଯଦି ଅଭିଯୁକ୍ତ (ପ୍ରତିବାଦୀ) ଦେବା ଉତ୍ତରକୁ ଖଣ୍ଡନ କରିବାଭଳି ସ୍ୱପକ୍ଷସମର୍ଥକ ଓ ଯୁକ୍ତିସଙ୍ଗତ ପ୍ରତ୍ୟୁତ୍ତର ସେହିକ୍ଷଣି ବା କେବଳ ସେଦିନ ଭିତରେ ନଦିଅନ୍ତି, ତେବେ ସେମଧ୍ୟ ପରାଜିତ ହେବେ ଅର୍ଥାତ୍ ପରାଜିତ ଦଣ୍ଡରେ ଦଣ୍ଡିତ ହେବେ । କାରଣ ବାଦୀ କରିଥିବା ଅଭିଯୋଗ ଭାବିଚାରି, ପୂର୍ବରୁ ସମସ୍ତ ଯୁକ୍ତି ଠିକ୍ କରି ନାଲିସ୍ କରିଥିବା ଯୋଗୁଁ ସେ ପ୍ରତିବାଦୀର ଉତ୍ତରର ପ୍ରତ୍ୟୁତ୍ତର ସଦ୍ୟ ଦେଇ ନପାରିଲେ ଏପରି ଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ପ୍ରତିବାଦୀ ବାଦୀଙ୍କ ଅଭିଯୋଗର ଉତ୍ତର ଭାବିଚିନ୍ତି ଠିକ୍ କରିଦେବାକୁ ଥିବାଯୋଗୁଁ ସେ ତତ୍‌କ୍ଷଣାତ୍ ଉତ୍ତର ଦେଇ ନପାରିଲେ ଦୋଷୀ ସାବ୍ୟସ୍ତ ହେବେ ନାହିଁ । (୧୬) ପ୍ରତିବାଦୀ ବାଦୀଙ୍କ ପ୍ରଶ୍ନ ବା

* ଅଭିଯୋଗ ମନିସ୍ତୀର୍ଯ୍ୟ ନୈନଂ ପ୍ରତ୍ୟଭିଯୋଜୟେତ୍ ।
ନଚାଭିଯୁକ୍ତ ମନ୍ୟେନ ନୋକ୍ତଂ ବିପ୍ରକୃତଂ ନୟେତ୍ ॥ ଇତି ଯୋଗୀଶ୍ୱରଃ ।

ଅତଊର୍ଦ୍ଧ୍ୱଂ ତ୍ରିପଣାବରାର୍ଦ୍ଧ୍ୟଂ ଦ୍ୱାଦଶପଣପରଂ ଦଣ୍ଡଂ କୁର୍ଯ୍ୟାତ୍ । ତ୍ରିପକ୍ଷାଦୂର୍ଦ୍ଧ୍ୱଂ ମପ୍ରତବ୍ରୁବତଃ ପରୋକ୍ତଦଣ୍ଡଂ କୃତ୍ୱା ଯାନ୍ୟସ୍ୟ ଦ୍ରବ୍ୟାଣି ସ୍ୟୁସ୍ତତୋଽଭିଯୋକ୍ତାରଂ ପ୍ରତପାଦୟେଦନ୍ୟତ୍ର ବୃତ୍ତ୍ୟୁ-ପକରଣେଭ୍ୟଃ । ତଦେବ ନିଷ୍ପତତୋଽଭିଯୁକ୍ତସ୍ୟ କୁର୍ଯ୍ୟାତ୍ । ଅଭିଯୋକ୍ତୁର୍ନିଷ୍ପାତ ସମକାଳଃ ପରୋକ୍ତଭାବଃ । ପ୍ରେତସ୍ୟ

---

ଅଭିଯୋଗର ଉତ୍ତର ତନିଦନଠାରୁ ସାତଦନ ମଧ୍ୟରେ ଦେବା ସକାଶେ ଅନୁମତ ପାଇପାରିବେ । ଏହି ସମୟ ମଧ୍ୟରେ ଉତ୍ତର ଦେଇ ନପାରିଲେ ତନିପଣଠାରୁ ଆରମ୍ଭ କରି ବାରପଣ ପର୍ଯ୍ୟନ୍ତ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ସେ ଯଦ ତନିପକ୍ଷ ପରେ ମଧ୍ୟ ଏହି ଉତ୍ତର ନଦେଇପାରନ୍ତି, ତେବେ ସେ 'ପରୋକ୍ତ' ଦଣ୍ଡରେ ଦଣ୍ଡିତ ହେବେ ଏବଂ ବିଚାରପତ ବାଦୀ କରିଥିବା ଅଭିଯୋଗଧନ ପ୍ରତବାଦଙ୍କ ଧାନ୍ୟ, ପଶୁ, ହିରଣ୍ୟ (ସୁବର୍ଣ୍ଣ) ପ୍ରଭୃତ ଯେଉଁ ସମ୍ପତ୍ତି ଥିବ ତନ୍ମଧ୍ୟରୁ ପ୍ରତବାଦଙ୍କ ହଳ, କୁଦାଳ ପ୍ରଭୃତ କୃଷି ଉପକରଣ, ଖାଦ୍ୟପେୟ ପରିଧାନାଦ ସକାଶେ ଉପଯୁକ୍ତ ହେବାଭଳି ସମ୍ପତ୍ତି ଛାଡ଼ିଦେଇ ଅନ୍ୟ ସମ୍ପତ୍ତି କୋରଖ କରି ବାଦଙ୍କୁ ଦଆଇଦେବେ । ବିଚାରାଳୟରେ ବାଦୀ ଉପସ୍ଥିତ ହେଲେ ତାଙ୍କ ସମକ୍ଷରେ ପ୍ରତ୍ୟୁତ୍ତର କିଛି ନଦେଇ ଅପସରିଯିବା ପ୍ରତବାଦଙ୍କୁ ଉପରୋକ୍ତପ୍ରକାରେ ଦଣ୍ଡ ଦେବେ । ଯଦ ବାଦୀ ଅଭିଯୋଗ କରି ପ୍ରତବାଦଙ୍କୁ ବିଚାରାଳୟରେ ଦେଖିବାମାତ୍ରେ ଅପସରି ଚାଲିଯାନ୍ତି, ତେବେ ତାଙ୍କୁ ମଧ୍ୟ ଉପରୋକ୍ତ ପରାଜତ ଦଣ୍ଡରେ ଦଣ୍ଡିତ କରିବେ । ବାଦୀ ବା ପ୍ରତବାଦୀ ଯେକୌଣସି ଜଣେ ମୃତ କିମ୍ବା ବିପଦ୍‌ଗ୍ରସ୍ତ ହେବାଯୋଗୁଁ ଅଦାଲତରେ ତାଙ୍କର ଉପସ୍ଥିତ ସମ୍ଭବ ନ ହେଲେ ବିଚାରପତ ସାକ୍ଷିମାନଙ୍କଠାରୁ ଅଭିଯୋଗର ସତ୍ୟାସତ୍ୟ ଗ୍ରହଣକରି ବାଦୀ ବା ପ୍ରତବାଦଙ୍କ ପୁତ୍ରାଦମାନଙ୍କୁ ନିଷ୍ପତ୍ତି ଜଣାଇଦେବେ ଅର୍ଥାତ୍ ମୃତ ବା ବିପଦ୍‌ଗ୍ରସ୍ତ ପ୍ରତବାଦୀ ଯଦ ବାଦଙ୍କ ଅଭିଯୋଗ ଅନୁସାରେ ଧନାଦ ଦେବାକୁ ଅଦଷ୍ଟ ହୁଅନ୍ତି, ତେବେ ବାଦୀ ପ୍ରତବାଦଙ୍କ ପୁତ୍ରମାନଙ୍କଠାରୁ ତାହା ନେଇ ପାରିବେ ଏବଂ ବାଦୀ ମୃତ କିମ୍ବା ବିପଦ୍‌ଗ୍ରସ୍ତ ହୋଇଥିଲେ ବିଚାରପତ ପ୍ରତବାଦଙ୍କଠାରୁ ଧନ ଅସୁଲ କରିଇ ବାଦଙ୍କ ପୁତ୍ରମାନଙ୍କୁ ଦଆଇଦେବେ । ଯଦ ପ୍ରତବାଦୀ ପରାଜତ ଦଣ୍ଡ ଧନ ଦେବାକୁ ଅସମର୍ଥ ହୁଏ, ତେବେ ବାଦୀ

ବ୍ୟସନନେ। ବା ସାକ୍ଷିବଚନାଃ ସାରମ୍ । ଅଭିଯୋକ୍ତା ଦଣ୍ଡଂ ଦତ୍ତ୍ୱା କର୍ମକାରୟେତ୍ । ଆଧିଂ ବା ସ କାମଂ ପ୍ରବେଶୟେତ୍ । ରକ୍ଷୋଘ୍ନ ରକ୍ଷିତଂ ବା କର୍ମଣା ପ୍ରତିପାଦୟେଦନ୍ୟତ୍ର ବ୍ରାହ୍ମଣାଦତି ।

(୧୭) ଚତୁର୍ବର୍ଣ୍ଣାଶ୍ରମସ୍ୟାୟଂ ଲୋକସ୍ୟାଚାରରକ୍ଷଣାତ୍ ।
ନଶ୍ୟତାଂ ସର୍ବଧର୍ମାଣାଂ ରାଜଧର୍ମଃ ପ୍ରବର୍ତ୍ତକଃ ॥

(୧୮) ଧର୍ମଶ୍ଚ ବ୍ୟବହାରଶ୍ଚ ଚରିତ୍ରଂ ରାଜଶାସନମ୍ ।
ବିବାଦାର୍ଥଶ୍ଚତୁଷ୍ପାଦଃ ପଶ୍ଚିମଃ ପୂର୍ବବାଧକଃ ॥

(୧୯) ତତ୍ର ସତ୍ୟେ ସ୍ଥିତୋ ଧର୍ମୋ ବ୍ୟବହାରସ୍ତୁ ସାକ୍ଷିଷୁ ।
ଚରିତ୍ରଂ ସଂଗ୍ରହେ ପୁଂସାଂ ରାଜ୍ଞାମାଜ୍ଞା ତୁ ଶାସନମ୍ ॥

---

ସେହି ଧନ ସରକାରଙ୍କୁ ଦେଇକରି ଉକ୍ତ ପ୍ରତିବାଦୀଙ୍କୁ କ୍ରୀତଦାସରୂପେ ଉକ୍ତ ଧନର ପରିଶୋଧ ସମୟ ପର୍ଯ୍ୟନ୍ତ ଖଟାଇବେ ଅଥବା ପ୍ରତିବାଦୀ ଏପରି ଖଟି ନ ପାରିଲେ ତାଙ୍କର କୌଣସି ଆତ୍ମୀୟ କିମ୍ବା ବନ୍ଧୁଙ୍କୁ ନିଜବଦଳରେ ଖଟାଇ ପାରିବେ । ପରାଜିତ-ପ୍ରତିବାଦୀ କିମ୍ବା ତାଙ୍କର ପ୍ରତିନିଧିଙ୍କୁ ବାଦୀ କେବଳ ରକ୍ଷୋଘ୍ନ କାର୍ଯ୍ୟରେ ଅର୍ଥାତ୍ ଅମଙ୍ଗଳ ପରିହାର ସକାଶେ ମନ୍ତ୍ରକରେ ଶୁକ୍ଳସର୍ଷପ ନିକ୍ଷେପ କରିବା କାର୍ଯ୍ୟ ବା ଏହିପରି ଅନ୍ୟକାର୍ଯ୍ୟରେ ମାତ୍ର ନିଯୁକ୍ତ କରିବେ । କାରଣ ପରାଜିତ ପ୍ରତିବାଦୀ ବା ତାଙ୍କ ପ୍ରତିନିଧିବ୍ୟକ୍ତି ଅବୈତନିକଭାବେ ଶତ୍ରୁସେବାରେ ଖଟିବାରେ କ୍ଷୁବ୍ଧହୋଇ ତାହାଙ୍କୁ ହତ୍ୟାକରିଦେବାର ଯଥେଷ୍ଟ ସମ୍ଭାବନା ଅଛି । କିନ୍ତୁ ଏପରି ପରାଜିତ ବ୍ୟକ୍ତି ବା ପ୍ରତିନିଧି ବ୍ରାହ୍ମଣ, କ୍ଷତ୍ରିୟ ବା ତପସ୍ୱୀ ହୋଇଥିଲେ ସେମାନଙ୍କୁ ଏପରି କାର୍ଯ୍ୟରେ ଖଟାଇବେ ନାହିଁ । (୧୭) ଏହି ରାଜଧର୍ମ ବ୍ରାହ୍ମଣ କ୍ଷତ୍ରିୟାଦି ଚତୁର୍ବର୍ଣ୍ଣ ଓ ବ୍ରହ୍ମଚର୍ଯ୍ୟାଦି ଚତୁରାଶ୍ରମଭୁକ୍ତ ଲୋକସମୂହର ସଦାଚାରରକ୍ଷକ ହେତୁରୁ ସ୍ୱତଃ ବା ଅନାର୍ଯ୍ୟମାନଙ୍କ ପ୍ରଭାବରେ କ୍ଷୟପ୍ରାପ୍ତ ହେଉଥିବା ସମସ୍ତ ଧର୍ମମାନଙ୍କର ପ୍ରବର୍ତ୍ତକ ଅର୍ଥାତ୍ ଉଜ୍ଜୀବକ ଅଟେ । (୧୮) ଧର୍ମ, ବ୍ୟବହାର, ଚରିତ୍ର ଓ ରାଜଶାସନ ଏ ଚାରିଗୋଟି ବିବାଦାର୍ଥ (ମକଦ୍ଦମା)ର ଚାରିଗୋଟି ପାଦ ଅଟନ୍ତି । ଏମାନଙ୍କ ମଧ୍ୟରେ ରାଜଶାସନ ପୂର୍ବବାଧକ ଅର୍ଥାତ୍ ପୂର୍ବବର୍ତ୍ତୀ ଧର୍ମ, ବ୍ୟବହାର ଓ ଚରିତ୍ରଠାରୁ ପ୍ରବଳ ଅଟେ । (୧୯) ଉକ୍ତ ଧର୍ମାଦିଙ୍କ ମଧ୍ୟରେ ସତ୍ୟରେ ପ୍ରତିଷ୍ଠିତ ଓ ଯଥାର୍ଥ ବିଷୟକୁ 'ଧର୍ମ', ସାକ୍ଷିବାକ୍ୟ ଓ

(୨୦) ରାଜ୍ଞଃ ସ୍ୱଧର୍ମଃ ସ୍ୱର୍ଗାୟ ପ୍ରଜା ଧର୍ମେଣ ରକ୍ଷିତୁଃ ।
ଅରକ୍ଷିତୁର୍ବା କ୍ଷେପ୍ତୁର୍ବା ମିଥ୍ୟାଦଣ୍ଡମତୋଽନ୍ୟଥା ॥
(୨୧) ଦଣ୍ଡୋହି କେବଲୋ ଲୋକଂ ପରଂ ଚେମଞ୍ଚ ରକ୍ଷତି ।
ରାଜ୍ଞା ପୁତ୍ରେ ଚ ଶତ୍ରୌ ଚ ଯଥା ଦୋଷଂ ସମଂ ଧୃତଃ ॥
(୨୨) ଅନୁଶାସଦ୍ଧି ଧର୍ମେଣ ବ୍ୟବହାରେଣ ସଂସ୍ଥୟା ।
ନ୍ୟାୟେନ ଚ ଚତୁର୍ଥେନ ଚତୁରନ୍ତାଂ ମହୀଂ ଜୟେତ୍ ॥
(୨୩) ସଂସ୍ଥୟା ଧର୍ମଶାସ୍ତ୍ରେଣ ଶାସ୍ତ୍ରଂ ବା ବ୍ୟାବହାରିକମ୍ ।
ଯସ୍ମିନ୍ନର୍ଥେ ବିରୁଧ୍ୟେତ ଧର୍ମେଣାର୍ଥଂ ବିନର୍ଣୟେତ୍ ॥

---

ସରତପତ୍ରର ପ୍ରମାଣକୁ 'ବ୍ୟବହାର', ଲୋକାଚାରର ଅର୍ଥାତ୍ ଦଶ କୋଡ଼ିଏ ଗୋଟି ଗ୍ରାମରେ ଯେଉଁ ପ୍ରଥା ଅଭ୍ରାନ୍ତଭାବେ ପରମ୍ପରାରୁ ଚଳି ଆସୁଛି ତାକୁ 'ଚରିତ୍ର' ଓ ଏହା ଏପରି କେବଳ ହେବା ଉଚିତ ଏତାଦୃଶ ନ୍ୟାୟସଙ୍ଗତ ଓ ଯଥାଯୋଗ୍ୟ ଦଣ୍ଡପ୍ରଣୟନସମର୍ଥ ରାଜାଙ୍କୁ 'ଶାସନ' କୁହାଯାଏ । (୨୦) ଧର୍ମରେ ପ୍ରଜାପାଳନ କରୁଥିବା ରାଜାଙ୍କର ଶସ୍ତ୍ରଧାରଣପୂର୍ବକ ଭୂତରକ୍ଷା (ପ୍ରଜାରକ୍ଷା) ସ୍ୱଧର୍ମ ଅଟେ । ଏହି ସ୍ୱଧର୍ମ ରାଜାଙ୍କୁ ସ୍ୱର୍ଗ ଅର୍ଥାତ୍ ଐହିକ ଅଖଣ୍ଡସୁଖ ଓ ପାରତ୍ରିକ ମୋକ୍ଷରୂପକ ସୁଖକୁ ପ୍ରଦାନ କରେ । ଧର୍ମରେ ପ୍ରଜାମାନଙ୍କୁ ପାଳନ ନ କରୁଥିବା (ପ୍ରଜାପୀଡ଼ା କରୁଥିବା) ଅଥବା ଅଯଥାଦଣ୍ଡଦାୟକ ରାଜାଙ୍କର ମିଥ୍ୟାଦଣ୍ଡ ନରକଗତିର କାରଣ ହୁଏ । (୨୧) ଅପରାଧ ଅନୁସାରେ ପୁତ୍ରପ୍ରତି ଓ ଶତ୍ରୁପ୍ରତି ସମଭାବରେ ପ୍ରଯୁକ୍ତ ହୋଇଥିବା ରାଜଦଣ୍ଡ କେବଳି ରାଜାଙ୍କୁ ଇହଲୋକ ଓ ପରଲୋକରେ ସୁଖସୌଭାଗ୍ୟ ପ୍ରଦାନ କରେ । (୨୨) ଧର୍ମ ଅନୁସାରେ, ବ୍ୟବହାର ଅର୍ଥାତ୍ ସାକ୍ଷିବାକ୍ୟ ଓ ସରତପତ୍ର ଅନୁସାରେ, ସଂସ୍ଥା (ଲୋକାଚାର) ଅନୁସାରେ ଓ ନ୍ୟାୟସଙ୍ଗତ ରାଜକୀୟ ସିଦ୍ଧାନ୍ତ ଅନୁସାରେ ରାଜା ରାଜ୍ୟପାଳନ କଲେ ଚତୁଃସାଗରବେଷ୍ଟିତ ଆସମୁଦ୍ରାନ୍ତ ପୃଥିବୀରେ ନିଜର ସାର୍ବଭୌମତ୍ୱ କାର କରିପାରିବେ । (୨୩) କୌଣସି ନିଷ୍ପତ୍ତି ଦେବା ବେଳେ ଯଦି ମହାଜନାଚରିତ ଲୋକାଚାର ଓ ମନୁପ୍ରଭୃତି ଧର୍ମଶାସ୍ତ୍ରସହିତ ଶାସ୍ତ୍ର ଅର୍ଥାତ୍ ରାଜଶାସନ ବା ବ୍ୟାବହାରିକ ଅର୍ଥାତ୍ ସାକ୍ଷିବାକ୍ୟ, ସରତପତ୍ର ଓ ଆଇନ-କାନୁନ ଇତ୍ୟାଦିର ବିରୋଧ ଦେଖାଯାଏ, ତେବେ ରାଜା ଧର୍ମଶାସ୍ତ୍ର ଅନୁସାରେ

(୬୪) ଶାସ୍ତ୍ରଂ ବିପ୍ରତି ପଦ୍ୟେତ ଧର୍ମନ୍ୟାୟେନ କେନଚିତ୍ ।
ନ୍ୟାୟସ୍ତତ୍ର ପ୍ରମାଣଂ ସ୍ୟାତ୍ ତତ୍ର ପାଠୋହି ନଶ୍ୟତି ॥

(୬୫) ଦୃଷ୍ଟଦୋଷଃ ସ୍ୱୟଂବାଦଃ ସ୍ୱପକ୍ଷପରପକ୍ଷୟୋଃ ।
ଅନୁଯୋଗାର୍ଜବଂ ହେତୁଃ ଶପଥଶ୍ଚାର୍ଥସାଧକଃ ॥

(୬୬) ପୂର୍ବୋତ୍ତରାର୍ଥବ୍ୟାଘାତେ ସାକ୍ଷିବକ୍ତବ୍ୟକାରଣେ ।
ଚାରହସ୍ତାଚ୍ଚ ନିଷ୍ପାତେ ପ୍ରଦେଷ୍ଟବ୍ୟଃ ପରାଜୟଃ ॥

---

ସମସ୍ତ ବିଷୟର ପ୍ରକୃତ ମର୍ମ ବିବେଚନାପୂର୍ବକ ନିଷ୍ପତ୍ତି ଦେବେ । (୬୪) ଯଦି ମନୁପ୍ରଭୃତି ଧର୍ମଶାସ୍ତ୍ରର କୌଣସି ଧର୍ମନ୍ୟାୟ ଅର୍ଥାତ୍ ସର୍ବବିଧ ଯୁକ୍ତିଯୁକ୍ତ ଓ ଧର୍ମସଂଗତ ଲୋକାଚାରର ନ୍ୟାୟ ସହିତ ଅତ୍ୟନ୍ତ ବିରୋଧ ଦେଖାଯାଏ, ତେବେ ସେହି ସ୍ଥଳରେ ଧର୍ମନ୍ୟାୟକୁ କେବଳ ସିଦ୍ଧାନ୍ତରୂପେ ଗ୍ରହଣ କରିବାକୁ ହେବ । (ଧର୍ମଶାସ୍ତ୍ର କହେ 'କୁଦ୍ଦାଲ ପାଣିର୍ବିଜ୍ଞେୟଃ ସେତୁଭେତ୍ତା ସମୀପଗଃ' ଅର୍ଥାତ୍ କଟାହୋଇଥିବା ସେତୁବନ୍ଧ ନିକଟରେ କୋଡ଼ିଧରି ଠିଆ ହୋଇଥିବା ବ୍ୟକ୍ତିକୁ ସେତୁବନ୍ଧ କଟାଳି ବୋଲି ଧରିବାକୁ ହେବ । ଏପରି ସ୍ଥଳେ ଗୋଟିଏ ଶ୍ରେଷ୍ଠଶିଶୁ, କଟାହୋଇଥିବା ବନ୍ଧନିକଟରେ ଯଦି କୌଣସି କାରଣ ବଶତଃ କୋଡ଼ିଧରି ଠିଆ ହୋଇଥାଏ, ତେବେ ତାକୁ ଦୋଷୀସାବ୍ୟସ୍ତ କରାଯାଇପାରିବକି ? ଏଠାରେ ବିବେଚନାପୂର୍ବକ କରାଯିବା ନିଷ୍ପତ୍ତିକୁ ହିଁ ନିଷ୍ପତ୍ତି ବୋଲି ଧରାଯିବ ସିନା ଶାସ୍ତ୍ରୀୟ ନିଷ୍ପତ୍ତି ଗ୍ରାହ୍ୟ ହେବନାହିଁ) । (୬୫) ଦୋଷୀ କରିବା ଦୋଷ ଯଦି ପ୍ରତ୍ୟକ୍ଷଭାବେ ଦେଖାଯାଏ, ଦୋଷୀ ଯଦି ନିଜ ଦୋଷ ନିଜେ ସ୍ୱୀକାର କରେ, ବାଦୀ ଓ ପ୍ରତିବାଦୀ ଦୁହେଁ ଯଦି ପ୍ରଶ୍ନୋତ୍ତର ବେଳେ ସତ୍ୟ ଓ ସରଳଭାବେ ନିଜେ କରିଥିବା କାର୍ଯ୍ୟ ପ୍ରକାଶ କରନ୍ତି, ଦୋଷୀ ଯଦି ନିଜ ପୁଅମୁଣ୍ଡରେ ହାତଦେଇ କିମ୍ବା ଇଷ୍ଟଦେବତାଙ୍କର ନାମନେଇ ଶପଥ କରେ, ତେବେ ନିଷ୍ପତ୍ତିଦାତାଙ୍କୁ ନିଷ୍ପତ୍ତି ଦେବାପାଇଁ ଏଥିଦ୍ୱାରା ବିଶେଷ ସାହାଯ୍ୟ ମିଳିଥାଏ । (୬୬) ପୂର୍ବୋତ୍ତରାର୍ଥ ବ୍ୟାଘାତ ଅର୍ଥାତ୍ କହିବା କଥାର ପୂର୍ବାପର ବିରୋଧ, ସାକ୍ଷିବକ୍ତବ୍ୟ କାରଣ ଅର୍ଥାତ୍ ବନ୍ଧୁ ବା ଉପକାରୀ ସାକ୍ଷିବାକ୍ୟର ଅପ୍ରମାଣତା

# ଦ୍ୱିତୀୟୋଽଧ୍ୟାୟଃ

## ଏକୋନଷଷ୍ଟିତମ ପ୍ରକରଣମ୍

## ବିବାହସଂଯୁକ୍ତଂ—ବିବାହଧର୍ମଃ ସ୍ତ୍ରୀଧନକଳ୍ପ—ଆଧିବେଦନିକମ୍

## CONCERNING MARRIAGE.

## THE DUTY OF MARRIAGE, THE PROPERTY OF A WOMAN AND COMPENSATION FOR REMARRIAGE.

( ଅଷ୍ଟବିଧ ବିବାହ ଓ ତତ୍ସଂପର୍କୀୟ ବିବାହଧର୍ମ, ସ୍ତ୍ରୀଧନ ଓ ଅନ୍ୟସ୍ତ୍ରୀଗ୍ରହଣ ସଂପର୍କୀୟ କ୍ଷତିପୂରଣର ବ୍ୟବସ୍ଥା । )

(୧) ବିବାହପୂର୍ବୋ ବ୍ୟବହାରଃ * । କନ୍ୟାଦାନଂ କନ୍ୟାମଳଂକୃତ୍ୟ ବ୍ରାହ୍ମୋ ବିବାହଃ । ସହଧର୍ମଚର୍ଯ୍ୟା ପ୍ରାଜାପତ୍ୟଃ । ଗୋମିଥୁନାଦାନାଦାର୍ଷଃ । ଅନ୍ତର୍ବେଦ୍ୟାମୃତ୍ୱିଜେଦାନାଦ୍ଦୈବଃ ।

---

ନିମିତ୍ତକ ଦୋଷ ଏବଂ ଜେଲ୍‌ଖାନା ଜଗୁଆଳକୁ ଫାଙ୍କିଦେଇ ଚମ୍ପଟ କରିବା ଇତ୍ୟାଦିରୁ ଦୋଷୀର ଦୋଷ ଓ ପରାଜୟ ପ୍ରମାଣିତ ହୁଏ ।

ଇତି କୌଟଲୀୟେଽର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ପ୍ରଥମୋଽଧ୍ୟାୟଃ । ବିବାଦପଦନିବନ୍ଧଃ—ଆଦିତୋଽଷ୍ଟପଞ୍ଚାଶଃ ।

---

(୧) ବିବାହ ସମସ୍ତ ବ୍ୟବହାରର ମୂଳକାରଣ । ସାଂସାରିକ ସମସ୍ତ ବ୍ୟବହାର ସାଧାରଣତଃ ବିବାହ ପରେ ହୋଇଥାଏ । ଅତଏବ ବିବାହ ବିଷୟରେ ଏଠାରେ ବିଚାର କରାଯିବ । ସନ୍ତାନୋତ୍ପତ୍ତି ସକାଶେ କୌଣସି କନ୍ୟାର ପାଣିଗ୍ରହଣକୁ 'ବିବାହ' କୁହାଯାଏ । ଏହା ଅଠପ୍ରକାର— କନ୍ୟାକୁ ଅଳଂକୃତ କରି କନ୍ୟାପିତା ଉପଯୁକ୍ତ ପାତ୍ରହସ୍ତରେ ଅର୍ପଣ କରିବାକୁ 'ବ୍ରାହ୍ମବିବାହ', କନ୍ୟାପିତା 'ସହଧର୍ମଶ୍ଚର୍ଯ୍ୟତାଂ' ଇତ୍ୟାଦି ମନ୍ତ୍ରପାଠପୂର୍ବକ କରିବା କନ୍ୟାଦାନକୁ 'ପ୍ରାଜାପତ୍ୟ', ବରଗୃହରୁ ଦୁଇଗୋଟି ଗାଈ ଆଣି କନ୍ୟାପିତା କରିବା କନ୍ୟାଦାନକୁ 'ଆର୍ଷ',

---

* ଋଣମାଦୌମନୁବ୍ରୂତେ ବାସୁକଂ ସ୍ୱର୍ଗବୋମୁନଃ ।
ବୃହସ୍ପତସ୍ତୁ ନିକ୍ଷେପଂ ବିବାହଂ କୁଟଲନ୍ଦ୍ୱସ୍ତୁଃ ॥

ମିଥଃସମବାୟାଦ୍ ଗାନ୍ଧର୍ବଃ । ଶୁଳ୍କାଦାନାଦାସୁରଃ । ପ୍ରସହ୍ୟା-ଦାନାଦ୍ରାକ୍ଷସଃ । ସୁପ୍ତାଦାନାତ୍ପୈଶାଚଃ । (୨) ପିତୃପ୍ରମାଣାଶ୍ଚତ୍ୱାରଃ ପୂର୍ବେ ଧର୍ମ୍ୟାଃ । ମାତାପିତୃପ୍ରମାଣାଃ ଶେଷାଃ । ତୌ ହି ଶୁଳ୍କହରୌ ଦୁହିତୁଃ । ଅନ୍ୟତରାଭାବେଽନ୍ୟତରୋ ବା । (୩) ଦ୍ୱିତୀୟଂ ଶୁଳ୍କଂ ସ୍ତ୍ରୀ ହରେତ । ସର୍ବେଷାଂ ପ୍ରୀତ୍ୟାରୋପଣମପ୍ରତି-ଷିଦ୍ଧମ୍ । (୪) ବୃତ୍ତିରାବନ୍ଧ୍ୟଂ ବା ସ୍ତ୍ରୀଧନମ୍ । ପରଦ୍ୱିସାହସ୍ରା

---

ଯଜ୍ଞବେଦୀରେ ଥିବା କୌଣସି ତେଜସ୍ୱୀ ବ୍ରାହ୍ମଣଯୁବକର ରୂପଗୁଣରେ ମୁଗ୍ଧହୋଇ କନ୍ୟାପିତା ତାଙ୍କୁ କରିବା କନ୍ୟାଦାନକୁ 'ଦୈବ', ଗୋଟିଏ ତରୁଣ ଓ ଗୋଟିଏ ତରୁଣୀର ପରସ୍ପର ହୃଦୟ ଆକର୍ଷଣ ଯୋଗୁଁ ସମ୍ଭବିବା ଅନୁରାଗମୂଳକ ବିବାହକୁ 'ଗାନ୍ଧର୍ବ', ଲୋଭୀ କିମ୍ବା ଦରିଦ୍ର କନ୍ୟାପିତା ନିଜ ଗୃହଖର୍ଚ୍ଚ ସକାଶେ କିମ୍ବା କନ୍ୟାର ବସ୍ତ୍ରାଳଂକାର ସକାଶେ ବରଘରୁ ଅର୍ଥ (ଧନ) ଗ୍ରହଣପୂର୍ବକ କରିବା ବିବାହାନୁଷ୍ଠାନକୁ 'ଆସୁର', କୌଣସି ପୁରୁଷ ବଳାତ୍କାରରେ କୌଣସି ସ୍ତ୍ରୀକୁ ଟାଣିନେଇ କରିବା ବିବାହକୁ 'ରାକ୍ଷସ' ଏବଂ ଶୋଇଥିବା ସ୍ତ୍ରୀକୁ ହରଣକରି ଆଣି କରିବା ବିବାହକୁ 'ପୈଶାଚ' ବିବାହ କୁହାଯାଏ । (୨) ପିତାଙ୍କ ଇଚ୍ଛା ଅନୁସାରେ କରାଯାଉଥିବା ଯୋଗୁଁ ବ୍ରାହ୍ମ, ଆର୍ଷ, ପ୍ରାଜାପତ୍ୟ ଓ ଦୈବ—ଏ ଚାରିଗୋଟି ବିବାହ ଧର୍ମ୍ୟବିବାହ ଏବଂ ଗାନ୍ଧର୍ବ, ଆସୁର, ରାକ୍ଷସ ଓ ପୈଶାଚ—ଏ ଚାରିଗୋଟି ବିବାହ ପିତାମାତା ଉଭୟଙ୍କ ସମ୍ମତିକ୍ରମେ କନ୍ୟାଶୁଳ୍କାଦି ଗ୍ରହଣପୂର୍ବକ କରାଯାଉଥିବା ଯୋଗୁଁ ଏହା ଲୌକିକବିବାହ ନାମରେ ଅଭିହିତ । ମାତାପିତା ଦୁହେଁ କେବଳ କନ୍ୟାଶୁଳ୍କ ଗ୍ରହଣ କରନ୍ତି; କିନ୍ତୁ ଏ ଦୁଇଙ୍କ ମଧ୍ୟରୁ ଜଣକର ଅଭାବରେ ଅନ୍ୟ ଜଣକ ଶୁଳ୍କ ଗ୍ରହଣ କରେ ଅର୍ଥାତ୍ ପିତା ନଥିଲେ ମାତା ଓ ମାତା ନଥିଲେ ପିତା ମଧ୍ୟ ଶୁଳ୍କ ଗ୍ରହଣ କରେ । (୩) କନ୍ୟାଶୁଳ୍କ ବ୍ୟତୀତ ବର ପ୍ରୀତିବଶତଃ ଦେଇଥିବା ଅତିରିକ୍ତ ଶୁଳ୍କ କନ୍ୟା କେବଳ ଗ୍ରହଣ କରିବ—ଏଥିରେ ପିତାମାତାଙ୍କ କୌଣସି ଅଧିକାର ରହିବ ନାହିଁ । ବର ବ୍ୟତୀତ ବରବନ୍ଧୁମାନେ ମଧ୍ୟ କନ୍ୟାକୁ ଶ୍ରଦ୍ଧା ସହକାରେ ପ୍ରଦାନ କରିଥିବା ଶୁଳ୍କ ଓ ଅଳଂକାର ପ୍ରଭୃତି କେବଳ କନ୍ୟାର ହିଁ ହେବ ସିନା କନ୍ୟାର ପିତାମାତାଙ୍କର ଏଥିରେ କୌଣସି ଅଧିକାର ଧାର୍ଯ୍ୟ ହୋଇ ପାରିବନାହିଁ । (୪) ସ୍ତ୍ରୀଧନ 'ବୃତ୍ତି' ଓ 'ଆବନ୍ଧ୍ୟ'

ସ୍ଥାପ୍ୟାବୃତ୍ତିଃ । ଆବନ୍ଧ୍ୟା ନିୟମଃ । (୪) ତଦାତ୍ମପୁତ୍ରସ୍ନୁଷା ଭର୍ମଣି ପ୍ରବାସାପ୍ରତିବିଧାନେ ଚ ଭାର୍ଯ୍ୟାୟା ଭୋକ୍ତୁମଦୋଷଃ । ପ୍ରତିରୋଧକବ୍ୟାଧିଦୁର୍ଭିକ୍ଷଭୟପ୍ରତିକାରେ ଧର୍ମକାର୍ଯ୍ୟେ ଚ ପତ୍ୟୁଃ । ସମ୍ଭୂୟ ବା ଦମ୍ପତ୍ୟୋର୍ମିଥୁନଂ ପ୍ରଜାତୟୋ ସ୍ତ୍ରିବର୍ଷୋପଭୁକ୍ତଂ ଚ ଧର୍ମିଷ୍ଠେଷୁ ବିବାହେଷୁ ନାନୁଯୁଂଜୀତ । ଗାନ୍ଧର୍ବାସୁରୋପଭୁକ୍ତଂ ସବୃଦ୍ଧିକମୁଭୟଂ ଦାପ୍ୟେତ । ରାକ୍ଷସ-

---

ଭେଦରେ ଦୁଇପ୍ରକାର । ସ୍ତ୍ରୀର ଭରଣପୋଷଣ ସକାଶେ ନଗଦ ଦୁଇ ସହସ୍ରରୁ ଅଧିକ କାର୍ଷାପଣ (ଟଙ୍କା) ବା ସେହି ମୂଲ୍ୟର ଜମିବାଡ଼ି କିମ୍ବା ସୁବର୍ଣ୍ଣ ଦେବାକୁ 'ବୃତ୍ତି' ଏବଂ ଅଙ୍ଗଶୋଭାବରେ ଅର୍ଥାତ୍ କୌଣସି ନିର୍ଦ୍ଦିଷ୍ଟ ପରିମାଣ ନଥାଇ ସ୍ତ୍ରୀକୁ ଦେବା ଅଳଂକାର ଇତ୍ୟାଦିକୁ 'ଆବନ୍ଧ୍ୟ' କୁହାଯାଏ । (୪) ସ୍ୱାମୀ ଯଦି ସ୍ତ୍ରୀ, ପୁତ୍ର ଓ ପୁତ୍ରବଧୂଙ୍କ ଭରଣପୋଷଣ ପାଇଁ କୌଣସି ବ୍ୟବସ୍ଥା ନକରି ବିଦେଶଯାତ୍ରା କରେ, ତେବେ ସ୍ତ୍ରୀ ଉକ୍ତ ସ୍ତ୍ରୀଧନଦ୍ୱାରା ନିଜର ଓ ପୁତ୍ର, ପୁତ୍ରବଧୂ ପ୍ରଭୃତିଙ୍କ ଭରଣପୋଷଣାଦି କରିବା ଦୋଷାବହ ନୁହେ । ସ୍ୱାମିଙ୍କୁ ଯଦି ସାହୁକାର ବା ସରକାର ଋଣ କିମ୍ବା ଅନ୍ୟ କୌଣସି ଦେୟ ଧନ "ଏବେ ଠିଅଗୋଡ଼େ ପୈଠନକରି ଯାଇପାରିବ ନାହିଁ" ବୋଲି ଜବରଦସ୍ତି ଅଟକାଇ ରଖନ୍ତି, ତେବେ ଏହାର ପ୍ରତିକାର ପାଇଁ ଏବଂ ବ୍ୟାଧି, ଦୁର୍ଭିକ୍ଷ, ଦୈବ ଓ ମାନୁଷ ବିପଦାଦିଜନିତ ଭୟର ପ୍ରତିକାର ଓ ଧର୍ମକାର୍ଯ୍ୟ ପାଇଁ ସ୍ୱାମୀ ମଧ୍ୟ ସ୍ତ୍ରୀଧନ ବ୍ୟୟକରିବା ଦୋଷାବହ ନୁହେ । ଧର୍ମିଷ୍ଠ ବିବାହ ଅର୍ଥାତ୍ ବ୍ରାହ୍ମ, ପ୍ରାଜାପତ୍ୟ, ଆର୍ଷ ଓ ଦୈବ ବିବାହ ଅନୁସାରେ ବିବାହିତ ଦମ୍ପତିଙ୍କ ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା କିମ୍ବା ଦୁଇଟି ପୁତ୍ର ବା ଦୁଇଟି କନ୍ୟା ଜାତ ହେବାପରେ ସେଦୁହେଁ ମିଶି ତିନିବର୍ଷ ଭୋଗକରିଥିବା ସ୍ତ୍ରୀଧନକୁ ସ୍ତ୍ରୀ ସ୍ୱାମିଙ୍କଠାରୁ ତାହା ଓାପସ୍ ପାଇବା ପାଇଁ ଦାବୀ କରି ପାରିବେ ନାହିଁ । କିନ୍ତୁ ଗାନ୍ଧର୍ବ ଓ ଅସୁର ବିଧାନ ଅନୁସାରେ ବିବାହିତ ଦମ୍ପତୀ ମିଶିକରି ଯଦି ଉକ୍ତ ସ୍ତ୍ରୀଧନ ତିନିବର୍ଷ ଉପଭୋଗ କରିଥାନ୍ତି କିମ୍ବା ସ୍ୱାମୀ କେବଳ ଏହି ଧନ ଧର୍ମକାର୍ଯ୍ୟ ପ୍ରଭୃତିରେ ବିନିଯୋଗ କରିଥାନ୍ତି, ତେବେ ସ୍ତ୍ରୀ ଉକ୍ତ ଧନ କଳନ୍ତର ସହ ସ୍ୱାମିଙ୍କଠାରୁ ଅସୁଲି ବା ଆଦାୟ କରିବା ପାଇଁ ନ୍ୟାୟାଧୀଶ ଫୈସଲା କରିଦେବେ; ରାକ୍ଷସ ଓ ପୈଶାଚ

**ପୈଶାଚେଷ୍ୱପଭୁକ୍ତଂ ସ୍ତେୟଂ ଦଦ୍ୟାତ୍ । ଇତି ବିବାହଧର୍ମାଃ । (୭) ମୃତେ ଭର୍ତ୍ତରି ଧର୍ମକାମା ତଦାନୀମେବାସ୍ଥାପ୍ୟାଭରଣଂ ଶୁଳ୍କଶେଷଂ ଚ ଲଭେତ । ଲବ୍ଧ୍ୱା ବା ବିନ୍ଦମାନା ସବୃଦ୍ଧିକମୁଭୟଂ ଦାପୟେତ । କୁଟୁମ୍ବକାମା ତୁ ଶ୍ୱଶୁରପତିଦତ୍ତଂ ନିବେଶକାଳେ ଲଭେତ । ନିବେଶକାଳଂ ହି ଦୀର୍ଘପ୍ରବାସେ ବ୍ୟାଖ୍ୟାସ୍ୟାମଃ । (୭) ଶ୍ୱଶୁର ପ୍ରାତିଲୋମ୍ୟେନ ବା ନିବିଷ୍ଟା ଶ୍ୱଶୁରପତିଦତ୍ତଂ ଜୀୟେତ ।**

---

ବିଧିରେ ବିବାହ କରିଥିବା ଦମ୍ପତ୍ତି ମଧ୍ୟ ତିନିବର୍ଷ ଉକ୍ତ ସ୍ତ୍ରୀଧନ ଉପଭୋଗ କଲାପରେ ସ୍ୱାମୀ ଯଦି ଏ ଧନ ସ୍ତ୍ରୀଙ୍କୁ ନଫେରାନ୍ତି ତେବେ ନ୍ୟାୟାଧୀଶ ତାଙ୍କୁ ଚୌରଦଣ୍ଡରେ ଦଣ୍ଡିତ କରି ଉକ୍ତ ଧନ ଆଦାୟପୂର୍ବକ ସ୍ତ୍ରୀଙ୍କୁ ଦିଆଇ ଦେବେ । ଏଠାରେ ବିବାହବିଷୟକ ଆଲୋଚନା ଶେଷ ହେଲା । (୭) ସ୍ୱାମିଙ୍କ ମୃତ୍ୟୁପରେ କୌଣସି ସ୍ତ୍ରୀ ଯଦି ନିଜର ଐହିକ ପାରତ୍ରିକ (ଇହଲୋକ ପରଲୋକ) ସୁଖ ଓ ପତିଙ୍କର ପରଲୋକ ସୁଖ ସକାଶେ ଧର୍ମ କରିବା ଇଚ୍ଛାକରି ବୈଧବ୍ୟବ୍ରତ ପାଳନ କରେ, ତେବେ ସେ ନିଜଦେହରୁ ବାହାର କରିଥିବା ଅଳଂକାର ଓ ସ୍ୱାମୀ ଏବଂ ସ୍ତ୍ରୀ ଦୁହେଁ ମିଶି ଭୋଗ କରିଥିବା ସ୍ତ୍ରୀଧନର ଅବଶିଷ୍ଟ ଅଂଶ ପାଇବାକୁ ହକ୍‌ଦାର ହେବ । କିନ୍ତୁ ଏହି ଅଳଙ୍କାର ଓ ଅବଶିଷ୍ଟ ସ୍ତ୍ରୀଧନ ହସ୍ତଗତ କରି ଯଦି କୌଣସି ବିଧବା ଅନ୍ୟ ପତି ଗ୍ରହଣ କରେ, ତେବେ କଲନ୍ତରର ସହ ଏ ଧନ ନ୍ୟାୟାଧୀଶ ତାହାଠାରୁ ଅସୁଲ କରାଇ ତାର ପୁତ୍ରକନ୍ୟାଙ୍କୁ ବା ଏମାନଙ୍କ ଅଭାବରେ ୱାରସଦାରମାନଙ୍କୁ ଦିଆଇ-ଦେବେ । ଯଦି କୌଣସି ସ୍ତ୍ରୀ ସନ୍ତାନ କାମନାରେ ଦିଅରକୁ ଆଶ୍ରୟ କରେ, ତେବେ ଏହି 'ନିବେଶକାଳ'ରେ ପତି ବା ଶ୍ୱଶୁର ଦେଇଥିବା ସ୍ତ୍ରୀଧନ ସେ ଉପଭୋଗ କରିପାରିବ । 'ନିବେଶକାଳ' ବିଷୟର ବ୍ୟାଖ୍ୟା ଦୀର୍ଘପ୍ରବାସ ପ୍ରକରଣରେ କରାଯିବ । (୭) ନିବେଶପାଇଁ ଶ୍ୱଶୁର ବାଛି ଠିକ୍ କରିଥିବା ବ୍ୟକ୍ତିଙ୍କୁ ନାପସନ୍ଦ କରି ଶ୍ୱଶୁରଙ୍କ ଇଚ୍ଛା ବିରୁଦ୍ଧରେ କୌଣସି ସ୍ତ୍ରୀ ଯଦି ନିଜର ପସନ୍ଦକ୍ରମେ ଅନ୍ୟକୌଣସି ପୁରୁଷ ସହିତ ନିବେଶିତ ହୁଏ, ତେବେ ସେ ସ୍ୱାମୀ ଓ ଶ୍ୱଶୁରଙ୍କଠାରୁ ପାଇଥିବା ସ୍ତ୍ରୀଧନରୁ ବଞ୍ଚିତା ହେବ । ସ୍ୱାମୀ ଥାଉ ଥାଉ ସ୍ତ୍ରୀ ଯଦି ଅନ୍ୟପତି ଗ୍ରହଣ କରେ ତେବେ ସେ ପୂର୍ବପତି ଓ ଶ୍ୱଶୁରଦତ୍ତ ସ୍ତ୍ରୀଧନ ଯେତିକି ନେଇଥିବ ସେତିକି ନୂତନ ପତି ଉକ୍ତ ସ୍ତ୍ରୀର ପୂର୍ବଶ୍ୱଶୁର

ଜ୍ଞାତହସ୍ତାଦଭିମୃଷ୍ଟାୟା ଜ୍ଞାତୟୋ ଯଥାଗୃହୀତଂ ଦଦ୍ୟୁଃ । (୮) ନ୍ୟାୟୋପଗତାୟାଃ ପ୍ରତିପତ୍ତା ସ୍ତ୍ରୀଧନଂ ଗୋପାୟେତ୍ । ପତିଦାୟଂ ବିନ୍ଦମାନା ଜୀୟେତ । ଧର୍ମକାମା ଭୁଂଜୀତ । ପୁତ୍ରବତୀ ବିନ୍ଦମାନା ସ୍ତ୍ରୀଧନଂ ଜୀୟେତ । ତତ୍ତୁ ସ୍ତ୍ରୀଧନଂ ପୁତ୍ରା ହରେୟୁଃ । ପୁତ୍ରଭରଣାର୍ଥଂ ବା ବିନ୍ଦମାନା ପୁତ୍ରାର୍ଥଂ ସ୍ଫାତୀ କୁର୍ଯ୍ୟାତ୍ । ବହୁ-ପୁରୁଷପ୍ରଜାନାଂ ପୁତ୍ରାଣାଂ ଯଥାପିତୃଦତ୍ତଂ ସ୍ତ୍ରୀଧନମବସ୍ଥାପୟେତ୍ । କାମକାରଣୀୟମପି ସ୍ତ୍ରୀଧନଂ ବିନ୍ଦମାନା ପୁତ୍ରସଂସ୍ଥଂ କୁର୍ଯ୍ୟାତ୍ ।

---

ଓ ପୂର୍ବପତିଙ୍କୁ ଫେରାଇ ଦେବେ । (୮) ନ୍ୟାୟସଂଗତଭାବେ ଦାଅରପ୍ରଭୃତିଙ୍କୁ ପତିରୂପେ ଗ୍ରହଣ କରିଥିବା ସ୍ତ୍ରୀର ସ୍ତ୍ରୀଧନ ଏହି ଉପପତି ଉପଭୋଗ ନକରି ନିରାପଦରେ ରଖି ଦେଇଥିବେ । କୌଣସି ବିଧବା ସ୍ତ୍ରୀ ଯଦି ଅନ୍ୟ ପତି ଗ୍ରହଣକରେ ତେବେ ସେ ପୂର୍ବପତିଦତ୍ତ ବସ୍ତ୍ରାଳଙ୍କାର ପ୍ରଭୃତି ପୂର୍ବ ଶ୍ୱଶୁରକୁଳକୁ ଫେରାଇଦେବ । ଅନ୍ୟପତି ଗ୍ରହଣ ନକରି ସଂଯତଭାବେ ବୈଧବ୍ୟ ଧର୍ମାଚରଣ କରିବା ସ୍ତ୍ରୀ ଏହି ସ୍ତ୍ରୀଧନ ଭୋଗକରି ରହିବ । ପୁତ୍ରବତୀ ବିଧବା ଯଦି ଅନ୍ୟପତି ଗ୍ରହଣ କରେ ତେବେ ସେ ପୂର୍ବପତିଠାରୁ ପାଇଥିବା ସ୍ତ୍ରୀଧନର ଅଧିକାରିଣୀ ହୋଇ ପାରିବ ନାହିଁ । କାରଣ ଏହି ସ୍ତ୍ରୀଧନର ଅଧିକାରୀ ଉକ୍ତ ବିଧବାର ପୁତ୍ରମାନେ ହିଁ ଅଇନତଃ ହୋଇପାରିବେ । ଯଦି କୌଣସି ସ୍ତ୍ରୀ ପୁତ୍ରମାନଙ୍କ ଭରଣପୋଷଣ ସକାଶେ ଅନ୍ୟପତି ଗ୍ରହଣ କରେ ତେବେ ତାର ସ୍ତ୍ରୀଧନ ସେହି ସନ୍ତାନମାନଙ୍କ ନାମରେ ସରକାରୀ ବ୍ୟାଙ୍କରେ ଗଚ୍ଛିତ କରି ବର୍ଦ୍ଧିତ କରାଇବ କିମ୍ବା ଋଣ ଦେଇ ବର୍ଦ୍ଧିତ କରାଇବ । ଗୋଟିକ ପରେ ଗୋଟିଏ କରି ବହୁତ ପତି ଗ୍ରହଣ କରିଥିବା ସ୍ତ୍ରୀ, ଅନ୍ୟପତି ଗ୍ରହଣ ବେଳେ ଯେଉଁ ପତିଠାରୁ ଯେତିକ ସ୍ତ୍ରୀଧନ ପାଇଥିବ ତାହା ସେହି ସେହି ପତିଙ୍କଠାରୁ ଜାତହୋଇଥିବା ପୁତ୍ରମାନଙ୍କ ନାମରେ ଗଚ୍ଛିତ କରି ବା ଋଣ ବନ୍ଧକ ଇତ୍ୟାଦିରେ ଖଟାଇ ବଢ଼ାଇବାକୁ ହେବ । ଏହି ନାବାଳକ ପୁତ୍ରମାନେ ସାବାଳକ ଅର୍ଥାତ୍ ଷୋହଳବର୍ଷରୁ ଅଧିକ ବୟସ୍କ ହେବାପରେ ଉକ୍ତ ସ୍ତ୍ରୀଧନର ଅଧିକାରୀ ହେବେ । ସ୍ତ୍ରୀ ଅନ୍ୟପତି ଗ୍ରହଣ କଲେ ସେ ନିଜଇଚ୍ଛା ପ୍ରକାରେ ଖରଚ କରିବା ପାଇଁ ପାଇଥିବା ସ୍ତ୍ରୀଧନ ମଧ୍ୟ ପୂର୍ବପତିଠାରୁ ଜାତହୋଇଥିବା ପୁତ୍ରଙ୍କୁ ସମର୍ପଣ କରିଦେଇ

(୯) ଅପୁତ୍ରା ପତିଶୟନଂ ପାଳୟନ୍ତୀ ଗୁରୁସମୀପେ ସ୍ତ୍ରୀଧନଂ ଆ ଆୟୁଃକ୍ଷୟାତ୍ ଭୁଂଜୀତ, ଆପଦର୍ଥଂ ହି ସ୍ତ୍ରୀଧନମ୍। ଊର୍ଦ୍ଧ୍ୱଂ ଦାୟାଦଂ ଗଚ୍ଛେତ୍ । (୧୦) ଜୀବତି ଭର୍ତ୍ତରି ମୃତାୟାଃ ପୁତ୍ରା ଦୁହିତରଶ୍ଚ ସ୍ତ୍ରୀଧନଂ ବିଭଜେରନ୍ । ଅପୁତ୍ରାୟାଃ ଦୁହିତରଃ ତଦଭାବେ ଭର୍ତ୍ତା । (୧୧) ଶୁଲ୍କମନ୍ୱାଧେୟମନ୍ୟଦ୍ ବା ବନ୍ଧୁଭିର୍ଦତ୍ତଂ ବାନ୍ଧବା ହରେୟୁଃ । ଇତି ସ୍ତ୍ରୀଧନକଳ୍ପଃ ।

(୧୨) ବର୍ଷାଣ୍ୟଷ୍ଟାବପ୍ରଜାୟମାନାମପୁତ୍ରାଂ ବନ୍ଧ୍ୟାଂ ଚାକାଂକ୍ଷେତ,

---

ଯିବାକୁ ହେବ । (୯) ପୁତ୍ରହୀନା ପତିବ୍ରତା ବିଧବାସ୍ତ୍ରୀ ତାର ସ୍ତ୍ରୀଧନ ଯାବଜ୍ଜୀବନ ଗୁରୁଜନମାନଙ୍କ ନିକଟରେ ରହି ତାର କଳ୍ୟାଣ ରେ କେବଳ ଜୀବିକା ନିର୍ବାହ କରିବ । କାରଣ ମୂଳ ସ୍ତ୍ରୀଧନ କେବଳ ଦୈବୀ ଓ ମାନୁଷୀ ବିପତ୍ତି ବେଳେ ଉପଯୋଗ କରିବା ବିଧିସଂଗତ ଯିନା, ଯାହାଇଚ୍ଛା ତାହା କରିଦେବା ବିଧିସଂଗତ ନୁହେ । ଉକ୍ତ ସ୍ତ୍ରୀର ମୃତ୍ୟୁପରେ ତାର ଏହି ଗଚ୍ଛିତ ସ୍ତ୍ରୀଧନ ସ୍ୱାମୀର ପିଣ୍ଡଦାତାମାନେ (ବଂଶୀୟ ବ୍ୟକ୍ତିମାନେ) ଭୋଗ ଦଖଲ କରିବେ । (୧୦) ପତି ଜୀବିତ ଥାଉ ଥାଉ ସ୍ତ୍ରୀର ମୃତ୍ୟୁ ଘଟିଲେ ତାର ପୁତ୍ର ଓ କନ୍ୟାମାନେ ସମଭାଗରେ ସ୍ତ୍ରୀଧନ ବଣ୍ଟନ କରିନେବେ । ପୁତ୍ର ନଥିଲେ କନ୍ୟା ଓ ପୁତ୍ର କନ୍ୟା ଆଦୌ ନଥିଲେ ପତି, ଏହି ସ୍ତ୍ରୀଧନର ହକ୍‌ଦାର ହେବେ । (୧୧) ଅସୁରାଦି ଅଧର୍ମ୍ୟ ବିବାହରେ ସ୍ତ୍ରୀ ତାର ପିତା, ଭ୍ରାତା ଓ ବନ୍ଧୁବାନ୍ଧବଙ୍କଠାରୁ ଆଣିଥିବା ଯୌତୁକ ଓ ଶୁଲ୍କ ପ୍ରଭୃତି ସ୍ତ୍ରୀଧନ ତାର ମୃତ୍ୟୁପରେ ସ୍ୱାମୀର ହୋଇ ପାରିବ ନାହିଁ । କିନ୍ତୁ ଏହି ଧନ ସ୍ତ୍ରୀର * ବନ୍ଧୁ ଅର୍ଥାତ୍ ପିତା, ଭ୍ରାତା ପ୍ରଭୃତି ନେଇଯିବେ । ଏଠାରେ ସ୍ତ୍ରୀଧନ ବିଷୟକ ବିଚାର ଶେଷ ହେଲା ।

(୧୨) ସ୍ତ୍ରୀ ଯଦି ଅପ୍ରଜାୟମାନା ଅର୍ଥାତ୍ ଥରେମାତ୍ର ପ୍ରସବ କରି ଆଉ ଗର୍ଭଧାରଣ କରେ ନାହିଁ, ବ୍ୟାଧିବଶତଃ ପୁତ୍ରହୀନା ହୁଏ କିମ୍ବା ବନ୍ଧ୍ୟା ହୁଏ

---

* ତାଂ ପାର୍ବତୀତ୍ୟାଭିଜନେନନାମ୍ନା ବନ୍ଧୁପ୍ରିୟାଂ ବନ୍ଧୁଜନୋଜୁହାବ ।
ଇତି କୁମାରସମ୍ଭବେ ।
ବନ୍ଧୁରୂପଃ ଜନଃ ବନ୍ଧୁଜନଃ ପିତ୍ରାଦଃ । ଇତି ଟୀକାୟାଂ ମଲ୍ଲୀନାଥଃ ।

ଦଶ ବନ୍ଦୁଂ, ଦ୍ୱାଦଶ କନ୍ୟାପ୍ରସବନୀମ୍ । ତତଃ ପୁତ୍ରାର୍ଥୀ ଦ୍ୱିତୀୟାଂ ବନ୍ଦେତ । ତସ୍ୟାତିକ୍ରମେ ଶୁଲ୍କଂ ସ୍ତ୍ରୀଧନମର୍ଦ୍ଧଂ * ଚାଧିବେଦନିକଂ ଦଦ୍ୟାତ୍ । ଚତୁର୍ବିଂଶତିପଣପରଂ ଚ ଦଣ୍ଡମ୍ । (୧୩) ଶୁଲ୍କଂ ସ୍ତ୍ରୀଧନମଶୁଲ୍କସ୍ତ୍ରୀଧନାୟାସ୍ତତ୍ପ୍ରମାଣମାଧିବେଦନିକମନୁରୂପାଂ ଚ ବୃତ୍ତିଂ ଦତ୍ୱା ବହ୍ୱୀରପି ବନ୍ଦେତ । ପୁତ୍ରାର୍ଥା ହି. ସ୍ତ୍ରିୟଃ । (୧୪) ତୀର୍ଥସମବାୟେ ଚୈଷାଂ ଯଥାବିବାହଂ ପୂର୍ବୋଢ଼ାଂ ଜୀବତ୍ପୁତ୍ରାଂ

ତେବେ ପତି ଆଠବର୍ଷ ଅପେକ୍ଷା କରିବ; ମୃତବତ୍ସା ହେଲେ ଦଶବର୍ଷ ଓ କେବଳ କନ୍ୟାପ୍ରସବିନୀ ହେଲେ ବାରବର୍ଷ ଅପେକ୍ଷା କରିବ ଓ ତା ପରେ ପୁତ୍ରକାମନାରେ ଦ୍ୱିତୀୟ କଳତ୍ର ଗ୍ରହଣ କରିବ । ଉକ୍ତ ନିୟମ ଲଙ୍ଘନ କରି ଅଥବା ସମୟରେ ପୁନର୍ବିବାହ କଲେ ପୂର୍ବସ୍ତ୍ରୀକୁ ଶୁଲ୍କ, ସ୍ତ୍ରୀଧନ ଓ ଦ୍ୱିତୀୟ ବିବାହରେ ଖର୍ଚ୍ଚ କରିଥିବା ଧନର ଅର୍ଦ୍ଧଭାଗ ଦେଇଦେବା ସଙ୍ଗେ ସଙ୍ଗେ ଚବିଶିପଣରୁ ଅଧିକପଣ 'ନିୟମଭଙ୍ଗ' ଜୋରିମାନା ରାଜାଙ୍କୁ ଦେବ । (୧୩) ପୁତ୍ରୋତ୍ପାଦନ ସକାଶେ ହିଁ ଦାରପରିଗ୍ରହ କରାଯାଏ । ଅତଏବ କୌଣସି ପୁରୁଷ ଯଦି ଅପୁତ୍ରିକ ହେବାଯୋଗୁଁ ଗୋଟିକ ପରେ ଗୋଟିଏ ସ୍ତ୍ରୀ ବିବାହ କରିବାକୁ ଇଚ୍ଛାକରେ, ତେବେ ପୂର୍ବସ୍ତ୍ରୀକୁ ଯଦି ବିବାହ ସମୟରେ ବିବାହ ଶୁଲ୍କ ଓ ସ୍ତ୍ରୀଧନ ଇତ୍ୟାଦି ଦିଆଯାଇନଥାଏ, ବର୍ତ୍ତମାନ ତାହା ଦେବା ସଙ୍ଗେ ସଙ୍ଗେ ନୂତନ ସ୍ତ୍ରୀ ବିବାହରେ ଖର୍ଚ୍ଚହେବା ଧନର ସମପରିମାଣ ଧନ ଓ ଯଥାଯୋଗ୍ୟ ଭକ୍ତାଚ୍ଛାଦନ ବୃତ୍ତି ଖଞ୍ଜିଦେଇ ବହୁବିବାହ କରିପାରିବେ । ଯଦି ପୂର୍ବସ୍ତ୍ରୀକୁ ବିବାହ ସମୟରେ ଶୁଲ୍କ ଓ ସ୍ତ୍ରୀଧନ ଦିଆଯାଇଥାଏ, ତେବେ କେବଳ ବିବାହଖର୍ଚ୍ଚ ସମାନ ଧନ (ଆଧିବେଦନିକ) ଓ ବୃତ୍ତି ଦେଇ ବହୁବିବାହ କରିପାରିବେ । (୧୪) ଏକ ସମୟରେ ଯଦି ବିବାହିତା ସ୍ତ୍ରୀ ମାନଙ୍କ ମଧ୍ୟରୁ ବହୁତ ସ୍ତ୍ରୀ ଋତୁମତୀ ହୁଅନ୍ତି, ତେବେ ପୁତ୍ରକାମୀ ପତି ଯଥାବିବାହ ଅର୍ଥାତ୍ ବ୍ରାହ୍ମ ପ୍ରାଜାପତ୍ୟାଦି ଆଠପ୍ରକାର ବିବାହକ୍ରମରେ ପୂର୍ବ ବିବାହିତା ସ୍ତ୍ରୀସହିତ ସହବାସ କରିବେ କିମ୍ବା ଯେଉଁ ସ୍ତ୍ରୀର ପୁତ୍ର ଜୀବିତ ଥିବ, ସେ ଉପରୋକ୍ତ ବିବାହବିଧିପ୍ରକାରେ ପୂର୍ବବିବାହିତା ବା

* ଅଧିବିନ୍ନା ସ୍ତ୍ରିୟୈ ଦଦ୍ୟାଦାଧିବେଦନିକଂ ସମଂ । ଇତି ମିତାକ୍ଷରା ।

ବା ପୂର୍ବଂ ଗଚ୍ଛେତ୍ । (୧୫) ତୀର୍ଥଗୂହନାଗମନେ ଷଣ୍ଣବତି-ର୍ଦଣ୍ଡଃ । ପୁତ୍ରବତୀଂ ଧର୍ମକାମାଂ ବନ୍ଧ୍ୟାଂ ନିନ୍ଦୁଂ ନୀରଜସ୍କାଂ ବା ନାକାମାମୁପେୟାତ୍ ନଚାକାମଃ ପୁରୁଷଃ । କୁଷ୍ଠିନୀମୁନ୍ମତ୍ତାଂ ବା ନ ଗଚ୍ଛେତ୍ । ସ୍ତ୍ରୀ ତୁ ପୁତ୍ରାର୍ଥମେବଂଭୂତଂ ବୋପଗଚ୍ଛେତ୍ । (୧୬) ନୀଚତ୍ୱଂ ପରଦେଶଂ ବା ପ୍ରସ୍ଥିତୋ ରାଜକିଲ୍ବିଷୀ ।
ପ୍ରାଣାଭିହନ୍ତା ପତିତସ୍ତ୍ୟାଜ୍ୟଃ କ୍ଲୀବୋଽପି ବା ପତିଃ ॥

---

ପରିବିବାହିତା ହେଉ, ତା ସହିତ ସହବାସ କରିବେ । (୧୫) ଯେଉଁ ସ୍ତ୍ରୀ ଋତୁମତୀ ହୋଇ ପୁରୁଷକୁ କହେ ନାହିଁ କିମ୍ବା ଯେଉଁ ପୁରୁଷ ଋତୁମତୀ ସ୍ତ୍ରୀସହିତ ସହବାସ କରେ ନାହିଁ ତାଙ୍କୁ ଛୟାନବେ ପଣ ଜୋରିମାନା କରିବାକୁ ହେବ । ସହବାସ ଅନିଚ୍ଛୁକା ପୁତ୍ରବତୀ, ପୁତ୍ରପ୍ରାପ୍ତି ଅର୍ଥରେ ବ୍ରତ ଉପବାସ କରୁଥିବା ବନ୍ଧ୍ୟା ସ୍ତ୍ରୀ, ମୃତବତ୍ସା ଓ ଋତୁ ବନ୍ଦହୋଇଯାଇଥିବା ବୟସ୍କା ସ୍ତ୍ରୀ ସହିତ ସହବାସ ଇଚ୍ଛୁକ ପୁରୁଷ ସହବାସ କରିପାରିବ ନାହିଁ କିମ୍ବା ଉପରୋକ୍ତ ସ୍ତ୍ରୀମାନେ ସହବାସେଚ୍ଛୁକା ଥିଲେମଧ୍ୟ ସହବାସ ଅନିଚ୍ଛୁକ ପୁରୁଷ ସେମାନଙ୍କ ସହିତ ସହବାସ କରିବ ନାହିଁ । ସହବାସ ଇଚ୍ଛୁକ ପୁରୁଷ କୁଷ୍ଠିନୀ କିମ୍ବା ଉନ୍ମତ୍ତା (ପାଗଳୀ) ସ୍ତ୍ରୀ ସହିତ ସହବାସ କରିବ ନାହିଁ । କିନ୍ତୁ ପୁତ୍ରୋତ୍ପାଦନ ନିକାଶେ ସ୍ତ୍ରୀ ଇଚ୍ଛାକଲେ କୁଷ୍ଠରୋଗୀ ବା ପାଗଳ ସ୍ୱାମୀଙ୍କ ସହିତ ସହବାସ କରିପାରିବ । (୧୬) ଦୁଷ୍ଟଚରିତ, ନୀଚତାପ୍ରାପ୍ତ, ବିଦେଶଗତ (ଦୀର୍ଘପ୍ରବାସୀ), ରାଜକିଲ୍ବିଷୀ (ରାଜାଙ୍କ ପ୍ରତି ପାପାଚରଣ କରିଥିବା ରାଜଦ୍ରୋହୀ ବା ରାଜଯକ୍ଷ୍ମା ରୋଗୀ), ନରହନ୍ତା, ପତିତ ଓ ନପୁଂସକ ପତିକୁ ବିବାହିତା ସ୍ତ୍ରୀ ତ୍ୟାଗ କରିଦେଇ ପାରିବ ।

ଇତି କୌଟିଲୀୟେଽର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଦ୍ୱିତୀୟୋଽଧ୍ୟାୟଃ ।
ବିବାହସଂଯୁକ୍ତେ ବିବାହଧର୍ମଃ ସ୍ତ୍ରୀଧନକଳ୍ପଃ ଅଧିବେଦନିକଂ
ଆଦିତଃ ଏକୋନଷଷ୍ଟିତମଃ ।

---

# ତୃତୀୟୋଽଧ୍ୟାୟଃ

## ଏକୋନଷଷ୍ଟିତମ ପ୍ରକରଣମ୍—ବିବାହସଂଯୁକ୍ତମ୍ ଶୁଶ୍ରୂଷାଭର୍ମପାରୁଷ୍ୟଦ୍ୱେଷାତିଚାରୋପକାର ବ୍ୟବହାରପ୍ରତିଷେଧାଶ୍ଚ

**THE DUTY OF A WIFE; MAINTENANCE OF A WOMAN; CRUELTY TO WOMAN; ENMITY BETWEEN HUSBAND AND WIFE; A WIFE'S TRANSGRESSION; HER KINDNESS TO ANOTHER AND FORBIDDEN TRANSACTIONS.**

[ ବିବାହସମ୍ପର୍କୀୟ ଶୁଶ୍ରୂଷା (ପରିଚର୍ଯ୍ୟା), ଭର୍ମ (କୁଟୁମ୍ବ ଭରଣ ନିଯୋଗ), ପାରୁଷ୍ୟ (ଗାଳି ଓ ମାଡ଼), ଦ୍ୱେଷ (ଅପ୍ରୀତି), ଅତିଚାର (ମନା କରିଥିବା ବିଷୟକୁ ଆଚରଣ କରିବା), ଉପକାର ବ୍ୟବହାର ଓ ପ୍ରତିଷେଧ (ବ୍ୟକ୍ତିବିଶେଷ ବିଷୟରେ କୌଣସି ଉପକାର କରିବା ଆଚରଣର ନିଷେଧ) ]

**(୧) ଦ୍ୱାଦଶବର୍ଷା ସ୍ତ୍ରୀ ପ୍ରାପ୍ତବ୍ୟବହାରା ଭବତି, ଷୋଡ଼ଶବର୍ଷଃ ପୁମାନ୍। ଅତଊର୍ଦ୍ଧ୍ୱମଶୁଶ୍ରୂଷାୟାଂ ଦ୍ୱାଦଶପଣଃ ସ୍ତ୍ରିୟା ଦଣ୍ଡଃ ପୁଂସୋ ଦ୍ୱିଗୁଣଃ । (୨) ଭର୍ମଣ୍ୟାୟାମନିର୍ଦ୍ଦିଷ୍ଟକାଳାୟାଂ ଗ୍ରାସାଚ୍ଛାଦନଂ**

---

(୧) ବାରବର୍ଷ ବୟସ୍କା ସ୍ତ୍ରୀ ପ୍ରାପ୍ତବ୍ୟବହାର୍ ଅର୍ଥାତ୍ ପରିଚର୍ଯ୍ୟା କାର୍ଯ୍ୟରେ ନିଯୁକ୍ତ ହେବାପାଇଁ ଯୋଗ୍ୟା ହୁଏ ଏବଂ ଷୋହଳବର୍ଷ ବୟସ୍କ ପୁରୁଷ ପ୍ରାପ୍ତବ୍ୟବହାର ହୁଏ ଅର୍ଥାତ୍ ସାବାଳକତ୍ୱ ପ୍ରାପ୍ତହୁଏ । ଏମାନେ ଉକ୍ତ ବୟସ ପ୍ରାପ୍ତ ହେବାପରେ ଯଦି ଯୋଗ୍ୟ ବ୍ୟବହାରାଚରଣ ନକରନ୍ତି ତେବେ ଆଇନ ଅନୁସାରେ ସ୍ତ୍ରୀ ବାରପଣ ଏବଂ ପୁରୁଷ ଏହାର ଦ୍ୱିଗୁଣ ଅର୍ଥାତ୍ ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୨) ଯଦି କୌଣସି ସ୍ତ୍ରୀର ଭରଣପୋଷଣର ସମୟ ନିର୍ଦ୍ଦିଷ୍ଟ ନଥାଏ, ତେବେ ସ୍ୱାମୀ ତାହାଙ୍କ ଆବଶ୍ୟକ ଅନୁଯାୟୀ ବା ତହିଁରୁ କିଛି ଅଧିକ ଧନ ଗ୍ରାସାଚ୍ଛାଦନ ସକାଶେ

ବାଧିକଂ ଯଥାପୁରୁଷପରିବାପଂ ସବିଶେଷଂ ଦଦ୍ୟାତ୍ । ନିର୍ଦ୍ଦିଷ୍ଟ କାଳାୟାଂ ତଦେବ ସଂଖ୍ୟାୟ । ବନ୍ଧଂ ଚ ଦଦ୍ୟାତ୍ । ଶୁଲ୍କ ସ୍ତ୍ରୀଧନାଧିବେଦନକାନାମନାଦାନେ ଚ । (୩) ଶ୍ୱଶୁରକୁଳପ୍ରବିଷ୍ଟାୟାଂ ବିଭକ୍ତାୟାଂ ବା ନାଭିଯୋଜ୍ୟଃ ପତିଃ । ଇତି ଭର୍ମ । (୪) ନଗ୍ନେ ! ବିନଗ୍ନେ ! ନ୍ୟଂଗେ ! ଅପିତୃକେ ! ଅମାତୃକେ ! ଇତ୍ୟ- ନିର୍ଦ୍ଦେଶେନ ବିନୟଗ୍ରାହଣମ୍ । ବେଣୁଦଳରଜ୍ଜୁହସ୍ତାନାମନ୍ୟତ- ମେନ ବା ପୃଷ୍ଠେ ତ୍ରିରାଘାତଃ । ତସ୍ୟାତିକ୍ରମେ ବାଗ୍ଦଣ୍ଡ-

---

ଦେବେ କିମ୍ବା ପରିବାରର ସମସ୍ତଙ୍କ ପ୍ରତି ଯେପରି ଅଯୃଧନର ବିନିଯୋଗ କରାଯାଏ ସେହି ଅନୁସାରେ ଅଗଣିତ ଭାବରେ (ବିଶେଷଭାବରେ) ଦେବେ । ଯଦି କୌଣସି ସ୍ତ୍ରୀର ଭରଣପୋଷଣ ସମୟ ନିର୍ଦ୍ଦିଷ୍ଟ କରାଯାଇ ଅଛି, ତେବେ ଏହାର ଭରଣପୋଷଣାର୍ଥ ଦେୟଧନ ନିର୍ଦ୍ଦିଷ୍ଟଭାବରେ ହିଁ ଦେଇଦେବାକୁ ହେବ ଏବଂ ତା'ସହିତ ଏହି ଦେୟଧନର ପାଞ୍ଚଭାଗରୁ ଏକଭାଗ କିମ୍ବା ଦଶଭାଗରୁ ଏକଭାଗ ମଧ୍ୟ ଦେଇଦେବାକୁ ହେବ । ଏପରି କି, ଯେଉଁ ସ୍ତ୍ରୀ ଶୁଲ୍କ, ସ୍ତ୍ରୀଧନ ଓ ଅଧିବେଦନିକ ପାଇବାରୁ ବଞ୍ଚିତ ହୋଇଥାଏ, ସେ ମଧ୍ୟ ଉପରୋକ୍ତ ବନ୍ଧ ଅର୍ଥାତ୍ ଦେୟଧନର ପାଞ୍ଚଭାଗରୁ ଏକଭାଗ ବା ଦଶଭାଗରୁ ଏକଭାଗ ପାଇବାକୁ ହକ୍‌ଦାର ହେବ । (୩) ସ୍ତ୍ରୀ ଯଦି ଶ୍ୱଶୁରକୁଳ ଅର୍ଥାତ୍ ପତିର ଶ୍ୱଶୁର (ସ୍ତ୍ରୀର ପିତା) ଘରକୁ ନିଜଇଚ୍ଛାରେ ପତିକୁ ଉପେକ୍ଷା କରି ଫେରିଯାଇ ରହେ କିମ୍ବା ସ୍ୱଇଚ୍ଛାରେ ପତିଠାରୁ ଭିନ୍ନହୋଇ ରହେ, ତେବେ ସେ ଗ୍ରାସାଚ୍ଛାଦନ ଶୁଲ୍କ, ସ୍ତ୍ରୀଧନ ପ୍ରଭୃତି ପାଇବା ପାଇଁ ପତିଙ୍କୁ ଅଭିଯୋଗ କରିପାରିବ ନାହିଁ । ସ୍ତ୍ରୀର ଭରଣପୋଷଣ ବିଷୟ ଏଠାରେ ଶେଷ ହେଲା । (୪) ସ୍ତ୍ରୀ ଯଦି ଅମାନିଆ ହୁଏ ତେବେ ତାକୁ ଅଲରି, ଲଙ୍ଗୁଳୀ, କାଣୀ, କୁଜୀ, ବାପମରି, ମା'ମରି ଇତ୍ୟାଦି ଗାଳି ନଦେଇ ଉପଦେଶଦ୍ୱାରା ପ୍ରଥମେ ନମ୍ରତା ଶିଖାଦେବେ । ଏଥିରେ ନ ସୁଧୁରିଲେ ବାଉଁଶପନ୍ଦ ଛାଟ, କୋରଡ଼ା ଓ ଚୃପଡ଼ଦ୍ୱାରା ଅଥବା କେବଳ ଛାଟ ବା କୋରଡ଼ା କିମ୍ବା ଚୃପଡ଼ଦ୍ୱାରା ତିନିବାର ଅଘାତ କରିବେ । ଏଥିରେ ମଧ୍ୟ ନ ସୁଧୁରିଲେ ବାଗ୍‌ଦଣ୍ଡ ଓ ପାରୁଷ୍ୟଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବେ ।

ପାରୁଷ୍ୟଦଣ୍ଡାଭ୍ୟାମର୍ଧଦଣ୍ଡାଃ । (୫) ତଦେବ ସ୍ତ୍ରିୟା ଭର୍ତ୍ତୁର ପ୍ରସିଦ୍ଧମଦୋଷାୟା ଈର୍ଷ୍ୟାୟା ବାହ୍ୟବହାରେଷୁ ଦ୍ୱାରେଷୁ । ଅତ୍ୟୟେ୍ୟା ଯଥାନିର୍ଦ୍ଦିଷ୍ଟଃ । ଇତି ପାରୁଷ୍ୟମ୍ । (୬) ଭର୍ତ୍ତାରଂ ଦ୍ୱିଷତୀ ସ୍ତ୍ରୀ ସପ୍ତାର୍ତ୍ତବାନ୍ୟମଣ୍ଡୟମାନା ତଦାନୀମେବ ସ୍ଥାପ୍ୟାଭରଣଂ ନିଧାୟ ଭର୍ତ୍ତାରଂ ଅନ୍ୟୟା ସହ ଶୟାନମନୁଶୟୀତ । (୭) ଭିକ୍ଷୁକ୍ୟନ୍ୱାଧିଜ୍ଞାତକୁଳାନାମନ୍ୟତମେ ବା ଭର୍ତ୍ତା ଦ୍ୱିଷନ୍ ସ୍ତ୍ରିୟମେକାମନୁଶୟୀତ । (୮) ଦୃଷ୍ଟଲିଂଗେ ମୈଥୁନାପହାରେ ସବର୍ଣ୍ଣାପ-

(ବାଗ୍‌ଦଣ୍ଡ ଓ ପାରୁଷ୍ୟଦଣ୍ଡ ବିଷୟ ପରେ କୁହାଯିବ) । (୫) ପତିଙ୍କ ବେଶ୍ୟାସକ୍ତ ପ୍ରଭୃତି ଦୋଷରେ ଈର୍ଷାନ୍ୱିତା ପତିବ୍ରତା ସ୍ତ୍ରୀ ଉପରୋକ୍ତ ପ୍ରକାରେ ବାକ୍‌ପାରୁଷ୍ୟ ବା ଦଣ୍ଡପାରୁଷ୍ୟର ପ୍ରୟୋଗସ୍ଥାନରେ ପତିଙ୍କୁ ସଂଶୋଧନ କରିପାରିବ । କିନ୍ତୁ ସ୍ତ୍ରୀ ଯଦି ସତ୍‌ସ୍ୱାମୀଙ୍କୁ ଅବହେଳା କରି ପରପୁରୁଷପ୍ରତି ଆସକ୍ତା ହୁଏ, ତେବେ ଉକ୍ତ ନିୟମ ସେଠାରେ ନ ଖଟାଇ ଯଥାନିର୍ଦ୍ଦିଷ୍ଟ ଦଣ୍ଡରେ ପତି ତା'କୁ ଦଣ୍ଡିତ କରିବେ । ଏଠାରେ ପାରୁଷ୍ୟ * ବିଷୟ ଶେଷ ହେଲ । (୬) କୌଣସି କାରଣବଶତଃ ସ୍ତ୍ରୀ ଯଦି ପତିଙ୍କୁ ଦ୍ୱେଷକରେ, ତେବେ ସେହି ସ୍ତ୍ରୀ ସାତବାର ଋତୁସ୍ନାତା ହେବାପର୍ଯ୍ୟନ୍ତ ଅପେକ୍ଷାକରି ଏବଂ ପତିଦେଇଥିବା ଧନ ଓ ଅଳଙ୍କାରଗୁଡ଼ିକୁ ପୁଣି ଏପରି ଅପ୍ରୀତିକର କାର୍ଯ୍ୟ ନ କରିବା ବିଷୟରେ ପତିର ବିଶ୍ୱାସ ଜନ୍ମାଇବା ପାଇଁ ପତିନିକଟରେ ସମର୍ପଣ କରି, ଅନ୍ୟସ୍ତ୍ରୀ ପ୍ରତି ଆସକ୍ତ ହୋଇଥିବା ପତି ପଶ୍ଚାତ୍ତାପର ସହିତ ନିଜପ୍ରତି ଅନୁକୂଳ ହେବାପରି ପ୍ରଯତ୍ନ କରିବ । (୭) କୌଣସି କାରଣବଶତଃ ପତି ଯଦି ପତ୍ନୀର ଦ୍ୱେଷ କରେ ଏବଂ ସେହି ସ୍ତ୍ରୀ ଯଦି କୌଣସି ଶାନ୍ତ ଶୁଦ୍ଧ ବ୍ୟବହାରିଣୀ ସନ୍ନ୍ୟାସିନୀ ବା ନିଜର ଜ୍ଞାତିମାନଙ୍କ ଆଶ୍ରୟରେ ଅନ୍ୟପୁରୁଷ ସହିତ ସମ୍ବନ୍ଧ ନ ରଖି ରହିଥାଏ, ତେବେ ପତି ପଶ୍ଚାତ୍ତାପସହକାରେ ସେହି ପତିବ୍ରତାସ୍ତ୍ରୀ ନିକଟକୁ ଯାଇ ନିଜର ଦୋଷସ୍ୱୀକାର ପୂର୍ବକ ଅନୁଗତ ହେବ । (୮) କୌଣସି ପୁରୁଷଠାରେ ଅନ୍ୟସ୍ତ୍ରୀ-

* ପାରୁଷ୍ୟ—ଅପ୍ରିୟଭାଷଣ, କଠୋରବାକ୍ୟ, ନିନ୍ଦା ଓ ତିରସ୍କାର । ଯଥା—

ପାରୁଷ୍ୟମନୃତଂଚୈବ ପୈଶୁନ୍ୟଂଚାପିସର୍ବଶଃ ।
ଅସଂବଦ୍ଧପ୍ରଳାପଶ୍ଚ ବାଙ୍ମୟଂସ୍ୟାଚ୍ଚତୁର୍ବିଧମ୍ ॥

ସର୍ପୋପଗମେ ବା ମିଥ୍ୟାବାଦୀ ଦ୍ୱାଦଶପଣଂ ଦଦ୍ୟାତ୍ । (୯) ଅମୋକ୍ଷ୍ୟା ଭର୍ତୁରକାମସ୍ୟ ଦ୍ୱିଷତୀ ଭାର୍ଯ୍ୟା ଭାର୍ଯ୍ୟାୟାଶ୍ଚ ଭର୍ତା ପରସ୍ପରଂ ଦ୍ୱେଷାନ୍ମୋକ୍ଷଃ । (୧୦) ସ୍ତ୍ରୀବିପ୍ରକାରାଦ୍ ବା ପୁରୁଷଶ୍ଚେନ୍ମୋକ୍ଷମିଚ୍ଛେଦ୍ ଯଥାଗୃହୀତମସ୍ୟୈ ଦଦ୍ୟାତ୍ । ପୁରୁଷ-ବିପ୍ରକାରାଦ୍ ବା ସ୍ତ୍ରୀ ଚେନ୍ମୋକ୍ଷମିଚ୍ଛେତ୍, ନାସ୍ୟୈ ଯଥାଗୃହୀତଂ ଦଦ୍ୟାତ୍ । ଅମୋକ୍ଷୋ ଧର୍ମବିବାହାନାମ୍ । ଇତି ଦ୍ୱେଷଃ । (୧୧) ପ୍ରତିଷିଦ୍ଧା ସ୍ତ୍ରୀ ଦର୍ପମଦ୍ୟକ୍ରୀଡ଼ାୟାଂ ତ୍ରିପଣଂ ଦଣ୍ଡଂ ଦଦ୍ୟାତ୍ । ଦିବାସ୍ତ୍ରୀପ୍ରେକ୍ଷାବିହାରଗମନେ ଷଟ୍ପଣୋ ଦଣ୍ଡଃ । ପୁରୁଷପ୍ରେକ୍ଷା

---

ମୈଥୁନଚିହ୍ନ ଦେଖାଯିବା ସତ୍ତ୍ୱେ ସେହି ପୁରୁଷ ଯଦି ତା'ର ଅପଲାପ କରେ କିମ୍ବା କୌଣସି ସବର୍ଣ୍ଣା ସଖୀ (ଗୁପ୍ତ ଦୂତୀ) ସହିତ ମୈଥୁନରେ ପ୍ରବୃତ୍ତ ହୋଇ ତା'ର ଯଦି ଅପଲାପ କରେ, ତେବେ ସେହି ପୁରୁଷକୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୯) ଯଦି ସ୍ତ୍ରୀ ସ୍ୱାମୀର ଦ୍ୱେଷାଚରଣ କରେ ଅଥଚ ସ୍ୱାମୀ ସ୍ତ୍ରୀର ଦ୍ୱେଷାଚରଣ କରେନାହିଁ, ତେବେ ଏ ଅବସ୍ଥାରେ ସ୍ତ୍ରୀକୁ ଛାଡ଼ ମିଳିପାରିବ ନାହିଁ । ଯଦି ସ୍ୱାମୀ ସ୍ତ୍ରୀର ଦ୍ୱେଷାଚରଣ କରେ ଅଥଚ ସ୍ତ୍ରୀ ସ୍ୱାମୀପ୍ରତି ଦ୍ୱେଷାଚରଣ କରେ ନାହିଁ, ତେବେମଧ୍ୟ ପୁରୁଷ ସ୍ତ୍ରୀକୁ ଛାଡ଼ିପାରିବ ନାହିଁ । ଯଦି ଉଭୟେ ଉଭୟଙ୍କୁ ଦ୍ୱେଷକରନ୍ତି ତେବେ ପରସ୍ପର ଛାଡ଼ବାଡ଼ ହୋଇପାରିବେ । (୧୦) ସ୍ତ୍ରୀର ଅପରାଧଯୋଗୁଁ ପୁରୁଷ ଯଦି ତାକୁ ଛାଡ଼ିଦେବାକୁ ଚାହେଁ ତେବେ ତାର ସ୍ତ୍ରୀଧନ ପ୍ରଭୃତି ଯାହା ଥିବ ତାହା ତାକୁ ଦେଇ ଛାଡ଼ପତ୍ର ଦେଇଦେବ । ପୁରୁଷର ଅପରାଧ ଯୋଗୁଁ ସ୍ତ୍ରୀ ଯଦି ତାକୁ ଛାଡ଼ି ଚାଲିଯିବାକୁ ଚାହେଁ, ତେବେ ସେ ଚାଲିଗଲାବେଳେ ପତି ସ୍ତ୍ରୀକୁ ତାର ସ୍ତ୍ରୀଧନ ପ୍ରଭୃତି ପଦାର୍ଥ ଦେବାକୁ ହେବ ନାହିଁ । ଏହି ଛାଡ଼ପ୍ରଥା କେବଳ ଅଧର୍ମ୍ୟ ବିବାହ ଅର୍ଥାତ୍ ଗାନ୍ଧର୍ବ, ଆସୁର, ରାକ୍ଷସ ଓ ପୈଶାଚ ବିବାହରେ ପ୍ରଯୁଜ୍ୟ; କିନ୍ତୁ ଧର୍ମ୍ୟବିବାହ ଅର୍ଥାତ୍ ବ୍ରାହ୍ମ, ଆର୍ଷ, ପ୍ରାଜାପତ୍ୟ ଓ ଦୈବ ବିବାହରେ ଆଦୌ ପ୍ରଯୁଜ୍ୟ ନୁହେ । (୧୧) ପତିର ନିଷେଧକୁ ନମାନି ଯେଉଁ ସ୍ତ୍ରୀ ଦର୍ପକ୍ରୀଡ଼ା ଓ ମଦ୍ୟକ୍ରୀଡ଼ାରେ ପ୍ରବର୍ତ୍ତିତ ହୁଏ, ତାକୁ ତିନିପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ଏବଂ ଦିନବେଳେ ସ୍ତ୍ରୀମାନେ କରୁଥିବା ନାଚ ଦେଖିବା ସକାଶେ ଓ ଉପବନବିହାର ସକାଶେ ଗମନକଲେ

ବିହାରଗମନେ ଦ୍ୱାଦଶପଣଃ । ରାତ୍ରୌ ଦ୍ୱିଗୁଣଃ । (୧୨) ସୁପ୍ତମତ୍ତ-ପ୍ରବ୍ରଜନେ ଭର୍ତୁରଦାନେ ଚ ଦ୍ୱାରସ୍ୟ ଦ୍ୱାଦଶପଣଃ । ରାତ୍ରୌ ନିଷ୍କାସନେ ଦ୍ୱିଗୁଣଃ । (୧୩) ସ୍ତ୍ରୀପୁଂସୟୋର୍ମୈଥୁନାର୍ଥେନାଂଗ-ବିଚେଷ୍ଟାୟାଂ ରହୋଽଶ୍ଳୀଳସମ୍ଭାଷାୟାଂ ବା ଚତୁର୍ବିଂଶତିପଣଃ ସ୍ତ୍ରିୟା ଦଣ୍ଡଃ, ପୁଂସୋ ଦ୍ୱିଗୁଣଃ । (୧୪) କେଶନୀବୀଦନ୍ତନଖାବ-ଲମ୍ବନେଷୁ ପୂର୍ବଃ ସାହସଦଣ୍ଡଃ, ପୁଂସୋ ଦ୍ୱିଗୁଣଃ । (୧୫) ଶଂକିତସ୍ଥାନେ ସମ୍ଭାଷାୟାଂ ଚ ପଣସ୍ଥାନେ ଶିଫାଦଣ୍ଡଃ ।

---

ଛ'ପଣ ଦଣ୍ଡ, ପୁରୁଷମାନେ କରୁଥିବା ନାଚ ଦେଖିବାପାଇଁ ଓ ପୁରୁଷମାନଙ୍କ ସମାଗମ ହୋଇଥିବା ଉପବନକୁ ବିହାର କରିବାପାଇଁ ଗଲେ ବାରପଣ ଏବଂ ରାତିରେ ଉପରୋକ୍ତ କାର୍ଯ୍ୟ କଲେ ଏହାର ଦ୍ୱିଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୨) ପତି ଶୋଇଥିବା ଅବସ୍ଥାରେ କିମ୍ବା ନିଶାରେ ମତ୍ତ ହୋଇ ରହିଥିବା ଅବସ୍ଥାରେ ଯେଉଁ ସ୍ତ୍ରୀ ବାହାରେ ବୁଲିବାପାଇଁ ଚାଲିଯାଏ ଓ ସ୍ୱାମୀ ବାହାରୁ ଘରକୁ ଆସିବାବେଳେ ଦ୍ୱାର ବନ୍ଦକରି କବାଟ ଖୋଲେନାହିଁ, ତାହାକୁ ବାରପଣ ଅର୍ଥଦଣ୍ଡ ଏବଂ ରାତ୍ରେ ଏପରି କଲେ ଏହାର ଦ୍ୱିଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୩) ମୈଥୁନ ସକାଶେ ସ୍ତ୍ରୀ ପୁରୁଷ ଦୁହେଁ ଯଦି ପରସ୍ପରକୁ ମୈଥୁନଭାବସୂଚକ ଇଙ୍ଗିତ ପ୍ରଦାନ କରନ୍ତି କିମ୍ବା ଏକାନ୍ତରେ ଅଶ୍ଳୀଳ କଥାଭାଷା କରନ୍ତି ତେବେ ସ୍ତ୍ରୀକୁ ଚବିଶିପଣ ଏବଂ ପୁରୁଷକୁ ଅଠଚାଳିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୪) କେଶଗ୍ରହଣ କଲେ (ମୁଣ୍ଡର ବାଳ ଧରିଲେ), ଅଞ୍ଚଳ-ଫିଟାଇଲେ, ଦନ୍ତଦ୍ୱାରା ଗଣ୍ଡରେ ଚିହ୍ନକଲେ, ନଖଦ୍ୱାରା ମାଂସଳ ସ୍ଥାନମାନଙ୍କୁ କ୍ଷତ କଲେ ସ୍ତ୍ରୀକୁ ପୂର୍ବସାହସଦଣ୍ଡ (ଦୁଇଶହ ପଚାଶ ପଣ ଦଣ୍ଡ) ଏବଂ ପୁରୁଷକୁ ଏହାର ଦ୍ୱିଗୁଣ ଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୫) ଶଙ୍କାଯୁକ୍ତ ସ୍ଥାନରେ (ସନ୍ଦେହଜନକ ସ୍ଥାନରେ) ସ୍ତ୍ରୀ ପୁରୁଷ ଦୁହେଁ ଗୁପ୍ତରେ କଥାଭାଷା କରୁଥିଲେ ସେମାନଙ୍କୁ ଜରିମାନା ବଦଳେ ଅର୍ଥାତ୍ ଧାର୍ଯ୍ୟ ହୋଇଥିବା ଜରିମାନା ଧନରେ ଏକପଣକୁ ଏକବେତ ମାଡ଼ ହିସାବରେ ବେତମାଡ଼ ଦେବାକୁ ହେବ । ଏପରି କାର୍ଯ୍ୟରେ ରତଥିବା ସ୍ତ୍ରୀକୁ ଗ୍ରାମମଧ୍ୟରେ ସର୍ବଜନ ସମକ୍ଷରେ ଉପରୋକ୍ତ ନିୟମରେ ଚଣ୍ଡାଳଦ୍ୱାରା ଏକ ଏକ ପଟାକୁ

ସ୍ତ୍ରୀଣାଂ ଗ୍ରାମମଧ୍ୟେ ଚଣ୍ଡାଳଃ ପକ୍ଷାନ୍ତରେ ପଞ୍ଚଶିଫା ଦଦ୍ୟାତ୍ । ପଣିକଂ ବା ପ୍ରହାରଂ ମୋକ୍ଷୟେତ୍ । ଇତ୍ୟତିଚାରଃ । (୧୭) ପ୍ରତିସିଦ୍ଧୟୋଃ ସ୍ତ୍ରୀପୁଂସୟୋରନ୍ୟୋନ୍ୟୋପକାରେ କ୍ଷୁଦ୍ରକ-ଦ୍ରବ୍ୟାଣାଂ ଦ୍ୱାଦଶପଣୋ ଦଣ୍ଡଃ, ସ୍ଥୂଳକଦ୍ରବ୍ୟାଣାଂ ଚତୁର୍ବିଂଶତି-ପଣଃ, ହିରଣ୍ୟସୁବର୍ଣ୍ଣୟୋଶ୍ଚତୁଷ୍ପଞ୍ଚାଶତ୍ପଣଃ ସ୍ତ୍ରିୟାଃ । ଦଣ୍ଡଃ ପୁଂସୋ ଦ୍ୱିଗୁଣଃ । ତ ଏବାଗମ୍ୟୟୋରର୍ଦ୍ଧଦଣ୍ଡାଃ । ତଥା ପ୍ରତିଷିଦ୍ଧ-ପୁରୁଷବ୍ୟବହାରେଷୁ ଚ । ଇତି ପ୍ରତିଷେଧଃ ।

---

ପାଞ୍ଚ ପାଞ୍ଚ ବେତ ପ୍ରହାର କରାଇବାକୁ ହେବ । କିନ୍ତୁ ସ୍ତ୍ରୀ ଯଦି ପ୍ରତ୍ୟେକ ବେତମାଡ଼ ପାଇଁ ଏକପଣ ହିସାବରେ ନିଷ୍କ୍ରୟଧନ ଦିଏ, ତେବେ ତାକୁ ବେତମାଡ଼ ନଦେଇ ମୁକ୍ତ କରିଦେବାକୁ ହେବ । ଏଠାରେ ଅତିଚାର ବିଷୟ ସମାପ୍ତ ହେଲା । (୧୭) କୌଣସି ସ୍ତ୍ରୀ ଓ ପୁରୁଷଙ୍କୁ ପରସ୍ପର ଆଦାନ ପ୍ରଦାନ ରୂପକ ବ୍ୟବହାର କରିବା ସକାଶେ ନିବାରଣ କରାଯାଇଥିବା ସତ୍ତ୍ୱେ ଯଦି ସେମାନେ ପରସ୍ପର ମାଳା, ଚନ୍ଦନ, ତାମ୍ବୁଳାଦି ଅଳ୍ପମୂଲ୍ୟର ପଦାର୍ଥ ଆଦାନପ୍ରଦାନ କରନ୍ତି, ତେବେ ସ୍ତ୍ରୀକୁ ବାରପଣ ଅର୍ଥଦଣ୍ଡ, ବସ୍ତ୍ର ଅଳଙ୍କାର ପ୍ରଭୃତି ମୂଲ୍ୟବାନ୍ ପଦାର୍ଥ ଆଦାନପ୍ରଦାନ କଲେ ସ୍ତ୍ରୀକୁ ଚବିଶପଣ, ରୌପ୍ୟ ସୁବର୍ଣ୍ଣାଦି ବହୁମୂଲ୍ୟ ପଦାର୍ଥ ଆଦାନପ୍ରଦାନ କଲେ ସ୍ତ୍ରୀକୁ ଚଉବନପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ଏବଂ ଉକ୍ତ ତିନିପ୍ରକାର ଆଦାନପ୍ରଦାନ ଦୋଷନିମିତ୍ତକ ତିନିପ୍ରକାର ଦଣ୍ଡର ଦୁଇଗୁଣ ଅର୍ଥଦଣ୍ଡରେ ପୁରୁଷକୁ ଦଣ୍ଡିତ କରିବାକୁ ହେବ । ଏପରି ଦିଆନିଆ କଲେ ଉକ୍ତ ଦଣ୍ଡ ଭାଇଭଉଣୀ ପ୍ରଭୃତି ଅଗମ୍ୟ ସ୍ତ୍ରୀପୁରୁଷଙ୍କ ସକାଶେ ଅଧେ ଊଣା କରିଦେବାକୁ ହେବ । ଅର୍ଥାତ୍ ଭାଇଭଉଣୀ ହେଉଥିବା ସ୍ତ୍ରୀ ପୁରୁଷ ଦୁହେଁ ମଧ୍ୟ ନିସର୍ଗସୁଲଭ ବାତ୍ସଲ୍ୟବଶତଃ ଏପରି ପଦାର୍ଥ ଆଦାନପ୍ରଦାନ କରିବାଦ୍ୱାରା କ୍ରମଶଃ ତାହା ଦୂରଭିସନ୍ଧି ଜାତକରାଏ । ଅତଏବ ଭାଇଭଉଣୀ ଇତ୍ୟାଦି ଅଗମ୍ୟମାନଙ୍କ ମଧ୍ୟରେ ମୁଦ୍ଧା ଏପରି ଦିଆନିଆ ନିଷିଦ୍ଧ ଅଟେ । ପ୍ରତିଷିଦ୍ଧ ବ୍ୟବହାର ସ୍ତ୍ରୀ ପୁରୁଷ ବିଷୟରେ ଉପରେ ଯେଉଁ ଦଣ୍ଡବିଧାନ ବିଧି କୁହାଗଲା, ପୁରୁଷ ପୁରୁଷ ମଧ୍ୟରେ ମୁଦ୍ଧା ଏପରି ସନ୍ଦେହଜନକ ଦିଆନିଆ ହେଲେ ପୂର୍ବୋକ୍ତ ପ୍ରକାରେ ଦଣ୍ଡର ବ୍ୟବସ୍ଥା କରିବାକୁ ହେବ । ଏଠାରେ ପ୍ରତିଷେଧ ବିଷୟ ସମାପ୍ତ

(୧୭) ରାଜଦ୍ୱିଷ୍ଟାତିଚାରାଭ୍ୟାମାତ୍ମାପକ୍ରମଣେନ ଚ ।
ସ୍ତ୍ରୀଧନାନୀତଶୁଲ୍କାନାମସ୍ୱାମ୍ୟଂ ଜାୟତେ ସ୍ତ୍ରିୟାଃ ॥

## ଚତୁର୍ଥୋଽଧ୍ୟାୟଃ

## ଏକୋନଷଷ୍ଟିତମ ପ୍ରକରଣମ୍—ବିବାହସଂଯୁକ୍ତମ୍
## ନିଷ୍ପତନମ୍—ପଥ୍ୟନୁସରଣମ୍—ହ୍ରସ୍ୱପ୍ରବାସଃ—ଦୀର୍ଘପ୍ରବାସଶ୍ଚ

**VAGRANCY, ELOPEMENT, SHORT AND LONG SOJOURNMENTS**

( ନିଷ୍ପତନ, ପଥ୍ୟନୁସରଣ, ହ୍ରସ୍ୱପ୍ରବାସ ଓ ଦୀର୍ଘପ୍ରବାସର ବିଚାର )

(୧) ପତିକୁଳାନ୍ନିଷ୍ପତିତାୟାଃ ସ୍ତ୍ରିୟାଃ ଷଟ୍‌ପଣୋ ଦଣ୍ଡୋଽନ୍ୟତ୍ର ବିପ୍ରକାରାତ୍ । ପ୍ରତିଷିଦ୍ଧାୟାଂ ଦ୍ୱାଦଶପଣଃ । ପ୍ରତିବେଶଗୃହାତି-

---

ହେଲେ । (୧୭) ସ୍ତ୍ରୀ ଯଦି ରାଜଦ୍ୱେଷ କଥା କହେ, ଅଗୁରୁ ଲଙ୍ଘନ କରି ଦର୍ପକ୍ରୀଡ଼ା, ମଦ୍ୟକ୍ରୀଡ଼ା ଓ ଉଦ୍ୟାନକ୍ରୀଡ଼ାରେ ରତହୁଏ ଏବଂ ପତି ନିକଟରୁ ପଳାୟନ କରେ, ତେବେ ସେ ସ୍ତ୍ରୀଧନ ଓ ଯୌତୁକ ସମ୍ପତ୍ତି ପ୍ରଭୃତିରୁ ଅଧିକାର ହରାଏ, ଏବଂ ଉକ୍ତ ଧନ ରାଜକୋଷକୁ ଚାଲିଯାଏ ।

ଇତି କୌଟଲ୍ୟସ୍ୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ତୃତୀୟୋଽଧ୍ୟାୟଃ ।
ବିବାହସଂଯୁକ୍ତେ ଶୁଶ୍ରୂଷା ଭର୍ମ ପାରୁଷ୍ୟ ଦ୍ୱେଷାତିଚାରୋପକାର
ବ୍ୟବହାର ପ୍ରତିଷେଧାଶ୍ଚ—ଆଦିତଃ ଷଷ୍ଠିତମଃ ।

---

(୧) ପତିର କୌଣସି ଅପରାଧ ନଥିବା ସତ୍ତ୍ୱେ ଯେଉଁ ସ୍ତ୍ରୀ ପତିଗୃହରୁ ନିଜଇଚ୍ଛାରେ ପଳାୟନ କରେ ତାକୁ ଛପଣ ଅର୍ଥଦଣ୍ଡ; ଘରଛାଡ଼ିକରି ଯା'ନା' ବୋଲି ପତି ମନାକରିବା ସତ୍ତ୍ୱେ ଅମାନିଆ ହୋଇ ପଳାୟନକଲେ ବାରପଣ ଅର୍ଥଦଣ୍ଡ ଏବଂ ପଡ଼ଶାଘର ଡେଇଁ ଚାଲିଗଲେ ଛ'ପଣ ଅର୍ଥଦଣ୍ଡରେ ଦଣ୍ଡିତ

ଗତାୟାଃ ଷଟ୍‌ପଣଃ । (୨) ପ୍ରାତିବେଶିକଭିକ୍ଷୁକବୈଦେହକାନା-ମବକାଶଭିକ୍ଷାପଣ୍ୟାଦାନେ ଦ୍ୱାଦଶପଣୋ ଦଣ୍ଡଃ, ପ୍ରତିଷିଦ୍ଧାନାଂ ପୂର୍ବଃ ସାହସଦଣ୍ଡଃ । ପରଗୃହାତିଗତାୟାଶ୍ଚତୁର୍ବିଂଶତିପଣଃ । (୩) ପରଭାର୍ଯ୍ୟାବକାଶଦାନେ ଶତ୍ୟୋ ଦଣ୍ଡୋଽନ୍ୟତ୍ରାପଦ୍‌ଭ୍ୟଃ । ବାରଣାଜ୍ଞାନୟୋର୍ନିର୍ଦୋଷଃ । (୪) ପତିବିପ୍ରକାରାତ୍ ପତିଜ୍ଞାତି ସୁଖାବସ୍ଥଗ୍ରାମିକାନ୍ୱାଧିଭିକ୍ଷୁକୀଜ୍ଞାତିକୁଲାନାମନ୍ୟତମମପୁରୁଷଂ ଗନ୍ତୁ ମଦୋଷ ଇତ୍ୟାଚାର୍ଯ୍ୟାଃ । (୫) ସପୁରୁଷଂ ବା ଜ୍ଞାତିକୁଲମ୍ । କୁତୋ ହି ସାଧ୍ୱୀଜନସ୍ୟଚ୍ଛଳଂ, ସୁଖମେତଦବବୋଦ୍ଧୁମ୍ ଇତି

---

କରିବାକୁ ହେବ । (୨) ପତିର ଅଜଣାରେ ସ୍ତ୍ରୀ ପଡ଼ୋଶୀ ପୁରୁଷକୁ ଅବକାଶ ଓ ପାଷଣ୍ଡ ଭିକ୍ଷୁକକୁ ଭିକ୍ଷାଦାନ କଲେ ଏବଂ କୁତ୍ସିତ ବଣିକଠାରୁ କୌଣସି ଦ୍ରବ୍ୟ କ୍ରୟକଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତା ହେବ । ପତି ନିଷେଧ କରିବା ସତ୍ତ୍ୱେ ଏପରି କଲେ ପୂର୍ବସାହସ ଦଣ୍ଡ (ଦୁଇଶପଞ୍ଚାଶେ ପଣ)ରେ ଦଣ୍ଡିତା ହେବ । ପତିଗୃହରୁ ତାହାର ଆଖପାଖ କେତେ ଘର ଡେଇଁ ପରଘରେ ପ୍ରବେଶ କଲେ ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତା ହେବ । (୩) ପରର ଭାର୍ଯ୍ୟାକୁ ଗୃହରେ ସ୍ଥାନଦେବା ଗୃହସ୍ୱାମୀ ଏକଶତପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ବିପତ୍‌ବେଳେ କିମ୍ବା ମୋ'ଘରେ ପ୍ରବେଶ କରନାହିଁ ବୋଲି ବାରଣ କରୁଥିବା ସତ୍ତ୍ୱେ ଅଥବା ଗୃହସ୍ୱାମୀର ଅଜଣାରେ ପରର ଭାର୍ଯ୍ୟା ଯଦି ଗୃହରେ ପ୍ରବେଶ କରି ଆଶ୍ରୟ ଗ୍ରହଣ କରେ ତେବେ ଗୃହସ୍ୱାମୀ ନିର୍ଦୋଷୀ ହେବେ । (୪) ଅଗ୍ରୁଣିମାନଙ୍କ ମତରେ, ଦୁଷ୍ଟ ପତିର ଅସହ୍ୟ ଧିକ୍‌କାର ଯୋଗୁଁ କୌଣସି ପତିବ୍ରତା ସ୍ତ୍ରୀ ଯଦି ପତିଙ୍କ ଜ୍ଞାତି, ସ୍ତ୍ରୀପୁତ୍ରଧରି ବାସକରୁଥିବା ଭଦ୍ର ଗ୍ରାମମୁଖ୍ୟ, ସଂଭ୍ରାନ୍ତ ସ୍ତ୍ରୀଧନର ରକ୍ଷକ, ତପସ୍ୱିନୀ ବା ନିଜର ପିତୃକୁଳର ଗୃହରେ ଆଶ୍ରୟ ନିଏ ଏବଂ ଏହି ଆଶ୍ରୟସ୍ଥାନମାନଙ୍କରେ ଯଦି ଅବିବାହିତ ପୁରୁଷମାନେ ନଥାନ୍ତି, ତେବେ ଏପରି ଆଶ୍ରୟ ନେବା ଦୋଷାବହ ନୁହେ । (୫) କୌଟିଲ୍ୟ ଜ୍ଞାତି କୁଳ ବ୍ୟତୀତ ଅନ୍ୟ ସମସ୍ତ ମତକୁ ସମର୍ଥନ କରି କହୁଛନ୍ତି, ପତିବନ୍ଧୁ ଗୃହ ଓ ସ୍ୱବନ୍ଧୁଗୃହରେ ପୁରୁଷବ୍ୟକ୍ତିମାନେ ଥିଲେ ମଧ୍ୟ ପତିବ୍ରତା ସ୍ତ୍ରୀଠାରେ ବ୍ୟଭିଚାରର କୌଣସି ଆଶଙ୍କା ନଥିବା ଯୋଗୁଁ ସେଠାରେ ଆଶ୍ରୟ ନେବା ଦୋଷାବହ ନୁହେ । କାରଣ ସ୍ତ୍ରୀ କରିବା ଛଳନା

କୌଟଲ୍ୟଃ । (୬) ପ୍ରେତବ୍ୟାଧିବ୍ୟସନଗର୍ଭନିମିତ୍ତମପ୍ରତିଷିଦ୍ଧମେବ ଜ୍ଞାତିକୁଳଗମନମ୍ । (୭) ତନ୍ନିମିତ୍ତଂ ବାରୟତୋ ଦ୍ୱାଦଶପଣୋ ଦଣ୍ଡଃ । ତତ୍ରାପି ଗୂହମାନା ସ୍ତ୍ରୀଧନଂ ଜୀୟେତ, ଜ୍ଞାତୟୋ ବା ଛାଦୟନ୍ତଃ ଶୁଲ୍କଶେଷମ୍ । ଇତି ନିଷ୍ପତନମ୍ । (୮) ପତିକୁଳା-ନ୍ନିଷ୍ପତ୍ୟ ଗ୍ରାମାନ୍ତରଗମନେ ଦ୍ୱାଦଶପଣୋ ଦଣ୍ଡଃ ସ୍ଥାପ୍ୟାଭରଣ ଲୋପଶ୍ଚ । ଗମ୍ୟେନ ବା ପୁଂସା ସହପ୍ରସ୍ଥାନେ ଚତୁର୍ବିଂଶତିପଣଃ, ସର୍ବଧର୍ମଲୋପଶ୍ଚାନ୍ୟତ୍ର ଭର୍ମଦାନତୀର୍ଥଗମନାଭ୍ୟାମ୍ । ପୁଂସଃ ପୂର୍ବଃ

---

ତାର ସ୍ୱାମୀ କିମ୍ବା ଅନ୍ୟ ପୁରୁଷ ସଦ୍ୟ ଜାଣିପାରିବା ଯୋଗୁଁ ଏହା ଗୋପନୀୟ ହୋଇ ରହିପାରେ ନାହିଁ । (୬) ଆତ୍ମୀୟ ସ୍ୱଜନଙ୍କ ମୃତ୍ୟୁ, ବ୍ୟାଧି, ବିପତ୍ତି ଏବଂ ଗର୍ଭରକ୍ଷା ଓ ଗର୍ଭକଷ୍ଟ ବେଳେ ଯେକୌଣସି ସ୍ତ୍ରୀ ନିଜର ଜ୍ଞାତିକୁଳକୁ ଯିବା ଦୋଷାବହ ନୁହେ । (୭) ଉପରୋକ୍ତ ଅବସ୍ଥାରେ ସ୍ତ୍ରୀକୁ ବାରଣ କରିବା ପୁରୁଷକୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଯଦି ସ୍ତ୍ରୀ କୌଣସି ଛଳନା ଦେଖାଇ ଗୁପ୍ତଭାବରେ ଜ୍ଞାତିକୁଳରେ ବାସକରେ ତେବେ ତାର ସ୍ତ୍ରୀଧନ ଭର୍ତ୍ତି ବାଜ୍ୟାପ୍ତ କରି ନେବ । ଯଦି ସ୍ତ୍ରୀର ଜ୍ଞାତିବନ୍ଧୁ-ମାନେ ଛଳନାପୂର୍ବକ ତାକୁ ଡାକିନେଇ ଘରେ ଲୁଗ୍ଇ ରଖନ୍ତି, ତେବେ ସ୍ତ୍ରୀକୁ ବିବାହ ସମୟରେ ମିଳିବାକୁ ଥିବା ଶୁଲ୍କଶେଷ ସେମାନେ ହରାଇବେ । ଏଠାରେ ନିଷ୍ପତନର ବିବୃତ୍ତି ସମାପ୍ତ ହେଲା । (୮) ସ୍ତ୍ରୀ ପତିର ଅନୁମତି ନନେଇ ପତିଗୃହରୁ ବାହାରି ଅନ୍ୟଗ୍ରାମକୁ ଗମନ କଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତା ହେବ ଏବଂ ତାର ସ୍ତ୍ରୀଧନ ଓ ଅଳଙ୍କାର ପ୍ରଭୃତି ବାଜ୍ୟାପ୍ତ କରାଯିବ । ମୈଥୁନଯୋଗ୍ୟ ପୁରୁଷ ସହିତ ସାଙ୍ଗହୋଇ ଅନ୍ୟ-ଗ୍ରାମକୁ ଗମନ କଲେ ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତା ହେବା ସଙ୍ଗେ ସଙ୍ଗେ ତାର ସର୍ବଧର୍ମ ଅର୍ଥାତ୍ ଭର୍ତ୍ତାର ସହଧର୍ମିଣୀ ଭାବେ କରିଥିବା ଯଜ୍ଞାଦି ସମସ୍ତ ଧର୍ମର ଲୋପ ହୁଏ । କିନ୍ତୁ ଗୃହର ଭରଣପୋଷଣ ପଦାର୍ଥ ଆଣିବା ସକାଶେ କିମ୍ବା ତୀର୍ଥାଦି ଧର୍ମକାର୍ଯ୍ୟ ସକାଶେ ବା (ଋତୁକାଳାଭିଗାମିନୀ ହେବାପାଇଁ ଅନ୍ୟତ୍ର ସ୍ଥିତ ଭର୍ତ୍ତାର ନିକଟକୁ) ଗମନ କଲେ କୌଣସି ଦୋଷ ହେବ ନାହିଁ । ସ୍ତ୍ରୀକୁ ଗ୍ରାମାନ୍ତରକୁ ନେଇଥିବା ସ୍ତ୍ରୀର ତୁଲ୍ୟଜାତୀୟ ପୁରୁଷକୁ ପୂର୍ବସାହସଦଣ୍ଡ ଏବଂ ସ୍ତ୍ରୀର ଜାତିରୁ ହୀନଜାତୀୟ ପୁରୁଷକୁ

**ସାହସଦଣ୍ଡଃ, ତୁଲ୍ୟଶ୍ରେୟସଃ, ପାପୀୟସୋ ମଧ୍ୟମଃ । ବନ୍ଧୁରଦଣ୍ଡ୍ୟଃ । ପ୍ରତିଷେଧେଽର୍ଦ୍ଧଦଣ୍ଡଃ । (୯) ପଥି ବ୍ୟନ୍ତରେ ଗୂଢ଼ଦେଶାଭିଗମନେ ମୈଥୁନାର୍ଥେନ ଶଂକିତପ୍ରତିଷିଦ୍ଧାଭ୍ୟାଂ ବା ପଥ୍ୟନୁସାରେଣ ସଂଗ୍ରହଣଂ ବିଦ୍ୟାତ୍ । (୧୦) ତାଳାବଚରଚାରଣ-ମତ୍ସ୍ୟବନ୍ଧକଲୁବ୍ଧକଗୋପାଳକଶୌଣ୍ଡିକାନାମନ୍ୟେଷାଂ ଚ ପ୍ରସୃଷ୍ଟସ୍ତ୍ରୀକାଣାଂ ପଥ୍ୟନୁସରଣମଦୋଷଃ । ପ୍ରତିଷିଦ୍ଧେ ବା ନୟତଃ ପୁଂସଃ ସ୍ତ୍ରିୟା ବା ଗଚ୍ଛନ୍ତ୍ୟାସ୍ତ ଏବାର୍ଦ୍ଧଦଣ୍ଡାଃ । ଇତି ପଥ୍ୟନୁସରଣମ୍ । (୧୧) ହ୍ରସ୍ୱପ୍ରବାସିନାଂ ଶୂଦ୍ରବୈଶ୍ୟକ୍ଷତ୍ରିୟ**

---

ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । କୌଣସି ସ୍ତ୍ରୀକୁ ତାର ବନ୍ଧୁବାନ୍ଧବ ସାଙ୍ଗରେ ନେଲେ ସେହି ବନ୍ଧୁ ଦଣ୍ଡ ପାଇବ ନାହିଁ । କିନ୍ତୁ ପତିର ବାରଣାସତ୍ତ୍ୱେ କୌଣସି ସ୍ତ୍ରୀକୁ ଯଦି ତାର ବନ୍ଧୁ ନେଇଯାଏ ତେବେ ସେ ଉପରୋକ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ ହେବ । (୯) ସ୍ତ୍ରୀ ଯଦି ଗତାଗତ ପଥର ବହୁଦୂରକୁ, ଗହଳବନମଧ୍ୟକୁ ଓ କୌଣସି ଗୁପ୍ତସ୍ଥାନକୁ ଗମନ କରେ, ତେବେ ସେହି ସ୍ତ୍ରୀ ମୈଥୁନ ସକାଶେ ଯାଉଅଛି ବୋଲି ଜାଣିବାକୁ ହେବ । ପତି ଶଙ୍କାକରି ମନାକରିବା ସତ୍ତ୍ୱେ ସ୍ତ୍ରୀ ଯଦି ଅଭିଳଷିତ ପୁରୁଷର ଗମନପଥ ଅନୁସରଣ କରେ, ତେବେ ସେ ଉଭୟଙ୍କ ଧରି ସ୍ତ୍ରୀସଂଗ୍ରହଣଉକ୍ତ ଦଣ୍ଡବିଧି ପ୍ରକାରେ ଦଣ୍ଡିତ କରିବାକୁ ହେବ । (ସ୍ତ୍ରୀସଂଗ୍ରହଣ ବିଷୟ ପରବର୍ତ୍ତୀ 'କନ୍ୟାପ୍ରକର୍ମ' ପ୍ରକରଣରେ ବ୍ୟାଖ୍ୟାତ ହେବ) । (୧୦) ନଟ, ଭାଟ, ମତ୍ସ୍ୟବନ୍ଧକ (କେଉଟ, ନୋଳିଆ, ଢିଅର, ଲଠିଆ ପ୍ରଭୃତି), ବ୍ୟାଧ, ଗୋପାଳ ଓ ଶୌଣ୍ଡିକ (ଶୁଣ୍ଢୀ) ସ୍ତ୍ରୀମାନେ ପତିର ଅନୁମତି ନଥାଇ ଅନ୍ୟପୁରୁଷ ସହିତ ରାସ୍ତାରେ ଯାତାୟାତ କଲେ ଏବଂ ତାମ୍ବୁଳକାର ଓ ମାଳାକାରାଦିମାନଙ୍କ ସ୍ତ୍ରୀମାନେ ପତିର ଅନୁମତି ନେଇ ଅନ୍ୟପୁରୁଷ ସହିତ ରାସ୍ତାରେ ଯାତାୟାତ କଲେ କୌଣସି ଦୋଷ ହୁଏ ନାହିଁ । କିନ୍ତୁ ଉକ୍ତ ନଟ, ଭାଟ ପ୍ରଭୃତିଙ୍କ ସ୍ତ୍ରୀମାନେ ପତି ନିଷେଧ କରିବା ସତ୍ତ୍ୱେ ଅନ୍ୟପୁରୁଷ ସହିତ ଗମନ କଲେ ନେଉଥିବା ପୁରୁଷ ଓ ନିଆଯାଇଥିବା ସ୍ତ୍ରୀ ପୂର୍ବୋକ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ ହେବେ । ଏଠାରେ ପଥ୍ୟାନୁସରଣ ବିଷୟର ବିବୃତ୍ତି ସମାପ୍ତ ହେଲା । (୧୧) ଚଞ୍ଚଳ ବାହାରି ଆସିବ ବୋଲି କହି

ବ୍ରାହ୍ମଣାନାଂ ସର୍ଯ୍ୟାଃ ସମ୍ବତ୍ସରୋତ୍ତରଂ କାଳମାକାଂକ୍ଷେରନ୍ ଅପ୍ରଜାତାଃ, ସମ୍ବତ୍ସରାଧିକଂ ପ୍ରଜାତାଃ, ପ୍ରତିବିହିତାଃ ଦ୍ବିଗୁଣଂ କାଳମ୍ । ଅପ୍ରତିବିହିତାଃ ସୁଖାବସ୍ଥା ବିଭୃୟୁଃ, ପରଂ ଚତ୍ବାରି ବର୍ଷାଣ୍ୟଷ୍ଟୌ ବା ଜ୍ଞାତୟଃ । ତତୋ ଯଥା ଦତ୍ତମାଦାୟ ପ୍ରମୁଂଚେୟୁଃ । (୧୬) ବ୍ରାହ୍ମଣମଧୀୟାନଂ ଦଶ ବର୍ଷାଣ୍ୟପ୍ରଜାତା, ଦ୍ବାଦଶପ୍ରଜାତା । ରାଜପୁରୁଷଂ ଆ ଆୟୁଃକ୍ଷୟାଦାକାଂକ୍ଷେତ । ସବର୍ଣତଶ୍ଚ ପ୍ରଜାତା ନାପବାଦଂ ଲଭେତ । କୁଟୁମ୍ବର୍ଦ୍ଧିଲୋପେ ବା

---

ବିଦେଶ ଗମନ କରିଥିବା ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଓ ବ୍ରାହ୍ମଣର ଅଦ୍ୟାବି ଗର୍ଭଧାରଣ କରିନଥିବା ଯୁବତୀସ୍ତ୍ରୀ ଯଥାକ୍ରମେ ଏକବର୍ଷ, ଦୁଇବର୍ଷ, ତିନିବର୍ଷ ଓ ଚାରିବର୍ଷ ପତିକୁ ଅପେକ୍ଷା କରି ରହିବ । ଅର୍ଥାତ୍ ଶୂଦ୍ରର ସ୍ତ୍ରୀ ଏକବର୍ଷ, ବୈଶ୍ୟର ସ୍ତ୍ରୀ ଦୁଇବର୍ଷ, କ୍ଷତ୍ରିୟର ସ୍ତ୍ରୀ ତିନିବର୍ଷ ଓ ବ୍ରାହ୍ମଣର ସ୍ତ୍ରୀ ଚାରିବର୍ଷ ପତିକୁ ଅପେକ୍ଷା କରି ରହିବ । ସନ୍ତାନବତୀ ସ୍ତ୍ରୀ ଆଉ ଅଧିକ ଏକବର୍ଷ ଅପେକ୍ଷା କରିବ । ପତି ଖାଦ୍ୟପେୟାଦିର ସୁବ୍ୟବସ୍ଥା କରିଦେଇ ବିଦେଶଯାତ୍ରା କରିଥିଲେ ଶୂଦ୍ର ସ୍ତ୍ରୀ ଦୁଇବର୍ଷ, ବୈଶ୍ୟ ସ୍ତ୍ରୀ ଚାରିବର୍ଷ, କ୍ଷତ୍ରିୟ ସ୍ତ୍ରୀ ଛବର୍ଷ ଏବଂ ବ୍ରାହ୍ମଣ ସ୍ତ୍ରୀ ଆଠବର୍ଷ ପର୍ଯ୍ୟନ୍ତ ପତିକୁ ଅପେକ୍ଷାକରି ରହିବ । ଯେଉଁ ସ୍ତ୍ରୀର ପତି ଭରଣପୋଷଣର ବ୍ୟବସ୍ଥା ନକରି ବିଦେଶ ଯାତ୍ରା କରିଥାଏ ତାର ଭରଣପୋଷଣ ଭାର ଅଭିଭାବକମାନେ ହିଁ ଗ୍ରହଣ କରିବେ । ଦ୍ୱିଗୁଣ କାଳ ଅପେକ୍ଷା କଲାପରେ ପତିର ବାନ୍ଧବମାନେ ଚାରିବର୍ଷ ବା ଆଠବର୍ଷ ପର୍ଯ୍ୟନ୍ତ ସ୍ତ୍ରୀର ଭରଣପୋଷଣର ବ୍ୟବସ୍ଥା କରିବେ । ତା ପରେ ତାର ପତି ଯଦି ବିଦେଶରୁ ଫେରିନଆସେ, ତେବେ ସେହି ସ୍ତ୍ରୀ ଇଚ୍ଛାକଲେ ବିବାହ ସମୟରେ ଦେଇଥିବା ଅଳଙ୍କାର ପ୍ରଭୃତି ପଦାର୍ଥ ପତିର ଜ୍ଞାତିମାନେ ତା'ଠାରୁ ନେଇ ତାର ପିତୃକୁଳରେ ଛାଡ଼ିଦେବେ । (୧୬) ବ୍ରାହ୍ମଣ ଯଦି ଅଧ୍ୟୟନ ସକାଶେ ଦେଶାନ୍ତର ଗମନ କରେ ତେବେ ତାର ଅପ୍ରସୂତା ସ୍ତ୍ରୀ ଦଶବର୍ଷ ପର୍ଯ୍ୟନ୍ତ ତାକୁ ଅପେକ୍ଷା କରିବ ଏବଂ ସନ୍ତାନବତୀ ସ୍ତ୍ରୀ ବାରବର୍ଷ ପର୍ଯ୍ୟନ୍ତ ଅପେକ୍ଷା କରିବ । ପତି ଯଦି ରାଜକାର୍ଯ୍ୟରେ ଦେଶାନ୍ତର ଗମନ କରିଥାଏ ତେବେ ତାର ସ୍ତ୍ରୀ (ଉକ୍ତ ରାଜକାର୍ଯ୍ୟରେ ଯାଇଥିବା ବ୍ରାହ୍ମଣର ସ୍ତ୍ରୀ) ତାକୁ ଆଜୀବନ ଅପେକ୍ଷା କରି ରହିବାକୁ ହେବ । ଯଥୋକ୍ତ ପ୍ରତୀକ୍ଷା

ସୁଖାବସ୍ଥୈର୍ବିମୁକ୍ତା ଯଥେଷ୍ଟଂ ବିନ୍ଦେତ ଜୀବିତାର୍ଥମାପଦ୍ଗତା ବା । (୧୩) ଧର୍ମବିବାହାତ୍ କୁମାରୀ ପରିଗ୍ରହୀତାରମନାଖ୍ୟାୟ ପ୍ରୋଷିତମଶ୍ରୂୟମାଣଂ ସପ୍ତ ତୀର୍ଥାନ୍ୟାକାଂକ୍ଷେତ, ସମ୍ବତ୍ସରଂ ଶ୍ରୂୟମାଣମ୍ । ଆଖ୍ୟାୟ ପ୍ରୋଷିତମଶ୍ରୂୟମାଣଂ ପଞ୍ଚ ତୀର୍ଥାନ୍ୟାକାଂକ୍ଷେତ, ଦଶଶ୍ରୂୟମାଣମ୍ । ଏକଦେଶଦତ୍ତଶୁଲ୍କଂ ତ୍ରୀଣି ତୀର୍ଥାନ୍ୟଶ୍ରୂୟମାଣଂ ସପ୍ତତୀର୍ଥାନ୍ୟାକାଂକ୍ଷେତ । ଦତ୍ତଶୁଲ୍କଂ ପଞ୍ଚ ତୀର୍ଥାନ୍ୟଶ୍ରୂୟମାଣଂ, ଦଶଶ୍ରୂୟମାଣମ୍ । ତତଃ ପରଂ ଧର୍ମସ୍ଥୈର୍ବିସୃଷ୍ଟା ଯଥେଷ୍ଟଂ

---

ସମୟ ଅତିକ୍ରାନ୍ତ ହେବାପରେ ଏହି ବ୍ରାହ୍ମଣ ସ୍ତ୍ରୀ ଯଦି ସବର୍ଣ୍ଣ ବା ଉଲ୍କୃଷ୍ଟ ବର୍ଣ୍ଣର ପୁରୁଷ ସହିତ ସହବାସ କରି ଗର୍ଭଧାରଣ କରେ ତେବେ ସେ ନିନ୍ଦନୀୟା ବା ଦଣ୍ଡନୀୟା ହୁଏ ନାହିଁ । ଉକ୍ତ ସ୍ତ୍ରୀର ଭରଣପୋଷଣ କରିବା ଯୋଗ୍ୟ ନିଜ ବନ୍ଧୁକୁଟୁମ୍ବ ଲୋକେ ଗରିବ ହୋଇଥିବା ଯୋଗୁଁ ଯଦି ଏହାକୁ ପୋଷିବାକୁ ଅସମର୍ଥ ହୁଅନ୍ତି ବା ବିବାହ କରାଇଥିବା ଜ୍ଞାତିମାନେ ଯଥୋଚିତ କାଳପର୍ଯ୍ୟନ୍ତ ଏହାର ପାଳନପୋଷଣ କରିବାକୁ ସାମର୍ଥ୍ୟ ଥିଲେ ମଧ୍ୟ ଉପେକ୍ଷା କରନ୍ତି କିମ୍ବା ଏଥିଲାଗି ଉକ୍ତ ସ୍ତ୍ରୀ ଯଦି ବିପଦ୍ଗ୍ରସ୍ତା ହୁଏ, ତେବେ ସେ ବଞ୍ଚିବା ସକାଶେ କିମ୍ବା ବିପଦରୁ ରକ୍ଷାପାଇବା ସକାଶେ ଅଭିଲଷିତ ଅନ୍ୟ-ପୁରୁଷ ସହିତ ପୁନର୍ବିବାହ କରି ରହିବ । (୧୩) ଧର୍ମବିବାହରେ ବିବାହିତା ଅକ୍ଷତଯୋନିକା କୁମାରୀର ପତି ଯଦି କାହାକୁ କିଛି ନକହି କେଉଁଆଡ଼େ ଚାଲିଯାଇଥାଏ, ତେବେ ଏହି କୁମାରୀ ରଜୋବତୀ (ଯୁବତୀ) ହେବାପରେ ପତିର କୌଣସି ସମ୍ବାଦ ନ ପାଇଲେ ସାତଥର ଋତୁସ୍ନାନ କଲାପର୍ଯ୍ୟନ୍ତ ଅପେକ୍ଷା କରିବ ଏବଂ ସମ୍ବାଦ ପାଇଲେ ଏକବର୍ଷଯାଏ ଅପେକ୍ଷା କରିବ । କହିକରି ବିଦେଶ ଯାଇଥିବା ପତିର କୌଣସି ସମ୍ବାଦ ନ ପାଇଲେ ପାଞ୍ଚଥର ଋତୁସ୍ନାତା ହେବାଯାଏ ଅପେକ୍ଷା କରିବ ଏବଂ ସମ୍ବାଦ ପାଇଲେ ଦଶଥର ଋତୁସ୍ନାତା ହେବା ପର୍ଯ୍ୟନ୍ତ ଅପେକ୍ଷା କରିବ । ବିବାହଶୁଲ୍କର ଏକଅଂଶ ଦେଇ ବିଦେଶ ଯାଇଥିବା ପତିର କୌଣସି ସମ୍ବାଦ ନ ପାଇଲେ ତିନିଥର ଋତୁସ୍ନାତା ହେବାଯାଏଁ ଅପେକ୍ଷା କରିବ ଏବଂ ସମ୍ବାଦ ପାଇଲେ ସାତଥର ଋତୁସ୍ନାତା ହେବାଯାଏ ଅପେକ୍ଷା କରିବ । ସମୁଦାୟ ବିବାହଶୁଲ୍କ ଦେଇ ବିଦେଶକୁ ଯାଇଥିବା ପତିର କୌଣସି ସମ୍ବାଦ ନ ପାଇଲେ ପାଞ୍ଚଥର

ବଦେତ । ତୀର୍ଥୋପରୋଧୋ ହି ଧର୍ମବଧ ଇତି କୌଟଲ୍ୟଃ । (୧୪) ଦୀର୍ଘପ୍ରବାସିନଃ ପ୍ରବ୍ରଜିତସ୍ୟ ପ୍ରେତସ୍ୟ ବା ଭାର୍ଯ୍ୟା ସପ୍ତ ତୀର୍ଥାନ୍ୟାକାଂକ୍ଷେତ, ସମ୍ବତ୍ସରଂ ପ୍ରଜାତା । ତତଃ ପତି ସୋଦର୍ଯ୍ୟଂ ଗଚ୍ଛେତ୍ । ବହୁଷୁ ପ୍ରତ୍ୟାସନ୍ନଂ ଧାର୍ମିକଂ ଭର୍ମସମର୍ଥଂ

---

ଋତୁସ୍ନାତା ହେବା ପର୍ଯ୍ୟନ୍ତ ଅପେକ୍ଷା କରିବ । ସମ୍ବାଦ ପାଇଲେ ଦଶଥର ଋତୁସ୍ନାତା ହେବା ପର୍ଯ୍ୟନ୍ତ ଅପେକ୍ଷା କରିବ । ତା ପରେ ସ୍ତ୍ରୀ ଧର୍ମାଧିକାରୀଙ୍କ ଅନୁଜ୍ଞା ନେଇ ଇଚ୍ଛାକଲେ ଦ୍ୱିତୀୟବାର ବିବାହ କରି ପାରିବ । କୌଟଲ୍ୟ କହନ୍ତି, ତୀର୍ଥୋପରୋଧ ଅର୍ଥାତ୍ ଋତୁସ୍ନାନ କରିବା ପଞ୍ଚମଦିନଠାରୁ ଶୋହଳଦିନ ପର୍ଯ୍ୟନ୍ତ ଋତୁକାଳକୁ ଉଲ୍ଲଂଘନ ବା ପୁରୁଷସହବାସ ନକରି କଟାଇଦେଲେ ପୁତ୍ରଉତ୍ପତ୍ତିରୂପକ * ସୁକୃତର ବିନାଶ ଘଟେ । ଅତଏବ ସ୍ତ୍ରୀ ଯଥାନିର୍ଦ୍ଦିଷ୍ଟ କାଳ ପରେ ପୁନର୍ବିବାହ କରିବା ହିଁ ଶ୍ରେୟସ୍କର । (୧୪) ସନ୍ତାନ ପ୍ରସବ କରିନଥିବା ସ୍ତ୍ରୀର ପତି ଯଦି ଦୀର୍ଘକାଳ ପ୍ରବାସୀ ହୁଏ, ସନ୍ନ୍ୟାସ ଗ୍ରହଣ କରି ଚାଲିଯାଏ କିମ୍ବା ଅକାଳରେ ପରଲୋକ ପ୍ରାପ୍ତହୁଏ, ତେବେ ସେ ସ୍ତ୍ରୀ ସପ୍ତବାର ଋତୁମତୀ ହେବାଯାଏଁ ଅପେକ୍ଷା କରିବ ଏବଂ ସନ୍ତାନବତୀ ସ୍ତ୍ରୀ ଏକବର୍ଷ ଅପେକ୍ଷା କରିବ । ତା ପରେ ଅନ୍ନରକ୍ଷା ଓ କୁଳରକ୍ଷା ସକାଶେ ଦିଅରକୁ ଉପଗତ ହେବ ଅର୍ଥାତ୍ ଦିଅରସହିତ ସହବାସ କରି ରହିପାରିବ । ଯଦି ବହୁତ ଦିଅର ଥାନ୍ତି ତେବେ ତନ୍ମଧ୍ୟରୁ ଯେ ନିକଟବର୍ତ୍ତୀ (ଯେ ପାଖରେ ମିଳିମିଶି ଥିବ) ତା'ସହିତ, ସେ ଯଦି ଅଧାର୍ମିକ ହୋଇଥାଏ ତେବେ ଧାର୍ମିକ ଦିଅର ସହିତ, ସମସ୍ତ ଦିଅର ଧାର୍ମିକ ହୋଇଥିଲେ ସେମାନଙ୍କ ମଧ୍ୟରୁ ଯେ ଭରଣପୋଷଣସମର୍ଥ ସେହି ଦିଅର ସହିତ, ଯଦି ସମସ୍ତେ ଭରଣପୋଷଣସମର୍ଥ ହୋଇଥାନ୍ତି ତେବେ ସେମାନଙ୍କ ମଧ୍ୟରୁ ଯେ ସାନ ତା ସହିତ ବା ଯାହାର ପତ୍ନୀ ନାହିଁ ତା ସହିତ ସହବାସ କରି ରହିପାରିବ । ନିଜର ଦିଅର ନଥିଲେ ପତିଙ୍କ ବିମାତାପୁତ୍ର ବା

---

* ଋତୁସ୍ନାତାଂ ତୁ ଯୋ ଭାର୍ଯ୍ୟାଂ ନୋପଗଚ୍ଛେଦ ନାସ୍ତିକଃ ।
ବାଲଗୋଘ୍ନାପରାଧେନ ବଧ୍ୟତେ ନାତ୍ର ସଂଶୟଃ ॥ ଇତି ମନୁଃ ॥
ପୁତ୍ରେଣ ଲୋକାଞ୍ଜୟତି ପୌତ୍ରେଣାନନ୍ତ୍ୟମଶ୍ନୁତେ ।
ଅଥ ପୁତ୍ରସ୍ୟ ପୌତ୍ରେଣ ନାକପୃଷ୍ଠେ ମହୀୟତେ ॥ ଇତି ସ୍ମରଣାତ୍ ॥

ଜନଷ୍ଟ ମସବର୍ଯ୍ୟଂ ବା । ତଦଭାବେଽପ୍ୟସୋଦର୍ଯ୍ୟଂ ସପିଣ୍ଡଂ କୁଲ୍ୟଂ ବା । ଆସନ୍ନମେତେଷାମ୍ । ଏଷ ଏବ କ୍ରମଃ ।

(୧୫) ଏତାନୁତ୍କ୍ରମ୍ୟ ଦାୟାଦାନ୍ ବେଦନେ ଜାରକର୍ମଣି ।
ଜାରସ୍ତ୍ରୀଦାତୃବେତ୍ତାରଃ ସଂପ୍ରାପ୍ତାଃ ସଂଗ୍ରହାତ୍ୟୟମ୍ ॥

---

କକାପୁଅ, ଦଦାପୁଅ (ସାନ) ଭାଇ ସହିତ, ସେପରି ନଥିଲେ ପତିବଂଶର ବଂଶିକଅ କୌଣସି ଦିଅର ସହିତ ଏବଂ ଏମାନଙ୍କ ଭିତରୁ ଯେ ଲଗଣିଭ ତା'ସହିତ ସହବାସ କରି ରହିପାରିବ । ଏହି ନିୟମରେ ସ୍ତ୍ରୀ ଅନ୍ୟ ପୁରୁଷ ଗ୍ରହଣ କରିପାରିବ । (୧୫) ଉପର୍ଯ୍ୟୁକ୍ତ କ୍ରମରେ ପତିସୋଦର ଅର୍ଥାତ୍ ଦିଅରମାନଙ୍କୁ ଛାଡ଼ି ଯେଉଁ ସ୍ତ୍ରୀ ଅନ୍ୟ ପତି ଗ୍ରହଣ କରେ ବା ଜାରପୁରୁଷ ସହିତ ସହବାସ କରେ, ତେବେ ସେହି ଜାରପୁରୁଷ, ସେହି ବ୍ୟଭିଚାରିଣୀ ସ୍ତ୍ରୀ, ସ୍ତ୍ରୀକୁ ଅନ୍ୟନ୍ତ ଦେବା ବ୍ୟକ୍ତି ଓ ଏହି ସ୍ତ୍ରୀକୁ ବିବାହ କରି ନେବା ବ୍ୟକ୍ତି ସ୍ତ୍ରୀସଂଗ୍ରହବିହିତ ଦଣ୍ଡବିଧାନ ଅନୁସାରେ ଦଣ୍ଡିତ ହେବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଚତୁର୍ଥୋଽଧ୍ୟାୟଃ ।
ବିବାହସଂଯୁକ୍ତେ ନିଷ୍ପତନଂ ପଥ୍ୟନୁସରଣମ୍ ହ୍ରସ୍ୱପ୍ରବାସଃ
ଦୀର୍ଘପ୍ରବାସଶ୍ଚ । ବିବାହସଂଯୁକ୍ତଂ ସମାପ୍ତମ୍—ଆଦିତଃ ଏକଷଷ୍ଟିତମଃ ।

## ପଞ୍ଚମୋଽଧ୍ୟାୟଃ

## ଷଷ୍ଠିତମ ପ୍ରକରଣମ୍—ଦାୟବିଭାଗଃ—ଦାୟକ୍ରମଃ

### DIVISION OF INHERITANCE

( * 'ଦାୟ' ଅର୍ଥାତ୍ କୁଳସାଧାରଣ ଭ୍ରାତୃଭାଜ୍ୟ ଧନର ବିଭାଗ ନିରୂପଣ )

(୧) ଅନୀଶ୍ୱରାଃ ପିତୃମନ୍ତଃ ସ୍ଥିତପିତୃମାତୃକାଃ ପୁତ୍ରାଃ । ତେଷାଂ ଊର୍ଦ୍ଧ୍ୱଂ ପିତୃତୋ ଦାୟବିଭାଗଃ ପିତୃଦ୍ରବ୍ୟାଣାମ୍ । ସ୍ୱୟମାର୍ଜିତମବିଭାଜ୍ୟଂ ଅନ୍ୟତ୍ର ପିତୃଦ୍ରବ୍ୟାଦୁତ୍ଥିତେଭ୍ୟଃ । (୨) ପିତୃଦ୍ରବ୍ୟାଦବିଭକ୍ତୋପଗତାନାଂ ପୁତ୍ରାଃ ପୌତ୍ରା ବା ଆ ଚତୁର୍ଥାଦିତ୍ୟଂଶଭାଜଃ । ତାବଦବିଚ୍ଛିନ୍ନଃ ପିଣ୍ଡୋ ଭବତି । ବିଚ୍ଛିନ୍ନ-ପିଣ୍ଡାଃ ସର୍ବେ ସମଂ ବିଭଜେରନ୍ । (୩) ଅପିତୃଦ୍ରବ୍ୟା ବିଭକ୍ତ-

---

(୧) ପ୍ରଶସ୍ତ ମାତାପିତୃକ ଓ ଜୀବିତ୍ ମାତାପିତୃକ ପୁତ୍ରମାନେ ଦାୟଧନର ଅଧିକାରୀ ହୋଇପାରିବେ ନାହିଁ । ପିତାମାତାଙ୍କ ପରଲୋକପ୍ରାପ୍ତି ପରେ ପୁତ୍ରମାନେ ପୈତୃକ ଧନର ଅଧିକାରୀ ହୋଇପାରିବେ । ପୈତୃକ ସମ୍ପତ୍ତିର ଉପଯୋଗ କରି ରୋଜଗାର କରିଥିବା ସମ୍ପତ୍ତି ବ୍ୟତୀତ ସ୍ୱାର୍ଜିତ ସମ୍ପତ୍ତିରେ ଭାଇମାନଙ୍କର ଭାଗ ରହିପାରିବ ନାହିଁ । (୨) ପଣିଗୋସେଇଁ ବାପାଙ୍କ କାଳରୁ ବଣ୍ଟାନହୋଇଥିବା ସମ୍ପତ୍ତିକୁ ଜୀବିତ ପଣିନାତିମାନେ ଜ୍ୟେଷ୍ଠ କନିଷ୍ଠାଦି ଭାଗକ୍ରମରେ ବଣ୍ଟନ କରି ନେବେ । କାରଣ ଗୃହପୁରୁଷ-ମାଏ ପିଣ୍ଡବିଚ୍ଛେଦ ହୋଇନଥିବା ଯୋଗୁଁ ଏପରି ଭାଗବ୍ୟବସ୍ଥା କରିବାକୁ ହେବ । ଗୃହପୁରୁଷ ପରେ ଅର୍ଥାତ୍ ପିଣ୍ଡବିଚ୍ଛିନ୍ନ ହେବା ପରେ ଯେଉଁମାନେ ଜୀବିତ ଥିବେ ସେମାନେ ସମଭାଗରେ ପୈତୃକସମ୍ପତ୍ତି ବଣ୍ଟନ କରିବେ । (୩) ଯେଉଁମାନଙ୍କର ପୈତୃକ ସମ୍ପତ୍ତି କିଛିନାହିଁ କିମ୍ବା ଯେଉଁମାନେ ପୈତୃକ ସମ୍ପତ୍ତି ବଣ୍ଟନ କରିନେଇ ମଧ୍ୟ କୁଳମର୍ଯ୍ୟାଦା ରକ୍ଷାପାଇଁ ଏକାଠିରେ ରହିଥାନ୍ତି, ସେମାନେ ବିଭକ୍ତ ହେବାବେଳେ ଏହି ପୈତୃକ ଧନ ପୁଣି

---

* ପୂର୍ବସ୍ୱାମିସମ୍ବନ୍ଧାଧୀନଂ ତତ୍ସ୍ୱାମ୍ୟୋପରମେ ଯତ୍ର ଦ୍ରବ୍ୟେ ସ୍ୱତ୍ୱଂ ତତ୍ର ନିରୂଢ଼ୋ ଦାୟଶବ୍ଦଃ ॥ ଇତି ଜୀମୂତବାହନଃ ।

**ପିତୃଦ୍ରବ୍ୟା ବା ସହଜୀବନ୍ତଃ ପୁନର୍ବିଭଜେରନ୍ । ଯତଶ୍ଚୋତ୍ତିଷ୍ଠେତ ସ ଦ୍ୱ୍ୟଂଶଂ ଲଭେତ । (୪) ଦ୍ରବ୍ୟମପୁତ୍ରସ୍ୟ ସୋଦର୍ଯ୍ୟା ଭ୍ରାତରଃ ସହଜୀବିନୋ ବା ହରେୟୁଃ କନ୍ୟାଶ୍ଚ । (୫) ରିକ୍‌ଥଂ ପୁତ୍ରବତଃ ପୁତ୍ରା ଦୁହିତରୋ ବା ଧର୍ମିଷ୍ଠେଷୁ ବିବାହେଷୁ ଜାତାଃ । ତଦଭାବେ ପିତା ଧରମାଣଃ, ପିତ୍ରାଭାବେ ଭ୍ରାତରୋ ଭ୍ରାତୃପୁତ୍ରାଶ୍ଚ । (୬) ଅପିତୃକା ବହବୋଽପି ଚ ଭ୍ରାତରୋ ଭ୍ରାତୃପୁତ୍ରାଶ୍ଚ ପିତୁରେକମଂଶଂ ହରେୟୁଃ ।**

---

ବଣ୍ଟନକରି ନେବେ, ମାତ୍ର ଏହି ଏକାନ୍ନବର୍ତ୍ତୀ ସମୟରେ ସେମାନେ ଏହି ସମ୍ପତ୍ତିର ଯେଉଁ ଅଭିବୃଦ୍ଧି କରିଥିବେ ସେହି ବୃଦ୍ଧି ଅଂଶର ଦୁଇଭାଗରୁ ଏକଭାଗ (ଅଧଭାଗ) ବର୍ଦ୍ଧକବ୍ୟକ୍ତିଙ୍କୁ ଦେଇ ଅନ୍ୟ ଅର୍ଦ୍ଧାଂଶ ସମସ୍ତ ଦାୟାଦ ସମଭାଗରେ ବଣ୍ଟନକରି ନେବେ । ଯେଉଁମାନଙ୍କର ପୈତୃକସମ୍ପତ୍ତି ନାହିଁ ସେମାନେ ଅର୍ଜନ କରିଥିବା ସମ୍ପତ୍ତିରୁ ଅର୍ଜକଙ୍କୁ ଅର୍ଦ୍ଧାଂଶ ଦେଇ ଅନ୍ୟଅର୍ଦ୍ଧାଂଶ ସମସ୍ତେ ସମଭାଗରେ ବଣ୍ଟନକରି ନେବେ । (୪) ମୃତ-ଅପୁତ୍ରିକ ବ୍ୟକ୍ତିର ସମ୍ପତ୍ତି ତାର ଏକାନ୍ନବର୍ତ୍ତୀ ସହୋଦର ଭାଇମାନେ ଭୋଗଦଖଲ କରିବେ । ଯଦି ଉକ୍ତ ବ୍ୟକ୍ତିର କନ୍ୟା ଥାନ୍ତି ତେବେ ସେମାନେ ନିଜର ବିବାହାଦି ସକାଶେ ପିତା ଗଚ୍ଛିତକରିଥିବା ସମ୍ପତ୍ତିର ଅଧିକାରିଣୀ ହୋଇପାରିବେ । (୫) ମୃତବ୍ୟକ୍ତିର ଦାୟଧନରେ ତା'ର ପୁତ୍ରମାନେ ଅଧିକାରୀ ହେବେ । ପୁତ୍ର ଅଭାବରେ ବ୍ରାହ୍ମାଦି ଚାରିପ୍ରକାର ଧର୍ମବିବାହରେ ବିବାହିତା ସ୍ତ୍ରୀଠାରୁ ଜାତହୋଇଥିବା ଦୁହିତାମାନେ ଏହା ଦଖଲ କରିବେ । ଦୁହିତାର ଅଭାବରେ ମୃତବ୍ୟକ୍ତିର ପିତା ଯଦି ଜୀବିତ ଥାଏ, ସେ ଏବଂ ପିତା ନଥିଲେ ଭ୍ରାତା ଓ ଭ୍ରାତାଙ୍କ ଅଭାବରେ ପୁତ୍ତୁରାମାନେ ଏହି ଦାୟଧନର ଅଧିକାରୀ ହେବେ । (୬) ଏକାନ୍ନବର୍ତ୍ତୀ ପିତୃହୀନ ସହୋଦର ଓ ଅସହୋଦର (ଜକାପୁଅ, ଦଦାପୁଅ) ଭାଇମାନେ ବିଭକ୍ତ ହେବାବେଳେ ପୈତୃକସମ୍ପତ୍ତି ନିଜପିତାର ଭାଗ ଅନୁସାରେ ପାଇବାକୁ ଅର୍ହ ହେବେ ଅର୍ଥାତ୍ ଏକାନ୍ନବର୍ତ୍ତୀ ତିନିଗୋଟି ଭାଇ ମରିଯାଇଥିଲେ ସେମାନଙ୍କର ପୁଅମାନେ ବଡ଼ଭାଇର ତିନିପୁଅ, ମଝିଆଭାଇର ଦୁଇପୁଅ ଓ ସାନଭାଇର ଏକପୁଅ, ଏମାନେ ପୈତୃକସମ୍ପତ୍ତିକୁ ଭାଗ କଲାବେଳେ ଛ'ଭାଗ ନକରି ନିଜ ନିଜ ପିତାଙ୍କ ସଂଖ୍ୟାନୁସାରେ ପ୍ରଥମେ ତିନିଭାଗ କଲାପରେ ବଡ଼ଭାଇର ତିନିପୁଅ ଗୋଟିଏ

(୭) ସୋଦର୍ଯ୍ୟାଣାମନେକପିତୃକାଣାଂ ପିତୃତୋ ଦାୟବିଭାଗଃ । (୮) ପିତୃଭ୍ରାତୃପୁତ୍ରାଣାଂ ପୂର୍ବେ ବିଦ୍ୟମାନେ ନାପରମବଲମ୍ବନ୍ତେ, ଜ୍ୟେଷ୍ଠେ ଚ କନିଷ୍ଠମର୍ଥଗ୍ରାହିଣଃ । (୯) ଜୀବଦ୍ ବିଭାଗେ ପିତା ନୈକଂ ବିଶେଷୟେତ୍ । ନ ଚୈକମକାରଣାନ୍ନିର୍ବିଭଜେତ । ପିତୁରସତ୍ୟର୍ଥେ ଜ୍ୟେଷ୍ଠାଃ କନିଷ୍ଠାନନୁଗୃହ୍ଣୀୟୁଃ, ଅନ୍ୟତ୍ର ମିଥ୍ୟା-ବୃତ୍ତେଭ୍ୟଃ । (୧୦) ପ୍ରାପ୍ତବ୍ୟବହାରାଣାଂ ବିଭାଗଃ । ଅପ୍ରାପ୍ତ-ବ୍ୟବହାରାଣାଂ ଦେୟବିଶୁଦ୍ଧଂ ମାତୃବନ୍ଧୁଷୁ ଗ୍ରାମବୃଦ୍ଧେଷୁ ବା

---

ଭାଗକୁ ତିନିଭାଗରେ ବଣ୍ଟନ କରିନେବେ, ଆଉ ଗୋଟିଏ ଭାଗକୁ ମଝିଆଁଭାଇର ଦୁଇପୁଅ ଦୁଇଭାଗରେ ବାଣ୍ଟନ କରିନେବେ ଏବଂ ଅନ୍ୟଭାଗକୁ ସାନଭାଇର ଏକମାତ୍ର ପୁତ୍ର ଏକାକୀ ଭୋଗ କରିବ । ଏକାନ୍ନବର୍ତ୍ତୀ ଦୁଇଭାଇଙ୍କ ମଧ୍ୟରୁ ଜଣେ ମୃତ ଓ ଅନ୍ୟଜଣେ ଜୀବିତ ଏବଂ ଉକ୍ତ ମୃତବ୍ୟକ୍ତିଙ୍କ ତିନିଗୋଟି ପୁତ୍ର ଥିଲେ ପୈତୃକସମ୍ପତ୍ତିକୁ ଦୁଇଭାଗ କରି ଗୋଟିଏ ଭାଗ ଜୀବିତଭାଇ ଓ ଅନ୍ୟଗୋଟିଏ ଭାଗ ମୃତଭାଇର ତିନିପୁଅ ଯଥାକ୍ରମେ ତିନିଭାଗରେ ବଣ୍ଟନ କରି ନେବେ । (୭) ଗୋଟିଏ ମାତାଠାରୁ ଭିନ୍ନ ଭିନ୍ନ ପିତାଙ୍କଦ୍ୱାରା ଜାତହେବା ପୁତ୍ରମାନେ ନିଜ ନିଜ ପିତୃସମ୍ପତ୍ତିର ଅଧିକାରୀ ହେବେ । (୮) ଏକାନ୍ନବର୍ତ୍ତୀ ମୃତବ୍ୟକ୍ତିର ଜୀବିତ ପିତା, ଭ୍ରାତା ଓ ଭ୍ରାତୃପୁତ୍ରମାନଙ୍କ ମଧ୍ୟରୁ କନିଷ୍ଠମାନେ ଜ୍ୟେଷ୍ଠମାନଙ୍କଠାରୁ ନିଜର ପୈତୃକ ଅଂଶ ଗ୍ରହଣ କରିବେ । (୯) ପିତା ଜୀବିତ ଥାଉ ଥାଉ ପୁତ୍ରମାନେ ବିଭକ୍ତ ହେବାକୁ ଇଚ୍ଛା କଲେ ଏହି ଜୀବିତପିତା ପୁତ୍ରମାନଙ୍କ ଭାଗବଣ୍ଟନରେ ଜ୍ୟେଷ୍ଠକନିଷ୍ଠାଂଶ ତାରତମ୍ୟ ନରଖି ସମାନ ଭାଗରେ ସମ୍ପତ୍ତି ବଣ୍ଟନ କରିଦେବାକୁ ହେବ । ବିନାକାରଣରେ କୌଣସି ପୁତ୍ରକୁ ତାର ଭାଗରୁ ବଞ୍ଚିତ କରିବାକୁ ହେବ ନାହିଁ । ପୈତୃକସମ୍ପତ୍ତି ନଥିଲେ ବଡ଼ଭାଇ, ସାନଭାଇମାନଙ୍କ ପାଳନ ପୋଷଣ ଭାର ଗ୍ରହଣ କରିବେ । କିନ୍ତୁ କନିଷ୍ଠମାନଙ୍କ ମଧ୍ୟରୁ କେହି ଯଦି ଖରାପ ଆଚରଣ କରି ଅବାଧ ହୁଏ, ତେବେ ତାର ପାଳନପୋଷଣ ଭାର ଗ୍ରହଣ କରିବେ ନାହିଁ । (୧୦) ସାବାଳକ ଅର୍ଥାତ୍ ଶୋହଳବର୍ଷ ବୟସ ଅତିକ୍ରାନ୍ତ ହେବା ପରେ ପୁଅମାନେ ସ୍ୱୟଂ ପୈତୃକସମ୍ପତ୍ତିର ଭାଗ ପାଇବା ପାଇଁ କ୍ଷମହେବେ । ଅପ୍ରାପ୍ତବୟସ୍କ-ନାବାଳକମାନଙ୍କୁ ମିଳିଥିବା ପୈତୃକସମ୍ପତ୍ତିର

ସ୍ଥାପୟେୟୁର୍ବ୍ୟବହାରପ୍ରାପଣାତ୍ । ପ୍ରୋଷିତସ୍ୟ ବା । (୧୧) ସନ୍ନିବିଷ୍ଟସମମସନ୍ନିବିଷ୍ଟେଭ୍ୟୋ ନୈବେଶନିକଂ ଦଦ୍ୟୁଃ । କନ୍ୟାଭ୍ୟଶ୍ଚ ପ୍ରାଦାନିକମ୍ । (୧୨) ଋଣ ରିକ୍‌ଥୟୋଃ ସମୋ ବିଭାଗଃ । (୧୩) ଉଦପାତ୍ରାଣ୍ୟପି ନିଷ୍କିଂଚନା ବିଭଜେରନ୍ ଇତ୍ୟାଚାର୍ଯ୍ୟାଃ । ଛଳମେତଦିତି କୌଟିଲ୍ୟଃ । ସତୋଽର୍ଥସ୍ୟ ବିଭାଗୋ ନାସତଃ । (୧୪) ଏତାବାନର୍ଥଃ ସାମାନ୍ୟସ୍ତସ୍ୟୈତାବାନ୍ ପ୍ରତ୍ୟଂଶଃ ଇତ୍ୟନୁଭାଷ୍ୟ

---

ଭାଗଧନରୁ ସେମାନଙ୍କ ଭାଗକୁ ଥିବା ଋଣ ପରିଶୋଧ ଓ ଅନ୍ୟାନ୍ୟ ବ୍ୟୟ କରାଇବା ପରେ ଉଦ୍‌ବୃତ୍ତ ଭାଗଧନକୁ ସେମାନଙ୍କ ମାତୃବନ୍ଧୁ ଅର୍ଥାତ୍ ମାମୁଁ, ଅଜା ଇତ୍ୟାଦିଙ୍କ ଜିମାରେ କିମ୍ବା ଗ୍ରାମବୃଦ୍ଧ (ଗ୍ରାମର ଜଣାଶୁଣା ଭଦ୍ରବ୍ୟକ୍ତି) ମାନଙ୍କ ଜିମାରେ ରଖାଇ ଦେବାକୁ ହେବ । ଦେଶାନ୍ତରକୁ ଯାଇଥିବା ବ୍ୟକ୍ତିର ଭାଗଧନ ମଧ୍ୟ ଉପରୋକ୍ତ ପ୍ରକାରେ ରଖାଇବାର ବ୍ୟବସ୍ଥା କରିବାକୁ ହେବ । (୧୧) ବିବାହିତ ଭାଇମାନେ ଅବିବାହିତ ଭାଇମାନଙ୍କୁ ବିଭକ୍ତ ହେବା ସମୟରେ ନିଜର ବିବାହରେ ଯେତିକି ବ୍ୟୟ ହୋଇଛି ସେତିକି ଧନ ପୈତୃକସମ୍ପତ୍ତିରୁ ଦେଇ ଓ ଅବିବାହିତା ଭଉଣୀମାନଙ୍କ ପାଇଁ ମଧ୍ୟ ବିବାହ ଖର୍ଚ୍ଚ ଓ ଯୌତୁକ ସକାଶେ ଉପଯୁକ୍ତ ଧନ ପୈତୃକସମ୍ପତ୍ତିରୁ ରଖିଦେଇ ଉଦ୍‌ବୃତ୍ତ ଧନ ବଣ୍ଟନ କରିନେବେ । (୧୨) ପିତା କରିଥିବା ଋଣ ଧନକୁ ପୁତ୍ରମାନେ ସମାନଭାଗରେ ଶୁଝିବେ ଏବଂ ପିତା ଦେଇଥିବା ଋଣଧନ ଆଦାୟ କରି ସମଭାଗରେ ବାଣ୍ଟିନେବେ । (୧୩) ଆଚାର୍ଯ୍ୟମାନଙ୍କ ମତରେ ଦରିଦ୍ର (ଅକିଞ୍ଚନ) ଲୋକମାନେ ପାଣିଅଣିବା ମାଟିମାଠିଆ ପର୍ଯ୍ୟନ୍ତ ମଧ୍ୟ ବାଣ୍ଟିନେବାକୁ ହେବ । କିନ୍ତୁ କୌଟିଲ୍ୟ ଏହାକୁ ଛଳନା ବୋଲି କହନ୍ତି । ତାଙ୍କ ମତରେ ଧନୀ ଦରିଦ୍ର ନିର୍ବିଶେଷରେ ଭାଇଭାଗ ବଣ୍ଟନ କଲାବେଳେ ଛୋଟରୁ ମୋଟ ପର୍ଯ୍ୟନ୍ତ ଯାହା ଯାହା ଥିବ ସେ ସମସ୍ତ ପଦାର୍ଥ ନିୟମାନୁସାରେ ବଣ୍ଟନ କରିନେବାକୁ ହେବ (ଛୋଟ ପଦାର୍ଥ ପ୍ରତି ଅବହେଳା କରି ବଣ୍ଟନ ନକଲେ ତାହାଯୋଗୁଁ ଦିନେ ଭାଇଭାଇ ମଧ୍ୟରେ ଘୋର କଳହ ସୃଷ୍ଟିହେବାର ଦେଖାଯାଉଥିବା ଯୋଗୁଁ ମାଟିପାତ୍ର, ପିଢ଼ା, ଛୁଞ୍ଚିଣି ପର୍ଯ୍ୟନ୍ତ ମଧ୍ୟ ବାଣ୍ଟିଦେଇ ଭବିଷ୍ୟତ୍ କଳହର ଦ୍ୱାରରୁଦ୍ଧ କରିବା ପାଇଁ ଆଚାର୍ଯ୍ୟ କୌଟିଲ୍ୟ ଏଠାରେ ପୂର୍ବାଚାର୍ଯ୍ୟ ମତକୁ ଛଳନା ବୋଲି କହିଛନ୍ତି) । (୧୪) ପୈତୃକଧନ ବଣ୍ଟନ କଲାବେଳେ ସମୁଦାୟ ଧନ ଏତେ,

ବ୍ରୁବନ୍ ସାକ୍ଷିଷୁ କରଣଂ କାରୟେତ୍ । ଦୁର୍ବିଭକ୍ତମନ୍ୟୋନ୍ୟାପହୃତ ମନ୍ତର୍ହିତମବଜ୍ଞାତୋତ୍ପନ୍ନଂ ବା ପୁନର୍ବିଭଜେରନ୍ । (୧୫) ଅଦାୟାଦକଂ ରାଜା ହରେତ୍ ସ୍ତ୍ରୀବୃତ୍ତିପ୍ରେତକାର୍ଯ୍ୟବର୍ଜମନ୍ୟତ୍ର ଶ୍ରୋତ୍ରିୟଦ୍ରବ୍ୟାତ୍ । ତତ୍ ତ୍ରୈବିଦ୍ୟେଭ୍ୟଃ ପ୍ରୟଚ୍ଛେତ୍ । (୧୬) ପତିତଃ ପତିତାଜ୍ଜାତଃ କ୍ଲୀବଶ୍ଚାନଂଶାଃ । ଜଡୋନ୍ମତ୍ତାନ୍ଧକୁଷ୍ଠିନଶ୍ଚ । ସତି ଭାର୍ଯ୍ୟାର୍ଥେ ତେଷାମପତ୍ୟମତଦ୍ବିଧଂ ଭାଗଂ ହରେତ୍ । ଗ୍ରାସାଚ୍ଛାଦନମିତରେ ପତିତବର୍ଜାଃ ।

---

ଏଥିରୁ ଜ୍ୟେଷ୍ଠକନିଷ୍ଠକ୍ରମେ ପ୍ରତି ଭାଇର ଭାଗ ଏତେ ବୋଲି ସାକ୍ଷିମାନେ ଥାଇ ଘୋଷଣା କରିବା ପରେ କରଣୋଧନପତ୍ରରେ ଏହା ଲେଖାଇ ଏ ସମସ୍ତଙ୍କ ସ୍ୱାକ୍ଷର କରାଇନେବାକୁ ହେବ । କୌଣସି ଜିନିଷ ଠିକ୍‌ଭାବେ ବଣ୍ଟା ନହୋଇ ଊଣାଅଧିକରେ ବଣ୍ଟା ହୋଇ ଯାଇଥିଲେ, ଭାଇମାନଙ୍କ ମଧ୍ୟରୁ କେହି କାହାକୁ କ'ଣ ଲୁଚାଇ ରଖିଥିଲେ, କୌଣସି ପଦାର୍ଥ ଅନ୍ତର୍ହିତ ହୋଇଯାଇଥିଲେ କିମ୍ବା ଅଜଣାଭାବେ ରହିଯାଇଥିବା ପଦାର୍ଥ ଜଣାପଡ଼ିଲେ ତାହା ପୁନରପି ବଣ୍ଟନ କରିନେବାକୁ ହେବ । (୧୫) ରାଜା ଦାୟାଦରହିତ ସମ୍ପତ୍ତିରୁ ଉକ୍ତ ସମ୍ପତ୍ତିର ମାଲିକର ସ୍ତ୍ରୀମାନଙ୍କ ଭରଣପୋଷଣ ପାଇଁ ଓ ଉକ୍ତବ୍ୟକ୍ତିର ପ୍ରେତକାର୍ଯ୍ୟ ପାଇଁ ଉପଯୁକ୍ତ ଧନ ବାଦଦେଇ ରାଜକୋଷରେ ମିଶାଇ ଦେବେ, ମାତ୍ର ଦାୟାଦରହିତ ଓ ବ୍ରାହ୍ମଣର ସମ୍ପତ୍ତିକୁ ରାଜକୋଷରେ ନ ମିଶାଇ ତ୍ରୈବିଦ୍ୟ ଅର୍ଥାତ୍ ଋକ୍, ଯଜୁ ଓ ସାମବେଦର ଅଧ୍ୟାପକ (ଗୁରୁ) ଓ ଉକ୍ତ ବେଦପାଠୀ ଛାତ୍ରମାନଙ୍କୁ ଦେଇଦେବେ । (୧୬) ପତିତ (ଧର୍ମାନ୍ତର-ଗ୍ରହଣକାରୀ ବା ଜାତିଚ୍ୟୁତ ବ୍ୟକ୍ତି), ପତିତର ସନ୍ତାନ ଓ ନପୁଂସକମାନେ ମୁଖ୍ୟତଃ ପୈତୃକସମ୍ପତ୍ତିର ଅଂଶଦାର ହୋଇପାରିବେ ନାହିଁ । ଜଡ଼ (ମୂକ), ଉନ୍ମତ୍ତ (ପାଗଳ), ଅନ୍ଧ ଓ କୁଷ୍ଠରୋଗିମାନେ ମଧ୍ୟ ପୈତୃକସମ୍ପତ୍ତିର ଅଂଶଦାର ହୋଇପାରିବେ ନାହିଁ । ଉକ୍ତ ଜଡ଼ାଦିମାନଙ୍କର ଭାର୍ଯ୍ୟାମାନେ ସ୍ତ୍ରୀଧନସହିତ ଯଦି ରହିଥାନ୍ତି ଓ ସେମାନଙ୍କର ଯଦି ଅଜଡ଼, ଅନୁନ୍ମତ୍ତ, ଅନନ୍ଧ ଓ ଅକୁଷ୍ଠୀ ପୁତ୍ରମାନେ ଥାନ୍ତି, ତେବେ ଏହି ପୁତ୍ରମାନେ ଉକ୍ତ ଜଡ଼ାଦିମାନଙ୍କ ସମ୍ପତ୍ତି ଏବଂ ମାତୃସମ୍ପତ୍ତିର ଅଂଶଦାର ହୋଇପାରିବେ । ପତିତଛଡ଼ା ଅନ୍ୟସମସ୍ତେ ପୈତୃକସମ୍ପତ୍ତିରୁ କେବଳ ଅନ୍ନବସ୍ତ୍ର ସକାଶେ ଆବଶ୍ୟକୀୟ ଧନ ପାଇବାକୁ

(୧୭) ତେଷାଂ ଚ କୃତଦାରାଣାଂ ଲୁପ୍ତେ ପ୍ରଜନନେ ସତି ।
ସୁତେଜ୍ୟୁର୍ବାନ୍ଧବାଃ ପୁତ୍ରାଂ ସ୍ତେଷାମଂଶାନ୍ ପ୍ରକଲ୍ପୟେତ୍ ॥

## ଷଷ୍ଠୋଽଧ୍ୟାୟଃ

## ଷଷ୍ଟିତମ ପ୍ରକରଣମ୍

## ଦାୟବିଭାଗଃ—ଅଂଶବିଭାଗଃ

## SPECIAL SHARES IN INHERITANCE

( ଦାୟବିଭାଗ ସମ୍ବନ୍ଧୀୟ ଜ୍ୟେଷ୍ଠ କନିଷ୍ଠାଦି ଅଂଶର ବିଚାର )

(୧) ଏକସ୍ତ୍ରୀପୁତ୍ରାଣାଂ ଜ୍ୟେଷ୍ଠାଂଶଃ ବ୍ରାହ୍ମଣାନାମଜାଃ, କ୍ଷତ୍ରିୟାଣାମଶ୍ୱାଃ, ବୈଶ୍ୟାନାଂ ଗାବଃ, ଶୂଦ୍ରାଣାମବୟଃ ।

---

ଅର୍ହ ହେବେ । (୧୭) ଉପରୋକ୍ତ ଜଡ଼, ଉନ୍ମତ୍ତ, ଅନ୍ଧ ଓ କୁଷ୍ଠରୋଗିମାନେ ଯଦି ପ୍ରଜନନଶକ୍ତିରହିତ ହୁଅନ୍ତି, ତେବେ ସେମାନଙ୍କ ବାନ୍ଧବମାନେ ଉକ୍ତ ଜଡ଼ାଦିଙ୍କ ସ୍ତ୍ରୀମାନଙ୍କ ସମ୍ଭୋଗ ପୂର୍ବକ ପୁତ୍ରଜାତକରି ସେମାନଙ୍କୁ ପୈତୃକସମ୍ପତ୍ତିର ଅଂଶଦାର କରାଇବେ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ପଞ୍ଚମୋଽଧ୍ୟାୟଃ । ଦାୟବିଭାଗେ ଦାୟକ୍ରମଃ—ଆଦିତୋ ଦ୍ୱିଷଷ୍ଟିତମଃ ।

---

(୧) ଗୋଟିଏ ସ୍ତ୍ରୀର ଯଦି ବହୁ ପୁତ୍ର ଥାନ୍ତି, ସେମାନେ ବ୍ରାହ୍ମଣ ହୋଇଥିଲେ ବଡ଼ପୁଅ ଜ୍ୟେଷ୍ଠାଂଶ ସ୍ୱରୂପ (ଯଜ୍ଞାଦି ସକାଶେ ଉତ୍କୃଷ୍ଟ ବିବେଚିତ ହେଉଥିବା) ଛାଗ, କ୍ଷତ୍ରିୟ ହୋଇଥିଲେ ବଡ଼ପୁଅ ଜ୍ୟେଷ୍ଠାଂଶ-ସ୍ୱରୂପ (ଯୁଦ୍ଧାଦି ସକାଶେ ଉତ୍କୃଷ୍ଟ ବିବେଚିତ ହେଉଥିବା) ଅଶ୍ୱ, ବୈଶ୍ୟ ହୋଇଥିଲେ ବଡ଼ପୁଅ ଜ୍ୟେଷ୍ଠାଂଶ ସ୍ୱରୂପ (ବାଣିଜ୍ୟ ସକାଶେ ଉପଯୋଗୀ ହେଉଥିବା) ଗୌ ଏବଂ ଶୂଦ୍ର ହୋଇଥିଲେ ବଡ଼ପୁଅ ଜ୍ୟେଷ୍ଠାଂଶ ସ୍ୱରୂପ (କୃଷି କ୍ରୀଡ଼ା ମାଂସାଦି ସକାଶେ ଉପଯୋଗୀ ହେଉଥିବା) ମେଷ (ମେଣ୍ଢା)

(୬) କାଣଲଂଗାସ୍ତେଷାଂ ମଧ୍ୟମାଂଶଃ, ଭିନ୍ନବର୍ଣାଃ କନିଷ୍ଠାଂଶଃ । (୩) ଚତୁଷ୍ପଦାଭାବେ ରତ୍ନବର୍ଜାନାଂ ଦଶାନାଂ ଭାଗଂ ଦ୍ରବ୍ୟାଣାମେକଂ ଜ୍ୟେଷ୍ଠୋହରେତ୍ । ପ୍ରତିମୁକ୍ତସ୍ୱଧାପାଶୋ ହି ଭବତି ଇତ୍ୟୌଶନସୋ ବିଭାଗଃ । (୪) ପିତୁଃ ପରିବାପାଦ୍ ଯାନମାଭରଣଂ ଚ ଜ୍ୟେଷ୍ଠାଂଶଃ, ଶୟ୍ୟାସନଂ ଭୁକ୍ତକାଂସ୍ୟଂ ଚ ମଧ୍ୟମାଂଶଃ, କୃଷ୍ଣଧାନ୍ୟାୟସଂ ଗୃହପରିବାପୋ ଗୋଶକଟଂ ଚ କନିଷ୍ଠାଂଶଃ । ଶେଷଦ୍ରବ୍ୟାଣାମେକଦ୍ରବ୍ୟସ୍ୟ ବା ସମୋ ବିଭାଗଃ । (୫) ଅଦାୟାଦା ଭଗିନ୍ୟଃ । ମାତୁଃ ପରିବାପାଦ୍ ଭୁକ୍ତକାଂସ୍ୟାଭରଣ-

---

ପାଇବେ । (୨) କଣା ଓ ଖୋଟା ହୋଇଥିବା ଛାଗ, ଅଶ୍ୱ, ଗୋ ଓ ମେଷଗୁଡ଼ିକୁ ଯଥାକ୍ରମେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଜାତିର ମଝିଅପୁଅମାନେ ମଧ୍ୟମାଂଶସ୍ୱରୂପ ପାଇବେ ଏବଂ ନାନାବର୍ଣ୍ଣର ଉପରୋକ୍ତ ଜନ୍ତୁମାନଙ୍କୁ ସାନପୁଅମାନେ ଯଥାକ୍ରମେ କନିଷ୍ଠାଂଶସ୍ୱରୂପ ପାଇବାକୁ ଅର୍ହ ହେବେ । (୩) ଛାଗାଦି ଚତୁଷ୍ପଦ ଜନ୍ତୁ ନଥିଲେ ରତ୍ନାଦି ଅତି ମୂଲ୍ୟବାନ୍ ପଦାର୍ଥଛଡ଼ା ଅନ୍ୟ ସମସ୍ତ ଦ୍ରବ୍ୟର ଦଶଭାଗରୁ ଏକଭାଗ ଜ୍ୟେଷ୍ଠାଂଶସ୍ୱରୂପ ବଡ଼ପୁଅ ପାଇବେ । କାରଣ, ବଡ଼ପୁଅଙ୍କର ପିତୃକର୍ମରୂପକ ପାଶ କଣ୍ଠରେ ବନ୍ଧା ହୋଇଥିବା ଯୋଗୁଁ ସେ ଶ୍ରାଦ୍ଧାଦି ପିତୃକାର୍ଯ୍ୟର ବ୍ୟୟାଦି ସକାଶେ ଏହି ଜ୍ୟେଷ୍ଠାଂଶ ପାଇଥାନ୍ତି । ଔଶନକ ଅର୍ଥାତ୍ ଶୁକ୍ରାଚାର୍ଯ୍ୟଙ୍କ ମତାବଲମ୍ବୀମାନେ ଉକ୍ତପ୍ରକାରେ ଜ୍ୟେଷ୍ଠକନିଷ୍ଠାଦି ଅଂଶର ସିଦ୍ଧାନ୍ତ କରିଅଛନ୍ତି । (୪) ପିତାଙ୍କ ମୃତ୍ୟୁପରେ ତାଙ୍କ ବ୍ୟବହୃତ ପଦାର୍ଥମାନଙ୍କ ମଧ୍ୟରୁ ଯାନ ଓ ଆଭରଣ (ଘୋଡ଼ା, ଗାଡ଼ୀ, ସବାରି, ଶଗଡ଼ ଓ କୁଣ୍ଡଳ, କଙ୍କଣ, ଖଡ଼ୁକା ପ୍ରଭୃତି) ବଡ଼ପୁଅ ଜ୍ୟେଷ୍ଠାଂଶରୂପେ ପାଇବେ । ଶଯ୍ୟା, ଆସନ, ଭୋଜନାଦିରେ ବ୍ୟବହୃତ ହୋଇଥିବା କଂସା, ଗିନା, ଥାଳୀ ଓ ଢ଼ାଳ ପ୍ରଭୃତି ମଝିଅ ପୁଅମାନେ ମଧ୍ୟମାଂଶରୂପେ ପାଇବେ । ବିରି, ଚଣା, ମୁଗ, ସୋରିଷ, ରାଶି ପ୍ରଭୃତି କୃଷ୍ଣଧାନ୍ୟ, ଖଣ୍ଡା, କାତି, କୁରାଢ଼ୀ ପ୍ରଭୃତି ଲୌହମୟ ପଦାର୍ଥ, ମୂଷଳ, କାତୁଆ, ଢ଼ିଙ୍କି ପ୍ରଭୃତି ଗୃହୋପକରଣ ଓ ବଳଦ, ଶଗଡ଼ ଇତ୍ୟାଦି ସାନପୁଅ କନିଷ୍ଠାଂଶରୂପେ ପାଇବେ ଏବଂ ଅବଶିଷ୍ଟ ପଦାର୍ଥମାନଙ୍କୁ ସମସ୍ତେ ସମଭାଗରେ ବଣ୍ଟନ କରି ନେବେ । (୫) ଭଉଣୀମାନେ ଦାୟଭାଗର

ଭଗିନ୍ୟଃ । (୭) ମାନୁଷହୀନୋ ଜ୍ୟେଷ୍ଠସ୍ତୃତୀୟମଂଶଂ ଜ୍ୟେଷ୍ଠାଂଶାଲ୍ଲଭେତ । ଚତୁର୍ଥମନ୍ୟାୟବୃତ୍ତିର୍ନିବୃତ୍ତଧର୍ମକାର୍ଯ୍ୟୋ ବା । କାମାଚରଃ ସର୍ବଂ ଜୀୟେତ । (୭) ତେନମଧ୍ୟମକନିଷ୍ଠୌ ବ୍ୟାଖ୍ୟାତୌ । ତୟୋର୍ମାନୁଷୋପେତୋ ଜ୍ୟେଷ୍ଠାଂଶାଦର୍ଦ୍ଧଂ ଲଭେତ । (୮) ନାନାସ୍ତ୍ରୀପୁତ୍ରାଣାଂ ତୁ ସଂସ୍କୃତାସଂସ୍କୃତୟୋଃ କନ୍ୟାକୃତକ୍ଷୀୟୟୋରଭାବେ ଚ ଏକସ୍ୟାଃ ପୁତ୍ରୟୋର୍ଯମୟୋର୍ବା

---

ଅଧିକାରଣୀ ନୁହନ୍ତି । କିନ୍ତୁ ମାତାଙ୍କ ମୃତ୍ୟୁପରେ ସେମାନେ ମାତାଙ୍କ ବ୍ୟବହୃତ କାଂସ୍ୟାଦି ପାତ୍ର ଓ ସୁବର୍ଣ୍ଣାଦି ଅଳଙ୍କାର ବସ୍ତ୍ର ପ୍ରଭୃତି ପାଇବାକୁ ଅର୍ହ ହେବେ । (୭) ବଡ଼ପୁଅ ଯଦି ମନୁଷ୍ୟ ସାଧାରଣ ଗୁଣରହିତ ହୋଇଥାଏ ତେବେ ସେ ପ୍ରାପ୍ୟ ଜ୍ୟେଷ୍ଠାଂଶର ତିନିଭାଗରୁ ଏକଭାଗ ପାଇବ, ଦେବପିତୃପୂଜାଦି ଧର୍ମକାର୍ଯ୍ୟରହିତ ଓ ଅସଦ୍‌ବୃତ୍ତି ହୋଇଥିଲେ ଚାରିଭାଗରୁ ଏକଭାଗ ଏବଂ ସ୍ବେଚ୍ଛାଚାରୀ (ଭ୍ରଷ୍ଟାଚାର) ହୋଇଥିଲେ ଜ୍ୟେଷ୍ଠାଂଶରୁ ଏକବାରକେ ବଞ୍ଚିତ ହେବ । (୭) ମଧ୍ୟମ ଓ କନିଷ୍ଠ ପୁଅମାନଙ୍କ ବିଷୟ ମଧ୍ୟ ଉପରୋକ୍ତ ପ୍ରକାରେ ବୁଝିବାକୁ ହେବ । ଏ ଦୁହିଙ୍କମଧ୍ୟରୁ ଯେ କି ଯୋଗ୍ୟ ଓ ମନୁଷ୍ୟଗୁଣଯୁକ୍ତ ସେ ତାର ପ୍ରାପ୍ୟ ଅଂଶ ପାଇବା ସଙ୍ଗେ ସଙ୍ଗେ ଜ୍ୟେଷ୍ଠାଂଶରୁ ଅଧେ ଅତିରିକ୍ତ ଭାଗ ପାଇବ । (୮) କୌଣସି ପୁରୁଷର ଯଦି ବହୁତ ସ୍ତ୍ରୀ ଥାନ୍ତି ସେହି ସ୍ତ୍ରୀମାନଙ୍କ ମଧ୍ୟରେ ଯଦି ବ୍ରାହ୍ମ ପ୍ରଭୃତି ବିବାହ ବିଧିରେ ବିବାହିତା ସଂସ୍କୃତା ସ୍ତ୍ରୀ ଏବଂ ଗାନ୍ଧର୍ବ ପ୍ରଭୃତି ବିବାହବିଧିରେ ବିବାହିତା ଅସଂସ୍କୃତା ସ୍ତ୍ରୀ, ଅକ୍ଷତଯୋନି (କନ୍ୟା) ଅବସ୍ଥାରେ ବିବାହିତା ସ୍ତ୍ରୀ ଏବଂ କ୍ଷତଯୋନି ଅବସ୍ଥାରେ ବିବାହିତା ସ୍ତ୍ରୀ ନଥାନ୍ତି, ତେବେ ଉକ୍ତ ସାଧାରଣ ସ୍ତ୍ରୀମାନଙ୍କର ପୁତ୍ରମାନଙ୍କ ମଧ୍ୟରୁ ଯେ କି ପ୍ରଥମରେ ଜନ୍ମଗ୍ରହଣ କରିଥାଏ ସେ ଜ୍ୟେଷ୍ଠ ବୋଲି ବିବେଚିତ ହେବ । କିନ୍ତୁ ସଂସ୍କୃତା ସ୍ତ୍ରୀର ପୁତ୍ର କନିଷ୍ଠ ହେଲେ ମଧ୍ୟ ଅସଂସ୍କୃତା ସ୍ତ୍ରୀର ବୟୋଜ୍ୟେଷ୍ଠ ପୁତ୍ର ଥିବା ସତ୍ତ୍ୱେ ଉକ୍ତ ସଂସ୍କୃତା ସ୍ତ୍ରୀର ପୁତ୍ରହିଁ ଜ୍ୟେଷ୍ଠ ବୋଲି ବିବେଚିତ ହେବ । ସେପରି ଅକ୍ଷତଯୋନି ଅବସ୍ଥାରେ ବିବାହିତା ସ୍ତ୍ରୀର ପୁତ୍ର କନିଷ୍ଠ ହେଲେହେଁ କ୍ଷତଯୋନି ଅବସ୍ଥାରେ ବିବାହିତା ସ୍ତ୍ରୀର ବୟୋଜ୍ୟେଷ୍ଠ ପୁତ୍ରଠାରୁ ମଧ୍ୟ ଜ୍ୟେଷ୍ଠ ବୋଲି ବିବେଚିତ ହେବ । ଯମଜ (ଯାଅଁଳା) ପୁତ୍ରମାନଙ୍କ ମଧ୍ୟରୁ

ପୂର୍ବଜନ୍ମନା ଜ୍ୟେଷ୍ଠଭାବଃ । (୯) ସୂତମାଗଧବ୍ରାତ୍ୟରଥକାରାଣା-
ମୈଶ୍ୱର୍ଯ୍ୟତୋ ବିଭାଗଃ ଶେଷାସ୍ତମୁପଜୀବେୟୁଃ । ଅନୀଶ୍ୱରାଃ
ସମବିଭାଗା ଇତି । (୧୦) ଚାତୁର୍ବର୍ଣ୍ୟପୁତ୍ରାଣାଂ ବ୍ରାହ୍ମଣୀପୁତ୍ର-
ଶ୍ଚତୁରୋଽଂଶାନ୍ ହରେତ୍, କ୍ଷତ୍ରିୟାପୁତ୍ରସ୍ତ୍ରୀନଂଶାନ୍, ବୈଶ୍ୟା
ପୁତ୍ରୋଦ୍ୱାବଂଶୌ, ଏକଂ ଶୂଦ୍ରାପୁତ୍ରଃ । ତେନ ତ୍ରିବର୍ଣ୍ଣଦ୍ୱିବର୍ଣ୍ଣ

---

ଯେ ପ୍ରଥମେ ଜନ୍ମଗ୍ରହଣ କରିଥାଏ ସେ ଜ୍ୟେଷ୍ଠ ବୋଲି ବିବେଚିତ ହେବ । (୯) ସୂତ (କ୍ଷତ୍ରିୟ ପୁରୁଷଦ୍ୱାରା ବ୍ରାହ୍ମଣୀ ଗର୍ଭଜାତ ସନ୍ତାନ), ମାଗଧ (ବୈଶ୍ୟ ପୁରୁଷଦ୍ୱାରା କ୍ଷତ୍ରିୟାସ୍ତ୍ରୀ ଗର୍ଭଜାତ ସନ୍ତାନ), ବ୍ରାତ୍ୟ (ସଂସ୍କାରହୀନ ଅର୍ଥାତ୍ ବ୍ରତୋପନୟନରହିତ ବ୍ରାହ୍ମଣଦ୍ୱାରା ସ୍ୱଜାତୀୟ ସ୍ତ୍ରୀର ଗର୍ଭଜାତ ସନ୍ତାନ ଓ ଏତାଦୃଶ କ୍ଷତ୍ରିୟ ଏବଂ ବୈଶ୍ୟ ସନ୍ତାନ) ଓ ରଥକାର ଇତ୍ୟାଦି ପୁତ୍ରମାନଙ୍କ ମଧ୍ୟରେ ଯେ କି ପ୍ରଭାବଶାଳୀ, ସେ ସମସ୍ତ ପୈତୃକ ସମ୍ପତ୍ତିର ଅଧିକାରୀ ହେବେ ଏବଂ ଅନ୍ୟ ପୁତ୍ରମାନେ ଉକ୍ତ ପ୍ରଭାବଶାଳୀ ଭାଇଙ୍କର ଅନୁଗତ ହୋଇ ଜୀବିକା ନିର୍ବାହ କରିବେ । ଯଦି ଉକ୍ତ ସୂତ ମାଗଧାଦି ପୁତ୍ରମାନଙ୍କ ମଧ୍ୟରେ କେହିହେଲେ ପ୍ରଭାବଶାଳୀ ନ ହୁଅନ୍ତି, ତେବେ ସେହି ସମସ୍ତ ପୁତ୍ରମାନେ ସମଭାଗରେ ପୈତୃକ ସମ୍ପତ୍ତିର ଅଧିକାରୀ ହେବେ । ଏହି ପ୍ରକାରେ ଅନ୍ୟାନ୍ୟ ସଙ୍କରଜାତୀୟ ପୁତ୍ରମାନେ ପୈତୃକ ସମ୍ପତ୍ତିର ଅଧିକାରୀ ହେବେ । (୧୦) ବ୍ରାହ୍ମଣ ଯଦି ଚାରିବର୍ଣ୍ଣର କନ୍ୟାକୁ ବିବାହ କରି ସନ୍ତାନୋତ୍ପତ୍ତି କରିଥାଏ, ତେବେ ପୈତୃକ ସମ୍ପତ୍ତିରୁ ଜ୍ୟେଷ୍ଠାଂଶ ବାଦଦେଇ ଅବଶିଷ୍ଟ ସମ୍ପତ୍ତିକୁ ଦଶଭାଗରେ ବିଭକ୍ତ କରି ସେଥିରୁ ଚାରିଭାଗ ବ୍ରାହ୍ମଣୀଗର୍ଭଜାତ ପୁତ୍ର, ତିନିଭାଗ କ୍ଷତ୍ରିୟାଗର୍ଭଜାତ ପୁତ୍ର, ଦୁଇଭାଗ ବୈଶ୍ୟାଗର୍ଭଜାତ ପୁତ୍ର ଓ ଏକଭାଗ ଶୂଦ୍ରାଗର୍ଭଜାତ ପୁତ୍ର ନେବାକୁ ଅର୍ହ ହେବେ । କିନ୍ତୁ ବାଦ ଦିଆଯାଇଥିବା ଜ୍ୟେଷ୍ଠାଂଶ ବ୍ରାହ୍ମଣୀଗର୍ଭଜାତ ପୁତ୍ର ପାଇବାକୁ ଅର୍ହ ହେବେ । ଏହି କ୍ରମରେ କ୍ଷତ୍ରିୟ ଓ ବୈଶ୍ୟର ତ୍ରିବର୍ଣ୍ଣ, ଦ୍ୱିବର୍ଣ୍ଣଜାତ ପୁତ୍ରମାନଙ୍କ ଅଂଶବିଭାଗ ବୁଝିବାକୁ ହେବ । ଅର୍ଥାତ୍ କ୍ଷତ୍ରିୟ ପୁରୁଷଠାରୁ କ୍ଷତ୍ରିୟା, ବୈଶ୍ୟା ଓ ଶୂଦ୍ରା ସ୍ତ୍ରୀଗର୍ଭଜାତ ପୁତ୍ରମାନେ ଜ୍ୟେଷ୍ଠାଂଶ ବାଦଦେଇ ପୈତୃକ ସମ୍ପତ୍ତିକୁ ଛଅଭାଗ କରି ଯଥାକ୍ରମେ ତିନିଭାଗ, ଦୁଇଭାଗ ଓ ଏକଭାଗ ପାଇବାକୁ ଅର୍ହ ହେବେ । ଏହି ନିୟମରେ ବୈଶ୍ୟପୁରୁଷଠାରୁ ବୈଶ୍ୟା ଓ ଶୂଦ୍ରା ସ୍ତ୍ରୀ-

**ପୁତ୍ରବିଷଗଃ କ୍ଷତ୍ରିୟବୈଶ୍ୟୟୋର୍ବ୍ୟାଖ୍ୟାତଃ । (୧୧) ବ୍ରାହ୍ମଣସ୍ୟାନନ୍ତରପୁତ୍ରସ୍ତୁଲ୍ୟାଂଶଃ । କ୍ଷତ୍ରିୟବୈଶ୍ୟୟୋରର୍ଦ୍ଧାଂଶଃ । ତୁଲ୍ୟାଂଶୋ ବା ମାନୁଷୋପେତଃ । (୧୨) ତୁଲ୍ୟାତୁଲ୍ୟୟୋରେକପୁତ୍ରଃ ସର୍ବଂହରେଦ୍‌ବନ୍ଧୂଂଶ୍ଚ ବିଭୃୟାତ୍ । (୧୩) ବ୍ରାହ୍ମଣାନାନ୍ତୁ ପାରଶବସ୍ତୃତୀୟମଂଶଂ ଲଭେତ । ଦ୍ୱାବଂଶୌ ସପିଣ୍ଡଃ କୁଲ୍ୟା**

ଗର୍ଭଜାତ ପୁତ୍ରମାନେ ଜ୍ୟେଷ୍ଠାଂଶ ବାଦଦେଇ ପୈତୃକ ସମ୍ପତ୍ତିକୁ ତିନିଭାଗ କରି ଯଥାକ୍ରମେ ଦୁଇଭାଗ ଓ ଏକଭାଗକୁ ଅର୍ହ ହେବେ । ଜ୍ୟେଷ୍ଠାଂଶ ଯଥାକ୍ରମେ ସ୍ୱଜାତୀୟ ଜ୍ୟେଷ୍ଠପୁତ୍ର ପାଇବାକୁ ଅର୍ହ ହେବେ । (୧୧) ବ୍ରାହ୍ମଣର ଚତୁର୍ବର୍ଣ୍ଣର ବିବାହିତା ସ୍ତ୍ରୀମାନଙ୍କ ମଧ୍ୟରୁ ଯଦି କେବଳ ବ୍ରାହ୍ମଣୀ ଓ କ୍ଷତ୍ରିୟାର ଏକ ଏକ ପୁତ୍ର ଥାନ୍ତି କିନ୍ତୁ ବୈଶ୍ୟା ଶୂଦ୍ରା ସ୍ତ୍ରୀର ପୁତ୍ର ନଥାନ୍ତି, ତେବେ ଜ୍ୟେଷ୍ଠାଂଶ ଛାଡ଼ି ଉକ୍ତ ପୁତ୍ରମାନେ ପୈତୃକ ସମ୍ପତ୍ତି ସମଭାଗରେ ବଣ୍ଟନ କରିନେବେ । କ୍ଷତ୍ରିୟର ତିନିବର୍ଣ୍ଣର ବିବାହିତା ସ୍ତ୍ରୀମାନଙ୍କ ମଧ୍ୟରୁ ଯଦି କେବଳ କ୍ଷତ୍ରିୟା ଓ ବୈଶ୍ୟା ସ୍ତ୍ରୀର ଏକ ଏକ ପୁତ୍ର ଥାନ୍ତି କିନ୍ତୁ ଶୂଦ୍ରା ସ୍ତ୍ରୀର ପୁତ୍ର ନଥାଏ, ତେବେ ଜ୍ୟେଷ୍ଠାଂଶ ଛଡ଼ା ପୈତୃକ ସମ୍ପତ୍ତିରୁ ବୈଶ୍ୟାପୁତ୍ର କ୍ଷତ୍ରିୟାପୁତ୍ରର ଅର୍ଦ୍ଧଭାଗ ପାଇବ । ବୈଶ୍ୟର ଦୁଇବର୍ଣ୍ଣ ବିବାହିତା ସ୍ତ୍ରୀମଧ୍ୟରୁ ସବର୍ଣ୍ଣା ସ୍ତ୍ରୀଠାରୁ ଏକ ଏବଂ ଶୂଦ୍ରା ସ୍ତ୍ରୀଠାରୁ ଏକ ପୁତ୍ର ଜାତହୋଇଥିଲେ ଜ୍ୟେଷ୍ଠାଂଶ ଛଡ଼ା ପୈତୃକ ସମ୍ପତ୍ତିରୁ ଶୂଦ୍ରାପୁତ୍ର ବୈଶ୍ୟାପୁତ୍ରର ଅର୍ଦ୍ଧଭାଗ ପାଇବ । କିନ୍ତୁ ବୈଶ୍ୟାପୁତ୍ର ପୁରୁଷଗୁଣୋପେତ ଅର୍ଥାତ୍ ଯୋଗ୍ୟ ଓ ଚରିତ୍ରବାନ୍ ହୋଇଥିଲେ ପୈତୃକ ସମ୍ପତ୍ତିରୁ କ୍ଷତ୍ରିୟାପୁତ୍ରର ସମାନ ଭାଗ ପାଇବ ଏବଂ ଶୂଦ୍ରାପୁତ୍ର ଯୋଗ୍ୟ ଓ ଚରିତ୍ରବାନ୍ ହୋଇଥିଲେ ପୈତୃକ ସମ୍ପତ୍ତିରୁ ବୈଶ୍ୟାପୁତ୍ରର ସମାନ ଭାଗ ପାଇବ । (୧୨) ସବର୍ଣ୍ଣା ଓ ଅସବର୍ଣ୍ଣା ସ୍ତ୍ରୀମାନଙ୍କ ମଧ୍ୟରେ ଗୋଟିଏ ସ୍ତ୍ରୀର ଯଦି ଗୋଟିଏ କେବଳ ପୁତ୍ର ଥାଏ, ଅନ୍ୟସ୍ତ୍ରୀମାନଙ୍କର ପୁତ୍ର ନଥାଏ, ତେବେ ଏହି ପୁତ୍ର ସମସ୍ତ ପୈତୃକ ସମ୍ପତ୍ତିର ଅଧିକାରୀ ହୋଇ ସମସ୍ତ ପିତୃବନ୍ଧୁମାନଙ୍କର ଅର୍ଥାତ୍ ବିମାତା ଇତ୍ୟାଦିଙ୍କର ଭରଣପୋଷଣର ଭାର ଗ୍ରହଣ କରିବ । (୧୩) ଯଦି ବ୍ରାହ୍ମଣର କେବଳ ଶୂଦ୍ରା-ସ୍ତ୍ରୀଜାତ ଏକମାତ୍ର ପୁତ୍ର ଥାଏ, ଅନ୍ୟସ୍ତ୍ରୀମାନଙ୍କ ପୁତ୍ର ନଥାଏ, ତେବେ ସେହି ଶୂଦ୍ରାପୁତ୍ର ପୈତୃକ ସମ୍ପତ୍ତିର ତିନିଭାଗରୁ ଏକଭାଗ ମାତ୍ର ପାଇବ । ଅନ୍ୟ

ବା ସନ୍ତଃ ସ୍ୱଧାଦାନହେତୋଃ । ତଦଭାବେ ପିତୁରାଚାର୍ଯ୍ୟୋଽନ୍ତେବାସୀ ବା ।

(୧୪) କ୍ଷେତ୍ରେ ବା ଜନୟେଦସ୍ୟ ନିଯୁକ୍ତଃ କ୍ଷେତ୍ରଜଂ ସୁତଂ ।
ମାତୃବନ୍ଧୁଃ ସଗୋତ୍ରୋ ବା ତସ୍ମୈ ତତ୍ ପ୍ରଦିଶେଦ୍ଧନଂ ॥

---

ଦୁଇଭାଗ ଶ୍ରାଦ୍ଧ କରିବାକୁ ଯୋଗ୍ୟ ବିବେଚିତ ହୋଇଥିବା ପୁତ୍ରର ପ୍ରକୃତି ମାନେ, ଏମାନଙ୍କ ଅଭାବରେ ପିତୃବଂଶୀୟ ସମାନୋଦକ ବ୍ୟକ୍ତିମାନେ ଅଥବା ଏମାନଙ୍କ ଅଭାବରେ ସ୍ୱଜାତୀୟ ଅନ୍ତରଙ୍ଗ ବନ୍ଧୁମାନେ ପିଣ୍ଡଦାନ ସକାଶେ ପାଇବାକୁ ଅର୍ହ ହେବେ । ଏହି ସମସ୍ତଙ୍କ ଅଭାବରେ ପିତାଙ୍କ ଆଚାର୍ଯ୍ୟ (ଗୁରୁ, ପୁରୋହିତାଦି) କିମ୍ବା ପିତାଙ୍କର ପ୍ରିୟଶିଷ୍ୟ ଉପରୋକ୍ତ ଦୁଇଟି ଅଂଶ ପାଇବାକୁ ଅର୍ହ ହେବେ । (୧୪) ପୁତ୍ରାଭାବରେ ସବର୍ଣ୍ଣା ସ୍ତ୍ରୀଠାରେ ନିଯୋଗ ବିଧାନାନୁସାରେ ନିଯୁକ୍ତ ହୋଇଥିବା ସଗୋତ୍ର ବା ଉକ୍ତ ସ୍ତ୍ରୀର କୌଣସି ବନ୍ଧୁ 'କ୍ଷେତ୍ରଜ ପୁତ୍ର' ଉତ୍ପନ୍ନ କରିପାରିବ ଏବଂ ଏହି କ୍ଷେତ୍ରଜ ପୁତ୍ର ସମସ୍ତ ପୈତୃକ ସମ୍ପତ୍ତିର ଅଧିକାରୀ ହେବ ।

ଇତି କୌଟଲ୍ୟୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଷଷ୍ଠୋଽଧ୍ୟାୟଃ ।
ଦାୟବିଭାଗେଽଂଶବିଭାଗଃ—ଆଦିତଃ ଷଷ୍ଟିତମଃ ।

## ସପ୍ତମୋଽଧ୍ୟାୟଃ

## ଷଷ୍ଟିତମ ପ୍ରକରଣମ୍—ଦାୟବିଭାଗଃ—ପୁତ୍ରବିଭାଗଃ

### DISTINCTION BETWEEN SONS

( ମୁଖ୍ୟାମୁଖ୍ୟ ଭେଦରେ କେଉଁ ପୁତ୍ର କପର୍ 'ଦାୟାଦ' ଅର୍ଥାତ୍ କୁଳସାଧାରଣ ସମ୍ପତ୍ତିର ଅଧିକାରୀ ହେବ ତାହାର ନିର୍ଣ୍ଣୟ )

**(୧) ପରପରିଗ୍ରହେ ବୀଜମୁତ୍ସୃଷ୍ଟଂ କ୍ଷେତ୍ରିଣ ଇତ୍ୟାଚାର୍ଯ୍ୟାଃ । ମାତା ଭସ୍ତ୍ରା ଯସ୍ୟ ରେତସ୍ତସ୍ୟାପତ୍ୟମ୍ ଇତ୍ୟପରେ । ବିଦ୍ୟମାନ-ମୁଭୟମିତି କୌଟଲ୍ୟଃ । (୨) ସ୍ୱୟଂଜାତଃ କୃତକ୍ରିୟାୟାମୌରସଃ । ତେନତୁଲ୍ୟଃ ପୁତ୍ରିକାପୁତ୍ରଃ । ସଗୋତ୍ରେଣାନ୍ୟଗୋତ୍ରେଣ ବା**

---

(୧) ନିୟୋଗ ବିଧି ଅନୁସାରେ ଅନ୍ୟର ସ୍ତ୍ରୀଗର୍ଭରେ ବୀଜଉତ୍ସର୍ଗ କରି ପୁତ୍ରୋତ୍ପାଦନ କରିବା ବ୍ୟକ୍ତି ଉକ୍ତ ପୁତ୍ରର ପିତା ହୁଏ ନାହିଁ, କିନ୍ତୁ ବୀଜଧାରଣ କରିବା ସ୍ତ୍ରୀର ପତି ସେହି ପୁତ୍ରର ପିତା ହୁଏ ବୋଲି କେତେକ ଆଚାର୍ଯ୍ୟଙ୍କର ମତ । ଅନ୍ୟାଚାର୍ଯ୍ୟମାନଙ୍କ ମତରେ ମାତା କେବଳ ଭସ୍ତ୍ରା ଅର୍ଥାତ୍ ଚମଥଲି ପରି ବୀଜଧାରଣ ଯୋଗ୍ୟା ଅଟେ । ଏଥିରେ ଯେଉଁ ବ୍ୟକ୍ତି ବୀଜପାତ କରି ପୁତ୍ରଜନ୍ମ କରିବ, ସେହି ପୁତ୍ରର ସେ କେବଳ ପିତା ହେବ ସିନା ଉକ୍ତ ସ୍ତ୍ରୀର ପତି ପିତା ହୋଇପାରିବ ନାହିଁ । କିନ୍ତୁ କୌଟିଲ୍ୟଙ୍କ ମତରେ ବୀଜପ୍ରଦ ବ୍ୟକ୍ତି ଓ ସ୍ତ୍ରୀର ବିବାହିତ ପତି ଉଭୟେ ଏହି କ୍ଷେତ୍ରଜ ପୁତ୍ରର ଯଥାକ୍ରମେ ବୀଜପ୍ରଦ ପିତା ଓ ଧର୍ମପିତା ହେବେ । (୨) ବିବାହିତାସ୍ତ୍ରୀଠାରେ ନିଜଦ୍ୱାରା ଉତ୍ପନ୍ନ ହେବା ପୁତ୍ରକୁ ଔରସ କୁହାଯାଏ ଏବଂ ଝିଅର ପୁଅକୁ (ନାତିକୁ) * ମଧ୍ୟ 'ଔରସ' ପୁତ୍ରତୁଲ୍ୟ ସ୍ୱୀକାର କରାଯାଏ । ସଗୋତ୍ର ବ୍ୟକ୍ତି ବା ପରଗୋତ୍ର ବ୍ୟକ୍ତିଦ୍ୱାରା ନିୟୋଗ ବିଧି ଅନୁସାରେ ନିଜଭାର୍ଯ୍ୟାର ଗର୍ଭରୁ ଉତ୍ପନ୍ନ ହେବା ପୁତ୍ରକୁ 'କ୍ଷେତ୍ରଜ' ପୁତ୍ର କୁହାଯାଏ । ଅନ୍ୟର ସ୍ତ୍ରୀଠାରେ ରେତଃପାତକରି କ୍ଷେତ୍ରଜ ପୁତ୍ର ଉତ୍ପନ୍ନ

---

* ଅସ୍ୟାଂ ଯୋ ଜାୟତେ ଗର୍ଭଃ ସ ମେ ପୁତ୍ରୋ ଭବିଷ୍ୟତି ।

ଏହି ବାକ୍ୟ ଅନୁସାରେ ଜାମାତାକୁ (ଜୋଇଁପୁଅ)କୁ ପ୍ରତିଜ୍ଞାତ କରାଇଥିବା ଯୋଗୁଁ ଦାନ କରିଥିବା ଝିଅର ପୁଅ ସ୍ୱପୁତ୍ରତୁଲ୍ୟ ଅଟେ ।

ନିଯୁକ୍ତେନ କ୍ଷେତ୍ରଜାତଃ କ୍ଷେତ୍ରଜଃ ପୁତ୍ରଃ । ଜନୟିତୁରସତ୍ୟସ୍ମିନ୍ ପୁତ୍ରେ ସ ଏବ ଦ୍ୱିପିତୃକୋ ଦ୍ୱିଗୋତ୍ରୋ ବା ଦ୍ୱୟୋରପି ସ୍ୱଧାରିକ୍‌ଥଭାକ୍ ଭବତି । ତତ୍ସଧର୍ମା ବନ୍ଧୂନାଂ ଗୃହେ ଗୂଢ଼ଜାତସ୍ତୁ ଗୂଢ଼ଜଃ । ବନ୍ଧୁନୋତ୍ସୃଷ୍ଟୋଽପବିଦ୍ଧଃ ସଂସ୍କର୍ତୁଃ ପୁତ୍ରଃ । କନ୍ୟାଗର୍ଭଃ କାନୀନଃ । ସଗର୍ଭୋଢ଼ାୟାଃ ସହୋଢ଼ଃ । ପୁନର୍ଭୂତାୟାଃ ପୌନର୍ଭବଃ । (୩) ସ୍ୱୟଂଜାତଃ ପିତୃବନ୍ଧୂନାଂ ଚ ଦାୟାଦଃ ।

---

କରିଥିବା ବ୍ୟକ୍ତିର ଯଦି ଔରସ ପୁତ୍ର ନଥାଏ, ତେବେ ଏହି କ୍ଷେତ୍ରଜ ପୁତ୍ର ଜନ୍ମଦାତା ପିତା ଓ ଧର୍ମପିତାଙ୍କ ଏକମାତ୍ର ପୁତ୍ର ହେବାଯୋଗୁଁ 'ଦ୍ୱିପିତୃକ' ବା 'ଦ୍ୱିଗୋତ୍ରକ' ପୁତ୍ରରୂପେ ପରିଚିତ ହୋଇ ଦୁଇପିତୃଙ୍କର ଶ୍ରାଦ୍ଧାଦି ପାରଲୌକିକ କାର୍ଯ୍ୟ ସାଧନ ପୂର୍ବକ ଦୁହିଙ୍କ ଦାୟଧନର ଅଧିକାରୀ ହୁଏ । ✱ ପତିର ଅଜଣାରେ କୌଣସି ସ୍ତ୍ରୀ ବନ୍ଧୁମାନଙ୍କ ଗୃହରେ ରହି ଗୋପନରେ ଅନ୍ୟଦ୍ୱାରା ଉତ୍ପନ୍ନ କରିଥିବା ପୁତ୍ରକୁ 'ଗୂଢ଼ଜ' କୁହାଯାଏ ଏବଂ ଏହି 'ଗୂଢ଼ଜ' ପୁତ୍ର ମଧ୍ୟ 'କ୍ଷେତ୍ରଜ' ପୁତ୍ର ତୁଲ୍ୟ ବିବେଚିତ ହୁଏ । ଏହି 'ଗୂଢ଼ଜ' ପୁତ୍ର ଯଦି ବନ୍ଧୁମାନଙ୍କ ଦ୍ୱାରା ପରିତ୍ୟକ୍ତ ହୁଏ ଅର୍ଥାତ୍ ଏମାନେ ଯଦି ସାମାଜିକ-କଟକଣା ଭୟରେ ଏହାକୁ ଫିଙ୍ଗିଦିଅନ୍ତି କିମ୍ବା ଜନ୍ମ କରିଥିବା ପିତାମାତା କୌଣସି ପୁତ୍ରକୁ ଏପରି ଫିଙ୍ଗିଦିଅନ୍ତି, ତେବେ ଏହାକୁ 'ଅପବିଦ୍ଧ' ପୁତ୍ର କୁହାଯାଏ ଏବଂ ଏହାକୁ ଗୋଟାଇ ନେଇ ବ୍ରତବିବାହାଦି ସଂସ୍କାର କରିଇବା ବ୍ୟକ୍ତିର ହିଁ ଏ ପୁତ୍ରରୂପେ ଗୃହୀତ ହୁଏ । ଅବିବାହିତା କନ୍ୟା ଗର୍ଭରୁ ଜାତହେବା ପୁତ୍ରକୁ 'କାନୀନ' କୁହାଯାଏ, ଗର୍ଭ ହୋଇଥିବା ଅବସ୍ଥାରେ ବିବାହିତା ସ୍ତ୍ରୀର ପୁତ୍ରକୁ 'ସହୋଢ଼' କୁହାଯାଏ ଏବଂ ପୁନର୍ବିବାହିତା ସ୍ତ୍ରୀର ପୁତ୍ରକୁ 'ପୌନର୍ଭବ' କୁହାଯାଏ । (ପୁନର୍ଭୂ ବା ପୁନର୍ବିବାହିତା ସ୍ତ୍ରୀ ତିନିପ୍ରକାର—ଯୁବତୀ ହେବା ପୂର୍ବରୁ ପତିର ମୃତ୍ୟୁଘଟିବା ହେତୁ ଅନ୍ୟକୁ ବିବାହ କରିବା ସ୍ତ୍ରୀ, ନିଜର ପତିକୁ ଛାଡ଼ି ଅନ୍ୟ ପତିକୁ ଆଶ୍ରୟ କରିବା ସ୍ତ୍ରୀ ଏବଂ ପତିର ଅକାଳମୃତ୍ୟୁ ଯୋଗୁଁ ଦ୍ୱିତୀୟ ବିବାହ କରିବା ସ୍ତ୍ରୀ) । (୩) ସ୍ୱୟଂଜାତ ଅର୍ଥାତ୍ ଔରସ ପୁତ୍ର, ନିଜ ପିତୃ ଓ ପିତୃବନ୍ଧୁ

---

✱ କ୍ଷେତ୍ରୀସ୍ୱାନୁମତଂ ବୀଜଂ ଯସ୍ୟ କ୍ଷେତ୍ରେ ପ୍ରରୋହତି ।
ତଦପତ୍ୟଂ ତୟୋରେବ ବୀଜକ୍ଷେତ୍ରୀୟୟୋର୍ମତଂ ॥

**ପରଜାତଃ ସଂସ୍କର୍ତୁରେବ ନ ବନ୍ଧୂନାମ୍ । (୪) ତତ୍ସଧର୍ମା ମାତାପିତୃଭ୍ୟାମଦ୍ଭିର୍ଦତ୍ତୋ ଦତ୍ତଃ । ସ୍ୱୟଂ ବନ୍ଧୁଭିର୍ବା ପୁତ୍ର-ଭାବୋପଗତ ଉପଗତଃ । ପୁତ୍ରତ୍ୱେଽଧିକୃତଃ କୃତକଃ । ପରକ୍ରୀତଃ କ୍ରୀତ ଇତି । (୫) ଔରସେ ତୁତ୍ପନ୍ନେ ସବର୍ଣ୍ଣାସ୍ତୃତୀୟାଂଶହରାଃ । ଅସବର୍ଣ୍ଣା ଗ୍ରାସାଚ୍ଛାଦନଭାଗିନଃ । ବ୍ରାହ୍ମଣକ୍ଷତ୍ରିୟୟୋରନନ୍ତର ପୁତ୍ରାଃ ସବର୍ଣ୍ଣାଃ, ଏକାନ୍ତର ଅସବର୍ଣ୍ଣାଃ । (୬) ବ୍ରାହ୍ମଣସ୍ୟ ବୈଶ୍ୟାୟାମମ୍ବଷ୍ଠଃ, ଶୂଦ୍ରାୟାଂ ନିଷାଦଃ ପାରଶବୋ ବା ।**

---

ଅର୍ଥାତ୍ କକା ଦଦା ଇତ୍ୟାଦିଙ୍କ ସମ୍ପତ୍ତିର (ଦାୟଧନର) ଅଧିକାରୀ ହୋଇ ପାରିବ କିନ୍ତୁ କ୍ଷେତ୍ରଜ ପୁତ୍ର କେବଳ ପୈତୃକ ସମ୍ପତ୍ତି ବ୍ୟତୀତ ପିତୃବନ୍ଧୁ-ମାନଙ୍କ ସଂପତ୍ତିର ଅଧିକାରୀ ହୋଇ ପାରିବ ନାହିଁ । (୪) ମାତାପିତା ମନ୍ତ୍ରଜଳ ଉତ୍ସର୍ଗ ପୂର୍ବକ ଅନ୍ୟର ବଂଶରକ୍ଷାର୍ଥେ ଯେଉଁ ଔରସପୁତ୍ରକୁ ପ୍ରଦାନ କରନ୍ତି ତାହାକୁ 'ଦତ୍ତ' ପୁତ୍ର କୁହାଯାଏ ଏବଂ ଏହି ଦତ୍ତପୁତ୍ର ଔରସ ପୁତ୍ରତୁଲ୍ୟ ବିବେଚିତ ହୁଏ । ଯେଉଁ ପୁତ୍ର ସ୍ୱତଃପ୍ରବୃତ୍ତ ହୋଇ ବା ନିଜ ବନ୍ଧୁମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇ ଅନ୍ୟବ୍ୟକ୍ତିର ପୁତ୍ର ହେବାକୁ ସ୍ୱୀକାର କରେ ତାହାକୁ 'ଉପଗତ' କୁହାଯାଏ । ଯାହାକୁ 'ତୁ ମୋର ପୁତ୍ର' ବୋଲି କୌଣସି ବ୍ୟକ୍ତି ଆଗ୍ରହରେ ଗ୍ରହଣ କରେ ସେହି ପୁତ୍ରକୁ 'କୃତକ' ଏବଂ ମାତାପିତାଙ୍କୁ ପୁତ୍ରର ମୂଲ୍ୟ ଦେଇ ତାଙ୍କଠାରୁ କିଣି ଆଣିବା ପୁତ୍ରକୁ 'କ୍ରୀତ' କୁହାଯାଏ । ଏପରି ଏଠାରେ ପୁତ୍ରବିଭାଗ ଶେଷ ହେଲା । (୫) ଔରସ ପୁତ୍ର ଥିବା ସତ୍ତ୍ୱେ ସବର୍ଣ୍ଣା ସ୍ତ୍ରୀଠାରୁ ଯଦି ଅନ୍ୟ ପୁତ୍ର ଜାତ ହୁଅନ୍ତି ତେବେ ସେମାନେ ପୈତୃକ ସମ୍ପତ୍ତିର ଏକ ତୃତୀୟାଂଶ (ତିନିଭାଗରୁ ଏକଭାଗ) ପାଇବେ ଏବଂ ଅସବର୍ଣ୍ଣା ସ୍ତ୍ରୀଠାରୁ ଜାତହେବା ପୁତ୍ରମାନେ କେବଳ ଅନ୍ନବସ୍ତ୍ର ସକାଶେ ଆବଶ୍ୟକ ହେବା ଧନ ପାଇବାକୁ ଅର୍ହ ହେବେ । (ପୈତୃକ ସମ୍ପତ୍ତିର ତିନିଭାଗରୁ ଦୁଇଭାଗ ଔରସ ପୁତ୍ର ପାଇବ) । ବ୍ରାହ୍ମଣର କ୍ଷତ୍ରିୟାଠାରୁ ଜାତ ଅନ୍ତରପୁତ୍ରକୁ ସବର୍ଣ୍ଣ ଏବଂ କ୍ଷତ୍ରିୟର ବୈଶ୍ୟାଠାରୁ ଜାତ ଅନ୍ତରପୁତ୍ରକୁ ସବର୍ଣ୍ଣ କୁହାଯାଏ । ସେହିପରି ବ୍ରାହ୍ମଣର ବୈଶ୍ୟାଠାରୁ ଜାତ ଅନ୍ତରପୁତ୍ରକୁ ଅସବର୍ଣ୍ଣ ଏବଂ କ୍ଷତ୍ରିୟର ଶୂଦ୍ରାଠାରୁ ଜାତ ଅନ୍ତରପୁତ୍ରକୁ ଅସବର୍ଣ୍ଣ କୁହାଯାଏ । (୬) ବ୍ରାହ୍ମଣର ବୈଶ୍ୟାଠାରୁ ଜାତହେବା ପୁତ୍ରକୁ

**କ୍ଷତ୍ରିୟସ୍ୟ ଶୂଦ୍ରାୟାମୁଗ୍ରଃ । ଶୂଦ୍ର ଏବ ବୈଶ୍ୟସ୍ୟ । ସବର୍ଣାସୁ ଚୈଷାମଚରିତବ୍ରତେଭ୍ୟୋ ଜାତା 'ବ୍ରାତ୍ୟଃ' । ଇତ୍ୟନୁଲୋମାଃ । (୭) ଶୂଦ୍ରାଦାୟୋଗବକ୍ଷତ୍ତଚଣ୍ଡାଳାଃ । ବୈଶ୍ୟାନ୍ମାଗଧ**

---

'ଅମ୍ବଷ୍ଠ' ଏବଂ ଶୂଦ୍ରାଠାରୁ ଜାତହେବା ପୁତ୍ରକୁ 'ନିଷାଦ' ବା 'ପାରଶବ' କୁହାଯାଏ । ସେହିପରି କ୍ଷତ୍ରିୟର ଶୂଦ୍ରାଠାରୁ ଜାତହେବା ପୁତ୍ରକୁ 'ଉଗ୍ର' ଏବଂ ବୈଶ୍ୟର ଶୂଦ୍ରାଠାରୁ ଜାତହେବା ପୁତ୍ରକୁ ମଧ୍ୟ 'ଶୂଦ୍ର' କୁହାଯାଏ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ମଧ୍ୟରୁ ବ୍ରତସଂସ୍କାରାଦି ଦ୍ୱାରା ସଂସ୍କୃତ ନ ହୋଇଥିବା ଓ ବିବାହିତ ହୋଇଥିବା ପୁରୁଷଦ୍ୱାରା ସବର୍ଣ୍ଣା ସ୍ତ୍ରୀଠାରୁ ଜାତହେବା ପୁତ୍ରକୁ 'ବ୍ରାତ୍ୟ' କୁହାଯାଏ । ଏପରି ଏଠାରେ ଅନୁଲୋମଜାତ ବିଷୟକ ଆଲୋଚନା ଶେଷ ହେଲା । (୭) ଶୂଦ୍ରର ବୈଶ୍ୟାଠାରୁ ଜାତ ପୁତ୍ରକୁ 'ଆୟୋଗବ', କ୍ଷତ୍ରିୟାଠାରୁ ଜାତ ପୁତ୍ରକୁ 'କ୍ଷତ୍ତ' ଏବଂ ବ୍ରାହ୍ମଣୀଠାରୁ ଜାତ ପୁତ୍ରକୁ 'ଚଣ୍ଡାଳ' କୁହାଯାଏ । ବୈଶ୍ୟର କ୍ଷତ୍ରିୟାଠାରୁ ଜାତ ପୁତ୍ରକୁ 'ମାଗଧ' ଏବଂ ବ୍ରାହ୍ମଣୀଠାରୁ ଜାତ ପୁତ୍ରକୁ 'ବୈଦେହକ' କୁହାଯାଏ । କ୍ଷତ୍ରିୟର ବ୍ରାହ୍ମଣୀଠାରୁ ଜାତ ପୁତ୍ରକୁ 'ସୂତ' କୁହାଯାଏ । କିନ୍ତୁ ପୃଥୁଚକ୍ରବର୍ତ୍ତୀଙ୍କ ପୁଷ୍କରପଙ୍କାଗ୍ନିରୁ ଜାତ ହୋଇଥିବା 'ସୂତ' ଓ 'ମାଗଧ' ଉକ୍ତ ପ୍ରକାରର ନୁହନ୍ତି । ଏପରି କି ଏମାନେ ବ୍ରାହ୍ମଣ, କ୍ଷତ୍ରିୟଠାରୁ ମଧ୍ୟ ଉତ୍କୃଷ୍ଟ ଅଟନ୍ତି ବୋଲି ପୌରାଣିକ ପ୍ରମାଣ ଅଛି । ଅର୍ଥାତ୍ 'ସୂତ' ବ୍ରାହ୍ମଣଠାରୁ ଅଧିକ ଓ 'ମାଗଧ' କ୍ଷତ୍ରିୟଠାରୁ ଅଧିକ ଅଟନ୍ତି ବୋଲି ପ୍ରମାଣ ଅଛି । ଏଦୁହେଁ ପୃଥୁଚକ୍ରବର୍ତ୍ତୀଙ୍କର ଯଥାକ୍ରମେ ପୁରାଣପ୍ରବକ୍ତା (ପୁରାଣପଣ୍ଡା) ଏବଂ ସ୍ତୋତ୍ର ପାଠକ ଭାବରେ ପରିଚିତ * । ଉପରୋକ୍ତ ଆୟୋଗବାଦି ପ୍ରତିଲୋମ

---

* ହସ୍ତେ ତୁ ଦକ୍ଷିଣେ ତସ୍ୟ ଦୃଷ୍ଟ୍ୱାଚକ୍ରଂ ପିତାମହଃ ।
ବିଷ୍ଣୋରଂଶଂ ପୃଥୁଂ ମତ୍ୱା ପରିତୋଷଂ ପରଂ ଯଯୌ ।
ତସ୍ୟୈବ ଜାତମାତ୍ରସ୍ୟ ଯଜ୍ଞେ ପୈତାମହେ ଶୁଭେ ।
ସୂତଃ ସୂତ୍ୟାଂ (ଯଜ୍ଞାଭିଷବଭୂମୌ) ସମୁତ୍ପନ୍ନଃ ସୌତ୍ୟେଽହନି ମହାମତିଃ ।
ତସ୍ମିନ୍ନେବ ମହାଯଜ୍ଞେ ଜଜ୍ଞେ ପ୍ରାଜ୍ଞୋଽଥ ମାଗଧଃ ॥ ବିଷ୍ଣୁପୁରାଣ, ୧ମ ଖଣ୍ଡ, ୧୩ ଅ: ।

ବ୍ରାହ୍ମଣଃ ପୌଷ୍କରେ ଯଜ୍ଞେ ସୁତ୍ୟାହେ ବିତତେ ସତି ।
ପୃଷଦାଜ୍ୟାତ୍ ସମୁତ୍ପନ୍ନଃ ସୂତଃ ପୌରାଣିକୋ ଦ୍ୱିଜଃ ।
ବକ୍ତା ବେଦାଦିଶାସ୍ତ୍ରାଣାଂ ତ୍ରିକାଳାମଳଧର୍ମବିତ୍ ॥ ଅଗ୍ନିପୁରାଣ, ୧ମ ଅଧ୍ୟାୟ ।

ବୈଦେହକୌ । କ୍ଷତ୍ରିୟାଦ୍ ସୂତଃ । ପୌରାଣିକସ୍ତ୍ୱନ୍ୟଃ ସୂତୋ ମାଗଧଶ୍ଚ ବ୍ରହ୍ମକ୍ଷତ୍ରାଦ୍ ବିଶେଷତଃ । ତ ଏତେ ପ୍ରତିଲୋମାଃ ସ୍ୱଧର୍ମାତିକ୍ରମାଦ୍ ରାଜ୍ଞଃ ସମ୍ଭବନ୍ତି । (୮) ଉଗ୍ରାନ୍ନୈଷାଦ୍ୟାଂ କୁକ୍କୁଟକଃ, ବିପର୍ଯ୍ୟୟେ ପୁଲ୍କସଃ । ବୈଦେହିକାୟାମମ୍ବଷ୍ଠାଦ୍ ବୈଣଃ, ବିପର୍ଯ୍ୟୟେ କୁଶୀଳବଃ । କ୍ଷତ୍ତାୟାମୁଗ୍ରାଚ୍ଛ୍ୱପାକଃ । ଇତ୍ୟେତେଽନ୍ୟେ ଚାନ୍ତରାଳାଃ । କର୍ମଣା ବୈଣ୍ୟୋ ରଥକାରଃ । (୯) ତେଷାଂ ସ୍ୱଯୋନୌ ବିବାହଃ । ପୂର୍ବାପରଗାମିତ୍ୱଂ ବୃତ୍ତାନୁ-

ସନ୍ତାନମାନେ ରାଜାଙ୍କର ସ୍ୱଧର୍ମ ଅତିକ୍ରମ ଦୋଷରୁ ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟାଦି ବର୍ଣ୍ଣ ଓ ବ୍ରହ୍ମଚର୍ଯ୍ୟ ବାନପ୍ରସ୍ଥାଦି ଆଶ୍ରମଧର୍ମିଙ୍କୁ ଯଥାରୀତିରେ ସ୍ୱଧର୍ମପାଳନ କରାଇନପାରିବା ଦୋଷରୁ ଜାତ ହୋଇଥାନ୍ତି । (୮) କ୍ଷତ୍ରିୟ ପୁରୁଷ ଓ ଶୂଦ୍ରା ସ୍ତ୍ରୀଠାରୁ ଜାତ 'ଉଗ୍ର' ନାମକ ପୁରୁଷଦ୍ୱାରା ବ୍ରାହ୍ମଣପୁରୁଷ ଓ ଶୂଦ୍ରା ସ୍ତ୍ରୀଠାରୁ ଜାତ 'ନିଷାଦ'ର ସ୍ତ୍ରୀଗର୍ଭସମ୍ଭୂତ ପୁତ୍ରକୁ 'କୁକ୍କୁଟକ' ଏବଂ ନିଷାଦପୁରୁଷ ଓ ଉଗ୍ରସ୍ତ୍ରୀଠାରୁ ସମ୍ଭୂତ ପୁତ୍ରକୁ 'ପୁଲ୍କସ' କୁହାଯାଏ । ବୈଦେହକ କନ୍ୟାଠାରୁ 'ଅମ୍ବଷ୍ଠ' ପୁରୁଷଦ୍ୱାରା ଜାତହେବା ପୁତ୍ରକୁ 'ବୈଣ', ଏହାର ବିପରୀତ ରୀତିରେ ଜାତହେବା ପୁତ୍ରକୁ 'କୁଶୀଳବ' ଏବଂ 'କ୍ଷତ୍ତ୍ରୀ'ର ଗର୍ଭରୁ 'ଉଗ୍ର' ପୁରୁଷଦ୍ୱାରା ଜାତହେବା ପୁତ୍ରକୁ 'ଶ୍ୱପାକ' କୁହାଯାଏ । ଏସମସ୍ତ ଜାତି ଏବଂ ଏପରି ଅନ୍ୟଜାତିମାନେ ଅନ୍ତରାଳ ଅର୍ଥାତ୍ ବର୍ଣ୍ଣଜାତି ଅନ୍ତରାଳ ଜାତି 'ବର୍ଣ୍ଣସଙ୍କର' ଜାତି ନାମରେ ପରିଚିତ । 'ବୈଣ' ଜାତୀୟ ଲୋକେ ଲଂଘନ-ପ୍ଲବନ (ଡେଇଁବା ଓ ପହଁରିବା) ଇତ୍ୟାଦି ନିଜର ବୃତ୍ତି ପରିତ୍ୟାଗ କରି ବଢ଼େଇ ବୃତ୍ତି କରିବା ଯୋଗୁଁ ଏମାନଙ୍କୁ 'ରଥକାର' କୁହାଯାଏ ଯିନା 'ରଥକାର' ନାମରେ କୌଣସି ସ୍ୱତନ୍ତ୍ର ଜାତି ଥିବାର ଦେଖାଯାଏ ନାହିଁ । (୯) ଉକ୍ତ ଅନ୍ତରାଳ ଜାତିର ଲୋକମାନେ ସ୍ୱଜାତିରେ ହିଁ ବିବାହ କରିବାକୁ ହେବ, ଅର୍ଥାତ୍ ଅମ୍ବଷ୍ଠ ଅମ୍ବଷ୍ଠୀ ସହିତ,

ତ୍ୱିଷ୍ଟ୍ୱା ସୂତ ! ମହାବୁଦ୍ଧେ ! ଭଗବାନ୍ ବ୍ରହ୍ମବିତ୍ତମଃ ।
ଇତିହାସ ପୁରାଣାର୍ଥଂ ବ୍ୟାସଃ ସମ୍ୟଗୁପାସିତଃ ।
ତ୍ୱଂ ହି ସ୍ୱାୟଂଭୁବେ ଯଜ୍ଞେ ସୁତ୍ୟାହେ ବିତତେ ସତି ।
ସମ୍ଭୂତଃ ସଂହିତାଂ ବକ୍ତୁଂ ସ୍ୱାଂଶେନ ପୁରୁଷୋତ୍ତମଃ ॥ କୌର୍ମ ପୁରାଣ, ପ୍ରଥମାଧ୍ୟାୟ ।

ବୃତ୍ତଂ ଚ ସ୍ୱଧର୍ମାନ୍ ସ୍ଥାପୟେତ୍ । ଶୂଦ୍ରସଧର୍ମାଣୋ ବା ଅନ୍ୟତ୍ର ଚଣ୍ଡାଳେଭ୍ୟଃ । (୧୦) କେବଳମେବଂ ବର୍ତମାନଃ ସ୍ୱର୍ଗମାପ୍ନୋତି ରାଜା ନରକମନ୍ୟଥା । (୧୧) ସର୍ବେଷାମନ୍ତରାଳାନାଂ ସମୋ ବିଭାଗଃ । (୧୨) ଦେଶସ୍ୟ ଜାତ୍ୟାଃ ସଂଘସ୍ୟ ଧର୍ମୋ ଗ୍ରାମସ୍ୟ ବାପି ଯଃ । ଉଚିତସ୍ତସ୍ୟ ତେନୈବ ଦାୟଧର୍ମଂ ପ୍ରକଳ୍ପୟେତ୍ ॥

—o—

ନିଷାଦ ନିଷାଦୀ ସହିତ ବିବାହ କରିବାକୁ ହେବ । ଅମ୍ବଷ୍ଠାଦିଙ୍କଠାରୁ ଉତ୍କୃଷ୍ଟ ସଙ୍କର ଜାତିର ପୁରୁଷମାନେ ନିଷାଦାଦି ନିକୃଷ୍ଟ ଜାତିର ସ୍ତ୍ରୀମାନଙ୍କୁ ବିବାହ କରି ପାରନ୍ତି । କିନ୍ତୁ ନିଷାଦାଦି ପୁରୁଷମାନେ ଅମ୍ବଷ୍ଠାଦି ସ୍ତ୍ରୀମାନଙ୍କୁ ବିବାହ କରିବା ନିଷେଧ । ରାଜା ବା ଧର୍ମସ୍ଥ (ନ୍ୟାୟାଧୀଶ) ପୂର୍ବୋକ୍ତର ଅନୁବର୍ତ୍ତିନ ପୂର୍ବକ ସ୍ୱଧର୍ମ ସ୍ଥାପନ କରିବେ । ଚଣ୍ଡାଳ ବ୍ୟତୀତ ଅନ୍ୟସମସ୍ତ ସଙ୍କର ଜାତୀୟ ଲୋକଙ୍କୁ ଶୂଦ୍ରମାନଙ୍କ ପରି କର୍ତ୍ତବ୍ୟପାଳନ କରିବାକୁ ନିର୍ଦ୍ଦେଶ ଦେବେ । (ଅର୍ଥାତ୍ ଚଣ୍ଡାଳବ୍ୟତୀତ ଅନ୍ୟ ସମସ୍ତ ସଙ୍କରଜାତୀୟ ଲୋକେ ଆର୍ଯ୍ୟସମାଜରେ ଶୂଦ୍ରତୁଲ୍ୟ ପରିଗଣିତ ହେବେ) । (୧୦) ଉପରୋକ୍ତ ପ୍ରକାରେ ବର୍ଣ୍ଣଧର୍ମର ବ୍ୟବସ୍ଥା କଲେ ରାଜାଙ୍କର ସ୍ୱର୍ଗପ୍ରାପ୍ତି ହୁଏ ଏବଂ ଏହାର ଅନ୍ୟଥା କଲେ ଅର୍ଥାତ୍ ବର୍ଣ୍ଣାଶ୍ରମଧର୍ମକୁ ବ୍ୟାଭିଗ୍ରସ୍ତ କଲେ ନରକ ପ୍ରାପ୍ତିହୁଏ । (୧୧) ସମସ୍ତ ଅନ୍ତରାଳ ଜାତିମାନଙ୍କ ପୈତୃକ ସମ୍ପତ୍ତି ଭାଇଭଉଣୀ ନିର୍ବିଶେଷରେ ଜ୍ୟେଷ୍ଠାଂଶ ନଥାଇ ସମସ୍ତେ ସମାନ ଭାଗରେ ବଣ୍ଟନ କରି ନେବେ । (୧୨) ଭିନ୍ନ ଭିନ୍ନ ଦେଶ, ଜାତି, ସଂଘ (ସମ୍ପ୍ରଦାୟ ବା ସମାଜ) ଓ ଗ୍ରାମମାନଙ୍କରେ ଅବିଦ୍ୟମାନକାଳରୁ ଦାୟଭାଗ ବିଷୟରେ ଯେଉଁ ସବୁ ଚିରାଚରିତ ପ୍ରଥା ଚଳିଆସୁଛି, ତଦନୁସାରେ ହିଁ ଦାୟଭାଗର ବ୍ୟବସ୍ଥା କରିବାକୁ ହେବ ।

ଇତି କୌଟଲ୍ୟୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ସପ୍ତମୋଽଧ୍ୟାୟଃ ।

ଦାୟବିଭାଗେ ପୁତ୍ରବିଭାଗଃ, ଦାୟବିଭାଗଃ ସମାପ୍ତ ।

ଆଦିତଃ ଚତୁଷ୍ଷଷ୍ଟିତମୋଽଧ୍ୟାୟଃ ।

## ଅଷ୍ଟମୋଽଧ୍ୟାୟଃ

## ଏକଷଷ୍ଟିତମ ପ୍ରକରଣମ୍—ବାସ୍ତୁକମ୍

**BUILDINGS**

( ଘର, ବଗିଚ୍ଚ ଓ ଖିଲ ବାଡ଼ ପ୍ରଭୃତି ସ୍ଥାବର ସମ୍ପତ୍ତିର ନିର୍ଣ୍ଣୟ )

**(୧) ସାମନ୍ତପ୍ରତ୍ୟୟା ବାସ୍ତୁବିବାଦାଃ । (୨) ଗୃହଂ କ୍ଷେତ୍ର-ମାରାମଂ ସେତୁବନ୍ଧସ୍ତଟାକମାଧାରେ ବା ବାସ୍ତୁଃ । (୩) କର୍ଣ୍ଣକୀଲାୟସସମ୍ବନ୍ଧୋଽନୁଗୃହଂ ସେତୁଃ । ଯଥାସେତୁଭୋଗଂ ବେଶ୍ମ କାରୟେତ୍ । (୪) ଅଭୂତଂ ବା ପରକୁଡ୍ୟାଦପକ୍ରମ୍ୟ ଦ୍ୱାବରତ୍ନୀ ତ୍ରିପଦୀଂ ପାଦେ ବନ୍ଧଂ କାରୟେତ୍ । (୫) ଅବସ୍କରଂ**

---

(୧) ବାସ୍ତୁ ସମ୍ବନ୍ଧୀୟ ବିବାଦଗୁଡ଼ିକର ନିଷ୍ପତ୍ତି ପାଖପଡ଼ିଶା ଲୋକଙ୍କ-ଠାରୁ ମିଳିବା ଯୁକ୍ତିଯୁକ୍ତ ପ୍ରମାଣ ଉପରେ ହିଁ ନିର୍ଭର କରେ । (୨) ଗୃହ, କୃଷିକ୍ଷେତ୍ର, ବଗିଚ୍ଚ, ସେତୁବନ୍ଧ (ସୀମାବନ୍ଧ ବା ଫଳଫୁଲର ବାଡ଼, ଅଖୁବାଡ଼, ଅମ୍ବତୋଟା, ପାନବରଜ ଓ ନାନାବିଧ ଗୃହ), ପୁଷ୍କରିଣୀ ଓ ଜଳଭଣ୍ଡାର (ଧାଇ) ଇତ୍ୟାଦିକୁ 'ବାସ୍ତୁ' କୁହାଯାଏ । (୩) ନିଜ ଅଧିକାରରେ ଥିବା ଜାଗାର ଭୌଗୋଳିକ ପରିସ୍ଥିତି ଅନୁସାରେ ଉକ୍ତ ଜାଗାର ଚତୁର୍ଦ୍ଦିଗରେ ଲୁହା କମ୍ବା କାଠର ଖୁଣ୍ଟ ପୋତି, ଲୁହାତାର ବେଢ଼ାଇ ତିଆରି କରିବା ବାଡ଼କୁ 'ସେତୁ' ବା 'ସୀମାବନ୍ଧ' କୁହାଯାଏ । ଏହି ସୀମାବନ୍ଧକୁ ଅତିକ୍ରମ ନକରି ନିଜ ଦଖଲରେ ଥିବା ଜାଗାରେ ହିଁ ଘର ଇତ୍ୟାଦି ତିଆରି କରିବାକୁ ହେବ । (୪) ପୂର୍ବରୁ ଏପରି ସୀମାବନ୍ଧ ନଥିଲେ ପଡ଼ୋଶୀ ଗୃହର ପୁନାଦଠାରୁ ଦୁଇହାତ କମ୍ବା ତିନିପାଦ ଦୂରରେ ନିଜର ଭୂମିଉପରେ ଉକ୍ତ କାନ୍ଥ ବା ପୁନାଦର ପାଦଦେଶରେ ଗୋଟିଏ ଢ଼ୁଡ଼ା ପକାଇ ଦେବାକୁ ହେବ । (୫) ସୂତିକାର ସ୍ନାନଜଳ ଭର୍ତ୍ତିକରିବା ଅସ୍ଥାୟୀ ଗର୍ତ୍ତ ବ୍ୟତୀତ ମଳମୂତ୍ରତ୍ୟାଗ ସ୍ଥାନ (ପାଇଖାନା), ମଇଳାପାଣି ନିଷ୍କାସନ କରିବା ନଳା ବା ଜଳନିର୍ଗମଦ୍ୱାର ଓ କୂପ ବାଦ୍ଧି ପ୍ରଭୃତି ଗୃହୋଚିତ ସ୍ଥାନ, ମାର୍ଗ ଓ ପାନୀୟ ଜଳାଶୟଗୁଡ଼ିକୁ ପାଖପଡ଼ିଶା ଘରକୁ କୌଣସି ବାଧା ନ ହେବାଭଳି

ଭ୍ରମମୁଦପାନଂ ବା ନ ଗୃହୋଚିତମନ୍ୟତ୍ର ଅନ୍ୟତ୍ର ସୂତିକାକୂପାଦା ନିର୍ଦଶାହାଦିତି । ତସ୍ୟାତିକ୍ରମେ ପୂର୍ବଃ ସାହସଦଣ୍ଡଃ । (୬) ତେନେନ୍ଧନାବଘାତନକୃତଂ କଲ୍ୟାଣକୃତ୍ୟେଷ୍ୱାଚମୋଦକମାର୍ଗାଶ୍ଚ ବ୍ୟାଖ୍ୟାତାଃ । (୭) ତ୍ରିପଦୀପ୍ରତିକ୍ରାନ୍ତମଧ୍ୟର୍ଧମରତ୍ନିଂ ବା ପ୍ରବେଶ୍ୟ ଗାଢ଼ ପ୍ରସୃତମୁଦକମାର୍ଗଂ ପ୍ରସ୍ରବଣପ୍ରପାତଂ ବା କାରୟେତ୍ । ତସ୍ୟାତିକ୍ରମେ ଚତୁଷ୍ପଞ୍ଚାଶତ୍ପଣୋ ଦଣ୍ଡଃ । (୮) ଏକପଦୀ-ପ୍ରତିକ୍ରାନ୍ତମରତ୍ନିଂ ବା ଚକ୍ରିଚତୁଷ୍ପଦସ୍ଥାନମଗ୍ନିଷ୍ଠମ୍ ଉଦଞ୍ଜରସ୍ଥାନଂ ରୋଚନୀଂ କୁଟ୍ଟନୀଂ ବା କାରୟେତ୍ । ତସ୍ୟାତିକ୍ରମେ ଚତୁର୍ବିଂଶତି-

---

ଯଥାଯୋଗ୍ୟ ସ୍ଥାନରେ କରାଇବେ । କିନ୍ତୁ ସୂତିକା ସକାଶେ ନିଜ ଗୃହ ହତାର ଯେ କୌଣସି ସୁବିଧା ଜାଗାରେ ଖୋଲାଯାଇଥିବା ଅସ୍ଥାୟୀ ଗର୍ତ୍ତକୁ କେବଳ ଦଶଦିନ ପର୍ଯ୍ୟନ୍ତ ରଖି ତା'ପରେ ତାକୁ ସଫାକରି ଶୁଦ୍ଧ ମୃତ୍ତିକାଦ୍ୱାରା ସମାନ କରି ଦେବାକୁ ହେବ । ଉପରୋକ୍ତ ପାଇଖାନା ପ୍ରଭୃତିର ନିର୍ମାଣବିଧି ଉଲ୍ଲଂଘନ କରି ସେଗୁଡ଼ିକୁ ଯଥାଯୋଗ୍ୟ ସ୍ଥାନରେ ନ କରାଇବା ବ୍ୟକ୍ତି ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (୬) ଉକ୍ତ ସୂତିକା କୂପର ନିୟମାନୁସାରେ ବ୍ରତବିବାହାଦି ମାଙ୍ଗଳିକ କାର୍ଯ୍ୟରେ ମଧ୍ୟ କାଠହଣା, ମଳମୂତ୍ରତ୍ୟାଗ-ଗର୍ତ୍ତ ଓ ଅପରିଷ୍କୃତ ଜଳନିଷ୍କାସନ ମାର୍ଗ ବା ଅପରିଷ୍କୃତ ଜଳ ଜମାକରିବା ଗର୍ତ୍ତକୁ କେବଳ ଭୋଜିସରିବା ପର୍ଯ୍ୟନ୍ତ ଯେ କୌଣସି ସୁବିଧା ଜାଗାରେ କରି ଭୋଜି ସରିବା ପରେ ସେଗୁଡ଼ିକୁ ପୋତାପୋତି କରି ସ୍ଥାନଟିକୁ ସଫା କରିଦେବାକୁ ହେବ ବୋଲି ଏଥିଦ୍ୱାରା ବ୍ୟାଖ୍ୟାତ ହେଲା । (୭) ପଡ଼ିଶା ଘରର କାନ୍ଥଠାରୁ ତିନିପାଦ ଛାଡ଼ି ମଇଳାପାଣି ଯିବା ସକାଶେ ନାଳୀ ଖୋଳିବାକୁ ହେବ କିମ୍ବା ମାଟିତଳେ ପର ବାସ୍ତୁରୁ ଗୃହଖଣ୍ଡେ ମଡ଼ାଇ ସୁଦୃଢ଼ ଓ ସୁଦୀର୍ଘ ଜଳନିଷ୍କାସନ ପ୍ରଣାଳୀ କରାଇବାକୁ ହେବ । ଅଥବା ସମସ୍ତ ଅପରିଷ୍କୃତ ଜଳ ଏକାଠି ଗୋଟିଏ ଜାଗାରେ ପଡ଼ି ଗଳିଯିବା ଭଳି ବ୍ୟବସ୍ଥା କରାଇବାକୁ ହେବ । ଏହି ନିୟମ ଲଂଘନ କରିବା ବ୍ୟକ୍ତି ଚଉବନ ପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୮) ପଡ଼ିଶାଘରଠାରୁ ଏକପାଦ ବା ଏକହସ୍ତ ଦୂରରେ ଗାଈ, ଛେଳି, ଘୋଡ଼ା ଓ ହାତୀ ବନ୍ଧାହେବା ସ୍ଥାନ, ଚୁଲ୍ଲୀ, ଜଳକୁଣ୍ଡ ବା ବଡ଼ ବଡ଼ ପାଣିହାଣ୍ଡି, ପେଷଣୀ, ଉଲୂଖଳ

ପଣୋ ଦଣ୍ଡଃ । (୯) ସର୍ବବାସ୍ତୁକୟୋଃ ପ୍ରାକ୍ଷିପ୍ତକୟୋର୍ବା ଶାଳୟୋଃ କିଷ୍କୁରନ୍ତରକା ତ୍ରିପଦୀ ବା । ତୟୋଶ୍ଚତୁରଙ୍ଗୁଳଂ ନୀପ୍ରାନ୍ତରଂ ସମାରୂଢ଼କଂ ବା । କିଷ୍କୁମାତ୍ରମାଣିଦ୍ୱାରମନ୍ତରକାୟାଂ ଖଣ୍ଡଫୁଲ୍ଲାର୍ଥ-ମସଂପାତଂ କାରୟେତ୍ । ପ୍ରକାଶାର୍ଥମଲ୍ପମୂର୍ଧ୍ୱଂ ବାତାୟନଂ କାରୟେତ୍ । ସମ୍ଭୂୟ ବା ଗୃହସ୍ୱାମିନୋ ଯଥେଷ୍ଟଂ କାରୟେୟୁ-ରନିଷ୍ଟଂ କାରୟେୟୁଃ । (୧୦) ବାନଲଟ୍ୟାଶ୍ଚୋର୍ଦ୍ଧ୍ୱମାବାର୍ଯଭାଗଂ କଟପ୍ରଚ୍ଛନ୍ନମବମର୍ଶଭିତ୍ତିଂ ବା କାରୟେଦ୍ ବର୍ଷବାଧଭୟାତ୍ । ତସ୍ୟାତିକ୍ରମେ ପୂର୍ବଃ ସାହସଦଣ୍ଡଃ । (୧୧) ପ୍ରତିଲୋମଦ୍ୱାର

ଇତ୍ୟାଦିର ସ୍ଥାନ ନିରୂପଣ କରିବାକୁ ହେବ । ଏହି ନିୟମ ଉଲ୍ଲଂଘନ କରିବା ବ୍ୟକ୍ତି ଚବିଶପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୯) ସମସ୍ତ ଘର ବା ପରସ୍ପର ନିକଟବର୍ତ୍ତୀ ଘରଗୁଡ଼ିକ ହାତେ ଅଠଅଙ୍ଗୁଳ କିମ୍ବା ତିନିପାଦ ଛାଡ଼ ଛାଡ଼ରେ କରିବାକୁ ହେବ ଏବଂ ପ୍ରତ୍ୟେକର ଛାତ ଚୁରଚୁର ଅଙ୍ଗୁଳ ଛାଡ଼ରେ କିମ୍ବା ଗୃହସ୍ୱାମିମାନେ ଏକମତ ହୋଇ ଗୋଟିକ ଉପରେ ଗୋଟିଏ ମଡ଼ାଇ କରିପାରିବେ । ଦୁଇଘର ମଧ୍ୟରେ ଥିବା ଗଳିମୁହଁରେ କିଷ୍କୁ ଅର୍ଥାତ୍ ଏକହାତ ଅଠ ଅଙ୍ଗୁଳ ଚୌଡ଼ାର ଗୋଟିଏ କ୍ଷୁଦ୍ର ଦ୍ୱାର ଲଗାଯିବ, ଯହିଁରେ ମନୁଷ୍ୟ ସୁବିଧାରେ ପଶି ପାରିବ ନାହିଁ ଅଥଚ ଦୁଇଘରର ଅଳିଅଆବର୍ଜ୍ଜନା ଓ ମଇଳା ଇତ୍ୟାଦି ସହଜରେ ବାହାର କରାଯାଇ ପାରିବ । ଆଲୋକର ଅବାଧ ପ୍ରବେଶ ସକାଶେ ଘରକାନ୍ଥର ଅଳ୍ପ ଊର୍ଦ୍ଧ୍ୱରେ ଝରକା ରଖିବାକୁ ହେବ । ସମସ୍ତ ଗୃହସ୍ୱାମି ମିଳିମିଶି କାହାର କିଛି ଅନିଷ୍ଟ ନହେବା ପରି ମଧ୍ୟ (ସେମାନଙ୍କର ଯେପରି ଇଚ୍ଛା ସେପରି) ଘର ତିଆରି କରିପାରିବେ । (୧୦) ବାରଣ୍ଡାର ଠିକ୍ ଉପର ଭାଗରେ ବର୍ଷା ଓ ସୂର୍ଯ୍ୟତାପରୁ ରକ୍ଷା ପାଇବା ସକାଶେ ଛଣ ଛପର କରାଯାଇଥିବା ଖରସଣ କିମ୍ବା କାଠପଟା, ବାଉଁଶ ଫାଳ ଇତ୍ୟାଦି ବିଛାଇ, ତା ଉପରେ ମାଟି ପକାଇ ଗୋଟିଏ ଅଗ୍ନିବାରଣ କରିବାକୁ ହେବ । ଏପରି ନ କରିବା ବ୍ୟକ୍ତି ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (୧୧) ରାଜମାର୍ଗ ଓ ବଜାର ବ୍ୟତୀତ ପରଗୃହର ପ୍ରତିକୂଳରେ ଦ୍ୱାର ବା ଝରକା ବସାଇ କିମ୍ବା ଖୋଲି ରଖି ପରଘରର ଅନିଷ୍ଟ ସାଧନ କରିବା ବ୍ୟକ୍ତି ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ରାଜମାର୍ଗ ଓ

**ବାତାୟନବାଧାୟାଂ ଚ, ଅନ୍ୟତ୍ର ରାଜମାର୍ଗରଥ୍ୟାଭ୍ୟଃ । (୧୨) ଖାତସୋପାନପ୍ରଣାଳୀନିଶ୍ରେଣ୍ୟବସ୍କରଦ୍ୱାରୈର୍ବହିର୍ବାଧାୟାଂ ଭୋଗନିଗ୍ରହେ ଚ । (୧୩) ପରକୁଡ୍ୟମୁଦକେନୋପଘ୍ନତୋ ଦ୍ୱାଦଶପଣୋ ଦଣ୍ଡଃ । ମୂତ୍ରପୁରୀଷୋପଘାତେ ଦ୍ୱିଗୁଣଃ । (୧୪) ପ୍ରଣାଳୀମୋକ୍ଷୋ ବର୍ଷତି, ଅନ୍ୟଥା ଦ୍ୱାଦଶପଣୋ ଦଣ୍ଡଃ । (୧୫) ପ୍ରତିଷିଦ୍ଧସ୍ୟ ଚ ବସତଃ । ନିରସ୍ୟତଶ୍ଚାବକ୍ରୟିଣମ୍, ଅନ୍ୟତ୍ର ପାରୁଷ୍ୟସ୍ତେୟସାହସ**

---

ବଜାରରେ ଏପରି ଦ୍ୱାର ଓ ଝରକାଦ୍ୱାରା ପରର ଅନିଷ୍ଟ ଘଟିଲେ ସେଥିପାଇଁ ଦୋଷ ଧରାଯିବ ନାହିଁ । (୧୨) ଖାତ, ପାଉଚ୍ଛ, ନାଳୀ (ଜଳନିର୍ଗମ ପଥ), ନିଶୁଣି ଓ ମଳମୂତ୍ରତ୍ୟାଗ ସ୍ଥାନ (ପାଇଖାନା) ଇତ୍ୟାଦି ଅସ୍ଥାନରେ କରି ବାହାର ଲୋକଙ୍କୁ ବାଧା ପହଞ୍ଚାଇବା କିମ୍ବା ପାଖପଡ଼ିଶା ଲୋକଙ୍କୁ ସେମାନେ ସେମାନଙ୍କ ବାସ୍ତୁ ଭିତରେ ସୁଖ ସ୍ୱାଚ୍ଛନ୍ଦ୍ୟରେ ଚଳିବାରେ ବାଧା ପହଞ୍ଚାଇବା ବ୍ୟକ୍ତି ମଧ୍ୟ ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (୧୩) ପରଘରର ପୂନାଦିମୂଳରେ ପାଣିନଳା କରି ତା'କୁ ନଷ୍ଟ କରିଦେବା ବ୍ୟକ୍ତି ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ମଳମୂତ୍ର ଦ୍ୱାରା ପରର କାନ୍ଥମୂଳ ଅବର୍ଜନାପୂର୍ଣ୍ଣ କରିବା ବ୍ୟକ୍ତି ଚବିଶପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୧୪) କେବଳ ବର୍ଷା ସମୟରେ ଘରଭିତରୁ ବାହାରକୁ ରଖାଯାଇଥିବା ନଳାରେ ପାଣି ଛାଡ଼ିବାକୁ ହେବ । ଅନ୍ୟ ସମୟରେ ଦୁର୍ଗନ୍ଧ ଓ ମଇଳାପାଣି ଛାଡ଼ି ଅସ୍ୱାସ୍ଥ୍ୟକର ବାୟୁମଣ୍ଡଳ ସୃଷ୍ଟି କରିବା ବ୍ୟକ୍ତି ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୧୫) ଘର ଭଡ଼ାଦେବା ବ୍ୟକ୍ତି ଘର ଭଡ଼ାନେବା ବ୍ୟକ୍ତିକୁ 'ତୁମେ ଏତିକି ଦିନ ମୋ'ଘରେ ଭଡ଼ା ଦେଇ ରହିବ' ବୋଲି ଚୁକ୍ତି କରି ଏବଂ ମିଆଦ ପୂର୍ଣ୍ଣହେବା ପରେ 'ଆଉ ଅଧିକ କାଳ ତୁମେ ରହନାହିଁ' ବୋଲି ନିଷେଧ କଲାପରେ ଯଦି କୌଣସି ଭଡ଼ାନେବା ବ୍ୟକ୍ତି ଭଡ଼ାଘର ନ ଛାଡ଼ି ଗୃହସ୍ୱାମିକୁ ହଇରାଣ କରେ ତେବେ ସେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । ସେହିପରି ଘରଭଡ଼ା ଧନ ଆଗରୁ ପାଇ ଯଦି ଘରମାଲିକ ଏହି ଘରଭଡ଼ା ନେଇଥିବା ବ୍ୟକ୍ତିକୁ ଅସମୟରେ ଘରୁ ନିକାଳି ଦେବାକୁ ବସେ, ସେ ମଧ୍ୟ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । କିନ୍ତୁ ଘରଭଡ଼ା ନେଇଥିବା ବ୍ୟକ୍ତି ଯଦି ଗାଳି, ମାଡ଼, ଚୋରି, ବଳାତ୍କାର (ଡକାୟତି ପ୍ରଭୃତି),

ସଂଗ୍ରହଣମିଥ୍ୟାଭୋଗେଭ୍ୟଃ । ସ୍ୱୟମଭିପ୍ରସ୍ଥିତୋ ବର୍ଷାବକ୍ରୟ-ଶେଷଂ ଦଦ୍ୟାତ୍ । (୧୬) ସାମାନ୍ୟେ ବେଶ୍ମନି ସାହାଯ୍ୟମପ୍ରୟଚ୍ଛତଃ ସାମାନ୍ୟମୁପରୁନ୍ଧତୋ ଭୋଗଂ ଚ ଗୃହେ ଦ୍ୱାଦଶ-ପଣୋ ଦଣ୍ଡଃ । ବିନାଶୟତସ୍ତଦ୍ଦ୍ୱିଗୁଣଃ ।

(୧୭) କୋଷ୍ଠକାଂଗଣବର୍ଚ୍ଚାନାମଗ୍ନିକୁଟ୍ଟନଶାଳୟୋଃ ।
ବିବୃତାନାଂ ଚ ସର୍ବେଷାଂ ସାମାନ୍ୟୋ ଭୋଗ ଇଷ୍ୟତେ ॥

---

ବ୍ୟଭିଚାର ଓ କୁତ୍ସିତ ଆଚରଣ ଇତ୍ୟାଦି ଅସହ୍ୟ, ଅଶ୍ଳୀଳ ଓ ନିନ୍ଦନୀୟ କାର୍ଯ୍ୟ କରେ, ତେବେ ତାକୁ ନିର୍ଦ୍ଦିଷ୍ଟ କାଳ ପୂର୍ବରୁ ଭଡ଼ାଘରୁ ନିକାଳିଦେଲେ ଘରମାଲିକଙ୍କ ଉପରେ କୌଣସି ଦୋଷ ସାବ୍ୟସ୍ତ ହୋଇ ପାରିବ ନାହିଁ । ଭଡ଼ାନେବା ବ୍ୟକ୍ତି ଯଦି ନିଜଇଚ୍ଛାରେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଭଡ଼ାଘର ଛାଡ଼ି ଚାଲିଯିବାକୁ ବସେ, ତେବେ ସେ ଘରର ବାର୍ଷିକ ଭଡ଼ା ସମୁଦାୟ ଦେଇଦେବାକୁ ହେବ । (୧୬) ସାଧାରଣ ଘରରେ, ଏକାଠି ଏକ ପରିବାରରେ ରହିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଯଦି କେହି ଘର ମରାମତି ଇତ୍ୟାଦିରେ ସାହାଯ୍ୟ କରେନାହିଁ କିମ୍ବା କୁଟୁମ୍ବ ଭିତରୁ କାହାର ସୁଖ ସୁବିଧାରେ ବାଧା ପହଞ୍ଚାଏ, ତେବେ ସେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ ଏବଂ ଯଦି ଘର ନଷ୍ଟ କରିଦେଇ କାହାର ଭୋଗ ସୁଖ ଏକବାରେ ନଷ୍ଟ କରିଦିଏ, ତେବେ ଚବିଶପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । (୧୭) ଗୃହଦ୍ୱାର, ଅଗଣା, ମଳମୂତ୍ରତ୍ୟାଗ ସ୍ଥାନ, ଅଗ୍ନିଶାଳା, ଢିଙ୍କିଶାଳ, ଖୋଲା ପଡ଼ିଆ ଇତ୍ୟାଦି ସ୍ଥାନଗୁଡ଼ିକ ସାଧାରଣ ଭୋଗସ୍ଥାନ । ଏଣୁ ପରିବାରର ସମସ୍ତେ (ଏକାନ୍ନରେ ବା ସ୍ୱତନ୍ତ୍ରାନ୍ନରେ ଚଳୁଥିଲେ ମଧ୍ୟ) ଏଗୁଡ଼ିକୁ ଅବାଧରେ ବ୍ୟବହାର କରିପାରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଅଷ୍ଟମୋଽଧ୍ୟାୟଃ ।
ବାସ୍ତୁକେ ଗୃହବାସ୍ତୁକଂ—ଆଦିତଃ ପଞ୍ଚଷଷ୍ଟିତମୋଽଧ୍ୟାୟଃ ।

# ନବମୋଽଧ୍ୟାୟଃ

## ଏକଷଷ୍ଟିତମ ପ୍ରକରଣମ୍—ବାସ୍ତୁବିକ୍ରୟଃ

## SALE OF BUILDINGS, BOUNDARY DISPUTES, DETERMINATION OF BOUNDARIES AND MISCELLANEOUS HINDRANCES

( ବାସ୍ତୁବିକ୍ରୟ ଓ ସୀମା ନିର୍ଣ୍ଣୟ ପ୍ରଭୃତି ବିଷୟର ଆଲୋଚନା )

(୧) ଜ୍ଞାତିସାମନ୍ତଧନିକାଃ କ୍ରମେଣ ଭୂମିପରିଗ୍ରହାନ୍ କ୍ରେତୁମଭ୍ୟାଭବେୟୁଃ । ତତୋଽନ୍ୟେ ବାହ୍ୟାଃ । (୨) ସାମନ୍ତ ଚତ୍ୱାରିଂଶତ୍କୁଲ୍ୟା ଗୃହପ୍ରତିମୁଖେ ବେଶ୍ମ ଶ୍ରାବୟେୟୁଃ । ସାମନ୍ତ ଗ୍ରାମବୃଦ୍ଧେଷୁ କ୍ଷେତ୍ରମାରାମଂ ସେତୁବନ୍ଧଂ ତଟାକମାଧାରଂ ବା ମର୍ଯ୍ୟାଦାସୁ ଯଥାସେତୁଭୋଗମ୍ । 'ଅନେନାର୍ଘେଣ କଃ କ୍ରେତା'

---

(୧) କୌଣସି ବ୍ୟକ୍ତି ଯଦି ତାର ଘର, ଭୂମି, ବାଡ଼ି, ବଗିଚା ପ୍ରଭୃତି ବାସ୍ତୁ-ଦ୍ରବ୍ୟ ବିକ୍ରୟ କରିବାକୁ ଇଚ୍ଛାକରେ, ତେବେ ପ୍ରଥମେ ତାର ଭାଇ, ପୁତୁରା ପ୍ରଭୃତି ଦାୟାଦ, ଏମାନେ ନଥିଲେ ବା ନ କିଣିଲେ ପଡ଼ିଶାଘରେ ଥିବା ବ୍ୟକ୍ତି, ସେ ନ କିଣିଲେ ଧନିକ ଅର୍ଥାତ୍ ସାହୁକାର ଏହି ବାସ୍ତୁ କିଣିବାକୁ ଅର୍ହ ହେବେ ଏବଂ ଏମାନେ କେହି ଯଦି ନ କିଣନ୍ତି ତେବେ ଏହା ଅନ୍ୟ ଯେକୌଣସି ବ୍ୟକ୍ତିକୁ ବିକାଯାଇ ପାରିବ । (୨) ଗୃହବିକ୍ରେତା ପାଖପଡ଼ିଶାର ଚାଳିଶି ଜଣ ଭଦ୍ରଲୋକଙ୍କ ସହ ବିକ୍ରୟ ସକାଶେ ସ୍ଥିରୀକୃତ ହୋଇଥିବା ଗୃହସମ୍ମୁଖରେ ଉପସ୍ଥିତ ହୋଇ ଉପରୋକ୍ତ କ୍ରେତାମାନଙ୍କ ସମକ୍ଷରେ 'ଏହି ଗୃହ ବିକ୍ରୟ କରାଯିବ' ବୋଲି ଘୋଷଣା କରିବେ । ଆଖପାଖ ଭଦ୍ରବ୍ୟକ୍ତି ଓ ଗ୍ରାମବୃଦ୍ଧମାନଙ୍କ ଉପସ୍ଥିତିରେ ବିକ୍ରେତା ନିଜ ଭୋଗଦଖଲରେ ଥିବା ବିଲ, ବଗିଚା, ସେତୁବନ୍ଧ, ପୋଖରୀ, ଜଳାଧାର ପ୍ରଭୃତିର ସୀମାମଧ୍ୟରେ ରହି କହିବେ ଯେ, "ଏପରି ଏହାର ଚୌହଦୀ ବା ସୀମା, ଏତିକ ମୋର ଭୋଗଦଖଲରେ ଅଛି ଏବଂ ଏହାର ଏତିକ ମୂଲ୍ୟ । ଏ ମୂଲ୍ୟରେ ଏହି ଦ୍ରବ୍ୟ କିଏ କ୍ରୟକରିବେ ?" ବୋଲି ତିନିଥର ଉଚ୍ଚ-

ଇତି ତ୍ରିରାଘୁଷିତମବ୍ୟାହତଂ କ୍ରେତା କ୍ରେତୁଂ ଲଭେତ । (୩) ସ୍ପର୍ଦ୍ଧୟା ବା ମୂଲ୍ୟବର୍ଦ୍ଧନେ ମୂଲ୍ୟବୃଦ୍ଧିଃ ସଶୁଳ୍କା କୋଶଂ ଗଚ୍ଛେତ୍ । ବିକ୍ରୟପ୍ରତିକ୍ରୋଷ୍ଟା ଶୁଳ୍କଂ ଦଦ୍ୟାତ୍ । (୪) ଅସ୍ୱାମିପ୍ରତିକ୍ରୋଶେ ଚତୁର୍ବିଂଶତିପଣୋ ଦଣ୍ଡଃ । ସପ୍ତରାତ୍ରାଦୂର୍ଦ୍ଧ୍ୱମନଭିସରତଃ ପ୍ରତିକ୍ରୁଷ୍ଟୋ ବିକ୍ରୀଣୀତ । ପ୍ରତିକ୍ରୁଷ୍ଟାତିକ୍ରମେ ବାସ୍ତୁନି ଦ୍ୱିଶତୋ ଦଣ୍ଡଃ । ଅନ୍ୟତ୍ର ଚତୁର୍ବିଂଶତିପଣୋ ଦଣ୍ଡଃ । ଇତି ବାସ୍ତୁବିକ୍ରୟଃ । (୫) ସୀମାବିବାଦଂ ଗ୍ରାମୟୋରୁଭୟୋଃ ସାମନ୍ତା ପଞ୍ଚଗ୍ରାମୀ ଦଶଗ୍ରାମୀ ବା ସେତୁଭିଃ ସ୍ଥାବରୈଃ କୃତ୍ରିମୈର୍ବା

---

ସ୍ୱରରେ ଘୋଷଣା କରିବା ପରେ କ୍ରେତାମାନେ ଅର୍ଥାତ୍ ପୂର୍ବୋକ୍ତ କ୍ରମରେ ଜ୍ଞାତି, ପଡ଼ୋଶୀ, ଧନୀ ଓ ସାଧାରଣ ବ୍ୟକ୍ତିମାନେ ଏହି ବାସ୍ତୁଦ୍ରବ୍ୟର ମୂଲ୍ୟ ଦେଇ କ୍ରୟ ଲଭିବେ । (୩) କ୍ରେତାମାନଙ୍କ ପରସ୍ପର ବିବାଦଯୋଗୁଁ ମୂଲ୍ୟବୃଦ୍ଧି ହେଲେ କେବଳ ସେହି ବର୍ଦ୍ଧିତ ମୂଲ୍ୟ ଶୁଳ୍କ ସହିତ ରାଜକୋଷକୁ ଚାଲିଯିବ ଏବଂ ଏହି ଶୁଳ୍କ ଉଚ୍ଚମୂଲ୍ୟରେ ନିଲାମ ଡାକିଥିବା ବ୍ୟକ୍ତିଠାରୁ ଅସୁଲ କରାଯିବ । (୪) ବିକ୍ରୀ କରାଯାଉଥିବା ବାସ୍ତୁଦ୍ରବ୍ୟର ଅନଧିକାରୀ ବ୍ୟକ୍ତି ଯଦି ଉପରୋକ୍ତ ପ୍ରକାରେ ନିଲାମ ଡାକନ୍ତି ତେବେ ସେ ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । କ୍ରେତା ନିଲାମ ଡାକିଦେଇ ସାତରାତି ପର୍ଯ୍ୟନ୍ତ କ୍ରୟବ୍ୟବହାର ସ୍ଥାନ (ସବ୍‌ରେଜିଷ୍ଟ୍ରାର ଅଫିସ)କୁ ନଗଲେ ବିକ୍ରେତା ସାତଦିନ ଅପେକ୍ଷା କରି ଉକ୍ତ ବାସ୍ତୁଦ୍ରବ୍ୟ ପୁନର୍ବାର ନିଲାମଦ୍ୱାରା ବିକ୍ରୟ କରିଦେଇ ପାରିବେ । ବାସ୍ତୁଦ୍ରବ୍ୟ କିଣିବା ପାଇଁ ନିଲାମ ଡାକିବା ବ୍ୟକ୍ତିଙ୍କୁ ଉପେକ୍ଷା କରି ବାସ୍ତୁସ୍ୱାମୀ ଉକ୍ତ ବାସ୍ତୁପଦାର୍ଥ ଅନ୍ୟକୁ ବିକ୍ରୟ କରିଦେଲେ ଦୁଇଶତପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ବାସ୍ତୁଦ୍ରବ୍ୟବ୍ୟତୀତ ଅନ୍ୟ ଅସ୍ଥାବର (ଚଳ) ସମ୍ପତ୍ତି ଏପରି ବେଆଇନଭାବେ ବିକ୍ରୟ କରିଦେଲେ ବିକ୍ରେତା ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଏଠାରେ ବାସ୍ତୁ ବିକ୍ରୟ ବିଷୟ ସମାପ୍ତ ହେଲା । (୫) ଦୁଇଟି ଗ୍ରାମ ମଧ୍ୟରେ ସୀମା ବିଷୟ ନେଇ ବିବାଦ ଉପୁଜିଲେ ନିକଟବର୍ତ୍ତୀ ପାଞ୍ଚ ଗ୍ରାମ ବା ଦଶ ଗ୍ରାମର ବ୍ୟବହାରଜ୍ଞ ଭଦ୍ରଲୋକମାନଙ୍କ ମଧ୍ୟସ୍ଥତାରେ ଗିରି, ନଦୀ, ବନ ପ୍ରଭୃତି ପ୍ରାକୃତିକ ବା ପଥର, ଲୁହାଖୁଣ୍ଟ ପ୍ରଭୃତି କୃତ୍ରିମ ପଦାର୍ଥଦ୍ୱାରା ସୀମା ନିର୍ଣ୍ଣୟ

କୁର୍ଯ୍ୟାତ୍ । (୬) କର୍ଷକଗୋପାଳବୃଦ୍ଧକାଃ ପୂର୍ବଭୁକ୍ତିକା ବା, ଅବାହ୍ୟାଃ ସେତୂନାମଭିଜ୍ଞା ବହବ ଏକୋ ବା ନିର୍ଦିଶ୍ୟ ସୀମସେତୂନ୍ ବିପରୀତବେଷାଃ ସୀମାନଂ ନୟେୟୁଃ । ଉଦ୍ଦିଷ୍ଟାନାଂ ସେତୂନାମଦର୍ଶନେ ସହସ୍ରଦଣ୍ଡଃ । ତଦେବ ନୀତେ ସୀମାପହାରଣାଂ ସେତୁଚ୍ଛିଦାଂ ଚ କୁର୍ଯ୍ୟାତ୍ । (୭) ପ୍ରନଷ୍ଟସେତୁଭୋଗଂ ବା ସୀମାନଂ ରାଜା ଯଥୋପକାରଂ ବିଭଜେତ୍ । (୮) କ୍ଷେତ୍ରବିବାଦଂ ସାମନ୍ତଗ୍ରାମବୃଦ୍ଧାଃ କୁର୍ଯୁଃ । ତେଷାଂ ଦ୍ୱୈଧୀଭାବେ ଯତୋ ବହବଃ ଶୁଚୟୋଽନୁମତା ବା ତତୋ

---

କରିବାକୁ ହେବ । (୬) ନିକଟରେ ଗ୍ରାମ ନଥିଲେ କୃଷକ, ବୃଦ୍ଧ ଗୋପାଳ ବା ପୂର୍ବଭୋକ୍ତାମାନେ କିମ୍ବା ଉକ୍ତ ଦୁଇ ଗ୍ରାମ ମଧ୍ୟରେ ବାସକରିଥିବା ଏବଂ ନଷ୍ଟ ହୋଇଯାଇଥିବା ସୀମାସନ୍ଧି ପ୍ରଭୃତିକୁ ଜାଣିଥିବା ଲୋକମାନେ ଅଥବା ସେମାନଙ୍କ ମଧ୍ୟରୁ ଜଣେ କେହି ରଙ୍ଗଲୁଗା ପିନ୍ଧି, ରଙ୍ଗମାଳା ଧାରଣ କରି ବା ସ୍ତ୍ରୀବେଶ ପ୍ରଭୃତି ବିପରୀତ ବେଶ ଧାରଣପୂର୍ବକ ଅଙ୍ଗୁଳି ନିର୍ଦ୍ଦେଶଦ୍ୱାରା 'ଅମୁକ ସ୍ଥାନରେ ପୂର୍ବସୀମା ଓ ଅମୁକ ସ୍ଥାନରେ ପଶ୍ଚିମସୀମା' ବୋଲି ସମର୍ଥନ କରି ଦର୍ଶାଇବେ । ନିର୍ଦ୍ଦିଷ୍ଟ ସୀମା ନଦେଖାଇବା କିମ୍ବା ନକହି ଗୋଳମାଳ କରିବା ବ୍ୟକ୍ତିକୁ ଏକସହସ୍ରପଣ ଅର୍ଥଦଣ୍ଡରେ ଦଣ୍ଡିତ କରାଯିବ । ସୀମା ନିର୍ଣ୍ଣୀତ ହେବାପରେ ସୀମା ନଷ୍ଟ କରିବା ବା ସୀମାରେ ଥିବା ଗଛ କାଠି ପଥର ବା ଖୁଣ୍ଟ ଉପାଡ଼ିବା ବ୍ୟକ୍ତିଙ୍କୁ ମଧ୍ୟ ଏହିପରି ସହସ୍ରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୭) ଆଦୌ ଜଣାପଡ଼ୁନଥିବା ସୀମା ଏବଂ ଆଦୌ ଜଣାପଡ଼ୁନଥିବା ଅନୁଭୋଗ ବିଷୟରେ ରାଜା ସମସ୍ତଙ୍କ ଉପକାର ହେବାଭଳି ଓ ବିବାଦ ନ ଉପୁଜିବାଭଳି ସୀମା ଓ ଭୋଗଦଖଲର ନିଷ୍ପତ୍ତି କରିଦେବେ । (୮) କ୍ଷେତ୍ରାଦି ବାସ୍ତୁଦ୍ରବ୍ୟର ବିବାଦ ନିକଟବର୍ତ୍ତୀ ଗ୍ରାମର ଜଣାଶୁଣା ବ୍ୟକ୍ତିମାନେ ନିର୍ଣ୍ଣୟ କରିବେ । ଏମାନଙ୍କ ମଧ୍ୟରେ ମତଭେଦ ଘଟିଲେ ଯେଉଁ ପକ୍ଷରେ ବହୁଲୋକ ମତ ଦେବେ ବା ଯେଉଁ ପକ୍ଷରେ ବାହ୍ୟାଭ୍ୟନ୍ତରଶୁଦ୍ଧ ଲୋକାନୁମତ ପୁଣ୍ୟାତ୍ମା ବ୍ୟକ୍ତିମାନେ ମତ ଦେବେ ତଦନୁସାରେ ସୀମା ଓ ଭୋଗଦଖଲ ନିର୍ଣ୍ଣୀତ ହେବ । ଏପରି ନ ହୋଇପାରିଲେ ବିବାଦୀୟ ସ୍ଥାନର ମଧ୍ୟସ୍ଥଳରେ ସୀମା ନିର୍ଣ୍ଣୟ କରିବାକୁ

ନିଯଚ୍ଛେୟୁଃ । ମଧ୍ୟଂ ବା ଗୃହ୍ଣୀୟୁଃ । ତଦୁଭୟଂ ପରୋକ୍ଷଂ ବାସ୍ତୁ ରାଜା ହରେତ୍ ପ୍ରନଷ୍ଟସ୍ୱାମିକଂ ଚ । ଯଥୋପକାରଂ ବା ବିଭଜେତ୍ । (୯) ପ୍ରସହ୍ୟାଦାନେ ବାସ୍ତୁନି ସ୍ତେୟଦଣ୍ଡଃ । କାରଣାଦାନେ ପ୍ରୟାସମାଜୀବଂ ଚ ପରିସଂଖ୍ୟାୟ ବନ୍ଧଂ ଦଦ୍ୟାତ୍ । ମର୍ଯ୍ୟାଦାପହରଣେ ପୂର୍ବଃ ସାହସଦଣ୍ଡଃ । ମର୍ଯ୍ୟାଦାଭେଦେ ଚତୁର୍ବିଂଶତି ପଣଃ । (୧୦) ତେନ ତପୋବନବିବୀତମହାପଥ-ଶ୍ମଶାନଦେବକୁଳଯଜନପୁଣ୍ୟସ୍ଥାନବିବାଦା ବ୍ୟାଖ୍ୟାତାଃ । ଇତି ମର୍ଯ୍ୟାଦାସ୍ଥାପନମ୍ । (୧୧) ସର୍ବ ଏବ ବିବାଦାଃ ସାମନ୍ତପ୍ରତ୍ୟୟାଃ ।

---

ହେବ କିମ୍ବା ଉଭୟ ପକ୍ଷର ସମର୍ଥନ ନେଇ ଯେଉଁ ଏକ ପଞ୍ଚାୟତ ଭଦ୍ରବ୍ୟକ୍ତି ତାଙ୍କର ବଳିଷ୍ଠ ମତ ପ୍ରକାଶ କରିବେ ତାହା ଗ୍ରହଣ କରିବାକୁ ହେବ । ଉପରୋକ୍ତ ଉପାୟରେ କୌଣସି ନିଷ୍ପତ୍ତି ନ ହୋଇପାରିଲେ ଏହି ବିବାଦୀୟ ବାସ୍ତୁଦ୍ରବ୍ୟ ରାଜା ନିଜ ଦଖଲକୁ ନେଇଯିବେ । ଅସ୍ୱାମିକ ବାସ୍ତୁଦ୍ରବ୍ୟକୁ ମଧ୍ୟ ରାଜା ନିଜ ଦଖଲକୁ ନେଇଯିବେ ଅଥବା ଏହି ସମ୍ପତ୍ତି ଭୋଗ କରିବାକୁ ହକ୍‌କଦାର ହୋଇଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବଣ୍ଟନ କରିଦେବେ । (୯) କୌଣସି ବ୍ୟକ୍ତିର ବାସ୍ତୁକୁ ବଳାତ୍କାରେ ଦଖଲ କରିବା ବ୍ୟକ୍ତିକୁ ଚୌର୍ଯ୍ୟଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଋଣ ବନ୍ଧକାଦି କାରଣରୁ ଯଦି କେହି କାହାର ବାସ୍ତୁ ଦଖଲ କରିବାକୁ ଯାଏ ତେବେ ଏହି ବାସ୍ତୁରେ ହୋଇଥିବା ଶ୍ରମ, ଲଗୁଡ଼ି ବା ମରାମତି ଏବଂ ଏଥିରୁ ଉତ୍ପନ୍ନ ହୋଇଥିବା ପଦାର୍ଥର ମୂଲ୍ୟ ହିସାବ କରି ଋଣ ବନ୍ଧକାଦି ସକାଶେ ଦେଇଥିବା ଧନ ବାଠକସର କରି ବଳକା ହେବା ଧନ ଭୂସ୍ୱାମିକୁ ଦେବେ । ଉଭୟ ଭୂମିମଧ୍ୟରେ ଥିବା ସୀମାକୁ ଅତିକ୍ରମଣ କଲେ ଅତିକ୍ରମଣକାରୀ ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ ଏବଂ ସୀମାର ଏକ ଅଂଶ ଅତିକ୍ରମଣ କଲେ ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୧୦) ଉପରୋକ୍ତ ଗୃହାଦିର ସୀମାବିବାଦ ବିଧି ଅନୁସାରେ ତପୋବନ, ଗୋଚରଭୂମି, ମହାପଥ (ରାଜପଥ), ଶ୍ମଶାନ, ଦେବସ୍ଥାନ, ଯଜ୍ଞସ୍ଥାନ ଓ କ୍ଷେତ୍ରତୀର୍ଥାଦି ପୁଣ୍ୟସ୍ଥାନ-ମାନଙ୍କରେ ଉପୁଜିବା ବିବାଦର ନିଷ୍ପତ୍ତି କରିବାକୁ ହେବ । ଏଠାରେ ସୀମାନିର୍ଣ୍ଣୟ ବିଷୟ ସମାପ୍ତ ହେଲା । (୧୧) ଏସମସ୍ତ ବାସ୍ତୁ ବିବାଦ ଆଖପାଖ

ବବୀତସ୍ଥଳକେଦାରଷଣ୍ଡଖଳବେଶ୍ମବାହନକୋଷ୍ଠାନାଂ ପୂର୍ବଂ ପୂର୍ବମାବାଧଂ ସହେତ । (୧୨) ବ୍ରହ୍ମସୋମାରଣ୍ୟଦେବଯଜନପୁଣ୍ୟସ୍ଥାନବର୍ଜାଃ ସ୍ଥଳପ୍ରଦେଶାଃ । (୧୩) ଆଧାରପରବାହକେଦାରୋପଭୋଗୈଃ ପରକ୍ଷେତ୍ରକୃଷ୍ଟବୀଜହିଂସାୟାଂ ଯଥୋପଘାତଂ ମୂଲ୍ୟଂ ଦଦ୍ୟୁଃ । କେଦାରାରାମସେତୁବନ୍ଧାନାଂ ପରସ୍ପରହିଂସାୟାଂ ହିଂସାଦ୍ୱିଗୁଣୋ ଦଣ୍ଡଃ । (୧୪) ପଶ୍ଚାନ୍ନିବିଷ୍ଟମଧରତଟାକଂ ନୋପରତଟାକସ୍ୟ କେଦାରମୁଦକେନାପ୍ଲାବୟେତ୍ । ଉପରି ନିବିଷ୍ଟଂ ନାଧରତଟାକସ୍ୟ ପୂରସ୍ରାବଂ ବାରୟେତ୍ ଅନ୍ୟତ୍ର

---

ବାସ୍ତୁମାନଙ୍କ ମଧ୍ୟରେ ହିଁ ହୋଇଥାଏ । ତତ୍ତ୍ୱକଥା ଏହି ଯେ—ଦୁଇଟି ପଡ଼ୋଶୀଙ୍କ ମଧ୍ୟରେ ବାସ୍ତୁ ବିଷୟକ ପୀଡ଼ା ଉତ୍ପନ୍ନ ହେଲେ ତାର ନିରାକରଣ ପାଇଁ ବିବାଦ (ମୋକଦ୍ଦମା)ର ସୃଷ୍ଟି ହୋଇଥାଏ । ଏହି ବିବାଦର ନିଷ୍ପତ୍ତି ନିକଟବର୍ତ୍ତୀ ଭଦ୍ରବ୍ୟକ୍ତିମାନଙ୍କ ଦ୍ୱାରା ହିଁ ହୁଏ । ଗୋଚାରଣ ସ୍ଥାନ, ପଦର, ବିଲ, କଦଳୀ ପ୍ରଭୃତି ବୋଉଇ, ଖଳା, ବାସଗୃହ ଓ ଗୁହାଳ, ଘୋଡ଼ାଶାଳ ଇତ୍ୟାଦି ମଧ୍ୟରୁ ପୂର୍ବବର୍ତ୍ତୀ ବିଷୟଗୁଡ଼ିକ ଅପେକ୍ଷା ପରବର୍ତ୍ତୀ ବିଷୟଗୁଡ଼ିକର ବିବାଦ ନିର୍ଣ୍ଣୟ ପ୍ରଥମରେ କରିବାକୁ ହେବ । (୧୨) ବ୍ରହ୍ମାରଣ୍ୟ, ସୋମାରଣ୍ୟ, ଦେବସ୍ଥାନ, ଯଜ୍ଞସ୍ଥାନ ଓ ତୀର୍ଥାଦି ପୁଣ୍ୟସ୍ଥାନ ବ୍ୟତୀତ ଅନ୍ୟ ସମସ୍ତ ଭୂଭାଗକୁ ସ୍ଥଳପ୍ରଦେଶ ଅର୍ଥାତ୍ କ୍ଷେତ୍ରଯୋଗ୍ୟ ସ୍ଥାନ ବୋଲି ଜାଣିବାକୁ ହେବ । (୧୩) ଜଳାଶୟରୁ ନିଜର କ୍ଷେତକୁ ଜଳ ଆଣିବା ସକାଶେ ଯଦି ଅନ୍ୟବ୍ୟକ୍ତିର ଶସ୍ୟକ୍ଷେତ୍ର ଭିତରେ ନାଳ ଖୋଳାଯାଏ ତେବେ ଏଥିରେ ହେବା ଶସ୍ୟନଷ୍ଟି ଉକ୍ତଜମିର ମାଲିକଙ୍କୁ ଲେଖାଜୋଖା କରି ଦେଇଦେବାକୁ ହେବ । କିଆରୀ, ବଗିଚା ଓ ସେତୁବନ୍ଧ ପରସ୍ପର ନଷ୍ଟକରିବା ବ୍ୟକ୍ତିମାନଙ୍କୁ ନଷ୍ଟିର ଦୁଇଗୁଣ ଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୪) ପଛେ ତିଆରି ହୋଇଥିବା ତଳ ଜଳାଶୟର ଜଳଦ୍ୱାରା ଆଗେ ତିଆରି ହୋଇଥିବା ଉପର ଜଳାଶୟର ଅଗ୍ରଭାଗରେ ଥିବା କିଆରିଗୁଡ଼ିକୁ ପ୍ଲାବିତ କରିବାକୁ ହେବ ନାହିଁ । କିନ୍ତୁ ଉପର ଜଳାଶୟ ଯଦି ପଛେ ତିଆରି ହୁଏ, ତେବେ ଏଥିଯୋଗୁଁ ତଳ ଜଳାଶୟର ପୂରସ୍ରାବକୁ ବନ୍ଦ କରିବାକୁ ହେବ ନାହିଁ । ଉକ୍ତ ତଳ ଜଳାଶୟରେ ଯଦି ତିନିବର୍ଷ ପର୍ଯ୍ୟନ୍ତ କୃଷିକର୍ମ-

ତ୍ରିବର୍ଷୋପରତକର୍ମଣଃ । ତସ୍ୟାତକ୍ରମେ ପୂର୍ବଃ ସାହସଦଣ୍ଡ-ସ୍ତଟାକବାମନଂ ଚ । (୧୫) ପଞ୍ଚବର୍ଷୋପରତକର୍ମଣଃ ସେତୁ-ବନ୍ଧସ୍ୟ ସ୍ୱାମ୍ୟଂ ଲୁପେ୍ୟତାନ୍ୟତ୍ରାପଦ୍‌ଭ୍ୟଃ । (୧୬) ତଟାକସେତୁ-ବନ୍ଧାନାଂ ନବପ୍ରବର୍ତ୍ତନେ ପାଞ୍ଚବର୍ଷିକଃ ପରିହାରଃ । ଭଗ୍ନୋତ୍ସୃଷ୍ଟାନାଂ ଚାତୁର୍ବର୍ଷିକଃ । ସମୁପାରୂଢ଼ାନାଂ ତ୍ରୈବର୍ଷିକଃ । ସ୍ଥଳସ୍ୟ ଦ୍ୱୈବର୍ଷିକଃ । ସ୍ୱାତ୍ମାଧାନେ ବିକ୍ରୟେ ଚ । (୧୭) ଖାତପ୍ରାବୃତ୍ତି-ମନଦୀନିବନ୍ଧାୟତନତଟାକକେଦାରାରାମଷଣ୍ଡବାପାନାଂ ଶସ୍ୟ-

---

ସଂପାଦନଯୋଗ୍ୟ ଜଳର ଅଭାବ ଦେଖାଯାଏ, ତେବେ ତାର ପୂର୍ବସ୍ୱତ୍ୱକୁ ବନ୍ଦ କରିଦେବାକୁ ହେବ । ଏହି ନିୟମ ଲଂଘନ କରିବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବା ସଙ୍ଗେ ସଙ୍ଗେ ତାର ଜଳାଶୟକୁ କାଟିଦେଇ ଜଳଶୂନ୍ୟ କରିଦେବାକୁ ହେବ । (୧୫) ସେତୁବନ୍ଧର ସ୍ୱାମୀ ଯଦି କୌଣସି ବିପତ୍ତିରେ ନପଡ଼ି ପାଞ୍ଚବର୍ଷ ପର୍ଯ୍ୟନ୍ତ ନିଜ ସେତୁବନ୍ଧର କୌଣସି ତତ୍ତ୍ୱ ନିଏ ନାହିଁ, ତେବେ ସେଥିରୁ ତାର ସ୍ୱାମିତ୍ୱ ଲୋପ ପାଇଯାଏ । (୧୬) ଯଦି କୌଣସି ଜଳାଶୟ ବା ସେତୁବନ୍ଧ ନୂତନରେ ତିଆରି କରାଯାଏ ତେବେ ସେଥିଦ୍ୱାରା ସେଚିତ ହେଉଥିବା ଜମିମାନଙ୍କରୁ ପାଞ୍ଚବର୍ଷ ପର୍ଯ୍ୟନ୍ତ କର ନିଆଯିବ ନାହିଁ । କିନ୍ତୁ ବଢ଼ି ଇତ୍ୟାଦି ଯୋଗୁଁ ଯଦି ଉକ୍ତ ଘାଇବନ୍ଧ ଭାଙ୍ଗିଯାଇ ସରକାରୀ ଧନରେ ତାହା ମରାମତ ହୁଏ, ତେବେ ଉକ୍ତ ଘାଇବନ୍ଧଦ୍ୱାରା ପ୍ଲାବିତ ହୋଇଥିବା ଜମିମାନଙ୍କରୁ ଚାରିବର୍ଷ ପର୍ଯ୍ୟନ୍ତ କର ନିଆଯିବ ନାହିଁ । ଘାଇବନ୍ଧର ଉନ୍ନୟନ ଓ ସଂପ୍ରସାରଣ ଦ୍ୱାରା ବଣିଲଟା ହାଣି ନୂତନ ଜମିକୁ ସୁଆଣ୍ଡି କରିବା ବ୍ୟକ୍ତିକୁ ସାହାଯ୍ୟ କରିଗଲେ ଉକ୍ତ ବ୍ୟକ୍ତିମାନଙ୍କୁ ତିନିବର୍ଷ ପର୍ଯ୍ୟନ୍ତ କରଛାଡ଼ କରାଯିବ ଏବଂ ବଣିଲଟା ନଥିବା ଆବାଦଯୋଗ୍ୟ ଅନାବାଦ ଜମିକୁ ସୁଆଣ୍ଡି କରିବା ବ୍ୟକ୍ତିକୁ କିମ୍ବା ଏପରି ସୁଆଣ୍ଡି ହୋଇଥିବା ଜମି କିଣିବା ବ୍ୟକ୍ତିକୁ ଦୁଇବର୍ଷ ପର୍ଯ୍ୟନ୍ତ କରଛାଡ଼ କରାଯିବ । (୧୭) ପାଣିପାଇଁ ଜଳ ସକାଶେ ଖୋଳାଯାଇଥିବା କୂପ, ନଦୀର ଖାତ, ଘାଇ, ବନ୍ଧ ଇତ୍ୟାଦିରୁ ଜଳ ନେଇ ବିଲ, ବଗିଚା, କଦଳୀ, ଆଖୁ, ପାନ ପ୍ରଭୃତି ବାଡ଼ ବା ବରଜ କଲେ ଯେତେ ପରିମାଣେ ଶସ୍ୟ ହେବ ଓ ଯେତେ ପ୍ରକାର ଶସ୍ୟ ଉତ୍ପନ୍ନ ହେବ, ସେହି ଅନୁପାତରେ ସରକାରଙ୍କୁ ଭାଗ ଦେବାକୁ

ବର୍ଣ୍ଣସେତୋରୁଦକମ୍, ଅନ୍ୟେଭ୍ୟୋ ବା ଯଥୋପକାରଂ ଦଦ୍ୟୁଃ ।
(୧୮) ପ୍ରକ୍ରୟାବକ୍ରୟାଧିଭାଗଭୋଗନିସୃଷ୍ଟୋପଭୋକ୍ତାରଶ୍ଚୈଷାଂ ପ୍ରତି-କୁର୍ଯ୍ୟୁଃ । ଅପ୍ରତୀକାରେ ହୀନଦ୍ୱିଗୁଣୋ ଦଣ୍ଡଃ ।
(୧୯) ସେତୁଭ୍ୟୋ ମୁଞ୍ଚତସ୍ତୋୟମବାରେ ଷଟ୍‌ପଣୋ ଦମଃ ।
ବାରେ ବା ତୋୟମନ୍ୟେଷାଂ ପ୍ରମାଦେନୋପରୁନ୍ଧତଃ ॥

---

ହେବ । ଲାଗିପଡ଼ି କୃଷି କରିବା ଗୃହିମାନେ ସେମାନଙ୍କୁ ପୀଡ଼ା ନହେବା ଭଳି "ଯାହା ଫଳିବ ତାକୁ ଦେଖି ଭାଗ ଦେବୁ" ବୋଲି କହି ମଧ୍ୟ ଏପରି ଗୃଷ କରିପାରିବେ । (୧୮) ଘାଇ, ବନ୍ଧ ଇତ୍ୟାଦି ଆଶ୍ରୟ ଥିବା ଜମି କିଣିବା ବ୍ୟକ୍ତି, ଫଜାକୁ ରଖିବା ବ୍ୟକ୍ତି, ନଗଦଗୁଡ଼ା ରଖିବା ବ୍ୟକ୍ତି, ଭାଗକୁ ରଖିବା ବ୍ୟକ୍ତି ଏବଂ ଯାହା ଦେବ ତାହା ନେବ ବୋଲି ଛୁଣ୍ଡାଇ ଜମି ଗୃଷ କରି-ଥିବା ବ୍ୟକ୍ତିମାନେ ଉକ୍ତ ଘାଇ, ବନ୍ଧର ମରାମତି କରିବେ ଏବଂ ଏପରି ମରାମତି ନକଲେ ସମ୍ଭବଥିବା କ୍ଷତିର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୧୯) ଯେଉଁ ନିର୍ଦ୍ଦିଷ୍ଟ ସ୍ୱତରେ ('ପାଳି' ଅନୁସାରେ) ନିଜେ ଘାଇ ବନ୍ଧ ଇତ୍ୟାଦିରୁ ଜଳ ନେବା କଥା, ସେପରି ନିର୍ଦ୍ଦିଷ୍ଟ ସ୍ୱତରେ ନନେଇ ଅସ୍ୱତରେ ଜଳ ନେବା ବ୍ୟକ୍ତି ଛ'ପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ଅନ୍ୟବ୍ୟକ୍ତି ନିର୍ଦ୍ଦିଷ୍ଟ ସ୍ୱତରେ ଜଳ ନେଉଥିବା ବେଳେ ତାକୁ ଅଟକାଇଲେ ମଧ୍ୟ ଏପରି ଛ'ପଣ ଦଣ୍ଡରେ ଦଣ୍ଡିତ ହେବେ । (ପର୍ଯ୍ୟାୟକ୍ରମେ, ଅର୍ଥାତ୍ ଜଣକ ପରେ ଜଣେ ପାଳି ଅନୁସାରେ ଯାହାର ଜମି ଯେପରି ଅଛି, ଯେଉଁ ଜମିକୁ ଆଗେ ଜଳ ଯିବା ଉଚିତ ଓ ଯେଉଁ ଜମିକୁ ପଛେ ଜଳ ଯିବା ଉଚିତ ତାହା ବିବେଚନା କରି ଶୃଙ୍ଖଳିତଭାବେ ଜଳସେଚନ ନକରିବା ଅପରାଧ ପାଇଁ ଏହି ଦଣ୍ଡର ବ୍ୟବସ୍ଥା କରାଯାଇଛି) ।

ଇତି କୌଟିଲୀୟସ୍ୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ନବମୋଽଧ୍ୟାୟଃ ।
ବାସ୍ତୁକେ ବାସ୍ତୁବିକ୍ରୟଃ ସୀମାବିବାଦଃ କ୍ଷେତ୍ରବିବାଦଃ ମର୍ଯ୍ୟାଦାସ୍ଥାପନଂ
ବାଧାବାଧିକଂ—ଆଦିତଃ ଷଟ୍‌ଷଷ୍ଟିତମୋଽଧ୍ୟାୟଃ ।

—o—

## ଦଶମୋଽଧ୍ୟାୟଃ

## ଏକଷଷ୍ଟିତମ, ଦ୍ୱିଷଷ୍ଟିତମ ପ୍ରକରଣମ୍

## ବାସ୍ତୁକମ୍—ବିବୀତକ୍ଷେତ୍ରପଥହିଂସା ସମୟସ୍ୟାନପାକର୍ମ ଚ

## DESTRUCTION OF PASTURE LANDS, FIELDS AND ROADS AND NON-PERFORMANCE OF AGREEMENTS

( ପଶୁଚାରଣ ଓ କ୍ଷେତ୍ରମାର୍ଗରୋଧ ଇତ୍ୟାଦି ଅପରାଧର ଦଣ୍ଡ ଏବଂ ସମୟର ଅନପାକର୍ମ ଅର୍ଥାତ୍ ତ୍ୟାଗାଭାବ ବିଷୟର ଆଲୋଚନା )

(୧) କର୍ମୋଦକମାର୍ଗମୁଚିତଂ ରୁନ୍ଧତଃ କୁର୍ବତୋଽନୁଚିତଂ ବା ପୂର୍ବଃ ସାହସଦଣ୍ଡଃ । (୨) ସେତୁକୂପପୁଣ୍ୟସ୍ଥାନଚୈତ୍ୟ-ଦେବାୟତନାନି ଚ ପରଭୂମୌ ନିବେଶୟତଃ ପୂର୍ବାନୁବୃତ୍ତଂ ଧର୍ମସେତୁମାଧାନଂ ବିକ୍ରୟଂ ବା ନୟତୋ ନାୟୟତୋ ବା ମଧ୍ୟମଃ ସାହସଦଣ୍ଡଃ ଶ୍ରୋତୃଣାମୁତ୍ତମଃ ଅନ୍ୟତ୍ର ଭଗ୍ନୋତ୍ସୃଷ୍ଟାତ୍ । (୩) ସ୍ୱାମ୍ୟଭାବେ ଗ୍ରାମାଃ ପୁଣ୍ୟଶୀଳା ବା ପ୍ରତିକୁର୍ଯୁଃ ।

---

(୧) କୃଷିସକାଶେ ପୂର୍ବରୁ ରହିଥିବା ଜଳମାର୍ଗକୁ (କେନାଲ ଇତ୍ୟାଦିକୁ) ଅଟକାଇବା କିମ୍ବା ଅନୁଚିତ ମାର୍ଗରେ ଜଳଛାଡ଼ିବା, ନୂଆଁକରି ମନଇଚ୍ଛା ଜଳମାର୍ଗ ଖୋଲିବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୨) କୌଣସି ବ୍ୟକ୍ତି ସେତୁବନ୍ଧ, କୂପ, ପୁଣ୍ୟସ୍ଥାନ, * ଚୈତ୍ୟ ଓ ଦେବାୟତନ (ଦେବସ୍ଥଳୀ) ଇତ୍ୟାଦି ପରଭୂମିରେ କଲେ, ତାହାର ପୂର୍ବପୁରୁଷମାନେ ଧର୍ମାର୍ଥରେ କରାଇଥିବା ସେତୁ, କୂପ, ତଡ଼ାଗାଦିକୁ ବଳପୂର୍ବକ ଅଧିକାର କରିଗଲେ କିମ୍ବା ସେମାନଙ୍କ ପୁତ୍ର ପୌତ୍ରାଦିଙ୍କୁ ବା ଗୃହଗୁଳିକମାନଙ୍କୁ ଅୟତ୍ନକରି ତାହା କିଣିନେଲେ କିମ୍ବା ଅନ୍ୟ କାହାକୁ କିଣାଇ ଦେଲେ ସେ ମଧ୍ୟମସାହସଦଣ୍ଡରେ ଦଣ୍ଡିତ ହେବେ ଏବଂ ଏହି ଅନ୍ୟାୟ କାର୍ଯ୍ୟରେ ହୋଇଥିବା ସାକ୍ଷିମାନେ ଉତ୍ତମସାହସଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ଭଗ୍ନ, ଉପେକ୍ଷିତ ଓ ଅସଂସ୍କୃତ ସେତୁ, କୂପ ପ୍ରଭୃତି ବିଷୟରେ ଏପରି କିଛି ଘଟିଲେ ଉପରୋକ୍ତ ଦଣ୍ଡ ଦିଆଯିବ ନାହିଁ । (୩) ସେତୁବନ୍ଧାଦି

---

* ଚୈତ୍ୟ—ବଟ ଉସ୍ତ ପ୍ରଭୃତି ଦେବବୃକ୍ଷ ।

(୪) ପଥିପ୍ରମାଣଂ ଦୁର୍ଗନିବେଶେ ବ୍ୟାଖ୍ୟାତମ୍ । କ୍ଷୁଦ୍ରପଶୁମନୁଷ୍ୟପଥଂ ରୁନ୍ଧତୋ ଦ୍ୱାଦଶପଣୋ ଦଣ୍ଡଃ । ମହାପଶୁପଥଂ ଚତୁର୍ବିଂଶତି ପଣଃ । ହସ୍ତିକ୍ଷେତ୍ରପଥଂ ଚତୁଷ୍ପଞ୍ଚାଶତ୍ପଣଃ । ସେତୁବନପଥଂ ଷଟ୍ଛତଃ । ଶ୍ମଶାନଗ୍ରାମପଥଂ ଦ୍ୱିଶତଃ । ଦ୍ରୋଣମୁଖପଥଂ ପଞ୍ଚଶତଃ । ସ୍ଥାନୀୟରାଷ୍ଟ୍ରବିବୀତପଥଂ ସାହସ୍ରଃ । ଅତିକର୍ଷଣେ ଚୈଷାଂ ଦଣ୍ଡଚତୁର୍ଥା ଦଣ୍ଡାଃ । କର୍ଷଣେ ପୂର୍ବୋକ୍ତାଃ । (୫) କ୍ଷେତ୍ରି-କସ୍ୟାକ୍ଷିପତଃ କ୍ଷେତ୍ରମୁପବାସସ୍ୟ ବା ତ୍ୟଜତୋ ବୀଜକାଲେ

---

ପୁଣ୍ୟକର୍ତ୍ତା କହିବା ବ୍ୟକ୍ତିମାନେ କିମ୍ବା ସେମାନଙ୍କ ଉତ୍ତରାଧିକାରୀମାନେ ନ ଥିଲେ କିମ୍ବା ଏମାନେ ଏହାର ମରାମତି ଦାୟିତ୍ୱ ନ ନେଲେ ଗ୍ରାମବାସିମାନେ କିମ୍ବା ଗ୍ରାମର ପୁଣ୍ୟାତ୍ମା ବ୍ୟକ୍ତିମାନେ ଉକ୍ତ ଭଗ୍ନ ସେତୁବନ୍ଧାଦିକୁ ମରାମତି କରାଇବା ଦାୟିତ୍ୱ ବହନ କରିବେ । (୪) କେଉଁ ପଥ କିପରି କରିବାକୁ ହେବ ତାହା 'ଅଧ୍ୟକ୍ଷ ପ୍ରଚାର' ଅଧିକରଣର ଦ୍ୱିତୀୟ ଅଧ୍ୟାୟ ଦୁର୍ଗନିବେଶ ପ୍ରକରଣରେ ଆଲୋଚିତ ହୋଇଛି । ଏହି ପଥଗୁଡ଼ିକ ମଧ୍ୟରୁ କ୍ଷୁଦ୍ର ପଶୁପଥ ଓ ମନୁଷ୍ୟପଥ (ଛେଳି ମେଣ୍ଢା ଯିବା ରାସ୍ତା ଓ ମନୁଷ୍ୟ ଯିବା ରାସ୍ତା) ରୋଧ କଲେ ବାରପଣ; ଗାଈ, ଘୋଡ଼ା ପ୍ରଭୃତି ମହାପଶୁ ପଥ ରୋଧକଲେ ଚବିଶପଣ; ହସ୍ତିକ୍ଷେତ୍ରପଥ ରୋଧକଲେ ଚଉବନପଣ, ସେତୁପଥ ଓ ବନପଥ ରୋଧକଲେ ଛ'ଶତପଣ; ଶ୍ମଶାନପଥ ଓ ଗ୍ରାମପଥ ରୋଧକଲେ ଦୁଇଶତପଣ; ଦ୍ରୋଣମୁଖ (ଚାରିଶହ ଗ୍ରାମ ମଧ୍ୟରେ ଥିବା ପ୍ରଧାନ ସହର)କୁ ଯିବା ପଥ ରୋଧକଲେ ପାଞ୍ଚଶତପଣ; ସ୍ଥାନୀୟ (ଆଠଶହ ଗ୍ରାମ ମଧ୍ୟରେ ଥିବା ପ୍ରଧାନ ନଗର) ଓ ରାଷ୍ଟ୍ରବିବୀତ ଅର୍ଥାତ୍ ସମାହର୍ତ୍ତାଙ୍କ କର୍ତ୍ତୃତ୍ୱରେ ଥିବା ଦୁର୍ଗରାଷ୍ଟ୍ର ଖଣି, ସ୍ଥଳପଥ, ଜଳପଥ ଇତ୍ୟାଦି ରୋଧକଲେ ଏକସହସ୍ର ପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଏହି ପଥର କୌଣସି ଅଂଶ ଦଖଲ କଲେ କିମ୍ବା ଉଚିତ ରାସ୍ତାଟିକୁ ସଙ୍କୁଚିତ କରିଦେଲେ ଉକ୍ତ ଦଣ୍ଡର ଚତୁର୍ଥାଂଶ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ଏବଂ ଉକ୍ତ ପଥମାନଙ୍କୁ ଚାଷକରି ଫସଲ ଲଗାଇଦେଲେ ପୂର୍ବୋକ୍ତ ପଥରୋଧ ଦଣ୍ଡର ବ୍ୟବସ୍ଥା କରିବାକୁ ହେବ । (୫) ବୀଜବପନ ସମୟରେ (ବିହନ ବୁଣିବା ସମୟରେ) ଭୂସ୍ୱାମୀ ନିଜେ ଚାଷ କରିନପାରିବା ଜମିକୁ ଅନ୍ୟ ଚଷା ନ ଲଗାଇଲେ

ଦ୍ୱାଦଶପଣୋ ଦଣ୍ଡଃ ଅନ୍ୟତ୍ର ଦୋଷୋପନିପାତାବିଷହ୍ୟେଭ୍ୟଃ । (୬) କରଦାଃ କରଦେଷ୍ୱାଧାନଂ ବିକ୍ରୟଂ ବା କୁର୍ୟୁଃ, ବ୍ରହ୍ମଦେୟିକା ବ୍ରହ୍ମଦେୟିକେଷୁ । ଅନ୍ୟଥା ପୂର୍ବଃ ସାହସଦଣ୍ଡଃ, କରଦସ୍ୟ ବା କରଦଗ୍ରାମଂ ପ୍ରବିଶତଃ । (୭) କରଦନ୍ତୁ ପ୍ରବିଶତଃ ସର୍ବଦ୍ରବ୍ୟେଷୁ ପ୍ରାକାମ୍ୟଂ ସ୍ୟାତ୍, ଅନ୍ୟତ୍ରାଗାରାତ୍ । ତଦପ୍ୟସ୍ମୈ ଦଦ୍ୟାତ୍ । (୮) ଅନାଦେୟମକୃଷତୋଽନ୍ୟଃ ପଞ୍ଚବର୍ଷାଣ୍ୟୁପଭୁଜ୍ୟ

---

କିମ୍ବା ଭୂସ୍ୱାମିଠାରୁ କୃଷକୁ ଜମି ରଖି ବନ୍ଧନ ଭୁଗିବା ସମୟରେ କୃଷି ଭୁଣାଭୁଣି ନକରି ଜମି ପଡ଼ିଆ ରଖିଲେ ବା ଛାଡ଼ିଦେଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ଜମିର ଦୋଷ, ରାଜଦ୍ରୋହାଦି ଉପଦ୍ରବ ଓ ମହାରୋଗାଦି କାରଣରୁ ଏପରି ଜମି ତ୍ୟାଗକଲେ ବା ପଡ଼ିଆ ରଖିଲେ କୌଣସି ଦଣ୍ଡ ଦିଆଯାଇ ପାରିବ ନାହିଁ । (୬) କରଦ ବ୍ୟକ୍ତିମାନେ ସେମାନଙ୍କ ଘରବାରି, ବିଲ, ବଗିଚା ପ୍ରଭୃତି କେବଳ କରଦମାନଙ୍କୁ ହିଁ ବନ୍ଧକ ଦେବେ ବା ବିକ୍ରୟ କରିବେ ଏବଂ ଅକରଦ ବ୍ରାହ୍ମଣାଦି ବ୍ୟକ୍ତି-ମାନଙ୍କୁ ବନ୍ଧକ ବା ବିକ୍ରୟ କରିବେ ନାହିଁ । ବ୍ରହ୍ମଦେୟିକ ଅର୍ଥାତ୍ ବ୍ରାହ୍ମଣମାନେ ମଧ୍ୟ ଏହିପରି ନିଜର କରମୁକ୍ତ ବ୍ରହ୍ମଦେୟ ସ୍ଥିରାସ୍ତି ବ୍ରାହ୍ମଣମାନଙ୍କୁ ହିଁ ବିକ୍ରୟ ବନ୍ଧକ କରିବେ, ଅନ୍ୟକୁ ଦେଇପାରିବେ ନାହିଁ । ଏହି ବିଧି ଅତିକ୍ରମ କରିବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରାଯିବ । ଅକରଦ ଅର୍ଥାତ୍ ବ୍ରାହ୍ମଣଗ୍ରାମରେ କରଦ-ପ୍ରଜା ପ୍ରବେଶ କଲେ ଅର୍ଥାତ୍ ବ୍ରାହ୍ମଣ ଅଗ୍ରାହାର ବା ଶାସନର ଘର, ଜମିବାଡ଼ି କ୍ରୟ କଲେ ବା ବନ୍ଧକ ରଖି ସେଥିରେ ଦଖଲ ଚଳାଇଲେ ମଧ୍ୟ ଏହିପରି ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (୭) ଜଣେ କରଦ ବ୍ୟକ୍ତିର ଭୂମ୍ୟାଦି ସମ୍ପତ୍ତି କ୍ରୟକରି ଯଦି ଅନ୍ୟଗ୍ରାମର ଅନ୍ୟ ଏକ କରଦ ବ୍ୟକ୍ତି ଉକ୍ତ ବିକ୍ରେତାର ଗ୍ରାମରେ ପ୍ରବେଶ କରେ, ତେବେ ସେ ବିକ୍ରେତାର ବାସଗୃହ ବ୍ୟତୀତ ଅନ୍ୟସମସ୍ତ ଚରସ୍ଥିରାସ୍ତିରେ ସ୍ୱାମିତ୍ୱ ଜାରି କରିପାରିବ । କିନ୍ତୁ ଉକ୍ତ ବିକ୍ରେତା ଯଦି ବାସଗୃହ ପର୍ଯ୍ୟନ୍ତ କ୍ରେତାକୁ ବିକ୍ରୟ କରିଦେବାକୁ ଇଚ୍ଛାକରେ, ତେବେ ସେ ତାହା ଜମିବାଡ଼ି କିଣିବା ପରି କ୍ରୟକରି ଦଖଲ କରିପାରିବ । (୮) ନିଜର ଆବାଦଯୋଗ୍ୟ ଅନାବାଦି ଜମିକୁ ପୁଅଣ୍ଟ କରିନପାରି ଅନ୍ୟ

**ଦ୍ରବ୍ୟାପନଷ୍ଟ୍ରବ୍ୟେଣ ଦଦ୍ୟାତ୍ । (୯) ଅକରଦାଃ ପରତ୍ର ବସନ୍ତୋ ଭୋଗମୁପଜୀବେୟୁଃ । (୧୦) ଗ୍ରାମାର୍ଥେନ ଗ୍ରାମିକଂ ବ୍ରଜନ୍ତମ୍ ଉପବାସାଃ ପର୍ଯ୍ୟାୟେଣାନୁଗଚ୍ଛେୟୁଃ । ଅନନୁଗଚ୍ଛନ୍ତଃ ପଣାର୍ଧପଣିକଂ ଯୋଜନଂ ଦଦ୍ୟୁଃ । (୧୧) ଗ୍ରାମିକସ୍ୟ ଗ୍ରାମାଦସ୍ତେନପାରଦାରକଂ ନିରସ୍ୟତଶ୍ଚତୁର୍ବିଂଶତିପଣୋ ଦଣ୍ଡଃ ଗ୍ରାମସ୍ୟୋତ୍ତମଃ । (୧୨)**

---

ବ୍ୟକ୍ତିକୁ ଧୂଆଁଣ୍ଟ ପାଇଁ କେହି ଦେଇଦେଲେ, ଏହି ବ୍ୟକ୍ତି ଉକ୍ତ ଜମିକୁ ଅବାଧଦେୟୋଗ୍ୟ କରି ପାଞ୍ଚବର୍ଷ ଇଚ୍ଛାରେ ଭୋଗ କରିବେ ଏବଂ ଏହି ପାଞ୍ଚବର୍ଷ ମଧ୍ୟରେ ଏହି ଜମିରେ କରିଥିବା କୂପ, ତଡ଼ାଗାଦିର ବ୍ୟୟଧନ ଫେରାପସ୍ ପାଇ ଭୂସ୍ୱାମିଙ୍କୁ ତାଙ୍କ ଜମି ଫେରାପସ୍ କରିଦେବେ । (୯) ବ୍ରାହ୍ମଣାଦି ଅକରଦ ବ୍ୟକ୍ତି ଅନ୍ୟ ଗ୍ରାମରେ ବାସ କରୁଥିଲେ ସେ କେବଳ ତାଙ୍କର କ୍ଷେତ୍ରଭୋଗ ମାତ୍ର ଗ୍ରହଣ କରି ପାରିବେ । କିନ୍ତୁ ସୁବର୍ଣ୍ଣ, କର, ଦଣ୍ଡ ଇତ୍ୟାଦି ରାଜା ଗ୍ରହଣ କରିବେ । (୧୦) ଗ୍ରାମମୁଖ୍ୟ ବା ଗ୍ରାମାଧିକାରୀ ଗ୍ରାମର କୌଣସି କାର୍ଯ୍ୟ ସାଧନ ସକାଶେ ଅନ୍ୟଦେଶକୁ ବା ଅନ୍ୟସ୍ଥାନକୁ ଗଲାବେଳେ ଗ୍ରାମର କୃଷକାଦି ବ୍ୟକ୍ତିମାନେ ପର୍ଯ୍ୟାୟକ୍ରମେ ଅର୍ଥାତ୍ ପାଳି ଅନୁସାରେ ତାଙ୍କୁ ଅନୁସରଣ କରିବେ ଏବଂ ଏପରି ଅନୁସରଣ ନ କରିବା ବ୍ୟକ୍ତିମାନେ ପ୍ରତି ଯୋଜନକୁ ଦେଢ଼ପଣ ହିସାବରେ ଜୋରିମାନା ଗ୍ରାମମୁଖ୍ୟଙ୍କୁ ଦେବାକୁ ବାଧ୍ୟ ହେବେ । (୧୧) ଗ୍ରାମମୁଖ୍ୟ ଯଦି ଗ୍ରାମର କୌଣସି ବ୍ୟକ୍ତିକୁ ଚୋରି ବା ବ୍ୟଭିଚାର ପ୍ରଭୃତି ଦୋଷ ନଥିବା ସତ୍ତ୍ୱେ ଗ୍ରାମରୁ ବହିଷ୍କୃତ କରିଦିଅନ୍ତି (ଗାଁରୁ ବାହାର କରିଦିଅନ୍ତି), ତେବେ ତାଙ୍କୁ ରାଜା ଚବିଶପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବେ ଏବଂ ଏହିପରି ବିନାଦୋଷରେ ଗ୍ରାମବାସିମାନଙ୍କୁ ଗ୍ରାମରୁ ବହିଷ୍କୃତ କରିଦେଲେ ଉତ୍ତମସାହସଦଣ୍ଡରେ ଦଣ୍ଡିତ କରିବେ । (ଗ୍ରାମମୁଖ୍ୟ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତି ଯଦି ଏପରି କାହାକୁ ଚୋରି ବା ବ୍ୟଭିଚାର ଇତ୍ୟାଦି ଦୋଷ ନଥିଲେ ମଧ୍ୟ ବଳପ୍ରୟୋଗ ଦ୍ୱାରା ଗ୍ରାମରୁ ବାହାର କରିଦିଏ, ତେବେ ରାଜା ତାଙ୍କୁ ଉତ୍ତମସାହସଦଣ୍ଡରେ ଦଣ୍ଡିତ କରିବେ ବୋଲି ମଧ୍ୟ ଅନ୍ୟ ଏକ ଟୀକାରେ ଲେଖା ଯାଇଛି) । (୧୨) ଗ୍ରାମରୁ ନିଷ୍କାସିତ ହୋଇଥିବା ଚୋର ଓ ପାରଦାରିକମାନେ ଗ୍ରାମରେ ପୁନଃ ପ୍ରବେଶ କଲେ ସେମାନଙ୍କୁ 'ପରଗୃହାଭିଗମନ' ପ୍ରକରଣରେ ଅଭିହିତ

ନରସ୍ତସ୍ୟ ପ୍ରବେଶେ। ହ୍ୟଧିଗମେନ ବ୍ୟାଖ୍ୟାତଃ । (୧୩) ସ୍ତମ୍ଭୈଃ ସମନ୍ତତୋ ଗ୍ରାମାଦ୍ ଧନୁଶ୍ଶତାପକୃଷ୍ଟମୁପସାଳଂ କାରୟେତ୍ । (୧୪) ପଶୁପ୍ରଚାରାର୍ଥଂ ବିବୀତମାଳବନେନୋପଜୀବୟେୟୁଃ । (୧୫) ବିବୀତଂ ଭକ୍ଷୟିତ୍ୱାପସୃତାନାମୁଷ୍ଟ୍ରମହିଷାଣାଂ ପାଦିକଂ ରୂପଂ ଗୃହ୍ଣୀୟୁଃ । ଗବାଶ୍ୱଖରାଣାଂ ଚାର୍ଧପାଦିକମ୍ । କ୍ଷୁଦ୍ରପଶୂନାଂ ଷୋଡ଼ଶଭାଗିକମ୍ । (୧୬) ଭକ୍ଷୟିତ୍ୱା ନିଷଣ୍ଣାନାମେତ ଏବ ଦ୍ୱିଗୁଣା ଦଣ୍ଡାଃ । ପରିବସତାଂ ଚତୁର୍ଗୁଣାଃ । ଗ୍ରାମଦେବବୃଷା ବା ଅନିର୍ଦଶାହା ବା ଧେନୁରୁକ୍ଷାଣୋ ଗୋବୃଷାଶ୍ଚାଦଣ୍ଡ୍ୟାଃ । (୧୭) ଶସ୍ୟ-

---

ହୋଇଥିବା ଦଣ୍ଡରେ ଦଣ୍ଡିତ କରିବାକୁ ହେବ । (ଏମାନଙ୍କୁ ଗ୍ରାମକୁ ଡାକିଆଣିବା ବ୍ୟକ୍ତି ମଧ୍ୟ ଏପରି ଦଣ୍ଡ ପାଇବ) । (୧୩) ପ୍ରତ୍ୟେକ ଗ୍ରାମଠାରୁ ଏକଶତ ଧନୁ ଦୂରରେ ପଥର ବା କାଠର ବଡ଼ ବଡ଼ ସ୍ତମ୍ଭ ପୋତି ଚତୁର୍ଦ୍ଦିଗରେ ଗୋଟିଏ ଉପପ୍ରାକାର ବା ବାଡ଼ ପକାଇବାକୁ ହେବ । (୧୪) ପଶୁମାନେ ଚରିବୁଲି କରିବା ସକାଶେ ଘାସପାଣି ଓ ଜଳ ଥିବା ଭୂମି, ମାଳଭୂମି ଅର୍ଥାତ୍ ଉନ୍ନତ ଭୂତଳ ଓ ବନଭୂମିକୁ ଗ୍ରାମଲୋକମାନେ ବ୍ୟବସ୍ଥା କରିବେ । (୧୫) ପଶୁଚାରଣ ଭୂମିରେ ଚରିବୁଲି କରି ଅସୁଥିବା ଓଟ ଓ ମଇଁଷିମାନଙ୍କ ପାଇଁ ବିବୀତାଧ୍ୟକ୍ଷ ମୁଣ୍ଡପିଛା ଏକପଣର ଚତୁର୍ଥାଂଶ, ଗାଈ ଓ ଘୋଡ଼ାଙ୍କ ପାଇଁ ମୁଣ୍ଡପିଛା ଏକପଣର ଅଷ୍ଟମାଂଶ ଓ ଛେଳି, ମେଣ୍ଢା ପ୍ରଭୃତି କ୍ଷୁଦ୍ରପଶୁମାନଙ୍କ ପାଇଁ ମୁଣ୍ଡପିଛା ଏକପଣର ଷୋଡ଼ଶାଂଶ ଚରିପାଣ୍ଠି ଉକ୍ତ ପଶୁରକ୍ଷକମାନଙ୍କଠାରୁ ଅଦାୟ କରିବେ । (୧୬) ଚରିଭୂମିରେ ଚରିବୁଲି କରି ସେଠାରୁ ଫେରି ନ ଅସିଲେ, ଉକ୍ତ ପଶୁମାନଙ୍କ ସକାଶେ ଧାର୍ଯ୍ୟ ହୋଇଥିବା ପାଣ୍ଠିର ଦୁଇଗୁଣ ସେମାନଙ୍କ ସ୍ୱାମିଙ୍କଠାରୁ ଅସୁଲ କରାଯିବ ଏବଂ ଦିନରାତି ଏପରି ସେଠାରେ ରହିଲେ ଚୌଗୁଣି କରି ଅସୁଲ କରାଯିବ । ଗ୍ରାମର ବୃଷଭ (ଗାଁର ଷଣ୍ଢ), ଦେବତାଙ୍କ ନାମରେ ଛଡ଼ାଯାଇଥିବା ବୃଷଭ, ପ୍ରସବ କରିବାର ଦଶଦିନ ଯାଇନଥିବା ପ୍ରସୂତା ଗାଈ, ବୁଢ଼ାବଳଦ ବା ଷଣ୍ଢ ଓ ଗ୍ରାମର ଗାଈପଲରେ ଗୋସମ୍ପଦ ବୃଦ୍ଧି ସକାଶେ ଛଡ଼ାଯାଇଥିବା ଷଣ୍ଢମାନେ ଅଦଣ୍ଡ୍ୟ ଅଟନ୍ତି ଅର୍ଥାତ୍ ଏମାନେ ଯେକୌଣସିଠାରେ ଚରିବୁଲି କଲେ ଏମାନଙ୍କ ପାଇଁ କୌଣସି ପ୍ରକାର ପାଣ୍ଠି ପଡ଼ିବ ନାହିଁ । (୧୭)

**ଭକ୍ଷଣେ ଶସ୍ୟୋପଘାତଂ ନିଷ୍ପତ୍ତିତଃ ପରିସଂଖ୍ୟାୟ ଦ୍ୱିଗୁଣଂ ଦାପୟେତ୍ । (୧୮) ସ୍ୱାମିନସ୍ତ୍ୱାନିବେଦ୍ୟ ଚାରୟତୋ ଦ୍ୱାଦଶପଣୋ ଦଣ୍ଡଃ । ପ୍ରମୁଞ୍ଚତଶ୍ଚତୁର୍ବିଂଶତି ପଣାଃ । ପାଳନାମର୍ଦ୍ଧଦଣ୍ଡାଃ । ତଦେବ ଷଣ୍ଡଭକ୍ଷଣେ କୁର୍ଯାତ୍ । ବାଟଭେଦେ ଦ୍ୱିଗୁଣଃ । ବେଶ୍ମ-ଖଳବଳୟଗତାନାଂ ଚ ଧାନ୍ୟାନାଂ ଭକ୍ଷଣେ । ହିଂସାପ୍ରତୀକାରଂ କୁର୍ଯାତ୍ । (୧୯) ଅଭୟବନମୃଗାଃ ପରଗୃହୀତା ବା ଭକ୍ଷୟନ୍ତଃ**

---

ଗାଈ, ମଇଁଷି, ଓଟ ପ୍ରଭୃତି ଜନ୍ତୁ କାହାର ଶସ୍ୟ ଭକ୍ଷଣ କଲେ ସେହି କ୍ଷେତ୍ରରେ ଜାତହୋଇଥିବା ଶସ୍ୟକୁ ଭଦ୍ରବ୍ୟକ୍ତିମାନଙ୍କ ଦ୍ୱାରା ଉତ୍ତମରୂପେ ଯଞ୍ଚାକରାଇ କ୍ଷତହୋଇଥିବା ଶସ୍ୟର ଦୁଇଗୁଣ ଉକ୍ତ ପଶୁର ସ୍ୱାମୀଠାରୁ ଅସୁଲ କରାଇ ଭୂସ୍ୱାମିଙ୍କୁ ଦିଆଇଦେବାକୁ ହେବ । (୧୮) ବିବୀତାଧ୍ୟକ୍ଷଙ୍କୁ ନ ଜଣାଇ ଚରାଭୂମିରେ ପଶୁଚରାଇବା ବ୍ୟକ୍ତି ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଅଥବା କ୍ଷେତ୍ରସ୍ୱାମିଙ୍କ ଅଜଣାରେ ଯଦି ପଶୁର ସ୍ୱାମୀ ତାଙ୍କ ଫସଲ ନଷ୍ଟ କରନ୍ତି ତେବେ ପୂର୍ବୋକ୍ତ ନିୟମାନୁସାରେ ଯଞ୍ଚାଧନର ଦ୍ୱିଗୁଣ ଦଣ୍ଡ ପାଇବା ସଙ୍ଗେ ସଙ୍ଗେ ବାରପଣ ଅତିରିକ୍ତ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ବିଶେଷତଃ କାହାର ଫସଲରେ ଏପରି ପଶୁମାନଙ୍କୁ ଛାଡ଼ିଦେଇ ଚରାଇଆସିଲେ ବା ଜବରଦସ୍ତି କାହାର ଫସଲ ଖୁଆଇଦେଲେ ସଞ୍ଚାର ଦୁଇଗୁଣ ଦଣ୍ଡ ପାଇବା ସଙ୍ଗେ ସଙ୍ଗେ ଚବିଶପଣ ଅତିରିକ୍ତ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଜଗାଳିମାନଙ୍କ ଦୋଷରୁ ଏପରି ଫସଲ ନଷ୍ଟ ଘଟିଲେ ସେମାନେ ଉପରୋକ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ ହେବେ । (ଓଟ, ମଇଁଷି ପ୍ରଭୃତିଙ୍କ ପିଲମାନଙ୍କ ଦ୍ୱାରା ଏପରି କଲୁ ନଷ୍ଟ ହେଲେ ମଧ୍ୟ ପଶୁର ସ୍ୱାମିଙ୍କୁ ଅର୍ଦ୍ଧଦଣ୍ଡ ଦିଆଯିବ—ଭିଷାଟୀକା) । ଧାନ୍ୟାଦି ଶସ୍ୟ ନଷ୍ଟ କଲେ ଯେପରି ଦଣ୍ଡର ବ୍ୟବସ୍ଥା କରିବାକୁ କୁହାଗଲା, କଦଳୀ ବୋଚେଇ, କାକୁଡ଼ିବାରି ପ୍ରଭୃତି ବାରିବଗିଚା ନଷ୍ଟରେ ମଧ୍ୟ ସେହିପରି ଯଞ୍ଚା ଓ ଜୋରିମାନାର ବ୍ୟବସ୍ଥା କରିବାକୁ ହେବ ଏବଂ ବାଡ଼ ଭାଙ୍ଗି ଜବରଦସ୍ତି ବାରିବଗିଚାର ଫସଲ ନଷ୍ଟ କଲେ ଏହାର ଦୁଇଗୁଣ ଦଣ୍ଡ ଧାର୍ଯ୍ୟ କରିବାକୁ ହେବ । ଘରେ, ଖଳାରେ ଓ ଗଦାରେ ଥିବା ଧାନ୍ୟାଦି ଶସ୍ୟ ନଷ୍ଟ କଲେ ମଧ୍ୟ ଏପରି ଦୁଇଗୁଣ ଦଣ୍ଡର ବ୍ୟବସ୍ଥା କରାଯିବ । ନଷ୍ଟ ହୋଇଥିବା ଶସ୍ୟର କ୍ଷତିପୂରଣ ସବୁଠାରେ କରିବାକୁ ହେବ । (୧୯) ଅଭୟବନର ମୃଗ ଓ ପୋଷାମୃଗମାନେ ଫସଲ

ସ୍ୱାମିତନା ନବେଦ୍ୟ ଯଥାବଧ୍ୟାସ୍ତଥା ପ୍ରତଷେଦ୍ଧବ୍ୟାଃ । (୨୦) ପଶବୋ ରଶ୍ମିପ୍ରତୋଦାଭ୍ୟାଂ ବାରୟିତବ୍ୟାଃ । ତେଷାମନ୍ୟଥା ହିଂସାୟାଂ ଦଣ୍ଡପାରୁଷ୍ୟଦଣ୍ଡାଃ । ପ୍ରାର୍ଥୟମାନା ଦୃଷ୍ଟାପରାଧା ବା ସର୍ବୋପାୟୈର୍ନିୟନ୍ତବ୍ୟାଃ । ଇତ କ୍ଷେତ୍ରପଥହିଂସା । (୨୧) କର୍ଷକସ୍ୟ ଗ୍ରାମମଭ୍ୟୁପେତ୍ୟାକୁର୍ବତୋ ଗ୍ରାମ ଏବାତ୍ୟୟଂ ହରେତ୍ । କର୍ମାକରଣେ କର୍ମବେତନାଦ୍ ଦ୍ୱିଗୁଣଂ, ହିରଣ୍ୟାଦାନେ ପ୍ରତ୍ୟଂଶଦ୍ୱିଗୁଣଂ, ଭକ୍ଷ୍ୟପେୟାଦାନେ ଚ ପ୍ରବହଣେଷୁ ଦ୍ୱିଗୁଣମଂଶଂ

---

ନଷ୍ଟ କଲେ ଭୂସ୍ୱାମୀ ସେମାନଙ୍କ ସ୍ୱାମିଙ୍କୁ ଜଣାଇ, ସେମାନେ ଯେପରି ପୁନର୍ବାର ଏପରି ନଷ୍ଟ ନକରନ୍ତି ସେପରି କରିବାକୁ ହେବ ସିନା ତାହାକୁ ପ୍ରହାର କିମ୍ବା ହତ୍ୟା କରିବାକୁ ହେବ ନାହିଁ । ଅବଧ୍ୟପଶୁମାନଙ୍କ ପର ଏମାନଙ୍କୁ ଫସଲରୁ ଘଉଡ଼ାଇ ଦେବା ଛଡ଼ା ପ୍ରହାର କିମ୍ବା ହତ୍ୟା କରିବାକୁ ହେବ ନାହିଁ । (୨୦) ପଶୁମାନଙ୍କୁ ଫସଲରୁ ଘଉଡ଼ାଇବାକୁ ହେଲେ ବା ବିଲ, ବାରି, ବଗିଚ୍ଚରେ ପଶିବାକୁ ବାରଣ କରିବାକୁ ହେଲେ କୋରଡ଼ା କିମ୍ବା ଛଟଦ୍ୱାରା ବାରଣ କରିବାକୁ ହେବ । କିନ୍ତୁ ଠେଙ୍ଗା, କାଣ୍ଡ, କାଠ, ପଥର ପ୍ରଭୃତି କଠୋର ଓ ତୀକ୍ଷ୍ଣ ଅସ୍ତ୍ରଦ୍ୱାରା ବାରଣ କଲେ 'ଦଣ୍ଡପାରୁଷ୍ୟ' ପ୍ରକରଣରେ ଯେଉଁ ଦଣ୍ଡର ବ୍ୟବସ୍ଥା କରିବା ପାଇଁ କୁହାଯାଇଛି, ସେପରି ଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଅମାନିଆ ମାରଣା ପଶୁକୁ ସମସ୍ତ ପ୍ରକାର ବଳପ୍ରୟୋଗ କରି ଯଦି ବାରଣ କରାଯାଇ ପାରେ ନାହିଁ କିମ୍ବା ଆଗେ ଏପରି ଶସ୍ୟ ହିଂସା କରିଥିବା ବ୍ୟକ୍ତିର ପଶୁ ଯଦି ପୁନର୍ବାର ଶସ୍ୟ ନଷ୍ଟ କରୁଥାଏ, ତେବେ ସେହି ପଶୁମାନଙ୍କୁ ବନ୍ଧନ ବା ଅବରୋଧନ (କାଞ୍ଜିଅଘରେ ଅର୍ଥାତ୍ ଦୋଡ଼ଘରେ ଅଟକାଇବା) ଇତ୍ୟାଦି ଉପାୟଦ୍ୱାରା ଦମନ କରିବାକୁ ହେବ । ଏଠାରେ କ୍ଷେତ୍ରପଥହିଂସା ବିଷୟ ସମାପ୍ତ ହେଲା । (୨୧) କୌଣସି କୃଷକ ଯଦି ଗ୍ରାମଜନସମୂହର କୌଣସି କାର୍ଯ୍ୟ କରିବା ପାଇଁ ସ୍ୱୀକାର କରି ତାହା କରେନାହିଁ, ତେବେ ଗ୍ରାମବାସୀ ତାଙ୍କୁ ଜରିମାନା କରିବେ । କାର୍ଯ୍ୟ ନକଲେ ବେତନର ଦୁଇଗୁଣ, ଦେୟଚାନ୍ଦା ନ ଦେଲେ ଧାର୍ଯ୍ୟ ହୋଇଥିବା ଦେୟଚାନ୍ଦାର ପ୍ରତ୍ୟେକର ଦୁଇଗୁଣ ଏବଂ ଗୋଷ୍ଠିଭୋଜନାଦି ସକାଶେ ଧାର୍ଯ୍ୟ ହୋଇଥିବା ଗୁଡ଼ଳ, ଡାଲି, ପରିବା

ଦଦ୍ୟାତ୍ । (୬୨) ପ୍ରେକ୍ଷାୟାମନଂଶଦଃ ସସ୍ୱଜନୋ ନ ପ୍ରେକ୍ଷେତ । ପ୍ରଚ୍ଛନ୍ନଶ୍ରବଣେକ୍ଷଣେ ଚ ସର୍ବହିତେ ଚ କର୍ମଣି ନିଗ୍ରହେଣ ଦ୍ୱିଗୁଣମଂଶଂ ଦଦ୍ୟାତ୍ । (୬୩) ସର୍ବହିତମେକସ୍ୟ ବ୍ରୁବତଃ କୁର୍ଯୁରାଜ୍ଞାମ୍ । ଅକରଣେ ଦ୍ୱାଦଶପଣୋ ଦଣ୍ଡଃ । ତଂ ଚେତ୍ ସଂଭୂୟ ବା ହନ୍ୟୁଃ ପୃଥଗେଷାମପରାଧଦ୍ୱିଗୁଣୋ ଦଣ୍ଡଃ । ଉପହନ୍ତୃଷୁ ବିଶିଷ୍ଟଃ । (୬୪) ବ୍ରାହ୍ମଣତଶ୍ଚୈଷାଂ ଜୈ୍ୟଷ୍ଠ୍ୟଂ ନିୟମ୍ୟେତ । ପ୍ରବହଣେଷୁ ଚୈଷାଂ ବ୍ରାହ୍ମଣେ ନାକାମାଃ

---

ପ୍ରଭୃତି ଭକ୍ଷ୍ୟ ପଦାର୍ଥ ନଦେଲେ ଏହାର ଦୁଇଗୁଣ ଦଣ୍ଡ ସ୍ୱରୂପ ଆଦାୟ କରିବାକୁ ହେବ । (୬୨) ନାଚ ଓ ଯାତ ପାଇଁ ଗୃହା ଭେଦା ନଦେବା ବ୍ୟକ୍ତି ନିଜେ ନାଚ ଓ ଯାତ ଦେଖିପାରିବ ନାହିଁ କିମ୍ବା ତାର କୁଟୁମ୍ବ-ସ୍ୱଜନ କେହି ହେଲେ ମଧ୍ୟ ଦେଖି ପାରିବେ ନାହିଁ । ଲୁଚିଛପି ନାଚ ଦେଖିଲେ ବା ଗୀତ ଶୁଣିଲେ ତାହାକୁ ଧାର୍ଯ୍ୟ ହୋଇଥିବା ଭେଦାଗୃହାର ଦୁଇଗୁଣ ଧନ ତାହାଠାରୁ ଅସୁଲ କରିବାକୁ ହେବ । କୌଣସି ବ୍ୟକ୍ତି ଏପରି ସର୍ବ-ହିତକର କାର୍ଯ୍ୟର ପ୍ରତିବନ୍ଧକତା କଲେ ସ୍ୱଦେୟ ଧନର ଦୁଇଗୁଣ ଜରିମାନା ଦେବାକୁ ବାଧ୍ୟ ହେବ । (୬୩) ସର୍ବସାଧାରଣଙ୍କ ହିତକର ବାକ୍ୟ ଜଣେ କେହି କହିଲେ ମଧ୍ୟ ତାହା ସମସ୍ତେ ପାଳନ କରିବାକୁ ହେବ ଏବଂ ଏହା ପାଳନ ନ କରିବା ବ୍ୟକ୍ତି ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । ଈର୍ଷାପରବଶ ହୋଇ କେତେଜଣ ମେଳ ହୋଇ ଯଦି ଏହି ସର୍ବଜନହିତ ବକ୍ତାଙ୍କ ବାକ୍ୟର ବିରୋଧ କରନ୍ତି କିମ୍ବା ତାଙ୍କୁ ପ୍ରହାର ବା ଶସ୍ତ୍ରାଘାତ କରନ୍ତି, ତେବେ ସେମାନଙ୍କୁ ପ୍ରତ୍ୟେକର ଦୋଷ ବିବେଚନା କରି ଦୋଷର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ଏବଂ ସାକ୍ଷାତରେ ଏପରି ଅନିଷ୍ଟ କରିଥିବା ବ୍ୟକ୍ତିକୁ ବିଶେଷ ଭାବରେ ଦଣ୍ଡିତ କରିବାକୁ ହେବ । (୬୪) ଏପରି ସର୍ବଜନହିତ ବକ୍ତାମାନଙ୍କ ମଧ୍ୟରୁ ଗ୍ରାମର ଜନସାଧାରଣ ବ୍ରାହ୍ମଣମାନଙ୍କୁ ହିଁ ପ୍ରଥମ ସ୍ଥାନ ଦେବେ । କାରଣ ବ୍ରାହ୍ମଣମାନଙ୍କ ବଚନ ଅଲଂଘ୍ୟ ହୋଇଥିବା ଯୋଗୁଁ ଜନସାଧାରଣ ସେମାନଙ୍କ କଥା ବାଧ୍ୟହୋଇ ମାନିଥାନ୍ତି । ପ୍ରୀତିଭୋଜନ ପ୍ରଭୃତିରେ ବ୍ରାହ୍ମଣମାନଙ୍କ ଅଭିପ୍ରାୟ ଆଗରୁ ନଜାଣି ସେମାନଙ୍କଠାରୁ କେତେ ଗୃହା ଅଣାଯିବ ତାହା ସ୍ଥିର କରିବାକୁ

କୁର୍ଯୁଃ । ଅଂଶଂ ଚ ଲଭେରନ୍ । (୨୫) ତେନ ଦେଶଜାତି-କୁଳସଂଘାନାଂ ସମୟସ୍ୟାନପାକର୍ମ ବ୍ୟାଖ୍ୟାତମ୍ ।

(୨୬) ରାଜା ଦେଶହିତାନ୍ ସେତୂନ୍ କୁର୍ବତାଂ ପଥିସଂକ୍ରମାନ୍ ।
ଗ୍ରାମଶୋଭାଶ୍ଚ ରକ୍ଷାଶ୍ଚ ତେଷାଂ ପ୍ରିୟହିତଂ ଚରେତ୍ ॥

---

ହେବ ନାହିଁ । ଗୃଧା ଅଣିଲେ ମଧ୍ଯ ସେମାନେ ସ୍ୱଇଚ୍ଛାରେ ଯାହା ଦେବେ ତାହା ଅଣିବାକୁ ହେବ । (୨୫) ଉପରୋକ୍ତ 'ସମୟର ଅନପାକର୍ମ' ଅନୁସାରେ ଦେଶୀୟ ଜନସଂଘର, ଜାତୀୟ ଜନସଂଘର ଓ କୁଳୀୟ ଜନସଂଘର ସମୟ ଅନପାକର୍ମ ପ୍ରାୟ ବ୍ୟାଖ୍ୟାତ ହେଲା । (୨୬) ଯେଉଁମାନେ ଦେଶହିତକର ସେତୁବନ୍ଧ, ପଥ, ଦୁର୍ଗସଞ୍ଚାର, ଗ୍ରାମଶୋଭା ଓ ଗ୍ରାମରକ୍ଷା ଇତ୍ୟାଦ କାର୍ଯ୍ୟ ସୂଚୁରୁ ଓ ସୁଶୃଙ୍ଖଳିତଭାବେ କରନ୍ତି, ରାଜା ସେମାନଙ୍କର ପ୍ରିୟ ଓ ହିତ ଅଚରଣ ସର୍ବଦା କରିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଦଶମୋଽଧ୍ୟାୟଃ ।
ବାସ୍ତୁକେ ବିବୀତକ୍ଷେତ୍ରପଥହିଂସା, ବାସ୍ତୁକଂ ସମାପ୍ତମ୍ ।
ସମୟସ୍ୟାନପାକର୍ମ ଚ—ଅଦିତଃ ସପ୍ତଷଷ୍ଟିତମୋଽଧ୍ୟାୟଃ ।

## ଏକାଦଶୋଽଧ୍ୟାୟଃ

## ଦ୍ୱିଷଷ୍ଟିତମ ପ୍ରକରଣମ୍—ଋଣାଦାନମ୍

**RECOVERY OF DEBTS**

( ଋଣଅଦାୟ )

(୧) ସପାଦପଣା ଧର୍ମ୍ୟା ମାସବୃଦ୍ଧିଃ ପଣଶତସ୍ୟ । ପଞ୍ଚପଣା ବ୍ୟାବହାରିକୀ । ଦଶପଣା କାନ୍ତାରଗାଣାମ୍ । ବିଂଶତିପଣା ସାମୁଦ୍ରାଣାମ୍ । ତତଃ ପରଂ କର୍ତୁଃ କାରୟିତୁଶ୍ଚ ପୂର୍ବଃ ସାହସ-ଦଣ୍ଡଃ । ଶ୍ରୋତୃଣାମେକୈକଂ ପ୍ରତ୍ୟର୍ଧଦଣ୍ଡଃ । (୨) ରାଜନ୍ୟଯୋଗକ୍ଷେମବହେ ତୁ ଧନକଧାରଣିକୟୋଶ୍ଚରିତ୍ରମବେକ୍ଷେତ । (୩) ଧାନ୍ୟବୃଦ୍ଧିଃ ଶସ୍ୟନିଷ୍ପତ୍ତାବୁପାର୍ଧା, ପରଂ ମୂଲ୍ୟକୃତା ବର୍ଧେତ ।

---

(୧) ସାଧାରଣ ଋଣ ବନ୍ଧକାଧରେ ଶତକଡ଼ା ମାସିକ କଳନ୍ତର ଏକପଣ-ଏକପା (ପାଞ୍ଚସିକିକା) ଅଦାୟ କରିବା ଉଚିତ ଓ ଧର୍ମସମ୍ମତ । ବ୍ୟବସାୟ ବାଣିଜ୍ୟ ସକାଶେ ବ୍ୟବସାୟୀମାନଙ୍କୁ ଦଆଯିବା ଋଣରେ ଶତକଡ଼ା ମାସିକ ପାଞ୍ଚପଣ, ଦୁର୍ଗମ ମାର୍ଗରେ ବ୍ୟବସାୟ ଚଳାଇବା ବ୍ୟବସାୟୀମାନଙ୍କୁ ଦଆଯିବା ଋଣରେ ଶତକଡ଼ା ମାସିକ ଦଶପଣ ଏବଂ ସମୁଦ୍ର ବାଣିଜ୍ୟ ଚଳାଉଥିବା ବ୍ୟବସାୟୀମାନଙ୍କୁ ଦଆଯିବା ଋଣରେ ଶତକଡ଼ା ମାସିକ କୋଡ଼ିଏ ପଣ କଳନ୍ତର ଅଦାୟ କରାଯାଇପାରିବ । ଏଥିରୁ ବୃଦ୍ଧି କରି ଋଣ ଦେଲେ ବା ଋଣ ନେଲେ, ଦେବା ନେବା ଉଭୟ ଲୋକଙ୍କୁ ପୂର୍ବସାହସ ଦଣ୍ଡରେ ଏବଂ ଏହି ଋଣ ଦଆନିଆ ବେଳେ ଏଥିରେ ହୋଇଥିବା ସାକ୍ଷିମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଉକ୍ତ ଦଣ୍ଡର ଅର୍ଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୨) ଋଣଦାତା ଓ ଋଣଗ୍ରହୀତା ବ୍ୟସନ ଓ ପରଚକ୍ରାଦି ଉପଦ୍ରବହେତୁରୁ ଯୋଗକ୍ଷେମରହିତ ହୋଇଥିଲେ ସେମାନଙ୍କର ଅବସ୍ଥା ଦେଖି ରାଜା ଋଣ ଦଆନିଆର ବ୍ୟବସ୍ଥା କରିବେ । କାରଣ ରାଜ୍ୟର ସ୍ଥିତି ଏହି ସାହୁକାରଙ୍କ ଉପରେ ନିର୍ଭର କରୁଥିବା ଯୋଗୁଁ ରାଜା ଏମାନଙ୍କ ଅବସ୍ଥା ବରାବର ଜାଞ୍ଚ କରିବାକୁ ହେବ । (୩) ଋଣ

ପ୍ରକ୍ଷେପବୃଦ୍ଧିରୁଦୟାଦର୍ଧମ୍ । ସନ୍ନିଧାନସନ୍ନା ବାର୍ଷିକୀ ଦେୟା । (୪) ଚିରପ୍ରବାସଃ ସଂସ୍ତମ୍ଭପ୍ରବିଷ୍ଟୋ ବା ମୂଲ୍ୟଦ୍ୱିଗୁଣଂ ଦଦ୍ୟାତ୍ । ଅକୃତ୍ୱା ବୃଦ୍ଧିଂ ସାଧୟତୋ ବର୍ଧୟତୋ ବା ମୂଲ୍ୟଂ ବା ବୃଦ୍ଧିମାବେଦ୍ୟ ଶ୍ରାବୟତୋ ବନ୍ଧଚତୁର୍ଗୁଣୋ ଦଣ୍ଡଃ । ତୁଚ୍ଛ-ଶ୍ରାବଣାୟାମଭୂତଚତୁର୍ଗୁଣଃ । ତସ୍ୟ ତ୍ରିଭାଗମାଦାତା ଦଦ୍ୟାତ୍,

---

ଦିଆଯାଇଥିବା ଧାନ୍ୟାଦି ପଦାର୍ଥ କେବଳ ଅଦାୟ ସମୟ ପର୍ଯ୍ୟନ୍ତ ରହିଲେ ମୂଳଧନର ଅଧେ କଲନ୍ତର ସ୍ୱରୂପ ଆଣିବାକୁ ହେବ, ତହିଁରୁ ଅଧିକକାଳ ରହିଲେ ଏହି ମୂଳ ଓ କଲନ୍ତର ଧାନର ମୂଲ୍ୟ ଯାହା ହେବ ତାହା ଉପରେ ଅଧେ କଲନ୍ତର କଷାହେବ । କିନ୍ତୁ କଲନ୍ତର ବାବଦ ଧାନ୍ୟର କଲନ୍ତର ମୂଳଧାନ୍ୟର କଲନ୍ତର ଅପେକ୍ଷା ଅଧେ ହିସାବ କରାଯିବ । ମୂଳକଲନ୍ତର ଗ୍ରହଣଯୋଗ୍ୟ ସମୟରେ ମଧ୍ୟ ଋଣଦାତା ତାହା ନନେଇ ଋଣଗ୍ରହୀତା ପାଖରେ ରଖାଇଦେଲେ ତାହାର କଲନ୍ତର ସେ ପ୍ରତିବର୍ଷ ଦେଇଦେବାକୁ ହେବ । (୪) ଋଣଗ୍ରହୀତା ଚିରପ୍ରବାସୀ ବା ମୂକ ହୋଇଗଲେ ଦିଆଯାଇଥିବା ଋଣ ଧାନ୍ୟମୂଲ୍ୟର ଦ୍ୱିଗୁଣ କେବଳ ତାହାଠାରୁ ଅଦାୟ କରାଯିବ । ଯେତେ ଅଧିକ ବର୍ଷ ହେଲେ ମଧ୍ୟ ଏହାଠାରୁ ଅଧିକ ଅଦାୟ କରାଯାଇ ପାରିବ ନାହିଁ । କଲନ୍ତରର ହାର ଆଗରୁ ନକହି ପଛେ ମନଇଚ୍ଛା କଲନ୍ତର ଅଦାୟ କରିବା, ଆଗରୁ ଅଳ୍ପହାରର କଲନ୍ତର କହି ଅଦାୟବେଳେ ବହୁତ କହିବା ଏବଂ ମୂଲ୍ୟ ଓ ବୃଦ୍ଧି (କଲନ୍ତର) ଏତେ ବୋଲି ସାକ୍ଷିମାନଙ୍କ ଦ୍ୱାରା ଆରୋପ କରାଇବା ଋଣଦାତାକୁ ମୂଳଧନର ଚାରିଗୁଣ ଦଣ୍ଡ ଦେବାକୁ ହେବ । ଅଳ୍ପ ଋଣ ଦେଇ ବହୁତ ଋଣ ଦେଇଥିଲି ସାକ୍ଷିମାନଙ୍କ ଦ୍ୱାରା ଶୁଣାଇବା ଋଣଦାତାକୁ ସେହି ଶୁଣାଇବା ଧନର ଚାରିଗୁଣ ଜରିମାନା କରିବାକୁ ହେବ । ଏଥିରୁ ଚାରିଭାଗରୁ ତିନିଭାଗ ଋଣଗ୍ରହୀତା ଏବଂ ଚାରି-ଭାଗରୁ ଏକଭାଗ ଋଣଦାତା ବହନ କରିବେ (ଅର୍ଥାତ୍ ଅଧିକ ଋଣ ଦେଇଥିବା ସାକ୍ଷିମାନଙ୍କଦ୍ୱାରା ଋଣଦାତା ଶୁଣାଇଲେ ଜରିମାନାର ତିନି-ଚତୁର୍ଥାଂଶ ଋଣଦାତା ଦେବେ ଏବଂ ଏକଚତୁର୍ଥାଂଶ ଋଣଗ୍ରହୀତା ଦେବେ । କିନ୍ତୁ, ଅଧିକ ଶୁଝିଲି ପରେ ସାକ୍ଷିମାନଙ୍କଦ୍ୱାରା ଋଣଗ୍ରହୀତା ଶୁଣାଇଲେ ଜରିମାନାର ତିନି-ଚତୁର୍ଥାଂଶ ଋଣଗ୍ରହୀତା ଓ ଏକଚତୁର୍ଥାଂଶ ଋଣଦାତା

ଚେଷଂ ପ୍ରଦାତା । (୫) ଦୀର୍ଘସତ୍ତ୍ରବ୍ୟାଧିଗୁରୁକୁଲୋପରୁଦ୍ଧଂ ବାଲମସାରଂ ବା ନର୍ଣମନୁ ବର୍ଦ୍ଧେତ । ମୁଚ୍ୟମାନମୃଣମପ୍ରତିଗୃହ୍ଣତୋ ଦ୍ୱାଦଶପଣୋ ଦଣ୍ଡଃ । କାରଣାପଦେଶେନ ନିବୃତ୍ତବୃଦ୍ଧିକମନ୍ୟତ୍ର ତିଷ୍ଠେତ୍ । (୬) ଦଶବର୍ଷୋପେକ୍ଷିତମୃଣମପ୍ରତିଗ୍ରାହ୍ୟମନ୍ୟତ୍ର ବାଲବୃଦ୍ଧବ୍ୟାଧିତବ୍ୟସନପ୍ରୋଷିତଦେଶତ୍ୟାଗରାଜ୍ୟ

---

ବହନ କରିବେ) । (୫) ବହୁବର୍ଷ ଧରି ଯଜ୍ଞରେ ନିଯୁକ୍ତ ହୋଇଥିବା ବ୍ୟକ୍ତି, ଚିରରୋଗୀ, ଅପ୍ରାପ୍ତବ୍ୟବହାର ( ଷୋଳବର୍ଷରୁ ଊଣାବୟସର ) ଗୁରୁକୁଳବାସୀ ନାବାଳକ ଓ ମୂର୍ଖ-ନିରକ୍ଷରବ୍ୟକ୍ତିମାନେ ନେଇଥିବା ଋଣରୁ କଳନ୍ତର ଅଦାୟ କରିଯାଇ ପାରିବ ନାହିଁ । ଋଣଗ୍ରହୀତା ଋଣ ଶୁଝିଦେଉଥିବା ବେଳେ ଋଣଦାତା ତାହା ଗ୍ରହଣ ନକଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । କୌଣସି କାରଣ ଦର୍ଶାଇ ଏପରି ଋଣଦାତା ଋଣଧନ ନେବାକୁ ଅସ୍ୱୀକାର କଲେ ଋଣଗ୍ରହୀତା ଏହି ଋଣଧନ ସରକାରୀ ଟ୍ରେଜେରୀ କିମ୍ବା କୌଣସି ଜଣାଶୁଣା ଭଦ୍ରବ୍ୟକ୍ତିଙ୍କ ଜିମାରେ ଗଚ୍ଛିତ କରିଦେବେ ଏବଂ ସେହିଦିନଠାରୁ ଉକ୍ତ ଧନର ଆଉ କଳନ୍ତର ଦାବୀ କରାଯାଇପାରିବ ନାହିଁ । (୬) ଦଶବର୍ଷ ଗଡ଼ିଗଲେ ଋଣଦାତାମାନେ ଆଉ ଋଣଗ୍ରହୀତାମାନଙ୍କଠାରୁ ଋଣଧନ ଅଦାୟ କରି ପାରିବେ ନାହିଁ, ମାତ୍ର ବାଳକ, ବୃଦ୍ଧ, ବ୍ୟାଧିଗ୍ରସ୍ତ, ବ୍ୟସନୀ (ବିପଦ୍‌ଗ୍ରସ୍ତ), ବିଦେଶଗତ, ଦେଶତ୍ୟାଗୀ ଓ ରାଷ୍ଟ୍ରବିପ୍ଳବପୀଡ଼ିତ ଋଣଗ୍ରହୀତାମାନେ ନେଇଥିବା ଋଣର ମିଆଦ ଦଶବର୍ଷ ପୂରିଗଲେ ମଧ୍ୟ ସେମାନଙ୍କଠାରୁ ଋଣଧନ ଅଦାୟ କରାଯାଇ ପାରିବ । ଅର୍ଥାତ୍ ବାଳକ ବୟଃପ୍ରାପ୍ତ ହେଲେ, ବୃଦ୍ଧର ଅବସ୍ଥା ବଦଳିଲେ, ବ୍ୟାଧିଗ୍ରସ୍ତ ବ୍ୟକ୍ତି ବ୍ୟାଧିମୁକ୍ତ ହେଲେ, ବିପଦ୍‌ଗ୍ରସ୍ତ ଲୋକ ବିପତ୍ତିରୁ ରକ୍ଷାପାଇଲେ, ବିଦେଶଗତ ଲୋକ ସ୍ୱଦେଶକୁ ଫେରିଆସିଲେ, ଦେଶତ୍ୟାଗୀ ବ୍ୟକ୍ତି ଅପରାଧମୁକ୍ତ ହୋଇ ଦେଶକୁ ଲେଉଟି ଆସିଲେ ଏବଂ ରାଷ୍ଟ୍ରବିପ୍ଳବ ଶାନ୍ତହେବା ପରେ ସ୍ୱାଭାବିକ ଅବସ୍ଥା ଫେରିଆସି ଏଥିଦ୍ୱାରା ପୀଡ଼ିତ ହୋଇଥିବା ବ୍ୟକ୍ତିମାନେ ସୁସ୍ଥ ହେଲେ, ଏମାନେ କରିଥିବା ଋଣର ମିଆଦ ଦଶବର୍ଷ ପୂରିଯାଇଥିଲେ ମଧ୍ୟ ଏମାନଙ୍କଠାରୁ ତାହା ଅଦାୟ

ଷଭ୍ରେମେଭ୍ୟଃ । (୭) ପ୍ରେତସ୍ୟ ପୁତ୍ରାଃ କୁସୀଦଂ ଦଦ୍ୟୁଃ । ଦାୟାଦା ବା ରିକ୍ଥହରାଃ ସହଗ୍ରାହିଣଃ ପ୍ରତିଭୁବୋ ବା । ନ ପ୍ରତିସ୍ୱବ୍ୟମନ୍ୟତ୍ । ଅସାରଂ ବାଲପ୍ରାତିସ୍ୱବ୍ୟମ୍ । ଅସଂଖ୍ୟାତଦେଶକାଳଂ ତୁ ପୁତ୍ରାଃ ପୌତ୍ରା ଦାୟାଦା ବା ରିକ୍ଥଂ ହରମାଣା ଦଦ୍ୟୁଃ । (୮) ଜୀବିତବିବାହଭୂମିପ୍ରାତିସ୍ୱବ୍ୟମସଂଖ୍ୟାତଦେଶକାଳଂ ତୁ ପୁତ୍ରାଃ ପୌତ୍ରା ବା ବହେୟୁଃ । (୯) ନାନାର୍ଣସମବାୟେ ତୁ ନୈକଂ

---

କରାଯାଇ ପାରିବ । (୭) ଋଣ ନେଇଥିବା ବ୍ୟକ୍ତିର ମୃତ୍ୟୁ ଘଟିଲେ ତାର ପୁଅମାନେ ସେ କରିଥିବା ଋଣ ମୂଳକଲାନ୍ତର ସହ ପରିଶୋଧ କରିବେ । ପୁଅ ନଥିଲେ ମୃତ ଋଣଗ୍ରହୀତାର ଦାୟାଦ ବା ମୃତଧନଗ୍ରାହୀମାନେ ଏହି ଋଣ ପରିଶୋଧ କରିବେ । ସେପରି ନହେଲେ ସାଥିହୋଇ ଋଣଗ୍ରହଣ କରିଥିବା ବ୍ୟକ୍ତିମାନେ ସମୂହଭାବରେ ଏହି ଋଣ ପରିଶୋଧ କରିବେ ଏବଂ ଏପରି କିଛି ହୋଇନପାରିଲେ ଏହି ଋଣପାଇଁ ଜାମିନ ହୋଇଥିବା ବ୍ୟକ୍ତିଠାରୁ କଲାନ୍ତର ସହ ଏହି ଋଣଧନ ଆଦାୟ କରାଯିବ । ଏମାନଙ୍କ ଛଡ଼ା ସାକ୍ଷି ପ୍ରଭୃତି ଅନ୍ୟବ୍ୟକ୍ତିମାନେ ଏହି ଋଣ ପରିଶୋଧ କରିବାକୁ ଦାୟୀ ହେବେ ନାହିଁ । ବାଳକ ଜାମିନ ଅସାର ଅର୍ଥାତ୍ ଅକିଂଚିତ୍କର ବୋଲି ଜାଣିବେ । ଦେଶ କାଳ ଆଦିର ଅବଧି ନ ରଖି ଋଣ ଦେଇଥିଲେ, ଋଣ ଗ୍ରହୀତାର ପୁଅ, ନାତି, ଜ୍ଞାତି ଓ ସମ୍ପତ୍ତି ଭୋଗକାରୀମାନେ ଏହି ଋଣ (ଋଣଗ୍ରହୀତାର ମୃତ୍ୟୁପରେ) ପରିଶୋଧ କରିବାକୁ ବାଧ୍ୟ ହେବେ । (୮) ଦେଶ ଓ କାଳର ଅବଧି ନରଖି ପିତା ସ୍ୱୀକାର କରିଥିବା ଜୀବନ ସମ୍ବନ୍ଧୀୟ ପ୍ରାତିଭାବ୍ୟ ଅର୍ଥାତ୍ ଜାମିନ, ବିବାହପ୍ରାତିଭାବ୍ୟ (ସ୍ତ୍ରୀଧନାଦିର ଜାମିନ) ଏବଂ ଭୂମିପ୍ରାତିଭାବ୍ୟ (ଭୂମି କ୍ରୟଣାଦି ବିଷୟକ ଜାମିନ) ପିତାଙ୍କ ମୃତ୍ୟୁପରେ ପୁତ୍ର ବା ପୌତ୍ର(ନାତି)ମାନେ ମାନିନେବାକୁ ହେବ । ଯେଉଁ ଋଣପାଇଁ ଦେଶ କାଳର ଅବଧି ନରଖି ଜୀବନ, ବିବାହ ଓ ଭୂସମ୍ପତ୍ତି ଜାମିନ ରହିଛି ଅର୍ଥାତ୍ ଅନିର୍ଦ୍ଦିଷ୍ଟକାଳ ପାଇଁ ଜୀବନ, ବିବାହ, ସମ୍ପତ୍ତି ବା ଜମିକୁ (ଋଣ ଶୁଝିବା ପର୍ଯ୍ୟନ୍ତ) ଜାମିନ କରାଯାଇଛି, ଏହି ଋଣକାରବା ବ୍ୟକ୍ତିଙ୍କ ଋଣ ପରିଶୋଧ ପୂର୍ବରୁ ମୃତ୍ୟୁଘଟିଲେ ତାଙ୍କ ପୁଅନାତିମାନେ ଏହି ସର୍ତ୍ତ ଅନୁସାରେ ଦାୟିତ୍ୱ ତୁଲାଇବାକୁ ବାଧ୍ୟ ହେବେ । (୯) ଜଣେ ବ୍ୟକ୍ତି

ଦ୍ୱୌ ଯୁଗପଦଭିବଦେୟାତାମ୍ ଅନ୍ୟତ୍ର ପ୍ରତିଷ୍ଠମାନାତ୍ । ତତ୍ରାପି-ଗୃହୀତାନୁପୂର୍ବ୍ୟା ରାଜଶ୍ରୋତ୍ରିୟଦ୍ରବ୍ୟଂ ବା ପୂର୍ବଂ ପ୍ରତିପାଦୟେତ୍ । (୧୦) ଦମ୍ପତ୍ୟୋଃ ପିତାପୁତ୍ରୟୋଃ ଭ୍ରାତୃଣାଂ ଚାବିଭକ୍ତାନାଂ ପରସ୍ପର କୃତମୃଣ ମସାଧ୍ୟମ୍ । (୧୧) ଅଗ୍ରାହ୍ୟାଃ କର୍ମକାଳେଷୁ କର୍ଷକା ରାଜପୁରୁଷାଶ୍ଚ । ସ୍ତ୍ରୀ ଚାପ୍ରତିଶ୍ରାବଣୀ ପତିକୃତମ୍ ଋଣମ୍ ଅନ୍ୟତ୍ର ଗୋପାଳକାର୍ଧସୀତିକେଭ୍ୟଃ । (୧୨) ପତିସ୍ତୁ ଗ୍ରାହ୍ୟଃ ସ୍ତ୍ରୀକୃତମ୍

---

ବହୁତଗୁଡ଼ିଏ ସାହୁକାରଙ୍କଠାରୁ ଋଣ ଆଣି ଯଦି ଦେଶ ଛାଡ଼ି ଅନ୍ୟତ୍ର ଚାଲିଯାଉନଥାଏ, ତେବେ ତା'ଠାରୁ ଋଣ ଅଦାୟ କରିବା ପାଇଁ ଏକା ସମୟରେ ବହୁତ ସାହୁକାର ଅଭିଯୋଗ କରିବାକୁ ହେବ ନାହିଁ; ଆଗେ ଋଣଦେବା ସାହୁକାର ଆଗେ ଓ ପଛେ ଋଣଦେବା ସାହୁକାର ପଛେ—ଏପରି କ୍ରମରେ ଅଭିଯୋଗ କରିବାକୁ ହେବ । କିନ୍ତୁ ସରକାରୀ ଋଣ ଓ ବ୍ରାହ୍ମଣ-ଠାରୁ ଋଣ ପଛେ ଅଣାଯାଇଥିଲେ ମଧ୍ୟ ତାହା ସର୍ବପ୍ରଥମେ ପରିଶୋଧ କରିବାକୁ ହେବ । (୧୦) ପତିଠାରୁ ପତ୍ନୀ ବା ପତ୍ନୀଠାରୁ ପତି, ପିତାଠାରୁ ପୁତ୍ର ବା ପୁତ୍ରଠାରୁ ପିତା ଏବଂ ଏକାନ୍ନବର୍ତ୍ତୀ ଭାଇମାନଙ୍କ ମଧ୍ୟରୁ ଜଣେ ଭାଇଠାରୁ ଅନ୍ୟଜଣେ ଭାଇ ଋଣ ନେଇଥିଲେ ସେଥିପାଇଁ ମକଦ୍ଦମା କରି-ଯାଇପାରିବ ନାହିଁ ବା ସେପରି ଅଭିଯୋଗ ଗ୍ରହଣ କରାଯିବନାହିଁ, ଅର୍ଥାତ୍ କିଏ କାହାକୁ ଶୁଝିନପାରିଲେ ଶୁଝିବାକୁ ଆଇନତଃ ବାଧ୍ୟ କରାଯାଇପାରିବ ନାହିଁ । (୧୧) ଋଣ ନେଇଥିବା କୃଷକ ଓ ରାଜକର୍ମଚାରୀମାନେ ନିଜନିଜର କର୍ମାନୁଷ୍ଠାନ କରୁଥିବା ସମୟରେ ସେମାନଙ୍କୁ ଋଣପରିଶୋଧ କରି ନପାରିବା ଅଭିଯୋଗରେ ଗିରଫଦାର କରିବାକୁ ହେବନାହିଁ । ପତି ଋଣକଲାବେଳେ ପତ୍ନୀ ଯଦି 'ପତି ଋଣପରିଶୋଧ କରି ନପାରିଲେ ମୁଁ ପରିଶୋଧ କରିବି' ବୋଲି ସ୍ୱୀକାର କରିନଥାଏ, ତେବେ ତାକୁ ମଧ୍ୟ ଏଥିପାଇଁ ଗିରଫଦାର କରାଯାଇପାରିବ ନାହିଁ (ସ୍ୱୀକାର କରିଥିଲେ, ଗିରଫଦାର କରାଯାଇପାରିବ) । କିନ୍ତୁ ଗୋପାଳ ଓ ସ୍ତ୍ରୀମାନଙ୍କ ସହିତ ମିଶି କାମକରୁଥିବା ଭାଗଚାଷୀ କୃଷକ ବା ମଜୁରିଆମାନେ କରିଥିବା ଋଣ ସେମାନଙ୍କ ସ୍ତ୍ରୀମାନେ ଉପରୋକ୍ତ ପ୍ରକାରେ ସ୍ୱୀକାର କରିନଥିଲେ ମଧ୍ୟ ଏଥିପାଇଁ ଅଭିଯୁକ୍ତା ହୋଇପାରିବେ; ଯେହେତୁ ଉକ୍ତ ଦୁଇଶ୍ରେଣୀରେ ସ୍ତ୍ରୀବ୍ୟକ୍ତିମାନଙ୍କ ପ୍ରାଧାନ୍ୟ ବେଶୀ ପରିମାଣରେ ଦେଖାଯାଏ । (୧୨) ସ୍ତ୍ରୀ କରିଥିବା ଋଣ ପତି ପରିଶୋଧ କରିବାକୁ ହେବ ।

ଋଣମପ୍ରତିବଧ୍ୟାୟ ପ୍ରୋଷିତ ଇତି । (୧୩) ସଂପ୍ରତିପତ୍ତାବୁତ୍ତମଃ । ଅସଂପ୍ରତିପତ୍ତୌ ତୁ ସାକ୍ଷିଣଃ ପ୍ରମାଣଂ ପ୍ରାତ୍ୟୟିକାଃ ଶୁଚୟୋଽନୁମତା ବା ଉଭୟୋରବରାର୍ଧ୍ୟାଃ । ପକ୍ଷାନୁମତୌ ବା ଦ୍ୱୌ ଋଣଂ ପ୍ରତି, ନ ତ୍ୱେବୈକଃ । (୧୪) ପ୍ରତିଷିଦ୍ଧାଃ ସ୍ୟାଳସହାୟାନ୍ୱର୍ଥିଧନିକଧାରଣିକବୈରିନ୍ୟଙ୍ଗଧୃତଦଣ୍ଡାଃ । ପୂର୍ବେ ଚାବ୍ୟବହାର୍ଯାଃ ରାଜଶ୍ରୋତ୍ରିୟଗ୍ରାମଭୃତକକୁଷ୍ଠିବ୍ରଣିନଃ ପତିତଚଣ୍ଡାଳକୁତ୍ସିତକର୍ମାଣୋଽନ୍ଧବଧିରମୂକାହଂବାଦିନଃ ସ୍ତ୍ରୀରାଜପୁରୁଷାଶ୍ଚ । ଅନ୍ୟତ୍ର

---

ଯଦି ସ୍ତ୍ରୀ କରିଥିବା ଋଣ ପରିଶୋଧ ନକରି ପତି ଦେଶାନ୍ତରକୁ ଚାଲିଯାଏ, ତେବେ ସେ ନିଶ୍ଚୟ ଗିରଫଦାର ହେବ । (୧୩) ଋଣଦାତା ଦାବୀ କରିବା ଋଣଧନକୁ ଯଦି ଋଣଗ୍ରାହୀ ମାନିଯାଏ, ତେବେ ଏହା ନିର୍ଣ୍ଣୟର ଉତ୍ତମ ଉପାୟ ବୋଲି ଜାଣିବ । ଯଦି ଋଣଗ୍ରାହୀ ଋଣଦାତାଙ୍କ ଦାବୀକୁ ମାନେନାହିଁ ତେବେ ସାକ୍ଷିମାନଙ୍କଠାରୁ ଯେଉଁ ପ୍ରମାଣ ମିଳିବ ତଦ୍ଦ୍ୱାରା ଏହା ନିର୍ଣ୍ଣୀତ ହେବ । ଏହି ସାକ୍ଷିମାନେ ବିଶ୍ୱାସୀ, ବାହ୍ୟାଭ୍ୟନ୍ତରଶୁଦ୍ଧ ଓ ବାଦୀ ପ୍ରତିବାଦୀ ଉଭୟଙ୍କଦ୍ୱାରା ସମ୍ମତ ହୋଇ ଅନ୍ତତଃ ତିନିଜଣ ହେବା ଆବଶ୍ୟକ । ସେପରି ନହେଲେ ବାଦୀଙ୍କ ପକ୍ଷରୁ ଜଣେ ଏବଂ ପ୍ରତିବାଦୀଙ୍କ ପକ୍ଷରୁ ଜଣେ ଏପରି ଦୁଇଜଣ ସାକ୍ଷୀ କିମ୍ବା ବାଦୀପ୍ରତିବାଦୀ ଉଭୟଙ୍କ ସମ୍ମତିରେ ଦୁଇଜଣ ସାକ୍ଷୀ ରହିବାକୁ ହେବ । କିନ୍ତୁ ଉଭୟଙ୍କ ପାଇଁ ଜଣେ ମାତ୍ର ସାକ୍ଷୀ କଦାପି ରହିପାରିବେ ନାହିଁ । (୧୪) ଶାଳକ, ସହାୟ, ଆଶ୍ରିତ ବା ଅନୁଗତ ବ୍ୟକ୍ତି (କ୍ରୀତଦାସ ପ୍ରଭୃତି) ଋଣଦାତା, ଋଣଗ୍ରହୀତା, ଶତ୍ରୁ, ବିକଳାଙ୍ଗ ବ୍ୟକ୍ତି (ଖୋଟା, ଅନ୍ଧ, କୁଜା ପ୍ରଭୃତି) ଓ ରାଜଦଣ୍ଡରେ ଦଣ୍ଡିତ ବ୍ୟକ୍ତି (ଜେଲ ଯାଇ ବଦନାମୀ ହୋଇଥିବା ବ୍ୟକ୍ତି)ମାନେ ସାକ୍ଷିହେବା ନିଷେଧ । ଅଧିକନ୍ତୁ ପୂର୍ବେ କୁହାଯାଇଥିବା ପତିପତ୍ନୀ, ପିତାପୁତ୍ର ଓ ଏକାନ୍ନବର୍ତ୍ତୀ ଭାଇମାନେ (ଯେଉଁମାନଙ୍କର ଋଣ ବିଷୟରେ ଆପତ୍ତି ଆଇନତଃ ଅଗ୍ରାହ୍ୟ ବୋଲି କୁହାଯାଇଛି), ରାଜା, ବେଦାଧ୍ୟାୟୀ ବ୍ରାହ୍ମଣ, ଗ୍ରାମଭୃତକ (ଗ୍ରାମର ପୁରୋହିତ, ବାରିକ, ଧୋବା, ଚୌକୀଦାର ପ୍ରଭୃତି), କୁଷ୍ଠରୋଗୀ, ବ୍ରଣରୋଗୀ, ପତିତ, ଚଣ୍ଡାଳ, କୁତ୍ସିତକର୍ମୀ, ଅନ୍ଧ, ବଧିର, ମୂକ, 'ମୁଁ ସାକ୍ଷୀ ହେବି' ବୋଲି [illegible] ହେବା ବ୍ୟକ୍ତି, ସ୍ତ୍ରୀବ୍ୟକ୍ତି ଓ ରାଜକର୍ମଚାରୀମାନେ ନିଜ ନିଜ ବର୍ଗ

ସ୍ୱବର୍ଗେଭ୍ୟଃ । (୧୫) ପାରୁଷ୍ୟସ୍ତେୟସଂଗ୍ରହଣେଷୁ ତୁ ବୈରସ୍ୟାଲ ସହାୟବର୍ଜାଃ । ରହସ୍ୟବ୍ୟବହାରେଷ୍ୱେକା ସ୍ତ୍ରୀ ପୁରୁଷ ଉପଶ୍ରୋତା ଉପଦ୍ରଷ୍ଟା ବା ସାକ୍ଷୀ ସ୍ୟାଦ୍ ରାଜତାପସବର୍ଜଂ । (୧୬) ସ୍ୱାମିନୋ ଭୃତ୍ୟାନାମୃତ୍ୱିଗାଚାର୍ଯାଃ ଶିଷ୍ୟାଣାଂ ମାତାପିତରୌ ପୁତ୍ରାଣାଂ ଚାନିଗ୍ରହେଣ ସାକ୍ଷ୍ୟଂ କୁର୍ଯୁଃ । ତେଷାମିତରେ ବା । ପରସ୍ପରାଭିଯୋଗେ ଚୈଷାମୁତ୍ତମାଃ ପରୋକ୍ତା ଦଶବନ୍ଧଂ ଦଦ୍ୟୁରବରାଃ ପଞ୍ଚବନ୍ଧମ୍ । ଇତି ସାକ୍ଷ୍ୟାଧିକାରଃ । (୧୭) ବ୍ରାହ୍ମଣୋଦକୁମ୍ଭାଗ୍ନିସକାଶେ ସାକ୍ଷିଣଃ ପରିଗୃହ୍ଣୀୟାତ୍ । ତତ୍ର ବ୍ରାହ୍ମଣମ୍

---

ବ୍ୟତୀତ ଅନ୍ୟମାନଙ୍କର ସାକ୍ଷୀ ହେବା ନିଷେଧ । (୧୫) କିନ୍ତୁ ଗାଳି, ମାଡ଼, ଚୋରି ଓ ବ୍ୟଭିଚାରାଦି ବଳପ୍ରୟୋଗ କରାଯିବା ଅନ୍ୟାୟ ମକଦ୍ଦମାରେ ଶତ୍ରୁ, ଶାଳକ ଓ ସହାୟ ବ୍ୟତୀତ ଅନ୍ୟମାନେ ସାକ୍ଷୀ ହୋଇପାରିବେ ଏବଂ ରହସ୍ୟଜନକ ବ୍ୟବହାରରେ ଜଣେ ପୁରୁଷ ବା ଜଣେ ସ୍ତ୍ରୀର ଏକାନ୍ତ କଥାବାର୍ତ୍ତା ଅଡ଼ୁଆଳରେ ଶୁଣିବା ଓ ଏମାନଙ୍କ ବ୍ୟବହାର ଅଡ଼ୁଆଳରେ ଦେଖିବା ବ୍ୟକ୍ତି ଜଣେମାତ୍ର ହେଲେ ମଧ୍ୟ ରାଜା ଓ ତାପସଙ୍କ ବ୍ୟତୀତ ଅନ୍ୟ ଯେ କୌଣସି ବ୍ୟକ୍ତିର ସାକ୍ଷ୍ୟ ସିଦ୍ଧ ବୋଲି ବିବେଚିତ ହେବ । (୧୬) ସ୍ୱେଚ୍ଛାପ୍ରଣୋଦିତ ହୋଇ ପ୍ରଭୁମାନେ ଭୃତ୍ୟମାନଙ୍କର, ଋତ୍ୱିକ୍ ଓ ଆଚାର୍ଯଗଣ ଶିଷ୍ୟମାନଙ୍କର ଓ ମାତାପିତା ପୁତ୍ରମାନଙ୍କର ସାକ୍ଷୀ ହୋଇ ପାରିବେ । ସେହିପରି ଭୃତ୍ୟ, ଶିଷ୍ୟ ଓ ପୁତ୍ରମାନେ ମଧ୍ୟ ସ୍ୱେଚ୍ଛାରେ ପ୍ରଭୁ, ଋତ୍ୱିକ୍, ଆଚାର୍ଯ ତଥା ମାତାପିତାଙ୍କର ସାକ୍ଷୀ ହୋଇ ପାରିବେ । କିନ୍ତୁ ଏମାନେ ପରସ୍ପର ଅଭିଯୋଗ କରି ଯଦି ମକଦ୍ଦମା ଚଳାନ୍ତି ଏବଂ ଏଥିଦ୍ୱାରା ଯଦି ପ୍ରଭୁ, ଋତ୍ୱିକ୍ ଓ ମାତାପିତା ପରାଜିତ ହୁଅନ୍ତି, ତେବେ ପରାଜିତ ଧନର ଦଶଭାଗ (ଦଶାଂଶ) ଯଥାକ୍ରମେ ଭୃତ୍ୟାଦିଙ୍କୁ 'ପରିହାର' ଦେବେ ଏବଂ ଭୃତ୍ୟ, ଶିଷ୍ୟ ଓ ପୁତ୍ରମାନେ ଯଦି ପରାଜିତ ହୁଅନ୍ତି, ତେବେ ପରାଜିତ-ଧନର ପାଞ୍ଚଭାଗ (ପଞ୍ଚମାଂଶ) ଯଥାକ୍ରମେ ପ୍ରଭୁ, ଋତ୍ୱିଗାଦିମାନଙ୍କୁ ପରିହାର ଦେବେ । ଏଠାରେ ସାକ୍ଷ୍ୟାଧିକାର ସମାପ୍ତ ହେଲା । (୧୭) ସାକ୍ଷ୍ୟ ନେବା-ବେଳେ ସାକ୍ଷିମାନଙ୍କ ସମ୍ମୁଖରେ ବ୍ରାହ୍ମଣ, ପୂର୍ଣ୍ଣକୁମ୍ଭ ଓ ଅଗ୍ନି ରଖି ସେମାନଙ୍କଠାରୁ ଶପଥପୂର୍ବକ ସାକ୍ଷ୍ୟ ଗ୍ରହଣ କରିବେ । ସାକ୍ଷୀ ବ୍ରାହ୍ମଣ ହୋଇଥିଲେ

ବ୍ରୂୟାତ୍—ସତ୍ୟଂ ବ୍ରୂହୀତି । ରାଜନ୍ୟ ବୈଶ୍ୟଂ ବା—ମା ତବେଷ୍ଟାପୂର୍ତ୍ତଫଳମ୍ । କପାଳହସ୍ତଃ ଶତ୍ରୁକୁଳଂ ଭିକ୍ଷାର୍ଥୀ ଗଚ୍ଛେରିତି । ଶୂଦ୍ରଂ—ଜନ୍ମମରଣାନ୍ତରେ ଯଦ୍ ବଃ ପୁଣ୍ୟଫଳଂ ତଦ୍ ରାଜାନଂ ଗଚ୍ଛେତ୍ । ରାଜ୍ଞଶ୍ଚ କିଲ୍ବିଷଂ ଯୁଷ୍ମାନ୍ ଅନ୍ୟଥା ବାଦେ । ଦଣ୍ଡଶ୍ଚାନୁବନ୍ଧଃ । ପଶ୍ଚାଦପି ଜ୍ଞାୟେତ ଯଥାଦୃଷ୍ଟଶ୍ରୁତମ୍ । ଏକମନ୍ତ୍ରାଃ ସତ୍ୟମବହରତେତି । (୧୮) ଅନବହରତାଂ ସପ୍ତରାତ୍ରାଦୂର୍ଦ୍ଧ୍ୱଂ ଦ୍ୱାଦଶପଣୋ ଦଣ୍ଡଃ ତ୍ରିପକ୍ଷାଦୂର୍ଦ୍ଧ୍ୱମଭିଯୋଗଂ ଦଦ୍ୟୁଃ । (୧୯) ସାକ୍ଷିଭେଦେ ଯତୋ ବହବଃ ଶୁଚୟୋଽନୁମତା ବା ତତୋ

---

ତାଙ୍କୁ କହିବେ—"ତୁମେ ସତ୍ୟ କହ", କ୍ଷତ୍ରିୟ ବା ବୈଶ୍ୟ ହୋଇଥିଲେ ତାଙ୍କୁ କହିବେ—"ଯଦି ତୁମେ ମିଥ୍ୟାସାକ୍ଷ୍ୟ ଦିଅ, ତେବେ ତୁମର ଯଜ୍ଞଫଳ ଓ ଜଳାଶୟାଦି କୀର୍ତ୍ତିର ଫଳ ସିଦ୍ଧ ହେବ ନାହିଁ, ତୁମେ ଖପରି ଧରି ଶତ୍ରୁମାନଙ୍କ ଦ୍ୱାରରେ ଭିକ୍ଷା ମାଗିବ" ଏବଂ ସାକ୍ଷୀ ଶୂଦ୍ର ହୋଇଥିଲେ ତାଙ୍କୁ କହିବେ—"ତୁମେ ମିଥ୍ୟାସାକ୍ଷ୍ୟ ଦେଲେ ଜନ୍ମଠାରୁ ମରଣକାଳ ମଧ୍ୟରେ ତୁମର ଯେତେକ ପୁଣ୍ୟକର୍ମର ଫଳ ତାହା ରାଜାଙ୍କ ପାଖକୁ ଚାଲିଯିବ ଏବଂ ଜନ୍ମ-ମରଣ କାଳ ମଧ୍ୟରେ ରାଜା ଯେଉଁ ପାପ କରିବେ, ସେହି ପାପଫଳ ତୁମପାଖକୁ ଚାଲିଆସିବ । ଯାହା ଶୁଣିଚ ବା ଯାହା ଦେଖିଚ ତାହା ଗୋପନ କରି ଯଦି ମିଥ୍ୟାସାକ୍ଷ୍ୟ ଦିଅ, ତେବେ ଗଭୀର ଅନୁସନ୍ଧାନ ପରେ ଯେତେବେଳେ ହେଲେ ସତ୍ୟକଥା ଜଣାପଡ଼ିବ ଏବଂ ତୁମେ ଦୋଷ ଅନୁଯାୟୀ ଯଥୋଚିତ ଦଣ୍ଡ ପାଇବ, ଏପରି କି ସମସ୍ତେ ମେଳହୋଇ ଯଦି ଅନ୍ୟଥା ସାକ୍ଷ୍ୟ ଦେବାପାଇଁ ମସୁଧା କରିଥାଅ, ତଥାପି ସତ୍ୟ ପରମ ପଦାର୍ଥ, ସେ ତୁମର ଏହି ମସୁଧାକୁ ଉଡ଼ାଇ ଦେଇ ଶୁଦ୍ଧ ସତ୍ୟକଥା ପ୍ରକାଶ କରିଦେବ ।" (୧୮) ସାକ୍ଷିମାନେ ସତ୍ୟକଥା ପ୍ରକାଶ କରିବା ପାଇଁ ସାତରାତି ସମୟ ଦେବାପରେ ସେମାନେ ତାହା ପ୍ରକାଶ ନକଲେ ଦୈନିକ ବାରପଣ ହିସାବରେ ତିନିପକ୍ଷ ଅର୍ଥାତ୍ ପଞ୍ଚଚାଳିଶ ଦିନ ପର୍ଯ୍ୟନ୍ତ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ତହିଁରୁ ବଳିଲେ ବାଦୀ ଯାହା ଅଭିଯୋଗ କରିଥିବ ତାହା ଉପରୋକ୍ତ ଜରିମାନା ଧନ ସହ ଦେବାକୁ ବାଧ୍ୟ ହେବେ । (୧୯) ସାକ୍ଷିମାନେ କହିବା ବେଳେ ପରସ୍ପରବିରୋଧୀ ହେଲେ ଯେଉଁ ପକ୍ଷରେ ସଂଖ୍ୟାଧିକ ସାକ୍ଷୀ ବା

ନଯ୍ଯୁଚ୍ଛେଯୁଃ । ମଧ୍ୟଂ ବା ଗୃହ୍ଣୀଯୁଃ । ତଦ୍ ବା ଦ୍ରବ୍ୟଂ ରାଜା ହରେତ୍ । ସାକ୍ଷିଣଶ୍ଚେଦଭିଯୋଗା ଦୂନଂ ବ୍ରୂଯୁରତିରକ୍ତ-ସ୍ୟାଭିଯୋକ୍ତା ବନ୍ଧଂ ଦଦ୍ୟାତ୍ । ଅତିରିକ୍ତଂ ବା ବ୍ରୂଯୁସ୍ତଦତିରିକ୍ତଂ ରାଜା ହରେତ୍ । ବାଲଶ୍ୟାଦଭିଯୋକ୍ତୁର୍ବା ଦୁଃଶ୍ରୁତଂ ଦୁର୍ଲିଖିତଂ ପ୍ରେତାଭିନିବେଶଂ ବା ସମୀକ୍ଷ୍ୟ ସାକ୍ଷିପ୍ରତ୍ୟଯ୍ୟମେବ ସ୍ୟାତ୍ । (୨୦) ସାକ୍ଷିବାଲଶ୍ୟେଷ୍ୱେବ ପୃଥଗନୁଯୋଗେ ଦେଶକାଳକାର୍ଯ୍ୟାଣାମ୍ ପୂର୍ବମଧ୍ୟମୋତ୍ତମାଦଣ୍ଡା ଇତ୍ୟୌଶନସାଃ । (୨୧) କୂଟସାକ୍ଷିଣୋ

---

ବାଦ୍ୟାଭ୍ୟାନ୍ତରଶୁଦ୍ଧ ସାକ୍ଷିମାନେ ସମଭାବରେ କହିବେ, ସେହି ପକ୍ଷକୁ ଅବଲମ୍ବନ କରି ବ୍ୟବହାର (ମକଦ୍ଦମା) ନିର୍ଣ୍ଣୟ କରିବାକୁ ହେବ । ଦୁଇପକ୍ଷର ସାକ୍ଷୀ ଯଦି ସମାନ ସଂଖ୍ୟକ ହୁଅନ୍ତି, ତେବେ ଉଭୟଙ୍କ ସମ୍ମତିକ୍ରମେ ଜଣେ କାହାକୁ ମଧ୍ୟସ୍ଥ ସାକ୍ଷୀରୂପେ ଗ୍ରହଣ କରିବେ । ଏହା ଅସମ୍ଭବ ହେଲେ ଉକ୍ତ ବିବାଦିତ ଦ୍ରବ୍ୟକୁ ରାଜା ରାଜକୋଷରେ ମିଶାଇ ଦେବେ । ସାକ୍ଷିମାନେ ଯଦି ଅଭିଯୁକ୍ତ ଦ୍ରବ୍ୟଠାରୁ ଊଣା କରି କହନ୍ତି, ତେବେ ଅଭିଯୋକ୍ତା (ବାଦୀ ବା ଋଣଦାତା) ଅତିରିକ୍ତ ଦାବୀକରିଥିବା ଧନର ପାଞ୍ଚଭାଗ ରାଜାଙ୍କୁ ଦେବେ ଏବଂ ଅଭିଯୋକ୍ତା ଅଭିଯୋଗ କରିଥିବା ଧନ ଅପେକ୍ଷା ସାକ୍ଷିମାନେ ଅଧିକ କହିଲେ ମଧ୍ୟ ଏହି ଅତିରିକ୍ତ ଧନ ରାଜକୋଷକୁ ଚାଲିଯିବ । କିନ୍ତୁ ଅଭିଯୋକ୍ତାଙ୍କ ମୂର୍ଖତା ଯୋଗୁଁ, ଲୋକଙ୍କ ଭୁଲ ଶୁଣିବା ଯୋଗୁଁ, ଲେଖକ ଭୁଲ ଲେଖିବା ଯୋଗୁଁ କିମ୍ବା ବନ୍ଧୁମରଣାଦି ଶୋକହେତୁରୁ ଲେଖକଙ୍କ ଚିତ୍ତବିକ୍ଷେପ ଯୋଗୁଁ (ଋଣଗ୍ରହୀତାଙ୍କ ମୃତ୍ୟୁ ଯୋଗୁଁ) ଏପରି ଅଭିଯୁକ୍ତ ଧନବିଷୟକ ତାରତମ୍ୟ ଘଟିଲେ ସେଥିରେ କୌଣସି ପ୍ରକାର ଦଣ୍ଡର ବ୍ୟବସ୍ଥା ନକରି ସାକ୍ଷିମାନଙ୍କ ବଚନ ଅନୁସାରେ ହିଁ, ନିଷ୍ପତ୍ତି ଗ୍ରହଣ କରିବାକୁ ହେବ । (୨୦) ଔଶନସ ଅର୍ଥାତ୍ ଶୁକ୍ରାଚାର୍ଯ୍ୟଙ୍କ ମତାବଲମ୍ବିମାନେ କହନ୍ତି ଯେ, ପ୍ରତ୍ୟେକ ପ୍ରଶ୍ନରେ ସାକ୍ଷିମାନଙ୍କ ମୂର୍ଖତା ଯୋଗୁଁ ଉତ୍ତରର ତାରତମ୍ୟ ଘଟିଲେ ଏବଂ ଦେଶ, କାଳ ଓ କାର୍ଯ୍ୟର ପରସ୍ପର ବିରୋଧ ଘଟିଲେ ଦୋଷ ଅନୁରୂପ ପୂର୍ବସାହସ, ମଧ୍ୟମସାହସ ଓ ଉତ୍ତମ-ସାହସ ଦଣ୍ଡର ବ୍ୟବସ୍ଥା କରିବାକୁ ହେବ । (୨୧) ମନୁଙ୍କ ମତାବଲମ୍ବିମାନେ କହନ୍ତି, ମିଛସାକ୍ଷିମାନେ ଯେଉଁ ଧନ ବିଷୟ ସତ୍ୟ ହୋଇଥିଲେ ମଧ୍ୟ

ଯମର୍ଥମଭୂତଂ ବା କୁର୍ଯୁର୍ଭୂତଂ ବା ନାଶୟେୟୁସ୍ତଦ୍ଦଶଗୁଣଂ ଦଣ୍ଡଂ ଦଦ୍ୟୁରିତି ମାନବାଃ ।। (୨୨) ବାଲଶ୍ୟାଦ୍ ବା ବିସଂବାଦୟତାଂ ଚିତ୍ରୋ ଘାତ ଇତି ବାର୍ହସ୍ପତ୍ୟାଃ । (୨୩) ନେତିକୌଟଲ୍ୟଃ । ଧ୍ରୁବାହି ସାକ୍ଷିଣଃ ଶ୍ରୋତବ୍ୟାଃ । ଅଶୃଣ୍ୱତାଂ ଚତୁର୍ବିଂଶତିପଣୋ ଦଣ୍ଡଃ, ତତୋଽର୍ଧମଧ୍ରୁବାଣାମ୍ ।

(୨୪) ଦେଶକାଳାବଦୂରସ୍ଥାନ୍ ସାକ୍ଷିଣଃ ପ୍ରତିପାଦୟେତ୍ ।
ଦୂରସ୍ଥାନପ୍ରସାରାନ୍ ବା ସ୍ୱାମିବାକ୍ୟେନ ସାଧୟେତ୍ ।।

---

ଅସତ୍ୟ ପରିକଳ୍ପନା କରି ଅଧିକ ବୋଲି କହିବେ କିମ୍ବା ଯେଉଁ ଧନ ବିଷୟ ଅସତ୍ୟ ହୋଇଥିଲେ ମଧ୍ୟ ସତ୍ୟ ପରିକଳ୍ପନା କରି ଋଣ ବୋଲି କହିବେ, ସେହି କଳ୍ପିତ ଅଧିକ ଧନ ବା ନାଶିତ ଋଣଧନର ଦଶଗୁଣ ଧନ ଏହି ମିଛସାକ୍ଷିମାନଙ୍କଠାରୁ ଜରିମାନା ସ୍ୱରୂପ ଅଦାୟ କରିବାକୁ ହେବ । (୨୨) ବୃହସ୍ପତିଙ୍କ ମତାବଲମ୍ବିମାନେ କହନ୍ତି, ମୂର୍ଖତାବଶତଃ ସାକ୍ଷିମାନେ ମିଥ୍ୟା-ସାକ୍ଷ୍ୟ ଦେଲେ ସେମାନଙ୍କୁ କପଟରେ ହତ୍ୟା କରାଇ ଦେବାକୁ ହେବ । (୨୩) କିନ୍ତୁ କୌଟିଲ୍ୟ ଉପରୋକ୍ତ ସମସ୍ତ ମତ ଖଣ୍ଡନ କରି କହନ୍ତି, ପ୍ରକୃତ ସାକ୍ଷିମାନେ ନିଶ୍ଚୟ ସତ୍ୟ କଥା ଶୁଣାଇବାକୁ ହେବ । ସାକ୍ଷ୍ୟ ଦେବା ପାଇଁ ଡକାଯାଇଥିବା ଧ୍ରୁବସାକ୍ଷିମାନଙ୍କ ମଧ୍ୟରୁ ଯଦି କେହି ନ ଯାନ୍ତି ତେବେ ତାଙ୍କୁ ଚବିଶପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ଏବଂ ଅଧ୍ରୁବ ସାକ୍ଷି ଏପରି କଲେ ତାଙ୍କୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (ଗୃହଳକ୍ଷିତ କୁଳ ମଧ୍ୟରେ ଶ୍ରେଷ୍ଠ ବ୍ୟକ୍ତିଙ୍କୁ 'ଧ୍ରୁବ' ଏବଂ ଏହାର ଅନ୍ତର୍ଗତ ବ୍ୟକ୍ତିଙ୍କୁ 'ଅଧ୍ରୁବ' କୁହାଯାଏ) । (୨୪) ଦେଶ, କାଳ ଓ ନିକଟରେ ଥିବା ସାକ୍ଷିମାନଙ୍କୁ ବାଦୀ ନିଜେ ଡାକିଆଣି ମକଦ୍ଦମା ଚଲାଇ ପାରିବେ । କିନ୍ତୁ ଦୂରସ୍ଥ ସାକ୍ଷୀ ବା ନିକଟରେ ଥାଇ ମଧ୍ୟ ଡାକିଲେ ନ ଆସିବା ସାକ୍ଷିଙ୍କୁ ନ୍ୟାୟାଧୀଶଙ୍କ ଆଜ୍ଞା (ସମନ) ଦ୍ୱାରା ଡକାଇ ଆଣିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ
ଏକାଦଶୋଽଧ୍ୟାୟଃ ଋଣାଦାନମ୍ । ଆଦିତୋଽଷ୍ଟଷଷ୍ଟିତମଃ ।

---

# ଦ୍ୱାଦଶୋଽଧ୍ୟାୟଃ

## ଚତୁଃଷଷ୍ଟିତମ ପ୍ରକରଣମ୍—ଔପନିଧିକମ୍

## CONCERNING DEPOSITS

[ *ଉପନିଧି (ଅମାନତ) ସମ୍ବନ୍ଧୀୟ ବିଚାର ]

(୧) ଉପନିଧିଃ ଋଣେନ ବ୍ୟାଖ୍ୟାତଃ । ପରଚକ୍ରାଟବିକାଭ୍ୟାଂ ଦୁର୍ଗରାଷ୍ଟ୍ରବିଲୋପେ ବା, ପ୍ରତିରୋଧକୈର୍ବା ଗ୍ରାମସାର୍ଥବ୍ରଜ-ବିଲୋପେ, ଚକ୍ରଯୁକ୍ତେ ନାଶେ ବା, ଗ୍ରାମମଧ୍ୟାଗ୍ନ୍ୟୁଦକାବାଧେବା, କିଂଚିଦମୋକ୍ଷୟମାଣେ କୁପ୍ୟମନିର୍ହାର୍ଯବର୍ଜମେକଦେଶମୁକ୍ତଦ୍ରବ୍ୟ ବା, ଜ୍ୱାଳାବେଗୋପରୁଦ୍ଧେ ବା, ନାବି ନିମଗ୍ନାୟାଂ ମୁଷିତାୟାଂ ବା

(୧) ଋଣକୁ ଯେପରି ଋଣୀକର୍ତ୍ତା ଓ ତାଙ୍କ ପୁତ୍ରପୌତ୍ରାଦିମାନେ ପରିଶୋଧ କରନ୍ତି ବା ସାକ୍ଷିପ୍ରମାଣାଦିଦ୍ୱାରା ଯେପରି ଋଣଧନ ଅଦାଲତ ଜରିଆରେ ଆଦାୟ କରାଯାଏ, ଉପନିଧି ଅର୍ଥାତ୍ ଅମାନତ ବିଷୟ ମଧ୍ୟ ଏହିପରି ବୋଲି ଜାଣିବାକୁ ହେବ । କିନ୍ତୁ ଶତ୍ରୁସୈନ୍ୟ ଓ ଆଟବିକ ସୈନ୍ୟ (ଜଙ୍ଗଲୀ ସୈନ୍ୟ) ଦ୍ୱାରା ଦୁର୍ଗ ଓ ରାଷ୍ଟ୍ରର ବିଲୋପ ଘଟିଲେ, ଚୋର ଡକାୟତମାନଙ୍କଦ୍ୱାରା ଗ୍ରାମ, ବଣିକସଂଘ (ବ୍ୟବସାୟ ସ୍ଥଳ) ଓ ଗବାଶ୍ୱାଦି ପଶୁ ଆଶ୍ରୟ ସ୍ଥଳର ଲୁଣ୍ଠତରାଜ ଯୋଗୁଁ ବିଲୋପ ଘଟିଲେ, ଚକ୍ର ଅର୍ଥାତ୍ ଛଦ୍ମ ବିଶେଷର ପ୍ରଯୁକ୍ତ ହେବା ଯୋଗୁଁ ରାଜ୍ୟର ବିନାଶ ଘଟିଲେ (ରାଜ୍ୟ ଅଗ୍ନିକଭାବେ ଧ୍ୱଂସପ୍ରାପ୍ତ ହେଲେ), ଗ୍ରାମମଧ୍ୟରେ ଅଗ୍ନିକାଣ୍ଡ ଘଟି କିମ୍ବା ପ୍ରବଳ ଜଳପ୍ରବାହଦ୍ୱାରା ସାରାଗ୍ରାମ ବୁଡ଼ିଯାଇ ଘୋର ବାଧାପ୍ରାପ୍ତ ହେଲେ, ଅଗ୍ନି ଓ ଜଳବାଧାରୁ କେତେକ ତମ୍ବା, କଂସା ବା ପିତଳ ବାସନକୁସନ ବଞ୍ଚିଯାଇଥିଲେ, ଅଗ୍ନିର ଜ୍ୱାଳା ଓ ଜଳର ଉପ୍ତଙ୍କର ବେଗଯୋଗୁଁ ଅସ୍ଥାବର ସମ୍ପତ୍ତି (ସୁନା, ରୁପା, ତମ୍ବା, ବାସନକୁସନ ପ୍ରଭୃତି) ଉଦ୍ଧାର କରାଯାଇନପାରି ଅଟକି ରହିଲେ, ନୌକା ବୁଡ଼ିଗଲେ କିମ୍ବା ଜଳଦସ୍ୟୁମାନଙ୍କଦ୍ୱାରା

* ଉପନିଧି = ନ୍ୟାସ, ନିକ୍ଷେପ (Deposits)
ଉପନିକ୍ଷେପୋନାମ ରୂପସଂଖ୍ୟା ପ୍ରଦର୍ଶନେନ ରକ୍ଷଣାର୍ଥଂ ନିହିତମ୍ । ଇତି ମିତାକ୍ଷରା

ସ୍ୱୟମୁପରୂଢ଼ୋ ନୋପନିଧିମଭ୍ୟାଭବେତ୍ । (୨) ଉପନିଧିଭୋକ୍ତା ଦେଶକାଳାନୁରୂପଂ ଭୋଗବେତନଂ ଦଦ୍ୟାତ୍ । ଦ୍ୱାଦଶପଣଂ ଚ ଦଣ୍ଡମ୍ । ଉପଭୋଗନିମିତ୍ତଂ ନଷ୍ଟଂ ବିନଷ୍ଟଂ ବାଭ୍ୟାବହେତ୍, ଚତୁର୍ବିଂଶତିପଣଶ୍ଚ ଦଣ୍ଡଃ । ଅନ୍ୟଥା ବା ନିଷ୍ପତନେ । ପ୍ରେତଂ ବ୍ୟସନଗତଂ ବା ନୋପନିଧିମଭ୍ୟାବହେତ୍ । (୩) ଆଧାନ-ବିକ୍ରୟାପବ୍ୟୟନେଷୁ ଚାସ୍ୟ ଚତୁର୍ଗୁଣପଞ୍ଚବନ୍ଧୋ ଦଣ୍ଡଃ । ପରିବର୍ତନେ ନିଷ୍ପାତନେ ବା ମୂଲ୍ୟସମଃ । ତେନାଧିପ୍ରଣାଶୋପ-

---

ଅକାନ୍ତ ହେଲେ ସେଥିରୁ ଅପହରଣ କରିଥିବା ବ୍ୟକ୍ତି ପାଖରେ ଯଦି ଉପନିଧି ଅର୍ଥାତ୍ ଅମାନତ ଧନ ରଖାଯାଇଥାଏ, ତେବେ ଏପରି ସଙ୍କଟରେ ପଡ଼ିଥିବା ବ୍ୟକ୍ତିମାନଙ୍କ ଠାରୁ ଅମାନତ ଧନ ଆଉ ଆଦାୟ କରାଯିବ ନାହିଁ । (୨) ଅମାନତ ରଖିବା ବ୍ୟକ୍ତି ଏହି ଅମାନତ ପଦାର୍ଥ (ବନ୍ଧକ ବା ଗଚ୍ଛିତ ଅଳଙ୍କାର, ବାସନ ଇତ୍ୟାଦି ପଦାର୍ଥ) ନିଜ ବ୍ୟବହାରରେ ଲଗାଇଲେ ଦେଶକାଳାନୁସାରେ ଏହାର ଭୋଗ ବେତନ ଅର୍ଥାତ୍ ଭଡ଼ା ବା ଖତି ଦେଇଦେବା ସଙ୍ଗେ ସଙ୍ଗେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ଏପରି ଅମାନତ ପଦାର୍ଥ ଉପଭୋଗ କରିବା ବେଳେ ଏହା ଅନ୍ୟବ୍ୟକ୍ତିଦ୍ୱାରା ଅପହୃତ ହେଲେ (ଚୋରି ହୋଇଗଲେ) ବା ଏହାର ସ୍ୱରୂପର (ଆକାରର) ହାନି ଘଟିଲେ, ଉକ୍ତ ପଦାର୍ଥ ପ୍ରତିବଦଳରେ ଗୋଟିଏ ତତ୍‌ସମାନ ନୂତନ ଦ୍ରବ୍ୟ ଦେବାକୁ ବାଧ୍ୟ ହେବା ସଙ୍ଗେ ସଙ୍ଗେ ଚବିଶପଣ ଅର୍ଥଦଣ୍ଡରେ ମଧ୍ୟ ଦଣ୍ଡିତ ହେବେ । ଉପଭୋଗ ନକରି ମଧ୍ୟ ଏହି ଉପନିଧି ବା ଅମାନତ ଧନ ପରହସ୍ତ ହୋଇଗଲେ ବା ଅନ୍ୟକଣ୍ଟ ହୋଇଗଲେ ଅମାନତରକ୍ଷକ ବ୍ୟକ୍ତି ଦ୍ରବ୍ୟ ଦେବା ସଙ୍ଗେ ସଙ୍ଗେ ଚବିଶପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ଉପନିଧିଗ୍ରହୀତା ମୃତହେଲେ କିମ୍ବା ଘୋର ବିପତ୍ତିରେ ପଡ଼ିଲେ ଉପନିଧି ଆଉ ତାଙ୍କଠାରୁ ଆଦାୟ କରାଯାଇ ପାରିବ ନାହିଁ । (୩) ଉପନିଧି ଗ୍ରହୀତା ଉପନିଧି ଦ୍ରବ୍ୟ ବନ୍ଧକ, ବିକ୍ରୟ କିମ୍ବା ଅପଲାପ (ଅସ୍ୱୀକାର) କଲେ ଉପନିଧିଦ୍ରବ୍ୟ ମୂଲ୍ୟର ଚାରିଗୁଣ କ୍ଷତିପୂରଣ ଅମାନତ ଦେଇଥିବା ବ୍ୟକ୍ତିଙ୍କୁ ଦେବେ ଏବଂ ଏହାର ପାଞ୍ଚଭାଗ ରାଜାଙ୍କୁ ଜରିମାନା ସ୍ୱରୂପ ଦେବାକୁ ବାଧ୍ୟ ହେବେ । ଉପନିଧି ଦ୍ରବ୍ୟ ବଦଳାଇ ଦେଲେ ବା ଅପ୍ରସାତ୍

**ଶେଷବନ୍ଧସ୍ୟାଧାନାପହାର ବ୍ୟାଖ୍ୟାତାଃ । (୪) ନାଧିଃ ସୋପକାରଃ ସୀଦେତ ନ ଚାସ୍ୟ ମୂଲ୍ୟଂ ବର୍ଦ୍ଧେତ । ନିରୁପକାରଃ ସୀଦେନ୍ମୂଲ୍ୟଂ ଚାସ୍ୟ ବର୍ଦ୍ଧେତାନ୍ୟତ୍ର ନିସର୍ଗାତ୍ । (୫) ଉପସ୍ଥିତସ୍ୟାଧିମପ୍ରୟଚ୍ଛତୋ ଦ୍ୱାଦଶପଣୋ ଦଣ୍ଡଃ । ପ୍ରୟୋଜକାସନ୍ନିଧାନେ ବା ଗ୍ରାମବୃଦ୍ଧେଷୁ ସ୍ଥାପୟିତ୍ୱା ନିଷ୍କ୍ରୟମାଧିଂ ପ୍ରତିପଦ୍ୟେତ । ନିବୃତ୍ତବୃଦ୍ଧିକୋ**

---

କରଦେଲେ ଏହାର ସମାନମୂଲ୍ୟର ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଏହି ନିୟମରେ ବନ୍ଧକ ଜିନିଷର ନାଶ, ଉପଭୋଗ, ବିକ୍ରୟ, ବନ୍ଧକ ବଦଳ ଓ ଅପସାର୍ ଇତ୍ୟାଦି ବିଷୟ ମଧ୍ୟ ଫେସଲା କରିବାକୁ ହେବ । (୪) ବୁଢା ହୋଇଥିବା ବଳଦ ବା ଦୁହିଁା ହୋଇଥିବା ଗାଈ ପ୍ରଭୃତି ଉପକାରୀ ପଶୁ ବନ୍ଧକ ରଖିଲେ ସେମାନଙ୍କୁ ନଷ୍ଟ ନକରି ବନ୍ଧକ ଦେଇଥିବା ବ୍ୟକ୍ତିଠାରୁ କେବଳ ମୂଳଧନ ଓ୍ୱାପସ୍ ପାଇ ତାହା ଫେରାଇ ଦେବାକୁ ହେବ । କାରଣ ହଳବନ୍ଦା ପଶୁ ବନ୍ଧକ ରଖିଥିବା ବ୍ୟକ୍ତି ନିଜ କାର୍ଯ୍ୟରେ ଏମାନଙ୍କୁ ଖଟାଇ ପାରିବ ଏବଂ ଦୁହିଁାଳୀ ଗାଈଠାରୁ ଦୁଧ ମଧ୍ୟ ଖାଇ ପାରିବ । ଅଧିକନ୍ତୁ ଏମାନଙ୍କ ମଳମୂତ୍ର ଦ୍ୱାରା ଜମି ସାରବାନ୍ ହୋଇଥିବା ଯୋଗୁଁ ବନ୍ଧକ ରଖିବା ସାହୁକାର କେବଳ ମୂଳଧନ ଗ୍ରହଣ କରି ବନ୍ଧକଦ୍ରବ୍ୟ ବନ୍ଧକ ଦେଇଥିବା ବ୍ୟକ୍ତିକୁ ଫେରାଇଦେବେ । କିନ୍ତୁ ନିରୁପକାର (ନିର୍ଜୀବ ଧାତୁମୟ) ବନ୍ଧକଦ୍ରବ୍ୟକୁ ନଷ୍ଟ କରାପାଇ ପାରିବ (ଭଙ୍ଗା, ଅଜଡା ଇତ୍ୟାଦି [illegible] ପାରିବ) ଏବଂ ଏହାର ମୂଳଧନ ଉପରେ କଲନ୍ତର ମଧ୍ୟ କସାଯାଇ [illegible] କିନ୍ତୁ ବନ୍ଧକ ଦେବା ବ୍ୟକ୍ତିଠାରୁ ଏହି ଦ୍ରବ୍ୟ ଉପଭୋଗ କରିବା ପାଇଁ ବନ୍ଧକଗ୍ରହୀତା ଅନୁମତି ନ ଆଣିଥିଲେ ଏହି ନିୟମ ଲାଗୁ ହୋଇପାରିବ ନାହିଁ । (୫) ମୂଳକଲନ୍ତର ସହ ବନ୍ଧକ ଜିନିଷ ନେବାପାଇଁ ବନ୍ଧକଦେବା ବ୍ୟକ୍ତି ବନ୍ଧକ ରଖିବା ବ୍ୟକ୍ତିଙ୍କ ଦ୍ୱାରସ୍ଥ ହେଲାବେଳେ ସେ ଯଦି ବନ୍ଧକ ମାଲ ଓ୍ୱାପସ୍ ନକରନ୍ତି, ତେବେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ବନ୍ଧକ ରଖିବା ବ୍ୟକ୍ତି ଯଦି ବିଦେଶକୁ ଗୁଲିଯାଇଥାନ୍ତି ତେବେ ବନ୍ଧକ ଦେବା ବ୍ୟକ୍ତି ବନ୍ଧକ ମାଲ ମୁକୁଳାଇ ଆଣିବାକୁ ଇଚ୍ଛାକଲେ ଉକ୍ତ ବନ୍ଧକର ମୂଳକଲନ୍ତର ବନ୍ଧକ ରଖିବା ବ୍ୟକ୍ତିଙ୍କ ଗ୍ରାମର ଭଦ୍ରଲୋକଙ୍କ ନିକଟରେ ଜମାକରି ବନ୍ଧକ ମାଲ୍ ଓ୍ୱାପସ୍ ପାଇ ପାରିବେ । ଏପରି ଓ୍ୱାପସ୍ ପାଇବାପାଇଁ

**ବାଧିସ୍ତତ୍କାଳକୃତମୂଲ୍ୟସ୍ତତ୍ରୈବାବତିଷ୍ଠେତ, ଅନାଶବିନାଶକରଣାଧିଷ୍ଠିତୋ ବା । ଧାରଣକସନ୍ନିଧାନେ ବା ବିନାଶଭୟାଦୁଦ୍ଗତାର୍ଘଂ ' ଧର୍ମସ୍ଥାନୁଜ୍ଞାତୋ ବିକ୍ରୀଣୀତ । ଆଧିପାଳପ୍ରତ୍ୟୟେ ବା । (୬) ସ୍ଥାବରସ୍ତୁ ପ୍ରୟାସଭୋଗ୍ୟଃ ଫଳଭୋଗ୍ୟୋ ବା । ପ୍ରକ୍ଷେପବୃଦ୍ଧିମୂଲ୍ୟଶୁଦ୍ଧମାଜୀବମମୂଲ୍ୟକ୍ଷୟେଣୋପନୟେତ୍ । (୭)**

---

ଅସମ୍ଭବ ହେଲେ ବନ୍ଧକଦ୍ରବ୍ୟର ମୂଲ୍ୟ ସ୍ଥିର କରାଯାଇ ଏବଂ ଭବିଷ୍ୟତରେ ଆଉ କଳାନ୍ତର ନ ବଢ଼ିବା ସକାଶେ ନିଶ୍ଚୟ କରାଯାଇ ବନ୍ଧକଦ୍ରବ୍ୟ ସାହୁକାରଙ୍କ ଘରେ ଭଦ୍ରବ୍ୟକ୍ତିଙ୍କ ଜଣାରେ ମଧ୍ୟ ରଖାଯାଇ ପାରିବ କିମ୍ବା 'ଅନାଶ' ଅର୍ଥାତ୍ ଭଙ୍ଗା, ତରଳା ଇତ୍ୟାଦି ନକରି ଯାହା କରିବା ଆବଶ୍ୟକ ବା 'ବିନାଶ' ଅର୍ଥାତ୍ ଭଙ୍ଗା, ତରଳା କରି ଯାହା କରିବା ଆବଶ୍ୟକ ତାହା କରାଯାଇ ପାରିବ ଅଥବା ବନ୍ଧକ ଜିନିଷ ନଷ୍ଟ ହୋଇଯିବା ଭୟ ଥିଲେ ଧର୍ମସ୍ଥଙ୍କ ଅନୁମତି ନେଇ ଉଦ୍ଧୃତ ମୂଲ୍ୟରେ ଏହା ବିକ୍ରୟ କରାଯାଇ ପାରିବ ବା ଅଧିପାଳ ଅର୍ଥାତ୍ ବନ୍ଧକ ଜିନିଷର ପର୍ଯ୍ୟବେକ୍ଷକ କର୍ମଚାରୀଙ୍କ ବଚନ ଅନୁସାରେ ରକ୍ଷଣ ବା ବିକ୍ରୟ କରାଯାଇ ପାରିବ । (୬) ପ୍ରୟାସଭୋଗ୍ୟ ଓ ଫଳଭୋଗ୍ୟ ଭେଦରେ ସ୍ଥାବର ସମ୍ପତ୍ତିର ବନ୍ଧକ ଦୁଇପ୍ରକାର । ଭୂମି, ବୃକ୍ଷାଦି ସ୍ଥାବର ସମ୍ପତ୍ତି ବନ୍ଧକ ରଖିବା ବ୍ୟକ୍ତି ନିଜଖର୍ଚ୍ଚ ଓ ନିଜଶ୍ରମରେ ଉକ୍ତ ଭୂମି ବା ବୃକ୍ଷାଦିର କର୍ଷଣ ପର୍ଯ୍ୟବେକ୍ଷଣାଦି କରି ଭୋଗ କରିବାକୁ 'ପ୍ରୟାସଭୋଗ୍ୟ' ବନ୍ଧକ ଏବଂ ଉକ୍ତ ଦ୍ରବ୍ୟ ବନ୍ଧକ ଦେବା ବ୍ୟକ୍ତି ନିଜ ଶ୍ରମଦ୍ୱାରା ଏହି ଭୂମି ବୃକ୍ଷାଦିର କର୍ଷଣ ପର୍ଯ୍ୟବେକ୍ଷଣାଦି କରି ବନ୍ଧକ ରଖିଥିବା ବ୍ୟକ୍ତିକୁ ଫଳଭାଗ ଦେବାକୁ 'ଫଳଭୋଗ୍ୟ' ବନ୍ଧକ କୁହାଯାଏ । ଏହା ଯଥାକ୍ରମେ 'ଭୋଗବନ୍ଧକ' ଓ 'ଭାଗବନ୍ଧକ' ନାମରେ ପରିଚିତ । ସାହୁକାରଙ୍କର ଏଥିରେ ଭୋଗ ଓ ଭାଗ ଥିବା ଯୋଗୁଁ ତାଙ୍କୁ ଏଥିପାଇଁ (ସେ ଦେଇଥିବା ଧନପାଇଁ) କଳାନ୍ତର ବଢ଼ିବ ନାହିଁ କିମ୍ବା ସେ ଏହି ଦ୍ରବ୍ୟକୁ ବିକ୍ରୟ ମଧ୍ୟ କରି ପାରିବେ ନାହିଁ । ବାଣିଜ୍ୟ ସକାଶେ ପ୍ରଯୁକ୍ତ ଧନକରେ 'ଏତିକ ଲାଭରୁ ଏତିକ ବଢ଼ିବ' ଏପରି ସ୍ଥିର କରିବା ବୃଦ୍ଧି କିମ୍ବା କଳାନ୍ତରକୁ 'ପ୍ରକ୍ଷେପବୃଦ୍ଧି' କୁହାଯାଏ । ଏହା ସମୂଳରେ ପରିଶୋଧ କରିବାକୁ ହେବ ଏବଂ ଉପଭୋଗଯୋଗ୍ୟ ବନ୍ଧକଦ୍ରବ୍ୟର ମୂଳଧନ ଗ୍ରହଣ କରି ବନ୍ଧକଦ୍ରବ୍ୟ ଫେରାଇ ଦେବାକୁ ହେବ । (୭) ବନ୍ଧକ ଦେବା ବ୍ୟକ୍ତିର

ଅନନୁଜ୍ଞୋପଭୋକ୍ତା ମୂଲ୍ୟଶୁଦ୍ଧିମାଜୀବଂ ବନ୍ଧଂ ଚ ଦଦ୍ୟାତ୍ । ଶେଷମୁପନିଧିନା ବ୍ୟାଖ୍ୟାତମ୍ । (୮) ଏତେନାଦେଶୋଽନ୍ୱାଧିଶ୍ଚ ବ୍ୟାଖ୍ୟାତୌ । ସାର୍ଥେନାନ୍ୱାଧିହସ୍ତୋ ବା ପ୍ରଦିଷ୍ଟାଂ ଭୂମିମପ୍ରାପ୍ତ-ଶ୍ଚୋରୈର୍ଭଗ୍ନୋତ୍ସୃଷ୍ଟୋ ବା ନାନ୍ୱାଧିମଭ୍ୟାବହେତ୍ । ଅନ୍ତରେ ବା ମୃତସ୍ୟ ଦାୟାଦୋଽପି ନାଭ୍ୟାବହେତ୍ । ଶେଷମୁପନିଧିନା ବ୍ୟାଖ୍ୟାତମ୍ । (୯) ଯାଚିତକମବକ୍ରୀତକଂ ବା ଯଥାବିଧଂ ଗୃହ୍ନୀୟୁ ସ୍ତଥାବିଧମେବ ଅର୍ପୟେୟୁଃ । ଭ୍ରେଷୋପନିପାତାଭ୍ୟାଂ ଦେଶ-

---

ଅନୁମତି ନଥାଇ ବନ୍ଧକ ରଖିବା ବ୍ୟକ୍ତି ଯଦି କୌଣସି ବନ୍ଧକଦ୍ରବ୍ୟ ଉପଭୋଗ କରେ, ତେବେ ସେ ଉକ୍ତ ଦ୍ରବ୍ୟ ଭୋଗକରିବାର ମୂଲ୍ୟ (Compensation) ଅର୍ଥାତ୍ ବନ୍ଧକ ଦେବା ବ୍ୟକ୍ତିଙ୍କୁ କ୍ଷତିପୂରଣ ଦେବା ସଙ୍ଗେ ସଙ୍ଗେ ଏପରି ବେଆଇନ କରିବା ଯୋଗୁଁ ସରକାରଙ୍କୁ ଭୋଗମୂଲ୍ୟର ଅଠଭାଗରୁ ଏକଭାଗ ଅର୍ଥଦଣ୍ଡ ଦେବେ । ଏହି ଭୋଗମୂଲ୍ୟ ଓ ରାଜଦଣ୍ଡ ଦେଇଁ ଧନ ମୂଳଧନରୁ ପରିଶୋଧ କରିବାକୁ ହେବ । ଅନ୍ୟାନ୍ୟ ବନ୍ଧକ ବିଷୟ ଉପନିଧି ବିଧି ଅନୁସାରେ ହୁଏ ବୋଲି ଜାଣିବାକୁ ହେବ । (୮) ଅନ୍ୟ ବ୍ୟକ୍ତି-ବିଶେଷଙ୍କୁ 'ଏହି ଦ୍ରବ୍ୟ ଦିଅ' ବୋଲି କହି ତଦନ୍ୟବ୍ୟକ୍ତିଙ୍କ ହସ୍ତରେ ଅର୍ପଣ କରିବା ଦ୍ରବ୍ୟକୁ 'ଆଦେଶ' ଏବଂ ଏତିକି ରାସ୍ତା ପର୍ଯ୍ୟନ୍ତ ସାବଧାନରେ ରକ୍ଷା କରି ଅନ୍ୟହସ୍ତରେ ଅର୍ପଣ କର ବୋଲି କହି ଦେବା ଦ୍ରବ୍ୟକୁ 'ଅନ୍ୱାଧି' କୁହାଯାଏ । ଉକ୍ତ ଅନ୍ୱାଧି ଦ୍ରବ୍ୟ ଧରି କୌଣସି ବ୍ୟକ୍ତି ବଣିକସଙ୍ଘ କିମ୍ବା ବାଟୋଇମାନଙ୍କ ସହିତ ଯାଉଥିବା ବେଳେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବା ପୂର୍ବରୁ ଚୋରମାନଙ୍କଦ୍ୱାରା ଆକ୍ରାନ୍ତ ହୋଇ ଉକ୍ତ ଦ୍ରବ୍ୟ ହରାଇଲେ ଏଥିପାଇଁ ଏହି ବ୍ୟକ୍ତି ଦାୟୀ ହେବେ ନାହିଁ । ଅର୍ଥାତ୍ ଏହି ଅନ୍ୱାଧି ପଠାଇବା ବ୍ୟକ୍ତି ହିଁ ଏହାର କ୍ଷତି ସହ୍ୟ କରିବେ । ଉକ୍ତ ଅନ୍ୱାଧି ଧରି ଯାଉଥିବା ବ୍ୟକ୍ତି ବାଟରେ ମରିଗଲେ ତାର ଦାୟାଦମାନେ ମଧ୍ୟ ଏହି କ୍ଷତିପୂରଣ ପାଇଁ ଦାୟୀ ହେବେ ନାହିଁ । ଅନ୍ୟାନ୍ୟ ବିଷୟ ଉପନିଧିବିଧାନ ପରି ଜାଣିବାକୁ ହେବ । (୯) ମାଗି ଆଣିଥିବା କିମ୍ବା ଭଡ଼ାକୁ ଆଣିଥିବା ଦ୍ରବ୍ୟ ଯେପରି ଆଣିଥିବ ସେପରି ଫେରାଇ ଦେବାକୁ ହେବ । ମାତ୍ର ହସ୍ତୀ ପ୍ରଭୃତି ଦୁଷ୍ଟଜନ୍ତୁଜନିତ ଭୟ ଓ ଚୋରଭୟ ଯୋଗୁଁ ଉକ୍ତ ଦ୍ରବ୍ୟ ନଷ୍ଟ ବା ଭିନ୍ନ

କାଳୋପରୋଧ ଦତ୍ତଂ ନଷ୍ଟଂ ବିନଷ୍ଟଂ ବା ନାଭ୍ୟାଭବେୟୁଃ । ଶେଷମୁପନିଧିନା ବ୍ୟାଖ୍ୟାତମ୍ । (୧୦) ବୈୟାପୃତ୍ୟକରସ୍ତୁ—ବୈୟାପୃତ୍ୟକରା ଯଥାଦେଶକାଳଂ ବିକ୍ରୀଣାନାଃ ପଣ୍ୟଂ ଯଥାଜାତଂ ମୂଲ୍ୟମୁଦୟଂ ଚ ଦଦ୍ୟୁଃ । ଶେଷମୁପନିଧିନା ବ୍ୟାଖ୍ୟାତମ୍ । (୧୧) ଦେଶକାଳାତିପାତନେ ବା ପରିହୀଣଂ ସଂପ୍ରଦାନକାଲିକେନ ଅର୍ଘେଣ ମୂଲ୍ୟମୁଦୟଂ ଚ ଦଦ୍ୟୁଃ । (୧୨) ଯଥା ସମ୍ଭାଷିତଂ ବା ବିକ୍ରୀଣାନା ନୋଦୟମଧିଗଚ୍ଛେୟୁଃ । ମୂଲ୍ୟମେବ ଦଦ୍ୟୁଃ । ଅର୍ଘପତନେ ବା ପରିହୀଣଂ ଯଥାପରିହୀଣଂ ମୂଲ୍ୟମୂନଂ ଦଦ୍ୟୁଃ ।

---

ହେଲେ (ଭାଙ୍ଗିଗଲେ ବା ଚୂରମାର ହୋଇଗଲେ) କିମ୍ବା ଦେଶ ଓ କାଳର ଅବଧିକୁ ରଖା କରିବାଦ୍ୱାରା ନଷ୍ଟ ବା ବିନଷ୍ଟ ହୋଇଗଲେ ଅର୍ଥାତ୍ 'ଅମୁକ ସ୍ଥାନରୁ ଅନ୍ୟତ୍ର ନେବ ନାହିଁ ବା ଏତେ ସମୟରୁ ଅଧିକ ସମୟ ରଖିବ ନାହିଁ' ବୋଲି ସ୍ଥିରକରି ଦେଇଥିବା ଦ୍ରବ୍ୟ ନିର୍ଦ୍ଦିଷ୍ଟ ସ୍ଥାନ ଓ କାଳମଧ୍ୟରେ ନଷ୍ଟ ବା ବିନଷ୍ଟ ହୋଇଗଲେ ଏହି କ୍ଷତିପୂରଣ କରିବାକୁ ନେଇଥିବା ବ୍ୟକ୍ତି ଦାୟୀ ହେବେ ନାହିଁ । ଅନ୍ୟ ସବୁ ଉପନିଧିତୁଲ୍ୟ ବୋଲି ଜାଣିବାକୁ ହେବ । (୧୦) ବେତନଭୋଗୀ ବ୍ୟବସାୟୀମାନେ ପଣ୍ୟସ୍ୱାମୀଠାରୁ ନେଇଥିବା ପଣ୍ୟପଦାର୍ଥ ଯଥାଦେଶ ଓ ଯଥାକାଳରେ ବିକ୍ରୟ କରି ମୂଳ ଓ ଲାଭ ସବୁ ପଣ୍ୟସ୍ୱାମୀଙ୍କୁ ଦେଇଦେବେ । ଅନ୍ୟାନ୍ୟ ସମସ୍ତ ବିଷୟ ଉପନିଧି ବିଷୟପରି ଜାଣିବାକୁ ହେବ । (୧୧) ଉକ୍ତ ବ୍ୟବସାୟୀମାନେ ଯଦି ନିଜର ଅବହେଳା ଯୋଗୁଁ ଉକ୍ତ ପଣ୍ୟପଦାର୍ଥ ଯଥାସ୍ଥାନରେ ବା ଯଥାସମୟରେ ବିକ୍ରୟ ନକରି କ୍ଷତି ଘଟାନ୍ତି ତେବେ ସେମାନେ ଉକ୍ତ ପଦାର୍ଥ ଯଥାଦେଶ ଓ ଯଥାକାଳରେ ବିକ୍ରୟ କରିଥିଲେ ଯାହା ମୂଳ ଓ ଲାଭ ପାଇଥାନ୍ତେ, ସେତିକ ପରିମାଣର ମୂଳ ଓ ଲାଭ ପଣ୍ୟସ୍ୱାମୀଙ୍କୁ ଦେଇଦେବେ ଅର୍ଥାତ୍ ଯାହା କ୍ଷତି ତାହା ହାତରୁ ମିଶାଇ ଦେବେ । (୧୨) ପଣ୍ୟସ୍ୱାମୀ କହିବା ମୂଲ୍ୟ ଅନୁସାରେ କର୍ମକର (ଖୁଚୁରାବେପାରୀ) ମାନେ ପଣ୍ୟପଦାର୍ଥ ବିକ୍ରୟ କରି ପଣ୍ୟସ୍ୱାମୀଙ୍କୁ କେବଳ ନିର୍ଦ୍ଦିଷ୍ଟ ମୂଲ୍ୟ ଦେବେ ସିନା, ଲାଭ ଦେବେ ନାହିଁ । ଯଦି ବଜାରର ଦରଦାମ ପରିସ୍ଥିତି ଅନୁସାରେ ଦରଦାମ କମିଯାଏ ତେବେ ପଣ୍ୟସ୍ୱାମୀ କହିଥିବା ନିର୍ଦ୍ଦିଷ୍ଟ ମୂଲ୍ୟରୁ ଯାହା ଊଣାହେବ

**(୧୩) ସାଂବ୍ୟବହାରିକେଷୁ ବା ପ୍ରାତ୍ୟୟିକେଷ୍ୱଗକବାଚ୍ୟେଷୁ ଭ୍ରେଷୋପନପାତାଭ୍ୟାଂ ନଷ୍ଟଂ ବିନଷ୍ଟଂ ବା ମୂଲ୍ୟମପି ନ ଦଦ୍ୟୁଃ । ଦେଶକାଳାନ୍ତରିତାନାଂ ତୁ ପଣ୍ୟାନାଂ କ୍ଷୟବ୍ୟୟବିଶୁଦ୍ଧଂ ମୂଲ୍ୟ-ମୁଦୟଂ ଚ ଦଦ୍ୟୁଃ । ପଣ୍ୟସମବାୟାନାଂ ଚ ପ୍ରତ୍ୟଂଶମ୍ । ଶେଷ-ମୁପନିଧିନା ବ୍ୟାଖ୍ୟାତମ୍ । ଏତେନ ବୈୟାପୃତ୍ୟବିକ୍ରୟୋ ବ୍ୟାଖ୍ୟାତଃ । (୧୪) ନିକ୍ଷେପଶ୍ଚୋପନିଧିନା । ତମନ୍ୟେନ ନିକ୍ଷିପ୍ତମନ୍ୟସ୍ୟାର୍ପୟତୋ ହୀୟେତ । ନିକ୍ଷେପାପହାରେ ପୂର୍ବାପ-ଦାନଂ ନିକ୍ଷେପ୍ତାରଶ୍ଚ ପ୍ରମାଣମ୍ । ଅଶୁଚୟୋ ହି କାରବଃ,**

---

ତାହା ହାତରୁ ମିଶାଇ ପଣ୍ୟସ୍ୱାମୀଙ୍କୁ ଦେଇଦେବେ । ଲାଭ ହେଲେ ନେବେ, ନଷ୍ଟ ହେଲେ ହାତରୁ ମିଶାଇ ଦେବେ । (୧୩) ଅନ୍ୟର ପଣ୍ୟପଦାର୍ଥ ବିକ୍ରୟ କରି ଜୀବିକା ନିର୍ବାହ କରିବା ରାଜାନୁମତିପ୍ରାପ୍ତ, ବିଶ୍ୱସ୍ତ ଖୁଚୁରା ବେପାରୀମାନଙ୍କର ବନ୍ୟହସ୍ତୀ ପ୍ରଭୃତି ଦୁଷ୍ଟଜନ୍ତୁର ଉପଦ୍ରବଜନିତ ଆକ୍ରମଣ ଯୋଗୁଁ ଏବଂ ଚୌରଭୟ ଯୋଗୁଁ ଯଦି ପଣ୍ୟପଦାର୍ଥ ନଷ୍ଟ, ବିନଷ୍ଟ ହୋଇଯାଏ, ତେବେ ଏମାନେ ଉକ୍ତ ପଦାର୍ଥର ମୂଲ୍ୟ ମଧ୍ୟ ପଣ୍ୟସ୍ୱାମୀଙ୍କୁ ଦେବେ ନାହିଁ । ଦେଶାନ୍ତର ଓ କାଳାନ୍ତରରେ ବିକ୍ରୟ କରିବା ପାଇଁ ପଣ୍ୟସ୍ୱାମୀ ଖୁଚୁରାବେପାରୀମାନଙ୍କୁ ଦେଇଥିବା ପଣ୍ୟପଦାର୍ଥର ଭାଗୁଡ଼ି ଓ ଭଡ଼ାଆ ପ୍ରଭୃତି କାଟକସର କରି ଉଦ୍‌ବୃତ୍ତ ମୂଳ ଓ ଲାଭ ଉକ୍ତ ବେପାରୀମାନେ ପଣ୍ୟସ୍ୱାମୀଙ୍କୁ ଦେବେ । ଖୁଚୁରା ବେପାରୀମାନେ ଦେଶାନ୍ତରରେ ପଣ୍ୟପଦାର୍ଥ ବିକ୍ରୟ କରି ତାର ବଦଳରେ ଅନ୍ୟ ପଣ୍ୟପଦାର୍ଥ ସେଠାରୁ ଆଣି ନିଜ ଦେଶରେ ବିକ୍ରୟ କରି ଯେଉଁ ଲାଭାଂଶ ପାଆନ୍ତି, ତାହା ପଣ୍ୟସ୍ୱାମୀ ନନେଇ ଏହି ଖୁଚୁରା ବେପାରୀମାନଙ୍କୁ ହିଁ ଦେଇଦେବେ । ଶେଷ ବିଷୟକୁ ଉପନିଧି ବିଧାନାନୁଯାୟୀ ଜାଣିବାକୁ ହେବ । ଏହି ସାଂବ୍ୟବହାରିକ ବିଧି ଅନୁସାରେ ପୂର୍ବୋକ୍ତ ବୈୟାପୃତ୍ୟ ବିକ୍ରୟବିଧି ମଧ୍ୟ ଜାଣିବାକୁ ହେବ । (୧୪) ସାକ୍ଷୀ ସରତ ନଥାଇ କେବଳ ବିଶ୍ୱାସରେ କାହାପାଖରେ କୌଣସି ଦ୍ରବ୍ୟ ଗଚ୍ଛିତ କରି ରଖିବାର ନାମ 'ନିକ୍ଷେପ' । ଅଳଂକାର ପ୍ରଭୃତି ନିର୍ମାଣ ସକାଶେ ଶିଳ୍ପିମାନଙ୍କୁ ଦିଆଯାଇଥିବା ସୁନାରୁପା ପ୍ରଭୃତି ଦ୍ରବ୍ୟକୁ ମଧ୍ୟ 'ନିକ୍ଷେପ' କୁହାଯାଏ । ଉପନିଧି ବିଷୟ ବର୍ଣ୍ଣନ ସମୟରେ ଏହି ବିଷୟର ମଧ୍ୟ ବ୍ୟାଖ୍ୟାକ

ନୈଷାଂ କରଣପୂର୍ବୋ ନିକ୍ଷେପଧର୍ମଃ । କରଣହୀନଂ ନିକ୍ଷେପମପବ୍ୟୟମାନଂ ଗୂଢ଼ଭିତ୍ତିନ୍ୟସ୍ତାନ୍ ସାକ୍ଷିଣୋ ନିକ୍ଷେପ୍ତା ରହସ୍ୟ-ପ୍ରଣିପାତେନ ପ୍ରଜ୍ଞାପୟେତ୍, ବନାନ୍ତେ ବା ମଦ୍ୟପ୍ରହବଣ ବିଶ୍ୱାସେନ । (୧୫) ରହସି ବୃଦ୍ଧୋ ବ୍ୟାଧିତୋ ବା ବୈ ଦେହକଃ କଶ୍ଚିତ୍ କୃତଲକ୍ଷଣଂ ଦ୍ରବ୍ୟମସ୍ୟ ହସ୍ତେ ନିକ୍ଷିପ୍ୟାପଗଚ୍ଛେତ୍ ।

---

କରାଯାଇଛି । ଜଣେ ଦେଇଥିବା ନିକ୍ଷେପ ଦ୍ରବ୍ୟକୁ ଅନ୍ୟଜଣକ ହସ୍ତରେ ଅର୍ପଣ କରିବା ଶିଳ୍ପୀ ଦ୍ରବ୍ୟହାନି ବହନ କରି ପ୍ରକୃତ ବ୍ୟକ୍ତିଙ୍କୁ ନିକ୍ଷେପ ଦ୍ରବ୍ୟ ପୁନରପି ଦେବାକୁ ବାଧ୍ୟ ହେବେ । ନିକ୍ଷେପ ଦ୍ରବ୍ୟ ଅପହୃତ ହେଲେ ଶିଳ୍ପୀର ପୂର୍ବଚରିତ ଏବଂ ନିକ୍ଷେପ୍ତାଙ୍କର ସୁଜନତା ପର୍ଯ୍ୟାଲୋଚନା କରି ଉକ୍ତ ବିଷୟର ସିଦ୍ଧାନ୍ତ କରିବାକୁ ହେବ । ଅର୍ଥାତ୍ ଶିଳ୍ପୀ ଓ ନିକ୍ଷେପ୍ତାଙ୍କ ମଧ୍ୟରୁ କିଏ ଏଥିପାଇଁ ଦାୟୀ ତାହା ନିର୍ଣ୍ଣୟ କରିବାକୁ ହେବ । ଶିଳ୍ପିମାନେ ସାଧାରଣତଃ ମିଥ୍ୟାବାଦୀ ଓ ଦୂଷିତସ୍ୱଭାବ ଅଟନ୍ତି, ପୁଣି ଏମାନଙ୍କ ନିକଟରେ ନିକ୍ଷେପଦ୍ରବ୍ୟ ଦେବାବେଳେ ସାକ୍ଷୀ ଇତ୍ୟାଦି ନଥାଇ କେବଳ ବିଶ୍ୱାସରେ ହିଁ ଦିଆଯାଇଥାଏ । ସାକ୍ଷୀ ଓ ସରତ ନଥାଇ ଦିଆଯାଇଥିବା ନିକ୍ଷେପ ଦ୍ରବ୍ୟ ଆତ୍ମସାତ୍ କରି ଶିଳ୍ପୀ ଯଦି ଅପଲାପ କରେ, ତେବେ ନିକ୍ଷେପ୍ତା ସାକ୍ଷିମାନଙ୍କୁ ଗୋପନରେ କାନ୍ଥ ଉହାଡ଼ରେ ବା ଗଛ ଉହାଡ଼ରେ ଲୁଚାଇ ରଖି କୌଶଳକ୍ରମେ ଯୁକ୍ତିଦ୍ୱାରା ଏହି ନିକ୍ଷେପ ଦ୍ରବ୍ୟ ଶିଳ୍ପୀକୁ ଦେଇଥିବାଭଳି କଥା ଶିଳ୍ପୀର ମୁହଁରୁ ବାହାର କରି ସାକ୍ଷିମାନଙ୍କୁ ଶୁଣାଇଦେବେ ଓ ନ୍ୟାୟାଧୀଶଙ୍କ ନିକଟରେ ଆବଶ୍ୟକ ବେଳେ ତାହା ପ୍ରମାଣିତ କରାଇ ଦେବେ । ଅଥବା, ବନମଧ୍ୟରେ ମଦ୍ୟ ପ୍ରହବଣ ଅର୍ଥାତ୍ ପାନଭୋଜନ ପ୍ରଭୃତି ମେଳାମଉଜର ବାହାନା କରି ଉକ୍ତ ଶିଳ୍ପୀ ଓ ସାକ୍ଷିମାନଙ୍କୁ ଏକତ୍ରିତ କରି ପାନଭୋଜନରେ ମସ୍ତ ହୋଇଥିବା ଅବସ୍ଥାରେ ଶିଳ୍ପୀର ମୁହଁରୁ ନିକ୍ଷେପଦ୍ରବ୍ୟ ନେଇଥିବା କଥା ବାହାର କରି ସାକ୍ଷିଙ୍କୁ ଶୁଣାଇ ଦେବେ । (୧୫) ବିଜନ ସ୍ଥାନରେ କୌଣସି ବୃଦ୍ଧ ବା ବ୍ୟାଧିଗ୍ରସ୍ତ ବ୍ୟକ୍ତି କୌଣସି ନିକ୍ଷେପଦ୍ରବ୍ୟରେ ସାଉକାରଙ୍କ ଅଜ୍ଞାତସାରତାରେ ମନମୁତାବକ ସଙ୍କେତ ଚିହ୍ନ (କୌଣସି ଏକ ଚିହ୍ନ ରଖି) ତାଙ୍କ ଜିମାରେ ରଖିଦେଇ ବାହାରି ଆସିବେ । କେତେକାଳ ପରେ ନିକ୍ଷେପ୍ତାଙ୍କ ପୁତ୍ର ବା ଭ୍ରାତା ଉକ୍ତ ସାଦୁକାରଙ୍କ

ତସ୍ୟ ପ୍ରତଦେଶେନ ପୁତ୍ରୋ ଭ୍ରାତା ବାଭିଗମ୍ୟ ନଚ୍ଛେପଂ ଯାଚେତ । ଦାନେ ଶୁଦ୍ଧିଃ । ଅନ୍ୟଥା ନକ୍ଷେପଂ ସ୍ତେୟଦଣ୍ଡଂ ଚ ଦଦ୍ୟାତ୍ । (୧୬) ପ୍ରବ୍ରଜ୍ୟାଭିମୁଖୋ ବା ଶ୍ରଦ୍ଧେୟଃ କଶ୍ଚିତ୍ କୃତଲକ୍ଷଣଂ ଦ୍ରବ୍ୟମସ୍ୟ ହସ୍ତେ ନକ୍ଷିପ୍ୟ ପ୍ରତଷ୍ଠେତ । ତତଃ କାଳାନ୍ତରଗତୋ ଯାଚେତ । ଦାନେ ଶୁଚରନ୍ୟଥାନକ୍ଷେପଂ ସ୍ତେୟ-ଦଣ୍ଡଂ ଚ ଦଦ୍ୟାତ୍ । କୃତଲକ୍ଷଣେନ ବା ଦ୍ରବ୍ୟେଣ ପ୍ରତ୍ୟାନୟେ-ଦେନମ୍ । ବାଳଶଜାତୀୟୋ ବା ରାତ୍ରୌ ରାଜଦାୟିକାଂକ୍ଷଣଭୀତଃ ସାରମସ୍ୟ ହସ୍ତେ ନକ୍ଷିପ୍ୟାପଗଚ୍ଛେତ୍ । ସ ଏନଂ ବନ୍ଧନାଗାର-

---

ପାଖକୁ ଯାଇ ନକ୍ଷେପଦ୍ରବ୍ୟ ଦେଇଥିବା ବ୍ୟକ୍ତି ମରିଯାଇଥିବାର ଛଳନା କରି ନକ୍ଷେପଦ୍ରବ୍ୟ ମାଗିବେ । ସାହୁକାର ପ୍ରକୃତ ନକ୍ଷେପଦ୍ରବ୍ୟ ଦେଇ-ଦେଲେ ଉକ୍ତ ସାହୁକାରଙ୍କୁ ଶୁଦ୍ଧସ୍ୱଭାବ ବୋଲି ବୁଝିବାକୁ ହେବ । ଏହାର ବିପରୀତାଚରଣ କଲେ ଉକ୍ତ ସାହୁକାର ନକ୍ଷେପଦ୍ରବ୍ୟ ନକ୍ଷେପ୍ତା ବା ତାଙ୍କ ପୁତ୍ରଙ୍କୁ ଦେଇଦେବା ପରେ ଚୌରଦଣ୍ଡରେ ଦଣ୍ଡିତ ହୋଇ ରାଜାଙ୍କୁ ଜୋରିମାନା ମଧ ଦେବେ । (୧୬) କୌଣସି ଜଣେ ଭଦ୍ରବ୍ୟକ୍ତି ସନ୍ନ୍ୟାସ-ଗ୍ରହଣ କରି ଯାଉଥିବା ଛଳନାକରି ନକ୍ଷେପଦ୍ରବ୍ୟ ରଖୁଥିବା ବ୍ୟକ୍ତିଙ୍କ ନକର ନକ୍ଷେପଦ୍ରବ୍ୟରେ କୌଣସି ଏକ ଗୁପ୍ତଚହ୍ନ ରଖିଦେଇ ଚାଲି ଆସିବେ । କେତେକାଳ ପରେ ଉକ୍ତ ଦ୍ରବ୍ୟ ମାଗିଲାବେଳେ ସେ ଯଦି ପ୍ରକୃତ ଦ୍ରବ୍ୟ ଦେଇଦଅନ୍ତି ତେବେ ତାଙ୍କୁ ଉତ୍ତମବ୍ୟକ୍ତି ବୋଲି ଜାଣିବାକୁ ହେବ; ଏହାର ବିପରୀତ କଲେ ରାଜା ଏହାଙ୍କଠାରୁ ନକ୍ଷେପଦ୍ରବ୍ୟ ଦିଆଇଦେବା ସଙ୍ଗେ ସଙ୍ଗେ ଏହାଙ୍କୁ ଚୌର ଦଣ୍ଡରେ ଦଣ୍ଡିତ କରିବେ । ଅଥବା ନକ୍ଷେପ୍ତା, ନକ୍ଷେପଦ୍ରବ୍ୟ ରଖିଥିବା ବ୍ୟକ୍ତି ଅପଳାପ କରିବା ସତ୍ତ୍ୱେ ଦୈବାତ୍ ଯଦି ନକର ଚହ୍ନଯୁକ୍ତ ନକ୍ଷେପଦ୍ରବ୍ୟକୁ ଉକ୍ତ ନକ୍ଷେପରକ୍ଷକଙ୍କଠାରେ ଥିବାର ଧରନ୍ତି, ତେବେ ମାଲ ଓ ମୁଦାଇ ଉଭୟଙ୍କୁ ବିଚାରାଳୟକୁ ଟାଣି ଆଣିବେ । ମୂର୍ଖପ୍ରାୟ ଢଙ୍ଗ ଦେଖାଇ ନକର ଧନରତ୍ନାଦି ଦ୍ରବ୍ୟ ରାଜକର୍ମଚାରିମାନେ ଛଡ଼ାଇନେଇ ରାଜାଙ୍କୁ ଦେଇଦେବେ ବୋଲି ଡରିବା ବାହାନା କରି ଉକ୍ତ ଦ୍ରବ୍ୟ ରାତାରାତି ନେଇ କୌଣସି ବ୍ୟକ୍ତିଙ୍କ ପାଖରେ ଗଚ୍ଛିତ କରି ବାହାରି ଅସିବେ । ପରେ ଉକ୍ତ ରତ୍ନାଦି ଦ୍ରବ୍ୟ ରାଜାଙ୍କୁ ମିଳିଲା ନାହିଁ ବୋଲି

ଗତୋ ଯାଚେତ । ଦାନେ ଶୁଚିଃ, ଅନ୍ୟଥା ନିକ୍ଷେପଂ ସ୍ତେୟଦଣ୍ଡଂ ଚ ଦେଦ୍ୟାତ୍ । (୧୭) ଅଭିଜ୍ଞାନେନ ଗୃହସ୍ୟ ଗୃହେ ଜନମୁଭୟଂ ଯାଚେତ । ଅନ୍ୟତରଦାନେ ଯଥୋକ୍ତଂ ପୁରସ୍ତାତ୍ । (୧୮) ଦ୍ରବ୍ୟଭୋଗାନାମାଗମଂ ଗୃହସ୍ୟାନୁଯୁଂଜୀତ । ତସ୍ୟ ଚାର୍ଥସ୍ୟ ବ୍ୟବହାରୋପଲିଂଗନମଭିଯୋକ୍ତୁଶ୍ଚାର୍ଥସାମର୍ଥ୍ୟମ୍ । (୧୯) ଏତେନ ମିଥଃସମବାୟୋ ବ୍ୟାଖ୍ୟାତଃ ।

(୨୦) ତସ୍ମାତ୍ ସାକ୍ଷିମଦଚ୍ଛନ୍ନଂ କୁର୍ଯ୍ୟାତ୍ ସମ୍ୟଗ୍ ବିଭଷିତମ୍ ।
ସ୍ୱେ ପରେ ବା ଜନେ କାର୍ଯ୍ୟଂ ଦେଶକାଳାଗ୍ରବର୍ଣ୍ଣତଃ ॥

---

ରାଜକର୍ମଚାରୀମାନେ ତାଙ୍କୁ କାରାଗାରରେ ଅବଦ୍ଧ କରି ରଖିବା ଯୋଗୁଁ ବନ୍ଧନରୁ ମୁକ୍ତ ହେବାପାଇଁ ଉକ୍ତ ନିକ୍ଷେପ୍ତା ନିକ୍ଷେପଦ୍ରବ୍ୟ ରଖିଥିବା ବ୍ୟକ୍ତିଙ୍କୁ ନିଜର ନିକ୍ଷେପଦ୍ରବ୍ୟ ମଗାଇବେ । ସେ ଯଦି ପ୍ରକୃତ ଦ୍ରବ୍ୟ ଦେଇଦିଅନ୍ତି ତେବେ ତାଙ୍କୁ ଶୁଦ୍ଧଚରିତ୍ର ବୋଲି ଜାଣିବାକୁ ହେବ । ଅନ୍ୟଥାଚରଣ କଲେ ନିକ୍ଷେପଦ୍ରବ୍ୟ ଅସୁଲ କରିବା ସଙ୍ଗେ ସଙ୍ଗେ ଚୌରଦଣ୍ଡରେ ତାଙ୍କୁ ଦଣ୍ଡିତ କରିବାକୁ ହେବ । (୧୭) କୌଣସି ବ୍ୟକ୍ତି ଦୁଇଟି ଦ୍ରବ୍ୟରେ ଚିହ୍ନ ରଖି ତାହା ନିକଟରେ ଗଚ୍ଛିତ କରିବେ । ଯାହାଙ୍କ ପାଖରେ ଉକ୍ତ ଦ୍ରବ୍ୟ ରଖାଯାଇଛି, ସେ ଯଦି ମରିଯାନ୍ତି ତେବେ ତାଙ୍କ ପୁତ୍ର ବା ଭାଇ ପ୍ରଭୃତିଙ୍କୁ ନିକ୍ଷେପ୍ତା 'ମୋର ଅମୁକ ପଦାର୍ଥରେ ଅମୁକ ଚିହ୍ନ ଅଛି'—ଏହା କହି ନିଜର ନିକ୍ଷେପଦ୍ରବ୍ୟକୁ ମାଗିଲେ, ସେ ଯଦି ଗୋଟିଏ ଦେଇ ଅନ୍ୟଟି ନ ଦିଅନ୍ତି, ତେବେ ସେ ପୂର୍ବୋକ୍ତ ପ୍ରକାରେ ଦଣ୍ଡିତ ହେବେ । (୧୮) ନ୍ୟାୟାଧୀଶ (ଧର୍ମସ୍ଥ) ଉପରୋକ୍ତ ସମସ୍ତ ବିଷୟର ସତ୍ୟାସତ୍ୟ ନିରୂପଣ କରିବା ପାଇଁ ନିକ୍ଷେପକାରୀର ଗୃହବ୍ୟବହାର୍ଯ୍ୟ ପଦାର୍ଥ ଓ ଆୟର ବିବରଣୀ ଏବଂ ନିକ୍ଷେପ ରଖି ନାହିଁକରିବା ବ୍ୟକ୍ତିଙ୍କ ବ୍ୟାପାର ଓ ଆୟ ପ୍ରଭୃତିର ବିବରଣୀ ସଂଗ୍ରହ କରିବେ । ତା'ପରେ ଅଭିଯୁକ୍ତ ପଦାର୍ଥର ନ୍ୟାଯ୍ୟ ବିଚାର ଦ୍ୱାରା ସତ୍ୟାସତ୍ୟ ଅନୁମାନ କରିବେ ଏବଂ ଅଭିଯୋଗକାରୀଙ୍କ ଅଭିଯୁକ୍ତ ଦ୍ରବ୍ୟ ନିକ୍ଷେପ କରିବା ସାମର୍ଥ୍ୟ ପ୍ରକୃତରେ ଅଛି କି ନାହିଁ ତାହା ବିଚାର କରିବା ଉତ୍ତାରୁ ନିଷ୍ପତ୍ତି ଶୁଣାଇ ଦେବେ । (୧୯) ନିକ୍ଷେପଦ୍ରବ୍ୟର ଅପଳାପ ବିଷୟରେ କୁହାଯିବା ବିଧି ଅନୁସାରେ ଗୋପନ ଋଣ ଓ ଗାନ୍ଧର୍ବ ବିବାହାଦିର ସତ୍ୟାସତ୍ୟ ନିରୂପଣ ବିଷୟ ବିଚାର କରିବେ । (୨୦) ଅତଏବ ଉପରୋକ୍ତ

## ତ୍ରୟୋଦଶୋଽଧ୍ୟାୟଃ

## ପଞ୍ଚଷଷ୍ଟିତମ ପ୍ରକରଣମ୍—ଦାସକର୍ମକରକଳ୍ପଃ

## RULES REGARDING SLAVES AND LABOURERS

[ ଦାସ ଅର୍ଥାତ୍ ଗର୍ଭଦାସ (ଗୃହଜାତ ଦାସୀର ଗର୍ଭଜାତ ପୁତ୍ର) କର୍ମକର (ଶ୍ରମିକ), କୃଷକ ଓ ଗୋପାଳ ପ୍ରଭୃତିଙ୍କ ଅଧୀନ, ବିକ୍ରୟାଦି ବିଧାନ ]

(୧) ଉଦରଦାସବର୍ଜମାର୍ଯ୍ୟପ୍ରାଣମପ୍ରାପ୍ତବ୍ୟବହାରଂ ଶୂଦ୍ରଂ

---

ନିକ୍ଷେପାଦି ଦ୍ରବ୍ୟର ଅପଳାପ ଘଟିବାଦ୍ୱାରା ତାର ସତ୍ୟାସତ୍ୟ ନିର୍ଣ୍ଣୟ ଦୁଃସାଧ୍ୟ ହେବା ସ୍ଥଳେ ନ୍ୟାୟାଧୀଶ ସାକ୍ଷିମାନଙ୍କଦ୍ୱାରା ଅଭିଯୁକ୍ତ ବିଷୟକୁ ସ୍ପଷ୍ଟଭାବେ ଖୋଲିଦେଇ ଦେଶ, କାଳ, ସଂଖ୍ୟା ଓ ସ୍ୱରୂପକୁ ଉତ୍ତମ ପ୍ରକାରେ ଆଲୋଚନା କରି ନିଜବ୍ୟକ୍ତି ବା ପରବ୍ୟକ୍ତି ପ୍ରତି ଉପରୋକ୍ତ ନିକ୍ଷେପାଦି ଦ୍ରବ୍ୟର ଅପଳାପ, ପରିହାର ବା ପରିଜ୍ଞାନ ପାଇଁ ଯଥାଯଥ ରାୟ (ନିଷ୍ପତ୍ତି) ଶୁଣାଇବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଦ୍ୱାଦଶୋଽଧ୍ୟାୟଃ ।

ଔପନିଧିକମ୍—ଆଦିତଃ ଏକୋନସପ୍ତତିତମଃ ।

—o—

(୧) ଉଦରଦାସ (ଭୋଜନଉପାୟଶୂନ୍ୟ ବ୍ୟକ୍ତି ଯାହାକୁ କି ଅନ୍ନବସ୍ତ୍ର ଯୋଗାଇ ରଖାଯାଇଥାଏ) ବ୍ୟତୀତ ଆର୍ଯ୍ୟମର୍ଯ୍ୟାଦାସମ୍ପନ୍ନ ଅପ୍ରାପ୍ତବ୍ୟବହାର (ନାବାଳକ) ଶୂଦ୍ରକୁ ବିକ୍ରୟ ବା ବନ୍ଧକ ସକାଶେ ନେଉଥିବା ସ୍ୱଜନକୁ ବାରପଣ ଅର୍ଥଦଣ୍ଡ, ବୈଶ୍ୟକୁ ଏହାର ଦ୍ୱିଗୁଣ, କ୍ଷତ୍ରିୟକୁ ତିନିଗୁଣ ଓ ବ୍ରାହ୍ମଣକୁ ଚାରିଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଯଦି ଉକ୍ତ ବିକ୍ରୟ ଓ ବନ୍ଧକ କରିବା ବ୍ୟକ୍ତି ସ୍ୱଜନ ନହୋଇ ପରଜନ ହୋଇଥାଏ, ତେବେ ତାକୁ ଶୂଦ୍ର, ବୈଶ୍ୟ, କ୍ଷତ୍ରିୟ ଓ ବ୍ରାହ୍ମଣ କ୍ରମରେ ପ୍ରଥମସାହସ, ମଧ୍ୟମସାହସ, ଉତ୍ତମସାହସ ଓ ବଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଶୂଦ୍ରକୁ ବିକ୍ରୟ ବା ବନ୍ଧକ କଲେ ପ୍ରଥମସାହସଦଣ୍ଡ,

**ବିକ୍ରୟାଧାନଂ ନୟତଃ ସ୍ୱଜନସ୍ୟ ଦ୍ୱାଦଶପଣୋ ଦଣ୍ଡଃ । ବୈଶ୍ୟଂ ଦ୍ୱିଗୁଣଃ । କ୍ଷତ୍ରିୟଂ ତ୍ରିଗୁଣଃ । ବ୍ରାହ୍ମଣଂ ଚତୁର୍ଗୁଣଃ । ପରଜନସ୍ୟ ପୂର୍ବମଧ୍ୟମୋତ୍ତମବଧା ଦଣ୍ଡାଃ କ୍ରେତୃ ଶ୍ରୋତୃଣାଂ ଚ । (୨) ମ୍ଲେଚ୍ଛାନାମଦୋଷଃ ପ୍ରଜାଂ ବିକ୍ରେତୁମାଧାତୁଂ ବା । ନ ତ୍ୱେବାର୍ଯ୍ୟସ୍ୟ ଦାସଭାବଃ । (୩) ଅଥବାର୍ଯ୍ୟମାଧାୟ କୁଳବନ୍ଧନ ଆର୍ଯ୍ୟାଣାମାପଦି ନିଷ୍କ୍ରୟଂ ଚାଧିଗମ୍ୟ ବାଳଂ ସାହାଯ୍ୟଦାତାରଂ ବା ପୂର୍ବଂ ନିଷ୍କ୍ରୀଣୀରନ୍ । (୪) ସକୃଦାତ୍ମାଧାତା ନିଷ୍ପତିତଃ ସୀଦେତ୍ ।**

---

ବୈଶ୍ୟକୁ ବିକ୍ରୟ ବା ବନ୍ଧକ କଲେ ମଧ୍ୟମସାହସଦଣ୍ଡ, କ୍ଷତ୍ରିୟକୁ ବିକ୍ରୟ ବା ବନ୍ଧକ କଲେ ଉତ୍ତମସାହସଦଣ୍ଡ ଏବଂ ବ୍ରାହ୍ମଣକୁ ବିକ୍ରୟ ବା ବନ୍ଧକ କଲେ ବଧଦଣ୍ଡରେ ଦଣ୍ଡିତ ହେବେ । ଅଧିକନ୍ତୁ ଏମାନଙ୍କୁ କିଣିବା ବା ବନ୍ଧକ ରଖିବା ବ୍ୟକ୍ତି ଓ ଉକ୍ତ କାର୍ଯ୍ୟର ସାକ୍ଷୀମାନଙ୍କୁ ମଧ୍ୟ ଉପରୋକ୍ତ ପ୍ରକାରେ ପ୍ରଥମସାହସ, ମଧ୍ୟମସାହସ, ଉତ୍ତମସାହସ ଓ ବଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୨) ନିଜର ସନ୍ତାନମାନଙ୍କୁ ବିକ୍ରୟ ଓ ବନ୍ଧକ କରିବା ମ୍ଲେଚ୍ଛ (ଅନାର୍ଯ୍ୟ—କୃଷି, ଶସ୍ତ୍ରଜୀବୀ ବନଚର ବ୍ୟକ୍ତି)ମାନଙ୍କ ପକ୍ଷେ ଦୋଷାବହ ନୁହେ । କିନ୍ତୁ ଆର୍ଯ୍ୟମାନଙ୍କ ମଧ୍ୟରେ ଏପରି ଦାସଭାବର ପ୍ରଚଳନ ଓ ପ୍ରବର୍ତ୍ତନର ସୁବିଧା କଦାପି ଦେବାକୁ ହେବ ନାହିଁ । (୩) ନିଜ କୁଳରେ କୌଣସି ଗୁରୁତର ଆର୍ଥିକ ସଙ୍କଟ ଉପସ୍ଥିତ ହେଲେ କିମ୍ବା ବହୁତ ଆର୍ଯ୍ୟବ୍ୟକ୍ତିଙ୍କୁ କୌଣସି ଗୁରୁତର ବିପତ୍ତି ପଡ଼ିଲେ ଆପତ୍ତିରୁ ଉଦ୍ଧାର ପାଇବା ପାଇଁ ଯେତିକି ଧନ ଆବଶ୍ୟକ କେବଳ ସେତିକି ଧନ ଧନିକଠାରୁ ଗ୍ରହଣ କରି କୌଣସି ଆର୍ଯ୍ୟ ନିଜର ସନ୍ତାନକୁ କେବଳ ଅସ୍ଥାୟୀଭାବରେ ବନ୍ଧକ ଦେଇ ବିପତ୍ତିରୁ ଉଦ୍ଧାର ହେବା ସଙ୍ଗେ ସଙ୍ଗେ ତାହାକୁ ମୁକୁଳାଇ ଆଣିବେ । ଯଦି କୌଣସି ସାହାଯ୍ୟକାରୀ ପ୍ରାପ୍ତବୟସ୍କ ବ୍ୟକ୍ତି ନିଜକୁ ବନ୍ଧକ ଦେଇ ବିପତ୍ତିରେ ସାହାଯ୍ୟ କରିଥାଏ ତେବେ ମଧ୍ୟ ତାଙ୍କୁ ଉପରୋକ୍ତ ପ୍ରକାରେ ମୁକ୍ତକରିବାକୁ ହେବ । (୪) ନିଜକୁ ବନ୍ଧକ ଦେଇ ଧନିକଠାରୁ ଧନଗ୍ରହଣ କରିଥିବା ବ୍ୟକ୍ତି ଯଦି ଥରେ ପଳାଇଯାଏ, ତେବେ ସେ ପୁନର୍ବାର ଧନିକପାଖକୁ ନଯାଇ ତାର ଋଣ ପରିଶୋଧ କରି ଦେବାକୁ ହେବ । ଏହାପରି ଅନ୍ୟ କାହାଦ୍ୱାରା ବନ୍ଧକ ରଖାଯାଇଥିବା ବ୍ୟକ୍ତି ଧନିକ ନିକଟରୁ ଦୁଇଥର

ଦ୍ଧ୍ୱରନେ୍ୟନାହ୍ୱତକଃ । ସକୃଦୁଭୌ ପରବଷୟ୍ୟାଭିମୁଖୌ । (୫) ଷତ୍ତାପହ୍ୱାରଣୋ ବା ଦାସସ୍ୟାର୍ଯ୍ୟତ୍ତ୍ୱମପହରତୋଽର୍ଦ୍ଧଦଣ୍ଡଃ । ନଷ୍ଟଶତପ୍ରେତବ୍ୟସନନାମାଧାତା ମୂଲ୍ୟଂ ଭଜେତ । (୬) ପ୍ରେତ-ବଣ୍ମୂତ୍ରୋଚ୍ଛିଷ୍ଟଗ୍ରାହଣମାହ୍ୱତସ୍ୟ ନଗ୍ନସ୍ନାପନଂ ଦଣ୍ଡପ୍ରେଷଣ ମତକ୍ରମଣଂ ଚ ସ୍ତ୍ରୀଣାଂ ମୂଲ୍ୟ ନାଶକରମ୍ । ଧାତ୍ରୀପରଚାରକାର୍ଦ୍ଧ-ସୀତକୋପଚାରକାଣାଂ ଚ ମୋକ୍ଷକରମ୍ । ସିଦ୍ଧମୁପଚାରକସ୍ୟାଭି-

---

ପଳାଇଗଲେ ଧନଗ୍ରହୀତା ଧନିକର ଋଣ ସଦ୍ୟ ପରିଶୋଧ କରିଦେବାକୁ ହେବ । ଉପରୋକ୍ତ ଦୁଇପ୍ରକାର ବନ୍ଧକ ରହିଥିବା ବ୍ୟକ୍ତି ଯଦି ବିଦେଶକୁ ପଳାଇଯିବାକୁ ଚେଷ୍ଟା କରିବା ଜଣାଯାଏ, ତେବେ ମଧ୍ୟ ସେମାନଙ୍କୁ ବନ୍ଧକ ରଖି ନେଇଥିବା ଋଣ ପରିଶୋଧ କରିଦେବାକୁ ହେବ । କିନ୍ତୁ ଉପରୋକ୍ତ ସମସ୍ତ ଋଣ ପରିଶୋଧ ନକରିପାରିଲେ ଉକ୍ତ ବ୍ୟକ୍ତିମାନେ ଧନିକ ନିକଟରେ ଚିରଦାସ ହୋଇ ରହିବାକୁ ବାଧ୍ୟ ହେବେ । (୫) ସ୍ୱାମୀଙ୍କର ଧନ ଅପହରଣ କରିବା ଗର୍ଭଦାସକୁ ଅର୍ଯ୍ୟବ୍ୟକ୍ତିଙ୍କ ଧନ ଅପହରଣ କରିବା ବ୍ୟକ୍ତିକୁ ଦଆଯିବା ଦଣ୍ଡର ଅର୍ଦ୍ଧଦଣ୍ଡ ଦେବାକୁ ହେବ । ମାତ୍ର ବନ୍ଧକ ରଖିବା ବ୍ୟକ୍ତିର ଦୋଷରୁ କୌଣସି ବନ୍ଧକ ରହିବା ବ୍ୟକ୍ତି ଯଦି ଦେଶାନ୍ତରଗତ, ମୃତ ବା ମଦ୍ୟଦ୍ୟୂତାଦି ବ୍ୟସନାସକ୍ତ ହୁଏ, ତେବେ ବନ୍ଧକ ଦେବା ବ୍ୟକ୍ତି ଏମାନଙ୍କର ମୂଲ୍ୟ ବନ୍ଧକ ରଖିଥିବା ବ୍ୟକ୍ତିଙ୍କଠାରୁ ପାଇବାକୁ ଅର୍ହ ହେବେ । (୬) ବନ୍ଧକ ରଖିବା ବ୍ୟକ୍ତି ଯଦି ବନ୍ଧକ ରଖାଯାଇଥିବା ବ୍ୟକ୍ତିଦ୍ୱାରା ମୁର୍ଦ୍ଦାର, ବିଷ୍ଠା, ମୂତ୍ର ଓ ଉଚ୍ଛିଷ୍ଟ ବାହାର କରାନ୍ତି, ବନ୍ଧକ ରଖାଯାଇଥିବା ସ୍ତ୍ରୀଦ୍ୱାରା ନଗ୍ନପୁରୁଷଙ୍କୁ ସ୍ନାନ କରାନ୍ତି ବା ତାହାକୁ ଦଣ୍ଡଦ୍ୱାରା ପ୍ରହାର କରନ୍ତି ଏବଂ ତାକୁ ବଳାତ୍କାରରେ ଉପଭୋଗ କରନ୍ତି, ତେବେ ସେ ଏମାନଙ୍କୁ ବନ୍ଧକ ରଖି ଦେଇଥିବା ଧନ ହରାଇ ବସିବେ । ଧାଈ, ସେବିକା, କୃଷକସ୍ତ୍ରୀ ଓ ଉପଚାରିକା ଅର୍ଥାତ୍ ଶେଯ ବିଛାଇବା, ଅଳଟ ପକାଇବା ଇତ୍ୟାଦି କାର୍ଯ୍ୟ କରିବା ସ୍ତ୍ରୀମାନଙ୍କଦ୍ୱାରା ଉପରୋକ୍ତ କାର୍ଯ୍ୟ କରାଇଲେ ସେମାନଙ୍କୁ ଦାସତ୍ୱ ବନ୍ଧନରୁ ମୁକ୍ତ କରିଦେବାକୁ ବାଧ୍ୟ ହେବେ । (ଏମାନଙ୍କ ପାଇଁ ଯେଉଁ ବନ୍ଧକ ଧନ ଦେଇଥିବେ ତାହା ମଧ୍ୟ ପାଇବେ ନାହିଁ) । ଉପଚାରକାର ସ୍ୱାମୀ (ଉପଚାରକ) ମଧ୍ୟ ସେବା କରିବା ସମୟ ଶେଷ ନହେଉଣୁ ଉପରୋକ୍ତ

ପ୍ରକାଟସ୍ୟ ଅପକ୍ରମଣମ୍ । (୭) ଧାତ୍ରୀମାହୃତକାଂ ବା କାମାଂ ସ୍ୱବଶାମଧିଗଚ୍ଛତଃ ପୂର୍ବଃ ସାହସଦଣ୍ଡଃ, ପରବଶାଂ ମଧ୍ୟମଃ । କନ୍ୟାମାହୃତକାଂ ବା ସ୍ୱୟମନ୍ୟେନ ବା ଦୂଷୟତଃ ମୂଲ୍ୟନାଶଃ ଶୁଳ୍କଂ ତଦ୍ଦ୍ୱିଗୁଣଶ୍ଚ ଦଣ୍ଡଃ । (୮) ଆତ୍ମବିକ୍ରୟିଣଃ ପ୍ରଜାମାର୍ଯ୍ୟାଂ ବିଦ୍ୟାତ୍ । ଆତ୍ମାଧିଗତଂ ସ୍ୱାମିକର୍ମାବିରୁଦ୍ଧଂ ଲଭେତ, ପିତ୍ର୍ୟଂ ଚ ଦାୟମ୍ । ମୂଲ୍ୟେନ ଚାର୍ଯ୍ୟତ୍ୱଂ ଗଚ୍ଛେତ୍ । ତେନୋଦରଦାସାହୃତକୌ ବ୍ୟାଖ୍ୟାତୌ । (୯) ପ୍ରକ୍ଷେପାନୁରୂପଶ୍ଚାସ୍ୟ ନିଷ୍କ୍ରୟଃ ।

---

ଘଟଣା ଘଟିଲେ ବନ୍ଧକ ରଖିବା ବ୍ୟକ୍ତିଙ୍କୁ ଗ୍ରଚ୍ଛିତ୍ ଗ୍ରୁଲ୍‌ଯିବ । (୭) ଭର୍ତ୍ତାର ଅଧୀନରେ ନଥିବା କୌଣସି ଧାତ୍ରୀ (ଧାଈ) ଯେଉଁ ବ୍ୟକ୍ତିଙ୍କ ଗୃହରେ ବନ୍ଧାରହି ଧାତ୍ରୀକାମ କରୁଥିବ, ସେହି ଗୃହସ୍ୱାମୀ ଯଦି ତାକୁ ବଳାତ୍କାରରେ ସମ୍ଭୋଗ କରନ୍ତି, ତେବେ ସେ ପ୍ରଥମସାହସଦଣ୍ଡରେ ଦଣ୍ଡିତ ହେବେ, ଧାତ୍ରୀ ଯଦି ଭର୍ତ୍ତାର ଅଧୀନା ହୋଇଥାଏ, ତେବେ ତା'ପ୍ରତି ଏପରି ଅସଦ୍ ବ୍ୟବହାର କଲେ ମଧ୍ୟମସାହସଦଣ୍ଡରେ ଦଣ୍ଡିତ ହେବେ । ବନ୍ଧକଥିବା କନ୍ୟାପ୍ରତି ବନ୍ଧକ ରଖିବା ବ୍ୟକ୍ତି ନିଜେ ଉପରୋକ୍ତ ପ୍ରକାରେ ଅସଦ୍ ବ୍ୟବହାର କଲେ ବା ଅନ୍ୟ କୌଣସି ବ୍ୟକ୍ତିଦ୍ୱାରା କରାଇଲେ ସେ କନ୍ୟାକୁ ବନ୍ଧାରଖି ଦେଇଥିବା ଧନ ହରାଇବା ସଙ୍ଗେ ସଙ୍ଗେ ସେତିକି ଧନ କନ୍ୟାକୁ ଶୁଳ୍କ ସ୍ୱରୂପ ଦେଇ ରାଜାଙ୍କୁ ଏହାର ଦୁଇଗୁଣ ଧନ ଜରିମାନା ସ୍ୱରୂପ ଦେବାକୁ ବାଧ୍ୟ ହେବେ । (୮) ଆତ୍ମବିକ୍ରୟ କରିଥିବା ଭୃତ୍ୟର ଆତ୍ମବିକ୍ରୟ କରିବା ପୂର୍ବରୁ ଜାତ ହୋଇଥିବା ସନ୍ତାନମାନେ ଆର୍ଯ୍ୟଭାବେ (ସ୍ୱାଧୀନଭାବେ) ପରିଗତ ହେବେ । ଏହି ଆତ୍ମବିକ୍ରୟୀ ଭୃତ୍ୟ ସ୍ୱାମିଙ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟ ଶେଷକଲାପରେ ବଳକା ସମୟରେ ଅନ୍ୟକାମ କରି ରୋଜଗାର କରିବା ଧନ ଏବଂ ତାର ପିତୃକୁଳରୁ ମିଳିବା ଦାୟଧନର ଅଧିକାରୀ ହୋଇପାରିବ । ଇଚ୍ଛାକଲେ ଏହି ଆତ୍ମବିକ୍ରୟୀ ଭୃତ୍ୟ ସ୍ୱାମିଙ୍କୁ ତାଙ୍କର ଧନ ଓ୍ୱାପସ୍ କରି ପୁନର୍ବାର ଆର୍ଯ୍ୟ ହୋଇପାରିବ ଅର୍ଥାତ୍ ସ୍ୱାଧୀନ ହୋଇପାରିବ । ଉଦରଦାସ ଓ ବନ୍ଧାରହିବା ଦାସମାନେ ମଧ୍ୟ ଏହି ପ୍ରଥା ଅନୁସରଣ କରିପାରିବେ । (୯) ଆତ୍ମବିକ୍ରୟ କରିଥିବା ବ୍ୟକ୍ତି ବା ବନ୍ଧାରହିଥିବା ବ୍ୟକ୍ତି, ରହିବା ସମୟରେ ଯେଉଁ ସର୍ତ୍ତରେ ରହିଥିଲେ ତଦନୁସାରେ

ଦଣ୍ଡପ୍ରଣିତଃ କର୍ମଣା ଦଣ୍ଡମୁପନୟେତ୍ । ଆର୍ଯ୍ୟପ୍ରାଣୋ ଧ୍ୱଜାହୃତଃ କର୍ମକାଳାନୁରୂପେଣ ମୂଲ୍ୟାର୍ଦ୍ଧେନ ବା ବିମୁଚ୍ୟେତ ।(୧୦) ଗୃହଜାତ ଦାୟାଗତଲବ୍ଧକ୍ରୀତାନାମନ୍ୟତମଂ ଦାସମୂନାଷ୍ଟବର୍ଷଂ ବିବନ୍ଧୁ-ମକାମଂ ନୀଚେ କର୍ମଣି ବିଦେଶେ ଦାସୀଂ ବା ସଗର୍ଭାମପ୍ରତି-ବିହିତଗର୍ଭଭର୍ମଣ୍ୟାଂ ବିକ୍ରୟାଧାନଂ ନୟତଃ ପୂର୍ବଃ ସାହସଦଣ୍ଡଃ, କ୍ରେତୃ ଶ୍ରୋତୃଣାଂ ଚ ।(୧୧) ଦାସମନୁରୂପେଣ ନିଷ୍କ୍ରୟେଣାର୍ଯ୍ୟ-ମକୁର୍ବତୋ ଦ୍ୱାଦଶପଣୋ ଦଣ୍ଡଃ । ସଂରୋଧଶ୍ଚାକାରଣାତ୍ । ଦାସଦ୍ରବ୍ୟସ୍ୟ ଜ୍ଞାତୟୋ ଦାୟାଦାଃ । ତେଷାମଭାବେ ସ୍ୱାମୀ । (୧୨) ସ୍ୱାମିନଃ ସ୍ୱସ୍ୟାଂ ଦାସ୍ୟାଂ ଜାତଂ ସମାତୃକଂ ଅଦାସଂ

---

ସ୍ୱାମିଙ୍କ ଧନାଦ୍ ପରିଶୋଧ କରି ମୁକ୍ତିଲାଭ କରିବେ । ସେହିପରି ଅର୍ଥଦଣ୍ଡରେ ଦଣ୍ଡିତ ହୋଇଥିବା ଅପରାଧୀ ଅର୍ଥଦାନରେ ଅସମର୍ଥ ହେଲେ ସେହି ଅର୍ଥର ସମାନ ହେବାଭଳି ପରିଶ୍ରମ କରି ଅର୍ଥଦଣ୍ଡରୁ ମୁକ୍ତିଲାଭ କରିବେ । ଯୁଦ୍ଧରେ ଧରାହୋଇ ଅଣାହୋଇଥିବା ଆର୍ଯ୍ୟ ବ୍ୟକ୍ତି ତାଙ୍କୁ ଧରି ଆଣିବା ପାଇଁ ଖର୍ଚ୍ଚହୋଇଥିବା ଧନର ଅର୍ଦ୍ଧାଂଶ ଦେଇ ମୁକ୍ତିଲାଭ କରିପାରିବେ ।(୧୦) ସ୍ୱଗୃହଜାତ, ଦାୟଭାଗରୁ ପ୍ରାପ୍ତ, କୌଣସି ସ୍ଥାନରୁ ଦୈବାତ୍ ପ୍ରାପ୍ତ ଓ କ୍ରୀତ, ଏମାନଙ୍କ ମଧ୍ୟରୁ ଯେ କୌଣସି ଆଠବର୍ଷରୁ କମ୍‌ବୟସ୍କ ଏବଂ ବନ୍ଧୁବିହୀନ (ଅରକ୍ଷ) ଦାସକୁ ତାର ଅନିଚ୍ଛାସତ୍ତ୍ୱେ ନୀଚକାର୍ଯ୍ୟରେ ନିଯୁକ୍ତ କରାଇବା ଏବଂ ଉକ୍ତ ଶିଶୁଦାସକୁ ଓ ଅବ୍ୟବସ୍ଥିତ ଦେହଶୁଶ୍ରୂଷା ଗର୍ଭିଣୀଦାସୀକୁ ବିକ୍ରୟ କରିବା ଓ ବନ୍ଧାଦେବା ସକାଶେ ଦେଶାନ୍ତରକୁ ନେଉଥିବା ବ୍ୟକ୍ତିଙ୍କୁ ଏବଂ ଏହାର କ୍ରେତା ଓ ଶ୍ରୋତାମାନଙ୍କୁ (ସାକ୍ଷୀ ବା ଜଲ୍ଲରମାନଙ୍କୁ) ମଧ୍ୟ ରାଜା ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବେ । (୧୧) ଯଦି କୌଣସି ଦାସ ନିଜର ଦେୟଧନ ପରିଶୋଧ କଲାପରେ ସ୍ୱାମୀ ତାଙ୍କୁ ମୁକ୍ତ ନକରନ୍ତି, ତେବେ ସେ ଦ୍ୱାଦଶପଣ (ବାରପଣ) ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଅକାରଣରେ କୌଣସି ଦାସକୁ ନିରୋଧ କଲେ ମଧ୍ୟ ଉକ୍ତ ଦଣ୍ଡରେ ଦଣ୍ଡିତ ହେବେ । ଦାସଧନର ଅଧିକାରୀ ତାର ଦାୟାଦ (ଭାଇ, ପୁତୁରା ପ୍ରଭୃତି) ଓ ଜ୍ଞାତୀକ ବନ୍ଧୁମାନେ ହୋଇପାରିବେ । ଏମାନଙ୍କ ଅଭାବରେ ଉକ୍ତ ଦାସର ସ୍ୱାମୀ ହିଁ ଅଧିକାରୀ ହେବେ । (୧୨)

ଶବଦ୍ୟାତ୍ । ଗୃହ୍ୟାଚେତ୍ କୁଟୁମ୍ବାର୍ଥଚିନ୍ତନୀ, ମାତା ଭ୍ରାତା ଭଗିନୀ ଚାସ୍ୟାଃ ଅଦାସାଃ ସ୍ୟୁଃ । (୧୩) ଦାସଂ ଦାସୀଂ ବା ନିଷ୍କ୍ରୀୟ ପୁନର୍ବିକ୍ରୟାଧାନଂ ନୟତୋ ଦ୍ୱାଦଶପଣୋ ଦଣ୍ଡଃ—ଅନ୍ୟତ୍ର ସ୍ୱୟଂ ବାଦିଭ୍ୟଃ । ଇତି ଦାସକଳ୍ପଃ । (୧୪) କର୍ମକରସ୍ୟ କର୍ମସମ୍ବନ୍ଧ-ମାସନ୍ନା ବିଦ୍ୟୁଃ । ଯଥାସମ୍ଭାଷିତଂ ବେତନଂ ଲଭେତ । କର୍ମ-କାଳାନୁରୂପମସମ୍ଭାଷିତବେତନମ୍ । କର୍ଷକଃ ଶସ୍ୟାନାଂ, ଗୋପାଳକଃ ସର୍ପିଷାଂ, ବୈଦେହକଃ ପଣ୍ୟାନାମାତ୍ମନା ବ୍ୟବହୃତାନାଂ ଦଶଭାଗମସଂଭାଷିତବେତନୋ ଲଭେତ ।

---

ସ୍ୱାମୀ ଯଦି ଦାସୀଠାରୁ ପୁତ୍ର ଜନ୍ମ କରନ୍ତି ତେବେ ସେହି ପୁତ୍ର ଦାସ ବୋଲି ପରିଗଣିତ ହେବ ନାହିଁ ଏବଂ ସେ ଦାସୀ ଦାସୀଭାବରୁ ମୁକ୍ତିପାଇବ । ଏହି ଦାସୀ ସ୍ୱାମୀଗୃହରେ ରହି ଯଦି ତାହାଙ୍କର କୁଟୁମ୍ବ ଓ ଅର୍ଥଚିନ୍ତାରେ ନିରତ ହୁଏ, ତେବେ ତାର ମାତା, ଭ୍ରାତା ଓ ଭଗିନୀ ପ୍ରଭୃତିଙ୍କୁ ମଧ୍ୟ ଦାସତ୍ୱରୁ ମୁକ୍ତ କରିଦେବାକୁ ହେବ । (୧୩) ଦାସ ଦାସୀଙ୍କୁ ବିକ୍ରୟ ବା ବନ୍ଧକରୁ ମୁକ୍ତକରାଇ ଆଣି ପୁଣି ସେମାନଙ୍କୁ ବିକା ବନ୍ଧା କରିବାକୁ ନେବା ବ୍ୟକ୍ତି ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । କିନ୍ତୁ ଏମାନେ ଯଦି ସ୍ୱେଚ୍ଛାକ୍ରମେ ଏପରି ପୁନର୍ବାର ବିକ୍ରୟ ବନ୍ଧକ ସକାଶେ ରାଜି ହୁଅନ୍ତି, ତେବେ ବିକ୍ରେତା ଓ ବନ୍ଧକଦାତା ଦଣ୍ଡିତ ହେବେ ନାହିଁ । ଏଠାରେ ଦାସକଳ୍ପ ଶେଷହେଲା । (୧୪) କୃଷକ ଗୋପାଳକାଦି କର୍ମକରମାନଙ୍କର କର୍ମସମ୍ପର୍କୀୟ ଅଭିଯୋଗକୁ ସେମାନଙ୍କ ପାଖେ ପାଖେ ରହି ଜାଣିବାକୁ ହେବ । କର୍ମକରମାନେ ଯଥାସମ୍ଭାଷିତ ବେତନ ଅର୍ଥାତ୍ ନିଶ୍ଚିତ ହୋଇଥିବା ଦରମା ପାଇବେ । ଯେଉଁ କର୍ମକରମାନଙ୍କ ବେତନ ନିଶ୍ଚିତ ହୋଇନଥାଏ ସେମାନେ କରିବା କାର୍ଯ୍ୟ ଓ ତାର ସମୟ ଅନୁସାରେ ମଜୁରି ସ୍ଥିର କରିବାକୁ ହେବ । ଏପରି କରିବାକୁ ହେଲେ କର୍ମକର ଯଦି କୃଷକ ହୋଇଥାଏ ତେବେ ତା'ଦ୍ୱାରା ଉତ୍ପନ୍ନ ହେବା ଶସ୍ୟର ଦଶଭାଗରୁ ଏକଭାଗ, ଗୋପାଳ ହୋଇଥିଲେ ତା'ଦ୍ୱାରା ଅଦାୟ ହେବା ଘୃତାଦିର ଦଶଭାଗରୁ ଏକଭାଗ ଏବଂ ବେପାରୀ ହୋଇଥିଲେ ତା'ଦ୍ୱାରା ଲାଭହୋଇଥିବା ଧନର ଦଶଭାଗରୁ ଏକଭାଗ ତାକୁ ବେତନ ସ୍ୱରୂପେ ଦେବାକୁ ହେବ । କିନ୍ତୁ ବେତନ ନିଶ୍ଚିତ ହୋଇ

**ସମ୍ଭାଷିତବେତନସ୍ତୁ ଯଥାସଂଭାଷିତମ୍ । (୧୫) କାରୁଶିଳ୍ପିକୁଶୀଲବ ଚିକିତ୍ସକବାଗ୍‌ଜୀବନପରିଚାରକାଦ୍ୟାଶାକାରିକବର୍ଗସ୍ତୁ ଯଥାନ୍ୟସ୍ତଦ୍ୱିଧଃ କୁର୍ଯାତ୍ । ଯଥା ବା କୁଶଳାଃ କଳ୍ପୟେୟୁଃ ତଥା ବେତନଂ ଲଭେତ । ସାକ୍ଷିପ୍ରତ୍ୟୟମେବ ସ୍ୟାତ୍ । ସାକ୍ଷିଣାମଭାବେ ଯତଃ କର୍ମ ତତୋଽନୁଯୁଂଜୀତ । (୧୬) ବେତନାଦାନେ ଦଶବନ୍ଧୋ ଦଣ୍ଡଃ, ଷଟ୍‌ପଣୋ ବା । ଅପବ୍ୟୟମାନେ ଦ୍ୱାଦଶପଣୋ ଦଣ୍ଡଃ ପଞ୍ଚବନ୍ଧୋ ବା । (୧୭) ନଦୀବେଗଜ୍ୱାଳାସ୍ତେନ ବ୍ୟାଳୋପରୁଦ୍ଧଃ ସର୍ବସ୍ୱପୁତ୍ରଦାରାତ୍ମଦାନେନାର୍ତ୍ତସ୍ତ୍ରାତାରମାହୂୟ**

---

ଯାଇଥିଲେ ଉତ୍ପନ୍ନ ପଦାର୍ଥର ଦଶମାଂଶରୁ ଊଣା ହେଉ ବା ଅଧିକ ହେଉ ଯାହା ନିଶ୍ଚିତ ତାହା ପାଇବାକୁ ଅର୍ହ ହେବେ । (୧୫) ଧନ ଆଶାରେ କାମକରିବାକୁ ଆସିଥିବା କାରୁ, ଶିଳ୍ପୀ, ନଟ, ଚିକିତ୍ସକ, ଗଳ୍ପସାଗର ଓ ପରିଚାରକ ପ୍ରଭୃତିଙ୍କ କାର୍ଯ୍ୟ ଓ ବେତନ ତତ୍କାର୍ଯ୍ୟ ଅପର ବ୍ୟକ୍ତିମାନେ ପାଉଥିବା ପରି ସ୍ଥିର କରିବାକୁ ହେବ କିମ୍ବା ଏମାନଙ୍କ ବିଦ୍ୟାବିଷୟ ଜାଣିଥିବା ବିଶେଷଜ୍ଞମାନେ ଯାହା ସ୍ଥିର କରିବେ ତଦନୁସାରେ ଦେଇ-ଦେବାକୁ ହେବ । ବେତନଦେବା ବିଷୟରେ ସନ୍ଦେହ ବା ବିବାଦ ଉପୁଜିଲେ ସାକ୍ଷୀମାନଙ୍କ ଦ୍ୱାରା ତାହା ସ୍ଥିର କରିବାକୁ ହେବ । ସାକ୍ଷୀ ଅଭାବରେ ଅନ୍ୟାସ୍ଥାନରୁ କୃତି ଶୁଦ୍ଧି ବେତନ ବିଷୟ ଜାଣିବାକୁ ହେବ । (୧୬) ସ୍ୱାମୀ ଯଦି କର୍ମକରକୁ ବେତନ ନଦଅନ୍ତି ତେବେ ରାଜା ତାଙ୍କୁ ନ୍ୟାଯ୍ୟ ବେତନର ଦଶଭାଗ କିମ୍ବା ଛ’ପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବେ ଏବଂ ବେତନ ନେଇ ନେଇନାହିଁ ବୋଲି ଭୁଣ୍ଡାଉଥିବା କର୍ମକରକୁ ବାରପଣ କିମ୍ବା ବେତନର ପାଞ୍ଚଭାଗ ଅର୍ଥଦଣ୍ଡରେ ଦଣ୍ଡିତ କରିବେ । (୧୭) ନଈବଢ଼ିରେ ଭାସିଯାଉଥିବା ବେଳେ, ନିଆଁରେ ପୋଡ଼ିଯାଉଥିବା ବେଳେ, ଚୋର ଘେରିଯାଉଥିବା ବେଳେ ଏବଂ ସିଂହବ୍ୟାଘ୍ରାଦି ହିଂସ୍ରଜନ୍ତୁଙ୍କଦ୍ୱାରା ଆକ୍ରାନ୍ତ ହୋଇଥିବା ବେଳେ "ଯେ ମତେ ରକ୍ଷା କରିବ ତାକୁ ପୁତ୍ର ସ୍ତ୍ରୀ ପ୍ରଭୃତି ସର୍ବସ୍ୱ ଦାନ କରିବି" ବୋଲି ଚିତ୍କାର କଲାବେଳେ ଯେଉଁ ବ୍ୟକ୍ତି ରକ୍ଷା କରିଥାଏ, ତାହାଙ୍କୁ ବିଜ୍ଞବ୍ୟକ୍ତିମାନେ କହିବା ପ୍ରକାରେ ବେତନ ଦେଇଦେବାକୁ ହେବ । ବିପତ୍ତିକାଳରେ ଆତୁର ହୋଇ ରକ୍ଷକଙ୍କୁ

ନସ୍ତୀର୍ଣଃ କୁଶଳପ୍ରବଷ୍ଟଂ ବେତନଂ ଦଦ୍ୟାତ୍ । ତେନ ସର୍ବ-ଭାର୍ତ୍ତଦାନାନୁଶାୟ୍ୟା ବ୍ୟାଖ୍ୟାତାଃ ।

(୧୮) ଲଭେତ ପୁଂଶ୍ଚଲୀ ଭୋଗଂ ସଂଗମସ୍ୟୋପଲିଙ୍ଗନାତ୍ ।
ଅତଯାଚ୍ଞା ତୁ ଜୀୟେତ ଦୌର୍ମତ୍ୟାବିନୟେନ ବା ॥

---

ଯାହା ଦେବାକୁ ପ୍ରତିଜ୍ଞା କରିଥିବ କିମ୍ବା ସେହି ସମୟରେ ରକ୍ଷକ ଯାହା ମାଗିଥିବେ ତାହା ଦେବାକୁ ଇଚ୍ଛା ନଥିଲେ ଏପରି ବିଜ୍ଞବ୍ୟକ୍ତିଙ୍କ ଦ୍ୱାରା ବେତନ ସ୍ଥିର କରିବାକୁ ହେବ । ଏହିପରି ସର୍ବପ୍ରକାର ଅସହାୟ ଅବସ୍ଥାରେ ସାହାଯ୍ୟ କରିଥିବା ବ୍ୟକ୍ତିମାନଙ୍କୁ ଦେବା ବେତନ ବିଷୟ ସ୍ଥିର କରିବାକୁ ହେବ । (୧୮) ଅସତୀସ୍ତ୍ରୀ (ବେଶ୍ୟା) ସଙ୍ଗମ ଚିହ୍ନ ଦ୍ୱାରା ସମ୍ଭୋଗ ପ୍ରମାଣିତ କରି ସମ୍ଭୋଗ କରିଥିବା ପୁରୁଷଠାରୁ ସମ୍ଭୋଗ ବେତନ ଲାଭ କରିବ । ଅତିମାତ୍ରାରେ ଭୋଗବେତନ ଦାବି କଲେ ବା ଦୁର୍ବୁଦ୍ଧିଭାବ ଓ ପୁରୁଷର କାମପ୍ରତିକୂଳାଚରଣ ପ୍ରକାଶ କଲେ ଏ ଅପରାଧ ପାଇଁ ସେ ଯଥାବିଧି ଦଣ୍ଡିତା ହେବାକୁ ବାଧ୍ୟ ହେବ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ତ୍ରୟୋଦଶୋଽଧ୍ୟାୟଃ । ଦାସକର୍ମକରକଳ୍ପୋ ଦାସକଳ୍ପଃ କର୍ମକରକଳ୍ପେ ସ୍ୱାମ୍ୟଧିକାରଃ—ଆଦିତଃ ସପ୍ତତିତମୋଽଧ୍ୟାୟଃ ।

# ଚତୁର୍ଦ୍ଦଶୋଽଧ୍ୟାୟଃ

## ଷଟ୍ଷଷ୍ଟିତମ ପ୍ରକରଣମ୍

## କର୍ମକରକଳ୍ପଃ—ସମ୍ଭୂୟସମୁତ୍ଥାନମ୍

**RULES REGARDING LABOURERS AND CO-OPERATIVE UNDERTAKING**

( ମାସିକ ଓ ବାର୍ଷିକ ବେତନ ନେଇ କାର୍ଯ୍ୟ କରିବା ବ୍ୟକ୍ତିଙ୍କ ବିଷୟ ଓ ସମୟ ପ୍ରଚେଷ୍ଟା ବିଷୟର ନିରୂପଣ )

**(୧) ଗୃହୀତ୍ୱା ବେତନଂ କର୍ମ ଅକୁର୍ବତୋ ଭୃତକସ୍ୟ ଦ୍ୱାଦଶ-ପଣୋ ଦଣ୍ଡଃ । ସଂରୋଧଶ୍ଚାକାରଣାତ୍ । (୨) ଅଶକ୍ତଃ କୁତ୍ସିତେ କର୍ମଣି ବ୍ୟାଧୌ ବ୍ୟସନେ ବା ଅନୁଶୟଂ ଲଭେତ, ପରେଣ ବା କାରୟିତୁମ୍ । ତସ୍ୟ ବ୍ୟୟକର୍ମଣା ଲଭେତ ଭର୍ତ୍ତା ବା କାରୟିତୁମ୍ । (୩) ନାନ୍ୟସ୍ତ୍ୱୟା କାରୟିତବ୍ୟୋ ମୟା ବା ନାନ୍ୟସ୍ୟ**

---

(୧) ବେତନ ନେଇ କାର୍ଯ୍ୟ ନକରିବା କର୍ମକର (ଭୃତ୍ୟ) ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ; ଅକାରଣରେ କାର୍ଯ୍ୟ ବନ୍ଦକଲେ ତାକୁ ବଳାତ୍କାରରେ ଅଟକାଇ ତା'ଦ୍ୱାରା କାର୍ଯ୍ୟ କରାଇବାକୁ ହେବ । (୨) ଭୃତ୍ୟ ଯେଉଁ କାର୍ଯ୍ୟ କରିବାପାଇଁ ବେତନ ନେଇଥାଏ, ସେ ଯଦି ସେହି କାର୍ଯ୍ୟ କରିବାକୁ ଅସମର୍ଥ ହୁଏ, ଏହି କାର୍ଯ୍ୟ ଯଦି ତା'ପକ୍ଷେ କୁତ୍ସିତ ବୋଲି ସେ ବିଚାର କରେ, କୌଣସି କଠିନ ବ୍ୟାଧିଗ୍ରସ୍ତ ହୋଇ ସ୍ୱାମିକାର୍ଯ୍ୟ କରିବାରେ ଅସମର୍ଥ ହୁଏ ବା ପୁତ୍ରକଳତ୍ରାଦି ବ୍ୟସନରେ ପ୍ରପୀଡ଼ିତ ହୋଇ ଉକ୍ତ କାର୍ଯ୍ୟ କରିନପାରେ, ତେବେ ସ୍ୱାମିକାର୍ଯ୍ୟ ନକଲେ ବା ଅନ୍ୟ ପ୍ରତିନିଧିଦ୍ୱାରା କରାଇଦେଲେ ଭୃତ୍ୟ ଦୋଷୀ ବୋଲି ବିବେଚିତ ହୁଏ ନାହିଁ । ସ୍ୱାମୀ ମଧ୍ୟ ଉକ୍ତ ଭୃତ୍ୟଠାରୁ ସେ ନେଇଥିବା ବେତନ ଅସୂଲ କରି ଅନ୍ୟଦ୍ୱାରା ଏହି କାର୍ଯ୍ୟ କରାଇଦେବେ । (୩) "ତୁମ୍ଭେ ମୋ'ଛଡ଼ା ଅନ୍ୟ କାହାଦ୍ୱାରା କାର୍ଯ୍ୟ କରାଇବ ନାହିଁ", "ତୋ'ଛଡ଼ା ଏକାର୍ଯ୍ୟ ମୁଁ ଅନ୍ୟଦ୍ୱାରା କରାଇବି ନାହିଁ" ବୋଲି ଭୃତ୍ୟ ଓ ସ୍ୱାମୀ ଉଭୟେ ଚୁକ୍ତିକରିଥିବା ସତ୍ତ୍ୱେ ଏବୁହିଙ୍କ

କର୍ତ୍ତବ୍ୟଂ ଇତ୍ୟବସେଧେ ଭର୍ତ୍ତୁରକାରୟତୋ ଭୃତକସ୍ୟାକୁର୍ବତୋ ବା ଦ୍ୱାଦଶପଣୋ ଦଣ୍ଡଃ । * କର୍ମନିଷ୍ଠାପନେ ଭର୍ତ୍ତୁରନ୍ୟତ୍ର ଗୃହୀତବେତନୋ ନାସକାମଃ କୁର୍ଯ୍ୟାତ୍ । (୪) ଉପସ୍ଥିତମକାରୟତଃ କୃତମେବ ବିଦ୍ୟାତ୍ ଇତ୍ୟାଚାର୍ଯ୍ୟାଃ । (୫) ନେତି କୌଟିଲ୍ୟଃ । କୃତସ୍ୟ ବେତନଂ, ନାକୃତସ୍ୟାସ୍ତି । ସ ଚେଦଲ୍ପମପି କାରୟିତ୍ୱା ନକାରୟେତ୍, କୃତମେବାସ୍ୟ ବିଦ୍ୟାତ୍ । ଦେଶକାଲାତିପାତନେନ କର୍ମଣାମନ୍ୟଥାକରଣେ ବା ନାସକାମଃ କୃତମନୁମନ୍ୟେତ । ସମ୍ଭାଷିତାଦଧିକକ୍ରିୟାୟାଂ ପ୍ରୟାସଂ ନ

ମଧ୍ୟରୁ ଯେଉଁ ବ୍ୟକ୍ତି ଚୁକ୍ତିଭଙ୍ଗ କରିବ ସେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । ଭୃତ୍ୟ, ସ୍ୱାମୀଠାରୁ ବେତନ ଗ୍ରହଣ କରି ତାଙ୍କର କାର୍ଯ୍ୟ ସମାପ୍ତ ନହେଉଣୁ ତାଙ୍କର ଅନିଚ୍ଛାସତ୍ତ୍ୱେ ଅନ୍ୟତ୍ର ଯାଇ କାର୍ଯ୍ୟ କରିବାକୁ ହେବ ନାହିଁ । (୪) ଭୃତ୍ୟ କାର୍ଯ୍ୟ କରିବାପାଇଁ ଉପସ୍ଥିତ ହେବା ସତ୍ତ୍ୱେ କୌଣସି କାରଣ ବଶତଃ ସ୍ୱାମୀ ତା'ଦ୍ୱାରା କାର୍ଯ୍ୟ ନକରାଇଲେ ମଧ୍ୟ କରାଇବାପରି ବିବେଚିତ ହେବ ଏବଂ ଏଥିପାଇଁ ସେ ନେଇଥିବା ବେତନ ତା'ର ହୋଇଯିବ ବୋଲି ଆଚାର୍ଯ୍ୟମାନେ ମତ ଦେଇଛନ୍ତି । (୫) ମାତ୍ର କୌଟିଲ୍ୟ ଉପରୋକ୍ତ ସିଦ୍ଧାନ୍ତ ଖଣ୍ଡନ କରି କହନ୍ତି, କରାଯାଇଥିବା କାର୍ଯ୍ୟ ପାଇଁ ବେତନ ଦିଆଯିବ ସିନା ନକରାଯାଇଥିବା କାର୍ଯ୍ୟ ପାଇଁ ବେତନ ଦିଆଯିବ ନାହିଁ । ସ୍ୱାମୀ ଯଦି ଭୃତ୍ୟଦ୍ୱାରା ଅଳ୍ପ କାର୍ଯ୍ୟକରାଇ ବନ୍ଦ କରିଦିଅନ୍ତି, ତେବେ ତାହା ପୂରା କାମ ହେଲା ବୋଲି ଧରାଯିବ । କିନ୍ତୁ ଭୃତ୍ୟ ଯଦି ଅକାଳରେ ଅସ୍ଥାନରେ ସ୍ୱାମୀଙ୍କ ଅନିଚ୍ଛାସତ୍ତ୍ୱେ କାର୍ଯ୍ୟକରେ କିମ୍ବା ଗୋଟିଏ କାର୍ଯ୍ୟପାଇଁ ଆଦେଶ ଦେଇଥିବା ସତ୍ତ୍ୱେ ଅନ୍ୟକାର୍ଯ୍ୟ କରେ, ତେବେ ସେ କାର୍ଯ୍ୟ କରାହେଲା ବୋଲି ଧରାଯିବ ନାହିଁ । ଅତଏବ ସେଥିପାଇଁ ସେ ବେତନ ପାଇବ ନାହିଁ । ନିର୍ଦ୍ଦିଷ୍ଟ କାର୍ଯ୍ୟରୁ କିଛି ଅଧିକ କାର୍ଯ୍ୟ କଲେ ସେଥିପାଇଁ ତାକୁ କିଛି ଅଧିକ ବେତନ ଦେବାକୁ ହେବ ସିନା, ତାର ସେହି

* କର୍ମନିଷ୍ଠାପନେ ଇତି ଅପପାଠଃ । କର୍ମାନିଷ୍ଠାପନେ ଇତି ଯୁକ୍ତଃ ପାଠଃ ।
ଇତି ଗଣପତି ଶାସ୍ତ୍ରୀ ।

ମୋଘଂ କୁର୍ଯ୍ୟାତ୍ । (୬) ତେନ ସଂଘଭୃତା ବ୍ୟାଖ୍ୟାତାଃ । ତେଷାମାଧିଃ ସପ୍ତରାତ୍ରମାସୀତ୍ । ତତୋଽନ୍ୟମୁପସ୍ଥାପୟେତ୍ । କର୍ମନିଷ୍ପାକଂ ଚ । ନଚାନବେଦ୍ୟ ଭର୍ତୁଃ ସଂଘଃ କଂଚିତ୍ ପରିହରେଦ୍, ଉପନୟେଦ୍ ବା । ତସ୍ୟାତିକ୍ରମେ ଚତୁର୍ବିଂଶତିପଣୋ ଦଣ୍ଡଃ । ସଂଘେନ ପରିହୃତସ୍ୟାର୍ଦ୍ଧଦଣ୍ଡଃ । ଇତି ଭୃତକାଧିକାରଃ । (୭) ସଙ୍ଘଭୃତାଃ ସମ୍ଭୂୟସମୁତ୍ଥାତାରୋ ବା ଯଥାସମ୍ଭାଷିତଂ ବେତନଂ ସମଂ ବା ବିଭଜେରନ୍ । (୮) କର୍ଷକବୈଦେହକା

---

ଅଧିକ ପରିଶ୍ରମକୁ ବିଫଳ କରିବାକୁ ହେବ ନାହିଁ । (୬) ଉକ୍ତପ୍ରକାରେ ସଂଘବଦ୍ଧଭାବେ ବେତନ ଗ୍ରହଣ କରି ପରର କାର୍ଯ୍ୟ କରିବା କର୍ମକରମାନଙ୍କ ବିଷୟ ବୁଝିବାକୁ ହେବ । କର୍ମକରସଂଘ ଯେଉଁ କାର୍ଯ୍ୟ ଯେତେ ଦିନରେ ପୂର୍ଣ୍ଣ କରିବାକୁ ଠିକା ନେଇଥିବେ ସେତିକ ଦିନମଧ୍ୟରେ ତାହା ପୂର୍ଣ୍ଣ କରିନପାରିଲେ ତାଙ୍କୁ ଆଉ ଅଧିକା ସାତ ଦିନ ସମୟ ଦେବାକୁ ହେବ; ତଥାପି ଯଦି କାର୍ଯ୍ୟ ପୂର୍ଣ୍ଣ ହୋଇନପାରେ ତେବେ ଅନ୍ୟକର୍ମକର ସଂଘ (ଭୃତକସଂଘ) ଦ୍ୱାରା ଉକ୍ତ କାର୍ଯ୍ୟ କରାଇବାକୁ ହେବ । ନବାଗତ ଭୃତକସଂଘ ପୂର୍ବ ସଂଘକୃତ କାର୍ଯ୍ୟର ପରିଣାମ ଅବଗତ ହୋଇ କାର୍ଯ୍ୟ କରିବେ । ସ୍ୱାମିଙ୍କ ବିନାନୁମତିରେ କର୍ମକରସଂଘ, ସଂଘର ଅବୟବସ୍ୱରୂପ କୌଣସି ପଦାର୍ଥକୁ ଅର୍ଥାତ୍ ସଂଘମଧ୍ୟରୁ କୌଣସି ବ୍ୟକ୍ତି ବା କୋଡ଼ି କୁଦାଳ ପ୍ରଭୃତି ଉପକରଣକୁ ପରିତ୍ୟାଗ କରିପାରିବେ ନାହିଁ କିମ୍ବା ମିଶାଇପାରିବେ ନାହିଁ । ଏହି ନିୟମ ଅତିକ୍ରମ କଲେ ଚବିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ଉକ୍ତ ସଂଘଭୁକ୍ତ କୌଣସି ବ୍ୟକ୍ତି ସଂଘରୁ ବିତାଡ଼ିତ ହେଲେ ମଧ୍ୟ ସ୍ୱାମିଙ୍କୁ ନ ଜଣାଇ ଚାଲିଗଲେ ସେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । ଏଠାରେ ଭୃତକମାନଙ୍କର ବିଷୟ ଶେଷହେଲା । (୭) କର୍ମକରସଂଘ ବା ବଣିକସଂଘ ଯେଉଁମାନେ କି ସମବାୟ ପ୍ରଚେଷ୍ଟାଦ୍ୱାରା ଧନୋପାର୍ଜନ କରନ୍ତି, ସେମାନେ ଉପାର୍ଜନ କରିଥିବା ଧନରୁ ଯେ ଯେତିକ ନେବାପାଇଁ ଆଗରୁ ନିଷ୍ପତ୍ତି ହୋଇଥିବ ସେତିକ ନେବେ । ସେପରି କିଛି ନିଷ୍ପତ୍ତି ହୋଇନଥିଲେ ଏ ଧନ ସମସ୍ତେ ସମଭାଗରେ ବଣ୍ଟନ କରି ନେବାକୁ ହେବ । (୮) କୃଷକସଂଘ ଓ ବଣିକସଂଘ ଯଥାକ୍ରମେ ଶସ୍ୟ ଓ ପଣ୍ୟର ଆରମ୍ଭ ଓ ଶେଷ ମଧ୍ୟକାଳରେ

ବା ଶସ୍ୟପଣ୍ୟାରମ୍ଭପର୍ଯ୍ୟବସାନାନ୍ତରେ ସନ୍ନସ୍ୟ ଯଥାକୃତସ୍ୟ କର୍ମଣଃ ପ୍ରତ୍ୟଂଶଂ ଦଦ୍ୟୁଃ । ପୁରୁଷୋପସ୍ଥାନେ ସମଗ୍ରମଂଶଂ ଦଦ୍ୟୁଃ । ସଂସିଦ୍ଧେତ୍ୱୁଦ୍ଧୃତପଣ୍ୟେ ସନ୍ନସ୍ୟ ତଦାନୀମେବ ପ୍ରତ୍ୟଂଶଂ ଦଦ୍ୟୁଃ । ସାମାନ୍ୟା ହି ପଥି ସିଦ୍ଧିଶ୍ଚାସିଦ୍ଧିଶ୍ଚ । (୯) ପ୍ରକ୍ରାନ୍ତେ ତୁ କର୍ମଣି ସ୍ୱସ୍ଥସ୍ୟାପକ୍ରାମତୋ ଦ୍ୱାଦଶପଣୋ ଦଣ୍ଡଃ । ନ ଚ ପ୍ରାକାମ୍ୟମପକ୍ରମଣେ । (୧୦) ଚୋରଂ ତ୍ୱଭୟପୂର୍ବଂ

---

ଯଦି ସଙ୍ଘମଧ୍ୟରୁ ଜଣେ ବ୍ୟାଧିଗ୍ରସ୍ତ ହୁଏ, ତେବେ ସେ ଯେତିକି କାର୍ଯ୍ୟ କରିଥିବ ସେତିକି ପରିମାଣର ଶସ୍ୟ ବା ଲଭ୍ୟାଂଶ ପାଇପାରିବ । କିନ୍ତୁ ଏହି ବ୍ୟାଧିଗ୍ରସ୍ତ ବ୍ୟକ୍ତି ଯଦି ତା ସ୍ଥାନରେ କାର୍ଯ୍ୟ କରିବା ପାଇଁ ଅନ୍ୟବ୍ୟକ୍ତିଙ୍କୁ ପ୍ରତିନିଧିରୂପେ ନିଯୁକ୍ତ କରେ, ତେବେ ସଙ୍ଘ ଏହି ବ୍ୟାଧିଗ୍ରସ୍ତ ବ୍ୟକ୍ତିକୁ ତାର ପୂର୍ଣ୍ଣ ଅଂଶ ଦେଇଦେବେ । ଅଦାୟ ହେବା ଶସ୍ୟ ବା ପ୍ରସ୍ତୁତ ହେବା ପଣ୍ୟପଦାର୍ଥ ବିଦେଶକୁ ବିକ୍ରୟପାଇଁ ଗଲାବେଳେ ସଙ୍ଘମଧ୍ୟରୁ ଯଦି କୌଣସି ବ୍ୟକ୍ତି ରୋଗାକ୍ରାନ୍ତ ହୁଏ ତେବେ ସେହି ସମୟରେ ତାର ଶସ୍ୟଭାଗ ବା ପଣ୍ୟଭାଗ ତାକୁ ଦେଇଦେବାକୁ ହେବ । କାରଣ, ବିକ୍ରୟ କରିବାକୁ ଗଲାବେଳେ ଲାଭ କ୍ଷତି ଭାଗୁଡ଼ି ଚୋର ଇତ୍ୟାଦି ଥିବାଯୋଗୁଁ ବ୍ୟାଧିଗ୍ରସ୍ତ ବ୍ୟକ୍ତିକୁ ତାର ଅଂଶ ତାକୁ ଦେଇଦେବା ଉଚିତ । (୯) ସମବାୟ ସୂତ୍ରରେ କୌଣସି କାର୍ଯ୍ୟ ଆରମ୍ଭ କରିଦେଇ ଦଳଭୁକ୍ତ କୌଣସି ସୁସ୍ଥ ବ୍ୟକ୍ତି ଯଦି ଦଳତ୍ୟାଗ କରି ଚାଲିଯାଏ, ତେବେ ସେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । ଅର୍ଥଦଣ୍ଡକୁ ସ୍ୱୀକାର କରି ପଳାଇଯିବାକୁ ଇଚ୍ଛାକଲେ ମଧ୍ୟ ତାକୁ ସେପରି ସୁବିଧା ଦିଆଯାଇ ପାରିବ ନାହିଁ । ଅତଏବ ଦଣ୍ଡପାଇବା ପରେ ମଧ୍ୟ ସେ, ସଙ୍ଘ ମଧ୍ୟରେ ରହି ଶେଷପର୍ଯ୍ୟନ୍ତ କାର୍ଯ୍ୟ କରିବାକୁ ବାଧ୍ୟ ହେବ । (୧୦) କୌଣସି ଏକ ଚୋରକୁ ତାର ଭାଗ ତାକୁ ଦେବାପାଇଁ ପୂର୍ବରୁ ଚୁକ୍ତିକରି ଓ ଧରାପଡ଼ିଲେ ମଧ୍ୟ ମୁକ୍ତିଦେବାର ଅଭୟବାଣୀ ଶୁଣାଇ ତାହାଦ୍ୱାରା ଅନ୍ୟ ଚୋର ଅର୍ଥାତ୍ ତା ସହଚରମାନଙ୍କୁ ଧରାଇ ଗିରଫଦାର କରିବେ ଏବଂ ଉକ୍ତ ଚୋରକୁ ପ୍ରତିଶ୍ରୁତ ଅଭୟ ଓ ପ୍ରତ୍ୟଂଶ ଦେଇ ଛାଡ଼ିଦେବେ । କିନ୍ତୁ ଏହି ଚୋର ପ୍ରଥମେ ଅଭୟ ପାଇଥିବା ସାହସରେ ପୁନର୍ବାର ଯଦି ଚୋରିକରେ କିମ୍ବା ଅନ୍ୟଦେଶକୁ ଯାଇ ଚୋରିକରେ, ତେବେ ତାକୁ

କର୍ମଣଃ ପ୍ରତ୍ୟଂଶେନ ଗ୍ରାହୟେଦ୍, ଦଦ୍ୟାତ୍ ପ୍ରତ୍ୟଂଶମନ୍ୟଂ ଚ । ପୂନସ୍ତ୍ରେୟେ ପ୍ରବାସନମନ୍ୟତ୍ର ଗମନେ ଚ । ମହାପଶ୍ୱେଧେ ତୁ ଦୂଷ୍ୟବଦାଚରେତ୍ । (୧୧) ଯାଜକାଃ ସ୍ୱପ୍ରଚରଦ୍ରବ୍ୟବର୍ଜଂ ଯଥାସମ୍ଭାଷିତଂ ବେତନଂ ସମଂ ବିଭଜେରନ୍ । (୧୨) ଅଗ୍ନିଷ୍ଟୋମାଦିଷୁ ଚ କ୍ରତୁଷୁ ଦୀକ୍ଷଣାଦୂର୍ଦ୍ଧ୍ୱଂ ଯାଜକଃ ସନ୍ନଃ ପଞ୍ଚମମଂଶଂ ଲଭେତ । ସୋମବିକ୍ରୟାଦୂର୍ଦ୍ଧ୍ୱଂ ଚତୁର୍ଥମଂଶମ୍ । ମଧ୍ୟମୋପସଦଃ ପ୍ରବର୍ଗ୍ୟୋଦ୍ୱାସନାଦୂର୍ଦ୍ଧ୍ୱଂ ତୃତୀୟମଂଶମ୍ । ମଧ୍ୟାଦୂର୍ଦ୍ଧ୍ୱମର୍ଦ୍ଧମଂଶମ୍ । ସୁତ୍ୟେ ପ୍ରାତସ୍ସବନାଦୂର୍ଦ୍ଧ୍ୱଂ ପାଦୋନମଂଶମ୍ । ମାଧ୍ୟଂଦିନାତ୍ ସବନାଦୂର୍ଦ୍ଧ୍ୱଂ ସମଗ୍ରମଂଶଂ ଲଭେତ । ନୀତା ହି

---

ଯାବଜ୍ଜୀବନ ଦ୍ୱୀପାନ୍ତର କରି ଦେବାକୁ ହେବ । ଚୋର, ହତ୍ୟା ଇତ୍ୟାଦି କଲେ * ଦୂଷ୍ୟ ଅର୍ଥାତ୍ ରାଜ୍ୟୋପଘାତକ ଜଘନ୍ୟ ବ୍ୟକ୍ତିମାନଙ୍କୁ ହତ୍ୟା କଲପରି ଗୋପନରେ ହତ୍ୟା କରାଇଦେବେ । (୧୧) ଯାଜ୍ଞିକ ପୁରୋହିତମାନେ ଯଜ୍ଞାଦିରେ ନିଯୁକ୍ତ ହୋଇ ନିଜନିଜର ଅଗ୍ନ୍ୟର୍ଥ, ବ୍ରହ୍ମା, ସଦସ୍ୟ, ପ୍ରସ୍ତରକ ପ୍ରଭୃତି ବରଣରୁ ମିଳିବା ବ୍ୟକ୍ତିଗତ ପଦାର୍ଥ ଓ ଦକ୍ଷିଣା ବ୍ୟତୀତ ଉକ୍ତ ଯଜ୍ଞାଦିରୁ ମିଳିବା ଦକ୍ଷିଣାସହ ଅନ୍ୟ ସମସ୍ତ ଉପକରଣ ସମାନଭାଗରେ ବଣ୍ଟନ କରି ନେବେ । (୧୨) ଯାଜକ—ଅଗ୍ନିଷ୍ଟୋମାଦି ଯାଗମାନଙ୍କରେ ଦୀକ୍ଷିତ ହେବା ପରେ ବ୍ୟାଧିଗ୍ରସ୍ତ ହୋଇ ଯଜ୍ଞକାର୍ଯ୍ୟ କରିନପାରିଲେ ପ୍ରାପ୍ୟ ଦକ୍ଷିଣାର ପାଞ୍ଚଭାଗରୁ ଏକଭାଗ, ସୋମବିକ୍ରୟ ପରେ ବ୍ୟାଧିଗ୍ରସ୍ତ ହେଲେ ପ୍ରାପ୍ୟ ଦକ୍ଷିଣାର ଚାରିଭାଗରୁ ଏକଭାଗ, ମଧ୍ୟମୋପସଦ ଓ ପ୍ରବର୍ଗ୍ୟୋଦ୍ୱାସନ ପରେ ବ୍ୟାଧିଗ୍ରସ୍ତ ହେଲେ ପ୍ରାପ୍ୟ ଦକ୍ଷିଣାର ତିନିଭାଗରୁ ଏକଭାଗ, ମଧ୍ୟୋପସଦନ କର୍ମ ପରେ ବ୍ୟାଧିଗ୍ରସ୍ତ ହେଲେ ପ୍ରାପ୍ୟ ଦକ୍ଷିଣାର ଦୁଇଭାଗରୁ ଏକଭାଗ, ସୁତ୍ୟ ଅର୍ଥାତ୍ ଯଜ୍ଞସ୍ନାନ ଦିବସରେ ପ୍ରାତସ୍ସବନ ପରେ ବ୍ୟାଧିଗ୍ରସ୍ତ ହେଲେ ପ୍ରାପ୍ୟ ଦକ୍ଷିଣାର ଚାରିଭାଗରୁ ତିନିଭାଗ ଏବଂ ମାଧ୍ୟନ୍ଦିନସବନ ପରେ ବ୍ୟାଧିଗ୍ରସ୍ତ ହେଲେ ସମଗ୍ର ଦକ୍ଷିଣା ପାଇବେ । ମାଧ୍ୟନ୍ଦିନ ସବନ କର୍ମ

---

* ରାଜ୍ୟୋପଘାତଂ କୁର୍ବାଣା ଯେ ପାପାସ୍ତୁରବଲ୍ଲଭାଃ ।
ଏକୈକଶଃ ସଂହତା ବା ଦୂଷ୍ୟାଂସ୍ତାନ୍ ପରିଚକ୍ଷ୍ୟତେ ॥

ଦକ୍ଷିଣା ଭବନ୍ତି । ବୃହସ୍ପତିସବନବର୍ଜଂ ପ୍ରତିସବନଂ ହି ଦକ୍ଷିଣା ଦୀୟନ୍ତେ । ତେନାହର୍ଗଣଦକ୍ଷିଣା ବ୍ୟାଖ୍ୟାତାଃ । (୧୩) ସନ୍ନାନା ମାଦଶାହୋରାତ୍ରାତଚ୍ଛେଷଭୃତାଃ କର୍ମକୁର୍ଯ୍ୟୁଃ । ଅନ୍ୟେ ବା ସ୍ୱପ୍ରତ୍ୟୟାଃ । (୧୪) କର୍ମଣ୍ୟସମାପ୍ତେ ତୁ ଯଜମାନଃ ସୀଦେତ୍, ଋତ୍ୱିଜଃ କର୍ମ ସମାପଯ୍ୟ ଦକ୍ଷିଣାଂ ହରେୟୁଃ । (୧୫) ଅସମାପ୍ତେ ତୁ କର୍ମଣି ଯାଜ୍ୟଂ ଯାଜକଂ ବା ତ୍ୟଜତଃ ପୂର୍ବଃ ସାହସଦଣ୍ଡଃ ।

(୧୬) ଅନାହିତାଗ୍ନିଃ ଶତଗୁରଯଜ୍ୱା ଚ ସହସ୍ରଗୁଃ ।
ସୁରାପୋ ବୃଷଲୀଭର୍ତ୍ତା ବ୍ରହ୍ମହା ଗୁରୁତଳ୍ପଗଃ ॥
(୧୭) ଅସତ୍ପ୍ରତିଗ୍ରହେ ଯୁକ୍ତଃ ସ୍ତେନଃ କୁତ୍ସିତଯାଜକଃ ।
ଅଦୋଷସ୍ତ୍ୟକ୍ତୁମନ୍ୟୋନ୍ୟଂ କର୍ମସଙ୍କରନଶ୍ଚୟାତ୍ ॥

—o—

ଶେଷହେବା ପରେ ସମସ୍ତେ ଦକ୍ଷିଣା ପାଇଯାନ୍ତି । ବୃହସ୍ପତି ସବନ ବ୍ୟତୀତ ଅନ୍ୟସମସ୍ତ ସବନମାନଙ୍କରେ ପ୍ରତିସବନ ଶେଷରେ ଦକ୍ଷିଣା ଦିଆଯାଏ । ଏହି ନିୟମରେ ଅହର୍ଗଣ ଅର୍ଥାତ୍ ମାସିକ ଯଜ୍ଞାଦିର ଦକ୍ଷିଣାଂଶ କଳ୍ପନା କରିବାକୁ ହେବ । (୧୩) ବ୍ୟାଧିଗ୍ରସ୍ତ ଋତ୍ୱିକ (କର୍ମକର)ମାନଙ୍କ କାର୍ଯ୍ୟ ଅବଶିଷ୍ଟ ଋତ୍ୱିକମାନେ ବା ଏହି ବ୍ୟାଧିଗ୍ରସ୍ତ ଋତ୍ୱିକମାନଙ୍କ ବିଶ୍ୱସ୍ତ ସ୍ୱଜନମାନେ ଦଶଦିନ ପର୍ଯ୍ୟନ୍ତ କରିଦେବେ । (୧୪) ଯଜ୍ଞକର୍ମର ସମାପ୍ତି ନ ହେଉଣୁ ଯଜମାନ ଯଦି ବ୍ୟାଧିଗ୍ରସ୍ତ ହୁଏ, ତେବେ ଋତ୍ୱିକ୍‌ମାନେ (ପୁରୋହିତମାନେ) ଯଜ୍ଞକର୍ମ ସମାପନ କରି ତତ୍ସମ୍ବନ୍ଧୀୟ ଦକ୍ଷିଣା ନେଇପିବେ । (୧୫) ଯଜ୍ଞକର୍ମ ସମାପନ ନ ହେଉଣୁ ଯଜମାନଙ୍କୁ ତ୍ୟାଗକରିବା ଯାଜକ କିମ୍ବା ଯାଜକଙ୍କୁ ପରିତ୍ୟାଗ କରିବା ଯଜମାନ ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (୧୬,୧୭) ଶହେ ଗାଈ ରଖି ମଧ୍ଯ ଅଗ୍ନ୍ୟାଧାନ ନକରିବା ବ୍ୟକ୍ତି, ସହସ୍ରେ ଗାଈ ରଖି ଯଜ୍ଞ ନକରିବା ବ୍ୟକ୍ତି, ସୁରାପାୟୀ (ମଦ୍ୟପ), * ବୃଷଲୀଭର୍ତ୍ତା (ଦ୍ୱାଦଶବର୍ଷୀୟା ଋତୁମତୀ ଅବିବାହିତା କନ୍ୟାର ଗୁପ୍ତପତି

* ପିତୁର୍ଗେହେତୁ ଯା କନ୍ୟା ରଜଃ ପଶ୍ୟତ୍ୟସଂସ୍କୃତା ।
ଭ୍ରୂଣହତ୍ୟା ପିତୁସ୍ତସ୍ୟାଃ ସା କନ୍ୟା ବୃଷଲୀ ସ୍ମୃତା ॥ ଇତି ପ୍ରକୃତିବିବେକେ ।

## ପଞ୍ଚଦଶୋଽଧ୍ୟାୟଃ

## ସପ୍ତଷଷ୍ଟିତମ ପ୍ରକରଣମ୍—ବିକ୍ରୀତକ୍ରୀତାନୁଶୟଃ

### RESCISSION OF PURCHASE AND SALE

( ବିକ୍ରୀତ ଓ କ୍ରୀତ ପଣ୍ୟ ସମ୍ବନ୍ଧୀୟ *ଅନୁଶୟର ବିଚାର )

(୧) ବିକ୍ରୀୟ ପଣ୍ୟମପ୍ରୟଚ୍ଛତୋ ଦ୍ୱାଦଶପଣୋ ଦଣ୍ଡଃ ଅନ୍ୟତ୍ର ଦୋଷୋପନିପାତାବିଷହ୍ୟେଭ୍ୟଃ । (୨) ପଣ୍ୟଦୋଷୋ ଦୋଷଃ । ରାଜଚୋରାଗ୍ନ୍ୟୁଦକବାଧ ଉପନିପାତଃ । ବହୁଗୁଣହୀନ

---

ତା ନାଚସ୍ତୀର ପତି), ବ୍ରହ୍ମଘାତୀ, ଗୁରୁପତ୍ନୀଗାମୀ, ପାପୀଲୋକର ପଦାର୍ଥ କିମ୍ବା ନଷିଦ୍ଧ ପଦାର୍ଥ ଗ୍ରହଣକାରୀ, ଚୋର ଓ ନିନ୍ଦିତବ୍ୟକ୍ତିର ଯାଗ କରିବା ବ୍ୟକ୍ତିମାନଙ୍କ କର୍ମସଙ୍କର ଦୋଷ'ଭୟହେତୁରୁ ତ୍ୟାଗକରିବା ଯଜମାନପକ୍ଷେ ଦୋଷାବହ ନୁହେ ଏବଂ ଉପରୋକ୍ତ ଦୋଷଯୁକ୍ତ ଯଜମାନଙ୍କୁ ଯାଜକ ତ୍ୟାଗ କରିବା ମଧ୍ୟ ଦୋଷାବହ ନୁହେ ।

ଇତି କୌଟଲ୍ୟସ୍ୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଚତୁର୍ଦଶୋଽଧ୍ୟାୟଃ ।

ଦାସକର୍ମକରକଲ୍ପେ ଭୃତକାଧିକାରଃ ସମ୍ଭୂୟସମୁତ୍ଥାନଂ

ଆଦିତଃ ଏକସପ୍ତତିତମଃ ।

---

(୧) 'ଦୋଷ, ଉପନିପାତ ଓ ଅବିଷହ୍ୟ' ବ୍ୟତୀତ ଅନ୍ୟ ଯେକୌଣସି ପଣ୍ୟର ମୂଲ୍ୟ ନେଇ କ୍ରେତାକୁ ପଦାର୍ଥ ନଦେବା ବିକ୍ରେତା ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । (୨) ଦ୍ରବ୍ୟର ସାଧାରଣ ଦୋଷକୁ 'ଦୋଷ', ରାଜା, ଚୋର, ଅଗ୍ନି ଓ ଜଳଜନିତ ବାଧାକୁ 'ଉପନିପାତ' ଏବଂ ନିତାନ୍ତ ଗୁଣହୀନ (ସାରହୀନ ଓ ମୂଲ୍ୟହୀନ) ଓ ଅସ୍ୱସ୍ଥମାନସ ବ୍ୟକ୍ତିକୃତ ପଣ୍ୟକୁ

---

* ଅନୁଶୟ—ପଶ୍ଚାତ୍ତାପ ଖଣ୍ଡନ । ବିଲୋପ—ରଦ୍ଦ । Rescission—ମୂଲ୍ୟ ଫେରାଇ ମାଲ ନେବା, ମାଲ ଫେରାଇ ମୂଲ୍ୟ ନେବା ଓ ବଇଣା ଅଗ୍ରିମ ଇତ୍ୟାଦି ଫେରାଇବା କରିବା ସମୟ ।

ମାର୍ତକୃତଂ ବାବଷହ୍ୟମ୍ । (୩) ବୈଦେହକାନାମେକରାତ୍ର ମନୁଶୟଃ । କର୍ଷକାଣାଂ ତ୍ରିରାତ୍ରମ୍ । ଗୋରକ୍ଷକାଣାଂ ପଞ୍ଚରାତ୍ରମ୍ । ବ୍ୟାମିଶ୍ରାଣାଂ ଉତ୍ତମାନାଂ ଚ ବର୍ଣ୍ଣାନାଂ ବୃତ୍ତିବିକ୍ରୟେ ସପ୍ତରାତ୍ରମ୍ । (୪) ଆତପାତକାନାଂ ପଣ୍ୟାନାମନ୍ୟତ୍ରା ବିକ୍ରେୟମିତ୍ୟବରୋଧେନା-ନୁଶୟୋ ଦେୟଃ । ତସ୍ୟାତିକ୍ରମେ ଚତୁର୍ବିଂଶତିପଣୋ ଦଣ୍ଡଃ, ପଣ୍ୟଦଶଭାଗୋ ବା । (୫) କ୍ରୀତ୍ୱା ପଣ୍ୟମପ୍ରତିଗୃହ୍ଣତୋ ଦ୍ୱାଦଶ-ପଣୋ ଦଣ୍ଡଃ, ଅନ୍ୟତ୍ର ଦୋଷୋପନିପାତାବିଷହ୍ୟେଭ୍ୟଃ । ସମାନଶ୍ଚାନୁଶୟଃ ବିକ୍ରେତୁରନୁଶୟେନ । (୬) ବିବାହାନାଂ ତୁ ତ୍ରୟାଣାଂ ପୂର୍ବେଷାଂ ବର୍ଣ୍ଣାନାଂ ପାଣିଗ୍ରହଣାସିଦ୍ଧମୁପାବର୍ତନମ୍ । ଶୂଦ୍ରାଣାଂ ଚ ପ୍ରକର୍ମଣଃ । ବୃତ୍ତପାଣିଗ୍ରହଣୟୋରପି ଦୋଷ-

---

'ଅବିଷହ୍ୟ' କୁହାଯାଏ । (୩) ବ୍ୟାପାରୀମାନଙ୍କ ଅନୁଶୟ କାଳ ଏକରାତ୍ର, କୃଷକମାନଙ୍କର ତିନିରାତ୍ର, ଗୋରକ୍ଷକମାନଙ୍କର ପାଞ୍ଚରାତ୍ର, ମଣିମୁକ୍ତାଦି ଉତ୍ତମ ପଦାର୍ଥ ଓ ବୃତ୍ତିବସ୍ତୁ ଅର୍ଥାତ୍ ଭୂମି, ଘର ପ୍ରଭୃତି ସ୍ଥିର ସମ୍ପତ୍ତି ବସ୍ତୁର ଅନୁଶୟ କାଳ ସାତରାତ୍ର ବୋଲି ସ୍ଥିର କରାଯାଇଛି । (୪) କାଳ-ପରବାସାସହ (ଯାହା ବେଶୀ ସମୟ ରହିପାରିବ ନାହିଁ) ସଦ୍ୟୋବିକ୍ରେୟ ପୁଷ୍ପକ୍ଷୀରାଦି ପଣ୍ୟକୁ ଅନ୍ୟ କେଉଁଠାରେ ବିକ୍ରୟ କର ନାହିଁ ବୋଲି ଅଟକାଇଲେ ସେହି ପଣ୍ୟମୂଲ୍ୟ ରକ୍ଷାହେବାପରି ଅନୁଶୟ ଦେବାକୁ ହେବ । ଏହି ନିୟମର ବ୍ୟତିକ୍ରମ କରିବା ବ୍ୟକ୍ତି ଚବିଶପଣ ଅର୍ଥଦଣ୍ଡ ବା ଉକ୍ତ ଦ୍ରବ୍ୟର ଦଶଭାଗରୁ ଏକଭାଗ ଜରିମାନା ସ୍ୱରୂପ ଦେବାକୁ ବାଧ୍ୟ ହେବ । (୫) ଦୋଷ, ଉପନିପାତ ଓ ଅବିଷହ୍ୟାଦି ନଥିଲେ ପଣ୍ୟ କ୍ରୟକରି ଗ୍ରହଣ ନ କରିବା କ୍ରେତା ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବେ । ବିକ୍ରେତାଙ୍କ ବିଷୟରେ ଯେଉଁ ଅନୁଶୟ ବିଧି କୁହାଗଲା, କ୍ରେତାଙ୍କ ବିଷୟରେ ମଧ୍ୟ ତାହା ଖଟିପାରିବ । (୬) ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର କନ୍ୟା-ପ୍ରତ୍ୟାହରଣ କାଳ ବିବାହ ପର୍ଯ୍ୟନ୍ତ ଏବଂ ଶୂଦ୍ରମାନଙ୍କର କନ୍ୟାପ୍ରତ୍ୟାହରଣ କାଳ (କନ୍ୟା ଫେରାଇ ଆଣିବା କିମ୍ବା ବିବାହସର୍ତ୍ତ ରଦ୍ଦକରିବା କାଳ) କନ୍ୟା ପୁଷ୍ପବତୀ ହେବା ବା ଶ୍ୱଶୁରଘରକୁ ଯିବାପର୍ଯ୍ୟନ୍ତ ବୋଲି ସ୍ଥିର କରାଯାଇଛି । ନିଷେକ କାର୍ଯ୍ୟପରେ ମଧ୍ୟ ସ୍ତ୍ରୀର ଯୋନିକ୍ଷତାଦି ଦୋଷ ଓ

ମୌପଶାୟିକଂ ଦୃଷ୍ଟ୍ୱା ସିଦ୍ଧମୁପାବର୍ତନମ୍ । ନ ତ୍ୱେବାଭିପ୍ରେତା-ତୟୋଃ । (୭) କନ୍ୟାଦୋଷମୌପଶାୟିକମନାଖ୍ୟାୟ ପ୍ରୟଚ୍ଛତଃ ଷଣ୍ଣବତର୍ଦଣ୍ଡଃ ଶୁଲ୍କସ୍ତ୍ରୀଧନପ୍ରତଦାନଂ ଚ । (୮) ବରୟିତୁର୍ବା ବରଦୋଷମନାଖ୍ୟାୟ ବନ୍ଦତୋ ଦ୍ୱିଗୁଣଃ ଶୁଲ୍କସ୍ତ୍ରୀଧନନାଶଶ୍ଚ । (୯) ଦ୍ୱିପଦଚତୁଷ୍ପଦାନାଂ ତୁ କୁଷ୍ଠବ୍ୟାଧିତାଶୁଚୀନାମୁତ୍ସାହସ୍ୱାସ୍ଥ୍ୟ-ଶୁଚୀନାମାଖ୍ୟାନେ ଦ୍ୱାଦଶପଣୋ ଦଣ୍ଡଃ । (୧୦) ଆ ତ୍ରିପକ୍ଷାଦତ ଚତୁଷ୍ପଦାନାମୁପାବର୍ତନମ୍, ଆ ସମ୍ବତ୍ସରାଦତ ମନୁଷ୍ୟାଣାମ୍ । ତାବତା ହି କାଲେନ ଶକ୍ୟଂ ଶୌଚଶୌଚେ ଜ୍ଞାତୁମିତ । (୧୧) ଦାତା ପ୍ରତଗ୍ରହୀତା ଚ ସ୍ୟାତାଂ ନୋପହତୌ ଯଥା ।

ଦାନେ କ୍ରୟେ ବାନୁଶୟଂ ତଥା କୁର୍ଯୁଃ ସଭାସଦଃ ॥

---

ପୁରୁଷର ନପୁଂସକାଦ ଦୋଷ ଜଣାପଡ଼ିଲେ ସ୍ତ୍ରୀର ଦୋଷ ଥିଲେ ପୁରୁଷ ଓ ପୁରୁଷର ଦୋଷ ଥିଲେ ସ୍ତ୍ରୀ (ବା ଉଭୟଙ୍କର ଅଭିଭାବକମାନେ) ଏହି ବିବାହ ସମ୍ପର୍କ ତୁଟାଇ ଦେଇପାରିବେ । କିନ୍ତୁ ସନ୍ତାନ ଜାତହେବା ପରେ ଆଉ ଏପରି କେହି କରିପାରିବେ ନାହିଁ । (୭) କନ୍ୟାର ଦୋଷକୁ ଲୁଚାଇ ବିବାହ ଦେଇଥିବା କନ୍ୟାପିତାକୁ ଛୟାଣୋଇପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବା ସଙ୍ଗେ ସଙ୍ଗେ ତା'ଠାରୁ କନ୍ୟାଶୁଲ୍କ ଓ ସ୍ତ୍ରୀଧନ ଫେରାଇ ନେବାକୁ ହେବ । (୮) ସେହିପରି ବରର ନପୁଂସକାଦ ଦୋଷକୁ ଲୁଚାଇ ବରପିତା ବିବାହ କରାଇ ଦେଇଥିଲେ ଉପରୋକ୍ତ ଅର୍ଥର ଦୁଇଗୁଣ ଅର୍ଥାତ୍ ଏକଶତ ବୟାଣୋଇପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବା ସଙ୍ଗେ ସଙ୍ଗେ ସେ ଦେଇଥିବା କନ୍ୟାଶୁଲ୍କ ଓ ସ୍ତ୍ରୀଧନ ମଧ୍ୟ ହରାଇବେ । (୯) କୁଷ୍ଠୀ, ରୋଗୀ ଓ ଅଶୁଚ ପଶୁପକ୍ଷୀଙ୍କୁ ଉତ୍ସାହୀ, ସୁସ୍ଥ ଓ ପରିଷ୍କାର ପରିଚ୍ଛନ୍ନ ବୋଲି ପ୍ରଚାର କରିବା ବ୍ୟକ୍ତିକ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୦) ପଶୁମାନଙ୍କର ଉପାବର୍ତନ ଅର୍ଥାତ୍ ଫେରଫେର ସମୟ ତିନିପକ୍ଷ ଓ ମନୁଷ୍ୟମାନଙ୍କ ଫେରଫେର ସମୟ (ଲେଉଟବଦଳ ସମୟ) ଏକବର୍ଷ । ତିନିପକ୍ଷ ମଧ୍ୟରେ ପଶୁର ଶୌଚାଶୌଚ (ଗୁଣଦୋଷ) ଜାଣି ହୁଏ ଏବଂ ଏକବର୍ଷ ମଧ୍ୟରେ ମନୁଷ୍ୟର ଶୌଚାଶୌଚ ଜାଣିହୁଏ ବୋଲି ଏପରି ସମୟ ସ୍ଥିର କରାଯାଇଛି । (୧୧) ଦାନ, ପ୍ରତଗ୍ରହ ଓ ଅନୁଶୟଦ୍ୱାରା ଦାତା ଓ

## ଷୋଡ଼ଶୋଽଧ୍ୟାୟଃ

## ଅଷ୍ଟଷଷ୍ଟୀ, ଊନସପ୍ତତୀ, ସପ୍ତତୀତମ ପ୍ରକରଣମ୍

## ଦତ୍ତସ୍ୟାନପାକର୍ମ, ଅସ୍ୱାମିବିକ୍ରୟଃ, ସ୍ୱସ୍ୱାମିସମ୍ବନ୍ଧିଃ

**RESUMPTION OF GIFTS, SALE WITHOUT OWNERSHIP AND OWNERSHIP**

(ପୂର୍ବରୁ ଦେବ ବୋଲି କହି ପରେ ତାହା ନ ଦେବା, କୌଣସି ପଦାର୍ଥର ସ୍ୱାମୀ ନ ହୋଇ ତାକୁ ବିକ୍ରୟ କରିବା ଓ ନିଜର ପଦାର୍ଥରେ ସ୍ୱାମିତ୍ୱ ବଜାୟ ରଖିବା ବିଷୟର ଆଲୋଚନା)

(୧) ଦତ୍ତସ୍ୟାପ୍ରଦାନମୃଣାଦାନେନ ବ୍ୟାଖ୍ୟାତମ୍ । (୨) ଦତ୍ତମବ୍ୟବହାର୍ଯମେକତ୍ରାନୁଶୟେ ବର୍ତେତ । ସର୍ବସ୍ୱଂ ପୁତ୍ରଦାରମ୍ ଆତ୍ମାନଂ ପ୍ରଦାୟାନୁଶୟିନଃ ପ୍ରୟଚ୍ଛେତ୍ । ଧର୍ମଦାନମସାଧୁଷୁ, କର୍ମସୁ ଚୌପଘାତକେଷୁ ବା । ଅର୍ଥଦାନମନୁପକାରିଷୁ ଅପକାରିଷୁ

---

ପ୍ରତିଗ୍ରହୀତା ଯେପରି ଦୁଃଖିତ ଓ ଅସନ୍ତୁଷ୍ଟ ନ ହୁଅନ୍ତି ସଭ୍ୟସଦ ଅର୍ଥାତ୍ ଧର୍ମସ୍ଥ ସେପରି ସୁବ୍ୟବସ୍ଥା କରିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ପଞ୍ଚଦଶୋଽଧ୍ୟାୟଃ ।
ବିବାହିତ କ୍ରୀତାନୁଶୟଃ—ଆଦିତୋ ଦ୍ୱିସପ୍ତତିତମଃ ।

---

(୧) ଦତ୍ତ ପଦାର୍ଥର ଅପ୍ରଦାନ ବିଷୟ ଋଣ ଆଦାୟ ପରି ଜାଣିବାକୁ ହେବ । (୨) ବାଗ୍‌ଦତ୍ତ ପଦାର୍ଥ ବ୍ୟବହାରର ଅଯୋଗ୍ୟ ହେଲେ ତାକୁ କେବଳ ଅନୁଶୟଦ୍ୱାରା ବଞ୍ଚାଇ ଦେବାକୁ ହେବ ଅର୍ଥାତ୍ ତାକୁ ପୁନର୍ଗ୍ରହଣ କରିବାକୁ ହେବ, କଦାପି ଦେବାକୁ ହେବ ନାହିଁ । ଏହି ପଦାର୍ଥକୁ କୌଣସି ନିରାପଦ ସ୍ଥାନରେ ରଖିଦେବାକୁ ହେବ । କିନ୍ତୁ ଏହା ବ୍ୟବହାର-ଯୋଗ୍ୟ ବିବେଚିତ ହେଲେ ବା ଏହାର ବ୍ୟବହାରଯୋଗ୍ୟ ସମୟ ଆସିଲେ ନିଜର ସର୍ବସ୍ୱ ସ୍ତ୍ରୀ, ପୁତ୍ର ଓ ନିଜକୁ ମଧ୍ୟ ବିକ୍ରୟ, ବନ୍ଧକ ବା

ବା । କାମଦାନମନର୍ହେଷୁ ଚ । ଯଥା ଚ ଦାତା ପ୍ରତିଗ୍ରହୀତା ଚ ନୋପହତୌ ସ୍ୟାତାମ୍, ତଥାନୁଶୟଂ କୁଶଳାଃ କଲ୍ପୟେୟୁଃ । (୩) ଦଣ୍ଡଭୟାଦାକ୍ରୋଶଭୟାଦନର୍ଥଭୟାଦ୍ ବା ଭୟଦାନଂ ପ୍ରତିଗୃହ୍ଣତଃ ସ୍ତେୟଦଣ୍ଡଃ ପ୍ରୟଚ୍ଛତଶ୍ଚ । ରୋଷଦାନଂ ପରହିଂସାୟାମ୍ । ରାଜ୍ଞାମୁପରି ଦର୍ପଦାନଂ ଚ । ତତ୍ରୋତ୍ତମୋ

---

ଦାନକରି ଏହି ବାଗ୍‌ଦତ୍ତ ଧନ ପୁନର୍ବାର ପ୍ରଦାନ କରିବାକୁ ହେବ । ସାଧୁ ବୋଲି ବିଶ୍ୱାସ କରି ଧର୍ମାର୍ଥରେ ଧନ ଦାନ କରିବା ସକାଶେ ସ୍ୱୀକାର କରି, ପରେ ଏହାକୁ ଅସାଧୁ ବୋଲି ଜାଣିଲେ, ଗୋରକ୍ଷାଦି ପ୍ରଶସ୍ତ କାର୍ଯ୍ୟ ସକାଶେ ଧନ ଦାନକରିବାକୁ ସ୍ୱୀକାର କରିବା ପରେ ଏହି ଦାନ ଗ୍ରହଣକାରୀ ବ୍ୟକ୍ତି ଚୋର କିମ୍ବା ପାରଦାରିକ (ପରସ୍ତ୍ରୀଗାମୀ) ବୋଲି ଜଣା ପଡ଼ିଲେ, ଉପକାରୀ ବୋଲି କାହାକୁ ବିଶ୍ୱାସ କରି ଧନ ଦାନକରିବାକୁ ସ୍ୱୀକାର କରିବା ପରେ ଉକ୍ତ ବ୍ୟକ୍ତି ଅନୁପକାରୀ ବା ଅପକାରୀ ବୋଲି ଜଣାପଡ଼ିଲେ ଏବଂ କାମବାସନା ଚରିତାର୍ଥ କରିବା ପାଇଁ କାହାକୁ ଅର୍ଥଦାନ କରିବାକୁ ସ୍ୱୀକାର କରିବା ପରେ ସେହି ବ୍ୟକ୍ତି କାମର ଅନର୍ହ ବୋଲି ବିବେଚିତ ହେଲେ ଏହି ସମସ୍ତ ଧନ ଅନୁଶୟଦ୍ୱାରା ବଞ୍ଚାଇ ଦେବାକୁ ହେବ ଏବଂ ଅନୁଶୟକୁଶଳ ବ୍ୟକ୍ତିମାନେ ଦାତା ଓ ପ୍ରତିଗ୍ରହୀତା କେହି ଯେପରି କ୍ଷୁଣ୍ଣ ବା ବାଧାପ୍ରାପ୍ତ ନ ହେବେ ସେପରି ମଧ୍ୟ ବ୍ୟବସ୍ଥା କରିବାକୁ ହେବ । (୩) କୌଣସି ଭୀରୁବ୍ୟକ୍ତିକୁ ତାଡ଼ନ (ପ୍ରହାରାଦି), ନିନ୍ଦା ଓ ଅନର୍ଥ ବା ରୋଗଉନ୍ମାଦାଦି ଉପଦ୍ରବର ଭୟ ଦେଖାଇବା ଯୋଗୁଁ ଉକ୍ତ ବ୍ୟକ୍ତି ଭୟଭୀତ ହୋଇ କରିବା ଦାନକୁ ଗ୍ରହଣ କରିବା ବ୍ୟକ୍ତି ଚୋରୀ ଦଣ୍ଡରେ ଦଣ୍ଡିତ ହେବ ଏବଂ ଏପରି କରାଇବା ବ୍ୟକ୍ତି ମଧ୍ୟ ଉକ୍ତ ଦଣ୍ଡରେ ଦଣ୍ଡିତ ହେବ । କାହାକୁ ମାରିଦେବା ସକାଶେ କୌଣସି ବ୍ୟକ୍ତିଠାରୁ ଗ୍ରହଣ କରାଯିବା ଦାନକୁ କୋପଦାନ କୁହାଯାଏ । ଏପରି କୋପଦାନ ଗ୍ରହଣକାରୀ ବ୍ୟକ୍ତି ବା ଏପରି କୁକର୍ମ କରାଇବା ସକାଶେ ଧନ ଦାନ କରିବା ବ୍ୟକ୍ତି ମଧ୍ୟ ଚୋରୀ ଦଣ୍ଡରେ ଦଣ୍ଡିତ ହେବେ । ନୃତ୍ୟଗୀତାଦିରେ ପରିତୃପ୍ତ ହୋଇ ରାଜା ଦେବା ପାରିତୋଷିକଠାରୁ ଅଧିକ ପାରିତୋଷିକ ଦାନକୁ 'ଦର୍ପଦାନ' କୁହାଯାଏ । ଏପରି 'ଦର୍ପଦାନ' କରିବା ବ୍ୟକ୍ତି ଉତ୍ତମସାହସଦଣ୍ଡରେ

ଦଣ୍ଡଃ । (୪) ପ୍ରାତିଭାବ୍ୟଂ ଦଣ୍ଡଶୁଲ୍କଶେଷମାକ୍ଷିକଂ ସୌରିକଂ କାମଦାନଂ ଚ ନାକାମଃ ପୁତ୍ରୋ ଦାୟାଦୋ ବା ରିକ୍ଥହରୋ ଦଦ୍ୟାତ୍ । ଇତି ଦତ୍ତସ୍ୟାନପାକର୍ମ । (୫) ଅସ୍ୱାମିବିକ୍ରୟସ୍ତୁ । ନଷ୍ଟାପହୃତମାସାଦ୍ୟ ସ୍ୱାମୀ ଧର୍ମସ୍ଥେନ ଗ୍ରାହୟେତ୍ । ଦେଶ-କାଳାତିପାତେ ବା ସ୍ୱୟଂ ଗୃହୀତ୍ୱୋପହରେତ୍ । ଧର୍ମସ୍ଥସ୍ତୁ ସ୍ୱାମିନମନୁଯୁଞ୍ଜୀତ—କୁତସ୍ତେ ଲବ୍ଧମିତି । ସ ଚେଦାଚାର କ୍ରମଂ

---

ଦଣ୍ଡିତ ହେବ । (୪) କୌଣସି ବ୍ୟକ୍ତିର ସ୍ୱୀକୃତ ବୃଥାଦାନ, ଦଣ୍ଡଶେଷ (ଜରିମାନାର ଅବଶିଷ୍ଟ ଅଂଶ), ଶୁଲ୍କଶେଷ (କନ୍ୟା ଶୁଲ୍କାଦିର ଅବଶିଷ୍ଟାଂଶ), ଜୁଆଖେଳରେ କରିଥିବା ଋଣ, ସୁରାପାନ କରି ଶୁଣ୍ଡିଠାରୁ କରିଥିବା ଋଣ, ନଟନର୍ତ୍ତକ ଓ ବେଶ୍ୟାଙ୍କୁ ଦେବାକୁ କହିଥିବା ଧନ ତାର ପୁତ୍ର ଦାୟାଦ-ମାନେ ପରିଶୋଧ କରିବାକୁ ବା ଦେବାକୁ ବାଧ୍ୟ ହେବେ ନାହିଁ । ଏପରି ଏଠାରେ ଦତ୍ତର ଅନପାକର୍ମ ବିଷୟ ବ୍ୟାଖ୍ୟାତ ହେଲା । (୫) ଯେ ଯେଉଁ ପଦାର୍ଥର ସ୍ୱାମୀ ନୁହନ୍ତି ସେ ସେହି ପଦାର୍ଥକୁ କରିବା ବିକ୍ରୟକୁ 'ଅସ୍ୱାମିବିକ୍ରୟ' କୁହାଯାଏ । ସେହି ଅସ୍ୱାମୀ ଓ ସେ କରିବା ବେଆଇନ ବିକ୍ରୟର ଦଣ୍ଡ ବିଷୟ ଏଠାରେ ଆଲୋଚନା କରାଯିବ । ନଷ୍ଟ ବା ଅପହୃତ ଦ୍ରବ୍ୟ (ହଜିଯାଇଥିବା ବା ଚୋରିଯାଇଥିବା ଦ୍ରବ୍ୟ) କାହାପାଖରେ ଅଛି ବୋଲି ଜାଣିପାରିଲେ, ଏହିଦ୍ରବ୍ୟର ସ୍ୱାମୀ ଧର୍ମସ୍ଥଙ୍କଦ୍ୱାରା ଉକ୍ତ ବ୍ୟକ୍ତିକୁ ଗ୍ରହଣ କରାଇବେ ଅର୍ଥାତ୍ ଗିରଫଦାର କରାଇବେ । ଏପରି କରାଇବାକୁ ଯଦି ସ୍ଥାନ ଓ ସମୟ ବାଧକ ହୁଏ, ତେବେ ଦ୍ରବ୍ୟସ୍ୱାମୀ ନିଜେ ଏହି ଚୋରିମାଲ ରଖିଥିବା ବ୍ୟକ୍ତିକୁ ଧରି ଧର୍ମସ୍ଥଙ୍କ ନିକଟରେ ପହଞ୍ଚାଇଦେବେ । ତା'ପରେ ଧର୍ମସ୍ଥ ତାଙ୍କୁ ଏ ଦ୍ରବ୍ୟ ତୁମେ କେଉଁଠାରୁ ପାଇଲ ବୋଲି ପ୍ରଶ୍ନ କରିବେ । ସେ ଯଦି ଦ୍ରବ୍ୟଟି କେଉଁପରି ତାଙ୍କ ହାତକୁ ଆସିଲା ତାହା ପରିପାଟି ଅନୁସାରେ କହନ୍ତି କିନ୍ତୁ ଉକ୍ତ ଦ୍ରବ୍ୟ ତାଙ୍କୁ କିଏ ବିକ୍ରୟ କଲା ତାହା କହିପାରନ୍ତି ନାହିଁ, ତେବେ ଉକ୍ତ ଦ୍ରବ୍ୟକୁ ଧର୍ମସ୍ଥ ଦ୍ରବ୍ୟସ୍ୱାମୀ ହସ୍ତରେ ଅର୍ପଣ କରି ଏହି ଦ୍ରବ୍ୟରଖିଥିବା ବ୍ୟକ୍ତିଙ୍କୁ ବିନାଦଣ୍ଡରେ ମୁକ୍ତ କରି ଦେବେ । କିନ୍ତୁ ଏହି ଦ୍ରବ୍ୟ ତାଙ୍କୁ ଯିଏ ବିକ୍ରୟ କରିଛି ତାକୁ ଯଦି ସେ ଚିହ୍ନାଇ ଦିଅନ୍ତି ଏବଂ ଏହି ବ୍ୟକ୍ତି ଯଦି ତାକୁ କିଏ ଉକ୍ତ ଦ୍ରବ୍ୟ ବିକ୍ରୟ କଲା

ଦର୍ଶୟେତ୍, ନ ବିକ୍ରେପରଂ, ତସ୍ୟ ଦ୍ରବ୍ୟସ୍ୟାଭସର୍ଗେଣ ମୁଚ୍ୟତେ । ବିକ୍ରେତା ଚେଦ୍ ଦୃଶ୍ୟେତ, ମୂଲ୍ୟଂ ସ୍ତେୟଦଣ୍ଡଂ ଚ । ସ ଚେଦପସାରମଧିଗଚ୍ଛେଦପସରେଦାପସାରକ୍ଷୟାଦେଭ । କ୍ଷୟେ ମୂଲ୍ୟଂ ସ୍ତେୟଦଣ୍ଡଂ ଚ ଦଦ୍ୟାତ୍ । (୬) ନାଷ୍ଟିକଂ ଚ ସ୍ୱକରଣଂ କୃତ୍ୱା ନଷ୍ଟପ୍ରତ୍ୟାହୃତଂ ଲଭେତ । ସ୍ୱକରଣାଭାବେ ପଞ୍ଚବନ୍ଧୋ ଦଣ୍ଡଃ । ତଚ୍ଚ ଦ୍ରବ୍ୟଂ ରାଜଧର୍ମ୍ୟଂ ସ୍ୟାତ୍ । (୭) ନଷ୍ଟାପହୃତମନବେଦ୍ୟୋତ୍କର୍ଷତଃ ସ୍ୱାମିନଃ ପୂର୍ବଃ ସାହସଦଣ୍ଡଃ । (୮) ଶୁଲ୍କସ୍ଥାନେ ନଷ୍ଟାପହୃତୋତ୍ପନ୍ନଂ ତିଷ୍ଠେତ୍ । ତ୍ରିପକ୍ଷାଦୂର୍ଦ୍ଧ୍ୱ-

---

ତାହା କହିନପାରେ, ତେବେ ଧର୍ମସ୍ଥ ଉକ୍ତ ବ୍ୟକ୍ତିଠାରୁ ଦ୍ରବ୍ୟର ମୂଲ୍ୟ ଆଦାୟ କରି ଏହି ମୂଲ୍ୟ, ଦ୍ରବ୍ୟର କ୍ରେତାକୁ ଦିଆଇଦେବେ ଏବଂ ଉକ୍ତ ବ୍ୟକ୍ତିକୁ ଚୈର୍ଯ୍ୟଦଣ୍ଡରେ ଦଣ୍ଡିତ କରି ଦଣ୍ଡରୁ ଆଦାୟ ହେବା ଧନ ରାଜକୋଷକୁ ପଠାଇଦେବେ । କିନ୍ତୁ ଏହି ବ୍ୟକ୍ତି ଯଦି ତାକୁ ଏହି ଦ୍ରବ୍ୟ କିଏ ବିକ୍ରୟ କଲା ତାହା ପ୍ରକାଶ କରେ, ତେବେ ସେ ମଧ୍ୟ ବିନାଦଣ୍ଡରେ ମୁକ୍ତିଲାଭ କରିବ । ଏପରି ଯିଏ ଯାହାକୁ ବିକ୍ରୟ କରିଛି ତାହା ଯଥାରୀତିରେ ପ୍ରମାଣିତ ହୋଇ ସର୍ବଶେଷରେ ଯିଏ ଧରାପଡ଼ି ତାକୁ କିଏ ଏହି ଦ୍ରବ୍ୟ ବିକ୍ରୟ କରିଛି ତାହା କହିପାରେ ନାହିଁ, ତାହାଠାରୁ ଦ୍ରବ୍ୟର ମୂଲ୍ୟ ଅସୁଲ କରି କ୍ରେତାଙ୍କୁ ଦିଆଇବେ ଏବଂ ଏହି ଅପରାଧ ପାଇଁ ଉକ୍ତ ଅସାମିଙ୍କୁ ଚୈର୍ଯ୍ୟଦଣ୍ଡରେ ଦଣ୍ଡିତ କରିବେ । (୬) ନଷ୍ଟଦ୍ରବ୍ୟ ବା ଅପହୃତ ଦ୍ରବ୍ୟର ସ୍ୱାମୀ ଉକ୍ତ ଦ୍ରବ୍ୟର ସେ ପ୍ରକୃତ ମାଲିକ ବୋଲି ସାକ୍ଷୀ ପ୍ରମାଣ ବା ଲେଖ୍ୟ ପ୍ରମାଣଦ୍ୱାରା ପ୍ରମାଣିତ କରି ଉକ୍ତ ଦ୍ରବ୍ୟ ଫେରିପାଇବେ, କିନ୍ତୁ ସେ ଏପରି ପ୍ରମାଣିତ କରି ନପାରିଲେ ଦ୍ରବ୍ୟମୂଲ୍ୟର ପାଞ୍ଚଭାଗ ଅର୍ଥଦଣ୍ଡରେ ଦଣ୍ଡିତ ହେବେ ଏବଂ ଉକ୍ତ ଦ୍ରବ୍ୟଟିକୁ ଧର୍ମତଃ (ନ୍ୟାୟତଃ) ରାଜକୋଷରେ ମିଶାଇ ଦିଆଯିବ । (୭) ନଷ୍ଟ ଓ ଅପହୃତ ଦ୍ରବ୍ୟ ବିଷୟରେ ସରକାରଙ୍କୁ ନ ଜଣାଇ ସରକାରଙ୍କ ବିନାନୁମତିରେ ଇଚ୍ଛାପୂର୍ବକ ତାହା ନିଜେ ଛଡ଼ାଇନେବା ବା ସ୍ୱାଧୀନ କରିଯିବା ଦ୍ରବ୍ୟସ୍ୱାମୀ ପୂର୍ବସାହସଦଣ୍ଡରେ ଦଣ୍ଡିତ ହେବେ । (୮) ସରକାରୀ ଅଫିସରଙ୍କୁ ବା ବେସରକାରୀ ବ୍ୟକ୍ତିଙ୍କୁ ଅକସ୍ମାତ୍ ମିଳିବା ନଷ୍ଟ ଓ ଅପହୃତ ଦ୍ରବ୍ୟ ଶୁଲ୍କସ୍ଥାନରେ ଗଚ୍ଛିତ ହୋଇ ରହିବ । ତିନିପକ୍ଷଭିତରେ ଯଦି

ମନଭିସାରଂ ରାଜା ହରେତ୍, ସ୍ୱାମୀ ବା ସ୍ୱକରଣେନ । (୯) ପଞ୍ଚପଣିକଂ ଦ୍ୱିପଦରୂପସ୍ୟ ନିଷ୍କ୍ରୟଂ ଦଦ୍ୟାତ୍ । ଚତୁଷ୍ପଣିକମେକଖୁରସ୍ୟ । ଦ୍ୱିପଣିକଂ ଗୋମହିଷସ୍ୟ । ପାଦିକଂ କ୍ଷୁଦ୍ରପଶୂନାମ୍ । ରତ୍ନସାରଫଲ୍‌ଗୁକୁପ୍ୟାନାଂ ପଞ୍ଚକଂ ଶତଂ ଦଦ୍ୟାତ୍ । (୧୦) ପରଚକ୍ରାଟବୀହୃତଂ ତୁ ପ୍ରତ୍ୟାନୀୟ ରାଜା ଯଥାସ୍ୱଂ ପ୍ରୟଚ୍ଛେତ୍ । ଚୋରହୃତମବିଦ୍ୟମାନଂ ସ୍ୱଦ୍ରବ୍ୟେଭ୍ୟଃ ପ୍ରୟଚ୍ଛେତ୍ ପ୍ରତ୍ୟାନେତୁମଶକ୍ତୋ ବା । ସ୍ୱୟଂ ଗ୍ରାହେଣାହୃତଂ ପ୍ରତ୍ୟାନୀୟ ତନ୍ନିଷ୍କ୍ରୟଂ

କେହି ଏହି ଦ୍ରବ୍ୟ ପାଇଁ ଦାବୀ ନକରେ ତେବେ ତାହା ସରକାରଙ୍କ ଭଣ୍ଡାରରେ ମିଶିଯିବ । କିନ୍ତୁ ଏହି ଦ୍ରବ୍ୟର ସ୍ୱାମୀ ଯଦି ଏହି ଦ୍ରବ୍ୟ ଉପରେ ନିଜର ସ୍ୱତ୍ୱ ପ୍ରମାଣିତ କରିପାରନ୍ତି, ତେବେ ସେ ତାଙ୍କର ଏହି ଦ୍ରବ୍ୟ ଫେରି ପାଇବେ । (୯) ନଷ୍ଟ ଓ ଅପହୃତୋତ୍ପନ୍ନ ଦ୍ରବ୍ୟ ମଧ୍ୟରୁ ଦ୍ୱିପଦ ଅର୍ଥାତ୍ ଦାସଦାସୀ ପ୍ରଭୃତଙ୍କୁ ସରକାରଙ୍କ ଜିମାରୁ ମୁକୁଳାଇ ନେବାକୁ ଆସିବା ସ୍ୱାମୀ ଏମାନଙ୍କ ମୁଣ୍ଡପିଚ୍ଛା ପାଞ୍ଚପଣ; ଘୋଡ଼ା, ଗଧ ଓ ଓଟ ପ୍ରଭୃତି ଏକଫାଳିଆ ଖୁରାଥିବା ଜନ୍ତୁଙ୍କ ମୁଣ୍ଡପିଚ୍ଛା ଚାରିପଣ; ଗାଈ, ମଇଁଷି ଇତ୍ୟାଦିଙ୍କ ମୁଣ୍ଡପିଚ୍ଛା ଦୁଇପଣ; ଛେଳି, ମେଣ୍ଢା ପ୍ରଭୃତି କ୍ଷୁଦ୍ର ପଶୁମାନଙ୍କ ମୁଣ୍ଡପିଚ୍ଛା ପାଦପଣ (¼ ପଣ) ଏବଂ ରତ୍ନ, ସାର, ଫଲ୍‌ଗୁ ଓ କୁପ୍ୟାଦି ପଦାର୍ଥମାନଙ୍କର ଶତକରା ପାଞ୍ଚଭାଗ ସରକାରଙ୍କୁ * ନିଷ୍କ୍ରୟ (ଛାଡ଼ପାନି) ଦେଇ ଏମାନଙ୍କୁ ମୁକୁଳାଇ ନେବେ । (୧୦) ଶତ୍ରୁରାଜା ବା ପାହାଡ଼ ଲୋକଙ୍କଦ୍ୱାରା ନିଜରାଜ୍ୟର ପ୍ରଜାମାନଙ୍କ ଅପହୃତ ଦ୍ୱିପଦ ଚତୁଷ୍ପଦାଦି ଦ୍ରବ୍ୟକୁ ରାଜା ଉଦ୍ଧାର କରି ତାହା ଉକ୍ତ ଦ୍ରବ୍ୟର ସ୍ୱାମୀମାନଙ୍କୁ ଯଥାଯଥଭାବେ ଦେଇଦେବେ ଅର୍ଥାତ୍ ଯାହାର ଯେଉଁ ପଦାର୍ଥ ତାହା ବୁଝିଶୁଝି ତାକୁ ଦେଇଦେବେ । ପ୍ରଜାଙ୍କର କୌଣସି ଦ୍ରବ୍ୟ ଚୋରିପାଇ ଜଣା ନପଡ଼ିଲେ ବା ଉକ୍ତ ଦ୍ରବ୍ୟ ଚୋରଠାରୁ ରାଜା ଉଦ୍ଧାର କରି ଆଣିନପାରିଲେ, ସେହି ଦ୍ରବ୍ୟର ସମାନ ଦ୍ରବ୍ୟ ରାଜା ନିଜର ଭଣ୍ଡାରରୁ ଉକ୍ତଦ୍ରବ୍ୟର ସ୍ୱାମୀଙ୍କୁ ଦେଇଦେବେ ଅଥବା ଚୋରଧରାଳିମାନେ ଯଦି ଏହି ଦ୍ରବ୍ୟ ଚୋରଠାରୁ ଉଦ୍ଧାର କରି ଆଣନ୍ତି, ରାଜା ତାଙ୍କୁ ନିଷ୍କ୍ରୟ ଅର୍ଥାତ୍ ଉଦ୍ଧାର ମୂଲ୍ୟ ଦେଇ ଦ୍ରବ୍ୟସ୍ୱାମୀଙ୍କୁ ତାର ଅପହୃତ ଦ୍ରବ୍ୟ ପ୍ରଦାନ

* ନିଷ୍କ୍ରୟ—ଛାଡ଼ପାନି, (Ransom) ଉଦ୍ଧାରମୂଲ୍ୟ ।

ବା ପ୍ରଯୁଞ୍ଜୀତ୍ । (୧୧) ପରବିଷୟାଦ୍ ବା ବିକ୍ରମେଣାନୀତଂ ଯଥା-ପ୍ରଦିଷ୍ଟଂ ରାଜା ଭୁଞ୍ଜୀତାନ୍ୟତ୍ରାର୍ଯପ୍ରାଣଦ୍ରବ୍ୟେଭ୍ୟୋ ଦେବବ୍ରାହ୍ମଣ-ତପସ୍ୱିଦ୍ରବ୍ୟେଭ୍ୟଶ୍ଚ । ଇତ୍ୟସ୍ୱାମିବିକ୍ରୟଃ । (୧୨) ସ୍ୱସ୍ୱାମି-ସମ୍ବନ୍ଧସ୍ତୁ । ଭୋଗାନୁବୃତ୍ତିରୁଚ୍ଛିନ୍ନଦେଶାନାଂ ଯଥାସ୍ୱଂ ଦ୍ରବ୍ୟାଣାମ୍ । (୧୩) ଯତ୍ ସ୍ୱଂ ଦ୍ରବ୍ୟମନ୍ୟୈର୍ଭୁଜ୍ୟମାନଂ ଦଶ ବର୍ଷାଣ୍ୟୁ-ପେକ୍ଷେତ, ହୀୟେତାସ୍ୟ ଅନ୍ୟତ୍ର ବାଳବୃଦ୍ଧବ୍ୟାଧିତବ୍ୟସନ-ପ୍ରୋଷିତଦେଶତ୍ୟାଗରାଜ୍ୟବିଭ୍ରମେଭ୍ୟଃ । (୧୪) ବିଂଶତିବର୍ଷୋ-

---

କରିବେ ବା ଏହା ଅସମ୍ଭବ ହେଲେ ଏହି ଅପହୃତ ଦ୍ରବ୍ୟର ମୂଲ୍ୟ ଦ୍ରବ୍ୟ-ସ୍ୱାମୀଙ୍କୁ ଦେଇଦେବେ । (୧୧) ଶତ୍ରୁଦେଶରୁ ବିକ୍ରମଦ୍ୱାରା ସୈନିକମାନେ ଲୁଣ୍ଠନ କରି ଆଣିଥିବା ଦ୍ରବ୍ୟ, ରାଜା ଯାହାକୁ ଯାହା ଆଜ୍ଞା କରିବେ ସେ ସେପରି ଭୋଗ କରିବ । କିନ୍ତୁ ଶତ୍ରୁରାଜାର କୌଣସି ଆର୍ଯ-ପ୍ରାଣ ବ୍ୟକ୍ତିର ଦ୍ରବ୍ୟ ଏବଂ ଦେବତା, ବ୍ରାହ୍ମଣ ଓ ତପସ୍ୱୀମାନଙ୍କ ଦ୍ରବ୍ୟ ନିଜର ସୈନିକମାନେ ଲୁଣ୍ଠନ କରି ଆଣିଥିଲେ, ରାଜା ତାହା ଭଲଭାବେ ଅନୁସନ୍ଧାନ କରି ଉକ୍ତ ଦ୍ରବ୍ୟ ଶତ୍ରୁରାଜ୍ୟର ଉପରୋକ୍ତ ବ୍ୟକ୍ତିମାନଙ୍କୁ ଫେରାଇ ଦେବାକୁ ହେବ । ଏପରି 'ଅସ୍ୱାମିବିକ୍ରୟ' ବିଷୟ ଏଠାରେ ସମାପ୍ତ ହେଲା । (୧୨) ନିଜର ସମ୍ପତ୍ତିରେ ନିଜର ସ୍ୱାମୀସମ୍ବନ୍ଧ କିପରି ଅଛି ତାହା ଏଠାରେ ଆଲୋଚନା କରାଯିବ । ଉଚ୍ଛିନ୍ନ ସାକ୍ଷିକ ଦ୍ରବ୍ୟମାନଙ୍କର ଯଥାଯଥ ଅବିଚ୍ଛିନ୍ନ ଭୋଗହିଁ ସ୍ୱତ୍ୱର ପ୍ରମାଣ ହୋଇଥାଏ ଅର୍ଥାତ୍ ଅନ୍ୟ କାହାର ବୋଲି ସାକ୍ଷୀ ନଥାଇ ଯେଉଁ ଦ୍ରବ୍ୟ ନିୟମିତଭାବେ ପରମ୍ପରାକ୍ରମେ କାହାର ଭୋଗ ଦଖଲରେ ଥାଏ, ସେଥିରେ ତାର ପୂରା ସ୍ୱତ୍ୱ ଅଛି ବୋଲି ପ୍ରମାଣିତ ହୋଇଥାଏ । (୧୩) ଯେଉଁ ବ୍ୟକ୍ତି ନିଜର ଦ୍ରବ୍ୟକୁ ଦଶବର୍ଷ ପର୍ଯନ୍ତ ଅନ୍ୟର ଦଖଲରେ ଛାଡ଼ିଦିଏ, ସେ ସେହି ଦ୍ରବ୍ୟରୁ ନିଜର ସ୍ୱତ୍ୱ ହରାଏ । କିନ୍ତୁ ବାଳକ, ବୃଦ୍ଧ, ବ୍ୟାଧିଗ୍ରସ୍ତ, ବିପଦ୍‌ଗ୍ରସ୍ତ ପ୍ରବାସୀ, ଦେଶତ୍ୟାଗୀ ଏବଂ ଦେଶ ବିପ୍ଳବ ବେଳେ ଦେଶରୁ ବିତାଡ଼ିତ ବ୍ୟକ୍ତିମାନେ ଏପରି ନିଜର ଦ୍ରବ୍ୟକୁ ଦଶବର୍ଷ ପର୍ଯନ୍ତ ଅନ୍ୟର ଦଖଲରେ ଛାଡ଼ିଦେଇଥିଲେ ସେହି ଦ୍ରବ୍ୟରୁ ତାଙ୍କର ସ୍ୱତ୍ୱ କଟିଯାଇ ପାରିବ ନାହିଁ । (୧୪) ନିଜର ବାସ୍ତୁ (ଘର, ବାଡ଼ ପ୍ରଭୃତି)କୁ ଅବିଚ୍ଛିନ୍ନଭାବେ କୋଡ଼ିଏ ବର୍ଷ ପର୍ଯନ୍ତ ଅନ୍ୟର ଭୋଗ ଦଖଲରେ

**ପେକ୍ଷିତମନୁବସିତଂ ବାସ୍ତୁ ନାନୁଯୁଞ୍ଜୀତ । (୧୫) ଜ୍ଞାତୟଃ ଶ୍ରୋତ୍ରିୟାଃ ପାଷଣ୍ଡା ବା ରାଜ୍ଞାମସନ୍ନିଧୌ ପରବାସ୍ତୁଷୁ ବିବସନ୍ତୋ ନ ଭୋଗେନ ହରେୟୁଃ, ଉପନିଧିମାଧିଂ ନିଧିଂ ନିକ୍ଷେପଂ ସ୍ତ୍ରିୟଂ ସୀମାନଂ ରାଜଶ୍ରୋତ୍ରିୟଦ୍ରବ୍ୟାଣି ଚ । (୧୬) ଆଶ୍ରମିଣଃ ପାଷଣ୍ଡା ବା ମହତ୍ୟବକାଶେ ପରସ୍ପରମବାଧମାନା ବସେୟୁଃ । ଅଲ୍ପାଂ ବାଧାଂ ସହେରନ୍ । ପୂର୍ବାଗତୋ ବା ବାସପର୍ଯ୍ୟାୟଂ ଦଦ୍ୟାତ୍ । ଅପ୍ରଦାତା ନିରସ୍ୟେତ । (୧୭) ବାନପ୍ରସ୍ଥଯତିବ୍ରହ୍ମଚାରିଣାମାଚାର୍ଯ୍ୟ**

---

ଛାଡ଼ିଦେଲେ, ସେଥିରୁ ତାକୁ ବେଦଖଲ କରାଯାଇପାରିବ ନାହିଁ । ଅର୍ଥାତ୍ ବାସ୍ତୁସ୍ୱାମୀ ସେଥିରୁ ନିଜର ସ୍ୱତ୍ୱ ହରାଇବ । (୧୫) କିନ୍ତୁ ରାଜାଙ୍କ ଆଶ୍ରୟ ନପାଇ ଜ୍ଞାତିମାନେ, ବ୍ରାହ୍ମଣମାନେ ବା ପାଷଣ୍ଡମାନେ (ଧର୍ମାନ୍ତରଗ୍ରହଣକାରୀ-ମାନେ) ପର ବାସ୍ତୁରେ ଏପରି କୋଡ଼ିଏବର୍ଷ ପର୍ଯ୍ୟନ୍ତ ଆଶ୍ରୟ ନେଇଥିଲେ ମଧ୍ୟ ସେଥିରେ ସେମାନଙ୍କର ଦଖଲ ସ୍ୱତ୍ୱ କାଏମ ହେବ ନାହିଁ । ବିଶେଷତଃ * ଉପନିଧି, ଆଧି, ନିଧି, ନିକ୍ଷେପ, ସ୍ତ୍ରୀ, ସୀମା, ରାଜଦ୍ରବ୍ୟ ଓ ବ୍ରାହ୍ମଣଦ୍ରବ୍ୟ ଏପରି କାହାପାଖରେ କୋଡ଼ିଏ ବର୍ଷ ରହିଲେ ମଧ୍ୟ ରଖିବା ଲୋକର ଏହି ଦ୍ରବ୍ୟମାନଙ୍କ ଉପରେ ଦଖଲ ସ୍ୱତ୍ୱ କାଏମ ହୋଇପାରିବ ନାହିଁ । (୧୬) ଆଶ୍ରମିମାନେ ବା ଧର୍ମାନ୍ତରଗ୍ରହଣକାରୀ ପାଷଣ୍ଡମାନେ ପରସ୍ପର କଳହ ନକରି କୌଣସି ବିସ୍ତୃତ ଜାଗାରେ ରହିପାରିବେ । ଏଥିରେ ଅଳ୍ପ କିଛି ବାଧା ପହୁଞ୍ଚିଲେ ମଧ୍ୟ ତାହା ଏମାନେ ସହ୍ୟକରିବାକୁ ହେବ । ପ୍ରଥମେ ଆସି ବାସକରିଥିବା ବ୍ୟକ୍ତି ପରେ ଆସିବା ନବାଗତ ବ୍ୟକ୍ତିକୁ ସ୍ଥାନ ଦେବେ । କିନ୍ତୁ ଏପରି ସ୍ଥାନ ନଦେଇ ଝଗଡ଼ା କରିବା ପୂର୍ବାଗତ ବ୍ୟକ୍ତିକୁ ରାଜା ସେହିସ୍ଥାନରୁ ବହିଷ୍କୃତ କରିଦେବେ (ବାହାର କରିଦେବେ) । (୧୭) ବାନପ୍ରସ୍ଥ, ଯତି ଓ ବ୍ରହ୍ମଚାରୀମାନଙ୍କ ସମ୍ପତ୍ତିରେ ଯଥାକ୍ରମେ ଏମାନଙ୍କ ଗୁରୁ (ଆଚାର୍ଯ୍ୟ), ଶିଷ୍ୟ, ଧର୍ମଭ୍ରାତା ବା ସହାଧ୍ୟାୟୀମାନଙ୍କର ସ୍ୱାମିତ୍ୱ ପ୍ରତିଷ୍ଠିତ ହେବ ଅର୍ଥାତ୍ ବାନପ୍ରସ୍ଥ, ସନ୍ନ୍ୟାସୀ ଓ ବ୍ରହ୍ମଚାରୀଙ୍କ ମୃତ୍ୟୁପରେ ବା ଦେଶାନ୍ତର ଗମନ ପରେ ଏମାନଙ୍କ ପାଖରେ ଥିବା ସମ୍ପତ୍ତିର ସ୍ୱାମୀ ଏମାନଙ୍କ ଆଚାର୍ଯ୍ୟ ହେବେ ।

---

* ଉପନିଧି—**Open deposit** (ଖୋଲା ଡ଼ିପୋଜିଟ୍) । ଆଧି-ବନ୍ଧକ (**pledge**) । ନିଧି--**Treasure trove** ।

ଶିଷ୍ୟଧର୍ମଭ୍ରାତୃସମାନତୀର୍ଥ୍ୟାଋକ୍‌ଥଭଜଃ କ୍ରମେଣ । (୧୮) ବିବାଦ-ପଦେଷୁ ଚୈଷାଂ ଯାବନ୍ତଃ ପଣା ଦଣ୍ଡାଃ ତାବତୀ ରାତ୍ରୀଃ କ୍ଷପଣା-ଭିଷେକାଗ୍ନିକାର୍ଯମହାକୃଚ୍ଛ୍ର ବର୍ଧନାନ ରାଜ୍ଞଶ୍ଚରେୟୁଃ । ଅହିରଣ୍ୟ ସୁବର୍ଣାଃ ପାଷଣ୍ଡାଃ ସାଧବଃ । ତେ ଯଥାସ୍ୱମୁପବାସବ୍ରତୈ ରାରାଧୟେୟୁଃ ଅନ୍ୟତ୍ର ପାରୁଷ୍ୟସ୍ତେୟସାହସସଂଗ୍ରହଣେଭ୍ୟଃ । ତେଷୁ ଯଥୋକ୍ତା ଦଣ୍ଡାଃ କାର୍ଯାଃ ।

(୧୯) ପ୍ରବ୍ରଜ୍ୟାସୁ ବୃଥାଚାରାନ୍ ରାଜା ଦଣ୍ଡେନ ବାରୟେତ୍ ।
ଧର୍ମୋ ହ୍ୟଧର୍ମୋପହତଃ ଶାସ୍ତାରଂ ହନ୍ତ୍ୟୁପେକ୍ଷିତଃ ॥

---

ଆଚାର୍ଯ୍ୟ ନଥିଲେ ଏମାନଙ୍କ ଶିଷ୍ୟ, ଶିଷ୍ୟ ନଥିଲେ ଧର୍ମଭାଇ ଏବଂ ଧର୍ମଭାଇ ନଥିଲେ ସହପାଠୀ (ଗୁରୁଭାଇ)ମାନେ ହିଁ ଏହି ସମ୍ପତ୍ତିର ସ୍ୱାମୀ ହେବେ । (୧୮) ଉପରୋକ୍ତ ସମ୍ପତ୍ତିର ସ୍ୱାମୀ ହେବା ସକାଶେ ଉପରୋକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଯଦି ବିବାଦ ଉପୁଜି କେହି ଏଥିପାଇଁ ଶାସ୍ତ୍ରୋକ୍ତ ନିୟମାନୁସାରେ ଅର୍ଥଦଣ୍ଡରେ ଦଣ୍ଡିତ ହୁଅନ୍ତି, ତେବେ ସେ ଏହି ଅର୍ଥଦଣ୍ଡର ପ୍ରତି ପଣ ପାଇଁ ଏକ ଏକ ରାତି ଉପବାସ, ସ୍ନାନ, ହୋମ, ମହାକୃଚ୍ଛ୍ର ଓ ପ୍ରାଜାପତ୍ୟ ପ୍ରଭୃତି କଷ୍ଟସାଧ୍ୟ ବ୍ରତ ରାଜାଙ୍କ ସକାଶେ କରିବେ । (ଶାସ୍ତ୍ର ଅନୁସାରେ ସାଧାରଣ ମନୁଷ୍ୟଭଳି ଏମାନେ ଅର୍ଥଦଣ୍ଡରେ ଦଣ୍ଡିତ ହେଲେ ମଧ୍ୟ ରାଜା ଏମାନଙ୍କ-ଠାରୁ ପ୍ରକୃତରେ ଅର୍ଥ ଆଦାୟ ନକରି ଉପରୋକ୍ତ ପ୍ରକାରେ କାର୍ଯ୍ୟକରାଇ ନେବେ, ଯେହେତୁ ଉପରୋକ୍ତ ବ୍ୟକ୍ତିମାନଙ୍କ ପାଖରେ ସାଧାରଣତଃ ଅର୍ଥ ନଥାଏ) । ସାଧୁ ଓ ପାଷଣ୍ଡମାନେ ସାଧାରଣତଃ 'ଅର୍ଥ'ହୀନ । ତେଣୁ ସେମାନେ ରାଜଦଣ୍ଡ ଭୋଗ କରିବାକୁ ହେଲେ କେବଳ ବ୍ରତ ଉପବାସ ଇତ୍ୟାଦିଦ୍ୱାରା ରାଜାଙ୍କୁ ଆରାଧନା କରିବେ, କିନ୍ତୁ ଗାଳି, ମାଡ଼, ଚୋରି, ସାହସ ଅର୍ଥାତ୍ ବଳାତ୍କାରରେ ପରସ୍ୱାଦିହରଣ ଓ ସ୍ତ୍ରୀଧର୍ଷଣ ପ୍ରଭୃତି ଅକ୍ଷମଣୀୟ ଅପରାଧ କଲେ ଏମାନେ ଏଥିପାଇଁ ବ୍ୟବସ୍ଥା କରାଯାଇଥିବା ଦଣ୍ଡରେ ନିଶ୍ଚୟ ଦଣ୍ଡିତ ହେବେ । (୧୯) ସନ୍ନ୍ୟାସୀମାନଙ୍କ ମିଥ୍ୟାଚାରକୁ ରାଜା ଦଣ୍ଡଦ୍ୱାରା ବାରଣ କରିବେ । କାରଣ ଧର୍ମ, ଅଧର୍ମଦ୍ୱାରା ଉପହତ ହେଲେ (ଦବିଗଲେ),

# ସପ୍ତଦଶୋଽଧ୍ୟାୟଃ

## ଏକସପ୍ତତତମ ପ୍ରକରଣମ୍—* ସାହସମ୍

## ROBBERY

[ ବଳପୂର୍ବକ କରାଯିବା ପରସ୍ୱହରଣାଦିରୂପକ * 'ସାହସ' (ଡକାଇତି)ର ସ୍ୱରୂପ ଓ ପ୍ରତିକାର । ]

**(୧) ସାହସମନ୍ୱୟବତ୍ପ୍ରସଭକର୍ମ । ନିରନ୍ୱୟେ ସ୍ତେୟ-ମପବ୍ୟୟନେ ଚ । (୨) ରତ୍ନସାରଫଲ୍ଗୁକୁପ୍ୟାନାଂ ସାହସେ ମୂଲ୍ୟସମୋ ଦଣ୍ଡ ଇତି ମାନବାଃ, ମୂଲ୍ୟ ଦ୍ୱିଗୁଣ ଇତ୍ୟୌଶନସାଃ ।**

ଏହି ଉପେକ୍ଷିତ ଅଧର୍ମ ବୃଦ୍ଧିପ୍ରାପ୍ତ ହୋଇ ପରିଣାମରେ ଶାସକଙ୍କୁ ହିଁ ବିନାଶ କରେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ଷୋଡ଼ଶୋଽଧ୍ୟାୟଃ । ଦତ୍ତସ୍ୟାନପାକର୍ମ, ଅସ୍ୱାମିବିକ୍ରୟଃ, ସ୍ୱସ୍ୱାମିସମ୍ବନ୍ଧଃ—ଆଦିତଃ ସପ୍ତତିତମଃ ।

---

(୧) ଅନେକ ସାଧାରଣଦ୍ରବ୍ୟର ଅନେକ ସାଧାରଣଙ୍କ ମଧ୍ୟରୁ ଜଣକଦ୍ୱାରା ବଳପୂର୍ବକ କରାଯିବା ଅପହରଣକୁ 'ସାହସ' ଏବଂ ଅସାଧାରଣ ପରକୀୟ ଦ୍ରବ୍ୟର ବଳାତ୍କାର ଅପହରଣ ବା ପ୍ରଚ୍ଛନ୍ନ ହରଣକୁ (ଗୋପନ ହରଣକୁ) ସ୍ତେୟ ଓ ପରର ଦ୍ରବ୍ୟ ନେଇଯାଇ ନେଇନାହିଁ ବୋଲି ଅପଲାପ କରିବା ବିଷୟକୁ ମଧ୍ୟ 'ସ୍ତେୟ' ଅର୍ଥାତ୍ 'ଚୋରି' ବୋଲି କୁହାଯାଏ । (୨) ରତ୍ନ (ହୀରା, ମୋତି, ମାଣିକ୍ୟାଦି ରତ୍ନ), ସାର (ଚନ୍ଦନ, କସ୍ତୁରୀ ପ୍ରଭୃତି ସାର ଦ୍ରବ୍ୟ), ଫଲ୍ଗୁ (ବସ୍ତ୍ରାଦି) ଓ କୁପ୍ୟ (ତାମ୍ରାଦି ଧାତୁ) ପ୍ରଭୃତି ଦ୍ରବ୍ୟ କେହି ବଳପୂର୍ବକ ହରଣ କରିନେଲେ ତାକୁ ଏହି ଦ୍ରବ୍ୟର ମୂଲ୍ୟ ଯାହା ସେହି ପରିମାଣେ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ବୋଲି ମନୁଙ୍କ ମତାବଲମ୍ବିମାନେ କହନ୍ତି; ଶୁକ୍ରାଚାର୍ଯ୍ୟଙ୍କ ମତାବଲମ୍ବିମାନେ ଏହାର

---

* ସାହସ—ସହସା କ୍ରିୟତେ କର୍ମ ଯତ୍କିଂଚିଦ୍ ବଳଦର୍ପିତୈଃ ।
ତତ୍ 'ସାହସ'ମିତି ପ୍ରୋକ୍ତଂ ସହୋ ବଳମିହୋଚ୍ୟତେ ॥ ନାରଦସଂହିତା ।

ଯଥାପରାଧ ଇତ କୌଟଲ୍ୟଃ । (୩) ପୁଷ୍ପଫଳଶାକମୂଳକନ୍ଦପକ୍ୱାନ୍ନ-ଚର୍ମବେଣୁମୃଦ୍‌ଭାଣ୍ଡାଦୀନାଂ କ୍ଷୁଦ୍ରକଦ୍ରବ୍ୟାଣାଂ ଦ୍ୱାଦଶପଣାବର-ଶ୍ଚତୁର୍ବିଂଶତପଣପରେ ଦଣ୍ଡଃ । (୪) କାଳାୟସକାଷ୍ଠରଜ୍ଜୁଦ୍ରବ୍ୟ-କ୍ଷୁଦ୍ରପଶୁପଟାଦୀନାଂ ସ୍ଥୂଳକଦ୍ରବ୍ୟାଣାଂ ଚତୁର୍ବିଂଶତପଣାବରୋଽଷ୍ଟ-ଚତ୍ୱାରଂଶତ୍‌ପଣପରେ ଦଣ୍ଡଃ । ତାମ୍ରବୃତ୍ତକଂସକାଚଦନ୍ତଭାଣ୍ଡାଦୀନାଂ ସ୍ଥୂଳକଦ୍ରବ୍ୟାଣାଂ ଅଷ୍ଟଚତ୍ୱାରଂଶତ୍‌ପଣାବରଃ ଷଣ୍ଣବତପରଃ ପୂର୍ବଃ ସାହସଦଣ୍ଡଃ । ମହାପଶୁମନୁଷ୍ୟକ୍ଷେତ୍ରଗୃହହିରଣ୍ୟସୁବର୍ଣ-ସୂକ୍ଷ୍ମବସ୍ତ୍ରାଦୀନାଂ ସ୍ଥୂଳକଦ୍ରବ୍ୟାଣାଂ ଦ୍ୱିଶତାବରଃ ପଞ୍ଚଶତପରଃ— ମଧ୍ୟମଃ ସାହସଦଣ୍ଡଃ । (୫) ସ୍ତ୍ରିୟଂ ପୁରୁଷଂ ବାଭିଷହ୍ୟ

---

ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରବାକୁ ହେବ ବୋଲ୍ ମତ ପ୍ରକାଶ କରନ୍ତି; କନ୍ତୁ କୌଟଲ୍ୟ କହନ୍ତି, ଏପର ଗୁଣେ-ଦୁଇଗୁଣ ଅର୍ଥଦଣ୍ଡର ବ୍ୟବସ୍ଥା ନକର ଏଥିରେ ଯେ ଯେପର ଅପରାଧ କରଥିବ ତାହାର ବଚେଚନା ପୂର୍ବକ, ଅପରାଧର ଅନୁରୂପ ଦଣ୍ଡହିଁ ବ୍ୟବସ୍ଥା କରବାକୁ ହେବ । (୩) ଫୁଲ, ଫଳ, ଶାକ, ମୂଳ, କନ୍ଦ, ପକ୍ୱାନ୍ନ, ଚର୍ମ, ବେଣୁ (ବାଉଁଶ ଓ ବାଉଁଶଜାତ ଦ୍ରବ୍ୟ), ମୃଦ୍‌ଭାଣ୍ଡ (ମାଟିହାଣ୍ଡି) ପ୍ରଭୃତ କ୍ଷୁଦ୍ର ଓ ସ୍ୱଳ୍ପମୂଲ୍ୟ ଦ୍ରବ୍ୟ ବଳପୂର୍ବକ ଅପହରଣ କରବା ବ୍ୟକ୍ତକୁ ବାରପଣ ଅଧମଦଣ୍ଡ ଓ ଚବଶପଣ ଉତ୍ତମ ଦଣ୍ଡରେ ଦଣ୍ଡିତ କରବାକୁ ହେବ ଅର୍ଥାତ୍ ଅନ୍ୟୂନ ବାରପଣଠାରୁ ଆରମ୍ଭ କର ଚବଶପଣ ପର୍ଯ୍ୟନ୍ତ ଅର୍ଥଦଣ୍ଡ ବଧାନ କରବାକୁ ହେବ । (୪) ଲୁହା, କାଠ, ଦଉଡ଼ି, କ୍ଷୁଦ୍ର ପଶୁ ଓ ବସ୍ତ୍ରପ୍ରଭୃତ ସ୍ଥୂଳଦ୍ରବ୍ୟ ବଳପୂର୍ବକ ଅପହରଣ କଲେ ଚବଶପଣଠାରୁ ଅଠଚାଳଶପଣ ପର୍ଯ୍ୟନ୍ତ ଅର୍ଥଦଣ୍ଡ; ତମ୍ବା, ପିତଳ, କଂସା, କାଚ ଓ ହାତୀଦାନ୍ତନର୍ମିତ ସ୍ଥୂଳଦ୍ରବ୍ୟ (ମୋଟା ଦ୍ରବ୍ୟ) ବଳପୂର୍ବକ ଅପହରଣ କଲେ ଅଠଚାଳଶପଣଠାରୁ ଆରମ୍ଭ କର ଛୟାଣୋଇପଣ ପର୍ଯ୍ୟନ୍ତ 'ପୂର୍ବସାହସ' ନାମକ ଅର୍ଥଦଣ୍ଡ ଏବଂ ମହାପଶୁ (ଘୋଡ଼ା, ମଇଁଷି ପ୍ରଭୃତ), ମନୁଷ୍ୟ, କ୍ଷେତ (ଜମି), ଗୃହ, ହିରଣ୍ୟ (ରତ୍ନ), ସୁବର୍ଣ୍ଣ ଓ ପାଟ ପ୍ରଭୃତ ମହାମୂଲ୍ୟବାନ୍ ସ୍ଥୂଳଦ୍ରବ୍ୟ ଅପହରଣ କଲେ ଦୁଇଶହପଣଠାରୁ ଆରମ୍ଭ କର ପାଞ୍ଚଶହପଣ ପର୍ଯ୍ୟନ୍ତ 'ମଧ୍ୟମସାହସ' ନାମକ ଅର୍ଥଦଣ୍ଡରେ ଦଣ୍ଡିତ କରବାକୁ ହେବ । (୫) କୌଣସି ସ୍ତ୍ରୀ ବା ପୁରୁଷକୁ ବଳପୂର୍ବକ

**ବଧ୍ନତୋ ବନ୍ଧୟତୋ ବନ୍ଧଂ ବା ମୋକ୍ଷୟତଃ ପଞ୍ଚଶତାବରଃ ସହସ୍ରପର ଉତ୍ତମଃ ସାହସଦଣ୍ଡ ଇତ୍ୟାଚାର୍ଯ୍ୟାଃ । (୭) ଯଃ ସାହସଂ ପ୍ରତିପତ୍ତେତି କାରୟତି ସ ଦ୍ୱିଗୁଣଂ ଦଦ୍ୟାତ୍ । ଯାବଦ୍ଧିରଣ୍ୟ-ମୁପଯୋକ୍ଷ୍ୟତେ ତାବତ୍ ଦାସ୍ୟାମୀତି ସ ଚତୁର୍ଗୁଣଂ ଦଣ୍ଡଂ ଦଦ୍ୟାତ୍ । ଯ ଏତାବଦ୍ଧିରଣ୍ୟଂ ଦାସ୍ୟାମୀତି ପ୍ରମାଣମୁଦ୍ଦିଶ୍ୟ କାରୟତି ସ ଯଥୋକ୍ତଂ ହିରଣ୍ୟଂ ଦଣ୍ଡଂ ଚ ଦଦ୍ୟାଦ୍ ଇତି ବାର୍ହସ୍ପତ୍ୟାଃ । (୭) ସଚେତ୍ କୋପଂ ମଦଂ ମୋହଂ ବାପଦିଶେତ୍, ଯଥୋକ୍ତ ବଦ୍‌ଦଣ୍ଡମେନଂ କୁର୍ଯ୍ୟାଦିତି କୌଟଲ୍ୟଃ ।**

---

ବାନ୍ଧିବା, ବନ୍ଧାଇବା ବା ବନ୍ଧନରୁ ବଳପୂର୍ବକ ମୁକ୍ତ କରିଦେବା ବ୍ୟକ୍ତିକୁ ପାଞ୍ଚଶହଠାରୁ ଏକସହସ୍ରପଣ ପର୍ଯ୍ୟନ୍ତ 'ଉତ୍ତମସାହସ' ନାମକ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୭) ଯେଉଁ ବ୍ୟକ୍ତି ଅନ୍ୟ କୌଣସି ବ୍ୟକ୍ତିକୁ ପ୍ରୋତ୍ସାହିତ କରି ତା'ଦ୍ୱାରା ବଳପୂର୍ବକ କାହାର ମନୁଷ୍ୟ ବା ଦ୍ରବ୍ୟ ଅପହରଣ କରାଏ, ତାକୁ ଉପରୋକ୍ତ ଦଣ୍ଡର ଦୁଇଗୁଣ ଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଯେଉଁ ବ୍ୟକ୍ତି ଏପରି ସାହସ (ବଳାତ୍କାର ଅପହରଣ) କରିବା ପାଇଁ ଡକାୟତ, ଗୁଣ୍ଡା ପ୍ରଭୃତି ବ୍ୟକ୍ତିମାନଙ୍କୁ 'ଯେତେ ଧନ ଲୋଡ଼ିବ ସେତେ ଦେବି' ବୋଲି କହି ସେମାନଙ୍କଦ୍ୱାରା ଏପରି ବଳାତ୍କାର ଅପହରଣ କରାଏ, ତାକୁ ପୂର୍ବୋକ୍ତ ଦଣ୍ଡର ଚାରିଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଯେଉଁ ବ୍ୟକ୍ତି ଉକ୍ତ ଗୁଣ୍ଡା ବା ଡକାୟତଙ୍କୁ 'ଏତେ ନିର୍ଦ୍ଦିଷ୍ଟ ଧନ ଦେବି, ତୁମେ ଗୁଣ୍ଡାମି ବା ଡକାୟତି କରି ଅମୁକ ବ୍ୟକ୍ତିର ଧନ ବା ଜନ ବଳାତ୍କାରରେ ଅପହରଣ କରି ଆଣ' ବୋଲି କହି 'ସାହସ' କରାଏ, ସେହିବ୍ୟକ୍ତିଠାରୁ ଏହି ପ୍ରତିଶ୍ରୁତ ଧନ ଶାସ୍ତ୍ରୋକ୍ତ ଜରିମାନା ଧନସହ ମିଶାଇ ଅସୁଲ କରିବାକୁ ହେବ ବୋଲି ବୃହସ୍ପତିଙ୍କ ମତାବଲମ୍ବିମାନେ କହନ୍ତି । (୭) କିନ୍ତୁ କୌଟିଲ୍ୟ କହନ୍ତି—କୌଣସି ବ୍ୟକ୍ତି ଯଦି କୋପ, ମଦ (ଚିତ୍ତବିଭ୍ରମ) ଓ ମୋହ (ଅଜ୍ଞାନ) ବଶତଃ ଅନ୍ୟଦ୍ୱାରା ଏପରି ସାହସିକ କାର୍ଯ୍ୟ କରାଇଥାଏ, ତେବେ ତାକୁ କର୍ତ୍ତାର ସମାନ ଦଣ୍ଡ ଅର୍ଥାତ୍ ଆଗେ କୁହାଯାଇଥିବା ବାରପଣଠାରୁ ଚବିଶପଣ ବା ଚବିଶପଣ-ଠାରୁ ଅଠଚାଳିଶପଣ ପ୍ରଥମସାହସ, ମଧ୍ୟମସାହସ ଓ ଉତ୍ତମସାହସ

(୮) ଦଣ୍ଡକର୍ମସୁ ସର୍ବେଷୁ ରୂପମଷ୍ଟପଣଂ ଶତମ୍ ।
ଶତାବରେଷୁ ବ୍ୟାଜୀଂ ଚ ବଦ୍ୟାତ୍ ପଞ୍ଚପଣଂ ଶତମ୍ ।।

(୯) ପ୍ରଜାନାଂ ଦୋଷବାହୁଲ୍ୟାଦ୍ ରାଜ୍ଞାଂ ବା ଭାବଦୋଷତଃ ।
ରୂପବ୍ୟାଜ୍ୟାବଧର୍ମିଷ୍ଠେ ଧର୍ମ୍ୟା ତୁ ପ୍ରକୃତିଃ ସ୍ମୃତା ।।

---

ପ୍ରକୃତ ନକେ ସାହସିକ କାର୍ଯ୍ୟ କରିବା ବ୍ୟକ୍ତିମାନଙ୍କୁ ଧଅପିବା ଦଣ୍ଡଭଳ ଦଣ୍ଡ ଦେବାକୁ ହେବ । (୮, ୯) ସମସ୍ତ ପ୍ରକାର ଅର୍ଥଦଣ୍ଡ ଉପରେ ଶତକଡ଼ା ଅଠପଣ 'ରୂପ' ଅଦାୟ କରିବାକୁ ହେବ ଏବଂ ଅର୍ଥଦଣ୍ଡର ପରିମାଣ ଯଦି ଏକଶତପଣରୁ ଊଣାହୋଇଥାଏ (ଚବିଶ, ଅଠଚାଳିଶ ବା ଛୟାଶୀଇପଣ ହୋଇଥାଏ) ତେବେ ତା'ଉପରେ ଶତକଡ଼ା ପାଞ୍ଚପଣ 'ବ୍ୟାଜୀ' ଅଦାୟ କରିବାକୁ ହେବ । ପ୍ରଜାମାନଙ୍କର ଦୋଷବାହୁଲ୍ୟରୁ ବା ରାଜାଙ୍କର ଧନଲୋଭ ନିମିତ୍ତକ ଚିତ୍ତବୃତ୍ତିର ଦୋଷହେତୁରୁ ଅଧାର୍ମିକ ଲୋକଙ୍କପାଇଁ କେବଳ ଏହି 'ରୂପ', 'ବ୍ୟାଜୀ' ଇତ୍ୟାଦି ଅତିରିକ୍ତ ଧନ ଅଦାୟର ବ୍ୟବସ୍ଥା ରହିଛି । କିନ୍ତୁ ଧର୍ମତଃ-ନ୍ୟାୟତଃ ଯଥାବିହିତ ଶାସ୍ତ୍ର-ସମ୍ମତ ଅର୍ଥଦଣ୍ଡହିଁ ଉତ୍ତମ ପ୍ରଜାମାନଙ୍କପ୍ରତି ପ୍ରୟୋଗ କରିବାକୁ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ସପ୍ତଦଶୋଽଧ୍ୟାୟଃ ।
'ସାହସମ୍'—ଆଦିତଃ ଷଟ୍‌ସପ୍ତତିତମଃ ।

# ଅଷ୍ଟାଦଶୋଽଧ୍ୟାୟଃ

## ଦ୍ୱିସପ୍ତତିତମ ପ୍ରକରଣମ୍—ବାକ୍‌ପାରୁଷ୍ୟମ୍

**DEFAMATION**

( କଟୁବାକ୍ୟ ବା ଗାଳି ପ୍ରଭୃତି ମାନହାନିକର ବାକ୍ୟ ସମ୍ବନ୍ଧୀୟ ଦଣ୍ଡର ବିଚାର )

**(୧) ବାକ୍‌ପାରୁଷ୍ୟମୁପବାଦଃ କୁତ୍ସନମଭିଭର୍ତ୍ସନମିତି । (୨) ଶରୀରପ୍ରକୃତିଶ୍ରୁତବୃତ୍ତିଜନପଦାନାଂ ଶରୀରୋପବାଦେନ କାଣ-ଖଞ୍ଜାଦିଭିଃ ସତ୍ୟେ ତ୍ରିପଣୋ ଦଣ୍ଡଃ । ମିଥ୍ୟାପବାଦେ ଷଟ୍‌ପଣୋ ଦଣ୍ଡଃ । (୩) ଶୋଭନାକ୍ଷିଦନ୍ତ ଇତି କାଣଖଞ୍ଜାଦୀନାଂ ସ୍ତୁତିନିନ୍ଦାୟାଂ ଦ୍ୱାଦଶପଣୋ ଦଣ୍ଡଃ । (୪) କୁଷ୍ଠୋନ୍ମାଦକ୍ଲୈବ୍ୟାଦିଭିଃ**

---

(୧) 'ଉପବାଦ' ଅର୍ଥାତ୍ ଅଙ୍ଗବୈକଲ୍ୟାଦି ବଚନ (ବିକୃତ ମୁଖ, ବିକଟ ଦନ୍ତ ଓ ରକ୍ତଚକ୍ଷୁ ପ୍ରଦର୍ଶନ ପୂର୍ବକ ସରୋଷ ଦାକ୍ୟକଥନ), 'କୁତ୍ସନ' ଅର୍ଥାତ୍ କୁଷ୍ଠ, ଉନ୍ମାଦ (ବାଇ) ଇତ୍ୟାଦି ନିନ୍ଦା ବା ଘୃଣାଜନକ ବଚନ ଏବଂ 'ଅଭିଭର୍ତ୍ସନ' ଅର୍ଥାତ୍ ମାରିବା ପିଟିବା ଇତ୍ୟାଦି ଭୟପ୍ରଦର୍ଶନକୁ 'ବାକ୍‌ପାରୁଷ୍ୟ' କୁହାଯାଏ । (୨) ଶରୀର, ପ୍ରକୃତି (ସ୍ତ୍ରୀପୁରୁଷାଦି ଲକ୍ଷଣ), ଶ୍ରୁତ (ଶିକ୍ଷା), ବୃତ୍ତି ଓ ଜନପଦ (ବାସ କରିବା ଦେଶ)—'ବାକ୍‌ପାରୁଷ୍ୟ'ର ଏ ପାଞ୍ଚଗୋଟି ବିଷୟ ଅର୍ଥାତ୍ ଏ ପାଞ୍ଚଗୋଟି ବିଷୟକୁ ନେଇ 'ବାକ୍‌ପାରୁଷ୍ୟ' କରାଯାଏ । ଶରୀରକୁ ଆଶ୍ରୟ କରି କଣା, କୁଜା, ଛୋଟା ଇତ୍ୟାଦି ଗାଳି ଦିଆଯାଏ । ପ୍ରକୃତ କଣା, କୁଜା ବା ଛୋଟାଙ୍କୁ ଏପରି ଗାଳିଦେବା ବ୍ୟକ୍ତିକୁ ତିନିପଣ ଏବଂ ବୃଥାରେ ଭଲ ମଣିଷକୁ ଏପରି ଗାଳିଦେବା ବ୍ୟକ୍ତିକୁ ଛ'ପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୩) କଣାକୁ 'ଏହାର ଆଖି ବଡ଼ ସୁନ୍ଦର ହୋଇଛି', ଦାନ୍ତୁରିକୁ 'ଏହାର ଦାନ୍ତ ବଡ଼ ସୁନ୍ଦର ଦିଶୁଛି' ଇତ୍ୟାଦି ପ୍ରକାରେ ଥଟ୍ଟା କରିବା ବ୍ୟକ୍ତିକୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । "ଧେତ୍ କଣା ! ଛେ ରେ ଦାନ୍ତୁରି ! ହାତ୍ କୁଜା !" ବୋଲି ନିନ୍ଦା କରିବା ବ୍ୟକ୍ତିକୁ ମଧ୍ୟ ଏପରି ଦଣ୍ଡ ଦେବାକୁ ହେବ । (୪) କୁଷ୍ଠିଆ, ବାୟା ଓ ଅଣପୁରୁଷିଆ ବୋଲି (ନିନ୍ଦାସୂଚକ) ଗାଳିଦେବା ବ୍ୟକ୍ତିକୁ

କୁତ୍ସାୟାଂ ଚ । ସତ୍ୟମିଥ୍ୟାସ୍ତୁତନିନ୍ଦାସୁ ଦ୍ୱାଦଶପଣୋତ୍ତରା ଦଣ୍ଡାସ୍ତୁଲ୍ୟେଷୁ । ବିଶିଷ୍ଟେଷୁ ଦ୍ୱିଗୁଣାଃ । ହୀନେଷ୍ୱର୍ଦ୍ଧଦଣ୍ଡାଃ । ପରସ୍ତ୍ରୀଷୁ ଦ୍ୱିଗୁଣାଃ । ପ୍ରମାଦମଦମୋହାଦଭିରର୍ଦ୍ଧଦଣ୍ଡାଃ । (୫) କୁଷ୍ଠୋନ୍ମାଦୟୋଶ୍ଚିକିତ୍ସକାଃ ସନ୍ନିକୃଷ୍ଟାଃ ପୁମାଂସଶ୍ଚ ପ୍ରମାଣମ୍ । କ୍ଲୀବଭାବେ ସ୍ତ୍ରିୟଃ ମୂତ୍ରଫେନଃ ଅପ୍ସୁ ବିଷ୍ଠାନିମଜ୍ଜନଂ ଚ । (୬) ପ୍ରକୃତ୍ୟୁପବାଦେ ବ୍ରାହ୍ମଣକ୍ଷତ୍ରିୟବୈଶ୍ୟଶୂଦ୍ରାନ୍ତାବସାୟି-

---

ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ନିଜ ସମାନସ୍ତରର ଲୋକକୁ ସତରେ ବା ମିଛରେ ଏପରି ଗାଳିଦେଲେ ବାରପଣ, ଚବିଶିପଣ ବା ଛତିଶିପଣ ଉତ୍ତରୋତ୍ତର ବୃଦ୍ଧିରେ ଦଣ୍ଡ ଦେବାକୁ ହେବ (ସ୍ତୁତ ନିନ୍ଦାରେ ଅପମାନିତ କଲେ ଏପରି ଦଣ୍ଡ ଦେବାକୁ ହେବ) । କିନ୍ତୁ ନିଜଠାରୁ ଉଚ୍ଚସ୍ତରର ବ୍ୟକ୍ତିଙ୍କୁ ପ୍ରକୃତରେ ବା ଅନ୍ୟଥାରେ ଏପରି ଅପମାନିତ କଲେ ଏହାର ଦୁଇଗୁଣ, ନିଜଠାରୁ ହୀନସ୍ତରର ବ୍ୟକ୍ତିକୁ ଏପରି ଅପମାନିତ କଲେ ଏହାର ଅର୍ଦ୍ଧଦଣ୍ଡ, ପରସ୍ତ୍ରୀକୁ ଏପରି ଅପମାନିତ କଲେ ଏହାର ଦୁଇଗୁଣ ଏବଂ ପ୍ରମାଦ, ମଦ (ମତ୍ତତା) ଓ ମୋହବଶତଃ କେହି ଯଦି ଏପରି କାହାକୁ ନିନ୍ଦା ବା ପ୍ରଶଂସା କରେ, ତେବେ ଉପରୋକ୍ତ ଦଣ୍ଡମାନଙ୍କର ଅର୍ଦ୍ଧଦଣ୍ଡରେ ତାକୁ ଦଣ୍ଡିତ କରିବାକୁ ହେବ । (୫) କୌଣସି ବ୍ୟକ୍ତିର କୁଷ୍ଠ ଓ ଉନ୍ମାଦାଦି ରୋଗକୁ ପ୍ରମାଣିତ କରିବାକୁ ହେଲେ ଚିକିତ୍ସକ ବା ପାଖପଡ଼ିଶା ଲୋକଙ୍କଦ୍ୱାରା ହିଁ ତାହା କରାଇବାକୁ ହେବ । ସେହିପରି କାହାର ନପୁଂସକତା ପ୍ରମାଣିତ କରିବାକୁ ହେଲେ ତାର ସ୍ତ୍ରୀପ୍ରସଙ୍ଗରେ ଅନିଚ୍ଛା, ତା'ମୂତ୍ରରେ ଫେନ ନଉଠିବା ଓ ତା'ର ମଳକୁ ପାଣିରେ ପକାଇଲେ ବୁଡ଼ିଯିବା ଇତ୍ୟାଦିରୁ ହିଁ ପ୍ରମାଣ ସଂଗ୍ରହ କରିବାକୁ ହେବ । (୬) ଚଣ୍ଡାଳଦ୍ୱାରା ଶୂଦ୍ରର, ଶୂଦ୍ରଦ୍ୱାରା ବୈଶ୍ୟର, ବୈଶ୍ୟଦ୍ୱାରା କ୍ଷତ୍ରିୟର ଏବଂ କ୍ଷତ୍ରିୟଦ୍ୱାରା ବ୍ରାହ୍ମଣର ଉପବାଦ ହେଲେ ଅର୍ଥାତ୍ ମୂର୍ଖବକୃତ ପ୍ରଭୃତି ଦ୍ୱାରା ନିନ୍ଦା ବା ଗାଳି କରାଗଲେ, ଉତ୍ତରୋତ୍ତର ତିନିପଣ ଅଧିକାରେ ଦଣ୍ଡବିଧାନ କରିବାକୁ ହେବ । ସେହିପରି ବ୍ରାହ୍ମଣଦ୍ୱାରା କ୍ଷତ୍ରିୟର ଓ କ୍ଷତ୍ରିୟଦ୍ୱାରା ବୈଶ୍ୟର—ଏହି କ୍ରମରେ ଉଚ୍ଚଶ୍ରେଣୀଦ୍ୱାରା ନିମ୍ନଶ୍ରେଣୀର ଉପବାଦ ହେଲେ ସେମାନଙ୍କୁ କ୍ରମାନ୍ୱୟେ ଦୁଇଦୁଇ ପଣ ଊଣାକରି ଅର୍ଥଦଣ୍ଡରେ

**ନାମପରେଣ ପୂର୍ବସ୍ୟ ଦ୍ୱିପଣୋତ୍ତରଃ ଦଣ୍ଡଃ । ପୂର୍ବେଣାପରସ୍ୟ ଦ୍ୱିପଣାଧରଃ । କୁବ୍ରାହ୍ମଣାଦଭିଶ୍ଚ କୁତ୍ସାୟାମ୍ । (୭) ତେନ ଶ୍ରୁତୋପବାଦୋ ବାଗ୍‌ଜୀବନାନାଂ, କାରୁକୁଶୀଲବାନାଂ ବୃତ୍ତ୍ୟୁପବାଦଃ, ପ୍ରାଗ୍‌ଘୂର୍ଣକଗାନ୍ଧାରାଦୀନାଂ ଚ ଜନପଦୋପବାଦା ବ୍ୟାଖ୍ୟାତାଃ । (୮) ଯଃ ପରମ୍ 'ଏବଂ ତ୍ୱାଂ କରିଷ୍ୟାମି' ଇତି କରଣେନାଭିଭର୍ତ୍ସୟେଦକରଣେ, ଯସ୍ତସ୍ୟ କରଣେ ଦଣ୍ଡଃ ତତୋଽର୍ଧଦଣ୍ଡଂ ଦଦ୍ୟାତ୍ । (୯) ଅଶକ୍ତଃ କୋପଂ ମଦଂ ମୋହଂ ବାଽପଦିଶେତ୍, ଦ୍ୱାଦଶପଣଂ ଦଦ୍ୟାତ୍ । (୧୦) ଜାତବୈରାଶୟଃ**

---

ଦଣ୍ଡିତ କରିବାକୁ ହେବ । କୁବ୍ରାହ୍ମଣ ଇତ୍ୟାଦି କୁତ୍ସାରେ ମଧ୍ୟ ଶୂଦ୍ର ଅପେକ୍ଷା ବୈଶ୍ୟକୁ ଦୁଇପଣ ଊଣାକରି ଏବଂ ବୈଶ୍ୟ ଅପେକ୍ଷା କ୍ଷତ୍ରିୟକୁ ଦୁଇପଣ ଊଣାକରି ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୭) ଉକ୍ତ ପ୍ରକୃତ ଉପବାଦ ସମ୍ବନ୍ଧୀୟ ଦଣ୍ଡବିଧି ଅନୁସାରେ ବାଗ୍‌ଜୀବନ ଅର୍ଥାତ୍ ଗଳ୍ପସାଗର ପ୍ରଭୃତି କଥା କହି ଜୀବିକା ନିର୍ବାହ କରିବା ବ୍ୟକ୍ତିମାନଙ୍କ ବିଦ୍ୟାର ନିନ୍ଦାକରିବା, ଶିଳ୍ପୀ ଓ ଅଭିନେତା (କୁଶୀଳବ) ପ୍ରଭୃତିଙ୍କର ବୃତ୍ତ୍ୟୁପବାଦ ଜୀବିକା ନିନ୍ଦା କରିବା, ପ୍ରାଗ୍‌ଘୂର୍ଣକ ଓ ଗାନ୍ଧାର ଇତ୍ୟାଦିଙ୍କ ଦେଶକୁ (ଚଣ୍ଡାଳଦେଶ ଇତ୍ୟାଦି କହି) ନିନ୍ଦାକରିବା ଇତ୍ୟାଦିର ଦଣ୍ଡ ଧାର୍ଯ୍ୟ କରିବାକୁ ହେବ । (୮) 'ତତେ ଏମିତି କରିବି, ସେମିତି କରିବି', 'ତୋର ଗୋଡ଼ ଭାଙ୍ଗିଦେବି ଓ ହାତ ଭାଙ୍ଗିଦେବି' ଇତ୍ୟାଦି ବୋଲି ଯେଉଁ ବ୍ୟକ୍ତି ଅନ୍ୟବ୍ୟକ୍ତିକୁ ଭର୍ତ୍ସନା କରେ, ସେହି ବ୍ୟକ୍ତିକୁ ପ୍ରକୃତରେ ଗୋଡ଼ ଭାଙ୍ଗିଦେବା ଓ ହାତ ଭାଙ୍ଗିଦେବା ବ୍ୟକ୍ତିକୁ ଯେଉଁ ଦଣ୍ଡ 'ଦଣ୍ଡପାରୁଷ୍ୟ' ପ୍ରକରଣରେ ବ୍ୟବସ୍ଥା କରାଯାଇଛି, ସେହି ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୯, ୧୦) ଉକ୍ତ ପାଦଭଙ୍ଗାଦି କରିବାକୁ ଅଶକ୍ତ ହେଉଥିବା ବ୍ୟକ୍ତି ଯଦି ଏହି ପାଦଭଙ୍ଗ ଓ ହସ୍ତଭଙ୍ଗାଦି କାର୍ଯ୍ୟ କରିବାକୁ ଅସମର୍ଥ ହୋଇ କୋପ, ମଦ ଓ ମୋହବଶତଃ 'ମୁଁ ଏପରି କହିଦେଲି' ବୋଲି ଯୁକ୍ତିକରେ, ତେବେ ସେ ବାରପଣ ଜରିମାନା ଦେବାକୁ ବାଧ୍ୟ ହେବ । କିନ୍ତୁ ହସ୍ତପଦାଦି ଭଙ୍ଗକରିପାରିବାକୁ ସମର୍ଥ ବ୍ୟକ୍ତି ଏପରି ଯୁକ୍ତି ଦେଖାଇଲେ ତାହା ଧର୍ମସ୍ଥ ଗ୍ରହଣ କରିବେ ନାହିଁ । ଏପରି ହସ୍ତପଦାଦିଭଙ୍ଗ

ଶକ୍ତଶ୍ଚାପକର୍ତୁଂ ଯାବଜ୍ଜୀବିକାବସ୍ଥଂ ଦଦ୍ୟାତ୍ ।

(୧୧) ସ୍ୱଦେଶଗ୍ରାମୟୋଃ ପୂର୍ବଂ ମଧ୍ୟମଂ ଜାତିସଙ୍ଘୟୋଃ ।
ଆକ୍ରୋଶାଦ୍ ଦେବଚୈତ୍ୟାନାମ୍ ଉତ୍ତମଂ ଦଣ୍ଡମର୍ହତି ॥

—o—

---

କରିଦେବାକୁ ସମର୍ଥ ବ୍ୟକ୍ତି ଯଦି ଶତ୍ରୁତା ଯୋଗୁଁ ତର୍ଜନ ଗର୍ଜନ ପୂର୍ବକ କାହାର ଗୋଡ଼ହାତ ଭାଙ୍ଗିଦେବାପାଇଁ ଭର୍ତ୍ସନା କରେ, ତେବେ ଏହି ବ୍ୟକ୍ତି ଧର୍ମସ୍ଥଙ୍କ ନିକଟରେ ତାର ଏହି ଦୁର୍ବଳ ଶତ୍ରୁର 'ନିରାପତ୍ତା' ସକାଶେ ସାରାଜୀବନ ଦାୟୀରହିବା ପାଇଁ ସର୍ତ୍ତ ଲେଖି ଦେବାକୁ ବାଧ୍ୟ ହେବ । (୧୧) କୌଣସି ବ୍ୟକ୍ତି ସ୍ୱଦେଶ ଓ ସ୍ୱଗ୍ରାମର ନିନ୍ଦାକଲେ ପୂର୍ବସାହସଦଣ୍ଡ, ସ୍ୱଜାତି ଓ ସ୍ୱସଙ୍ଘ (ସ୍ୱସମ୍ପ୍ରଦାୟ ବା ସମାଜ)ର ନିନ୍ଦାକଲେ ମଧ୍ୟମ ସାହସଦଣ୍ଡ ଓ ସ୍ୱଦେଶର ଦେବମନ୍ଦିର ଓ ପବିତ୍ର ସ୍ଥାନ (ଚୈତ୍ୟ)ର ନିନ୍ଦାକଲେ ଉତ୍ତମସାହସ ଦଣ୍ଡ ପାଇବାକୁ ଅର୍ହ ହେବ ।

ଇତି କୌଟଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ
ଅଷ୍ଟାଦଶୋଽଧ୍ୟାୟଃ । ବାକ୍ପାରୁଷ୍ୟମ୍—ଆଦିତଃ ପଞ୍ଚସପ୍ତତିତମଃ ।

## ଊନବିଂଶୋଽଧ୍ୟାୟଃ

## ଦ୍ୱିସପ୍ତତିତମ ପ୍ରକରଣମ୍—ଦଣ୍ଡପାରୁଷ୍ୟମ୍

**ASSAULT**

( ଠେଙ୍ଗା, କୋରଡ଼ା ପ୍ରଭୃତି ଦ୍ୱାରା ପ୍ରହାର କରିବା ଅପରାଧର ଦଣ୍ଡ )

**(୧) ଦଣ୍ଡପାରୁଷ୍ୟଂ ସ୍ପର୍ଶନମବଗୂର୍ଣଂ ପ୍ରହତମିତି । (୨) ନାଭେରଧଃକାୟଂ ହସ୍ତପଂକ-ଭସ୍ମପାଂଶୁଭିରିତି ସ୍ପୃଶତସ୍ତ୍ରିପଣୋ ଦଣ୍ଡଃ । (୩) ତୈରେବାମେଧ୍ୟୈଃ ପାଦଷ୍ଠୀବିକାଭ୍ୟାଂ ଚ ଷଟ୍‌ପଣଃ । ଛର୍ଦିମୂତ୍ରପୁରୀଷାଦଭିର୍ଦ୍ୱାଦଶପଣଃ । ନାଭେରୁପରି ଦ୍ୱିଗୁଣଃ । ଶିରସି ଚତୁର୍ଗୁଣାଃ ସମେଷୁ । (୪) ବିଶିଷ୍ଟେଷୁ ଦ୍ୱିଗୁଣାଃ ।**

---

(୧) ସ୍ପର୍ଶନ, ଉଦ୍ୟମନ ଓ ତାଡ଼ନ ଭେଦରେ ଦଣ୍ଡପାରୁଷ୍ୟ ତିନି-ପ୍ରକାର । (୨) ନାଭିଠାରୁ ତଳଭାଗକୁ ଅର୍ଥାତ୍ ପାଦପର୍ଯ୍ୟନ୍ତ ଶରୀରର ଅର୍ଦ୍ଧାଂଶକୁ ହସ୍ତରେ ପଙ୍କ, ଭସ୍ମ ଏବଂ ଧୂଳି ପ୍ରଭୃତି ଧରି ସ୍ପର୍ଶିଲେ (ବୋଳିଲେ) ତିନିପଣ ଅର୍ଥଦଣ୍ଡରେ ବୋଳିବା ବ୍ୟକ୍ତି ଦଣ୍ଡିତ ହେବ । (୩) ଉକ୍ତ ପଙ୍କ, ଭସ୍ମ ପ୍ରଭୃତି ଯଦି ଅମେଧ୍ୟ ଅର୍ଥାତ୍ ମଳମୂତ୍ରାଦିଦ୍ୱାରା ଅପବିତ୍ର ହୋଇଥାଏ ତେବେ ଏହାକୁ ବୋଳିଲେ କିମ୍ବା ପାଦରେ ସ୍ପର୍ଶକଲେ ଓ ଛେପଖଙ୍କାର ପକାଇଲେ ଛ'ପଣ, ବାନ୍ତି, ମୂତ୍ର ଓ ମଳ ଇତ୍ୟାଦିଦ୍ୱାରା କାହାକୁ ସ୍ପର୍ଶ କଲେ (ଦେହରେ ପକାଇଲେ) ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ନାଭିର ଉପର ଭାଗରେ ଏପରି କଲେ ଏହାର ଦ୍ୱିଗୁଣ ଦଣ୍ଡ ଏବଂ ମୁଣ୍ଡରେ ଏପରି କଲେ ଚାରିଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ନିଜ ସ୍ତରର ଲୋକଙ୍କପ୍ରତି ଏପରି ଦୁର୍ବ୍ୟବହାର କଲେ କେବଳ ଉକ୍ତ ଦଣ୍ଡ ପ୍ରଯୁଜ୍ୟ ହେବ । କିନ୍ତୁ ନିଜଠାରୁ ଉଚ୍ଚସ୍ତରର କିମ୍ବା ନୀଚସ୍ତରର ଲୋକଙ୍କପ୍ରତି ଏପରି ଦୁର୍ବ୍ୟବହାର କରାଗଲେ ନିମ୍ନରେ ଲେଖାଯିବା ପ୍ରକାରେ ଦଣ୍ଡର ବ୍ୟବସ୍ଥା କରାଯିବ । (୪) ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଏପରି କଲେ ସାଧାରଣ ଦଣ୍ଡର ଦ୍ୱିଗୁଣ, ହୀନବ୍ୟକ୍ତିଙ୍କୁ ଏପରି କଲେ ସାଧାରଣ ଦଣ୍ଡର ଅର୍ଦ୍ଧଦଣ୍ଡ, ପରସ୍ତ୍ରୀଙ୍କୁ ଏପରି

ହୀନେଷୁ ଅର୍ଦ୍ଧଦଣ୍ଡାଃ । ପରସ୍ତ୍ରୀଷୁ ଦ୍ୱିଗୁଣାଃ । ପ୍ରମାଦ ମଦମୋହାଦଭି ରର୍ଦ୍ଧଦଣ୍ଡାଃ । (୫) ପାଦବସ୍ତ୍ରହସ୍ତକେଶାବଲମ୍ବନେଷୁ ଷଟ୍ପଣୋତ୍ତର ଦଣ୍ଡାଃ । (୬) ପୀଡ଼ନାବେଷ୍ଟନାଂଜନପ୍ରକର୍ଷଣାଧ୍ୟାସନେଷୁ ପୂର୍ବଃ ସାହସଦଣ୍ଡଃ । ପାତୟିତ୍ୱାପକ୍ରମତୋଽର୍ଦ୍ଧଦଣ୍ଡାଃ । (୭) ଶୂଦ୍ରୋ ଯେନାଂଗେନ ବ୍ରାହ୍ମଣମଭିହନ୍ୟାତ୍ ତଦସ୍ୟ ଛେଦୟେତ୍ । ଅବଗୂର୍ଣେ ନିଷ୍କ୍ରୟଃ, ସ୍ପର୍ଶେଽର୍ଦ୍ଧଦଣ୍ଡଃ । ତେନ ଚଣ୍ଡାଳାଶୁଚୟୋ ବ୍ୟାଖ୍ୟାତାଃ । (୮) ହସ୍ତେନାବଗୂର୍ଣେ ତ୍ରିପଣାବରୋ ଦ୍ୱାଦଶପଣପରୋ ଦଣ୍ଡଃ । ପାଦେନ ଦ୍ୱିଗୁଣଃ ।

---

କଲେ ସାଧାରଣ ଦଣ୍ଡର ଦ୍ୱିଗୁଣ ଏବଂ ପ୍ରମାଦ, ମଦ ଓ ମୋହବଶତଃ ଏପରି କଲେ ଉକ୍ତ ସମସ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବାକୁ ହେବ। (୫) ଯଦି କୌଣସି ବ୍ୟକ୍ତି ବଳପୂର୍ବକ କାହାର ପାଦ, ବସ୍ତ୍ର, ହସ୍ତ ଓ କେଶ ଗ୍ରହଣ କରେ, ତେବେ ସେ ଯଥାକ୍ରମରେ ଛ'ପଣ, ବାରପଣ, ଅଠରପଣ ଓ ଚବିଶିପଣ ଦଣ୍ଡରେ ଦଣ୍ଡିତ ହେବ । (୬) ଚିପ୍କାଓଟରି କରି ପୀଡ଼ାଦେବା, ବାହୁଛଳରେ କୁଣ୍ଢାଇ ଧରିବା ବା ବାନ୍ଧିବା, କଳାବୋଳିବା, ଦଳିଚକଟି ଘୋଷାରିବା ଓ ତଳେ ପକାଇ ମାଡ଼ିବସିବା ଇତ୍ୟାଦି ଅପରାଧ କରିବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଧକ୍କାଦେଇ ତଳେପକାଇ ପଳାଇଯିବା ବ୍ୟକ୍ତିକୁ ଏହାର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୭) ଶୂଦ୍ର ଯେଉଁ ଅଂଗଦ୍ୱାରା ବ୍ରାହ୍ମଣକୁ ତାଡ଼ନ କରେ ତାର ସେହି ଅଙ୍ଗକୁ ଛେଦନ କରିଦେବାକୁ ହେବ । ମାରିବା ପାଇଁ ଉଦ୍ୟମ କଲେ କଣ୍ଟକଶୋଧନ ଅଧିକରଣୋକ୍ତ 'ଏକାଙ୍ଗବଧ ନିଷ୍କ୍ରୟ' ଅନୁସାରେ ଅର୍ଥଦଣ୍ଡର ବ୍ୟବସ୍ଥା କରିବାକୁ ହେବ ଏବଂ ମାରିବା ପାଇଁ ହାତଉଠାଇ ସ୍ପର୍ଶକଲମାତ୍ରେ ଉକ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଏହିପ୍ରକାରେ ଚଣ୍ଡାଳାଦିମାନେ ନିଜହାତରେ ବ୍ରାହ୍ମଣାଦିମାନଙ୍କୁ ତାଡ଼ନ ବା ସ୍ପର୍ଶନକଲେ ଯଥୋଚିତ ଦଣ୍ଡରେ ଦଣ୍ଡିତ ହେବେ । (୮) ହାତରେ ମାରିବାକୁ ଉଦ୍ୟମ କଲେ ଅନ୍ୟୂନ ତିନିପଣଠାରୁ ବାରପଣପର୍ଯ୍ୟନ୍ତ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ପାଦରେ ମାରିବାକୁ ଉଦ୍ୟମକଲେ ଏହାର ଦ୍ୱିଗୁଣ (ଚବିଶିପଣ)

ଦୁଃଖୋତ୍ପାଦନେନ ଦ୍ରବ୍ୟେଣ ପୂର୍ବଃ ସାହସଦଣ୍ଡଃ । ପ୍ରାଣାବାଧିକେନ ମଧ୍ୟମଃ । (୯) କାଷ୍ଠଲେଷ୍ଟୁପାଷାଣଲୋହଦଣ୍ଡରଜ୍ଜୁଦ୍ରବ୍ୟାଣାମନ୍ୟତମେନଦୁଃଖମଶୋଣିତମୁତ୍ପାଦୟତଶ୍ଚତୁର୍ବିଂଶତିପଣୋ ଦଣ୍ଡଃ । ଶୋଣିତୋତ୍ପାଦନେ ଦ୍ୱିଗୁଣଃ ଅନ୍ୟତ୍ର ଦୁଷ୍ଟଶୋଣିତାତ୍ । (୧୦) ମୃତକଳ୍ପମଶୋଣିତଂ ଘ୍ନତୋ ହସ୍ତପାଦପାରଂଚିକଂ ବା କୁର୍ବତଃ ପୂର୍ବଃ ସାହସଦଣ୍ଡଃ । ପାଣିପାଦଦନ୍ତଭଙ୍ଗେ କର୍ଣ୍ଣନାସାଚ୍ଛେଦନେ ବ୍ରଣବିଦାରଣେ ଚ ଅନ୍ୟତ୍ର ଦୁଷ୍ଟବ୍ରଣେଭ୍ୟଃ । (୧୧) ସକ୍‌ଥିଗ୍ରୀବାଭଞ୍ଜନେ ନେତ୍ରଭେଦନେ ବା ବାକ୍ୟଚେଷ୍ଟାଭୋଜନୋପରୋଧେଷୁ ଚ ମଧ୍ୟମଃ ସାହସଦଣ୍ଡଃ ।

---

ଏବଂ କଣ୍ଟକ ପ୍ରଭୃତି କ୍ଳେଶଦାୟକ ଦ୍ରବ୍ୟଦ୍ୱାରା ମାରିବାକୁ ଉଦ୍ୟମ କଲେ ପୂର୍ବସାହସଦଣ୍ଡ ଏବଂ ପ୍ରାଣବାଧାକର ଖଡ଼୍‌ଗ ଓ ସର୍ପାଦିମାନଙ୍କଦ୍ୱାରା ହତ୍ୟାକରିବାକୁ ଉଦ୍ୟମ କଲେ ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୯) କାଠ, ଢେଲା, ପଥର, ଲୁହା, ବାଡ଼ି ଓ ରଜ୍ଜୁ (କୋରଡ଼ା ବା ଚାବୁକ) ଦ୍ୱାରା ରକ୍ତଅବାହା ମାଡ଼ମାରିଲେ ଚବିଶିପଣ ଏବଂ ରକ୍ତବାହା ମାଡ଼ ମାରିଲେ ଅଠଚାଳିଶିପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । କିନ୍ତୁ ଏହି ଅଘାତଦ୍ୱାରା କୁଷ୍ଠାଦି ଦୁଷ୍ଟବ୍ରଣରୁ ରକ୍ତ ବାହାରିଲେ ସେଥିପାଇଁ ଉକ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବା ଉଚିତ । (୧୦) ରକ୍ତ ନବାହାରି ମଲାପରି ମାରିପକାଇବା, ହାତ ଓ ଗୋଡ଼ର ଖଞ୍ଜା ଚୂଲାଇଦେବା ବ୍ୟକ୍ତିକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । ହାତ, ପାଦ, ଦାନ୍ତ ଭାଙ୍ଗି ମାଡ଼ଦେବା, ନାକ କାନ କାଟିଦେବା ଓ ଦୁଷ୍ଟବ୍ରଣବ୍ୟତୀତ ଅନ୍ୟ ବ୍ରଣକୁ ବିଦାରଣ କରିବା ବ୍ୟକ୍ତିକୁ ମଧ୍ୟ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୧) ସକ୍‌ଥି (ଉରୁ ଅର୍ଥାତ୍ ଜାନୁର ଉପର ଅଂଶ), ଗ୍ରୀବା (କନ୍ଧର ବା ମସ୍ତକଧାରକ ଶିର)କୁ ମୋଡ଼ି ଭାଙ୍ଗିବା, ଆଖି ଫୁଟାଇଦେବା ଓ କହିନପାରିବା, ଚଳବୁଲ ପ୍ରଭୃତି ଚେଷ୍ଟା କରିନପାରିବା ଏବଂ ଖାଇନପାରିବାଭଳି ମାଡ଼ଦେବା ବ୍ୟକ୍ତିକୁ ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବା ସଙ୍ଗେ ସଙ୍ଗେ ତା'ଠାରୁ ଏହି ଆହତ ବ୍ୟକ୍ତି ପୂର୍ଣ୍ଣସ୍ୱାସ୍ଥ୍ୟ ଲାଭ କରିବା ପର୍ଯ୍ୟନ୍ତ ଦରକାର ହେବା ଖର୍ଚ୍ଚ ଆଦାୟ କରି ଆହତବ୍ୟକ୍ତିଙ୍କୁ ଦେଇଦେବାକୁ ହେବ । ବିପନ୍ନ

ସମୁତ୍ଥାନବ୍ୟୟଶ୍ଚ । ବିପତ୍ତୌ କଣ୍ଟକଶୋଧନୀୟଂ ନୀୟେତ । (୧୨) ମହାଜନସ୍ୟୈକଂ ଘ୍ନତଃ ପ୍ରତ୍ୟେକଂ ଦ୍ୱିଗୁଣୋ ଦଣ୍ଡଃ । (୧୩) ପର୍ଯୁଷିତଃ କଲହୋଽନୁପ୍ରବେଶୋ ବା ନାଭିଯୋଜ୍ୟ ଇତ୍ୟାଚାର୍ଯ୍ୟାଃ । ନାସ୍ତ୍ୟପକାରିଣୋ ମୋକ୍ଷ ଇତି କୌଟିଲ୍ୟଃ । (୧୪) କଲହେ-ପୂର୍ବାଗତୋ ଜୟତି; ଅକ୍ଷମମାଣୋ ହି ପ୍ରଧାବତି ଇତ୍ୟାଚାର୍ଯ୍ୟାଃ । ନେତି କୌଟିଲ୍ୟଃ । ପୂର୍ବଂ ପଶ୍ଚାଦ୍ ବାଗତସ୍ୟ ସାକ୍ଷିଣଃ ପ୍ରମାଣମ୍ । ଅସାକ୍ଷିକେ ଘାତଃ କଲହୋପଲିଙ୍ଗନଂ ବା । (୧୫) ଘାତାଭିଯୋଗ

---

ଅର୍ଥାତ୍ ଆହତବ୍ୟକ୍ତିର ମୃତ୍ୟୁ ଘଟିଲେ ଉକ୍ତ ଅପରାଧୀକୁ କଣ୍ଟକଶୋଧନ ଅଧିକରଣରେ ଉକ୍ତ ହୋଇଥିବା ଦଣ୍ଡବିଧାନ କରିବାକୁ ହେବ । (୧୨) ବହୁଲୋକ ମିଶି ଜଣକୁ ମାରିଲେ, ଜଣେ ଜଣକୁ ମାରିଲେ ଯେଉଁ ଦଣ୍ଡରେ ଦଣ୍ଡିତ ହୁଏ ତାର ଦୁଇଗୁଣ ଦଣ୍ଡରେ ପ୍ରତ୍ୟେକେ ଦଣ୍ଡିତ ହେବେ । (୧୩) ଚିରାତୀତ କଳହ ବା ହୃତଦ୍ରବ୍ୟ ଅପ୍ରାପ୍ତିକରଣ ବିଷୟକ ଅଭିଯୋଗ ଗ୍ରହଣଯୋଗ୍ୟ ନୁହେ ବୋଲି ଆଚାର୍ଯ୍ୟମାନଙ୍କ ମତ । କିନ୍ତୁ ଯେତେ ଡେରି ହେଲେ ମଧ୍ୟ ଅଭିଯୋଗ ଯଦି ସତ୍ୟ ହୁଏ, ତେବେ ଅପରାଧୀକୁ ଦଣ୍ଡ ନଦେଇ ଛାଡ଼ିବାକୁ ହେବ ନାହିଁ । (୧୪) 'କଳହରେ ପ୍ରଥମେ ଯେଉଁ ବ୍ୟକ୍ତି ନ୍ୟାୟାଳୟକୁ ଆସି ନ୍ୟାୟାଧୀଶଙ୍କ ନିକଟରେ ଅଭିଯୋଗ କରେ ସେ ଜୟଯୁକ୍ତ ହୁଏ, କାରଣ—ପରକୃତ ବାଧା ନ ସହିପାରିବା ବ୍ୟକ୍ତି ଧର୍ମସ୍ଥଙ୍କ ନିକଟରେ ଆବେଦନ କରିବାପାଇଁ ଅତିଚଞ୍ଚଳ ଯାଇଥାଏ' (ପରେ ଯିବା ବ୍ୟକ୍ତି ପରାଜୟ ପାଏ)—ଏପରି ଆଚାର୍ଯ୍ୟମାନେ କହନ୍ତି । ଉକ୍ତ ମତକୁ ଖଣ୍ଡନ କରି ଆଚାର୍ଯ୍ୟ କୌଟିଲ୍ୟ କହନ୍ତି—ଅଭିଯୋକ୍ତା ଆଗେ ଆସୁ ବା ପଛେ ଆସୁ; ସେ ତା'ର ଅଭିଯୋଗକୁ ସାକ୍ଷିମାନଙ୍କଦ୍ୱାରା ହିଁ ପ୍ରମାଣିତ କରିବାକୁ ହେବ ଅର୍ଥାତ୍ ସାକ୍ଷିମାନେ ହିଁ ଅଭିଯୋଗର ଯଥାର୍ଥତା ପ୍ରତିପାଦନର ମୂଳକାରଣ ଅଟନ୍ତି । ସାକ୍ଷିର ଅଭାବରେ ପ୍ରହାରବ୍ରଣ (ମାଡ଼ ଘା) ଦେଖି ତତ୍ତ୍ୱ ନିର୍ଣ୍ଣୟ କରିବାକୁ ହେବ । ପ୍ରହାରବ୍ରଣର ଅଭାବରେ କଳହ ସମ୍ପର୍କୀୟ ପାରିପାର୍ଶ୍ୱିକ କାରଣକୁ ନେଇ କଳହର ତତ୍ତ୍ୱ ନିର୍ଣ୍ଣୟ କରିବାକୁ ହେବ । (୧୫) ଘାତବିଷୟକ ଅଭିଯୋଗକୁ ଅଭିଯୋକ୍ତା ସେହିଦିନ ହିଁ ନ୍ୟାୟାଧୀଶଙ୍କ

ମପ୍ରତିବ୍ରୁବତସ୍ତଦହରେଵ ପଶ୍ଚାତ୍କାରଃ । (୧୬) କଳହେ ଦ୍ରବ୍ୟମପହରତୋ ଦଶପଣୋ ଦଣ୍ଡଃ । କ୍ଷୁଦ୍ରକଦ୍ରବ୍ୟହିଂସାୟାଂ ତଚ୍ଚ ତାବଚ୍ଚ ଦଣ୍ଡଃ । ସ୍ଥୂଳକଦ୍ରବ୍ୟହିଂସାୟାଂ ତଚ୍ଚ ଦ୍ୱିଗୁଣଶ୍ଚ ଦଣ୍ଡଃ । ବସ୍ତ୍ରାଭରଣହିରଣ୍ୟସୁବର୍ଣଭାଣ୍ଡହିଂସାୟାଂ ତଚ୍ଚ ପୂର୍ବଶ୍ଚ ସାହସଦଣ୍ଡଃ । (୧୭) ପରକୁଡ୍ୟମଭିଘାତେନ କ୍ଷୋଭୟତସ୍ତ୍ରିପଣୋ ଦଣ୍ଡଃ । ଛେଦନଭେଦନେ ଷଟ୍ପଣଃ । ପାତନଭଞ୍ଜନେ ଦ୍ୱାଦଶପଣଃ ପ୍ରତୀକାରଶ୍ଚ । (୧୮) ଦୁଃଖୋତ୍ପାଦନଂ ଦ୍ରବ୍ୟମନ୍ୟ

---

ନିକଟରେ ଉପସ୍ଥାପିତ ନକଲେ ସେ ପରାଜିତ ହୁଏ । (୧୬) ଦୁଇଜଣ କଳହ କରୁଥିବା ବେଳେ ସେ ଦୁହିଙ୍କ କୌଣସି ପଦାର୍ଥ ଅପହରଣ କରି ନେଇଯିବା ବ୍ୟକ୍ତି ଦଶପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ ଏବଂ ସେ ଅପହରଣ କରି ନେଇଥିବା ଦ୍ରବ୍ୟ ଫେରାଇ ଦେବାକୁ ହେବ । (ଦୁଇଶତପଣ ଦଣ୍ଡ ବୋଲି ମଧ୍ୟ କୌଣସି ଅନୁବାଦରେ ଲେଖାଅଛି ) । କଳହ ସମୟରେ ଯଦି କେହି କାହାର ଫଳପୁଷ୍ପାଦି ସ୍ୱଳ୍ପମୂଲ୍ୟ ଦ୍ରବ୍ୟ ନଷ୍ଟ କରିଦିଏ, ତେବେ ସେଦ୍ରବ୍ୟର ମୂଲ୍ୟ ତା'ଠାରୁ ଅସୁଲ କରି ଦ୍ରବ୍ୟସ୍ୱାମୀକୁ ଦେଇଦେବା ସଙ୍ଗେ ସଙ୍ଗେ ସେହି ପରିମାଣ ଧନ ଜରିମାନାସ୍ୱରୂପ ଉକ୍ତ ବ୍ୟକ୍ତିଠାରୁ ଅସୁଲ କରିବାକୁ ହେବ; ମୂଲ୍ୟବାନ୍ ଦ୍ରବ୍ୟ ନଷ୍ଟ କଲେ ଦ୍ରବ୍ୟମୂଲ୍ୟ ଦ୍ରବ୍ୟସ୍ୱାମୀଙ୍କୁ ଦିଆଇଦେଇ ଦ୍ରବ୍ୟମୂଲ୍ୟର ଦୁଇଗୁଣ ଜରିମାନା ସ୍ୱରୂପ ଅସୁଲ କରିବାକୁ ହେବ । ବସ୍ତ୍ର, ଅଳଙ୍କାର, ସୁବର୍ଣ୍ଣ ଓ ସୁନାମୋହର ପ୍ରଭୃତି ନଷ୍ଟ କଲେ ନଷ୍ଟଦ୍ରବ୍ୟର ମୂଲ୍ୟ ଦ୍ରବ୍ୟସ୍ୱାମୀଙ୍କୁ ଦିଆଇଦେଇ ଅପରାଧୀକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୭) ପରର କାନ୍ଥ ଭାଙ୍ଗି ତାକୁ କ୍ଷୁବ୍ଧ କରିବା ବ୍ୟକ୍ତି ତିନିପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବ । ଏହିପରି କେହି କାହାର କାନ୍ଥ ହାଣିଲେ ଓ ଭାଙ୍ଗି କଣା କରିଦେଲେ ଛ'ପଣ ଓ ଭାଙ୍ଗି ପକାଇଦେଲେ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ ହେବା ସଙ୍ଗେ ସଙ୍ଗେ କାନ୍ଥ ତିଆରିକରିବା ପାଇଁ ଯାହା ଖର୍ଚ୍ଚ ଲାଗିବ ତାହା ମଧ୍ୟ ଦେବାକୁ ବାଧ୍ୟ ହେବ । (୧୮) ଅନ୍ୟର ଘରଭିତରକୁ ଦୁଃଖୋତ୍ପାଦକ ଦ୍ରବ୍ୟ (ପଥର, ଖପରା, ମଳମୂତ୍ରାଦି) ଫିଙ୍ଗିଲେ ଫିଙ୍ଗିବା ଲୋକକୁ ବାରପଣ ଅର୍ଥଦଣ୍ଡ ଏବଂ ପ୍ରାଣବାଧାକର ଶସ୍ତ୍ର ବା ସର୍ପ ଇତ୍ୟାଦି ଫିଙ୍ଗିଲେ ପୂର୍ବସାହସଦଣ୍ଡରେ

ବେଶ୍ମନ ପ୍ରକ୍ଷିପତୋ ଦ୍ୱାଦଶପଣୋ ଦଣ୍ଡଃ । ପ୍ରାଣାବାଧିକଂ ପୂର୍ବଃ ସାହସଦଣ୍ଡଃ । (୧୯) କ୍ଷୁଦ୍ରପଶୂନାଂ କାଷ୍ଠାଦ୍ୟୈର୍ଦୁଃଖୋତ୍ପାଦନେ ପଣୋ ଦ୍ୱିପଣୋ ବା ଦଣ୍ଡଃ । ଶୋଣିତୋତ୍ପାଦନେ ଦ୍ୱିଗୁଣଃ । ମହାପଶୂନାମେତେଷ୍ୱେବ ସ୍ଥାନେଷୁ ଦ୍ୱିଗୁଣୋ ଦଣ୍ଡଃ, ସମୁତ୍ଥାନବ୍ୟୟଶ୍ଚ । (୨୦) ପୁରୋପବନବନସ୍ପତୀନାଂ ପୁଷ୍ପଫଲଛାୟାବତାଂ ପ୍ରରୋହଚ୍ଛେଦନେ ଷଟ୍ପଣଃ । କ୍ଷୁଦ୍ରଶାଖାଚ୍ଛେଦନେ ଦ୍ୱାଦଶପଣଃ । ପୀନଶାଖାଚ୍ଛେଦନେ ଚତୁର୍ବିଂଶତିପଣଃ । ସ୍କନ୍ଧବଧେ ପୂର୍ବଃ ସାହସଦଣ୍ଡଃ । ସମୁଚ୍ଛିତ୍ତୌ ମଧ୍ୟମଃ । (୨୧) ପୁଷ୍ପଫଲଛାୟାବଦ୍‌ଗୁଲ୍ମଲତାସ୍ୱର୍ଦ୍ଧଦଣ୍ଡଃ । ପୁଣ୍ୟସ୍ଥାନତପୋବନଶ୍ମଶାନଦ୍ରୁମେଷୁ ଚ ।

---

ଦଣ୍ଡିତ କରିବାକୁ ହେବ । (୧୯) ଛେଳି ମେଣ୍ଢା ପ୍ରଭୃତି କ୍ଷୁଦ୍ରପଶୁମାନଙ୍କର କାଷ୍ଠାଦି ପ୍ରହାରଦ୍ୱାରା ଦୁଃଖ ଜନ୍ମାଇଲେ ଏକପଣ ବା ଦୁଇପଣ ଏବଂ ପ୍ରହାରଦ୍ୱାରା ରକ୍ତ ବୁହାଇଲେ ଏହାର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଗାଈ, ମହିଷୀ, ଘୋଡ଼ା, ଓଟ ପ୍ରଭୃତି ମହାପଶୁମାନଙ୍କୁ ଉପରୋକ୍ତ ପ୍ରକାରେ ପୀଡ଼ା ଦେଲେ ଉପରୋକ୍ତ ଦଣ୍ଡର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ ହେବା ସଙ୍ଗେ ସଙ୍ଗେ ସେମାନଙ୍କୁ ସୁସ୍ଥ କରିବାପାଇଁ ଯାହା ବ୍ୟୟ ହେବ ତାହା ମଧ ଦେବାକୁ ବାଧ ହେବ । (୨୦) ପୁରୋପବନ (ନଗର ସମ୍ମୁଖସ୍ଥ ବଗିଚା ବା ପାର୍କ ପ୍ରଭୃତି)ର ଫୁଲଫଳ ଓ ଛାୟାଦାନକାରୀ ବୃକ୍ଷମାନଙ୍କର ପଲ୍ଲବ ଛେଦନ କଲେ ଛ'ପଣ, କ୍ଷୁଦ୍ରଶାଖା ଛେଦନକଲେ ବାରପଣ, ପୀନଶାଖା (ମୋଟ ଦୁଆ) ଛେଦନକଲେ ଚବିଶିପଣ ଅର୍ଥଦଣ୍ଡ, କେନାମେଲବା ସ୍ଥାନରୁ ଶାଖାକୁ ଭାଙ୍ଗିଲେ ପୂର୍ବସାହସଦଣ୍ଡ ଏବଂ ବୃକ୍ଷକୁ ସମୂଳେ ଉତ୍ପାଟନ କଲେ ଏପରି କରିବା ବ୍ୟକ୍ତିକୁ ମଧ୍ୟମସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୨୧) ପୁଷ୍ପ, ଫଳ ଓ ଛାୟାବନ୍ତ ଗୁଳ୍ମଲତାମାନଙ୍କୁ ଏବଂ ପୁଣ୍ୟସ୍ଥାନ, ତପୋବନ ଓ ଶ୍ମଶାନସ୍ଥ ବୃକ୍ଷାଦିଙ୍କୁ ମଧ ଉପରୋକ୍ତ ପ୍ରକାରେ ନଷ୍ଟଭ୍ରଷ୍ଟ କରିବା ବ୍ୟକ୍ତିକୁ ପୂର୍ବୋକ୍ତ ଦଣ୍ଡର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବାକୁ

(୨୨) ସୀମାବୃକ୍ଷେଷୁ ଚୈତ୍ୟେଷୁ ଦ୍ରୁମେଷ୍ୱାଲକ୍ଷିତେଷୁ ଚ ।
ତ ଏବ ଦ୍ୱିଗୁଣାଦଣ୍ଡା କାର୍ଯ୍ୟା ରାଜବନେଷୁ ଚ ॥

---

ହେବ । (୨୨) ସୀମାବୃକ୍ଷ, ଚୈତ୍ୟ * ଅର୍ଥାତ୍ ଦେବ ଭାବନାରେ ପୂଜା କରାଯାଉଥିବା ବୃକ୍ଷ, ସରକାରୀ ଚିହ୍ନଥିବା ବୃକ୍ଷ ଓ ରାଜାଙ୍କ ଉଦ୍ୟାନରେ ଥିବା ବୃକ୍ଷାଦମାନଙ୍କୁ ଉପରୋକ୍ତ ପ୍ରକାରେ ନଷ୍ଟଭ୍ରଷ୍ଟ କଲେ ଅପରାଧୀକୁ ଉପରୋକ୍ତ ଦଣ୍ଡର ଦୁଇଗୁଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ
ଏକୋନବିଂଶୋଧ୍ୟାୟଃ । ଦଣ୍ଡପାରୁଷ୍ୟମ୍—ଆଦିତଃ ଷଟ୍‌ସପ୍ତତିତମଃ ।

---

* ଏକୋବୃକ୍ଷୋ ହି ଯୋ ଗ୍ରାମେ ଭବେତ୍ ପର୍ଣ୍ଣଫଳାନ୍ୱିତଃ ।
ଚୈତ୍ୟୋ ଭବତି ନର୍ଜ୍ଜାତି ରର୍ଚ୍ଚନୀୟଃ ସୁପୂଜିତଃ ॥ ଇତି ପ୍ରକୃତିବିବେକେ ।
ନୀଡ଼ାରମ୍ଭୈର୍ଗୃହବଳିଭୁଜାମାକୁଳ ଗ୍ରାମଚୈତ୍ୟାଃ ॥ ଇତି ମେଘଦୂତେ ।

# ବିଂଶୋଽଧ୍ୟାୟଃ

## ଚତୁଃସପ୍ତତ, ପଞ୍ଚସପ୍ତତତମ ପ୍ରକରଣମ୍

## ଦ୍ୟୂତସମାହ୍ୱର୍ଯଂ, ପ୍ରକୀର୍ଣକାନ

## GAMBLING, BETTING AND MISCELLANEOUS OFFENCES

( 'ଦ୍ୟୂତ' ଅର୍ଥାତ୍ ପଶାଖାଟି, ସକଟା ପ୍ରଭୃତ ଅପ୍ରାଣୀକ୍ରୀଡ଼ା, ସମାହ୍ୱୟ ଅର୍ଥାତ୍ ମଲ୍ଲ, ମେଷ, କୁକ୍କୁଟ ପ୍ରଭୃତ ପ୍ରାଣୀଙ୍କୁ ବେଦନା ଦେଇ ସେମାନଙ୍କୁ ଯୁଦ୍ଧଲଗାଇବା ଇତ୍ୟାଦ ଅପରାଧର ଦଣ୍ଡବଧି ଏବଂ ବବଧ ବଷୟକ କ୍ଷୁଦ୍ର କ୍ଷୁଦ୍ର ଅପରାଧର ଦଣ୍ଡବଧି ).

**(୧) ଦ୍ୟୂତାଧ୍ୟକ୍ଷୋ ଦ୍ୟୂତମେକମୁଖଂ କାରୟେତ୍ । ଅନ୍ୟତ୍ର ଦୀବ୍ୟତୋ ଦ୍ୱାଦଶପଣୋ ଦଣ୍ଡଃ * ଗୂଢ଼ାଜୀବଜ୍ଞାପନାର୍ଥମ୍ ।**

---

(୧) ଦ୍ୟୂତାଧ୍ୟକ୍ଷ ରାଜ୍ୟର ଏକ ନର୍ଦ୍ଦିଷ୍ଟ ସ୍ଥାନରେ ହିଁ ଦ୍ୟୂତକ୍ରୀଡ଼ା (ଜୁଆଖେଳ) କେନ୍ଦ୍ରର ବ୍ୟବସ୍ଥା କରବେ । ଯେଉଁ ବ୍ୟକ୍ତ ଏହ ସ୍ଥାନ ବ୍ୟତୀତ ଅନ୍ୟସ୍ଥାନରେ ଜୁଆ ଖେଳବ ତାକୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରବାକୁ ହେବ । ତସ୍କର ଓ ସାହସିକ ପ୍ରଭୃତ ଲୋକକଣ୍ଟକମାନଙ୍କୁ ଏହ ସ୍ଥାନରେ ସହଜରେ ଧରହେବା ଯୋଗୁଁ ଏବଂ ଏମାନଙ୍କୁ ଶୋଧନ କର ପ୍ରଜାମାନଙ୍କୁ ଏମାନଙ୍କର ଦୌରାତ୍ମ୍ୟରୁ ରକ୍ଷା କରବାର ଧର୍ମସାଧନ ଯୋଗୁଁ ରାଜା ଜାଣିଶୁଣି ଏପର ଦ୍ୟୂତକ୍ରୀଡ଼ାକୁ ପ୍ରଶ୍ରୟ ଦେଇଥାନ୍ତ । ଦ୍ୟୂତକ୍ରୀଡ଼ା, ମଲ୍ଲଯୁଦ୍ଧ, ମେଷଯୁଦ୍ଧ ଓ କୁକ୍କୁଟଯୁଦ୍ଧ ପ୍ରଭୃତ ନଷିଦ୍ଧ କାର୍ଯ୍ୟ କରବାକୁ ବାରଣ କଲେ ମଧ୍ୟ ମନ୍ଦପ୍ରକୃତକ ଲୋକେ ଲୁଚଛପି ଏହ କାର୍ଯ୍ୟ କରଥାନ୍ତ । ଅତଏବ ଏହ ପ୍ରଚ୍ଛନ୍ନ ଅପରାଧୀମାନଙ୍କୁ ଜାଣିବା ଓ ତାର ପ୍ରତକାର କର ପ୍ରଜାମାନଙ୍କୁ ସୁଖଶାନ୍ତରେ କାଳାତପାତ କରବା ସକାଶେ ବ୍ୟବସ୍ଥା କରବା ପାଇଁ ଉକ୍ତ କାର୍ଯ୍ୟଗୁଡ଼ିକୁ ଦ୍ୟୂତାଧ୍ୟକ୍ଷ ଏକମୁଖ ଅର୍ଥାତ୍ ଏକମୁହାଁ

---

* ପ୍ରକାଶମେତତ୍ ତାସ୍କର୍ଯ୍ୟଂ ଯଦ୍ ଦେବନସମାହ୍ୱୟମ୍ ।
ପ୍ରଚ୍ଛନ୍ନଂ ବା ପ୍ରକାଶଂ ବା ଦ୍ୟୂତଂ ରାଷ୍ଟ୍ରେ ନବାରୟେତ୍ । ଇତ ସ୍ମୃତ ।
ଅକ୍ଷୈର୍ମାଦୀବ୍ୟଃ । ଇତ ବେଦେ ।

(୨) ଦ୍ୟୂତାଭିଯୋଗେ ଜେତୁଃ ପୂର୍ବଃ ସାହସଦଣ୍ଡଃ । ପରାଜିତସ୍ୟ ମଧ୍ୟମଃ । ବାଳଶଜାତୀୟୋ ହ୍ୟେଷ ଜେତୁକାମଃ ପରାଜୟଂ ନ କ୍ଷମତ ଇତ୍ୟାଚାର୍ଯ୍ୟାଃ । ନେତି କୌଟଲ୍ୟଃ—ପରାଜିତଶ୍ଚେଦ୍ ଦ୍ୱିଗୁଣଦଣ୍ଡଃ କ୍ରିୟେତ ନ କଶ୍ଚନ ରାଜାନମଭିସରିଷ୍ୟତି । ପ୍ରାୟଶୋ ହି କିତବାଃ କୂଟଦେବିନଃ । (୩) ତେଷାମଧ୍ୟକ୍ଷାଃ ଶୁଦ୍ଧାଃ କାକଣୀରକ୍ଷାଂଶ୍ଚ ସ୍ଥାପୟେୟୁଃ । (୪) କାକଣ୍ୟକ୍ଷାଣାମନ୍ୟୋ-

---

କରାଇବାକୁ ହେବ (ଗୋଟିଏ ସ୍ଥାନରେ ହିଁ କରାଇବାକୁ ହେବ) । (୨) ଦ୍ୟୂତ ସମ୍ପର୍କୀୟ କୌଣସି ଅଭିଯୋଗ ଯଦି ଦ୍ୟୂତଜେତା ଅର୍ଥାତ୍ ଜୁଆଖେଳରେ ଜିଣିବା ଲୋକ କରେ, ତେବେ ତାକୁ ପୂର୍ବସାହସଦଣ୍ଡ ଏବଂ ପରାଜିତ ଅର୍ଥାତ୍ ହାରିବା ଲୋକ ଯଦି ଏପରି କୌଣସି ଅଭିଯୋଗ କରେ, ତେବେ ତାକୁ ମଧ୍ୟମସାହସଦଣ୍ଡରେ (ଜିଣିବା ଲୋକ ଅପେକ୍ଷା ଦୁଇଗୁଣ ଦଣ୍ଡରେ) ଦଣ୍ଡିତ କରିବାକୁ ହେବ । କାରଣ ମୂର୍ଖପ୍ରାୟ ଲୋକମାନେ ହିଁ ଜିଣିବା ପାଇଁ ଖେଳି ପରାଜିତ ହେଲେ ଏହି କ୍ଷତି ସମ୍ଭାଳି ନପାରି ଅଭିଯୋଗ କରିଥାନ୍ତି ବୋଲି ଆଚାର୍ଯ୍ୟମାନେ ମତ ଦିଅନ୍ତି । କିନ୍ତୁ କୌଟିଲ୍ୟ ଏହି ମତ ଖଣ୍ଡନ କରି କହନ୍ତି ଯେ, ହାରିଯିବା ଲୋକକୁ ଜିଣିବାଲୋକ ଅପେକ୍ଷା ଏପରି ଦୁଇଗୁଣ ଦଣ୍ଡ ଦେବାର ବ୍ୟବସ୍ଥା କଲେ କୌଣସି ହାରିଯିବା ଲୋକ, ଜିଣିବା ଲୋକ ତା ପ୍ରତି କରିଥିବା ଅନ୍ୟାୟ ବିଷୟକ ଆତ୍ମଦୁଃଖ ଆଉ ରାଜାଙ୍କ ନିକଟରେ ନିବେଦନ କରିବାକୁ ଆସିବ ନାହିଁ । ଜୁଆଖେଳ ତ ସାଧାରଣତଃ ଧୂର୍ତ୍ତମାନେ ଛଳ ବଳ କପଟରେ ହିଁ କରିଥାନ୍ତି; ଅତଏବ ହାରିଯିବା ଲୋକପ୍ରତି ଏପରି ଦଣ୍ଡର ବ୍ୟବସ୍ଥା କରିବା ଅନୁଚିତ । (୩) ଦ୍ୟୂତକର୍ମ ପର୍ଯ୍ୟବେକ୍ଷକ ଶୁଦ୍ଧଚରିତ୍ର ଦ୍ୟୂତାଧ୍ୟକ୍ଷ ଯଥାସ୍ଥାନରେ କଉଡ଼ି ଓ ପଶାକାଠି ଖେଳ ସକାଶେ ରଖିଦେବେ । (୪) କଉଡ଼ି ଓ ପଶାକାଠିକୁ ହସ୍ତକୌଶଳଦ୍ୱାରା ଅଦଳବଦଳ କରିଦେବା ଖେଳାଳିକୁ ବାରପଣ ଅର୍ଥଦଣ୍ଡ ଓ କପଟପଶାଦି ଖେଳ ସୃଷ୍ଟି କରିବା ଖେଳାଳିକୁ ପୂର୍ବସାହସ-ଦଣ୍ଡରେ ଦଣ୍ଡିତ କରିବା ସଙ୍ଗେ ସଙ୍ଗେ ସେ ଖେଳରେ ଜିତିଥିବା ଧନ ଛଡ଼ାଇ ଆଣିବାକୁ ହେବ । ଯଦି କୌଣସି ଖେଳାଳି ଦ୍ୟୂତାଧ୍ୟକ୍ଷଦ୍ୱାରା ରଖାଯାଇଥିବା କଉଡ଼ି ଓ ପଶାକାଠିର ରେଖା ବ୍ୟତ୍ୟୟ (ଏପଟ ସେପଟ)

ପଧାନେ ଦ୍ୱାଦଶପଣୋ ଦଣ୍ଡଃ । କୂଟକର୍ମଣି ପୂର୍ବଃ ସାହସଦଣ୍ଡଃ, ଜିତପ୍ରତ୍ୟାଦାନମ୍ । ଉପଧୌ ସ୍ତେୟଦଣ୍ଡଶ୍ଚ । (୫) ଜିତଦ୍ରବ୍ୟାଦଧ୍ୟକ୍ଷଃ ପଞ୍ଚକଂ ଶତମାଦଦୀତ, କାକଣ୍ୟକ୍ଷାରଳାଶଳାକାବକ୍ରୟମୁଦକଭୂମିକର୍ମକ୍ରୟଂ ଚ । ଦ୍ରବ୍ୟାଣାମାଧାନଂ ବିକ୍ରୟଂ ଚ କୁର୍ଯାତ୍ । ଅକ୍ଷଭୂମିହସ୍ତଦୋଷାଣାଂ ଚାପ୍ରତିଷେଧନେ ଦ୍ୱିଗୁଣୋ ଦଣ୍ଡଃ । (୬) ତେନ ସମାହ୍ୱୟୋ ବ୍ୟାଖ୍ୟାତଃ ଅନ୍ୟତ୍ର ବିଦ୍ୟାଶିଳ୍ପସମାହ୍ୱୟାଦିତି । (୭) ପ୍ରକୀର୍ଣକଂ ତୁ । ଯାଚିତକାବକ୍ରୀତକାହିତକନିକ୍ଷେପକାଣାଂ ଯଥାଦେଶକାଳମଦାନେ, ଯାମଚ୍ଛାୟାସମୁପବେଶସଂସ୍ଥିତୀନାଂ ବା ଦେଶକାଳାତିପାତନେ, ଗୁଲ୍ମତରଦେୟଂ ବ୍ରାହ୍ମଣଂ

---

କରିବା ଦେଖାଯାଏ କିମ୍ବା ମଣିମନ୍ତ୍ରାଦିଦ୍ୱାରା ଅନ୍ୟଖେଳାଳିମାନଙ୍କ ବୁଦ୍ଧି ବଞ୍ଚନା କରିବା ଜଣାଯାଏ, ତେବେ ତାକୁ ଚୌର୍ଯ୍ୟଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୫) ଦ୍ୟୂତାଧ୍ୟକ୍ଷ ଜିତାହେବା ଦ୍ରବ୍ୟର ଶତକଡ଼ା ପାଞ୍ଚଭାଗ ନିଜର ବେତନ ସକାଶେ ଗ୍ରହଣ କରିବେ; କଉଡ଼ି, ପଶାକାଠି, ଚର୍ମପଟ୍ଟ ଓ ଶଳାକାର ଭଡ଼ା ଏବଂ ଜଳ ଯୋଗାଇବା ଓ ଝାଡ଼ୁକରିବା ସକାଶେ ଆବଶ୍ୟକ ହେବା ଧନ ଜିଣିବା ଲୋକଙ୍କଠାରୁ ଆଦାୟ କରିବେ; ଖେଳାଳିମାନଙ୍କର ବିକ୍ରୟ ବନ୍ଧକ ଇତ୍ୟାଦି ସମ୍ପାଦନ କରାଇଦେବେ । ପଶାକାଠି ପ୍ରଭୃତି ଖେଳ ସରଞ୍ଜାମର ଦୋଷ, ଖେଳ ହେଉଥିବା ଜାଗାର ଦୋଷ ଓ ଖେଳାଳିମାନଙ୍କ ହସ୍ତଦୋଷର ପ୍ରତିଷେଧ ନକଲେ ଦ୍ୟୂତାଧ୍ୟକ୍ଷଙ୍କୁ ସେ ଆଦାୟ କରିବାକୁ ଥିବା ଧନର ଦୁଇଗୁଣ ଜରିମାନା କରିବାକୁ ହେବ । (୬) ବିଦ୍ୟା ଓ ଶିଳ୍ପ ସମ୍ବନ୍ଧୀୟ ସମାହ୍ୱୟ (ଜିତାପଟ୍ଟ ପାଇଁ ଧନ ରଖି ଦୁଇ ଦଳ ମଧ୍ୟରେ କରାଯିବା ପ୍ରତିଯୋଗିତା) ବ୍ୟତୀତ ମଲ୍ଲ, କୁକୁଡ଼ା, ଗୋବରାଗଡ଼େଇ, ମେଣ୍ଢା ପ୍ରଭୃତି ଯୁଦ୍ଧ ବିଷୟକ ସମାହ୍ୱୟରେ ମଧ୍ୟ ଉପରୋକ୍ତ ନିୟମ ଖଟାଇବାକୁ ହେବ । ଏଠାରେ ଦ୍ୟୂତ ଓ ସମାହ୍ୱୟ ବିଷୟ ସମାପ୍ତ ହେଲା । (୭) କୌଣସି ବ୍ୟକ୍ତି ମାଗିନେଇଥିବା, ଭଡ଼ାକୁ ନେଇଥିବା, ବିଶ୍ୱାସରେ ରଖିଥିବା ଓ ଅଳଙ୍କାରାଦି ନିର୍ମାଣ ସକାଶେ ନେଇଥିବା ଦ୍ରବ୍ୟ ଯଥାସ୍ଥାନରେ ଓ ଯଥାକାଳରେ ଫେରାପସ୍ ନକଲେ, ରାତିର ଅମୁକ ପ୍ରହରରେ କିମ୍ବା ଦିବସର ଅମୁକ ଛାୟାନଳିକାରେ (କୌଟଲ୍ୟଙ୍କ ସମୟରେ ଏକପ୍ରକାର ନଳିକାଦ୍ୱାରା

ସାଧୟ୍ୟତଃ ପ୍ରତବେଶାନୁବେଶୟୋରୁପର ନମନ୍ତ୍ରଣେ ଚ ଦ୍ୱାଦଶ-ପଣୋ ଦଣ୍ଡଃ । (୮) ସନ୍ଦିଷ୍ଟମର୍ଥମପ୍ରୟଚ୍ଛତୋ, ଭ୍ରାତୃଭାର୍ଯାଂ ହସ୍ତେନ ଲଙ୍ଘୟତୋ, ରୂପାଜୀବାମନ୍ୟୋପରୁଦ୍ଧାଂ ଗଚ୍ଛତଃ, ପରବକ୍ତବ୍ୟଂ ପଣ୍ୟଂ କ୍ରୀଣାନସ୍ୟ, ସମୁଦ୍ରଂ ଗୃହମୁଦ୍ଭିନ୍ଦତଃ, ସାମନ୍ତ-ଚତ୍ୱାରିଂଶତ୍କୁଲ୍ୟା ବାଧାମାଚରତଶ୍ଚାଷ୍ଟଚତ୍ୱାରିଂଶତ୍ପଣୋ ଦଣ୍ଡଃ । (୯) କୁଳନୀବୀଗ୍ରାହକସ୍ୟାପବ୍ୟୟନେ, ବଧବାଂ ଛନ୍ଦବାସିନୀଂ ପ୍ରସହ୍ୟାଧିଚରତଃ, ଚଣ୍ଡାଳସ୍ୟାର୍ଯାଂ ସ୍ପୃଶତଃ, ପ୍ରତ୍ୟାସନ୍ନମାପଦ୍ୟ-ନଭିଧାବତୋ, ନଷ୍କାରଣମଭିଧାବନଂ କୁର୍ବତଃ, ଶାକ୍ୟଜୀବକା-ଦୀନ୍ ବୃଷଳପ୍ରବ୍ରଜିତାନ୍ ଦେବପିତୃକାର୍ଯେଷୁ ଭୋଜୟତଃ ଶତ୍ୟୋ

---

ଘୋଷଣା କରାଯାଇଥାଏ) ଅମୁକ ସ୍ଥାନରେ ଆମେ ସମସ୍ତେ ଏକତ୍ରିତ ହେବା ବୋଲି ସଙ୍କେତ କରି ଏହାର ବ୍ୟତିକ୍ରମ କଲେ, ଗୁଲ୍ମ (ବନ) ପାର କରିବା ଓ ନଦୀ ପାର କରିବା ପାଇଁ ବ୍ରାହ୍ମଣଠାରୁ କୌଶଳପୂର୍ବକ ଗ୍ରହଣ କରି ଏବଂ ନିଜଗୃହର ସମ୍ମୁଖରେ ବା ନିଜଗୃହ ନିକଟରେ ବାସକରିଥିବା ବ୍ରାହ୍ମଣଙ୍କୁ ଜାଣିଶୁଣି ଉପେକ୍ଷା କରି ଅନ୍ୟଙ୍କୁ ନିମନ୍ତ୍ରଣ କଲେ, ତା'ଙ୍କୁ ବାରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୮) କୌଣସି ବ୍ୟକ୍ତି ପ୍ରତିଶ୍ରୁତ ଧନ ପ୍ରଦାନ ନକଲେ, ଭାଇର ଭାର୍ଯାଦେହରେ ହାତ ଲଗାଇଲେ ବା ଅନ୍ୟବ୍ୟକ୍ତିଦ୍ୱାରା ରକ୍ଷିତା ହୋଇଥିବା ବେଶ୍ୟାପାଖକୁ ଗମନ କଲେ, ଅନ୍ୟ ବ୍ୟକ୍ତି ଦରଦାମ ଛିଣ୍ଡାଇ କିଣିଥିବା ପଣ୍ୟକୁ ବଢ଼ାଦରରେ ବା ସେହିଦରରେ କିଣିନେଲେ, ସରକାରୀ ମୁଦ୍ରା (Seal) ଦିଆଯାଇ ବନ୍ଦ କରାଯାଇଥିବା ଘରକୁ ଭାଙ୍ଗିଲେ ଓ ପାଖପଡ଼ଶାର ଚାଳିଶି ପରିବାରଙ୍କୁ ବାଧା ପହଞ୍ଚିବାଭଳି ଅପରାଧ କଲେ ତାଙ୍କୁ ଅଠଚାଳିଶପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୯) ଯେଉଁ ବ୍ୟକ୍ତି କୁଳସାଧାରଣ ଧନ ଗ୍ରହଣକରି ଅପଳାପ କରେ, ସ୍ୱାଧୀନା ଓ କାମଚାରିଣୀ ବିଧବାକୁ ବଳାତ୍କାରେ ସମ୍ଭୋଗ କରେ, ଚଣ୍ଡାଳ ହୋଇ ଆର୍ଯସ୍ତ୍ରୀକୁ ସ୍ପର୍ଶକରେ, ପାଖପଡ଼ଶା ବ୍ୟକ୍ତି ବିପଦ୍‌ଗ୍ରସ୍ତ ହୋଇଥିବା ବେଳେ ତାଙ୍କୁ ସେଥିରୁ ରକ୍ଷା କରିବା ପାଇଁ ନଧାଏଁ ବା ଅକାରଣରେ (ମିଛରେ) ଏପରି ଧାଏଁ, ଶାକ୍ୟ (ବୌଦ୍ଧ ସନ୍ନ୍ୟାସୀ), ଜୀବକ ଓ ଶୂଦ୍ର ସନ୍ନ୍ୟାସୀ ପ୍ରଭୃତିଙ୍କୁ ଦେବ ପିତୃ କାର୍ଯରେ ଭୋଜନ ଦିଏ,

**ଦଣ୍ଡଃ । (୧୦) ଶପଥବାକ୍ୟାନୁଯୋଗମନସୃଷ୍ଟଂ କୁର୍ବତଂ, ଯୂକ୍ତକର୍ମ ଗ୍ୟୁକ୍ତସ୍ୟ, କ୍ଷୁଦ୍ରପଶୁବୃଷାଣାଂ ପୁଂସ୍ତ୍ୱୋପଘାତକୋ, ଦାସ୍ୟା ଗର୍ଭମୌଷଧେନ ପାତୟତଶ୍ଚ ପୂର୍ବଃ ସାହସଦଣ୍ଡଃ । (୧୧) ପିତାପୁତ୍ରୟୋର୍ଦମ୍ପତ୍ୟୋର୍ଭ୍ରାତୃଭଗିନ୍ୟୋର୍ମାତୁଳଭଗିନେୟୟୋଃ ଶିଷ୍ୟାଚାର୍ଯ୍ୟୟୋର୍ବା ପରସ୍ପରମପତିତଂ ତ୍ୟଜତଃ ସାର୍ଥାଭିପ୍ରୟାତଂ ଗ୍ରାମମଧ୍ୟେ ବା ତ୍ୟଜତଃ ପୂର୍ବଃ ସାହସଦଣ୍ଡଃ । କାନ୍ତାରେ ମଧ୍ୟମଃ । ତନ୍ନିମିତ୍ତଂ ଭ୍ରେଷୟତ ଉତ୍ତମଃ । ସହପ୍ରସ୍ଥାୟିଷ୍ୱନ୍ୟେଷ୍ୱର୍ଧଦଣ୍ଡଃ । (୧୨) ପୁରୁଷମବନ୍ଧନୀୟଂ ବନ୍ଧତୋ ବନ୍ଧୟତୋ ବନ୍ଧଂ**

---

ତାକୁ ଏକଶତେପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୦) ଯେଉଁ ବ୍ୟକ୍ତି ଧର୍ମସ୍ଥଙ୍କ ବିନାନୁମତିରେ ପ୍ରତିବାଦୀର ସାକ୍ଷ୍ୟାଦି ଅନୁଯୋଗ ଶପଥପୂର୍ବକ କରିଏ, ଅଧିକାର ନଥାଇ ଅନଧିକାରରେ କୌଣସି କାର୍ଯ୍ୟ କରେ, ମେଣ୍ଢା, ଛେଳି ଓ ଷଣ୍ଢମାନଙ୍କ ଅଣ୍ଡକୋଷ ଛେଦନ କରି ସେମାନଙ୍କ ପୁରୁଷତ୍ୱ ଲୋପକରେ ଏବଂ ଗର୍ଭସ୍ରାବକ ଔଷଧ ପ୍ରୟୋଗଦ୍ୱାରା କୌଣସି ଦାସୀର ଗର୍ଭପାତ କରାଏ, ତାକୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୧) ପତିତ ନହୋଇ ମଧ୍ୟ ପିତା ପୁତ୍ର, ସ୍ୱାମୀ ସ୍ତ୍ରୀ, ଭ୍ରାତା ଭଗିନୀ, ମାତୁଳ ଭାଗିନେୟୀ (ମାମୁଁ ଭଣିଜା) ବା ଗୁରୁ ଶିଷ୍ୟ କେହି କାହାକୁ ଯଦି ତ୍ୟାଗକରନ୍ତି, ବଣିକସଙ୍ଘର ମୁଖ୍ୟବ୍ୟକ୍ତି ଯଦି ସଙ୍ଘର କୌଣସି ବ୍ୟକ୍ତି ରୁଗ୍‌ଣ ବା ଅସମର୍ଥ ହେବା ଯୋଗୁଁ ତାକୁ କୌଣସି ଗ୍ରାମରେ ଛାଡ଼ିଦେଇ ଯାନ୍ତି, ତେବେ ତାଙ୍କୁ ପୂର୍ବସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଏପରି ଅବସ୍ଥାରେ କୌଣସି ବ୍ୟକ୍ତିକୁ ବନମଧ୍ୟରେ ଛାଡ଼ିଦେଇ ଗଲେ ମଧ୍ୟମସାହସଦଣ୍ଡ ଏବଂ ଏପରି ବନମଧ୍ୟରେ ଛାଡ଼ିଦେଇ ଚାଲିଯିବା ବେଳେ ତାକୁ ମାରି ପକାଇଦେଲେ ଉତ୍ତମସାହସଦଣ୍ଡରେ ଦଣ୍ଡିତ କରିବାକୁ ହେବ ଏବଂ ଏହି ଅପରାଧୀ ସହିତ ମିଶିଯାଇଥିବା ଅନ୍ୟବ୍ୟକ୍ତିମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଏହାର ଅର୍ଦ୍ଧଦଣ୍ଡରେ ଦଣ୍ଡିତ କରିବାକୁ ହେବ । (୧୨) ଯଦି କେହି ବନ୍ଧନର ଅଯୋଗ୍ୟ ଅର୍ଥାତ୍ ନିରପରାଧ ବ୍ୟକ୍ତିକୁ ବନ୍ଧନ କରେ ବା ଅନ୍ୟକାହାଦ୍ୱାରା (ସରକାରୀ ପୁଲିସ୍

ବା ମୋକ୍ଷୟତୋ ବାଳମପ୍ରାପ୍ତବ୍ୟବହାରଂ ବଧ୍ନତୋ ବନ୍ଧୟତୋ ବା. ସହସ୍ରଂ ଦଣ୍ଡଃ । ପୁରୁଷାପରାଧବିଶେଷେଣ ଦଣ୍ଡବିଶେଷଃ କାର୍ଯ୍ୟଃ । (୧୩) ତୀର୍ଥକରସ୍ତପସ୍ୱୀ ବ୍ୟାଧିତଃ କ୍ଷୁତ୍ପିପାସାଧ୍ୱକ୍ଳାନ୍ତ-ସ୍ତିରୋଜନପଦୋ ଦଣ୍ଡଖେଦୀ ନିଷ୍କିଞ୍ଚନଶ୍ଚାନୁଗ୍ରାହ୍ୟାଃ । (୧୪) ଦେବବ୍ରାହ୍ମଣତପସ୍ୱି ସ୍ତ୍ରୀବାଳବୃଦ୍ଧବ୍ୟାଧିତାନାମନାଥାନାମନଭିସରତାଂ ଧର୍ମସ୍ଥାଃ କାର୍ଯ୍ୟାଣି କୁର୍ଯ୍ୟୁଃ । ନ ଚ ଦେଶକାଳଭୋଗ-ଚ୍ଛଳେନାତିହରେୟୁଃ । ପୂଜ୍ୟା ବିଦ୍ୟା ବୁଦ୍ଧିପୌରୁଷାଭିଜନ-କର୍ମାତିଶୟତଶ୍ଚ ପୁରୁଷାଃ ।

(୧୫) ଏବଂ କାର୍ଯ୍ୟାଣି ଧର୍ମସ୍ଥାଃ କୁର୍ଯ୍ୟୁରଚ୍ଛଳଦର୍ଶିନଃ ।
ସମାଃ ସର୍ବେଷୁ ଭାବେଷୁ ବିଶ୍ୱାସ୍ୟା ଲୋକସଂପ୍ରିୟାଃ ।

---

ପ୍ରଭୃତିଙ୍କଦ୍ୱାରା) ବନ୍ଧନ କରାଏ କିମ୍ବା କୌଣସି ଅପରାଧୀକୁ ବନ୍ଧନରୁ ମୁକ୍ତ କରିଦିଏ; ଷୋହଳବର୍ଷରୁ ଊଣା ବୟସର ନାବାଳକକୁ ଯଦି କେହି ବନ୍ଧନ କରେ ବା ବନ୍ଧନ କରାଏ, ତେବେ ତାକୁ ଏକସହସ୍ରପଣ ଅର୍ଥଦଣ୍ଡରେ ଦଣ୍ଡିତ କରିବାକୁ ହେବ । ଯେଉଁ ବ୍ୟକ୍ତି ଯେପରି ଅପରାଧ କରେ ତାକୁ ତଦନୁରୂପ ଦଣ୍ଡର ବ୍ୟବସ୍ଥା କରିବାକୁ ହେବ । (୧୩) ଦାନଶୀଳ, ତପସ୍ୱୀ, ରୋଗୀ, କ୍ଷୁଧା-ପିପାସା ଓ ପଥଶ୍ରମକ୍ଳାନ୍ତ, ବିଦେଶାଗତ, ବହୁତ ଦଣ୍ଡଦ୍ୱାରା ଖେଦପ୍ରାପ୍ତ ଓ ନିଷ୍କିଞ୍ଚନ ବ୍ୟକ୍ତିମାନଙ୍କୁ ଅନୁଗ୍ରହ କରିବାକୁ ହେବ, ଅର୍ଥାତ୍ ଏମାନେ ଅପରାଧ କଲେ ମଧ୍ୟ ଏମାନଙ୍କୁ ଦୟାକରି ମୁକ୍ତ ଦେବାକୁ ହେବ । (୧୪) ଦେବତା (ଦେବତାଙ୍କ ଟ୍ରଷ୍ଟୀ ବା ପୂଜାରୀ), ବ୍ରାହ୍ମଣ, ତପସ୍ୱୀ, ସ୍ତ୍ରୀ, ବାଳକ, ବୃଦ୍ଧ, ବ୍ୟାଧିଗ୍ରସ୍ତ ଓ ଅନାଥମାନେ ନିଜର ଦୁଃଖ ଜଣାଇବାପାଇଁ ଧର୍ମସ୍ଥଙ୍କ ନିକଟକୁ ଯାଇନପାରିଲେ, ସେମାନଙ୍କ କାର୍ଯ୍ୟ ଧର୍ମସ୍ଥ ନିଜେ କରିଦେବେ । ଦେଶ, କାଳ ଓ ଭୋଗ ଛଳରେ ଉକ୍ତ ଅନାଥାଦିଙ୍କ ଦ୍ରବ୍ୟ ଅତିମାତ୍ରାରେ ଗ୍ରହଣ କରିବେ ନାହିଁ, ସାକ୍ଷ୍ୟାଦିଭାବରେ ଆସିଥିବା ଅତ୍ୟନ୍ତ ବିଦ୍ୟା, ବୁଦ୍ଧି, ପୌରୁଷ, ଅଭିଜନ ଓ କର୍ମସମ୍ପନ୍ନ ବ୍ୟକ୍ତିମାନେ ଧର୍ମସ୍ଥଙ୍କର

ପୂଜ୍ୟ ଅର୍ଥାତ୍ ମାନନୀୟ ବ୍ୟକ୍ତିରୂପେ ବିବେଚିତ ହେବେ । (୧୫) ଏହିପରି ଅଚ୍ଛଳଦର୍ଶୀ, ଅପକ୍ଷପାତୀ ଓ ସର୍ବଜନପ୍ରିୟ ଧର୍ମସ୍ଥମାନେ ନିଜନିଜର କର୍ତ୍ତବ୍ୟ କାର୍ଯ୍ୟ ଉତ୍ତମରୂପେ ସମ୍ପାଦନ କରିବେ ।

ଇତି କୌଟିଲୀୟାର୍ଥଶାସ୍ତ୍ରେ ଧର୍ମସ୍ଥୀୟେ ତୃତୀୟାଧିକରଣେ ବିଂଶୋଽଧ୍ୟାୟଃ ।
ଦ୍ୟୂତସମାହ୍ୱୟଂ, ପ୍ରକୀର୍ଣ୍ଣକାନି—ଆଦିତଃ ସପ୍ତସପ୍ତତିତମୋଽଧ୍ୟାୟଃ ।
ଏତାବତା କୌଟିଲୀୟସ୍ୟାର୍ଥଶାସ୍ତ୍ରସ୍ୟ ଧର୍ମସ୍ଥୀୟଂ
ତୃତୀୟମଧିକରଣମ୍ ସମାପ୍ତମ୍ ।

ଇତି ପୂର୍ବାର୍ଦ୍ଧମ୍



ବ୍ରହ୍ମପୁର: ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କ୍ସରେ ଶ୍ରୀ ହାଡ଼ୁ ସାହୁଗୁରୁଙ୍କ ଦ୍ୱାରା ମୁଦ୍ରିତ, ୧୯୬୩ ।